# ଭାଷା ଭାବନା

## ଓଡ଼ିଆ ଭାଷା ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା

ବିଜୟଲକ୍ଷ୍ମୀ ମହାନ୍ତି

# ଭାଷା ଭାବନା

## ଓଡ଼ିଆ ଭାଷା ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା

ଡ. ବିଜୟଲକ୍ଷ୍ମୀ ମହାନ୍ତି

ବିଦ୍ୟା

ଭୁବନେଶ୍ୱର

# ଭାଷା ଭାବନା

ଓଡ଼ିଆ ଭାଷା ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା : **ଡକ୍ଟର ବିଜୟ ଲକ୍ଷ୍ମୀ ମହାନ୍ତି**

ପ୍ରକାଶକ : **ବିଦ୍ୟା**
୧୫୭୩, ମଧୁବନ ସରଣୀ, ଭକ୍ତମଧୁ ନଗର;
ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧

ଅକ୍ଷର : **ଶାରଳା ଗ୍ରାଫିକ୍ସ,**
ନିକୋପାର୍କ ରୋଡ, ଭୁବନେଶ୍ୱର-୧୨

ମୁଦ୍ରଣ : ପ୍ରିଣ୍ଟଟେକ୍ ଅଫ୍‌ସେଟ୍, ଭୁବନେଶ୍ୱର-୨୪

ବଂଧେଇ : ସ୍ୱାଧୀନ ବାଇଣ୍ଡରସ୍, କଟକ

ସଂସ୍କରଣ : ୧ମ ସଂସ୍କରଣ-୨୦୦୮ (ଅଗଷ୍ଟ)

ମୂଲ୍ୟ : ୩୦୦ ଟଙ୍କା

**VĀSĀ VĀBANĀ**
(Anthology of Essays on Oriya Language)
Compiled and Edited by :
**Dr. Bijayalaxmi Mohanty**

Publisher : **Vidya**
1573, Bhaktamadhu Nagar,
Bhubaneswar-751030
Ph.(0674)2350289 / 2350511

D.T.P : **Sarala Graphics,**
Nicco Park Road, Bhubaneswar-12

Cover : **Bibhu Prasad Pradhan**

Printed at : **Print-Tech Offset**
Chandaka Industrial Area,
Bhubaneswar-24

1st Edition-**2008 (August)**

Price : **Rs 300.00**



**ISBN : 81- 903438-8-2**

# ଉତ୍ସର୍ଗ

ଯେଉଁମାନଙ୍କୁ ନେଇ ମୋର ସଂସାର
ସେଇମାନଙ୍କ ହାତରେ

ଲକ୍ଷ୍ମୀନୃସିଂହ ପ୍ରସାଦ
ସୀମିତା, ଶୁଭାଶିଷ
ସଂବିତ, ରିତୁ
ସଂବୁଦ୍ଧ, ସୁସ୍ମିତା
ଓ
ସ୍ୱାତୀର ସ୍ମୃତିରେ ।

-ମାମା

# ସୂଚୀ

# ମୁଖବନ୍ଧ

ଓଡ଼ିଆ ଭାଷା ବହୁ ପ୍ରାଚୀନ, ଓ ଏହାର ପ୍ରାଚୀନତାର ପ୍ରମାଣ ବିଭିନ୍ନ ଶିଳାଲେଖରୁ ପ୍ରମାଣିତ ହୋଇ ସାରିଛି । ଅଶୋକଙ୍କ ଧଉଳି ଶିଳାଲେଖରୁ ଖ୍ରୀ.ପୂ.୩ୟ ଶତକରେ ଓଡ଼ିଶାରେ ଆର୍ଯ୍ୟବସତି ସ୍ଥାପିତ ହେବାର ସୂଚନା ମିଳେ । ଖ୍ରୀ.ପୂ ୧ମ ଶତାବ୍ଦୀରେ ଖାରବେଳଙ୍କ ଶିଳାଲେଖରେ ଓଡ଼ିଆ ଶବ୍ଦ ବ୍ୟବହାରରୁ ଏହି ଉନ୍ମେଷର ପ୍ରମାଣ ମିଳିଥାଏ । ଏକାଦଶ ଶତାବ୍ଦୀର ଉରଜାମ ଶିଳାଲେଖ ଓଡ଼ିଆ ଭାଷାରେ ମିଳିଥିବା ପ୍ରାଚୀନତମ ଶିଳାଲେଖ ।

ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା ଭାବରେ ଓଡ଼ିଆ ଭାଷା ଇଣ୍ଡୋ-ଇଉରୋପୀୟ ଭାଷା ଗୋଷ୍ଠୀର ପୂର୍ବ ଉପଶାଖାର ଏକ ସଦସ୍ୟ । ମଧ୍ୟ-ଭାରତୀୟ ଆର୍ଯ୍ୟଭାଷା ଭାବରେ ବିକାଶ ଲାଭ କରିଥିବା ପ୍ରୋଟୋ-ଓଡ଼ିଆ-ଅସମୀୟା-ବଂଗଳା ଭାଷାରେ ଲେଖାଯାଇଥିବା 'ବୌଦ୍ଧଗାନ ଓ ଦୋହା'ରୁ କାଳକ୍ରମେ ଓଡ଼ିଆ ଭାଷାର ବିକାଶ ହୋଇଥିବା କଥା ଭାଷାବିତ୍‌ମାନେ ସ୍ୱୀକାର କରନ୍ତି । 'ବୌଦ୍ଧଗାନ ଓ ଦୋହା'ର ସମୟକୁ ଖ୍ରୀଷ୍ଟ ୫ମ ଶତାବ୍ଦୀରୁ ୧୦ମ ଶତାବ୍ଦୀ ମଧ୍ୟରେ ସ୍ଥିର କରାଯାଇଛି । ଭାଷାମାନଙ୍କର ତୁଳନାତ୍ମକ ପୁନର୍ଗଠନ ପ୍ରକ୍ରିୟାରେ ଓଡ଼ିଆ ଭାଷା ବୌଦ୍ଧଗାନ ଓ ଦୋହାଠାରୁ ବିଚ୍ଛିନ୍ନ ହେବା ପରେ ଏହା ଅନ୍ୟ ପୂର୍ବାଞ୍ଚଳୀୟ ଭାଷା ବଙ୍ଗଳା ଓ ଅସମିୟାଠାରୁ ପ୍ରାଚୀନତମ ବୋଲି ପ୍ରମାଣିତ ।

ଓଡ଼ିଆ ଭାଷାର ସୃଷ୍ଟି ବହୁ ପ୍ରାଚୀନ ହେଲେ ମଧ୍ୟ ଆମସ୍ ସଟନ୍‌ଙ୍କର ୧୮୩୧ ରେ ପ୍ରକାଶ ପାଇଥିବା 'Introductory Grammar of the Oriya Language' ଠାରୁ ହିସାବ କଲେ ଏହାର ଭାଷାଚର୍ଚ୍ଚାର ପରଂପରା ମାତ୍ର ପ୍ରାୟ ୧୮୦ ବର୍ଷ ତଳୁ ଆରମ୍ଭ ହୋଇଛି କହିଲେ ଚଳେ । କିନ୍ତୁ ପରେ ପରେ ଏହି ଭାଷାଚର୍ଚ୍ଚାର ପରପଂରାରେ ଏକ ପ୍ରାୟ ନିରବଚ୍ଛିନ୍ନ ଧାରାକୁ ଅନୁଭବ କରିହୁଏ । ଉନବିଂଶ ଶତକର ଚାଳିଶ ଦଶକରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଏହି ଧାରା ଗଡ଼ିଆସିଛି, ଓ ଓଡ଼ିଆ ଭାଷାର ବିଭିନ୍ନ ଦିଗରୁ ଆଲୋଚନାରେ ବହୁ ଭାଷା-ସଚେତନ ବ୍ୟକ୍ତି ଅଂଶଗ୍ରହଣ କରିଛନ୍ତି ।

**ଭାଷା ଭାବନା** ସଂକଳନରେ ଉନବିଂଶ ଶତାବ୍ଦୀର ଶେଷ ଦଶକରୁ ଆରମ୍ଭ କରି ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ବିଭିନ୍ନ ଲେଖକଙ୍କର ରଚନାକୁ ସଂକଳିତ କରାଯାଇଛି । ଏହି ସଂକଳନରେ ୪୯ ଜଣ ଆଲୋଚକଙ୍କର ୫୬ଟି ପ୍ରବଂଧ ରହିଛି । ଏହି

ଭାଷାତତ୍ତ୍ୱ-ଆଲୋଚକମାନେ ଓଡ଼ିଆ ଭାଷାକୁ ବିଭିନ୍ନ ଦିଗରୁ ଆଲୋଚନା କରିଛନ୍ତି, ଯଥା, ଭାଷା, ସଂସ୍କାର, ଲିପି, ଧ୍ୱନି, ଭାଷାର ଇତିହାସ, ଉପଭାଷା, ଭାଷାତତ୍ତ୍ୱ ପ୍ରଭୃତି, ଓ ବହୁ ଭାଷାଗତ ସମସ୍ୟାକୁ ଉତ୍ଥାପିତ କରିବା ସାଙ୍ଗେ ସାଙ୍ଗେ ନିଜ ନିଜର ମତ ଉପସ୍ଥାପନା କରିବା ସହ ସମସ୍ୟା ସମାଧାନ ଦିଗରେ ମଧ୍ୟ ଆଲୋକପାତ କରିଛନ୍ତି । ଭାଷାରେ ସାହିତ୍ୟ ଚର୍ଚ୍ଚା ସହ ଭାଷାଚର୍ଚ୍ଚା ଯେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଏବଂ ଭାଷାର ବିଭିନ୍ନ ଉପାଦାନ ଯେ ଚର୍ଚ୍ଚାର ବିଷୟବସ୍ତୁ ହୋଇପାରେ ତାହା ସ୍ପଷ୍ଟ ହୋଇପାରିଛି । ଆରମ୍ଭର ଭାଷା ଆଲୋଚନା ଓ ପରବର୍ତ୍ତୀ ସମୟର ଭାଷା ଆଲୋଚନା ମଧ୍ୟରେ ବିଭିନ୍ନତା ରହିଛି । ଏହା ସତ୍ତ୍ୱେ ଭାଷା-ସଚେତନତା ଓ ଭାଷା ସଂପର୍କରେ ଆଲୋଚନା, କୁହାଯାଇ ପାରେ, ଗୋଟାଏ ଅବିଚ୍ଛିନ୍ନ ସ୍ରୋତ । ଆରମ୍ଭ ସମୟରେ ଭାଷାଗତ ବିଭିନ୍ନ ସମସ୍ୟା ଆଲୋଚନାର ବିଷୟବସ୍ତୁ ହୋଇଥିବା ବେଳେ ପରବର୍ତ୍ତୀ ସମୟରେ ଭାଷା ହିଁ ଆଲୋଚନାର ବିଷୟବସ୍ତୁ । ବିଶେଷ କରି ଦ୍ୱିତୀୟ ମହାଯୁଦ୍ଧ ପରେ ପଶ୍ଚିମର ବିଶ୍ୱବିଦ୍ୟାଳୟ ମାନଙ୍କରେ ଭାଷା ଅଧ୍ୟୟନ, ଅଧ୍ୟାପନା ଓ ଆଲୋଚନା କ୍ଷେତ୍ରରେ ଯେଉଁ ବିପ୍ଳବାତ୍ମକ ପରିବର୍ତ୍ତନ ଘଟିଲା, ତା'ର ପ୍ରଭାବରେ ଓଡ଼ିଆ ଆଲୋଚକମାନେ ମଧ୍ୟ ପ୍ରଭାବିତ ହେଲେ, ଓ ଏହି ପ୍ରସଙ୍ଗରେ ଗୋଲୋକ ବିହାରୀ ଧଳ, ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ବିଜୟ ପ୍ରସାଦ ମହାପାତ୍ରଙ୍କ ପରି ଭାଷା-ବିଶେଷଜ୍ଞମାନଙ୍କର ଆଲୋଚନାସବୁ ସ୍ମରଣ କରାଯାଇପାରେ । ସେହିପରି ବିଂଶ ଶତାବ୍ଦୀର ଶେଷ ଆଡ଼କୁ ଭାଷା-ଗବେଷକମାନଙ୍କର ଓଡ଼ିଆର ଉପଭାଷା ଓ ଆଞ୍ଚଳିକ ଭାଷାମାନଙ୍କ ସଂପର୍କରେ ବିସ୍ତୃତ ଆଲୋଚନାସବୁ ଗୁରୁତ୍ୱପୂର୍ଣ୍ଣ ଓ ପ୍ରଣିଧାନର ଯୋଗ୍ୟ । ସାଧାରଣ ଭାବରେ, ଜାତିର ପରିଚୟ ଓ ସ୍ଥିତି ପାଇଁ ଭାଷାର ଗୁରୁତ୍ୱ, ଓ ଆଲୋଚକମାନଙ୍କର ଆନ୍ତରିକତା ଓ ଜ୍ଞାନ, ପାଠକକୁ ସଚେତନ କରିବା ସାଙ୍ଗେ ସାଙ୍ଗେ ଅଭିଭୂତ କରେ । ଆଶା ଭାଷା ଭାବନାର ପ୍ରବଂଧଗୁଡ଼ିକ ସୁଧୀ ପାଠକମାନଙ୍କୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଓଡ଼ିଆ ସଂପର୍କରେ ନୂତନ ଭାବରେ ଚିନ୍ତା କରିବା ପାଇଁ ପ୍ରଣୋଦିତ କରିବ ।

ସଂକଳନଟିକୁ ପ୍ରସ୍ତୁତ କରିବାକୁ ଏକାଧିକ ସଂସ୍ଥା, ଲାଇବ୍ରେରୀ ଓ ବହୁ ପୁରାତନ, ଦୁଷ୍ପ୍ରାପ୍ୟ ପତ୍ର ପତ୍ରିକା ଓ ଗ୍ରନ୍ଥରୁ ପ୍ରବନ୍ଧଗୁଡ଼ିକୁ ମୋତେ ସଂଗ୍ରହ କରିବାକୁ ପଡ଼ିଛି । ସେଥି ମଧ୍ୟରୁ ମୁଖ୍ୟ ଭୁବନେଶ୍ୱରର ରାଜ୍ୟ ଅଭିଲେଖାଗାର, ରାଜ୍ୟ ସଂଗ୍ରହାଳୟ ଓ ପୂର୍ବାଞ୍ଚଳ ଭାଷାକେନ୍ଦ୍ରର ଲାଇବ୍ରେରୀ ପ୍ରଭୃତି । ଏହିସବୁ ସଂସ୍ଥାର କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ କୃତଜ୍ଞ । ବିଶେଷ କରି ସେହିସବୁ ସଂସ୍ଥାର କର୍ମକର୍ତ୍ତାମାନେ ମୋତେ ସାହାଯ୍ୟ କରି ମୋର ଶ୍ରମ ଲାଘବ କରିଛନ୍ତି ଏବଂ ସଂକଳନଟିକୁ ପ୍ରସ୍ତୁତ କରିବାରେ ଅକୁଣ୍ଠ ସାହାଯ୍ୟ ପ୍ରଦାନ କରିଛନ୍ତି । ସେଥିପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ନିର୍ଦ୍ଦିଷ୍ଟ ଭାବରେ ମୁଁ ରାଜ୍ୟ ଅଭିଲେଖାଗାରକୁ କୃତଜ୍ଞତାର ସହିତ ସ୍ମରଣ କରୁଛି, କାରଣ ବହୁ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକାର ସୂଚନା ମୁଁ ସେହିଠାରୁ ପାଇ ପାରିଥିଲି ।

ସଂକଳନର ଅନ୍ତର୍ଭୁକ୍ତ ପ୍ରବଂଧଗୁଡ଼ିକୁ ଲେଖକଙ୍କର ଜନ୍ମବର୍ଷ ଅନୁଯାୟୀ ସଜ୍ଜିତ କରାଯାଇଛି । ଯେଉଁମାନଙ୍କର ଜନ୍ମ ବର୍ଷ ମୁଁ ପାଇ ପାରି ନାହିଁ, ସେମାନଙ୍କୁ ମୁଁ ସଂକଳନର ଶେଷ ଆଡକୁ ଅକ୍ଷର କ୍ରମରେ ସ୍ଥାନିତ କରିଛି । ପ୍ରବଂଧ ଗୁଡ଼ିକର ରଚନାର ସମୟ ଉଲ୍ଲେଖ କରାଯାଇଛି, ଓ ଭାଷା ଆଲୋଚନା ସଂପର୍କରେ କିଛି ଦରକାରୀ ବହିର ଗୋଟିଏ ନିର୍ବାଚିତ ତାଲିକା ପରିଶିଷ୍ଟରେ ଦିଆଯାଇଛି ।

**ଭାଷା ଭାବନା** ପ୍ରସ୍ତୁତ କରିବାରେ ମୋ ପରିବାରର ସମସ୍ତ ସଦସ୍ୟ ଯେଉଁମାନେ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷରେ ହେଉ ମୋତେ ବିଭିନ୍ନ ଭାବରେ ସହଯୋଗ କରିଛନ୍ତି ସେମାନଙ୍କୁ ପ୍ରତ୍ୟେକଙ୍କୁ ମୁଁ ମୋର ଆନ୍ତରିକ ସଦିଚ୍ଛା ଜଣାଉଛି । ଏହି ସଂକଳନଟି ମୋର ଯାହା ମନେହୁଏ ଓଡ଼ିଆ ଭାଷାର ଆଲୋଚନା ସଂକ୍ରାନ୍ତରେ ପ୍ରଥମ ସଂକଳନ ଗ୍ରନ୍ଥ । ତେଣୁ ଏହି ସଂକଳନ ଗ୍ରନ୍ଥରେ ପାଠକମାନଙ୍କ ବିଚାରରେ ଯଦି କିଛି ଭୁଲତ୍ରୁଟି ରହିଥାଏ ମୋତେ ଜଣାଇଲେ ମୁଁ ଅତ୍ୟନ୍ତ ଉପକୃତ ହେବି ।

ବିଜୟଲକ୍ଷ୍ମୀ ମହାନ୍ତି
୧୮.୮.୦୮

## ୧

# ଅଭିଭାଷଣ

## ଫକୀର ମୋହନ ସେନାପତି

ଏହି ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ସଭାପତି ପଦ ଗ୍ରହଣ ସକାଶେ ସମ୍ପାଦକ ବାବୁ ମଧୁସୂଦନ ଦାଶ ମହାଶୟଙ୍କଠାରୁ ଆଦେଶ ପତ୍ର ପାଇ ଆଶ୍ଚର୍ଯ୍ୟ ବୋଧ କଲି । ଯେହେତୁ ମନରେ କଲି, ମୁଁ ଯେଉଁମାନଙ୍କ ସାକ୍ଷାତରେ ବସିବାର ଅଯୋଗ୍ୟ, ଏପରି ଅନେକ ଜ୍ଞାନୀ ଏବଂ ବହୁଦର୍ଶୀ ବ୍ୟକ୍ତି କଟକରେ ବିଦ୍ୟମାନ ଥାଉଁ ଥାଉଁ ମତେ ଆହ୍ୱାନ କରିବା ସମ୍ପାଦକ ମହାଶୟଙ୍କ ପକ୍ଷରେ ବଡ଼ ଭୁଲ୍ କାର୍ଯ୍ୟ ହୋଇଅଛି । ଯାହା ହେଉ ମୁଁ ଏହି ମହାସମ୍ମାନିତ ପଦରେ ବରିତ ହୋଇ ଆପଣାକୁ ଯେ ଗୌରବାନ୍ୱିତ ଜ୍ଞାନ କରି ନାହିଁ, ଏ କଥାଟା କହିବା ମୋ ପକ୍ଷରେ ଠିକ୍ ହେବନାହିଁ । କୌଣସି ଜଣେ ସାମାନ୍ୟ କିରାଣୀକୁ ଡିପୋଟି କାର୍ଯ୍ୟରେ ନିଯୁକ୍ତ କଲେ ତାହାର ଆନନ୍ଦ ପ୍ରକାଶ କରିବା ସ୍ୱାଭାବିକ, କିନ୍ତୁ ମକଦ୍ଦମା ବିଚାର ଏବଂ ରାୟ ଲେଖିବା ସମୟରେ ସେ ଆନନ୍ଦର ପରିମାଣଟା ଅନୁଭବ କରେ ।

ସେ ଯାହା ହେଉ ଏହାର ନାମ ଉତ୍କଳସାହିତ୍ୟ ସମାଜ । ମୁଁ ଯେ ସ୍ଥଳେ ସଭାପତିରୂପେ ଉପସ୍ଥିତ, ସେ ସ୍ଥଳେ ଉପସ୍ଥିତ ସଭ୍ୟ ମହାଶୟଗଣ ମୋଠାରୁ କିଞ୍ଚିତ୍ ହେଲେ ମଧ ଉତ୍କଳଭାଷାର ଉତ୍ପତ୍ତି ବିସ୍ତୃତି ଉନ୍ନତି ସମ୍ବନ୍ଧରେ କିଛି କଥା ଶୁଣିବାକୁ ଇଚ୍ଛା କରୁଅଛନ୍ତି । ଦୁର୍ଭାଗ୍ୟ ଯେ, ମୁଁ ସେ ବିଷୟରେ ଅଜ୍ଞ ଅଥବା ସେ ସମ୍ବନ୍ଧରେ ମୁଁ ଯାହା ଦୁଇ ଚାରି କଥା ଜାଣେ, ତାହା କହିବାକୁ ଗଲେ ଏତେ ଅଧିକ ହୋଇ ପଡ଼ିବ ଯେ, ସେଥିରେ ଶ୍ରୋତାମାନଙ୍କର ଧର୍ଯ୍ୟଚ୍ୟୁତି ହେବା ଖୁବୁ ସମ୍ଭବ । ଆମ୍ଭମାନଙ୍କର ଧର୍ମଶାସ୍ତ୍ରମାନଙ୍କରୁ ପ୍ରମାଣ ପାଉଅଛୁଁ ଯେ, ଉଡ୍ର ନାମକ ଏକ ପ୍ରଦେଶ ଏହି ଅଞ୍ଚଳରେ ବିଦ୍ୟମାନ ଥିଲା । ସେ ଦେଶବାସୀମାନେ ଓଡ ବା ଓଡିଆ ନାମରେ କଥିତ ହେଉଥିଲେ । ସେହି ଉଡ୍ରଦେଶ ଖୋରଧା ଅଞ୍ଚଳ ଅଟେ । ବର୍ତ୍ତମାନ କାଳରେ ମଧ ଖୋରଧାର ଚତୁଃପାର୍ଶ୍ୱସ୍ଥ ଲୋକେ ତାହାକୁ ଓଡ଼ିଶା ବୋଲି କହିଥାନ୍ତି । ଇଷ୍ଟ-ଇଣ୍ଡିଆ-କୋମ୍ପାନୀ ପ୍ରଥମ ଉତ୍କଳଖଣ୍ଡରେ ପଦାର୍ପଣ ସମୟରେ ଖୋରଧା ସହିତ ସେମାନଙ୍କର ବିଶେଷ ସମ୍ପର୍କ ଥିବାରୁ ସମସ୍ତ ଉତ୍କଳଖଣ୍ଡ ଓଡ଼ିଶା ନାମରେ ସେମାନଙ୍କ ସେରସ୍ତାରେ ଅଭିହିତ ହୋଇଅଛି ।

ତତ୍‌ପରେ ଆମ୍ଭେମାନେ ମହାଭାରତ, ଭାଗବତ ପ୍ରଭୃତି ପୁରାଣରୁ ଉତ୍କଳ ଦେଶ ନାମ ଶୁଣିବାକୁ ପାଉଁ । ଗଜପତିବଂଶୀୟ ରାଜାମାନେ ବଙ୍ଗ, ଉତ୍କଳ, କର୍ଣ୍ଣାଟ ଯୁକ୍ତପ୍ରଦେଶରେ ଯେଉଁ ରାଜ୍ୟ ସ୍ଥାପନ କରିଥିଲେ, ଉତ୍କଳ ତାହାର ଏକ ଅଂଶ । କଳିଙ୍ଗ ଦେଶର ଉତ୍ତରାଞ୍ଚଳର ନାମ ଉତ୍କଳ ବା ଉତ୍କଳିଙ୍ଗ । ଏହି ଉତ୍କଳ ଦେଶର ସୀମା ସେ ସମୟରେ ତ୍ରିବେଣୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଯଦିଚ ସେହି ଉତ୍କଳ ଛିନ୍ନ ଭିନ୍ନ ହୋଇଅଛି, ବର୍ତ୍ତମାନ ମଧ ଉତ୍ତର ସୀମା ଗଙ୍ଗାକୂଳରେ ଦକ୍ଷିଣ ଗୋଦାବରୀ କୂଳରେ ପ୍ରାଚୀନ ଉତ୍କଳବାସୀମାନଙ୍କ ବଂଶଧରମାନଙ୍କର ଅନେକ ଗ୍ରାମ ବିଦ୍ୟମାନ ଥିବାର ଦେଖାଯାଏ ଏବଂ ସେମାନେ ବଂଶଗତ ବ୍ୟବହାର ହେତୁରୁ ଆଜି ପର୍ଯ୍ୟନ୍ତ ଉତ୍କଳ ଭାଷାରେ କଥୋପକଥନ କରୁଅଛନ୍ତି ।

ଆମ୍ଭେମାନେ ଯେଉଁ ଉତ୍ର ଜାତିର ନାମ ଉଲ୍ଲେଖ କରିଅଛୁଁ, ସେମାନଙ୍କର କୌଣସି ଲିଖିତ ପଠିତ ଭାଷା ବିଦ୍ୟମାନ ଥିଲା କି ନାହିଁ, ସେଥିର ବିଶ୍ୱାସଯୋଗ୍ୟ ପ୍ରମାଣର ଅଭାବ । କେହି କେହି ଅନୁମାନ କରନ୍ତି, କୁଟିଳାକ୍ଷର ସେମାନେ ବ୍ୟବହାର କରୁଥିଲେ । ବର୍ତ୍ତମାନ ଉତ୍କଳଭାଷା ଦୁଇସହସ୍ର ବର୍ଷ ପୂର୍ବେ ଯେ ବିଦ୍ୟମାନ ଥିଲା, ଏ କଥା ନିଃସନ୍ଦେହରୂପେ ବୋଲାଯାଇ ପାରେ । ଯେହେତୁ ଗୋଟିଏ ଭାଷା ପୂର୍ଣ୍ଣାଙ୍ଗରୂପେ - ବ୍ୟାକରଣ ସମ୍ମତ ରୂପେ ଆକାର ଧାରଣ କରିବାକୁ ପ୍ରାୟ ସହସ୍ର ବର୍ଷ ଆବଶ୍ୟକ । ଏକ ହଜାର ବର୍ଷର ପୂର୍ଣ୍ଣାଙ୍ଗ କବିତା ଦେଖିବାକୁ ମିଳେ । ଅବଶେଷରେ ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ଉତ୍କଳ ଭାଷା ବହୁପରିମାଣରେ ଉନ୍ନତି ଲାଭ କରିଥିଲା । ସେହି ସମୟରେ ଅନେକ ଗୁଡ଼ିଏ ଧର୍ମଗ୍ରନ୍ଥ ଏବଂ କାବ୍ୟଗ୍ରନ୍ଥ ରଚିତ ହେବାର ଜଣାଯାଏ ।

ମୁସଲମାନ ଏବଂ ମରହଟ୍ଟାମାନଙ୍କ ଏ ଦେଶକୁ ଆଗମନଠାରୁ ଉତ୍କଳ ଭାଷାର ପତନର କାଳ ଆରମ୍ଭ ହେଲା । ତାତ୍‌କାଳିକ ତଥାକଥିତ ରାଜ୍ୟେଶ୍ୱରମାନେ ଯେ କୌଣସି ରୂପେ ହେଉ କର ସଂଗ୍ରହରେ ବ୍ୟସ୍ତ ଏବଂ ପ୍ରଜାସାଧାରଣ ଶାସନର ଶୈଥିଲ୍ୟ ହେତୁରୁ ଏତେଦୂର ବ୍ୟସ୍ତ ହୋଇ ପଡ଼ିଥିଲେ ଯେ, ସେମାନଙ୍କର ଶାସ୍ତ୍ରାଲୋଚନା କରିବାର ଅବକାଶ ନଥିଲା ଏବଂ ଆଭ୍ୟନ୍ତରୀଣ ଗୋଳମାଳ ହେତୁରୁ ଅନେକ ଗ୍ରନ୍ଥ ଲୁପ୍ତ ହୋଇଅଛି । ପ୍ରଜାସାଧାରଣ ଏତେଦୂର ବ୍ୟସ୍ତ ହୋଇ ପଡ଼ିଥିଲେ ମଧ ଆପଣାର ମାତୃଭାଷା ଲିଖିତ ଅନେକଗୁଡ଼ିଏ କାବ୍ୟ ଏବଂ ଧର୍ମଗ୍ରନ୍ଥ ଆପଣା ହୃଦୟ ମଧରେ ଗୋପନ କରି ରଖିଥିଲେ । ଏହି ହେତୁରୁ ବର୍ତ୍ତମାନ ଶତ ଶତ ପ୍ରାଚୀନ ଗ୍ରନ୍ଥ ଦେଖିବାକୁ ପାଉଅଛୁଁ । ଏଥି ପୂର୍ବେ ଉତ୍କଳ ଭାଷାର ବିକାଶର ଅନ୍ୟତମ କାରଣ ଏହି କି, ମୁଷଲମାନଙ୍କ ଆଗମନଠାରୁ ୧୮୩୭ ସାଲ ପର୍ଯ୍ୟନ୍ତ ରାଜକୀୟ ଭାଷା ଫାର୍ଶିଥିଲା । ଉତ୍କଳବାସୀ ଫାର୍ଶି ଜାଣି ନଥିବାରୁ ଭିନ୍ନ ଦେଶୀୟ ଲୋକେ ରାଜକର୍ମଚାରି ରୂପେ ଉତ୍କଳରେ ପୂର୍ଣ୍ଣ ହୋଇଗଲେ । ରାଜଭାଷା ଫାର୍ଶି ଥିବା

ହେତୁରୁ ଦେଶୀୟ ଭାଷା ଅଧ୍ୟୟନ ପ୍ରତି କାହାରି ଆସ୍ଥା ରହିଲା ନାହିଁ ।

ଆମ୍ଭମାନଙ୍କର ପ୍ରଜାହିତୈଷୀ ଗବର୍ଣ୍ଣମେଣ୍ଟ ଯଦିଚ ଅର୍ଦ୍ଧଶତାବ୍ଦୀ ଗତ ହେଲା ଆମ୍ଭମାନଙ୍କ ଶିକ୍ଷା ବିଷୟରେ ବିଶେଷ ମନୋଯୋଗୀ ହୋଇଅଛନ୍ତି, ମାତ୍ର ଦେଶୀୟ ଲୋକେ ମାତୃଭାଷାଚର୍ଚ୍ଚା ବିଷୟରେ ମନୋଯୋଗୀ ହେବା ୪୦ ବର୍ଷରୁ ଅଧିକ ନୁହେଁ । ଏଥିପାଇଁ ଭାରତ ବର୍ଷର ଅନ୍ୟାନ୍ୟ ଚିହ୍ନିତ ଜାତିମାନଙ୍କ ମଧ୍ୟରେ ଆମ୍ଭମାନଙ୍କ ମାତୃଭାଷା ଅବନତ ହୋଇ ପଡ଼ିଅଛି । ଗୋଟିଏ ଦୀପଦଣ୍ଡିକୁ ମାପିଲେ ପୁଷ୍କରିଣୀର ଜଳର ଗାମ୍ଭୀର୍ଯ୍ୟ ଜଣାଯାଏ । ସେହିପରି ଦେଶ ମଧ୍ୟରେ ପ୍ରଚଳିତ ସାମୟିକ ପତ୍ରିକାର ବିଷୟ ଆଲୋଚନା କଲେ ଆମ୍ଭମାନଙ୍କ ମାତୃଭାଷା କିପରି ଅବସ୍ଥାରେ ଅଛି, ସହଜରେ ଜଣାଯିବ । ବର୍ତ୍ତମାନ ବଙ୍ଗଦେଶରେ ମାସିକ ପତ୍ରିକା ୩୦୦ ଖଣ୍ଡ, ମାନ୍ଦ୍ରାଜରେ ୧୪୯ଖଣ୍ଡ, ବୋମ୍ବାଇରେ ୩୦୩ ଖଣ୍ଡ, ପଞ୍ଜାବରେ ୧୦୩ ଖଣ୍ଡ, ଯୁକ୍ତପ୍ରଦେଶରେ ୯୮ ଖଣ୍ଡ, ବିହାରରେ ୨୦ଖଣ୍ଡ, ମଧ୍ୟପ୍ରଦେଶରେ ୧୫ଖଣ୍ଡ, ଆସାମରେ ୪ଖଣ୍ଡ, ଆଉ ଆପଣମାନେ ବିଶେଷ ମନୋଯୋଗୀ ହୋଇ ଶୁଣନ୍ତୁ, ଉତ୍କଳରେ ଦୁଇ ଖଣ୍ଡ ମାତ୍ର ମାସିକ ପତ୍ରିକା ବିଦ୍ୟମାନ, ସେମାନଙ୍କ ଅବସ୍ଥା ମଧ୍ୟ ସେପରି ସ୍ୱଚ୍ଛଳ ନୁହେଁ ।

ସରକାର ବାହାଦୁରଙ୍କ ବିଶେଷ ଅନୁଗ୍ରହ ବିଶେଷ ଯତ୍ନ ହେତୁରୁ ସକଳ ଜ୍ଞାନର ଆକାର ସ୍ଥୁଳ ଇଂରାଜୀ ଭାଷା ଶିକ୍ଷାର ଦ୍ୱାର ଆଁମ୍ଭମାନଙ୍କ ସମ୍ମୁଖରେ ଉନ୍ମୁକ୍ତ । ତଦ୍ୱାରା ଦର୍ଶନ ବିଜ୍ଞାନ ରସାୟନ ପ୍ରଭୃତି ଉଚ୍ଚାଙ୍ଗ ଶିକ୍ଷା ସହଜରେ ଲାଭ କରି ପାରୁଁ । ମଧ୍ୟ ଦେଶର ଜ୍ଞାନୋନ୍ନତି ପକ୍ଷରେ ଏହା ବିଶେଷ ସହାୟ । କିନ୍ତୁ ଏହା ସର୍ବସାଧାରଣଙ୍କର ବୁଦ୍ଧିର ଗମ୍ୟ ହେବ ନାହିଁ । ଯେଉଁ କୃଷକ ଏବଂ ଶିଳ୍ପୀମାନେ ଦେଶର ମେରୁଦଣ୍ଡସ୍ୱରୂପ ଏବଂ ଯେଉଁମାନଙ୍କୁ ବିଜ୍ଞାନସମ୍ମତ ରୂପେ ଶିକ୍ଷା ଦେଇ ସେମାନଙ୍କ ଅବସ୍ଥା ଉନ୍ନତ କରାଇବାକୁ ହେବ, ପୁଣି ଯେଉଁ ଜନନୀସମାଜ ଉପରେ ବାଲ୍ୟଶିକ୍ଷା ନିର୍ଭର କରେ, ସେମାନଙ୍କ ସକାଶେ ମାତୃଭାଷାର ଉନ୍ନତି ଏବଂ ବହୁଳ ଚର୍ଚ୍ଚା ନିତାନ୍ତ ଆବଶ୍ୟକ । ସହସ୍ର ବର୍ଷ ଚେଷ୍ଟାରେ ମଧ୍ୟ ବିଦେଶୀୟ ଭାଷା ସେମାନଙ୍କ ମଧ୍ୟରେ ପ୍ରଚାରିତ ହୋଇ ପାରିବ ନାହିଁ । ବିଦେଶୀୟ ଭାଷା ଅବଲମ୍ବନରେ କୌଣସି ଜାତି ଉନ୍ନତି ଲାଭ କରିଅଛନ୍ତି, ଏଥିରେ ପ୍ରମାଣାଭାବ । ଆମ୍ଭେମାନେ ଏଠାରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଖାଇ ପାରୁଁ । ଲାଇବ୍ରେରିଆ ପ୍ରଦେଶରେ ମୁକ୍ତ ଦାସ ଜାତିମାନଙ୍କର ରାଜକୀୟ ଏବଂ ଅଧୀତ ଭାଷା ଇଂରାଜୀ । ଶତ ବର୍ଷ ମଧ୍ୟରେ ସେହି ଜାତି ସାଧାରଣ ଉନ୍ନତିମାର୍ଗକୁ କିଞ୍ଚିତ୍ ହେଲେ ଅଗ୍ରସର ହୋଇଅଛନ୍ତି, ଏ କଥା ବୋଲା ଯାଇ ନ ପାରେ । ଓ୍ୱେଲସ୍ ଦେଶବାସିମାନେ ଏଥିର ମର୍ମ ବିଶେଷରୂପେ ଅବଗତ ଅଛନ୍ତି । ଇଂରାଜୀ ସେମାନଙ୍କର ପ୍ରତିବେଶୀ ଭାଷା ଏବଂ ସେହି ଭାଷା ସହିତ ନିଜ ଭାଷାର ଅନେକ ସୌସାଦୃଶ୍ୟ ଥିଲେ ମଧ୍ୟ ମାତୃଭାଷାର ରକ୍ଷାପାଇଁ ସେମାନେ ପ୍ରାଣପଣେ ଚେଷ୍ଟା କରୁଅଛନ୍ତି । ପରକୀୟ

ଭାଷା ଶିକ୍ଷା ଜଳ ଉପରେ ଘୃତବିନ୍ଦୁ ପତନବତ୍ ଅର୍ଥାତ୍ ଶିକ୍ଷାକାରୀ ହୃଦୟରେ ଜ୍ଞାନ ଆବଦ୍ଧ ରହେ । ମାତୃଭାଷା ଶିକ୍ଷା ଜଳ ଉପରେ ତୈଳବିନ୍ଦୁ ପତନବତ୍ ଅର୍ଥାତ୍ ଦେଶ ମଧ୍ୟରେ ସର୍ବତ୍ର ବିସ୍ତାର ଲାଭ କରେ । ଗୋଟିଏ ନିତାନ୍ତ ନିରକ୍ଷର ଗାଈରଖା ପିଲା ଗୋରୁ ଛାଡ଼ି ଦେଇ ଗଛ ମୂଳରେ ବସି ଦୁଇପଦ ଭାଗବତ କିମ୍ବା ଉପେନ୍ଦ୍ର ଭଞ୍ଜ ଗୀତ ଗାଉଥାଏ । କେତେଦିନ ଚେଷ୍ଟାରେ ସେ ମିଲ୍‌ଟନ୍ କିମ୍ବା ସେକ୍‌ପୀୟରଙ୍କ କବିତା ଆବୃତ୍ତି କରି ପାରିବ, ତାହା ଆପଣମାନେ ବିବେଚନା କରନ୍ତୁ ।

ଇଂରାଜୀ ବେଦରେ ଲିଖିତ ଅଛି, ଈଶ୍ୱର ସମସ୍ତଙ୍କର ଗୋଟିଏ ଗୋଟିଏ ଭାଷା ନିରୂପଣ କରି ଦେଇଅଛନ୍ତି, କିନ୍ତୁ ପ୍ରକୃତରେ ଦେଖାଯାଏ, ଜଳବାୟୁ ଏବଂ ମାନବ ପ୍ରକୃତିର ଉପଯୋଗୀ ଭାଷା ସ୍ୱତନ୍ତ୍ର ସ୍ୱତନ୍ତ୍ର । ପୁରାଣରେ ଲିଖିତ ଅଛି, ଭାଷା ବ୍ରହ୍ମମୟୀ । ସେହି ଭାଷା ହେତୁରୁ ମାନବ ସମାଜ ଏକତ୍ର ଆବଦ୍ଧ ଥାଏ । ଏଥିପାଇଁ ମାତୃଭାଷା ଅଧ୍ୟୟନ ଅନ୍ୟତମ ପୁଣ୍ୟ କାର୍ଯ୍ୟ ଅଟେ । ଏଥିପାଇଁ ଅନ୍ୟତମ ଅବତାରସ୍ୱରୂପ ମହାତ୍ମା ରାଜା ରାମମୋହନ ରାୟ କହି ଯାଇଅଛନ୍ତି - ଈଶ୍ୱର ଧ୍ୟାନ, କର୍ତ୍ତବ୍ୟପାଳନ, ମାତୃଭାଷାର ଉନ୍ନତିସାଧନ ଚେଷ୍ଟା ପରମଧର୍ମ ଅଟେ । ଆର୍ଯ୍ୟ ପୌରାଣିକ ୩୩ କୋଟି ଦେବତା କଳ୍ପନା କରିଅଛନ୍ତି, କିନ୍ତୁ ସର୍ବଶ୍ରେଷ୍ଠା ମହାଦେବୀ ଜନ୍ମଭୂମି ବିଷୟ ଉଲ୍ଲେଖ ମଧ୍ୟ କରି ନାହାନ୍ତି । ୪୦ ବର୍ଷ ପୂର୍ବେ ବଙ୍ଗକବି ଜନ୍ମଭୂମିକୁ ମହାଦେବୀ ରୂପେ କଳ୍ପନା କରିଅଛନ୍ତି । କିନ୍ତୁ ତାହାଙ୍କର ୩୦୦ ବର୍ଷ ପୂର୍ବେ ଉତ୍କଳ କବି ଦୀନକୃଷ୍ଣ ଦାସ ଜନ୍ମଭୂମିକୁ ମହାଦେବୀରୂପେ ବର୍ଣ୍ଣନ କରିଅଛନ୍ତି ।

ଆମ୍ଭମାନଙ୍କର ପ୍ରତିବାସୀ ବଙ୍ଗଭାଷା ଆଜି ପୃଥିବୀବିଖ୍ୟାତ । ତୁଳନାରେ ଆମ୍ଭେମାନେ କେତେ ତଳେ ପଡ଼ିଅଛୁ । ୫୦/୬୦ ବର୍ଷ ପୂର୍ବେ ବଙ୍ଗଭାଷା ଅତି ଅପୂର୍ଣ୍ଣ ଅବସ୍ଥାରେ ଥିଲା, ଆଉ ଆମ୍ଭମାନଙ୍କର ସହସ୍ରାଧିକ ବର୍ଷର ଗଠିତ ଭାଷା ଅପରିଚିତା ହୋଇ ପଡ଼ିଅଛି । ଯଦିଚ ରାଜା ରାମମୋହନ ରାୟ ବଙ୍ଗଳା ଭାଷାର ଗଦ୍ୟର ଉତ୍ପତ୍ତିକାରକ, କିନ୍ତୁ ଫୋର୍ଟ ଉଇଲିୟମ ଦୁର୍ଗରେ ନବାଗତ ସିଭିଲିଆନ ମାନଙ୍କର ବଙ୍ଗଭାଷା ଶିକ୍ଷା ନିମନ୍ତେ ଯେଉଁ ମହାତ୍ମା ଖଣ୍ଡିଏ ଗଦ୍ୟ ଗ୍ରନ୍ଥ ରଚନା କରିଥିଲେ, ବୋଧ ହୁଏ ତାହାଙ୍କର ନାମ ମୃତ୍ୟୁଞ୍ଜୟ ତର୍କପଞ୍ଚାନନ । ସେ ଜଣେ ଉତ୍କଳଶ୍ରେଣୀୟ ବ୍ରାହ୍ମଣ ଏବଂ ନିବାସ ଯାଜପୁର । ଗୋପାଳ ଦାସ ବା ଗୋପାଳ ଓଡ଼ିଆ ନାମକ ଯାଜପୁରନିବାସୀ ଜଣେ ଉତ୍କଳୀ ଅର୍ଦ୍ଧଶତାବ୍ଦୀ ପୂର୍ବେ ଅନେକଗୁଡ଼ିଏ ଆଦର୍ଶ ସଙ୍ଗୀତ ରଚନା କରି ବଙ୍ଗବାସୀମାନଙ୍କୁ ଦେଇଥିଲେ । ଯଦିବା ବଙ୍ଗର ଗୃହଲକ୍ଷ୍ମୀମାନଙ୍କ ମଧ୍ୟରେ ବର୍ତ୍ତମାନ ଗଣା ଅଧିକ ୩/୪ ଶତ ସାନ ବଡ଼ କବି ଥିବେ, ୫୦/ ୬୦ ବର୍ଷ ପୂର୍ବେ ଜଣେ ହେଲେ ଦୁଇ ଧାଡ଼ି କବିତା ଲେଖିବା କଥା ଅନ୍ତତଃ ଲେଖକ ଜାଣେ ନାହିଁ । ମାତ୍ର ପ୍ରାୟ ୪ଶତ ବର୍ଷ ପୂର୍ବେ ଗୋଟିଏ ଉତ୍କଳ କରଣକନ୍ୟା ମାଧବୀ ଦେବୀ ଯେଉଁ ପଦାବଳୀ ଲେଖି ଯାଇଛନ୍ତି, ଉକ୍ତ ବୈଷ୍ଣବ ଗୋସ୍ୱାମୀମାନେ ଅଦ୍ୟାବଧି ତାହା ଭକ୍ତି

ପୂର୍ବକ ପାଠ କରୁଅଛନ୍ତି ।

ବ୍ରହ୍ମାନନ୍ଦ ଭାରତୀ ୩ଶତ ବର୍ଷ ପୂର୍ବେ ଚଟ୍ଟଳ ଅଞ୍ଚଳରେ ତାନ୍ତ୍ରିକ ଧର୍ମର ପ୍ରଚାରକ ଥିଲେ । ସେ ଅନେକ ସାର୍ବଭୌମିକ ପଣ୍ଡିତଙ୍କୁ ଯୁକ୍ତିବଳରେ ଜୟ କରିଥିବା କଥା ଚଟ୍ଟଳ ଅଞ୍ଚଳରେ ପ୍ରଚଳିତ ଅଛି । ତାହାଙ୍କ ପରିତ୍ୟକ୍ତ ଗାଦିରେ ଅନେକ ଗୁଡ଼ିଏ ଉତ୍କଳଭାଷାଗ୍ରନ୍ଥ ବହୁ ବର୍ଷ ପର୍ଯ୍ୟନ୍ତ ଥିଲା, ଏକଥା ଲେଖକଙ୍କୁ ଜଣା । ଆଉ ବର୍ତ୍ତମାନ ତାଙ୍କର ଧର୍ମମତାବଲମ୍ବୀ ସହସ୍ର ସହସ୍ର ଲୋକ ଉକ୍ତ ଅଞ୍ଚଳରେ ଅଛନ୍ତି । ଏସବୁ କଥା କହିବାର ଉଦ୍ଦେଶ୍ୟ ଏହି ଯେ, ପୂର୍ବେ ଉତ୍କଳବାସୀ ଜ୍ଞାନୀ ଲୋକମାନେ ମାତୃଭାଷାଚର୍ଚ୍ଚା ଉପରେ ପ୍ରତିବାସୀମାନଙ୍କ ଭାଷାରେ ମଧ୍ୟ ଗ୍ରନ୍ଥମାନ ଲେଖୁଥିଲେ ଏବଂ ପ୍ରଚାର କରୁଥିଲେ । ଆମ୍ଭେମାନେ କି ସେହିମାନଙ୍କ ବଂଶଧର !

ବଙ୍ଗଭାଷାର ଅସୀମ ଉନ୍ନତିକାଳ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଅଟେ । ଯଦିଚ ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବଙ୍ଗଭାଷାରେ ମୂଳ ଉନ୍ନତିକାରକ, କିନ୍ତୁ ସେମାନଙ୍କର ଭାଷା ବିଦ୍ୟାଳୟ ଏବଂ ପୁସ୍ତକାଳୟ ମଧ୍ୟରେ ଆବଦ୍ଧ ଥିଲା । ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ, ଦୀନବନ୍ଧୁଙ୍କ ନାଟକ ଏବଂ ଜଗଦ୍‌ବିଖ୍ୟାତ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସକାଶେ ବଙ୍ଗଭାଷା ହଠାତ୍ ଖ୍ୟାତି ଲାଭ କରିଅଛି । ଆଗେ ଶିକ୍ଷିତ ବଙ୍ଗବାସୀମାନେ ଅବଜ୍ଞାନେତ୍ରରେ ମାତୃଭାଷାକୁ ଦେଖୁଥିଲେ । ବର୍ତ୍ତମାନ ବଙ୍ଗଦେଶୀୟ ଶିକ୍ଷିତା କୁଳଲକ୍ଷ୍ମୀ ଏବଂ କର୍ମକ୍ଳାନ୍ତ ଶିକ୍ଷିତ ବଙ୍ଗବାସୀମାନଙ୍କ ହସ୍ତରେ ସର୍ବଦା ମାତୃଭାଷା ପୁସ୍ତକ ଦେଖିବାକୁ ମିଳେ ଏବଂ ବର୍ତ୍ତମାନ ବଙ୍ଗଦେଶୀୟ ରାଜା, ମହାରାଜା, ସମସ୍ତ ଶ୍ରେଣୀର ଲୋକେ ମାତୃଭାଷାର ଉନ୍ନତିକଳ୍ପେ ବିଶେଷ ଯତ୍ନଶୀଳ ହେବାରୁ ଭାଷା ଏତେଦୂର ଉନ୍ନତି ଲାଭ କରିଅଛି । ଏଥିକୁ ନିଃସନ୍ଦେହ ରୂପେ ବୋଲାଯାଇପାରେ, ଜାତିସାଧାରଣ ମଧ୍ୟରେ ମାତୃଭାଷା ପ୍ରଚାର କରିବା ଆବଶ୍ୟକ ହେଲେ ଉପନ୍ୟାସ ନାଟକ, ସଙ୍ଗୀତ ଏହି ତିନି ଶ୍ରେଣୀର ଗ୍ରନ୍ଥ ବହୁଳ ପ୍ରଚାର କରିବା ଆବଶ୍ୟକ ।

ବଙ୍ଗଭାଷାରେ ପ୍ରାୟ ୩୦୦ ଶତ ଖଣ୍ଡ ମାସିକ ପତ୍ରିକାର ପ୍ରଚାର ଦେଖାଯାଏ । ଉପନ୍ୟାସହୀନ କୌଣସି ପତ୍ରିକା ନାହିଁ, ସେହି ଉପନ୍ୟାସ ପ୍ରଲୋଭନରୁ ମାସିକ ପତ୍ରିକା ସଂଖ୍ୟା ଏତେ ବଢ଼ି ଅଛି । ସମୟ ସମୟରେ ଲୋକ ସାଧାରଣରେ ନାଟକ ବା ଉପନ୍ୟାସ ଅସୀମ ଶକ୍ତି ପ୍ରକାଶ କରିଥାଏ । ବଙ୍ଗଦେଶରେ 'ନୀଳଦର୍ପଣ' ନାଟକ ଏବଂ 'କୁଳୀନକୁଳସର୍ବସ୍ୱ' ନାଟକ ଦେଶ ମଧ୍ୟରେ ଅସୀମ ଉପକାର ସାଧନ କରି ଯାଇଅଛି, ତାହା ଶିକ୍ଷିତ ଲୋକମାନେ ଅବଗତ ଅଛନ୍ତି ।

ଆପଣମାନେ ତାନପୁରା ଯନ୍ତ୍ର ଦେଖିଥିବେ । ଅନେକଗୁଡ଼ିଏ ପିତ୍ତଳ ତାର ଝନ ଝନ କରୁଥାଏ । ଗୋଟିଏ ଲୌହ ତାର ଆସି ମ୍ୟାଉଁ ଶବ୍ଦ କଲେ କେଡ଼େ ସୁମଧୁର ଶବ୍ଦ ବାହାରି

ପଡ଼େ । ଭାରତବର୍ଷର ପ୍ରତ୍ୟେକ ଶିକ୍ଷିତ ଲୋକ ହୃଦୟରେ ଜନ୍ମଭୂମି ପ୍ରତି ଭକ୍ତି ବିରାଜିତ । ମାତ୍ର ସମସ୍ତେ ସ୍ୱତନ୍ତ୍ର ଥିଲେ । ଉପନ୍ୟାସକାର ଗୋଟିଏ ଚିତ୍ର ଦେଖାଇ ଉଚ୍ଚାରଣ କଲେ "ବନ୍ଦେ ମାତରମ୍ । ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଏକତା ଉଠିଲା, "ବନ୍ଦେ ମାତରମ୍ ।" 'ଅଙ୍କଲ୍ ଟମସ କେବିନ' ଉପନ୍ୟାସ ପାଠ କରି ଲକ୍ଷ ଲକ୍ଷ ଆମେରିକାବାସୀ ଦାସ ବ୍ୟବସାୟ ବିପକ୍ଷରେ ଜୀବନଦାନ ନିମନ୍ତେ ରଣକ୍ଷେତ୍ରକୁ ଧାବିତ ହୋଇଥିଲେ ।

ଥୋକେ ଲୋକ ମନରେ କରନ୍ତି, ଇଂରାଜୀ ଶିକ୍ଷା ପ୍ରଭାବରୁ ଉପନ୍ୟାସ ନାମ ଜାଣିଲୁଁ, କିନ୍ତୁ ନିଶ୍ଚୟ କଥା, ଉପନ୍ୟାସ, ନାଟକ, ଦର୍ଶନଶାସ୍ତ୍ରର ଉତ୍ପତ୍ତିସ୍ଥାନ ଭାରତବର୍ଷ ଅଟେ। ଦର୍ଶନ କିମ୍ବା ନାଟକ ବିଷୟରେ ଯଦିଚ କାହାରି କିଛି ବକ୍ତବ୍ୟ ନାହିଁ, କିନ୍ତୁ ଦୃଢ଼ରୂପେ ବୋଲାଯାଇ ପାରେ, ବହୁ ସହସ୍ର ବର୍ଷ ପୂର୍ବେ ରଚିତ ବେଦରେ ଲିଖିତ ନଚିକେତା ଉପାଖ୍ୟାନ କିମ୍ବା ଇନ୍ଦ୍ର ବରୁଣ ସଂବାଦକୁ ବୈଦିକ ଉପନ୍ୟାସ ବୋଲାଯାଇ ପାରେ । ଏଥିରେ ଯଦି କାହାରି କିଛି ଆପତ୍ତି ଥାଏ, ତେବେ ସର୍ବସାଧାରଣରେ ଧର୍ମଗ୍ରନ୍ଥ ପ୍ରଚାର ନିମନ୍ତେ ଭଗବାନ୍ ବେଦବ୍ୟାସ ଅଷ୍ଟାଦଶ ପୁରାଣ ବା ଉପନ୍ୟାସ ରଚନା କରିଅଛନ୍ତି । ଏହି ପୌରାଣିକ ବାକ୍ୟ ଅସ୍ୱୀକାର କରିବା କାହାରି ଆୟତ୍ତ ନାହିଁ । ସମସ୍ତ ପୁରାଣ ରଚନା କରି ମହାଭାରତ ପରିଶିଷ୍ଟରେ ସ୍ୱୟଂ ଭଗବାନ୍ ବେଦବ୍ୟାସ ଈଶ୍ୱରଙ୍କଠାରେ କ୍ଷମା ପ୍ରାର୍ଥନା କରିଅଛନ୍ତି-

ରୂପଂ ରୂପବିବର୍ଜିତସ୍ୟ, ଭବତୋ ଧ୍ୟାନେନ ଯଦ୍‌ବର୍ଣ୍ଣିତଂ
ସ୍ତୁତ୍ୟାର୍ବନୀଚନୀୟତାଖିଳ ଗୁରୋ ଦୂରୀକୃତଂ ଯନ୍ମୟା ।
ବ୍ୟାପିତ୍ୱଞ୍ଚ ବିନାଶିତଂ ଭଗବତୋ ଯତ୍ତୀର୍ଥଯାତ୍ରାଦିନ
କ୍ଷନ୍ତବ୍ୟଂ ଜଗଦୀଶ ତଦ୍‌ବିହଳତା ଦୋଷତ୍ରୟଂ ମତ୍‌କୃତଂ ।

କେହି ବା ମନରେ କରିବେ, ମୁଁ ଦୁଇ ଖଣ୍ଡ ସାମାନ୍ୟ ଉପନ୍ୟାସ ଲେଖିଅଛି ବୋଲି ଉପନ୍ୟାସର ଏତେ ପ୍ରଶଂସା କଲି; କିନ୍ତୁ ମୋ ନିଜ ପକ୍ଷର କୈଫିୟତ୍ ଏହି ଯେ, ଗୋଟିଏ ନିବିଡ଼ ଜଙ୍ଗଲରେ ବାଟ ନ ଥିଲେ କୁଲି ଶ୍ରେଣୀର ଲୋକ ଜଙ୍ଗଲ କାଟି ବାଟର ଛାଞ୍ଚ କରି ଦେଲା ଉତ୍ତାରେ ଜ୍ଞାନବନ୍ତ ଇଞ୍ଜିନିୟରମାନେ ଆସି ସୁନ୍ଦର ସଡ଼କ ପ୍ରସ୍ତୁତ କରିଥାନ୍ତି । ଅତଃପର ଶିକ୍ଷିତ ଲୋକମାନେ ଭଲ ଉପନ୍ୟାସ ଲେଖିବେ, ସେଥିପାଇଁ ମୁଁ ଗୋଟାଏ ଛାଞ୍ଚ କରି ଯାଉଅଛି ।

ମହାରାଜା ବାମଡ଼ା, ମହାରାଜା ସୋନପୁର, ମହାରାଜା ଟିକିଟି, ମହାରାଜା ଧରାକୋଟ, ମହାରାଜା ସୁରଙ୍ଗି, ପାରଳାଖେମୁଣ୍ଡି ରାଜବଂଶ, ଟିକାଲୀର କୁମାର ତାଳଚେର, ରାଜଖେମଣ୍ଡି ଖଣ୍ଡେଶ୍ୱର ମହୋଦୟଗଣ ଯେ ସ୍ଥଳରେ ନିଜେ କାବ୍ୟକାର, ନାଟକ ଲେଖକ, ସଙ୍ଗୀତ ରଚକ ଏବଂ ଗ୍ରନ୍ଥକର୍ତ୍ତାଙ୍କ ଉତ୍‌ସାହଦାତାରୂପେ ଆବିର୍ଭୂତ ହୋଇଅଛନ୍ତି, ସେ ସ୍ଥଳରେ ଅଚିର ଭବିଷ୍ୟତ୍ ମଧ୍ୟରେ ଉତ୍କଳଭାଷା ଉନ୍ନତି ଲାଭ କରିବ, ନିଃସନ୍ଦେହରୂପେ ବୋଲାଯାଇ

ପାରେ । ଦେଶୀୟ ଭାଷାର ଉନ୍ନତି ଦେଶପତିମାନଙ୍କ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରେ । ଭାରତର ବିକ୍ରମାଦିତ୍ୟ, ଭୋଜ, ବିଦେଶର ଏଲିଜାବେଥ, ମହାରାଜା ଜର୍ଜ ବା ଉଇଲିୟମ ପ୍ରମାଣସ୍ଥଳ ।

ବର୍ତ୍ତମାନ ମୁଁ ମାତୃଭାଷାର ସହସା ଉନ୍ନତିର ଅନ୍ତରାୟ ସମ୍ବନ୍ଧରେ କେତୋଟି କଥା କହିବାକୁ ଇଚ୍ଛା କରେଁ । ଉତ୍କଳର କେତେ ତପସ୍ୟାବଳରେ ରାଜରାଜେଶ୍ୱରଙ୍କର ପ୍ରଧାନ ପ୍ରତିନିଧି ଉତ୍କଳରେ ପଦାର୍ପଣ କରିଥିଲେ । ସେ ସମୟରେ କୋଟି ଉତ୍କଳବାସୀ ବହୁ ଆଶା ଓ ଆକାଙ୍କ୍ଷା ହୃଦୟରେ ପୋଷଣ କରି ପ୍ରତୀକ୍ଷାପୂର୍ଣ୍ଣ ନୟନରେ ଚାହିଁ ବସିଥିଲେ । ମହାମହିମ ଏପରି ଗୋଟିଏ ବର ଦେଇଯିବେ, ଯଦ୍ୱାରା ଉତ୍କଳର ସମସ୍ତ ଦୁଃଖ ଦୁର୍ଦ୍ଦଶା ଦୂର ହେବ । ସେ ବର କଣ ନା ଛିନ୍ନ ଭିନ୍ନ ଉତ୍କଳକୁ ଏକତ୍ର କରିବା । ଦୁର୍ଭାଗ୍ୟବଶତଃ ଆମ୍ଭମାନଙ୍କର କେଉଁ ମହାପାପରୁ କେଜାଣି ଆପାତତଃ ସେ ଆଶା ପୂର୍ଣ୍ଣ ହେଲା ନାହିଁ । କିନ୍ତୁ ଉତ୍କଳବାସୀ ଚିରକାଳ ରାଜଭକ୍ତ, ରାଜ୍ୟେଶ୍ୱରଙ୍କୁ ମହତୀ ଦେବତା ତୁଲ୍ୟ ଜ୍ଞାନ କରନ୍ତି । ସେହି ଦେବତାଙ୍କଠାରୁ ବର ସହଜଲଭ୍ୟ ନୁହେଁ । ଦୀର୍ଘକାଳ ତପସ୍ୟା, ସାଧନା, ଧାରଣା ଆବଶ୍ୟକ । ଆଜିଠାରୁ ଉତ୍କଳବାସୀ ପୁତ୍ରପୌତ୍ରାଦି କ୍ରମେ ପ୍ରତିନିୟତ ଆପଣା ଦୁର୍ଦ୍ଦଶା ମୋଚନ ନିମନ୍ତେ ପ୍ରାର୍ଥନା ଜଣାଇଲେ ନିଶ୍ଚୟ ଦିନେ ମହାମହିମଙ୍କ ବ୍ରିଟନସ୍ଥ ସିଂହାସନ ଟଳି ଯିବ । ଅବଶ୍ୟ ଆଶାପୂର୍ଣ୍ଣ ହେବ ।

ବର୍ତ୍ତମାନ ସର୍ବସାଧାରଣଙ୍କଠାରେ ମୋର ସିଂହଭୂମିର ଅଧିବାସୀମାନେ ମାତୃଭାଷା ହରାଇ ଦୀର୍ଘକାଳ ଯାବତ୍ କଷ୍ଟ ଭୋଗ କରୁଅଛନ୍ତି । ଆସନ୍ତୁ ଆମ୍ଭେମାନେ ସେହି ବିଚ୍ଛିନ୍ନ ଭ୍ରାତାମାନଙ୍କୁ କୋଳକୁ ନେବା ସକାଶେ ଚେଷ୍ଟା କରିବା । ଗୋଟିଏ କ୍ଷୁଦ୍ର ଉପାୟ ମୋ ହୃଦୟରେ ଉଦିତ ହେଉଅଛି । କେତେକ ଜଣ ଦେଶହିତୈଷୀ ଶିକ୍ଷିତ ଯୁବକ କେତେକ ହଜାର ଉତ୍କଳୀୟଙ୍କ ସ୍ୱାକ୍ଷର ଗ୍ରହଣ କରି ସରକାର ବାହାଦୁରଙ୍କଠାକୁ ପଠାନ୍ତୁ । ଦେବତାଙ୍କ ଆବିର୍ଭାବ ବ୍ୟର୍ଥ ହୁଏ ନାହିଁ । ଦରବାର ସମୟରେ ସ୍ୱୟଂ କବି ସ୍ୱଦେଶବତ୍ସଳ ମାତୃଭାଷାର ଉନ୍ନତିକାମୀ ବାମଣ୍ଡା ଏବଂ ସୋନପୁର ରାଜ୍ୟର ଅଧିପତିମାନେ ଏହି କଟକକୁ ଶୁଭାଗମନ ପୂର୍ବକ ଏହି ସାହିତ୍ୟସମାଜକୁ ସାହାଯ୍ୟ ଦାନ କରିଥିବା ହେତୁରୁ ସମାଜ ଅତ୍ୟନ୍ତ ଉତ୍ସାହିତ ହୋଇଅଛନ୍ତି । ସମୟରେ ସଫଳକାମ ହେବେ, ସନ୍ଦେହ ନାହିଁ ।

ଉତ୍କଳ ଭାଷାର ଅବନତିର କାରଣ ଦାରିଦ୍ର୍ୟ । ଦାରିଦ୍ର୍ୟ ହେତୁରୁ ଲେଖକମାନେ ପୁସ୍ତକ ପ୍ରକାଶ କରିବାକୁ ଅକ୍ଷମ । ଦୃଷ୍ଟାନ୍ତ ସ୍ଥଳରେ ଗୋଟିଏ କଥା କହି ପାରେଁ । ଉତ୍କଳରେ ଖଣ୍ଡିଏ ଭଲ ଅଭିଧାନର ନିତାନ୍ତ ଅଭାବ । ପାରଳାଖେମୁଣ୍ଡି ନିବାସୀ ଭାଷାତତ୍ତ୍ୱବିତ୍ ପଣ୍ଡିତ ଗୋପୀନାଥ ନନ୍ଦ ଯୁଗାନ୍ତବ୍ୟାପୀ ପରିଶ୍ରମ ସ୍ୱୀକାରପୂର୍ବକ ଖଣ୍ଡିଏ ଉତ୍କୃଷ୍ଟ ଅଭିଧାନ ପ୍ରଣୟନ କରି ପ୍ରକାଶ ନିମନ୍ତେ ୫/୬ ବର୍ଷକାଳ ଦ୍ୱାରେ ଦ୍ୱାରେ ବୁଲି ଅକୃତକାର୍ଯ୍ୟ ହୋଇଥିଲେ ।

ସେହି ପୁସ୍ତକ ଛପା ହେଲେ ଖଣ୍ଡିଏ ଖଣ୍ଡିଏ କ୍ରୟ କରିବା ସକାଶେ ପ୍ରାୟ ଦୁଇ ତିନି ଶତ ଲୋକ ତାହାଙ୍କୁ ପତ୍ର ଲେଖିଥିଲେ । ବଙ୍ଗଦେଶର ପୁସ୍ତକପ୍ରକାଶକ ସମିତି ପରି ଉତ୍କଳରେ କେହି ବ୍ୟବସାୟୀ ଦଳ ଏହି ଅଭିଧାନ ପ୍ରକାଶ କରିଥିଲେ ଦୁଇ ତିନି ବର୍ଷ ମଧ୍ୟରେ ଅନ୍ତତଃ ଦୁଇ ହଜାର ଟଙ୍କା ଲାଭ କରିବାକୁ ସମର୍ଥ ହୋଇଥାନ୍ତେ ବୋଲି ମୁଁ ବିଶ୍ୱାସ କରେ । ଦ୍ୱିତୀୟତଃ ଏ ଦେଶରେ ଧନବନ୍ତମାନେ ପୁସ୍ତକ କିଣିବାକୁ ଅନିଚ୍ଛୁକ ଏବଂ ଶିକ୍ଷିତ ଲୋକେ ଅର୍ଥାଭାବରୁ ମୂଲ୍ୟବାନ୍ ପୁସ୍ତକ କିଣିବାକୁ ଅକ୍ଷମ । ଏହି ଦୁର୍ଯ୍ୟୋଗ ନିବାରଣ ନିମନ୍ତେ ମୁଁ ବଙ୍ଗବାସୀ ପତ୍ରିକାର କାର୍ଯ୍ୟାବଳୀ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । ବଙ୍ଗବାସୀ ୫ଟଙ୍କା ମୂଲ୍ୟର ଉତ୍କୃଷ୍ଟ ପୁସ୍ତକମାନ ଆଠ ଅଣାରେ ବିକ୍ରୟ କରିବାରୁ ଘରେ ଘରେ ପୁସ୍ତକ ପୂର୍ଣ୍ଣ ହୋଇଗଲା । ଏହି ଉପାୟରେ ବଙ୍ଗବାସୀ ପତ୍ରିକା ୨୨୫ ଟଙ୍କା ମୂଳଧନରୁ ସମ୍ପ୍ରତି ୧୦/ ୧୨ ଲକ୍ଷ ଟଙ୍କାର ଅଧିକାରୀ ହୋଇଅଛନ୍ତି । ଉପାୟ ଏହି କି, ଇଞ୍ଜିନି ପ୍ରେସରେ ଏକାବେଳକେ କୋଡିଏ ହଜାର ଖଣ୍ଡ ବହି ଛପା କରି ଦେଲେ ପ୍ରତି ଖଣ୍ଡ ବହିରେ ଛଅ ଅଣା ଖର୍ଚ୍ଚ ପଡ଼େ । ନିଜର ଦୁଇ ଅଣା ଲାଭ ରହିଯାଏ । ବର୍ଷକ ମଧ୍ୟରେ କୋଡିଏ ହଜାର ଦୁଇ ଅଣା ଲାଭ ପାନ୍ତି । ସେହିପରି ଗ୍ରନ୍ଥ ଉତ୍କଳ ଗ୍ରନ୍ଥକାର ଏକ ହଜାର ଛପା କଲେ ଖଣ୍ଡପ୍ରତି ତିନି ଟଙ୍କା ଖରଚ ପଡ଼େ । ଗ୍ରନ୍ଥକାର ଆପଣାପାଇଁ ଲାଭ ଦୁଇ ଟଙ୍କା ବସାଇ ଦିଅନ୍ତି । ପାଞ୍ଚ ଟଙ୍କା ମୂଲ୍ୟର ବହି କିଏ କିଣୁଛି ? ଖୁବ୍ ତପସ୍ୟାବାନ୍ ଗ୍ରନ୍ଥକାରଙ୍କ ପୁସ୍ତକ ଯୁଗାନ୍ତ ପରେ ପ୍ରେସମୁଖ ଦେଖିପାରେ । ମୁଁ ଆଶା ଏବଂ ପ୍ରାର୍ଥନା କରେଁ, ଏହି ସାହିତ୍ୟସମାଜ ଏ ବିଷୟରେ କିଞ୍ଚିତ୍ ଆଲୋଚନା କରିବେ ।

ଉତ୍କଳ ଭାଷାର ଅବନତିର ଅନ୍ୟତମ ଅନ୍ତରାୟ ରାଜ୍ୟେଶ୍ୱରଙ୍କ ଅନୁଗ୍ରହର ଅଭାବ । ବଙ୍ଗଦେଶର ଅନେକ ଗ୍ରନ୍ଥକାରଙ୍କୁ ଉତ୍ସାହ ଦେବା ନିମନ୍ତେ ରାଜସରକାର ସେମାନଙ୍କ ରଚିତ ପୁସ୍ତକ କ୍ରୟ କରି ସାଧାରଣରେ ବିତରଣ କରି ଦିଅନ୍ତି । କେତେକ ଦରିଦ୍ର ଗ୍ରନ୍ଥକାର ବୃତ୍ତି ଲାଭ କରୁଥିବାର ଶୁଣିଅଛୁଁ । କିନ୍ତୁ ଉତ୍କଳରେ ତାହାର ଏକାନ୍ତ ଅଭାବ । ମୁଁ ପୂର୍ବେ କହିଅଛି, ରାଜ୍ୟେଶ୍ୱରଙ୍କ ସୁଦୃଷ୍ଟି ବିନା କୌଣସି ଦେଶର ଭାଷା ଉନ୍ନତି ଲାଭ କରିନାହିଁ । ହେଲେ ଗୋଟିଏ ବିଷୟ ପ୍ରକାଶ ନ କଲେ ମୋ ପକ୍ଷରେ କୃତଘ୍ନତା ହେବ । ୪୫ ବର୍ଷ ପୂର୍ବରେ ମୁଁ କେତେଖଣ୍ଡ ସାମାନ୍ୟ ସ୍କୁଲପାଠ୍ୟ ପୁସ୍ତକ ରଚନା କରି ସରକାର ବାହାଦୁରଙ୍କଠାରୁ ହଜାରେ ଟଙ୍କା ପୁରସ୍କାର ପାଇଥିଲି । ବାବୁ ଜଗନ୍ନାଥ ରାଓ ଦୁଇ ସହସ୍ର ଟଙ୍କା ପାଇଥିବାର ମୁଁ ଶୁଣିଅଛି । ପ୍ରାତଃସ୍ମରଣୀୟ ରେଭେନ୍‌ସା ସାହେବ ଏବଂ କବିବର ରାଧାନାଥ ରାୟ ଆମ୍ଭମାନଙ୍କର ପୃଷ୍ଠପୋଷକ ଥିଲେ । ମୁଁ ବୋଧ କରେଁ, ବର୍ତ୍ତମାନ ଉତ୍କଳର ଦରିଦ୍ର ଗ୍ରନ୍ଥକର୍ତ୍ତାମାନଙ୍କ ବିଷୟ କେହି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ଉତ୍କଳବାସୀ କୃତକାର୍ଯ୍ୟ ହୋଇ ପାରନ୍ତେ । ବର୍ତ୍ତମାନ ବଙ୍ଗଦେଶରେ ଅନେକ ମାତୃଭାଷା- ଉନ୍ନତିକାମୀ ମହାତ୍ମା ବଙ୍ଗବାସୀ

ଲାଟ ସାହେବଙ୍କ ଦରବାରରେ ଏବଂ ଅନ୍ୟାନ୍ୟ ବିଭାଗରେ ପ୍ରଧାନ କର୍ମଚାରୀ ରୂପେ ନିଯୁକ୍ତ ଥିବାରୁ ସେମାନଙ୍କର ଯତ୍ନ ଓ ଅନୁରୋଧରେ ବଙ୍ଗଦେଶର ଗ୍ରନ୍ଥକର୍ତ୍ତାମାନେ ସାହାଯ୍ୟ ପ୍ରାପ୍ତ ହୋଇ ନୂତନ ନୂତନ ଗ୍ରନ୍ଥ ରଚନା ବିଷୟରେ ମନୋଯୋଗୀ ହୋଇଅଛନ୍ତି । ମୁଁ ଆଶା କରେଁ, ଉତ୍କଳବାସୀ ଦରିଦ୍ର ଗ୍ରନ୍ଥକାରମାନେ ଦିନେ ସେହିପରି ମହାରାଜପ୍ରସାଦ ଭୋଗ କରିବାକୁ ସମର୍ଥ ହେବେ ।

ସଭାସ୍ଥ ମହାଶୟଗଣ, ମୁଁ କର୍କଶଭାଷାରେ ଅସୁନ୍ଦର ବାକ୍ୟରେ ଆପଣମାନଙ୍କୁ ଅନେକ କଷ୍ଟ ଦେଲି । ସମ୍ପ୍ରତି ମୁଁ ଗୋଟିଏ ସୁମଧୁର ବୈଦିକ ମନ୍ତ୍ର ଉଲ୍ଲେଖ କରିବି । ଆପଣମାନେ ଅନୁଗ୍ରହପୂର୍ବକ ଦୁଇ ମିନିଟ୍ ସକାଶେ ହୃଦୟ ମଧ୍ୟରେ ପରମବ୍ରହ୍ମଙ୍କୁ ଧ୍ୟାନ କରନ୍ତୁ ।

ସ୍ତବ

ଓଁ ଯାଂ ମେଧାଂ ଦେବଗଣାଃପିତରଶ୍ଚ ଉପାସତେ

ତୟା ମାମଦ୍ୟ ମେଧାଙ୍ଗଂ କୁରୁ ସ୍ୱାହା ।

ଯେଉଁ ଜ୍ଞାନକୁ ଦେବତାମାନେ ଓ ପିତୃଗଣ ଉପାସନା କରିଥାନ୍ତି, ହେ ପରମେଶ୍ୱର, ସେହି ଯଜ୍ଞଦ୍ୱାରା, ଆମ୍ଭ ଉତ୍କଳବାସୀଙ୍କୁ ଜ୍ଞାନବାନ୍ କର ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ହରି ଓଁ ।



୨

# ଉତ୍କଳ ଭାଷାର ଭୂତ ଭବିଷ୍ୟତ

## ଫକୀର ମୋହନ ସେନାପତି

ତିରିଶ ବର୍ଷରୁ ଊର୍ଦ୍ଧ୍ୱକାଳର କଥା, ସେ ସମୟରେ ବର୍ତ୍ତମାନ ପ୍ରଚଳିତ ଶିକ୍ଷାବିଭାଗର ବାଲ୍ୟାବସ୍ଥା । ଉତ୍କଳର ସମସ୍ତ ସ୍କୁଲ ସଂଖ୍ୟା ଦକ୍ଷିଣ ହସ୍ତର ଅଙ୍ଗୁଳିସମଷ୍ଟିର ପଦସଂଖ୍ୟା ଅତିକ୍ରମ କରୁ ନ ଥିଲା । ମୁଦ୍ରିତ ଉତ୍କଳ ପୁସ୍ତକ ସଂଖ୍ୟା ୬ଖଣ୍ଡ ମାତ୍ର । ବିଦ୍ୟାଳୟ ମାନଙ୍କରେ ଇତିହାସ, ସାହିତ୍ୟ, ଭୂଗୋଳ, ଗଣିତ ପ୍ରଭୃତି ବଙ୍ଗଭାଷାରେ ପଠିତ ହେଉଥିଲା, ନାମ ମାତ୍ର ଖଣ୍ଡିଏ ସାହିତ୍ୟ ଉତ୍କଳ ଭାଷାରେ ଥିଲା । ସମସ୍ତ ଉତ୍କଳରେ ଜଣେ ମାତ୍ର ଡେପୁଟି ଇନ୍ସପେକ୍ଟର । ସେ ସ୍କୁଲ ସମୂହର ହର୍ତ୍ତାକର୍ତ୍ତା ବିଧାତା ଥିଲେ । ସେ ମଧ୍ୟ ବିଦେଶୀ । ସାଲ ତମାମୀ ରିପୋର୍ଟଟି ସୁନ୍ଦର ଭାଷାରେ ସଜାଇ ଇନ୍ସପେକ୍ଟର ସାହେବଙ୍କ ଅଫିସ୍‌କୁ ପଠାଇବା ସେମାନେ ଏକମାତ୍ର କର୍ତ୍ତବ୍ୟ ବୋଲି ମଣୁଥିଲେ ।

ସେହି ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଜଣେ ପଣ୍ଡିତ ନିଯୁକ୍ତ ଥିଲେ । ସେ ବଙ୍ଗଦେଶୀ, ନାମ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ସ୍କୁଲରେ ଓଡ଼ିଆ ପଢ଼ାଇବା ପାଇଁ ତାହାଙ୍କ ପ୍ରତି ଆଦେଶ ହେଲା । ଆପେ ଉତ୍କଳଭାଷା ଶିକ୍ଷିବାକୁ ଲାଗିଲେ, କିନ୍ତୁ ଆପେ ପଢ଼ି ପିଲାମାନଙ୍କୁ ପଢ଼ାଇବା ତାହାଙ୍କର ମନୋନୀତ ହେଲାନାହିଁ । ବିଶେଷ ପରିଶ୍ରମ କରି ଅସାରଯୁକ୍ତିପୂର୍ଣ୍ଣ ଖଣ୍ଡିଏ ପୁସ୍ତକ ଲେଖିଲେ, ତାହାର ନାମ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' । ଏହା ବଙ୍ଗ ଭାଷାର କଦର୍ଯ୍ୟ ଅପଭ୍ରଂଶ ମାତ୍ର, ଅର୍ଥାତ୍ ବଙ୍ଗଭାଷାରେ କେତେଗୁଡ଼ିଏ କଦର୍ଯ୍ୟ ଜଙ୍ଗଲୀ ଭାଷା ମିଶି ଓଡ଼ିଆ ରୂପେ ପରିଣତ ହୋଇଅଛି । ଏଥକୁ ଉତ୍କଳ ଭାଷାକୁ ଏକାବେଳକେ ଓଡ଼ିଶାରୁ ଉଠାଇ ଦେବା ଉଚିତ । ସେହି ସମୟରେ ସରକାରୀ କାର୍ଯ୍ୟ ଉପଲକ୍ଷରେ ଉତ୍କଳରେ ବାସ କରୁଥିବା ସମସ୍ତ ବଙ୍ଗବାସୀ କାନ୍ତି ବାବୁଙ୍କର ପୃଷ୍ଟପୋଷକତା କରିବାକୁ ଲାଗିଲେ । ବାଲେଶ୍ୱରବାସୀ କେତେଜଣ ଯୁବକ ମାତୃଭାଷା ରକ୍ଷା ନିମନ୍ତେ ଭୟଙ୍କର ଆନ୍ଦୋଳନ କରିବାକୁ ଲାଗିଲେ । କଟକରେ "ଉତ୍କଳଦୀପିକା" ସେହି ସମୟରେ ଆପଣା କର୍ତ୍ତବ୍ୟ କର୍ମ୍ମ ସାଧନାରେ ତ୍ରୁଟିକରି ନ ଥିଲେ । ଆନ୍ଦୋଳନ କ୍ରମଶଃ ବୃଦ୍ଧି ପ୍ରାପ୍ତ ହୋଇ ରାଜପୁରୁଷମାନଙ୍କ କର୍ଣ୍ଣଗୋଚର ହେଲା । ଉତ୍କଳର ତାତ୍କାଳିକ କମିଶନର ମହାମତି ରେଭେନ୍ସା ଏବଂ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଭାଷାତତ୍ତ୍ୱବିତ୍ ଶ୍ରୀଯୁକ୍ତ ବୀମସ୍ ସାହେବ ମହୋଦୟମାନଙ୍କ ଆଦେଶରେ ଉତ୍କଳ ବିଦ୍ୟାଳୟମାନଙ୍କରୁ ବଙ୍ଗଭାଷା

ଏକାବେଳକେ ବିଦାୟ ପ୍ରାପ୍ତ ହେଲା । ଉତ୍କଳ-ଭାଷା ଇତିହାସର ଏହା ଗୋଟିଏ ନିତାନ୍ତ ଶୁଭକର ଏବଂ ବିଶେଷ ଘଟନା ଅଟେ । ଉତ୍କଳବାବାସୀମାନେ ଚିରକାଳ ଏହି ମହାତ୍ମାମାନଙ୍କ ନାମ ସ୍ମରଣ କରିବେ ।

ସେହି ଦିନଠାରୁ ଅଦ୍ୟାବଧି ଆମ୍ଭେମାନେ କୌଣସି କୌଣସି ବଙ୍ଗବାସୀଙ୍କ ମୁଖରୁ ସର୍ବଦା ଶୁଣି ଆସୁଅଛୁ, କେଉଁଦିନ ହେଲେ ଉତ୍କଳଭାଷା ଉଠିଯିବ । ଆମ୍ଭେମାନେ କିପରି ଏହି ଭବିଷ୍ୟତ ବାଣୀ ସମ୍ବନ୍ଧରେ ସନ୍ଦିହାନ ହେବୁ ? ପୃଥିବୀରେ କିଛି ହିଁ ଚିରସ୍ଥାୟୀ ନୁହେଁ । ଶତଯୁଗ ପରେ ହେଉ ବା ସହସ୍ର ଯୁଗାନ୍ତରେ ହେଉ, ମହାପ୍ରଳୟ ସମୟରେ ଉତ୍କଳ ଦେଶ ସହିତ ଉତ୍କଳ ଭାଷା ନିଶ୍ଚୟ ଉଠିଯିବ !

ଅଳ୍ପଦିନ ପୂର୍ବେ କଟକଠାରେ ଜଣେ ଶିକ୍ଷିତ ବଙ୍ଗାଳିବାବୁଙ୍କ ସହିତ ଉପସ୍ଥିତ ବିଷୟ ଘେନି କଥୋପକଥନ ହୋଇଥିଲା । ସେ କହିଲେ, 'ଉତ୍କଳୀୟମାନେ ବଙ୍ଗଭାଷାର ସମ୍ବାଦପତ୍ର ଏବଂ ପୁସ୍ତକ ଯେପରି ଆଗ୍ରହସହିତ ପାଠ କରନ୍ତି, ମାତୃଭାଷା ଅଧ୍ୟୟନରେ ସେପରି ଆଗ୍ରହ ଦେଖାଯାଏ ନାହିଁ; ସୁତରାଂ ଉତ୍କଳଭାଷାର ଅବନତି ଅନିବାର୍ଯ୍ୟ ।' ପ୍ରତ୍ୟେକ ଉତ୍କଳବାସୀ ପକ୍ଷରେ ଏହା ଗୋଟିଏ ଚିନ୍ତାର ବିଷୟ ଅଟେ । ଆମ୍ଭେମାନେ ଜଗତର ଇତିହାସରେ ସୁସ୍ପଷ୍ଟ ରୂପେ ଦେଖିବାକୁ ପାଉ, ମାତୃଭାଷା ହରାଇ କୌଣସି ଜାତି ଉନ୍ନତି ଲାଭ କରିପାରି ନାହାନ୍ତି । ଏହାର ମଧ୍ୟ ଶତ ଶତ ପ୍ରମାଣ ବିଦ୍ୟମାନ ଅଛି, ମାତୃଭାଷାର ଅନାଦରକାରୀ ଏବଂ ଅବଜ୍ଞାକାରୀ ଜାତିର ଅବନତି ଏବଂ ବିନାଶ ଅନିବାର୍ଯ୍ୟ ଅଟେ । ଯାହାହେଉ ଉତ୍କଳ ଭାଷାର ଭବିଷ୍ୟତ ପରିଣାମ ବିଷୟରେ କିଛି କହିବା ପୂର୍ବେ ଏହାର ସ୍ୱରୂପ ଏବଂ ପରମାୟୁ ସମ୍ବନ୍ଧରେ ଦୁଇ ଚାରି କଥା ବୋଲିବା ଆବଶ୍ୟକ ।

ମାନବଧର୍ମଶାସ୍ତ୍ର ଏବଂ ମହାଭାରତାଦି ମହାପୁରାଣମାନଙ୍କରେ ଉତ୍କଳ-ଦେଶର ନାମୋଲ୍ଲେଖ ଦେଖାଯାଏ । ଇୟୁରୋପୀୟ ପୁରାତତ୍ତ୍ୱବିଦ୍‌ମାନଙ୍କ ମତରେ ମାନବ ଧର୍ମଶାସ୍ତ୍ର ଚାରିସହସ୍ର ବର୍ଷ ପୂର୍ବେ ରଚିତ ହୋଇଥିବାର ଅନୁମିତ ହୁଏ । ସୁତରାଂ, ଚାରିସହସ୍ର ବର୍ଷପୂର୍ବେ ଏହି ପବିତ୍ର ଉତ୍କଳଦେଶ ଯେ କୃଷ୍ଣସାର ବିଚରଣ ଭୂମି ଆର୍ଯ୍ୟଜାତିର ଅଧ୍ୟୁଷିତ ଥିଲା, ସେ ବିଷୟରେ ଅନ୍ୟ ପ୍ରମାଣ ପ୍ରୟୋଗ କରିବା ଅନାବଶ୍ୟକ । ସର୍ବାଦୌ ଉତ୍କଳଦେଶରେ କେଉଁ ଭାଷା ପ୍ରଚଳିତ ଥିଲା, ସେ ବିଷୟ ଆଲୋଚନା କରିବାର ଆବଶ୍ୟକ । ଭାଷା ସମାଜର ଜନନୀସ୍ୱରୂପା ଅଟନ୍ତି । ଲୋକମାନେ ଆପଣା ପିତୃ ମାତୃ ନାମ ଉଲ୍ଲେଖ କରି ଆତ୍ମପରିଚୟ ଦେବାପରି ଜାତିମାନେ ଆପଣା ମାତୃଭାଷାର ନାମ ଉଲ୍ଲେଖ କରି ଆତ୍ମପରିଚୟ ଦେଇଥାନ୍ତି । ଯଥା- ଦାଶରଥି, ପାଣ୍ଡବ, କୌନ୍ତେୟ, ଜାନକୀ ଅର୍ଥାତ୍ - ଦଶରଥର ପୁତ୍ର, ପଣ୍ଡୁର ପୁତ୍ର, କୁନ୍ତିର ପୁତ୍ର, ଜନକର କନ୍ୟା ଇତ୍ୟାଦି । ଜାତିମାନଙ୍କର ଆତ୍ମପରିଚୟ ମଧ୍ୟ ସେହିପରି, ଯଥା- ଇଂରେଜ, ଜର୍ମାନ୍, ବଙ୍ଗାଳୀ ଅର୍ଥାତ୍ ଏମାନଙ୍କର ମାତୃଭାଷା ଇଂରେଜୀ, ଜର୍ମାନୀ, ଆରବୀ, ବଙ୍ଗଳା ଇତ୍ୟାଦି । ସୁତରାଂ ବୋଲା ଯାଇପାରେ ପୂର୍ବକାଳୀୟ ଉତ୍କଳୀୟ-ମାନଙ୍କର ମାତୃଭାଷାର ନାମ ଉତ୍କଳ । ଜଗତ୍ ପରିବର୍ତ୍ତନଶୀଳ; ପ୍ରତି ନିୟତ ଯାବନ୍ତ ବିଷୟର ପରିବର୍ତ୍ତନ

ଘଟୁଅଛି । ଏଥକୁ ବର୍ତ୍ତମାନ ପ୍ରଚଳିତ ଉତ୍କଳ ଭାଷା ସହିତ ପୂର୍ବପ୍ରଚଳିତ ଭାଷାର ଆକାରଗତ ସାମଞ୍ଜସ୍ୟ ଥିବାର ସାହସପୂର୍ବକ ବୋଲାଯାଇ ନ ପାରେ । ତେବେ ସେ ସମୟରେ ଲିଖିତ ଭାଷା ଥିଲା କି ନାହିଁ, ଏହା ବିଚାର୍ଯ୍ୟ ବିଷୟ ଅଟେ । ଦେଖାଯାଏ ସର୍ବାଦୌ ଆର୍ଯ୍ୟମାନଙ୍କର କୌଣସି ପ୍ରକାର ଲିଖିତ ଭାଷା ନ ଥିଲା । ଅତି ପୂର୍ବକାଳରେ ଆର୍ଯ୍ୟମାନେ ଶୁଣି ଶୁଣି ବେଦ ଅଧ୍ୟୟନ କରୁଥିଲେ, ଏଥି ସକାଶେ ବେଦର ନାମ ଶ୍ରୁତି । କାଳକ୍ରମରେ ଭାରତବର୍ଷରେ ଆର୍ଯ୍ୟମାନଙ୍କର ଲିଖିତ ଭାଷା ଉତ୍ପନ୍ନ ହୋଇଅଛି । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ମାଦଳାପାଞ୍ଜି ଲିଖନ ଖ୍ରୀଷ୍ଟାବ୍ଦ ୬୦୦ ସନରେ ଆରବ୍ଧ ହୋଇଅଛି । ଆମ୍ଭେମାନେ ସହସ୍ରବର୍ଷ ପୂର୍ବେ ଲିଖିତ, ସୁମାର୍ଜିତ, ପୂର୍ଣ୍ଣାଙ୍ଗ ବିଶିଷ୍ଟ ଉତ୍କଳ କବିତାମାନ ପାଠ କରିଅଛୁଁ । ଏଥକୁ ମସିହା ଜନ୍ମପୂର୍ବେ ଏ ଦେଶରେ ଯେ ଲିଖିତ ଭାଷା ଥିଲା, ଏହା ଅନୁମାନ କରିବା ଅସଙ୍ଗତ ନୁହେଁ । ଭାଷାତତ୍ତ୍ୱ ଏବଂ ପୁରାତତ୍ତ୍ୱ ବିଷୟରେ ବିଶେଷ ଜ୍ଞାନ ନ ଥିଲେ ଏ ସମ୍ବନ୍ଧରେ ନିଶ୍ଚିତ କାଳ ନିରୂପଣ କରାଯାଇ ନ ପାରେ । ଦୁର୍ଭାଗ୍ୟ – ଆମ୍ଭେମାନେ ଏହି ଦୁଇ ବିଷୟରେ ନିତାନ୍ତ ଅନଭିଜ୍ଞ । ସୁତରାଂ ଏ ସମ୍ବନ୍ଧରେ କିଛି କଥା କହିବାକୁ ଯିବା ନିର୍ଲ୍ଲଜତା ମାତ୍ର । ତେବେ ଏ ସମ୍ବନ୍ଧରେ ସର୍ବସାଧାରଣ ବିଦିତ ଦୁଇ ଚାରି କଥା କହି ପ୍ରସ୍ତାବର ଉପସଂହାର କରିବାକୁ ଇଚ୍ଛା କରୁଁ । ଉତ୍କଳଭାଷାନଭିଜ୍ଞ ବଙ୍ଗବାସୀମାନଙ୍କ କଥା ଛାଡ଼ିଦିଅ ଏବଂ ଉତ୍କଳର ବିଦ୍ୱେଷୀ ଅଥବା ଅବଜ୍ଞାକାରୀମାନଙ୍କ କଥା ଅବଶ୍ୟ ସ୍ୱତନ୍ତ୍ର, ମାତ୍ର କୌଣସି କୌଣସି ଶିକ୍ଷିତ ଉତ୍କଳୀୟ ଆପଣା ଭାଷାଭିଜ୍ଞତା ପ୍ରତି ନିର୍ଭର କରି ବୋଲି ବସନ୍ତି, ବଙ୍ଗଭାଷାର ସମକକ୍ଷତା କରିବାକୁ ଉତ୍କଳ ପକ୍ଷରେ ଅର୍ଦ୍ଧଶତାବ୍ଦୀ କାଳ ଆବଶ୍ୟକ । ଅବଶ୍ୟ ସାର ଅସାର ନାନାପ୍ରକାର କାବ୍ୟ, ନାଟକ, ନଭେଲ ଏବଂ ବିଜ୍ଞାନ ବିଷୟକ ଅନେକ ଗ୍ରନ୍ଥ ବଙ୍ଗଭାଷାରେ ମୁଦ୍ରିତ ହୋଇ ଗଲାଣି । ମାତ୍ର ଆମ୍ଭମାନଙ୍କ ଜୀବନକାଳରେ ପ୍ରତ୍ୟକ୍ଷ ଦେଖିଅଛୁ ଏ ସମସ୍ତ ପୁସ୍ତକର ପରମାୟୁ ବିଂଶତି ବର୍ଷରୁ ଅଧିକ ନୁହେଁ । ଉତ୍କଳର ଦାରିଦ୍ର୍ୟ, ଶିକ୍ଷିତ ଲୋକମାନଙ୍କର ମାତୃଭାଷା ଚର୍ଚ୍ଚାରେ ତାଚ୍ଛଲ୍ୟ ଏବଂ ଧନଶାଳୀ ଲୋକମାନଙ୍କର ଗ୍ରନ୍ଥକ୍ରୟ ବିଷୟରେ ବ୍ୟୟକୁଣ୍ଠତା ପ୍ରଭୃତି ଗୁରୁତର କାରଣମାନ ବିଦ୍ୟମାନ ଥାଉଁ ଥାଉଁ ନୂତନ ନୂତନ ପୁସ୍ତକ ସହସା ପ୍ରଚାରର ଆଶା ବିଡ଼ମ୍ବନା ମାତ୍ର । ପୁସ୍ତକର ସଂଖ୍ୟାବାହୁଲ୍ୟ ବିଷୟ ଥାଉ, ଦୁଇ ତିନି ଶତବର୍ଷ ପୂର୍ବେ ରଚିତ ଗ୍ରନ୍ଥ ଘେନି ଭାରତର ୭ଗୋଟି ପ୍ରଧାନ ପ୍ରଚଳିତ ଭାଷା ସହିତ ତୁଳନା କରି ଦେଖାଯାଉ ଉତ୍କଳ ଭାଷା ପୂର୍ଣ୍ଣ ଅଙ୍ଗସୌଷ୍ଠବ ଏବଂ ସାରବତ୍ତା ପ୍ରାପ୍ତ ହୋଇଅଛି କି ନାହିଁ ।

ସନ ୧୮୮୨ ମସିହାର ସରକାରୀ ଜନସଂଖ୍ୟା ତାଲିକା ଅନୁସାରେ ଭାରତବର୍ଷରେ ବୟାଶୀ ଲକ୍ଷ ଉତ୍କଳଭାଷୀ ମନୁଷ୍ୟ ବାସ କରୁଥିବାର ଜଣାଯାଏ । ମାତ୍ର ଏହି ସଂଖ୍ୟା ଅଭ୍ରାନ୍ତ ଓ ପ୍ରକୃତ ବୋଲି ଆମ୍ଭେମାନେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁଁ । ବିଷୟ କର୍ମ ଉପଲକ୍ଷରେ ଆମ୍ଭେମାନେ ଉତ୍କଳର ଦକ୍ଷିଣରେ ବିଶାଖାପତ୍ତନ, ପଶ୍ଚିମରେ ହଜାରିବାଗ ଚାଇଁବସା, ଉତ୍ତରରେ ତମଲୁକ ଦାନ୍ତଣ କାନ୍ଥି ପ୍ରଭୃତି ସ୍ଥାନରେ ଭ୍ରମଣ କରି ତଦ୍ଦେଶବାସି ମାନଙ୍କର ଗାର୍ହସ୍ଥ୍ୟ ଭାଷା ବିଷୟ କେତେକ ପରିମାଣରେ ଅବଗତ ହୋଇଅଛୁ । ସେମାନେ ଦାଣ୍ଡରେ ଆପଣାମାନଙ୍କୁ

ତେଲେଙ୍ଗା, ହିନ୍ଦୁସ୍ଥାନୀ ଏବଂ ବଙ୍ଗାଳୀ ବୋଲି ପରିଚୟ ଦିଅନ୍ତି; ମାତ୍ର ସେମାନଙ୍କର ଗାର୍ହସ୍ଥ୍ୟ ଭାଷା ଉତ୍କଳ ଏବଂ ସେମାନଙ୍କ ଗାର୍ହସ୍ଥ୍ୟ ଆୟ ବ୍ୟୟ ପ୍ରଭୃତି ଉତ୍କଳ ଭାଷାରେ ଲିଖିତ ହୁଏ ଏବଂ ଅନେକ ସମ୍ଭ୍ରାନ୍ତ ଲୋକଙ୍କ ଘରେ ଜଗନ୍ନାଥ ଦାସଙ୍କ ଭାଗବତ ଗାଦି ବିଧି ଅନୁସାରେ ପୂଜାପ୍ରାପ୍ତ ହେଉଅଛି । ଚବିଶ ପରଗନା, ଦେଓଘର, କଲିକତା ପ୍ରଭୃତି ସ୍ଥାନରେ ଶତାବ୍ଦୀ ପ୍ରାୟ ଗତ ହେଲା, ଅନେକ ଉତ୍କଳୀୟ ଚିରସ୍ଥାୟୀରୂପେ ବାସ କରୁଥିଲେ ମଧ୍ୟ ଅଦ୍ୟାବଧି ମାତୃଭାଷା ପରିତ୍ୟାଗ କରିପାରି ନାହାନ୍ତି । ସେମାନଙ୍କୁ ଏବଂ ସ୍ନ ୧୮୮୨ ମସିହାଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ବର୍ଦ୍ଧିତ ଜନସଂଖ୍ୟା ଧରାଗଲେ ଉତ୍କଳଭାଷୀ ସଂଖ୍ୟା କୋଟି ଅତିକ୍ରମ କରିଯିବ । ଏପରି ବହୁ ସନ୍ତାନବତୀ ସାରଗର୍ଭା ଅଙ୍ଗସୌଷ୍ଠବସମ୍ପନ୍ନା ଉତ୍କଳଭାଷାର ଅବନତିର କାରଣ କଅଣ ?

ଭାଷା ଉନ୍ନତିର ଅନ୍ୟତମ ବିଶେଷ କାରଣ ରାଜାନୁକୂଲ୍ୟ । ରାଜାନୁକୂଲ୍ୟ ତେଣିକି ଥାଉ, ଅଦ୍ୟାବଧି ପାଞ୍ଚଶତ ବର୍ଷ ଯାବତ୍ ଉତ୍କଳ ସ୍ୱାଧୀନତା ହରାଇବା ଦିନଠାରୁ ଦେଶଭାଷା ବିବିଧ ପ୍ରକାରେ ରାଜଅତ୍ୟାଚାର ସହି ଅନ୍ତଃସାରବିଶିଷ୍ଟ ଜୀବନୀ ଶକ୍ତିଥିବାରୁ କେନ୍ଦ୍ରିଭୂତ ନିଧନାପତି ଅତିକ୍ରମ କରି ଜୀବନ ମାତ୍ର ଧାରଣକରି ରହିଅଛି । ଭାରତ ଇତିହାସରୁ ଜଣାଯାଏ ମୁସଲମାନମାନେ ଅନ୍ୟାନ୍ୟ ଦେଶ ପରି ଉତ୍କଳ ଦେଶକୁ ସହଜରେ କରାୟତ୍ତ କରିବାକୁ ସମର୍ଥ ହୋଇ ନ ଥିଲେ । ଦୁଇଶତ ବର୍ଷରୁ ଅଧିକକାଳ ସୁବର୍ଣ୍ଣରେଖା କୂଳରେ ସେମାନଙ୍କୁ ଖଣ୍ଡାଏତ ମାନଙ୍କଠାରେ ବାହୁବଳର ପରୀକ୍ଷା ଦେବାକୁ ହୋଇଥିଲା । ଏହି ସୁଦୀର୍ଘକାଳ ଯାବତ୍ ଆତ୍ମରକ୍ଷାରେ ନିଯୁକ୍ତ ଥିବାରୁ ଉତ୍କଳୀୟମାନେ ଭାଷା ଆଲୋଚନା କରିବା ନିମନ୍ତେ ସୁଯୋଗ ପାଇ ନାହାନ୍ତି, ତହିଁ ଉତ୍ତାରେ - ମରହଟ୍ଟାଯୁଗ ।

ମହାତ୍ମା ଶିବାଜୀଙ୍କ ରାଜ୍ୟ ବିସ୍ତାରର ଉଦ୍ଦେଶ୍ୟ "ଧର୍ମ ସଂରକ୍ଷଣାୟ" । ଯେଉଁ ମହାବୀର ଧର୍ମ ସେତୁବନ୍ଧ ବାନ୍ଧି ମୋଗଲ-ଲଙ୍କାର ବିନାଶସାଧନ ନିମନ୍ତେ କୃତସଙ୍କଳ୍ପ ହୋଇଥିଲେ, ତାହାଙ୍କ ବଂଶଧରମାନଙ୍କର ବ୍ୟବସାୟ ହେଲା ଅନ୍ୟାଲୋକ ଚାଳରୁ ତୋଟାରୁ କ୍ଷେତ୍ରରୁ ଫନ୍ଦା ଫସଲ ଲୁଟପାଟ । ଦୁର୍ଭାଗ୍ୟପ୍ରଯୁକ୍ତ ଉତ୍କଳ ଭୂମି ସେହି ଲୁଠିଆରା ମରହଟ୍ଟାମାନଙ୍କ ହସ୍ତଗତ ହେଲା । ନାଗପୁରରୁ ଜଣେ ଜଣେ ଫୌଜଦାର ନିଯୁକ୍ତ ହୋଇ ଆସି ଓଡ଼ିଶା ଶାସନ କରିବାକୁ ଲାଗିଲେ । ଶାସନ ଅର୍ଥାତ୍ ଯେନ ତେନ ପ୍ରକାରେ ପ୍ରଜାଙ୍କଠାରୁ ଅର୍ଥ ସଂଗ୍ରହ । ନୂତନ ଫୌଜଦାର ନିଯୁକ୍ତି ସମୟରେ ନାଗପୁର ରାଜଦରବାରରେ ଝିଟିପିଟି ଠାରୁ ଶାଳଗ୍ରାମ ପର୍ଯ୍ୟନ୍ତ କାରବାରୀ ଫର୍ଣ୍ଣବୀସ୍, ସବ୍‌ନୀସ୍, କର୍କନୀସ, ଚିଟନୀସ, ପୋଟନୀସ ଇତ୍ୟାଦି ସମସ୍ତଙ୍କୁ ପ୍ରଣାମୀ ଦେବାକୁ ହୁଏ । ଫୌଜଦାର ବିଚାରାର ଅପରାଧ କ'ଣ ? ଅଣ୍ଟିରୁ ଯେଉଁ ଟଙ୍କାଟା ଗଣି ଦେଇଅଛି, ସେଇଟା ତ ତାଲୁକରୁ ଉଠାଇବାକୁ ହେବ । ପୁଣି ଠିକ୍ ମିଆଦ ସମୟରେ ରାଜସରକାରରେ ଟଙ୍କା ପୈଠ ନ ହେଲେ ପଛେ ପଛେ ଆଉ ଜଣେ ଫୌଜଦାର ନିଯୁକ୍ତ ହେବାର କଥା । ଏହି ସମସ୍ତ କାରଣରୁ "ଆତ୍ମାନଂ ସତତଂ ରକ୍ଷେତ୍" ନୀତିଶାସ୍ତ୍ର ପ୍ରତି ଦୃଷ୍ଟି ରଖି ଚଳିବାକୁ ଗଲେ ପ୍ରଜାପାଳନ କିପରି ହେଉଥିବ, ସେକଥା ବୋଲିବାର ଅନାବଶ୍ୟକ ।

ଏଣେ 'ଚିଉପୂରିଲେ ଗୀତ ଗାଏ', ପ୍ରଜାମାନେ ଧନପ୍ରାଣ ଘେନି ବ୍ୟସ୍ତ, ବିଦ୍ୟାଚର୍ଚ୍ଚାର ବେଳ କାହିଁ ? ଆମ୍ଭମାନଙ୍କୁ ଅପ୍ରାସଙ୍ଗିକ ରୂପେ ଗୋଟିଏ କଥା କହିବାକୁ ହେଉଅଛି । ମରହଟ୍ଟା ସହସ୍ର ପ୍ରକାର ଅତ୍ୟାଚାର କରିଥିଲେ ମଧ୍ୟ ତାହାଙ୍କ ପ୍ରସାଦରୁ ଉତ୍କଳର ସହସ୍ର ସହସ୍ର ବ୍ରାହ୍ମଣ ପରିବାର ଅଦ୍ୟାବଧି ପ୍ରତିପାଳିତ ହେଉଅଛନ୍ତି । ଏହି ମରହଟ୍ଟାଯୁଗ ପୂର୍ବ ଏବଂ ମଧ୍ୟଭାଗର ସର୍ବ ଶେଷରେ - **ମୁସଲମାନଯୁଗ**

ଇଂରେଜଙ୍କ ରାଜଶାସନର ମୂଳସୂତ୍ର ପ୍ରଜାମାନଙ୍କ ଚିରାଗତ ଧର୍ମ ଏବଂ ଭାଷା ଅକ୍ଷୁଣ୍ଣ ରଖି ପ୍ରଜାପାଳନ କରିବା । ମାତ୍ର ମୁସଲମାନ ରୀତି ସେଥିର ବିପରୀତ । ଅକୌରାଣିକ ଧର୍ମ, ଅକୌରାଣିକ ଭାଷା ବିଜିତଦେଶରେ ରଖିବାକୁ ସେମାନେ ଏକାବେଳକେ ନାରାଜ ଥିଲେ । ଉତ୍କଳଦେଶ ହସ୍ତଗତ କରି ମୁସଲମାନ ରାଜକୀୟ କାର୍ଯ୍ୟାଳୟରୁ ଉତ୍କଳ ଭାଷା ଏକାବେଳକେ ଉଠାଇ ଦେଇ ପାରସ୍ୟ ଭାଷା ଚଳାଇଲେ । କେବଳ ଦାରୁଣ ବେତ୍ରହସ୍ତ ମାଟିବଂଶ ଓଝାମାନେ ଆପଣା ଜୀବନରକ୍ଷା ନିମନ୍ତେ ଉତ୍କଳଭାଷାର ଜୀବନ ରକ୍ଷା କରିଥିଲେ । ତହିଁ ଉତ୍ତାରେ ସୌଭାଗ୍ୟ ଯୋଗ ବା - **ଇଂରେଜୀଯୁଗ**

ଯଦିବା ଅଦ୍ୟାବଧି ୯୬ ବର୍ଷ କାଳ ଯାବତ୍ ଉତ୍କଳ ଭୂମି ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ କରତଳନ୍ୟସ୍ତ ହୋଇଅଛି, ମାତ୍ର ସାକ୍ଷାତ୍ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଆଶାନୁରୂପ ଅନୁଗ୍ରହ ପ୍ରାପ୍ତି ଏହା ଅଦୃଷ୍ଟରେ ଘଟି ନ ଥିଲା । ଏହା ବଙ୍ଗଳା ହତାର ଗୋଟିଏ ବାଜେ ରିପୋର୍ଟ ଜମୀଦାରୀ ସ୍ୱରୂପ ଥିଲା । ଗତ ନଅଙ୍କର ଭୟଙ୍କର ଲୋକକ୍ଷୟକର ଦୁର୍ଭିକ୍ଷ ଉତ୍ତାରେ ଏହା ଉପରେ ଗଭର୍ଣ୍ଣମେଣ୍ଟଙ୍କର କୃପାଦୃଷ୍ଟି ପଡ଼ିବାର ସୂତ୍ରପାତ । ଅଦାଲତମାନଙ୍କରେ ପୂର୍ବବତ୍ ପାରସ୍ୟ ଭାଷା ଚଳି ଆସୁଥିଲା । ଇଂରେଜ ହାକିମମାନେ କେବଳ ଇଂରେଜୀରେ ଦସ୍ତଖତ ମାତ୍ର କରୁଥିଲେ; ସମନ, ଓଆରେଣ୍ଟ, ଗୁହାଜବାନବନ୍ଦି, ରୋବକାରୀ ପ୍ରଭୃତି ସମସ୍ତ ବିଷୟ ଅମଲାମାନେ ପାରସ୍ୟ ଭାଷାରେ ଲେଖୁଥିଲେ । ଓକିଲ, ଡେପୁଟୀ, ସଦର ଅମୀନ, ସଦର ଅମଲା କାହାରିକୁ ଇଂରାଜୀ ଶିଖିବାକୁ ହେଉ ନ ଥିଲା । ଅଦାଲତ ବାହାରେ ଭଦ୍ରଲୋକମାନେ ସମସ୍ତ ଚିଠି ଚପାଟି ଏମନ୍ତ କି ଘର ଖର୍ଚ୍ଚ ହିସାବ ପର୍ଯ୍ୟନ୍ତ ପାରସୀରେ ଲେଖୁଥିଲେ । ସେ କାଳରେ ପାରସ୍ୟ ମିଶ୍ରିତ ଓଡ଼ିଆ କଥା କହିବା ଭଦ୍ରତା ଏବଂ ବିଦ୍‌ବତ୍ତାର ପରିଚାୟକ ଥିଲା । ଆମ୍ଭମାନଙ୍କର ଠିକ୍ ସନ୍ ତାରିଖ ସ୍ମରଣ ହେଉନାହିଁ, ଆଜକୁ ପ୍ରାୟ ୪୦ ବର୍ଷର କଥା, କଟକବାସୀ କେତେଜଣ ଭଦ୍ରଲୋକ ଦରଖାସ୍ତ କରି ଉତ୍କଳର ଅଦାଲତମାନଙ୍କରୁ ପାରସ୍ୟ ଭାଷା ଉଠାଇଦେଲେ । ସେହିଦିନଠାରୁ ପାରସ୍ୟ ଭାଷା ଶନୈଃ ଶନୈଃ ବିଲୟ ପ୍ରାପ୍ତ ହେଲାଣି । ଅଦାଲତମାନଙ୍କରେ ଉତ୍କଳ ଏବଂ ଇଂରାଜୀ ଦୁଇଭାଷା ଚଳିବା ନିମନ୍ତେ ଗଭର୍ଣ୍ଣମେଣ୍ଟ ଆଜ୍ଞା କରିଅଛନ୍ତି । ବହୁ ଶତାବ୍ଦୀ ଉତ୍ତାରେ ଉତ୍କଳ ପକ୍ଷରେ ଏହି ସୁଯୋଗ ଘଟିଅଛି । ମାତ୍ର ଅଦାଲତମାନଙ୍କରେ ଯେତେଦୂର ଦେଶୀୟ ଭାଷା ଚଳିବାର ଗଭର୍ଣ୍ଣମେଣ୍ଟଙ୍କର ଇଚ୍ଛା, ତାହାଠାରୁ ଢେର କମ ଚଳୁଥିବାର ଦେଖାଯାଏ । ତାହାର କାରଣ ଏହି, ଅଦାଲତର ପ୍ରାୟ ସମସ୍ତ କିରାନୀ ଏବଂ ଅମଲା ଇଂରାଜୀ ପଢୁଆ । ଚିର ଅଭ୍ୟାସ ହେତୁରୁ ତଥା ହାକିମମାନଙ୍କ ସୁଖବୋଧ

ନିମନ୍ତେ ସମସ୍ତ କାର୍ଯ୍ୟ ଇଂରାଜୀରେ ଚଳାଇବାକୁ ଚାହାନ୍ତି । ଏଣେ ହାକିମମାନେ ହେଲେ ଇଂରେଜ, ସେମାନଙ୍କ ବୁଝିବା ସକାଶେ ଖୁବ୍ ସହଜ ହେଲା, କହିଲେ "So much the better" ଆଉ ବି.ଏ. ପାଶିଆ ହାକିମାନେ କହିଲେ- ଆରେ ଛି ! କୋଡ଼ିଏ ବର୍ଷକାଳ ଇଂରାଜୀ ଘୋସି ଘୋସି ହାକିମ ହେଲୁ, ମିସଲରେ ବସି ଓଡ଼ିଆ ଲେଖିବୁ ? ଏ ଉତ୍ତାରେ ସୁବର୍ଣ୍ଣ ଯୁଗ ବା - ରେଭେନ୍ସା ଯୁଗ

ଆଜି ଆମ୍ଭମାନଙ୍କର ସୁପ୍ରଭାତ, ରେଭେନ୍ସା ସାହେବଙ୍କ ପବିତ୍ର ନାମ ସ୍ମରଣକରି କୃତାର୍ଥ ହେଲୁ । ବର୍ତ୍ତମାନ ଉତ୍କଳ ଭୂମି ଯେତେଦୂର ଉନ୍ନତିଲାଭ କରିଅଛି, ଉକ୍ତ ମହାତ୍ମା ସେ ସମସ୍ତ ଉନ୍ନତିର ମୂଳାଧାର ଅଟନ୍ତି । ଆମ୍ଭେମାନେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଯାହାକିଛି ପାଇବାର ପ୍ରତ୍ୟାଶା କରୁଁ, ଉକ୍ତ ମହାତ୍ମା ପ୍ରାୟ ସମସ୍ତ ଆଶା ପୂର୍ଣ୍ଣ କରି ଦେଇଅଛନ୍ତି । ଉକ୍ତ ମହାତ୍ମାଙ୍କ ସମୟଠାରୁ ଉତ୍କଳଭାଷାର ପ୍ରକୃତ ଉନ୍ନତି, ପ୍ରକୃତ ଆଲୋଚନା ଆରମ୍ଭ ହୋଇଅଛି । ଉତ୍କଳ-ଭାଷା-ଇତିହାସରେ ଉକ୍ତ ମହାତ୍ମାଙ୍କ ପବିତ୍ର ନାମ ସୁବର୍ଣ୍ଣ ଅକ୍ଷରରେ ଲିଖିତ ହୋଇ ରହିବ । ଆମ୍ଭମାନଙ୍କୁ ଦାରୁଣ ଦୁଃଖର ସହିତ ଗୋଟିଏ କଥା ଲେଖିବାକୁ ହେଉଅଛି । ବର୍ତ୍ତମାନ ସାନଲାଟ ଶ୍ରୀଯୁକ୍ତ ଉଡ୍‌ବରନ ସାହେବ ଉତ୍କଳ ଭାଷା ମୁଣ୍ଡଚେକିବା ବେଳରେ ଠେଙ୍ଗାଏ କସିଦେଇ ଗଲେ । ଉକ୍ତ ମହୋଦୟ ସମ୍ବଲପୁର ଅଦାଲତମାନଙ୍କରୁ ଉତ୍କଳ ଭାଷା ଉଠାଇ ଦେଇ ଯେଉଁ କ୍ଷତି କରିଗଲେ, ସେ କ୍ଷତି ସହଜରେ ପୂର୍ଣ୍ଣ ହେବାର ନୁହେଁ । ଉତ୍କଳବାସିମାନେ ଚିରକାଳ ଏହି କଥା ସ୍ମରଣ କରି ଦୀର୍ଘ ନିଃଶ୍ବାସ ପକାଇବେ । ଉକ୍ତ ମହାତ୍ମାଙ୍କୁ ବଙ୍ଗ ପ୍ରେସିଡ଼େନ୍ସିର ସମସ୍ତ ଲୋକେ ଧନ୍ୟ ଧନ୍ୟ କହୁଅଛନ୍ତି, ମାତ୍ର ଉତ୍କଳର -

"ଅମୃତମ୍ବିଷମୀଶ୍ୱରେଚ୍ଛାୟା"

ବର୍ତ୍ତମାନ ଉତ୍କଳ ଭାଷାର ଆଶାନୁରୂପ ଉନ୍ନତି ପକ୍ଷରେ ରାଜକୀୟ ବିଭାଗ ଗୋଟିଏ ବିଶେଷ ଅନ୍ତରାୟ ରୂପେ ବିଦ୍ୟମାନ ରହିଅଛି । ବଙ୍ଗ, ମଧ୍ୟପ୍ରଦେଶ, ମାନ୍ଦ୍ରାଜହତା ତଥା ଗଡ଼ଜାତ ଏହି ଚାରି ଅଂଶରେ ବିଭକ୍ତ ଥିବାରୁ ଉତ୍କଳଭାଷିମାନଙ୍କ ମଧ୍ୟରେ ପରସ୍ପର ସହାନୁଭୂତି ଜନ୍ମିବା ଏବଂ ମିଳିମିଶି କିଛି କାର୍ଯ୍ୟ କରିବା ପକ୍ଷରେ ସୁଯୋଗ ଘଟୁନାହିଁ । ମାତ୍ର ରେଳପଥ, ବାଣିଜ୍ୟ ଏବଂ ସଭ୍ୟତାବୃଦ୍ଧି ସଙ୍ଗେ ସଙ୍ଗେ ଏହି ଅନ୍ତରାୟ ଅନ୍ତରିତ ହେବାର ଆଶା କରାଯାଇ ପାରେ ।

ହେ ଉତ୍କଳବାସୀ ମହାଶୟଗଣ, ଆପଣମାନେ ମନେରଖନ୍ତୁ, ମାତୃଭାଷାର ଉନ୍ନତି ବିନା ଦେଶୋନ୍ନତିର ଅନ୍ୟ ଉପାୟ ନାହିଁ । ସୌଭାଗ୍ୟପ୍ରଯୁକ୍ତ ଆମ୍ଭେମାନେ ପ୍ରଜାହିତୈଷୀ ଗଭର୍ଣ୍ଣମେଣ୍ଟକୁ ପାଇଅଛୁ, ଚତୁର୍ଦ୍ଦିଗରେ ଅନାଇ ଦେଖ ପ୍ରଜାଶିକ୍ଷା ପାଇଁ ଗଭର୍ଣ୍ଣମେଣ୍ଟ ଜଳସ୍ରୋତ ପରି ଟଙ୍କା ଢାଳି ଦେଉଅଛନ୍ତି । ହେ ଶିକ୍ଷିତ ସମ୍ପ୍ରଦାୟ, ଆପଣା ଆପଣା କର୍ତ୍ତବ୍ୟ ବୁଝ, ହେଳାରେ ରତ୍ନ ହରାଅ ନାହିଁ । ବର୍ତ୍ତମାନ ସର୍ବପ୍ରକାର ସୁଯୋଗ ମିଳିଅଛି, ଯଦି ଆଳସ୍ୟ ବା ତାଚ୍ଛଲ୍ୟରେ ମାତୃଭାଷା-ପ୍ରତି ଅନାଦର କର, ଚିରକାଳ ଅନ୍ୟଜାତିଠାରେ ଅନାଦୃତ, ଅବଜ୍ଞାତ ହୋଇ ରହିବ ।

ooo

୩

# ଓଡ଼ିଆ ଭାଷା

## ମଧୁସୂଦନ ରାଓ

ଭାରତର ସକଳ ସ୍ଥାନରେ ଆବହମାନକାଳ ପ୍ରଚଳିତ ପ୍ରବାଦ ଅନୁସାରେ ସଂସ୍କୃତରୁ ପ୍ରାକୃତ ଏବଂ ପ୍ରାକୃତରୁ ହିନ୍ଦୀ, ବଙ୍ଗଳା, ଓଡ଼ିଆ, ମରହଟ୍ଟୀ ଏବଂ ଗୁଜୁରାଟୀ ପ୍ରଭୃତି ଆର୍ଯ୍ୟଭାଷା କାଳର ବିବର୍ତ୍ତନରେ ଆବିର୍ଭୂତ ହୋଇଅଛି । ଯେଉଁଭାଷା ଘେନି ଆର୍ଯ୍ୟମାନେ ଭାରତକୁ ଆଗମନ କରିଥିଲେ, ତାହା ସେମାନଙ୍କ ଆଗମନ ସମୟରେ ସଂସ୍କୃତ ନାମରେ ଅଭିହିତ ହେଉ ନଥିଲେହେଁ, ପରବର୍ତ୍ତୀ କାଳରେ ସଂସ୍କୃତନାମରେ କଥିତ, ବ୍ୟାକରଣ ସଂଯତ, ବୟୋବୃଦ୍ଧ, ଲିଖିତ ଭାଷାର ଶୈଶବୀୟ ଅଭିବ୍ୟକ୍ତି କିମ୍ବା ପୂର୍ବରୂପ ମାତ୍ର । ଆର୍ଯ୍ୟମାନଙ୍କର ଭାରତବିଜୟ କାଳରେ ସେହି ଭାଷାର କି ନାମ ଥିଲା ତାହା ଜଣାନାହିଁ, କିନ୍ତୁ ତାହାକୁହିଁ କଥିତଭାଷା ରୂପେ ଆର୍ଯ୍ୟବଂଶୀୟମାନେ ସମସ୍ତ ଆର୍ଯ୍ୟାବର୍ତ୍ତରେ ବ୍ୟବହାର କରୁଥିଲେ, ଏହା ନିଃସନ୍ଦେହ । କାଳକ୍ରମେ ଲୋକମୁଖରେ ବିଚରଣଶୀଳ ଜୀବନ୍ତ ଭାଷାର ପରିବର୍ତ୍ତନର ନିୟମାନୁସାରେ ଏହି ପ୍ରାଚୀନ ଆର୍ଯ୍ୟଭାଷା ପ୍ରାକୃତରୂପେ ପରିଣତ ହୋଇ କେଉଁଠାରେ ଶୌରସେନୀ, କେଉଁଠାରେ ମହାରାଷ୍ଟ୍ରୀ, କେଉଁଠାରେ ବା ପାଲି ବା ମାଗଧୀ ନାମରେ ଅଭିହିତ ହେଲା । ଏହି ପ୍ରାକୃତ ଭାଷାହିଁ ଆଧୁନିକ ହିନ୍ଦୀ ପ୍ରଭୃତିର ମାତା । ସୁତରାଂ ମୂଳ ଆର୍ଯ୍ୟଭାଷାକୁ ଆଧୁନିକ ଭାଷାଗୁଡ଼ିକର ମାତାମହୀ ବୋଲାଯାଇ ପାରେ ।

ପଶ୍ଚିମରେ ନାଗପୁର ଓ ଛୋଟନାଗପୁର ପ୍ରଦେଶ, ଉତ୍ତରରେ ବଙ୍ଗ, ଦକ୍ଷିଣରେ ତୈଲଙ୍ଗ, ଏହି ସୀମାନ୍ତର୍ଗତ ବିସ୍ତୃତ ଭୂଭାଗରେ ପ୍ରାୟ ଏକକୋଟି ଲୋକ ଓଡ଼ିଆକୁ ମାତୃଭାଷା ରୂପେ ବ୍ୟବହାର କରନ୍ତି । ଓଡ଼ିଶା ଭାରବାହୁକ ବେହେରାମାନଙ୍କ ଦେଶ ଏବଂ ଓଡ଼ିଆ ସାହିତ୍ୟ ବିବର୍ଜିତ ବର୍ବରଭାଷା - ଏହି ସଂସ୍କାର କିଛିକାଳ ପୂର୍ବେ ବଙ୍ଗାଳିମାନଙ୍କ ମଧ୍ୟରେ ଅନେକଙ୍କ ମନରେ ବଦ୍ଧମୂଳ ଥିଲା । ଏପର୍ଯ୍ୟନ୍ତ ଉକ୍ତ ସଂସ୍କାର ସମ୍ପୂର୍ଣ୍ଣରୂପେ ଅପନୀତ ହୋଇ ନାହିଁ, କିନ୍ତୁ ଏହା ନିଶ୍ଚିତ ଯେ ଉଭୟ ପ୍ରଦେଶର ଘନିଷ୍ଠତା ବୃଦ୍ଧି ସଙ୍ଗେ ସଙ୍ଗେ ଏହା ଦିନକୁ ଦିନ ଅପସାରିତ ହେଉଅଛି । ଓଡ଼ିଶାବାସିମାନଙ୍କ ମଧ୍ୟରେ ଆର୍ଯ୍ୟବଂଶୋଦ୍ଭବ, ବ୍ରାହ୍ମଣାଦି ଉଚ୍ଚଜାତୀୟ ଲୋକମାନଙ୍କର ସଂଖ୍ୟା ଅପରଜାତୀୟ ଲୋକମାନଙ୍କ ତୁଳନାରେ ଅଳ୍ପନୁହେଁ

ଏବଂ ଓଡ଼ିୟା ଭାଷା ଯେ ବଙ୍ଗଳାର ନିକଟତମ ଭଗିନୀ ଏବଂ ପ୍ରାଚୀନସାହିତ୍ୟଶାଳିନୀ, ତାହା ଆଜିକାଲି ଅନେକ ବୁଝି ପାରିଅଛନ୍ତି । ସଂସ୍କୃତମୂଳକ ଭାଷାମାନଙ୍କ ମଧ୍ୟରେ ଆଧୁନିକ ଓଡ଼ିୟା ସହିତ ବଙ୍ଗଳାର ଯେତେଦୂର ସାଦୃଶ୍ୟ ଓ ନିକଟ ସମ୍ବନ୍ଧ, ଅନ୍ୟ କୌଣସି ଭାଷାର ତେତେ ନାହିଁ, ଏହା ନିଶ୍ଚିତରୂପେ ବୋଲାଯାଇ ପାରେ; କିନ୍ତୁ ତାହା ବୋଲି କେହି ଯେପରି ମନେ ନ କରନ୍ତି ଯେ ଓଡ଼ିୟା ସ୍ୱତନ୍ତ୍ରଭାଷା ନୁହେଁ, ବଙ୍ଗଳାର ଉପଭାଷା ମାତ୍ର; ଭାଷାର ଗଠନ ଏବଂ ଇତିହାସ ଉଭୟ ଆଡ଼ୁ ଦେଖିଲେ ସ୍ୱାତନ୍ତ୍ର୍ୟ ବିଶଦରୂପେ ଉପଲବ୍ଧି ହୁଏ ।

ଆର୍ଯ୍ୟମାନେ ସର୍ବପ୍ରଥମେ ଠିକ୍ କେଉଁ ସମୟରେ ଏବଂ କେଉଁ ପଥରେ ଓଡ଼ିଶାକୁ ଆଗମନ କରିଥିଲେ, ତାହା ନିର୍ଦ୍ଦେଶ କରାଯାଇ ନ ପାରେ । ମହାରାଜ ଚନ୍ଦ୍ରଗୁପ୍ତଙ୍କର ସମକାଳବର୍ତ୍ତୀ ସାମନ୍ତ ନୃପତି ବୌଦ୍ଧରାଜା ଏୖରଙ୍କ ସମୟରେ ଏବଂ ତତ୍‌ପରେ ବୌଦ୍ଧ ମହାରାଜା ଅଶୋକଙ୍କ ସମୟରେ ଯେ ଓଡ଼ିଶା ସଙ୍ଗେ ମଗଧର ଘନିଷ୍ଠ ସମ୍ପର୍କ ଥିଲା, ସେ ବିଷୟରେ ଉଦୟଗିରିର ପ୍ରସ୍ତରଲିପି, ଧଉଳିଗିରିର ଶିଳା ଖୋଦିତ ଅଶୋକାନୁଶାସନ ଏବଂ ଗୁମ୍ଫା ପ୍ରଭୃତି ଓଡ଼ିଶାର ନାନା ବୌଦ୍ଧକୀର୍ତ୍ତି ଅକାଟ୍ୟ ପ୍ରମାଣରୂପେ ବିରାଜିତ ରହିଅଛି । ଖ୍ରୀଷ୍ଟୀୟ ଚତୁର୍ଥ କିମ୍ବା ପଞ୍ଚମ ଶତାବ୍ଦୀରେ ବୌଦ୍ଧପ୍ରଭାବ ବିଧ୍ୱସ୍ତ ହେଲା । କିନ୍ତୁ ଏହାପରେ ମଧ ଓଡ଼ିଶା ମଗଧର ଗୁପ୍ତବଂଶୀୟ ସମ୍ରାଟମାନଙ୍କର ପ୍ରତିଷ୍ଠିତ ବା ଅଧୀନସ୍ଥ କେଶରୀବଂଶୀୟ ରାଜାମାନଙ୍କର ଶାସନରେ ଥିଲା । ସୁତରାଂ ବୋଲିବାକୁ ହେବ ଯେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ଖ୍ରୀଷ୍ଟପର ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଚତୁର୍ଦ୍ଦଶଶତ ବର୍ଷ ଓଡ଼ିଶା ମଗଧ ସଙ୍ଗେ ଘନିଷ୍ଠରୂପେ ସଂଶ୍ଳିଷ୍ଟ ଥିଲା । କେଶରୀବଂଶୀୟ ନୃପତିମାନଙ୍କ ସମୟରେ ମଧ ମଧ୍ୟଦେଶ (ପ୍ରୟାଗ ଅଞ୍ଚଳ) ଏବଂ ମଗଧରୁ ଅନେକ ବ୍ରାହ୍ମଣ ଓ କ୍ଷତ୍ରୀୟପରିବାର ଉତ୍କଳକୁ ଆନୀତ ହେବାର ପ୍ରବାଦ ପ୍ରଚଳିତ ଅଛି । ଅତଏବ ଓଡ଼ିୟାଭାଷା ଯେ ପ୍ରଥମେ ମାଗଧୀୟ ପ୍ରାକୃତରୁ ଉତ୍ପନ୍ନ ଏବଂ ତତ୍ପରବର୍ତ୍ତୀ କାଳରେ ମଧ୍ୟଦେଶୀ ଏବଂ ମାଗଧୀ ହିନ୍ଦୀ ଭାଷାର ପ୍ରଭାବାକ୍ରାନ୍ତ, ତାହା ସହଜରେ ଅନୁମିତ ହୁଏ । ବୋଧହୁଏ ଉତ୍କଳର ବୌଦ୍ଧଗଣହିଁ ଓଡ଼୍ର ବା ଓଢ୍ର ନାମରେ ପରିଚିତ । ଉତ୍କଳର ଭୁବନେଶ୍ୱର ଖଣ୍ଡଗିରି ସନ୍ନିହିତ ଅଞ୍ଚଳହିଁ ବିଶେଷରୂପେ ଓଡ଼୍ର ବା ଓଢ୍ର ଦେଶ ବା ଓଡ଼ିଶା ନାମରେ ପ୍ରଖ୍ୟାତ ଏବଂ ଏହି ଅଞ୍ଚଳରେ ହିଁ ବୌଦ୍ଧମାନଙ୍କର ବିଶେଷ ପ୍ରାଦୁର୍ଭାବ ଥିଲା । ଏପରି ସ୍ଥଳରେ 'ବୌଦ୍ଧ' ଶବ୍ଦର ଓଢ୍ର ଶବ୍ଦର ବ୍ୟୁତ୍ପତ୍ତି ଅନୁମାନ କରିବା ଅସଙ୍ଗତ ବୋଧ ହେଉନାହିଁ । ଶୈବଧର୍ମର ଅଭ୍ୟୁଦୟରେ ଏବଂ ବୌଦ୍ଧଧର୍ମର ପତନରେ ସେମାନେ ଓଡ୍ର ନାମରେ ପତିତ କ୍ଷତ୍ରୀୟଶ୍ରେଣୀରେ ବ୍ରାହ୍ମଣଗଣ କର୍ତ୍ତୃକ ସନ୍ନିବିଷ୍ଟ ହୋଇଥିଲେ । ଏହି ଓଡ଼୍ରମାନଙ୍କ ନାମାନୁସାରେ 'ଓଡ଼ିଶା' ଭୂଖଣ୍ଡ ଏବଂ ଓଡ଼ିଆ ଭାଷାର ନାମକରଣ ହୋଇଅଛି ।

କେଶରୀବଂଶୀୟ ରାଜାମାନଙ୍କ ଉତ୍ତାରେ ଗଙ୍ଗବଂଶୀୟ ରାଜାମାନଙ୍କର ଅଭ୍ୟୁଦୟ ଏବଂ ପ୍ରାଦୁର୍ଭାବ । ଗଙ୍ଗବଂଶୀୟମାନେ ଦ୍ରାବୀଡ଼କୁଳୋଦ୍ଭବ ବା ତୈଲଙ୍ଗଭାଷୀ ନ ହେଲେ

ହେଁ ଗୋଦାବରୀତୀରସ୍ଥ ପ୍ରଦେଶରୁ ଉତ୍କଳରୁ ଆସିଥିଲେ, ସୁତରାଂ ଦାକ୍ଷିଣାତ୍ୟ ପ୍ରଭାବ ସେମାନଙ୍କ ସମୟରେ ଓଡ଼ିଆଭାଷା ଉପରେ ସଂକ୍ରାନ୍ତ ହେବାକୁ ଲାଗିଲା, କିନ୍ତୁ ସେ ପ୍ରଭାବର ଆରମ୍ଭ ସମୟରେ (ଏକାଦଶ ଶତାବ୍ଦୀ) ଓଡ଼ିଆ ଭାଷା ସମ୍ପୂର୍ଣ୍ଣରୂପେ ଗଠିତ ହୋଇଥିଲା, ସୁତରାଂ ତାହାଦ୍ୱାରା ଓଡ଼ିଆଭାଷାର ବିଶେଷ କିଛି ପରିବର୍ତ୍ତନ ସାଧିତ ହୋଇପାରି ନାହିଁ । ଓଡ଼ିଆଭାଷାର ଅକ୍ଷର ପୂର୍ବପ୍ରଚଳିତ ମାଗଧୀ କୁଟିଳଲିପିର ରୂପାନ୍ତର ମାତ୍ର । କେବଳ ତୈଲଙ୍ଗାକ୍ଷର ଗୋଲ ବୋଲି ଓଡ଼ିଆ ଅକ୍ଷର ଗୋଲ ହୋଇଅଛି, ଏହାହିଁ ଦାକ୍ଷିଣାତ୍ୟ ପ୍ରଭାବର ଫଳ ବୋଲି ବୋଧହୁଏ । ତାହା ଛଡ଼ା ପୁଣି ତାଳପତ୍ରରେ ଲୌହଲେଖନୀ ସାହାଯ୍ୟରେ ଲିଖନ ଏହାର ଗୋଲ ହେବାର ଅପର କାରଣ ବୋଲି ଅନୁମିତ ହୁଏ ।

ଇତିପୂର୍ବେ କହିଅଛୁଁ, ବଙ୍ଗଦେଶ, ଛୋଟନାଗପୁର, ଏବଂ ମଧ୍ୟପ୍ରଦେଶର ହିନ୍ଦୀଭାଷୀ ଅଞ୍ଚଳ ଉତ୍କଳର ସନ୍ନିହିତ । ସେହି କାରଣରୁ ବଙ୍ଗଳା ଓ ହିନ୍ଦୀର ପ୍ରଭାବ ଓଡ଼ିଆଭାଷା ଭିତରେ ଲକ୍ଷିତ ହୁଏ । ପ୍ରଥମତଃ ମଧ୍ୟଦେଶ ଏବଂ ମଗଧରୁ ଯେଉଁ ଆର୍ଯ୍ୟମାନେ ଉତ୍କଳକୁ ଆଗମନ କରିଥିଲେ, ସେମାନଙ୍କ ସଂସ୍ରବରେ ହିନ୍ଦୀ ପ୍ରଭାବର ବିସ୍ତାର ହୋଇଥିଲା, ତାହା ଉପରେ ପୁଣି ହିନ୍ଦୀର ସାନ୍ନିଧ ଥିବାରୁ ସେହି ପ୍ରଭାବ ବଦ୍ଧମୂଳ ହେଲା । ଗଙ୍ଗବଂଶର ଚରମକାଳରେ ଚୈତନ୍ୟ ଗୋସାଇଁ ଓଡ଼ିଶାକୁ ଆସି ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ବୈଷ୍ଣବଧର୍ମ ସମସ୍ତ ଉତ୍କଳରେ ପରିବ୍ୟାପ୍ତ ହେଲା ଏବଂ ଅନେକ ବଙ୍ଗାଳୀ ଉତ୍କଳରେ ବାସ କରିବାକୁ ଲାଗିଲେ । ସେହି ସୂତ୍ରରେ ବଙ୍ଗଳାଭାଷାରେ ଲିଖିତ ଚୈତନ୍ୟ ଚରିତାମୃତ ପ୍ରଭୃତି ବୈଷ୍ଣବଗ୍ରନ୍ଥ ଓଡ଼ିଶାରେ ପ୍ରଚାରିତ ହେଲା ଏବଂ ବଙ୍ଗଳାଭାଷା ଓ ସାହିତ୍ୟର ପ୍ରଭାବ ଓଡ଼ିଆଭାଷା ଓ ସାହିତ୍ୟକୁ ବିଶେଷଭାବରେ ସ୍ପର୍ଶକଲା । ଏହିସବୁ ବଙ୍ଗଳା ବୈଷ୍ଣବଗ୍ରନ୍ଥ ଓଡ଼ିଆ ଅକ୍ଷରରେ ଲିଖିତ, ଆଜିକାଲି ମଧ୍ୟ ଅନେକ ସ୍ଥାନରେ ଦେଖାଯାଏ । ବଙ୍ଗଳା ବୈଷ୍ଣବ ସଂକୀର୍ତ୍ତନ ଆଜି ପର୍ଯ୍ୟନ୍ତ ଓଡ଼ିଶାର ଗ୍ରାମେ, ଗୀତ ହେଉଅଛି । ଏହିପରି ବୋଧ ହୁଏ କବିକଙ୍କଣାଦି ପୁରାତନ ବଙ୍ଗଳା ପଦ୍ୟ ଗ୍ରନ୍ଥର କୌଣସି ଶବ୍ଦ ଏବଂ ଆଧୁନିକ ପ୍ରଚଳିତ କୌଣସି ଓଡ଼ିଆ ଶବ୍ଦର ମୂଳ ଏକ । ଯଥା ବାହୁଡ଼ି, ଥାଟ ପ୍ରଭୃତି ଓଡ଼ିଶାରେ ଅତିଶୟ ପ୍ରଚଳିତ । ଅନନ୍ତର ମୁସଲମାନ ଏବଂ ମରହଟ୍ଟାମାନଙ୍କ ପ୍ରାଧାନ୍ୟ କାଳରେ ଅନେକ ଆରବୀ, ପାର୍ଶୀ, ଏବଂ ମରହଟ୍ଟୀ ଶବ୍ଦ ଓଡ଼ିଆ ଭାଷାରେ ପ୍ରବେଶ ଲାଭ କରିଅଛି ।

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ ଗଙ୍ଗବଂଶୀୟ ନରପତିମାନଙ୍କ ସମୟରେ କୁଟିଳଲିପି ଓ ତୈଲଙ୍ଗ ଲିପି ଉଭୟର ସଂଯୋଗରେ ଉତ୍କଳାକ୍ଷର ଉଦ୍ଭୁତ ହୋଇଅଛି । ଓଡ଼ିଆ ଅକ୍ଷରରେ ଲିଖିତ ମାଦଳାପାଞ୍ଜି ନାମକ ଐତିହାସିକ ବିବରଣଗ୍ରନ୍ଥ ପ୍ରାୟ ଛ ଶତ ବର୍ଷ ହେଲା ଲିଖିତ ଏବଂ ସଂରକ୍ଷିତ ହୋଇ ଆସୁଅଛି । ସୁତରାଂ ଲିଖିତ ଓଡ଼ିଆଭାଷା ଯେ ଅନ୍ତତଃ ଛ'ଶତ ବର୍ଷର ହେବ, ତହିଁରେ ସନ୍ଦେହ ନାହିଁ । ବଙ୍ଗଳାଭାଷାରେ ଲିଖିତ ଛ'ଶତ ବର୍ଷ ପୂର୍ବର

କୌଣସି ଗ୍ରନ୍ଥ ଅଛି କି ନା ଜାଣୁନାହିଁ । ଓଡ଼ିଆ ଭାଷା ପ୍ରାକୃତ ସହିତ କିପରି ଘନିଷ୍ଠଭାବରେ ସମ୍ବନ୍ଧ ତାହା ନିମ୍ନଲିଖିତ ଶବ୍ଦ ନିର୍ଘଣ୍ଟରୁ ପ୍ରତିପନ୍ନ ହେବ । ସେଥିରୁ ଓଡ଼ିଆଭାଷାର ସ୍ୱାତନ୍ତ୍ର୍ୟ କିୟତ୍‌ପରିମାଣରେ ଉପଲବ୍ଧ ହେବ ।

| ପ୍ରାକୃତ | ଓଡ଼ିଆ | ସଂସ୍କୃତ |
|---|---|---|
| ଘିଅ | ଘିଅ | ଘୃତ |
| ମୁହଁ | ମୁହଁ | ମୁଖ |
| ସାହୁ | ସାହୁ | ସାଧୁ |
| ଗଣ୍ଠି | ଗଣ୍ଠି | ଗ୍ରନ୍ଥି |
| ବୀଅ | ବୀଅନ(ବିହନ) | ବୀଜ |
| ଠିଆ | ଠିଆ | ସ୍ଥିତ |
| ସାଖର | ସାକର | ଶର୍କରା |
| ଖମ୍ଭୋ | ଖମ୍ଭ | ସ୍ତମ୍ଭ |
| ପିଅର | ପିଅର | ପିତା |
| ବୋଲଇ | ବୋଲଇ | ବ୍ରବୀତି |
| ଗୋଡ଼ | ଗୋଡ଼ | ଗୋଦ |
| ପୋଖର | ପୋଖରୀ | ପୁଷ୍କର |
| ତୁନ୍‌ହୀ | ତୁନି | ତୁଷ୍ଣୀ |
| ସୋଅ | ସୁଅ | ସ୍ରୋତ |
| ପଢୁମ୍ | ପଢୁଆଁ | ପ୍ରଥମ |
| ମହୁ | ମହୁ | ମଧୁ |
| ଅଛଇ | ଅଛଇ | ଅସ୍ତି |
| ଅଛନ୍ତି | ଅଛନ୍ତି | ସନ୍ତି |
| ପିଅନ୍ତି | ପିଅନ୍ତି | ପିବନ୍ତି |
| ଭୋଖ | ଭୋକ | ବୁଭୁକ୍ଷା |
| ହଲିୟ | ହଳିଆ | ହାଳିକ |
| ସୁଆର | ସୁଆର | ସୂପକାର |
| ପନ୍ତି | ପନ୍ତି | ପଙ୍‌କ୍ତି |
| ଆପଣ | ଆପଣ | ଆତ୍ମନ୍ |
| ଏଟ୍‌ଠା | ଏଠା | ଅତ୍ର |
| କିସ | କିସ | କିମ୍ |

| | | |
|---|---|---|
| କହିଁ | କାହିଁ | କୁତ୍ର |
| ଯହିଁ | ଯହିଁ | ଯତ୍ର |
| ତହିଁ | ତହିଁ | ତତ୍ର |
| ଗହୀର | ଗହୀର | ଗଭୀର |
| ଗେନ୍‌ହଇ | ଘେନଇ | ଗୃହ୍ଣାତି |
| ଚୌଠୀ | ଚୌଠୀ | ଚତୁର୍ଥୀ |
| ଛାହମୁ | ଛାମୁ | ସମ୍ମୁଖ |
| ବେଣ୍ଟ | ବେଣ୍ଟ | ବୃନ୍ତ |
| ପୁଣ | ପୁଣ | ପୁନଃ |
| ମଉଡ଼ | ମଉଡ଼ | ମୁକୁଟ |
| ମଝିଆଁ | ମଝିଆଁ | ମଧମା |
| ରାଉଳ | ରାଉଳ | ରାଜକୁଳ |
| ବାହା | ବାହା | ବାହୁ |
| ବି | ବି | ଅପି |
| ଶେଯ | ଶେଯ | ଶଯ୍ୟା |
| ବିହି | ବିହି | ବିଧି |
| ନଈ | ନଈ | ନଦୀ |
| କାଓ | କାଉ | କାକ |

ଓଡ଼ିଆ ଭାଷା ଯେ ପ୍ରାକୃତର କନ୍ୟା ତାହା ଆହୁରି ଶତ ଶତ ଦୃଷ୍ଟାନ୍ତଦ୍ୱାରା ପ୍ରଦର୍ଶିତ ହୋଇପାରେ । ବର୍ତ୍ତମାନ ହିନ୍ଦୀ ପ୍ରଭୃତି ଭଗିନୀ ଭାଷାର, ବିଶେଷତଃ ବଙ୍ଗଳାର ସହିତ ଓଡ଼ିଆର ସାଦୃଶ୍ୟ ଦେଖାଇ ଦିଆଯାଉଅଛି । ଅନେକ ଶବ୍ଦ ହିନ୍ଦୀ ଓ ଓଡ଼ିଆରେ ଅଭିନ୍ନ କିମ୍ବା ପ୍ରାୟ ଅଭିନ୍ନରୂପ । ଏହିପରି ଅନେକ ଶବ୍ଦ ବଙ୍ଗଳା ଓ ଓଡ଼ିଆରେ ଏବଂ ମରହଟ୍ଟା ଓ ଓଡ଼ିଆରେ ମଧ୍ୟ ଏକ କିମ୍ବା ପ୍ରାୟ ଅଭିନ୍ନରୂପ ଦେଖାଯାଏ । ନିମ୍ନରେ କେତେଗୁଡ଼ିଏ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା ।

| ହିନ୍ଦୀ | ଓଡ଼ିଆ |
|---|---|
| କୁହାର | କୁହାର |
| ପଥର | ପଥର |
| ବଢ଼ନା | ବଢ଼ିବା |
| ବୁଁଦ | ବୁନ୍ଦା |
| ମହଁଗା | ମହଙ୍ଗା |

| | |
|---|---|
| କାମ୍ | କାମ |
| ଭଣ୍ଡାର | ଭଣ୍ଡାର |
| କୀଡ଼ା | କୀଡ଼ା |
| କୋଇଲି | କୋଇଲି |
| କେଓଟ | କେଉଟ |
| ଅଗୁଆ | ଅଗୁଆ |
| ପଟା | ପଟା |
| ଟଓଲେ | ଲେଉଟ |
| ଆସରା | ଅସରା |
| କୌଡ଼ୀ | କୌଡ଼ୀ |
| ଶଗଡ଼ | ଶଗଡ଼ |
| ଧିଟ୍ | ଧିଟ |
| ଗୋତ | ଗୋତ (ଗୋତ୍ରି) |

| ବଙ୍ଗଳା | ଓଡ଼ିଆ |
|---|---|
| ତେଁତୁଲି | ତେନ୍ତୁଳି |
| ଆଖୁ | ଆଖୁ |
| ସଜନା | ସଜନା |
| ବଓଲ | ବଉଳ |
| ବାଡ଼(ଭାତ ବାଡ଼) | ବାଡ଼ |
| ଝି | ଝିଅ |
| ଛାଡ଼୍ | ଛାଡ଼ |
| ଚିଲ୍ | ଚିଲ |
| ବିଛା | ବିଛା |
| ମାଛି | ମାଛି |
| ବେଙ୍ଗ୍ | ବେଙ୍ଗ |
| ପେଚା | ପେଚା |
| ସାଧ୍ | ସାଧ |
| କାମାର | କମାର |
| ସାଁତଲାନ | ସନ୍ତୁଳିବା |

| | |
|---|---|
| ବାସି | ବାସି |
| ଢୋତ | ଢୋତ |
| ଟେରା | ଟେରା |
| ମରହଟ୍ଟୀ | ଓଡ଼ିୟା |
| ନାବଡ଼ୀ | ନାଉଡ଼ୀ |
| ଆବଲା | ଆଉଲା |
| ମୋକଲା | ମୁକୁଳା |
| ନିଶନୀ | ନିଶୁଣୀ |
| ପହୁଣେ | ପହୁଁଚିବା |
| ମାଞ୍ଜର | ମଞ୍ଜାରି |
| ପାଲୀ | ପାଳୀ |
| ଆଣ | ଚାଣ |
| ପଣସ | ପଣସ |
| ଝୁରଣେ | ଝୁରିବା |
| ବ୍ୟାଜ | ବ୍ୟାଜ(ସୁଧ) |
| ପେଣ୍ଡ | ପେଣ୍ଡ |
| ଭଶିର | ଉଛୁର |
| ଶେଲୀ | ଛେଳୀ |
| ତୋଁଡ଼ | ତୁଣ୍ଡ |
| ଥାଟ | ଥାଟ |
| ବାନ୍ତି | ବାନ୍ତି |
| ଫଡ଼ଲ | ପରଳ |

ଉଚ୍ଚାରଣ ବିଷୟରେ ଓଡ଼ିୟା ଓ ବଙ୍ଗଳା ମଧ୍ୟରେ ଅନେକ ପ୍ରଭେଦ ଦେଖାଯାଏ । ଓଡ଼ିୟାର ଉଚ୍ଚାରଣ ଅନେକ ପରିମାଣରେ ଦାକ୍ଷିଣାତ୍ୟର ସଂସ୍କୃତ ଉଚ୍ଚାରଣର ଅନୁରୂପ । ଋ, ଌ ବଙ୍ଗଳାରେ ରି, ଲି କିନ୍ତୁ ଓଡ଼ିୟାରେ ରୁ, ଲୁ ରୂପେ ଉଚ୍ଚାରିତ ହୁଏ, ଯଥା- ଗୃହଶବ୍ଦର ବଙ୍ଗଳା ଉଚ୍ଚାରଣ ଗ୍ରିହ୍ । ବଙ୍ଗଳାରେ ଣ ଓ ନ ର ଉଚ୍ଚାରଣଗତ ପ୍ରଭେଦ ନାହିଁ, କିନ୍ତୁ ଓଡ଼ିୟାରେ ମୂର୍ଦ୍ଧନ୍ୟ ଣ ର ସଂସ୍କୃତ ଉଚ୍ଚାରଣ ସଂରକ୍ଷିତ ହୋଇଅଛି । ବଙ୍ଗଳାରେ ଗୋଟିଏ ମାତ୍ର ଲ କିନ୍ତୁ ଓଡ଼ିୟାରେ ଦନ୍ତ୍ୟ ଓ ମୂର୍ଦ୍ଧଣ୍ୟ ଲ ବିଭିନ୍ନରୂପେ ଲିଖିତ ଓ ଉଚ୍ଚାରିତ ହୁଏ । ବଙ୍ଗଳାରେ 'କେନ' ଏହି ଶବ୍ଦର 'କେ'ର ଏକାର ଯେପରି ଉଚ୍ଚାରିତ ହୁଏ ଓଡ଼ିୟାରେ ଏକାରର ସେପରି ଉଚ୍ଚାରଣ ନାହିଁ । ସଂଯୁକ୍ତବର୍ଣ୍ଣ ମଧ୍ୟରେ 'କ୍ଷ'ର ଉଚ୍ଚାରଣ ବଙ୍ଗଳାରେ

'ଷ୍ଟ' ପରି, କିନ୍ତୁ ଓଡ଼ିଆରେ 'ଷ'ରେ ଦନ୍ତ୍ୟ ନ ଯୋଗକଲେ ଯେପରି ଉଚ୍ଚାରଣ ହୁଏ ସେହିପରି । ବଙ୍ଗଳାରେ ବ ଫଳା ପ୍ରାୟ ଉଚ୍ଚାରିତ ହୁଏନାହିଁ; କିନ୍ତୁ ଓଡ଼ିଆରେ ତାହାର ସ୍ପଷ୍ଟ ଉଚ୍ଚାରଣ ଅଛି । ଓଡ଼ିଆରେ ଅକାରାନ୍ତ ଶବ୍ଦଗୁଡ଼ିକର ଅନ୍ତ୍ୟ 'ଅ' ସୁସ୍ପଷ୍ଟ ଉଚ୍ଚାରିତ ହୁଏ । ଏହିସବୁ ଉଚ୍ଚାରଣର ପ୍ରଭେଦ ହେତୁରୁ ଓଡ଼ିଆ ଭାଷା ବଙ୍ଗାଳୀ ନିକଟରେ ରୂଢ଼ ଓ କର୍କଷ ବୋଲି ବୋଧ ହୁଏ ।

ବ୍ୟାକରଣର ବ୍ୟବସ୍ଥା ସମ୍ବନ୍ଧରେ ଓଡ଼ିଆ ଭାଷା ବଙ୍ଗଳାର ଅନୁରୂପ । ଲିଙ୍ଗ ପ୍ରକରଣରେ ସ୍ତ୍ରୀତ୍ୱ ବୁଝାଇବାପାଇଁ ଦେଶଜ ଏବଂ ଅପଭ୍ରଂଶ ଶବ୍ଦ ସ୍ଥଳରେ ଆଣୀ ଓ ଉଣୀ ପ୍ରତ୍ୟୟ ହୁଏ । ଯଥା- ଚାଷୁଣୀ, ବଣିଆଣୀ । ଓଡ଼ିଆରେ ଶବ୍ଦକୁ ବହୁବଚନାନ୍ତ କରିବାକୁ ହେଲେ ଏକବଚନାନ୍ତ ଶବ୍ଦପରେ 'ମାନ' ବିଭକ୍ତି ପ୍ରୟୋଗ କରାଯାଏ । 'ମାନ' ବିଭକ୍ତିର ଉତ୍ପତ୍ତି ସମ୍ବନ୍ଧରେ ସ୍ଥିରାତ୍ମକ କିଛିହିଁ ବୋଲାଯାଇ ନ ପାରେ । ତେବେ "ମାନ୍ୟ ଅର୍ଥରେ ବହୁବଚନ" ଏହି ବାକ୍ୟକୁ ଓଲଟାଇ ବହୁବଚନରେ 'ମାନ' ପ୍ରୟୋଗ କରିବାର ରୀତି ଉଦ୍ଭାବିତ ହୋଇଥିବା ଅସମ୍ଭବ ନୁହେଁ । ଓଡ଼ିଆରେ କର୍ମ୍ମ ଏବଂ ସମ୍ପ୍ରଦାନ କାରକର 'କୁ' ବିଭକ୍ତି ହିନ୍ଦୀର 'କୋ'ର ଲଘୁକରଣ ବୋଲି ବୋଧ ହୁଏ । ଓଡ଼ିଆଭାଷାର ଅପାଦାନର 'ରୁ' ବୋଧ ହୁଏ ପ୍ରାକୃତର 'ଉ'ର ରୂପାନ୍ତର । ସମ୍ବନ୍ଧର ବିଭକ୍ତି 'ର' ଓଡ଼ିଆ ଓ ବଙ୍ଗଳା ଉଭୟରେ ସମାନ । ଅଧିକରଣର ବିଭକ୍ତି 'ରେ' ପ୍ରାକୃତ 'ଏ'ର ଭିନ୍ନରୂପ ବୋଲିବାକୁ ହେବ । 'ଏ' ପ୍ରତ୍ୟୟ କେତେବେଳେ ଏକତ୍ୱବୋଧକ କେତେବେଳେ ବା ବହୁତ୍ୱବୋଧକ ହୋଇଥାଏ, ଯଥା; ଜଣେ, ଲୋକେ । ଓଡ଼ିଆରେ ଆଖ୍ୟାତ ବିଭକ୍ତିଗୁଡ଼ିକ ମଧ୍ୟରେ ନିତ୍ୟପ୍ରବୃତ୍ତ ବର୍ତ୍ତମାନର ଏବଂ ଅନୁଜ୍ଞାର ପ୍ରଥମପୁରୁଷ ବହୁବଚନାନ୍ତ 'ଅନ୍ତି' ଓ 'ଅନ୍ତୁ' ପ୍ରତ୍ୟୟ ସମ୍ପୂର୍ଣ୍ଣ ରୂପେ ସଂସ୍କୃତ ବା ପ୍ରାକୃତ । ବଙ୍ଗଳାପରି ବର୍ତ୍ତମାନ ଏବଂ ଅନୁଜ୍ଞାର ପ୍ରଥମ ଓ ମଧ୍ୟମ ପୁରୁଷରେ ଏକବଚନରେ 'ଏ' ଓ 'ଅ' ପ୍ରତ୍ୟୟ ବ୍ୟବହୃତ ହୁଏ । ଉତ୍ତମପୁରୁଷରେ 'ଏଁ' ପ୍ରତ୍ୟୟ ବ୍ୟବହୃତ ହୁଏ । ଓଡ଼ିଆରେ ବିଶୁଦ୍ଧ ଅତୀତ କାଳରେ ପ୍ରଥମ ପୁରୁଷରେ 'ଲା' ଓ 'ଲେ', ଓ ମଧ୍ୟମପୁରୁଷରେ 'ଲ' ଓ ଉତ୍ତମପୁରୁଷରେ 'ଲି' ଓ 'ଲୁଁ' ବିଭକ୍ତି ହୁଏ ଯଥା;- ସେ କଲା, ସେମାନେ କଲେ, ତୁମ୍ଭେ କଲ ମୁଁ କଲି, ଆମ୍ଭେମାନେ କଲୁଁ । ପ୍ରାଗ୍ଭୂତ ଅତୀତରେ ଏକବଚନରେ 'ଥିଲା' 'ଥିଲ' 'ଥିଲି', ବହୁବଚନରେ, 'ଥିଲେ' 'ଥିଲ' 'ଥିଲୁଁ' ପ୍ରତ୍ୟୟ ହୁଏ । ବଙ୍ଗଳାରେ ଏହି ସବୁ ସ୍ଥାନରେ ଯଥାକ୍ରମେ 'ଛିଲ' 'ଛିଲି' 'ଛିଲାମ' 'ଛିଲେନ' 'ଛିଲେ' 'ଛିଲାମ' ପ୍ରତ୍ୟୟ ହୁଏ । କୃଦନ୍ତ ପ୍ରକରଣରେ ଅସମାପିକା କ୍ରିୟାର ଗଠନରେ 'ଇ' 'ବାକୁ' 'ଉ' ପ୍ରତ୍ୟୟ ବ୍ୟବହୃତ ହୁଏ ଯଥା; କରି, କରିବାକୁ, ଦେଖୁଁ । ଦେଖୁଁ କୃଦନ୍ତରେ 'ଲା' ବା 'ଅନ୍ତା' ପ୍ରତ୍ୟୟାନ୍ତ କେତେଗୁଡ଼ିଏ ଶବ୍ଦ ବିଶେଷଣରୂପରେ ବ୍ୟବହୃତ ହୁଏ ଯଥା,- ଗଲା କଥା, ଦେବା ଲୋକ, ଚାଲନ୍ତା ଗାଡ଼ି । ତଦ୍ଧିତପ୍ରକରଣରେ ଇଆ, ଉଆ, ଆଳ, ରା, ପଣ ଯାକ, ଯାଏ, କ, ତେ, ଡେ ପ୍ରଭୃତି ପ୍ରତ୍ୟୟଗୁଡ଼ିକ ବ୍ୟବହୃତ

ହୁଏ, ଯଥା- ଢାଲିଆ, ନାଟୁଆ, ରଖୁ ଆଳ, ପାନରା, ସାଧୁପଣ, ବାଟଯାକ, ଦେଉଳଯାଏ ଦିନକ, ଏତେ, ଏଡ଼େ ।

ପୂର୍ବେ କହିଅଛୁଁ ଓଡ଼ିୟାଭାଷା ପ୍ରାଚୀନ ସାହିତ୍ୟ ଶାଳିନୀ । ଓଡ଼ିୟା ସାହିତ୍ୟରେ ଶତ ଶତ ପଦ୍ୟଗ୍ରନ୍ଥ ସଂରକ୍ଷିତ ଅଛି । ସେ ଗ୍ରନ୍ଥଗୁଡ଼ିକ ପୁରାଣ, କାବ୍ୟ ଏବଂ ବିବିଧ, ଏହି ତିନିଶ୍ରେଣୀରେ ବିଭକ୍ତ ହୋଇପାରେ । ଅଧିକାଂଶ ଗ୍ରନ୍ଥ ଆଜିଯାଏ ମଧ ମୁଦ୍ରିତ ହୋଇ ନାହିଁ । ପାଠକମାନଙ୍କ କୌତୂହଳ ତୃପ୍ତି ନିମିତ୍ତ ନିମ୍ନରେ ତିନିଜଣ ପ୍ରଧାନ ପ୍ରଚୀନ କବିଙ୍କର ୩ ଖଣ୍ଡି କାବ୍ୟରୁ କିୟଦଂଶ ଉଦ୍ଧୃତ କଲୁଁ । * ଓଡ଼ିଆର ସମସ୍ତ ପଦ୍ୟ ଅକ୍ଷର ନିୟମାନୁସାରେ ପୟାର ତ୍ରିପଦୀ, ପ୍ରଭୃତି ଛନ୍ଦର କିମ୍ବା ସେମାନଙ୍କ ସମ୍ମିଶ୍ରଣ ଜନିତ ନାନାବିଧ ଛାନ୍ଦୋବନ୍ଧରେ ରଚିତ ହୋଇଅଛି । ଓଡ଼ିଆର ସମସ୍ତ ପଦ୍ୟ ପାଠକାଳରେ ସ୍ୱର ସଂଯୋଗରେ ପଠିତ ହୋଇଥାଏ । ଏହି ହେତୁରୁ ପଦ୍ୟର ପ୍ରଥମରେ ରାଗ ରାଗିଣୀର ଉଲ୍ଲେଖ ଥାଏ ।

ଆଧୁନିକ ଉତ୍କଳସାହିତ୍ୟରେ ବଙ୍ଗଳା ସାହିତ୍ୟର ଅନୁକରଣ ବିଶେଷଭାବରେ ଲକ୍ଷିତ ହୁଏ । ଏହି କାରଣରୁ ଓଡ଼ିଆରଚନା ଦିନକୁ ଦିନ ବଙ୍ଗଳାପରି ହୋଇଆସୁଅଛି । ଉପସଂହାରରେ ଆଧୁନିକ ସାହିତ୍ୟର ନମୁନାସ୍ୱରୂପ ଦିଓଟି କବିତାଂଶ ଏବଂ ଗୋଟିଏ ଗଦ୍ୟ ପ୍ରବନ୍ଧର କିୟଦଂଶ ନିମ୍ନରେ ସନ୍ନିବିଷ୍ଟ ହେଲା । ପ୍ରଥମ କବିତାଂଶଟି ଆଧୁନିକ ଉତ୍କଳର ଶ୍ରେଷ୍ଠ କବି ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ମହାଶୟଙ୍କ 'ମହାଯାତ୍ରା' ନାମକ କାବ୍ୟରୁ ଗୃହୀତ । ଏହା ଶ୍ରୀ ମାଇକେଲ ମଧୁସୂଦନ ଦତ୍ତ କବିବରଙ୍କ ପ୍ରବର୍ତ୍ତିତ ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ଦ୍ୱିତୀୟ କବିତାଂଶ ଶ୍ରୀଯୁକ୍ତ ବାବୁ ଫକୀରମୋହନ ସେନାପତି ମହାଶୟଙ୍କ 'ଉପହାର' ନାମକ ପୁସ୍ତକରୁ ଗୃହୀତ । ପରବର୍ତ୍ତୀ ଗଦ୍ୟାଂଶ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ମହାଶୟଙ୍କ 'ଓଡ଼ିଶା ଇତିହାସ'ରୁ ଉଦ୍ଧୃତ ହେଲା ।



# ୪

# ଲିପି ସଂସ୍କାର

## ରାମଶଙ୍କର ରାୟ

ଆଜିକାଲି ଚତୁର୍ଦ୍ଦିଗରେ ସଂସ୍କାରର ହୁରି ପଡ଼ି ଯାଇଥିବା ସମୟରେ ଗଞ୍ଜାମର ନବୀନା 'ଆଶା' ମଧ୍ୟ ଗୋଟାଏ ସଂସ୍କାର ଘେନି ଉପସ୍ଥିତ । ସମାଜ ସଂସ୍କାର, ଯାତ୍ରାସଂସ୍କାର, ବିବାହସଂସ୍କାର, ଶ୍ରାଦ୍ଧସଂସ୍କାର ଓ ଲେଖାପଢ଼ାର ସଂସ୍କାର ଇତ୍ୟାଦି ନାନାବିଧ ସଂସ୍କାର ଉଦ୍ୟୋଗ ଲାଗିଥିବାରୁ ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ମୁଣ୍ଡରେ ଝାଳ ଗୋଡ଼ରେ ପକାଉଅଛନ୍ତି । ମାତ୍ର ସେ ସମସ୍ତ କୁସଂସ୍କାରସ୍ୱରୂପ ଆବର୍ଜନା ପରିତ୍ୟାଗପୂର୍ବକ ଉନ୍ନତିମାର୍ଗରେ ଅଗ୍ରସର ହେବାର ପରିଚାୟକ । 'ଆଶା'ର ଲିପି - ସଂସ୍କାର 'ସ୍ୱାଧୀନତା' ଉପରେ ସ୍ଥାପିତ ହୋଇଅଛି । 'ପଞ୍ଚମ' ଇତ୍ୟାଦିକି 'ପଂଚମ' ଇତ୍ୟାଦି ଛାପା କରିବାରେ ମୁଁ ସ୍ୱଭାବତଃ ମନେ କରିଥିଲି ଯେ 'ଆଶା'ର ନୂତନ ପ୍ରେସରେ ବୋଧହୁଏ ଯୁକ୍ତାକ୍ଷର ନ ଥିବାରୁ ଏପରି ଘଟିଅଛି; ମାତ୍ର ବାଲେଶ୍ୱରର ସମ୍ବାଦବାହିକା ଟିପିଦେବାରୁ କଥାଟା ବାହାରି ପଡ଼ିଲା - ଖାଲି 'ଆଶା'ର କଥା ନୁହେଁ, ତାଙ୍କ ପୃଷ୍ଠପୋଷକ ମଧ୍ୟ ବାହାରି ପଡ଼ିଲେ । ଗୋଦାବରୀଶ ବାବୁ ବିଶ୍ୱବିଦ୍ୟାଳୟରେ ଯୋଗ୍ୟତା ସହିତ ଉପାଧି ଲାଭ କରିଥିବାରୁ ସେ ସାନ ହେଲେ ମଧ୍ୟ ମୋର ତାଙ୍କ ପ୍ରତି ଭକ୍ତି ଅଛି ଏବଂ ବାଲ୍ୟକାଳରୁ ତାଙ୍କର ଗତିବିଧିକି ଲକ୍ଷ୍ୟ ରଖି ମୁଁ ମନେ କରିଥିଲି କାଳେ ଦେଶ ତାଙ୍କର ପ୍ରତିଭାଦ୍ୱାରା ଗୌରବାନ୍ୱିତ ହେବ । ପ୍ରେମ ସବୁବେଳେ ରମଣୀୟ, ମାତ୍ର ଉଦ୍‌ଭ୍ରାନ୍ତ ପରାଧୀନ ରୂପ ଉତ୍କଟ ଜାତି ପକ୍ଷରେ ସ୍ୱାଧୀନତା ବଡ଼ ରମଣୀୟ, ମାତ୍ର ଉଦ୍‌ଭ୍ରାନ୍ତ ସ୍ୱାଧୀନ ଭାବ ଅତି ଉତ୍କଟ ଅଟେ । ବାପ ଅଜାଙ୍କୁ ଅବହେଳା କରି ସ୍ୱାଧୀନ ହେବାର ଭାବ ଏ ଯୁଗକୁ ସାଜିପାରେ, ମାତ୍ର ତାହା ଯେ ଗର୍ହିତ, ଏଥିରେ ସନ୍ଦେହ ନାହିଁ । ଆଜିକାଲି ବାପକୁ ପୁଅ ମାନୁନାହିଁ, ଗୁରୁକୁ ଚେଲା ମାନୁ ନାହିଁ, ଅବଧାନକୁ ଚାଟ ମାନୁ ନାହିଁ, ରଜାକୁ ପ୍ରଜାଏ ମାନୁ ନାହାନ୍ତି; ଏପରି ସ୍ଥଳରେ ଓଡ଼ିଆ ଭାଷାଟା ସଂସ୍କୃତକୁ ନ ମାନିଲେ ତାହା କାଳର ଦୋଷ ବିନା ଆଉ କଣ ହୋଇପାରେ ? 'ଆଶା'ର ସମ୍ପାଦକ ଓ ଲେଖକମାନେ ଦେଶ ଲୋକଙ୍କୁ ତାଙ୍କ ଲିପିସଂସ୍କାରର ଅନୁବର୍ତ୍ତୀ ହୋଇ ଲେଖିବାକୁ ପ୍ରାର୍ଥନା କରିଅଛନ୍ତି । କେହି ମାନିବେ, ଏହା ମୋତେ ଲାଗୁନାହିଁ । ମୁଁ ତାହା

ପଢ଼ିଲା ମାତ୍ରକେ ଲାଙ୍ଗୁଳହୀନ ଶୃଗାଳର କଥା ମନରେ ପଡ଼ିଗଲା । ଆପଣ 'ନତୁନ ଏକଟା କରୋ' ବୋଲି ଯେଉଁ ମତ ପ୍ରକାଶ କରିଅଛନ୍ତି, ମୁଁ ତାହା ସମ୍ପୂର୍ଣ୍ଣ ଅନୁମୋଦନ କରି ଅନ୍ୟ ଭାଷାରେ କିଏ କି ରୂପ ଚିନ୍ତା କରୁଅଛନ୍ତି ଖୋଜି ହେଉଥିଲି । ଇତି ମଧ୍ୟରେ ହଠାତ୍ ବଙ୍ଗଳା 'ଆର୍ଯ୍ୟ କାୟସ୍ଥ ପ୍ରତିଭା' ନାମକ ମାସିକ ପତ୍ରିକାର ଷଷ୍ଠ ବର୍ଷର ଦଶମ ସଂଖ୍ୟା ଚଳିତ ମାସ ୧୭ତାରିଖରେ ହସ୍ତଗତ ହେଲା । ତହିଁର 'ବର୍ତ୍ତମାନ ସମୟେ ବଙ୍ଗଭାଷା' ନାମକ ପ୍ରଥମ ପ୍ରବନ୍ଧ ପଢୁଁ ପଢୁଁ ଠିକ୍ ଆପଣଙ୍କ ମତ ମିଳିଯିବାରୁ ନିମ୍ନରେ ତହିଁର ଏକାଂଶର ଅନୁବାଦ ପ୍ରକାଶ କଲି । ଯଥା-

"ଆଧୁନିକ ଅନେକ ଲେଖକ ଓ ଲେଖିକାମାନଙ୍କର ଭାଷାରେ ଓଲଟା ସୃଷ୍ଟି ହୋଇଅଛି । ସେମାନେ ଗଦ୍ୟ ଓ ପଦ୍ୟ ପ୍ରବନ୍ଧରେ ଯାହା ବୁଝାଇବାକୁ ଚାହାଁନ୍ତି, ବଙ୍ଗଳାର ସାଧାରଣ ନରନାରୀଙ୍କର ଯେ ତାହା ଏକାନ୍ତ ଦୁର୍ବୋଧ, ତାହା ନୁହେଁ, ଖାଣ୍ଟି ବଙ୍ଗଳାନବୀସ ଓ ସଂସ୍କୃତଜ୍ଞ ପାଠକମାନଙ୍କର ସୁଦ୍ଧା ତାହା ବୁଝିବାର କ୍ଷମତା ନାହିଁ । ଅଭିଧାନ, ବ୍ୟାକରଣ ଓ ଶିଷ୍ଟପ୍ରୟୋଗ ଏହି ଲେଖକମାନଙ୍କ ନିକଟରେ ବିଷବତ୍ ପରିତ୍ୟଜ୍ୟ, ସେମାନେ ଇଚ୍ଛାମତେ ଇଂରାଜୀ ଧରଣରେ ଇଂରାଜୀ ଭାବ ସଂସ୍କୃତ, ପ୍ରାକୃତ, ଦେଶଜ ଓ ନାନାବିଧ ଉଦ୍ଭଟ ଜାରଜ ଶବ୍ଦଶ୍ରେଣୀର ସାହାଯ୍ୟରେ ପ୍ରକାଶିତ କରି ତାହାହିଁ ବଙ୍ଗଳା ଭାଷା ବୋଲି ଚଳାଉଅଛନ୍ତି । ଗରୀୟସୀ, ମହୀୟସୀ ଓ ଲଘୀୟସୀ ଯେତେବେଳେ ସାହିତ୍ୟରେ ଅଛି, ତେତେବେଳେ ସେମାନେ 'ରୂପୀୟସୀ' ଚଳାଇବେ, 'ରୂପସୀ'ରେ ସେମାନଙ୍କ ମନ ମାନେ ନାହିଁ; ନୀଳିମା, ରକ୍ତିମା ଅଛି ବୋଲି 'ଲାଲିମା', 'ସବୁଜିମା' ଚଳାଇବାକୁ ହେବ; ଅରୁନ୍ତୁଦ ଅଛି ବୋଲି 'ମର୍ମନ୍ତୁଦ' ଲେଖିବେ, - ଅଭିଧାନରେ ଯେ ଅରୁନ୍ତୁଦ ପାର୍ଶ୍ୱରେ ମର୍ମସ୍ପୃଶ୍ ଶବ୍ଦ ରହିଅଛି, ତହିଁ ପ୍ରତି ନଜର ଦେବେ ନାହିଁ - ନିଜ ବାହୁ ବଳରେ ଚଳିବେ । ଏମାନେ 'କାପଡ଼ ଛେଦାନ' ନ ବୋଲି 'ରଡାନ' ବୋଲିବେ; 'ମତ', 'କତ', 'ଜଡ଼'କୁ 'ମତୋ', 'କତୋ', 'ଜଡ଼ୋ' ଲେଖିବେ; 'କି' କୁ 'କୀ' କରିବେ । ଅର୍ଥାତ୍ ପୁରୁଣା ବନା ଓ ପୁରୁଣା ରୀତି ପଦଦଳିତ କରି ସବୁ ନୂତନ କରିବେ । ଶବ୍ଦର ଦୁର୍ଦ୍ଦଶା କରି ଯେବେ ସେମାନେ କ୍ଷାନ୍ତ ଥାନ୍ତେ, ତାହାହେଲେ ଆମ୍ଭେମାନେ ଭାବିଥାନ୍ତୁ ଯେ ସେମାନଙ୍କ ବ୍ୟବହୃତ ଶବ୍ଦ ବା ବର୍ଣ୍ଣବିନ୍ୟାସର ଧାରା ଅନ୍ୟମାନେ ଗ୍ରହଣ ନ କଲେ ହେଲା । ଜଣେ ପ୍ରବୀଣ ଅଧ୍ୟାପକ ମଧ "ଏକଟା ନତୁନ କିଛୁ କରୋ"ର ଆଶାରେ ବନ୍ଧୁ, ସନ୍ଧ୍ୟା, ପଂଡିତ ପ୍ରଭୃତି ଚଳାଇବାପାଇଁ ଅଣ୍ଟା ଭିଡ଼ି ଲାଗିଥିଲେ । ମାତ୍ର କେବଳ ଶବ୍ଦ ପ୍ରତି ଅଥବା ବର୍ଣ୍ଣବିନ୍ୟାସ ପ୍ରତି ଅତ୍ୟାଚାର କରି ଏମାନଙ୍କର ତୃପ୍ତି ନାହିଁ, ଏମାନେ ଭାଷା ରଚନାର ଯେଉଁ ନମୁନା ବାହାର କରିଅଛନ୍ତି, ଆଜି କାଲି ପିଲାପିଲି ଯେବେ ଏହି ନମୁନା ଶିଖି ଏହିପରି ଭାବରେ ଲେଖିବାକୁ ଅଭ୍ୟସ୍ତ ହୋଇ ପଡ଼ନ୍ତି, ତାହାହେଲେ ଅଳ୍ପଦିନ ମଧ୍ୟରେ ବଙ୍ଗଳାର ସାହିତ୍ୟ ବଙ୍ଗଦେଶର ଲୋକ ପକ୍ଷରେ ନିତାନ୍ତ ଦୁର୍ବୋଧ ହୋଇଯିବ ।"

ଆଉ ଉଦ୍ଧୃତ କରିବାର ପ୍ରୟୋଜନ ନାହିଁ । ମୁଁ ତ ଜଣେ ନଗଣ୍ୟ ଲେଖକ । କେତେଜଣ ଗଣ୍ୟ ମାନ୍ୟ ଲେଖକ - କବି, ଔପନ୍ୟାସିକ, ନାଟ୍ୟକାର ଅବା ଅନ୍ୟ ପ୍ରବନ୍ଧଲେଖକ ଏଥିର ଅନୁସରଣ କରିବେ, ଦେଖିବାକୁ ସତୃଷ୍ଣନୟନରେ ଅନାଇ ବସିଅଛି । ବାପ ଅଜାଙ୍କୁ ଛାଡ଼ିଥିବା ଲୋକକୁ ଚିହ୍ନିବା ଯେପରି କଠିନ, ସଂସ୍କୃତ ଛଡ଼ା ଓଡ଼ିଆ ଭାଷାକୁ ସେପରି ଚିହ୍ନିବାକୁ କଠିନ ହେବ ନାହିଁ କି ? ଝରଣାର ଜଳ ନଦୀରୂପରେ ପ୍ରବାହିତ ହୋଇ ସମୁଦ୍ରରେ ପଡ଼େ ଏବଂ ଗଲାବେଳେ ନାନା ସ୍ଥାନର ମୃତ୍ତିକାଦି ହେତୁରୁ ଜଳର କିଛି କିଛି ପରିବର୍ତ୍ତନ ହେଲେ ସୁଦ୍ଧା ଆପଣାର କୁଳ ଶୀଳ ଜଣାଇ ମର୍ଯ୍ୟାଦା ସହିତ ସମୁଦ୍ର ସଙ୍ଗମରେ ପଡ଼ି ଆନନ୍ଦଧ୍ୱନିରେ ନୃତ୍ୟ କରେ; ମାତ୍ର ଝରଣାରୁ ତାହାକୁ ବିଚ୍ଛିନ୍ନ କଲେ ନଦୀର ଅସ୍ତିତ୍ୱ ରହିବ କି ? 'ଆଶା'ର ପ୍ରତ୍ୟାଶା ଆକାଶକୁସୁମରେ ପରିଣତ ହେବାରେ ସନ୍ଦେହ ନାହିଁ । ଏହା ଲିପିସଂସ୍କାର ବା ଭାଷାସଂସ୍କାର ନୁହେଁ - ଏହାକୁ ଲିପିବିଭ୍ରାଟ୍ ବା ଭାଷାବିଭ୍ରାଟ୍ ବୋଲାଯିବ । ଗୋଦାବରୀଶ ବାବୁ ସତ୍ୟବାଦୀ ସ୍କୁଲରେ ପଢ଼ାଇ ଭବିଷ୍ୟତରେ ଦେଶର ମୁଖ ଉଜ୍ଜ୍ୱଳ କରିବା ଭଳି ଛାତ୍ର ପ୍ରସ୍ତୁତ କରୁଅଛନ୍ତି - ଆଗେ ଏହି ସ୍ୱାତନ୍ତ୍ର୍ୟଦ୍ୱାରା ସେ ପ୍ରୋକ୍ତ ବିଦ୍ୟାଳୟର ପିଲାମାନଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାନ୍ତୁ, ପଛେ ପଦାକୁ ବାହାରିବେ । ଅନ୍ତଃସ୍ଥ 'ଯ'ର ଉଚ୍ଚାରଣ ଭାରତର ସର୍ବତ୍ର 'ୟ' ଅଟେ - ବଙ୍ଗଳାରେ ଯେମନ୍ତ ତଳେ ବୁନ୍ଦା ଦେଇ, ଓଡ଼ିଆରେ ତେମନ୍ତ ସ୍ୱତନ୍ତ୍ର 'ୟ' ଲେଖି ଆମ୍ଭେମାନେ ୟ ଉଚ୍ଚାରଣ କରୁଁ । ଯେବେ 'ୟ'ଟାକୁ ଉଡ଼ାଇ ଦେଇ ଅନ୍ତଃସ୍ଥ ଯ ମାତ୍ରକର ଉଚ୍ଚାରଣ ୟ କରିବାର ପ୍ରୟାସ ହୁଅନ୍ତା, ତାହା ହେଲେ ସାଜନ୍ତା । ସେ ଦିନ ଆମେରିକାର କୁମାରୀ ଟେନାଣ୍ଟଙ୍କୁ ଏ ଦେଶର ଜଣେ ବିଶ୍ୱବିଦ୍ୟାଳୟର ଉପାଧିଧାରୀ ବର୍ଷୀୟାନ୍ ବନ୍ଧୁ 'ଯୌତୁକ' ବୋଲି କହିବାରୁ ସେ ବୁଝିପାରିଲେ ନାହିଁ ଏବଂ ବୁଝିବାକୁ ଚେଷ୍ଟା କରି ସେ ଯେତେବେଳେ 'ୟୌତୁକ' ବୋଲି କହିଲେ, ତେତେବେଳେ ବନ୍ଧୁ ଆପଣାର ଭ୍ରମ ବୁଝିପାରି ଲଜ୍ଜିତ ହେଲେ । ତାଲବ୍ୟ ଶର ଉଚ୍ଚାରଣ ଇଂରାଜୀରେ Sh, ମୂର୍ଦ୍ଧନ୍ୟଷର ଉଚ୍ଚାରଣ S ଏବଂ ଦନ୍ତ୍ୟସର Z ଅଟେ । ଯେବେ ତିନିଗୋଟି ଅକ୍ଷର ରଖି ପାଣିନିଲିଖିତ ଉପରୋକ୍ତ ରୂପ ସଂସ୍କୃତ ପ୍ରାୟ ଉଚ୍ଚାରଣ କରିବାର ପ୍ରୟାସ ହୁଅନ୍ତା ତେବେ ଅବଶ୍ୟ 'ସଂସ୍କାର' କଥାଟା ବୁଝାଯାନ୍ତା । ଅନ୍ୟଥା ତାହା ବିଭ୍ରାଟ୍ ବିନା ଆଉ କ'ଣ ହେବ ? ଇଂରାଜୀ ଭାଷାରେ ଏହିପରି F ରଖି Ph ଉଠାଇ ଦେବା, କ ଉଚ୍ଚାରଣ ସ୍ଥଳରେ କେବଳ K ଲେଖି Ch ଉଠାଇ ଦେବା ଇତ୍ୟାଦିର ପ୍ରୟାସ ହୋଇଥିଲା, ମାତ୍ର ଉତ୍ପତ୍ତି ହରାଇ ବିଭ୍ରାଟ୍ ଘଟିବା ବିବେଚନାରେ ବଡ଼ ବଡ଼ ପଣ୍ଡିତମାନେ ତାହା ମାନିଲେ ନାହିଁ । ସୁତରାଂ କଥାଟା ଉଠୁଁ ଉଠୁଁ ଉଭେଇ ଗଲା । ତେବେ ଆଉ କାହିଁକି ଗରିବ ଓଡ଼ିଶା ଦେଶରେ ଏ ପ୍ରୟାସ ? ସଂସ୍କୃତ ଭାଷା ପୂର୍ଣ୍ଣ ସଂସ୍କୃତ ଏବଂ ତହିଁର ଲିପି ସମ୍ପୂର୍ଣ୍ଣ ଅଟେ । ଇଂରାଜୀରେ ତ କି ଦ ନାହିଁ ଏବଂ ଥ ଓ ଦ ଉଭୟ th ଦ୍ୱାରା ପ୍ରଚଳିତ । ପାରସୀ ଭାଷାରେ ସୁଦ୍ଧା, ଟ କି ଡ ନାହିଁ ଏବଂ ଉର୍ଦ୍ଦୁରେ 'ତେ' ଉପରେ ଚିହ୍ନ ଦେଇ ଟ ଓ 'ଦାଲ' ଉପରେ ଚିହ୍ନ

ଦେଇ ତ ଉଚ୍ଚାରଣ କରାଯାଏ । ଆମ୍ଭ ଦେଶ ଭାଷା ଯହିଁରୁ ଉତ୍ପତ୍ତି ଲାଭ କରିଅଛି, ତାହା ଲିପି ଓ ଶବ୍ଦବିନ୍ୟାସରେ ସମ୍ପୂର୍ଣ୍ଣ ଥିବାରୁ ତହିଁର ଗୌରବ ଘେନି ଧନୀ ହେବାକୁ ଚେଷ୍ଟା ନ କରି ତାହାକୁ ଛାଡ଼ି ବିକଳାଙ୍ଗ ହେବାରେ କି ଶ୍ରେୟ ଅଛି, ମୁଁ ବୁଝିବାକୁ ଅକ୍ଷମ । ଯୁକ୍ତାକ୍ଷର ତ ସ୍ୱୟଂ ଈଶ୍ୱରଦତ୍ତ ବେଦ ସମୟରୁ ଚଳି ଆସୁଅଛି । ତଦ୍ୱାରା ଯେମନ୍ତ ଉଚ୍ଚାରଣ ଠିକ୍, ତେମନ୍ତ ଅଳ୍ପ ସ୍ଥାନରେ କଥାଟା ପ୍ରକାଶ କରାଯାଏ – ବୁଝିବାକୁ ମଧ୍ୟ ସହଜ । ମୁଁ 'ଆଶା'ର ଅସାର ସଂସ୍କାରପ୍ରୟାସକୁ କେବେ ଅନୁମୋଦନ କରି ପାରିବିନାହିଁ । ହୋଇପାରେ ମୋର ଭୁଲ । ମୋର ମଧ୍ୟ ବୟସ ହୋଇଅଛି । ଆଜି କାଲିର ଲୋକେ ବୁଢ଼ାଙ୍କୁ ମୂର୍ଖ ତଳେ ପକାଇଅଛନ୍ତି । ମାତ୍ର ପିଲାଏ ପଣ୍ଡିତ ହୋଇ ଉଚ୍ଛୃଙ୍ଖଳ ହେଲେ ବୁଢ଼ାଙ୍କର ଦୁଃଖ ହୁଏ ନାହିଁକି ? ମୋର ସିଧା କଥାରେ ଅନେକେ ବ୍ୟଥିତ ହୋଇ ପାରନ୍ତି, ମାତ୍ର ବ୍ୟଥା ଦେବା ମୋର ଇଚ୍ଛା ନୁହେଁ । ଯେଉଁମାନେ ଏଭଳି ସଂସ୍କାରର କଥା ଉଠାଇଅଛନ୍ତି, ସେମାନେ ମୋ ମତରେ ଭାଷା ତଥା ଦେଶର ଦ୍ରୋହୀ ଅଟନ୍ତି । ସେମାନଙ୍କଠାରୁ ଦେଶ ଯେତେ ଶୀଘ୍ର ମୁକ୍ତିଲାଭ କରିପାରେ, ତେତେ ଭଲ । ମନକୁ ବାଧିବାରୁ କଥାଟା ଟିକିଏ କଡ଼ାହୋଇ ଥିଲେ କ୍ଷମା କରିବେ ।



୫

# ଭାଷା ଚର୍ଚ୍ଚା

## ବିଶ୍ୱନାଥ କର

ଉତ୍କଳରେ ବର୍ତ୍ତମାନ ସାହିତ୍ୟ ଚର୍ଚ୍ଚା କି ଆକାର ଧାରଣ କରିଅଛି, କେଉଁ ଦିଗକୁ ଗତି କରୁଅଛି, କେଉଁ ଶ୍ରେଣୀର ଲୋକମାନେ ସାହିତ୍ୟ କ୍ଷେତ୍ରରେ ନେତୃତ୍ୱ ଦାବୀ କରିବାକୁ ଅଗ୍ରସର ହୋଇଅଛନ୍ତି, କି ଆଦର୍ଶ ଅନୁସୃତ ହେଉଅଛି ଏବଂ 'ସାହିତ୍ୟ ସେବୀ' ଇତ୍ୟାଦି ଉଚ୍ଚ କଥାଗୁଡ଼ିକ କିପରି ସ୍ଥଳରେ କି ଭାବରେ ପ୍ରଯୁକ୍ତ ହେଉଅଛି, ଇତ୍ୟାଦି କଥା ଭାବିଲେ ଅନେକ ସମୟରେ ହତବୁଦ୍ଧି ହୋଇ ବସିବାକୁ ହୁଏ । 'ସାହିତ୍ୟ ଚର୍ଚ୍ଚା' 'ସାହିତ୍ୟ ଚର୍ଚ୍ଚା' ବୋଲି ଚାରିଆଡ଼େ ଚହଳ ପଡ଼ିଅଛି - କଥା କଥାକେ ସାହିତ୍ୟକ୍ଷେତ୍ରରେ 'ନବଯୁଗ'ର ଆବିର୍ଭାବ ମଧ୍ୟ ହୋଇ ଯାଉଅଛି, ମାତ୍ର ଯଥାର୍ଥ ସାହିତ୍ୟ ସଙ୍ଗରେ ପରିଚୟ ଅତି ଅଳ୍ପ ଲୋକଙ୍କର ଘଟିଅଛି ଏବଂ ତହିଁରୁ ଅଳ୍ପ ଲୋକେ ସେପରି ପରିଚୟ ଲାଭ କରିବାକୁ ପ୍ରୟାସୀ । ଯେନ ତେନ ପ୍ରକାରେଣ ଲେଖନୀଚାଳନା କରି ପାରିଲେ ଯେତେବେଳେ ସାହିତ୍ୟ ରଚନା ସମ୍ପନ୍ନ ହେଲା - ଅକ୍ଷର ମିଳାଇପାରିଲେ ଯେତେବେଳେ କବିତା ହେଲା, ସେତେବେଳେ ଏତେ ଶ୍ରମ ସ୍ୱୀକାର କରିବାପାଇଁ କାହାର କି ଗରଜ ପଡ଼ିଅଛି ? ସମୟ ସମୟରେ ଆମ୍ଭେମାନେ ବର୍ତ୍ତମାନ ଅବସ୍ଥାର ଆଭାସ ଦେଇ କିଞ୍ଚିତ୍ ତୀବ୍ର ମନ୍ତବ୍ୟ ପ୍ରକାଶ କରିଥାଉଁ ବୋଲି ଅନେକଙ୍କର ବିଷ-ଦୃଷ୍ଟିରେ ପତିତ ହୋଇଅଛୁଁ । ଏମନ୍ତ କି ଅନେକେ ଆମ୍ଭମାନଙ୍କ ପ୍ରତି ନାନା ଦୁରଭିସନ୍ଧି ଆରୋପ କରିବାକୁ ମଧ୍ୟ କୁଣ୍ଠିତ ନୁହନ୍ତି । ଆମ୍ଭେମାନେ ସେଥିପାଇଁ ତିଳେ ମାତ୍ର ଦୁଃଖିତ ନୋହୁଁ । ସତ୍ୟ ଗୋପନ କରିବା, ହୀନ ଆଦର୍ଶକୁ ପ୍ରଶ୍ରୟ ଦେବା, ବୃଥା ଅଭିମାନର ପୋଷକତା କରିବା ଆମ୍ଭମାନଙ୍କ କାର୍ଯ୍ୟକ୍ଷେତ୍ରର ସୀମାର ବହିର୍ଭୂତ । ଆମ୍ଭମାନଙ୍କ ମତରେ ତଦ୍ୱାରା ଜାତିର ଉନ୍ନତି ପରିବର୍ତ୍ତରେ ଅବନତି ଅବଶ୍ୟମ୍ଭାବୀ । କିଛିକାଳ ହେଲା ସାହିତ୍ୟ କ୍ଷେତ୍ରରେ ଯେପ୍ରକାର ସ୍ୱେଚ୍ଛାଚାରିତା ଲକ୍ଷିତ ହେଉଅଛି, ତାହା କଦାପି ବାଞ୍ଛନୀୟ ହୋଇ ନ ପାରେ - ଶୁଭଜନକ ମଧ୍ୟ ନୁହେଁ । ଏହାର ଦିଓଟି ବିଶିଷ୍ଟ କାରଣ ଆମ୍ଭମାନଙ୍କ ମନରେ ଉଦିତ ହେଉଅଛି । ପ୍ରଥମତଃ ପ୍ରାଚୀନ ପ୍ରବୀଣ ସାହିତ୍ୟ ସେବକମାନଙ୍କ ମଧ୍ୟରେ ଯେ ଜଣେ ଦୁଇଜଣ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ, ସେମାନେ

କାର୍ଯ୍ୟକ୍ଷେତ୍ରରୁ ଅବସର ଗ୍ରହଣ କରିଅଛନ୍ତି ଏବଂ ତତ୍ପରବର୍ତ୍ତୀ ସ୍ୱଳ୍ପସଂଖ୍ୟକ ଯଥାର୍ଥ ଶକ୍ତିଶାଳୀ ଲେଖକମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଉତ୍ସାହ ଅଭାବରୁ ହେଉ ବା ଆଳସ୍ୟବଶରୁ ହେଉ ଦୁଷଣୀୟ ଔଦାସୀନ୍ୟ ଅବଲମ୍ବନ କରିଅଛନ୍ତି । ସୁତରାଂ ଉନ୍ନତ ଆଦର୍ଶସ୍ଥାନୀୟ ରଚନାର ଶୋଚନୀୟ ଅଭାବ ଘଟିଅଛି । ପୁଣି ଉପଯୁକ୍ତ ଆଲୋଚନା ଅଭାବରୁ ରଚନାର ଦୋଷ ଗୁଣ ପ୍ରତି ସାଧାରଣ ଲେଖକମାନଙ୍କ ଦୃଷ୍ଟି ଆକୃଷ୍ଟ ହେଉନାହିଁ । ଦ୍ୱିତୀୟତଃ କେତେଗୁଡ଼ିଏ ଦାୟିତ୍ୱଜ୍ଞାନବିହୀନ ସମ୍ବାଦପତ୍ରର ଆବିର୍ଭାବରେ ବହୁ ଅଯୋଗ୍ୟ ରଚନା ସାହିତ୍ୟ ନାମରେ ସାଧାରଣରେ ପ୍ରଚାରିତ ହୋଇ ସାହିତ୍ୟର ଆଦର୍ଶକୁ ଅତି ନିମ୍ନଭୂମିକୁ ଖସାଇ ଆଣିଅଛି । ଆମ୍ଭମାନଙ୍କ ମତରେ ଏହାଦ୍ୱାରା ଇଷ୍ଟ ଅପେକ୍ଷା ଅନିଷ୍ଟ ଅଧିକ ସାଧିତ ହେଉଅଛି । ତହିଁ ଉପରେ ପୁଣି ସୁଲଭ ମୁଦ୍ରାଯନ୍ତ୍ର ଏବଂ ସହଜ ଦେଶହିତୈଷିତା ଓ ଗ୍ରାହକତା ପ୍ରଭୃତ ଅନିଷ୍ଟ ଘଟାଇଅଛି । ଏ ସମସ୍ତ ବିଷୟର ବିସ୍ତୃତ ଆଲୋଚନା ବର୍ତ୍ତମାନ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ଆମ୍ଭେମାନେ ଏଠାରେ କେବଳ ସାହିତ୍ୟର ପ୍ରଧାନ ଅଙ୍ଗ ଭାଷାର ବିଶୁଦ୍ଧତା ରକ୍ଷା ଏବଂ ଉନ୍ନତି ସମ୍ପାଦନ ଏହି ବିଷୟରେ ଆଲୋଚନାର ଅବତାରଣା ମାତ୍ର କରିବାକୁ ଅଭିଳାଷ କରିଅଛୁଁ । ଆମ୍ଭେମାନେ କେବଳ ପ୍ରଧାନ କେତୋଟି ବିଷୟ ପ୍ରତି ଲେଖକ ଏବଂ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବୁଁ ।

ଉତ୍କଳ ଭାଷାର ପ୍ରାଚୀନତା ଏବଂ ଉନ୍ନତ ଅବସ୍ଥା ସମ୍ବନ୍ଧରେ କାହାରି ମତଦ୍ୱୈଧ ନାହିଁ । ମାତ୍ର ପାଶ୍ଚାତ୍ୟ ଶିକ୍ଷା ଓ ପାଶ୍ଚାତ୍ୟ ଭାବର ବିସ୍ତାର ସଙ୍ଗେ ସଙ୍ଗେ ଏହା ନୂତନ ଆକାର ଧାରଣ କରିଅଛି ଏବଂ ନବ ଭାବରେ ଗଠିତ ହେଉଅଛି । ଆଧୁନିକ ଉତ୍କଳସାହିତ୍ୟରେ ଯେପରି ପାଶ୍ଚାତ୍ୟ ଭାବ ପ୍ରବେଶ କରିଅଛି, ସେହିପରି ଆଧୁନିକ ଉତ୍କଳ ଭାଷା ଅନେକ ପରିମାଣରେ ଇଂରାଜୀ ଛାଞ୍ଚରେ ଢଳା ହୋଇଅଛି । ଏପରି ହେବା ଅନିବାର୍ଯ୍ୟ । ଭାରତର ଅନ୍ୟାନ୍ୟ ପ୍ରଦେଶର ସାହିତ୍ୟ ଏବଂ ଭାଷାର ମଧ୍ୟ ସେହି ଦଶା । ମାତ୍ର ଏ ବିଷୟରେ ଅନ୍ୟାନ୍ୟ ପ୍ରଦେଶ ସହିତ ଉତ୍କଳର କିଞ୍ଚିତ୍ ପ୍ରଭେଦ ଅଛି । ଉତ୍କଳ ତିନି ପାଖରେ ତିନୋଟି ପ୍ରାଦେଶିକ ଭାଷାର ପ୍ରଭାବ ଅତିକ୍ରମ କରି ନ ପାରି କେତେକ ପରିମାଣରେ ବିକୃତ ହୋଇ ପଡ଼ିଅଛି । ଉନ୍ନତିଶୀଳ ବର୍ଦ୍ଧନଶୀଳ ଭାଷା ପକ୍ଷରେ ଅନ୍ୟଠାରୁ ଭାବ, ରୀତି ବା ଶବ୍ଦ ଗ୍ରହଣ କରିବା ଅନିଷ୍ଟକର ନୁହେଁ - ବରଂ ତାହା ନ କଲେ ଉନ୍ନତିର ପଥ ସୁଗମ ହୁଏନାହିଁ । ମାତ୍ର ଯାହା ଗ୍ରହଣ କରିବ, ତାହାକୁ ଆତ୍ମସ୍ଥ କରି ନ ପାରିଲେ - ଆତ୍ମ ପ୍ରକୃତି ସଙ୍ଗରେ ସମ୍ପୂର୍ଣ୍ଣରୂପେ ମିଶାଇ ନ ପାରିଲେ ଶେଷରେ ନିଜର ଅସ୍ତିତ୍ୱ ହରାଇ ବସିବାକୁ ହୁଏ । ଉତ୍କଳର ସୀମାନ୍ତବର୍ତ୍ତୀ ସ୍ଥାନମାନଙ୍କର କଥିତ ଭାଷା କି ଆକାର ଧାରଣ କରିଅଛି, ତାହାପ୍ରତି ଦୃଷ୍ଟିପାତ କଲେ ଆମ୍ଭମାନଙ୍କ କଥାର ସତ୍ୟତା ସହଜରେ ଉପଲବ୍ଧ ହେବ । ସେ ଯାହାହେଉ, ସାହିତ୍ୟିକ ଭାଷା ସହିତ ଆମ୍ଭମାନଙ୍କର ବର୍ତ୍ତମାନ ସମ୍ପର୍କ । ବିଭିନ୍ନ ସ୍ଥାନର ସାହିତ୍ୟିକ ଭାଷା ଏପର୍ଯ୍ୟନ୍ତ ଏକ ଭାବାପନ୍ନ ହୋଇନାହିଁ । ମାତ୍ର ଏହା ଯେ ଏକତ୍ୱ ଆଡ଼କୁ ଧୀରେ ଧୀରେ ଗତି କରୁଅଛି,

ଏହା ସମସ୍ତେ ପ୍ରତ୍ୟକ୍ଷ କରୁଥିବେ । ବିଭିନ୍ନ ପ୍ରଦେଶର ବିଶେଷତ୍ୱଗୁଡ଼ିକ କଦାପି ଉପେକ୍ଷଣୀୟ ହୋଇ ନ ପାରେ । ମାତ୍ର ବିଶେଷତ୍ୱ ଏବଂ ବିକୃତି ଏ ଦିଓଟିର ପାର୍ଥକ୍ୟ ଅବଧାରଣ କରିବ କିଏ ? ପ୍ରାଚୀନ ଉତ୍କଳ ଭାଷା ଏବଂ ସମୀପବର୍ତ୍ତୀ ପ୍ରାଦେଶିକ ଭାଷା ଏ ଉଭୟରେ ଯେଉଁମାନଙ୍କର ସମ୍ୟକ୍ ବ୍ୟୁତ୍ପତ୍ତି ଅଛି, ସେହିମାନେ କେବଳ ଏହା ଧରି ପାରିବେ ଏବଂ ଅନ୍ୟମାନଙ୍କୁ ଧରାଇ ଦେଇପାରିବେ । ପୁଣି ଅନ୍ୟଭାଷାରୁ କେଉଁ କଥା କି ଭାବରେ ଗ୍ରହଣ କରାଯାଇପାରେ, ତାହା ସେହିମାନେ କେବଳ ସ୍ଥିରକରି ପାରିବେ । ଦୃଷ୍ଟାନ୍ତସ୍ୱରୂପ ବୋଲାଯାଇପାରେ, ଗଞ୍ଜାମ ଅଞ୍ଚଳର ଭାଷା ତେଲୁଗୁ ଭାଷା ସମ୍ପର୍କରେ କେତେକ ପରିମାଣରେ ବିକୃତ ହୋଇ ଯାଇଅଛି । ଏଥିପାଇଁ କଟକ ପ୍ରଭୃତି ଅଞ୍ଚଳର ଲେଖକମାନେ ଗଞ୍ଜାମର ଭାଷାକୁ ନିତାନ୍ତ ହେୟଜ୍ଞାନ କରନ୍ତି । ମାତ୍ର ସେହି ଗଞ୍ଜାମରେ ଏପର୍ଯ୍ୟନ୍ତ ବହୁ ପ୍ରାଚୀନ ଓଡ଼ିଆ ଶବ୍ଦ ଏବଂ ବିଶୁଦ୍ଧ ଓଡ଼ିଆ ରୀତି (idiom) ଚଳି ଆସୁଅଛି, ଏଥିରେ ସନ୍ଦେହ ନାହିଁ । ଅନେକ ସମୟରେ ଅଜ୍ଞତାବଶତଃ ଆମ୍ଭେମାନେ ସେହି ବିଶୁଦ୍ଧ ଓଡ଼ିଆ ଶବ୍ଦ ଓ ରୀତି ପ୍ରତି ଉପେକ୍ଷା ପ୍ରଦର୍ଶନ କରି ବସୁଁ । ଏ ଅବସ୍ଥାରେ ଯେବେ ପ୍ରାଚୀନ ଓଡ଼ିଆ ଏବଂ ତେଲୁଗୁ ଉଭୟ ଭାଷାରେ ବିଶିଷ୍ଟ ଜ୍ଞାନ ସମ୍ପନ୍ନ ଗଞ୍ଜାମବାସୀ କୌଣସି କୌଣସି ବନ୍ଧୁ ସାହିତ୍ୟ କ୍ଷେତ୍ରରେ ପ୍ରବିଷ୍ଟ ହୋଇ ନୂତନ ସାହିତ୍ୟ ଗଠନରେ ପ୍ରବୃତ୍ତ ହୁଅନ୍ତି ଏବଂ ଯତ୍ନସହକାରେ ଭାଷାତତ୍ତ୍ୱ ଆଲୋଚନା କରନ୍ତି, ତାହାହେଲେ ଉକ୍ତ ଅଞ୍ଚଳର ଅଜ୍ଞ ବ୍ୟକ୍ତିମାନେ ନିଜ ନିଜ ଭ୍ରମ ବୁଝିପାରିବେ ଏବଂ ଆମ୍ଭେମାନେ ମଧ୍ୟ ମାତୃଭାଷାର ଅନେକ ଉପେକ୍ଷିତ ପ୍ରାଚୀନ ସମ୍ପଦକୁ ଚିହ୍ନିପାରି ଆଦର ସହକାରେ ଗ୍ରହଣ କରିବୁଁ ।

ଆଉ ଗୋଟିଏ ଦୃଷ୍ଟାନ୍ତ ନିଆଯାଉ । ବର୍ତ୍ତମାନ ଓଡ଼ିଆ ଭାଷା ଉପରେ ବଙ୍ଗଳା ଭାଷାର ପ୍ରଭାବ କେହି ଅସ୍ୱୀକାର କରିପାରିବେ ନାହିଁ । ଅନେକ ଅତ୍ୟୁତ୍କଟ ଉତ୍କଳାଭିମାନିଙ୍କ ରଚନାରେ ପଣ ପଣ ବଙ୍ଗଳା ବା ବଙ୍ଗଳାର ବିକୃତ ଅନୁବାଦ ଦେଖି ଆମ୍ଭେମାନେ ଅନେକ ସମୟରେ ଅବାକ୍ ହୋଇଥାଉଁ । ଏହା ଯେ ଅତ୍ୟଧିକ ବଙ୍ଗସାହିତ୍ୟ ଚର୍ଚ୍ଚା ବା ବଙ୍ଗାଳୀ ସମ୍ପର୍କର ଫଳ, ତାହା ନୁହେଁ; ଆମ୍ଭମାନଙ୍କ ମତରେ ଏହା ଓଡ଼ିଆ ଏବଂ ବଙ୍ଗଳା ଉଭୟ ଭାଷାରେ ଅସମ୍ପୂର୍ଣ୍ଣ ଜ୍ଞାନର ଫଳ । ପ୍ରଥମାବସ୍ଥାରେ ଏହିପରି କେତେଗୁଡ଼ିଏ ଲୋକଙ୍କ ହାତରେ ଆଧୁନିକ ଓଡ଼ିଆ ସାହିତ୍ୟ ଗଠନର ଭାର ପଡ଼ିଥିଲା । ଏମାନେ ନିଜେ କିଛି ରଚନା ନ କରି ଓଡ଼ିଆ ବିଦ୍ୟାଳୟମାନଙ୍କ ନିମନ୍ତେ କେତେଗୁଡ଼ିଏ ବଙ୍ଗଳା ପୁସ୍ତକର ଉତ୍କଳାନୁବାଦ ପ୍ରକାଶ କରିଥିଲେ ଏବଂ ତାହା ପାଠକରି ତତ୍କାଳୀନ ଛାତ୍ରମାନେ ଓଡ଼ିଆ ଭାଷାରେ ଜ୍ଞାନ ଅର୍ଜନ କରୁଥିଲେ । ସେଥିରୁ ଅଧିକାଂଶ ଅନୁବାଦ ବର୍ତ୍ତମାନ ପାଠକଲେ ହାସ୍ୟ ସମ୍ବରଣ କରି ହୁଏନାହିଁ । ଶୁଭକ୍ଷଣରେ କବିବର ଶ୍ରୀ ରାଧାନାଥ ଓ ଶ୍ରୀ ମଧୁସୂଦନ ସାହିତ୍ୟକ୍ଷେତ୍ରରେ ଏବଂ ଶିକ୍ଷାବିଭାଗରେ ଅବତୀର୍ଣ୍ଣ ହୋଇ ଚିନ୍ତା ଏବଂ ଭାଷା ଉଭୟର ଗତି ଫେରାଇ ଦେଲେ । ଓଡ଼ିଆ ଭାଷା ଅତି ବିକୃତ ବଙ୍ଗାନୁବାଦ ହସ୍ତରୁ ରକ୍ଷା ପାଇଲା । ଏହାର କାରଣ, ଉଭୟେ

ବଙ୍ଗଳା ଏବଂ ଓଡ଼ିଆ ଉଭୟ ଭାଷାରେ ସୁପଣ୍ଡିତ - ଅଧିକନ୍ତୁ ସଂସ୍କୃତ ସାହିତ୍ୟରେ ମଧ୍ୟ ସୁବ୍ୟୁତ୍ପନ୍ନ । ଏମାନଙ୍କ ପ୍ରଭାବରେ ବା ଯତ୍ନରେ ଉତ୍କଳ ସାହିତ୍ୟର ଗତି ପରିବର୍ତ୍ତିତ ହୋଇଅଛି ସତ୍ୟ, ମାତ୍ର ସାହିତ୍ୟର ନେତୃପଦ ଏମାନଙ୍କର ସର୍ବଥା ପ୍ରାପ୍ୟ ହେଲେହେଁ ଅତ୍ୟନ୍ତ ଦୁଃଖର ସହିତ କହିବାକୁ ହେଉଅଛି ଯେ ଏମାନେ ସଜ୍ଞାନରେ ତାହା ଗ୍ରହଣ କରି ନାହାନ୍ତି ବା ତାହାର ସଦ୍‌ବ୍ୟବହାର କରିନାହାନ୍ତି । ବର୍ତ୍ତମାନ ତାହାର କାରଣ ନିର୍ଦ୍ଦେଶ କରିବା ବୃଥା । ତେବେ ଏତିକି ମାତ୍ର କହିପାରୁଁ ଯେ ଏଥିପାଇଁ କେବଳ ଏମାନେ ଦୋଷୀ ନୁହନ୍ତି – ବାହାରର କାରଣ ଯଥେଷ୍ଟ ଅଛି । ସେ ଯାହାହେଉ, ଏହାଦ୍ୱାରା ଯେ ଉତ୍କଳ ସାହିତ୍ୟ ବିଶେଷ କ୍ଷତିଗ୍ରସ୍ତ ହୋଇଅଛି, ଏହା ମୁକ୍ତ କଣ୍ଠରେ ବୋଲା ଯାଇପାରେ । ବ୍ୟକ୍ତିଗତ କଥା ଅଧିକ ଆଲୋଚନା କରିବା ଆମ୍ଭମାନଙ୍କର ଅଭିପ୍ରାୟ ନୁହେଁ । ପରବର୍ତ୍ତୀ ଲେଖକମାନଙ୍କ ମଧ୍ୟରୁ କାହାରି କାହାରି ନାମୋଲ୍ଲେଖ କରି ଲେଖକମ୍ମନ୍ୟ ବହୁ ବ୍ୟକ୍ତିଙ୍କ ହୃଦୟରେ ଈର୍ଷାନଳ ପ୍ରଜ୍ୱଳିତ କରିବାର ମଧ୍ୟ ପ୍ରୟୋଜନୀୟତା କିଛି ନାହିଁ । ଅନ୍ୟକଥାର ଅବତାରଣ କରାଯାଉ ।

ପ୍ରତିଭାର ଆଲୋକପାତ ନ ହେଲେ ସାହିତ୍ୟର ଯଥାର୍ଥ ଅଭିବୃଦ୍ଧି ଘଟେନାହିଁ । ପ୍ରତିଭା ସାହିତ୍ୟରେ ନବ ଶକ୍ତି ସଞ୍ଚାର କରିବା ସଙ୍ଗେ ସଙ୍ଗେ ଭାଷାକୁ ଅଭିନବ ଆକାରରେ ଗଠନ କରି ସାଧାରଣଙ୍କ ସମକ୍ଷରେ ନବ ଆଦର୍ଶ ସ୍ଥାପନ କରେ । ମାତ୍ର ପ୍ରତିଭା ସର୍ବତ୍ର ଓ ସର୍ବ ସମୟରେ ସୁଲଭ ନୁହେଁ । ଉତ୍କଳଖଣ୍ଡରେ ବହୁ ଶବ୍ଦର ଯେପରି ଅପବ୍ୟବହାର ଘଟିଅଛି, ପ୍ରତିଭା ଶବ୍ଦର ମଧ୍ୟ ସେହିପରି ହୋଇଅଛି । ମାତ୍ର ଆଧୁନିକ ଉତ୍କଳ ସାହିତ୍ୟରେ ଯଥାର୍ଥ ପ୍ରତିଭାର ଆଲୋକପାତ ଘଟିଅଛି ବୋଲି ଆମ୍ଭେମାନେ କହି ନ ପାରୁଁ । ତେବେ ତୀକ୍ଷ୍ଣ ମେଧା ସଙ୍ଗରେ କଠୋର ସାଧନା ଓ ଦୃଢ଼ ଅଧ୍ୟବସାୟ ମିଶ୍ରିତ ହେଲେ ତଦ୍ୱାରା ପ୍ରତିଭାର ଅଭାବ ଅନେକ ପରିମାଣରେ ପୂର୍ଣ୍ଣ ହୋଇଥାଏ । ଏ ଦୁର୍ଭାଗ୍ୟ ଦେଶରେ ତାହାର ମଧ୍ୟ ଏକାନ୍ତ ଅଭାବ ! ସୁତରାଂ ଚିନ୍ତା, ଭାବ ଏବଂ ଭାଷା ସକଳ ବିଷୟରେ ସାହିତ୍ୟ ନିତାନ୍ତ ଦୀନଭାବାପନ୍ନ ହୋଇ ରହିଅଛି । ଅବସ୍ଥାଜ୍ଞାନ ଉଜ୍ଜ୍ୱଳ ନ ହେଲେ ଅବସ୍ଥାନୁରୂପ ବ୍ୟବସ୍ଥା କରିବାକୁ କେହି କେବେ ପ୍ରବୃତ୍ତ ହୁଏ ନାହିଁ । ତେବେ ଅବସ୍ଥା ଭିତରେ ପ୍ରବେଶ ନ କରି - କାର୍ଯ୍ୟକ୍ଷେତ୍ରର ସୀମା ନ ମାଡ଼ି ମହାଜ୍ଞାନୀ ପରି ଜଗତକୁ ଗୁରୁଗମ୍ଭୀର ଉପଦେଶ ଦେବା ଭଳି ଲୋକ ଏ ସଂସାରରେ ବିରଳ ନୁହନ୍ତି । ଏଥିରେ କିଛି ମୂଲ୍ୟ ଦେବାକୁ ପଡ଼େ ନାହିଁ ବା ନିଜକୁ କିଛି କରିବାକୁ ହୁଏନାହିଁ । ଏହି ହେତୁରୁ ଏ ଦେଶରେ ଅନେକ ଛାତ୍ରାବସ୍ଥାରୁ ଶିକ୍ଷକପଦରେ ଆସୀନ ! ଛାତ୍ରତ୍ୱ ସ୍ୱୀକାର କରିବାକୁ କେହି ରାଜି ନୁହନ୍ତି - ଗୁରୁ ହେବାକୁ ସମସ୍ତେ ଉତ୍କଣ୍ଠିତ ! ଯଥାର୍ଥରେ ସାହିତ୍ୟର ଦୋଷଗୁଣ ପ୍ରତି କେତେଜଣ ଦୃଷ୍ଟିପାତ କରିଅଛନ୍ତି ? ଉନ୍ନତ ଆଦର୍ଶ ଧରିବାପାଇଁ କେତେ ଜଣ ପ୍ରୟାସୀ ? ନିରପେକ୍ଷ ସମାଲୋଚନା ଧୀର ଭାବରେ ଗ୍ରହଣ କରି ଆତ୍ମଦୋଷ ସଂଶୋଧନ କରିବାକୁ କେତେଜଣ ଯଥାର୍ଥରେ ବ୍ୟାକୁଳ ? ଭାଷାତତ୍ତ୍ୱ ଆଲୋଚନା କରିବା ଭଳି ଧୈର୍ଯ୍ୟ ବା ସହିଷ୍ଣୁତା

କେତେଜଣଙ୍କର ଅଛି ? ତେବେ ଭାଷା ମାର୍ଜିତ ଓ ଉନ୍ନତ ହେବ କିପରି ?

ସାହିତ୍ୟ କ୍ଷେତ୍ରରେ ସ୍ୱେଚ୍ଛାଚାରିତା ରାଜତ୍ୱ କରୁଥିବା କଥା ପୂର୍ବେ ଉଲ୍ଲେଖ କରିଅଛୁ । ଭାଷା ବ୍ୟବହାର ସମ୍ବନ୍ଧରେ ତାହା ସମଧିକ ପ୍ରବଳ ଥିବାର ଲକ୍ଷିତ ହେଉଅଛି । ଦିନେ ଆମ୍ଭେମାନେ ସମାଲୋଚନାର୍ଥ ପ୍ରାପ୍ତ ଖଣ୍ଡିଏ ପୁସ୍ତକ ପାଠ କରୁଥିଲୁ । ଜଣେ ସୁରସିକ ବନ୍ଧୁ ଆମ୍ଭମାନଙ୍କ ହସ୍ତରୁ ପୁସ୍ତକ ଖଣ୍ଡି ନେଇ କିୟତ୍‌କ୍ଷଣ ଦୃଷ୍ଟିପାତ କରି କହିଲେ, "ଏଖଣ୍ଡି ଯତ୍ନପୂର୍ବକ ରଖିଦିଅନ୍ତୁ, ଶୀତ ଦିନକୁ କାର୍ଯ୍ୟରେ ଆସିବ ।" ଆମ୍ଭେମାନେ ନିତାନ୍ତ ଅରସିକ ଓ କବିତ୍ୱହୀନ, ସୁତରାଂ ବନ୍ଧୁଙ୍କ କଥାଟା ବୁଝି ନ ପାରି ବିସ୍ମିତନେତ୍ରରେ ଅନାଇ ରହିଲୁଁ । ବନ୍ଧୁ ଈଷତ୍ ହାସ୍ୟ କରି କହିଲେ- "କମ୍ବଳବନ୍ତଂ ନ ବାଧତେ ଶୀତଃ ।" ବାସ୍ତବିକ ଆଜିକାଲି ଅନେକ ରଚନା ଏହିପରି । ଭାଷା ସମ୍ବନ୍ଧରେ ତିନୋଟି ପ୍ରଧାନ ବିଷୟ ପ୍ରତି ଲେଖକମାନଙ୍କର ସମୁଚିତ ଦୃଷ୍ଟି ଥିବା ସର୍ବଥା ବାଞ୍ଛନୀୟ । ପ୍ରଥମ-ବ୍ୟାକରଣ ଶୁଦ୍ଧି, ଦ୍ୱିତୀୟ-ଶବ୍ଦପ୍ରୟୋଗ, ତୃତୀୟ-ରୀତିରକ୍ଷା । ଉତ୍କଳର ଅଧିକାଂଶ ଲେଖକ ଉକ୍ତ ତ୍ରିବିଧ ବିଷୟରେ ଅତ୍ୟନ୍ତ ଆସ୍ଥାହୀନ । କୌଣସି କୌଣସି ଜଟିଳ ବା ସୂକ୍ଷ୍ମ ବ୍ୟାକରଣ ନିୟମ ରକ୍ଷା କରିବାରେ କ୍ୱଚିତ୍ ତ୍ରୁଟି ହେବା ସ୍ୱତନ୍ତ୍ର କଥା, ମାତ୍ର ଅନେକେ ସାଧାରଣ ନିୟମଗୁଡ଼ିକ ଆୟତ୍ତ କରିଥିବା ପରି ଅନୁମାନ ହୁଏନାହିଁ । ବହୁ ଖ୍ୟାତନାମା ପଦ୍ୟ ଲେଖକଙ୍କ ରଚନାରେ ଅନେକ ସ୍ଥଳରେ ଅନ୍ୱୟ ଖୋଜି ପାଇବା କଠିନ । ଏହା କଣ ଭାଷା ପ୍ରତି ଯଥେଚ୍ଛାଚାର ବା ଅତ୍ୟାଚାର ନୁହେଁ ? ଅତ୍ୟଳ୍ପ ଚେଷ୍ଟାରେ ବା ସାବଧାନତାରେ ଯାହା ହୋଇପାରେ, ତାହାପ୍ରତି ଔଦାସୀନ୍ୟ ବା ଅନାସ୍ଥା କଦାପି ଶୋଭନୀୟ ନୁହେଁ । ନାନା କାରଣରୁ ଆମ୍ଭେମାନେ ବର୍ତ୍ତମାନ ଏ ସମ୍ବନ୍ଧରେ ଦୃଷ୍ଟାନ୍ତ ପ୍ରୟୋଗରୁ କ୍ଷାନ୍ତ ହେଲୁ ।

ତତ୍ପରେ ଶବ୍ଦପ୍ରୟୋଗ ଓ ରୀତିରକ୍ଷା । ଏ ସମ୍ବନ୍ଧରେ ମଧ୍ୟ ଓଡ଼ିଆ ଲେଖକମାନଙ୍କର ସୂକ୍ଷ୍ମ ଦୃଷ୍ଟି ଓ ସତର୍କତାର ଯଥେଷ୍ଟ ଅଭାବ ଲକ୍ଷିତ ହୁଏ । ଲୋକେ କଥାରେ କହିଥାନ୍ତି, ଚିନ୍ତା ଓ ଭାବ ଥିଲେ ଭାଷା ଆପେ ଠିକ୍ ହୋଇଯିବ । ମାତ୍ର ଭାଷାରେ ସମୁଚିତ ଜ୍ଞାନ ନ ଥିଲେ ଭାଷା କିପରି ଆପେ ଠିକ୍ ହୋଇଯିବ, ବୁଝିବାକୁ ଅକ୍ଷମ । ଓଡ଼ିଆ ଶବ୍ଦକୋଷରେ ସମ୍ୟକ୍ ପ୍ରବେଶ ନ ଥିବାରୁ ଏବଂ ବହୁ ଶବ୍ଦର ଯଥାର୍ଥ ପ୍ରୟୋଗ ଏବଂ ରୀତି ସମ୍ବନ୍ଧରେ ଅନଭିଜ୍ଞ ଥିବାରୁ ଅନେକେ ଶବ୍ଦବ୍ୟବହାର ଓ ରୀତିଶିକ୍ଷା ସମ୍ବନ୍ଧରେ ନାନା ବିଭ୍ରାଟ ଘଟାଇଥାନ୍ତି । ଅନେକ ରଚନାରେ ଶୁଦ୍ଧ ବଙ୍ଗଳା ଶବ୍ଦ ବା ବଙ୍ଗଳାର ବିକୃତ ଅନୁବାଦ ଲକ୍ଷିତ ହେଉଥିବା କଥା ଉଲ୍ଲେଖ କରିଅଛୁ । ସାମାନ୍ୟ ଗୋଟାକେତେ ଦୃଷ୍ଟାନ୍ତ ଦେଉଅଛୁ । ଏକେବାରେ, ଦୁଇ ଏକ ଜାତୀୟ, କରା ଉଚିତ, ସତ୍ତ୍ୱେଓ, ଏହାଇ, ତାହାଇ, ପାୟାଯିବ, ମନର କଥା, ଲୁହାର ବାଡ଼ି, ଅଦ୍ୟକାର, କରିପାରାଯାଏ, ଉଚ୍ଚ ଲକ୍ଷ୍ୟର ଦିଗରେ ଅଗ୍ରସର ହେଉଅଛି, ହେଉ ନା କାହିଁକି, ଆଜିରେ, ବାଟଦେଇ, ମିଟିଲା, ମିଠାସୁର ଦୁଇ ପାଞ୍ଚଟା, ଏ ବିଷୟେ, ହସ୍ତେ ଧରି, ଏପରି ସ୍ଥଳେ, ଯେଠି ତା ଘଟିବ ନାହିଁ, ଘୁଞ୍ଚିବ ଦୁର୍ଦ୍ଦଶା,

ଚାରିଘଣ୍ଟାର ଉପର ହେବ, ଏଥର ଲାଗିଲେହିଁ ଧରିବୁଁ, ଲକ୍ଷ୍ମୀ ଝିଅଟି, ତାକୁ କି ବିଶ୍ୱାସ କରିବାକୁ ଅଛି, କେଉଁ ପ୍ରାଣରେ ତାକୁ ଛାଡ଼ିବି ? ରାତି ପହରେ ହେବାକୁ ଚାଲିଲା, ଇତ୍ୟାଦି ପଣ ପଣ ଉଦାହରଣ ଦିଆଯାଇ ପାରେ । ଆପାତତଃ ଏତିକିରେ କ୍ଷାନ୍ତ ହେଲୁଁ । ସମ୍ବନ୍ଧସୂଚକ 'ର'ର ବହୁଳ ବ୍ୟବହାର ଦ୍ୱାରା କାହାରି କାହାରି ଭାଷା ଅନେକ ସ୍ଥଳରେ ବଙ୍ଗଳା ପରି ବୋଧହୁଏ । ସମୁଚିତ ଶବ୍ଦଜ୍ଞାନ ଓ ରୀତିଜ୍ଞାନ ନ ଥିଲେ ଭାଷାରେ ଭାବ ପ୍ରକାଶ କରିବା କଠିନ, ପୁଣି ଯଥାସ୍ଥାନରେ ଉପଯୁକ୍ତ ଶବ୍ଦ ପ୍ରୟୋଗ କରି ନ ପାରିଲେ ଭାଷାର ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ରହେ ନାହିଁ । କି ଗଦ୍ୟ କି ପଦ୍ୟ, ଉଭୟ ପ୍ରକାର ରଚନା ଯେ ଗୋଟିଏ ଶିଳ୍ପ (ଅବଶ୍ୟ ପଦ୍ୟ ରଚନାରେ ଶିଳ୍ପ କୌଶଳ ଅଧିକ ଆବଶ୍ୟକ) ଏକଥା ଅନେକ ଲେଖକଙ୍କ ମନରେ ଉଦିତ ହୁଏନାହିଁ । ଏକାର୍ଥ ବୋଧକ ବିଭିନ୍ନ ଶବ୍ଦ ବିଭିନ୍ନ ସ୍ଥାନରେ କିପରି ଭାଷାର ବଳ ବୃଦ୍ଧିକରେ ଓ ଭାବକୁ ବିଶଦ କରେ, ଉଚ୍ଚଶ୍ରେଣୀର ରଚନା ଗଭୀର ଦୃଷ୍ଟିସହକାରେ ପାଠ ନ କଲେ ବୁଝାଯାଏ ନାହିଁ । ନାନା ଭାବରେ ଆଲୋଚନା କରି ଦେଖିଲେ ସ୍ପଷ୍ଟ ବୁଝାଯିବ ଯେ ବର୍ତ୍ତମାନ ଓଡ଼ିଆ ରଚନା ଶୁଦ୍ଧତା, ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ, ସକଳ ବିଷୟରେ ହୀନାବସ୍ଥା ପ୍ରାପ୍ତ ହୋଇଅଛି । ଆମ୍ଭେମାନେ ବିଶେଷ ବିଶେଷ ରଚନାରୁ ଦୃଷ୍ଟାନ୍ତ ଉଦ୍ଧୃତ କରି ଦେଖାଇବାକୁ ବର୍ତ୍ତମାନ ପ୍ରସ୍ତୁତ ନୋହୁ । ସ୍ଥୂଳରେ ସର୍ବସାଧାରଣଙ୍କ ଦୃଷ୍ଟି ଭାଷାଚର୍ଚ୍ଚା ପ୍ରତି ଆକର୍ଷଣ କରିବା ଅଭିପ୍ରାୟରେ ଏ ପ୍ରବନ୍ଧର ଅବତାରଣା କରିଅଛୁଁ । ଏ ସମ୍ବନ୍ଧରେ ଅନ୍ୟାନ୍ୟ କଥା ଅବସରକ୍ରମେ କହିବାର ଇଚ୍ଛା ରହିଲା । ବର୍ତ୍ତମାନ ସ୍ଥାନାଭାବ ଏବଂ ସମୟାଭାବ । ତେବେ ଆଉ ଗୋଟିଏ କଥା କହି ରଖିବା ନିତାନ୍ତ ଆବଶ୍ୟକ ।

ଆମ୍ଭେମାନେ ଏକ ସ୍ଥାନରେ କହିଅଛୁ, ଅନ୍ୟଠାରୁ ଶବ୍ଦ ବା ରୀତି ଗ୍ରହଣ କରାଯାଇପାରେ । ସମସ୍ତ ଉନ୍ନତିଶୀଳ ଭାଷାରେ ଏପରି ହୋଇଅଛି । ଓଡ଼ିଆ ଭାଷାରେ ଯେ ହୋଇନାହିଁ, ତାହା ନୁହେଁ । ଏହା ସମସ୍ତେ ପ୍ରତ୍ୟକ୍ଷ କରୁଥିବେ ଯେ ବହୁ ସଂଖ୍ୟକ ହିନ୍ଦୀ, ପାର୍ସି, ପ୍ରଭୃତି ଶବ୍ଦ ଅବିକୃତ ଭାବରେ ବା କିଞ୍ଚିତ୍ ପରିବର୍ତ୍ତିତ ଆକାରରେ ଓଡ଼ିଆ ଭାଷାରେ ମିଶ୍ରିତ ହୋଇଯାଇଅଛି । ଅନେକ କଥା ଲିଖିତ ଭାଷାରେ ପ୍ରବେଶ ଲାଭ କରି ନ ଥିଲେହେଁ କଥିତ ଭାଷାରେ ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରିଅଛି । ବର୍ତ୍ତମାନ ତାହା ଲିଖିତ ଭାଷାରେ ମଧ୍ୟ ପ୍ରବେଶ କରୁଅଛି ଏବଂ କରିବା ବାଞ୍ଛନୀୟ । ଉକ୍ତ ଭାଷାମାନଙ୍କର ରୀତି ଯେ ଓଡ଼ିଆ ଭାଷାରେ ପ୍ରବେଶ କରିନାହିଁ ବା ଓଡ଼ିଆ ଭାଷାରୁ ରୀତିକୁ ବଦଳାଇ ନାହିଁ ତାହା ମଧ୍ୟ ବୋଲାଯାଇ ନ ପାରେ । ଭାଷାର କ୍ରମବିକାଶ ଆଲୋଚନା କଲେ ଏପରି ଅନେକ ତତ୍ତ୍ୱ ପ୍ରକାଶିତ ହେବ । ସେପରି ଆଲୋଚନା ଓଡ଼ିଶାରେ ବିରଳ – ଏପର୍ଯ୍ୟନ୍ତ ଯଥାର୍ଥରୂପେ ଆରମ୍ଭ ହୋଇ ନାହିଁ ବୋଲିବାକୁ ହେବ । ହିନ୍ଦୀ ପ୍ରଭୃତି ଭାଷାର ଶବ୍ଦମାନ ଯେପରି ଓଡ଼ିଆ ଭାଷାରେ ସ୍ଥାନ ଲାଭ କରିଅଛି, ବଙ୍ଗଳା ଭାଷାର କୌଣସି ଶବ୍ଦ ସେପରି ସ୍ଥାନ ପାଇବା କଦାପି ବାଞ୍ଛନୀୟ ନୁହେଁ । ତେବେ ପାଶ୍ଚାତ୍ୟ ଭାବ ଓ ଚିନ୍ତାର ପ୍ରବେଶରେ ବଙ୍ଗଳା ଭାଷା ଯେପରି

ନବ ନବ ଶବ୍ଦ ଓ ରୀତି ସଂଗଠନ କରି ଭାଷାର ପୁଷ୍ଟିସାଧନ କରିଅଛି, ଓଡ଼ିଆ ଭାଷାରେ ସେହି ପନ୍ଥା ଅନୁସରଣ କରିବା ସର୍ବତୋଭାବେ ବିଧେୟ । ଓଡ଼ିଆ ଭାଷାରେ ଯେ ଏପର୍ଯ୍ୟନ୍ତ ସେପରି ହୋଇନାହିଁ, ତାହା ନୁହେଁ । କିନ୍ତୁ ଏ ବିଷୟରେ ସମୁଚିତ ସତର୍କତା ଅବଲମ୍ବିତ ହୋଇନାହିଁ । ତେଣୁ ଅନେକ ସ୍ଥଳରେ ନାନା ମୁନିଙ୍କର ନାନା ମତ ଦୃଷ୍ଟ ହୋଇଥାଏ । ଆମ୍ଭମାନଙ୍କ ମତରେ ନୂତନ କିଛି ଗ୍ରହଣ କରିବାକୁ ହେଲେ ଯଥାସମ୍ଭବ ଓଡ଼ିଆ ରୀତି ସହିତ ସାମଞ୍ଜସ୍ୟ ରକ୍ଷା କରିବାକୁ ଚେଷ୍ଟା କରିବା ବିଧେୟ । ଅଭାବ ସ୍ଥଳରେ ନୂତନ ରୀତି ଯେ ଗ୍ରହଣ କରାଯିବ ନାହିଁ, ଏହା ନୁହେଁ । ଗୋଟିଏ ମାତ୍ର ଦୃଷ୍ଟାନ୍ତ ଧରାଯାଉ । ଇଂରାଜୀରେ ଗୋଟିଏ କଥା ଅଛି through। ଏହା ସ୍ଥଳ ବିଶେଷରେ process ବା କ୍ରମିକ ଗତି ବୁଝାଏ । ଏହାର ଭାବକୁ ଓଡ଼ିଆରେ କିପରି ପ୍ରକାଶ କରିବାକୁ ହେବ ? ବଙ୍ଗଳାରେ "ମଧ ଦିୟା" ଏହି କଥାଟି ଦ୍ୱାରା ଉକ୍ତ ଭାବ ପ୍ରକାଶିତ ହୋଇଥାଏ । ଓଡ଼ିଆରେ କେହି କେହି ଏପରି ସ୍ଥଳରେ 'ମଧ ଦେଇ' ବ୍ୟବହାର କରୁଅଛନ୍ତି । ଆମ୍ଭେମାନେ ଅନେକ ଚେଷ୍ଟାକରି ଅନ୍ୟ କିଛି ଖୋଜି ପାଇନାହୁଁ । ଯଥାର୍ଥରେ ଯେବେ ଆଉ କିଛି ଉପଯୁକ୍ତ କଥା ନ ମିଳେ, ତାହାହେଲେ 'ମଧ ଦେଇ' ବ୍ୟବହାର କରିବା ଅସଙ୍ଗତ ହେବନାହିଁ । ମାତ୍ର ତାହା ବୋଲି ବଙ୍ଗଳାରେ, 'ଆମି କଟକ ଦିୟା ଯାବ'କୁ ଓଡ଼ିଆରେ 'ମୁଁ କଟକ ଦେଇ ଯିବି' କରିବାକୁ ହେବ, ଏହା ଯେମନ୍ତ କେହି ଭାବି ନ ବସନ୍ତି । ଏହା ଯେପରି ଅସଙ୍ଗତ, 'କଟକ ଦିୟା' ଓଡ଼ିଆରେ 'କଟକ ବାଟେ' ହୁଏ ବୋଲି 'ମଧ ଦିୟା' କଥାଟିକୁ 'ମଧ ବାଟେ' କରିବା ସେହିପରି ଅସଙ୍ଗତ । 'ମଧ ଦେଇ' କଥାରେ ସନ୍ତୁଷ୍ଟ ନ ହୋଇ କେହି କେହି 'ମଧ ବାଟେ' ପ୍ରୟୋଗ କରିଥିବାର ଦେଖିଅଛୁ । ଏହା "ଦିଅଁ ଗଡୁ ଗଡୁ ମାଙ୍କଡ଼" କରିବା କଥା ।

ଏଥି ଉପରେ ଛେଦବିନ୍ୟାସ ସମ୍ବନ୍ଧରେ ଘୋର ସ୍ୱେଚ୍ଛାଚାର ପରିଦୃଷ୍ଟ ହୁଏ ! କମା, ସେମିକୋଲନ୍ ପ୍ରଭୃତି ଏ ଦେଶରେ ଭାଷା ମାନଙ୍କରେ ସମ୍ପୂର୍ଣ୍ଣ ନୂତନ; ସୁତରାଂ ବିଦେଶୀୟ ଭାଷାରେ ଏଗୁଡ଼ିକର ଯଥାଯଥ ବ୍ୟବହାର ପ୍ରତି ଲକ୍ଷ୍ୟରଖି ଦେଶୀୟ ଭାଷାରେ ଯଥାସ୍ଥାନରେ ପ୍ରୟୋଗ କରିବା ଆବଶ୍ୟକ । ଏଥିପ୍ରତି ଅତି ଅଳ୍ପ ଲେଖକଙ୍କ ଦୃଷ୍ଟି ପଡ଼ିଅଛି । ଉତ୍କଳର ମୁଦ୍ରାଯନ୍ତ୍ରଗୁଡ଼ିକ ମଧ ଓଡ଼ିଆ ଭାଷାପ୍ରତି ନିତାନ୍ତ ନିର୍ମମ । ଏଠାରେ ଯେମନ୍ତ କୌଣସି ବିଧି ପାଳନ କରିବାର ପ୍ରୟୋଜନ ନାହିଁ । ଯେପରି ହେଉ, କଥାଗୁଡ଼ିକ ଛାପାରେ ବସାଇ ଦେଲେ ହେଲା ।

ଆମ୍ଭେମାନେ ଆଜି ଏହିଠାରେ କ୍ଷାନ୍ତ ହେଲୁ । ଶବ୍ଦ ଏବଂ ରୀତି ସମ୍ବନ୍ଧରେ ଉପଯୁକ୍ତ ଆଲୋଚନା ହେଉ, ଏହାହିଁ ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା । ତଦ୍ୱାରା ଅନେକ ବିଷୟରେ ଉଚିତ ମୀମାଂସାରେ ଉପନୀତ ହେବା ସହଜ ହେବ ।



୬

# ଭାଷା ବିତର୍କ

## ଶ୍ୟାମ ସୁନ୍ଦର ରାଜଗୁରୁ
## ଓ
## ବିଶ୍ୱନାଥ କର

୧

ପାରଳାର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହୋଦୟ ନାନା ଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଅଛନ୍ତି । ତାଙ୍କର ଅଗ୍ରଜ ପାରଳାର ବର୍ତ୍ତମାନ ରାଜା ମହୋଦୟ ଶ୍ରୀଶ୍ରୀଶ୍ରୀ ଗୌରଚନ୍ଦ୍ର ନାରାୟଣ ଦେବ ସେ କ୍ଷେତ୍ରରେ ପ୍ରବେଶ କରିଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ଲାଭ କରିଅଛୁଁ । ଅନୁଜଙ୍କର ସାଦର ଓ ସାନୁନୟ ଆହ୍ୱାନ ବିଫଳ ହୋଇନାହିଁ । ରାଜା ମହୋଦୟ ପ୍ରସିଦ୍ଧ ଭକ୍ତଶିଶୁ ଧ୍ରୁବଙ୍କ ଉପାଖ୍ୟାନ ଅବଲମ୍ବନ କରି ଏ ନାଟକ 'ଧ୍ରୁବ ନାଟକ' ଖଣ୍ଡି ପ୍ରଣୟନ କରିଅଛନ୍ତି । ପୌରାଣିକ ଉପାଖ୍ୟାନ ଘେନି କାବ୍ୟ ବା ନାଟକ ପ୍ରଣୟନ କରିବାକୁ ହେଲେ ଯେ ଠିକ୍ ପୁରାଣ ଅନୁସରଣ କରିବାକୁ ହେବ, ଏପରି କିଛି କଥା ନାହିଁ । ଚରିତ୍ରର ଉତ୍କର୍ଷ ସାଧନ ନିମନ୍ତେ ଲେଖକ ନିଜ ଅଭିପ୍ରାୟାନୁଯାୟୀ ଯୋଗ-ବିୟୋଗ କରିପାରନ୍ତି । ସକଳ ଦେଶର ଓ ସକଳ ଯୁଗର କବି ଓ ନାଟ୍ୟକାରମାନେ ଏହା କରିଅଛନ୍ତି । ସମାଲୋଚ୍ୟ ନାଟକରେ ଚରିତ୍ରଗୁଡ଼ିକର ବିଶେଷତ୍ୱ ଅଧିକ ନ ଥିଲେ ହେଁ ସବୁଗୁଡ଼ିକ ସଙ୍ଗତ ଭାବରେ ଚିତ୍ରିତ ହୋଇଅଛି । ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ । 'କୋଆଡ଼େ', 'କୋଦିନ', 'ଜାଣି ଦେଇଅଛନ୍ତି', 'ତୁ ଚାଲେ', 'ବାବୁ ମୋ କଥା ଶୁଣେ', 'ନ ଜାଣି ଯାହା ପାରୁ ତାହା ବୋଲି ଦେନ୍ତି', 'ବିଜେ ହେନ୍ତୁ', 'ତୋ ଆଡ଼େ ଦେଖିବେ ନାହିଁ', 'ତୁ ଦେଖିଲେ ବାଲୁତ', 'କେ ନ ଦେଖୁଣୁ', 'କେ ଦେଖିବେ ନାହିଁଟି', 'କାନ୍ଦୁଛି ପରା ତ', 'ସୁରୁଚି କହିଲା ପରି ତୁ ବା ମୁଁ ପୂର୍ବ ଜନ୍ମରେ ତପସ୍ୟା କରି ନାହିଁ', 'ଧାଇମାତ୍ର ଘୁମୁଡ଼ି ମାରି ଶୋଇଛି', 'ଆଉ ନିଷ୍ଠୁର କରନା'– ଏହିପରି ପ୍ରୟୋଗ ବହୁଳ ଦୃଷ୍ଟ ହେଲା । ଆଶା କରୁଁ, ଗ୍ରନ୍ଥକାର ମହୋଦୟ ଭବିଷ୍ୟତରେ ଏସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ ।

ବିଶ୍ୱନାଥ କର

୨

ମହାଶୟ,

ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ କର୍ତ୍ତୃକ ପ୍ରଣୀତ ଧ୍ରୁବ ନାଟକ ସମାଲୋଚନା କରି ୧୧ଶ, ୧୨ଶ ସଂଖ୍ୟା ସାହିତ୍ୟରେ ଆପଣ ଲେଖିଅଛନ୍ତି- "ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ । ...ଆଶା କରୁଁ, ଗ୍ରନ୍ଥକାର ମହୋଦୟ ଭବିଷ୍ୟତରେ ଏସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ ।" ପୁସ୍ତକରେ ପ୍ରାଦେଶିକତା ବ୍ୟବହାର କରିବା ଦୋଷ, ଏହା ଆପଣ କେଉଁ ନିୟମାନୁସାରେ ସ୍ଥିର କରିଅଛନ୍ତି, ଆମେ ଜାଣିପାରୁ ନାହୁଁ । ମାକ୍ସ୍‌ମୁଲର କହିଅଛନ୍ତି- "and unless the literary and courtly languages invigorate themselves by a constantly renewed intercourse with their former companions, the popular dialects will sooner or later assert their ascendency." (Vide Max Muller's 'Science of Language', Vol, 1. page 61) । ଏଥିର ଅଭିପ୍ରାୟ ଏହି ଯେ, ପ୍ରାଦେଶିକ ଭାଷା ସହିତ ପୁସ୍ତକଗତ ଭାଷାର ସମ୍ପର୍କ ନ ରହିଲେ, କାଳକେ ପ୍ରାଦେଶିକ ଭାଷା ନିଜ ଆଧିପତ୍ୟ ସ୍ଥାପନ କରିଯିବ । ସେ ଅନ୍ୟତ୍ର କହିଅଛନ୍ତି- "What we are accustomed to call languages, the literary idioms of Greece and Rome and India, of Italy, France and Spain, must be considered as artificial rather than as natural forms of speech. The real and natural life of language is in its dialects, a name which in its widest sense comprise provincialism, brogue, patois, jargon or any other variety that affects the general progress of language down to the idiom of families and individuals" (Vide Max Muller's 'Science of Language', Vol. I. page 55) ଏଥିର ସାରାଂଶ ଏହି ଯେ, ଗ୍ରୀସ୍, ରୋମ୍, ଭାରତବର୍ଷ, ଇଟାଲୀ, ଫ୍ରାନ୍ସ, ସ୍ପେନ୍ ଇତ୍ୟାଦି ଦେଶମାନଙ୍କରେ ଆମ୍ଭେମାନେ ଯାହାକୁ ଭାଷା କହୁଁ ତାହା କୃତ୍ରିମ ଭାଷା; ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତା । ଏହା ପ୍ରମାଣ ସିଦ୍ଧ ନ ହେଲେ କି କାହିଁ ଅଞ୍ଚଳର ନବ୍ୟଶିକ୍ଷିତ ଉତ୍କଳସନ୍ତାନମାନେ ମାତୃଭାଷା ପ୍ରାୟ ଭୁଲି ଯାଇଥାନ୍ତେ ? ପୁଣି ନୀଚଶ୍ରେଣୀ ଲୋକେ ଜଗନ୍ନାଥ ଦାସକୃତ ଭାଗବତ ବଙ୍ଗଳା ଅକ୍ଷରରେ ଲେଖି ଆହୁରି ପଢୁଥାନ୍ତେ ? ଦେବଭାଷା ସଂସ୍କୃତ ମୃତ ହୋଇ ପଡ଼ିରହିଥାନ୍ତା ? ଲୋକେ ଆଜିକାଲି ବଙ୍ଗଳା, ଓଡ଼ିଆ, ଗୁଜରାଟୀ ଇତ୍ୟାଦି ପ୍ରାଚୀନ ପ୍ରାଦେଶିକ ଭାଷାମାନଙ୍କରେ କଥାବାର୍ତ୍ତା କରୁଥାନ୍ତେ ? ଭିଟ୍ନୀ ସାହେବ କହିଅଛନ୍ତି- "They (language and dialect) are only two names for the same thing as looked at from different points of view ...On the other hand, there is no tongue in the world to which we should not with perfect freedom and perfect propriety apply the name of dialect, when considering it

as one of a body of related forms of speech; * *' it (the science of language) has taught us that one man's speech is just as much a langugage as another man's; that even the most cultivated tongue that exists is only the dialect of a certain class in a certain locality - both class and locality limited, though the limits may be wide ones". (Vide Whitney's 'Life and Growth of Language' page 177 to 178) ଅର୍ଥାତ୍ ଭାଷା ଓ ପ୍ରାଦେଶିକତା ମଧ୍ୟରେ କୌଣସି ପ୍ରଭେଦ ନାହିଁ । ** ପୃଥିବୀରେ ଏପରି କୌଣସି ଭାଷାନାହିଁ, ଯାହାକୁ ଆମ୍ଭେମାନେ ପ୍ରାଦେଶିକତା କହି ନ ପାରିବା । ଆମ୍ଭମାନଙ୍କ କଥାବାର୍ତ୍ତା ଯେପରି ଭାଷା, ଅନ୍ୟ ଲୋକମାନଙ୍କ କଥାବାର୍ତ୍ତା ସେପରି ଭାଷା ଅଟେ । ଯେତେ ଉତ୍କୃଷ୍ଟ ଭାଷା ହେଉ, ତାହା କୌଣସି ପ୍ରଦେଶର କୌଣସି ଶ୍ରେଣୀ ଲୋକମାନଙ୍କର ପ୍ରାଦେଶିକତା ମାତ୍ର । ଏଥିରୁ ଆପଣ ସ୍ପଷ୍ଟ ବୁଝିବେ ଯେ, ପ୍ରାଦେଶିକତା ଦୋଷରେ ଗଣ୍ୟ ନୁହେଁ, ବରଂ ପୁସ୍ତକରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହେବ, ତେତେ ବାଞ୍ଛନୀୟ ।

ଶ୍ୟାମସୁନ୍ଦର ରାଜଗୁରୁ

## ୩

ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପ୍ରଣୀତ 'ଧ୍ରୁବ ନାଟକ'ର ସମାଲୋଚନା ପ୍ରସଙ୍ଗରେ ଆମ୍ଭେମାନେ ଲେଖିଥିଲୁଁ, "ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ ।" ସଙ୍ଗେ ସଙ୍ଗେ ପୁସ୍ତକରୁ କେତେଗୁଡ଼ିଏ ଦୃଷ୍ଟାନ୍ତ ମଧ୍ୟ ଉଦ୍ଧାର କରି ଦେଇଥିଲୁ । ଏଥକୁ ପାରଳାକିବାସୀ ଆମ୍ଭମାନଙ୍କର ଶ୍ରଦ୍ଧେୟ ବନ୍ଧୁ ଖଣ୍ଡିଏ ପତ୍ର ଲେଖିଅଛନ୍ତି । ପତ୍ରଖଣ୍ଡିକ ପାଠକମାନଙ୍କ ଗୋଚରାର୍ଥେ ପ୍ରକାଶ କଲୁ । ତାଙ୍କ ପ୍ରତିବାଦର ଅର୍ଥ ଏହି ଯେ, ପୁସ୍ତକରେ ପ୍ରାଦେଶିକତା (Provincialism) ଦୋଷ ନୁହେଁ, ବରଂ ଗୁଣ । ଏହି ଉକ୍ତିର ସପକ୍ଷରେ ସେ ପଣ୍ଡିତବର Max Muller ଏବଂ Whitney ସାହେବଦ୍ୱୟଙ୍କୁ ସାକ୍ଷୀସ୍ୱରୂପ ଉପସ୍ଥିତ କରିଛନ୍ତି । ସେ ସମ୍ବନ୍ଧରେ ଆମ୍ଭମାନଙ୍କ ବକ୍ତବ୍ୟ ସଂକ୍ଷେପରେ ନିମ୍ନରେ ବ୍ୟକ୍ତ କରୁଅଛୁ ।

ପ୍ରଥମତଃ ପ୍ରାଦେଶିକତା କ'ଣ ଏବଂ ଆମ୍ଭେମାନେ ତାହା କି ଭାବରେ ବ୍ୟବହାର କରିଅଛୁ, ଏହା ସୁସ୍ପଷ୍ଟ ହେବା ଉଚିତ । ଏକ ଭାଷା ବିଭିନ୍ନ ପ୍ରଦେଶରେ ଅବସ୍ଥାଭେଦରେ ଲୋକମୁଖରେ ଏବଂ ବହିଃପ୍ରଭାବର ସଂସ୍ପର୍ଶରେ ପରିବର୍ତ୍ତିତ ହୋଇ ଯେଉଁ ଆକାର ଧାରଣ କରିଥାଏ, ତାହା ଆମ୍ଭମାନଙ୍କ ମତରେ ଭାଷାର ପ୍ରାଦେଶିକତା । ପ୍ରତ୍ୟେକ ଭାଷାରେ ଏପରି ପରିବର୍ତ୍ତନର ଦୃଷ୍ଟାନ୍ତ ମିଳିବ । ମାତ୍ର ଲିଖିତ ଭାଷା ବା ସାହିତ୍ୟରେ ବିଶେଷ ପ୍ରୟୋଜନ ସ୍ଥଳ ଭିନ୍ନ ଏଗୁଡ଼ିକ ବ୍ୟବହୃତ ହୁଏ ନାହିଁ ଏବଂ ହେବା ଦୂଷଣୀୟ ବୋଲି ବିବେଚିତ ହୋଇଥାଏ । ଗୋଟିଏ ମାତ୍ର ବାହାରର ଦୃଷ୍ଟାନ୍ତ ଦିଆଯାଉ । ପୂର୍ବବଙ୍ଗର କଥିତ ଭାଷା

ବଙ୍ଗଳା ହେଲେ ମଧ୍ୟ ତାହା ଏପରି ବିକୃତ ହୋଇଯାଇଅଛି ଯେ, ଅପରାଞ୍ଚଳବାସୀ ବଙ୍ଗସନ୍ତାନମାନଙ୍କର ଗୋଟିଏ ଆମୋଦର ବିଷୟ ହୋଇଅଛି । ମାତ୍ର ପୂର୍ବବଙ୍ଗର ଗ୍ରନ୍ଥକାରମାନେ ନିଜ ପ୍ରଦେଶର ବିଶେଷତ୍ୱ ରକ୍ଷା କରିବାପାଇଁ ସାହିତ୍ୟରେ ତାହା ପ୍ରବର୍ତ୍ତିତ କରନ୍ତି କି ? କଲେ ଉପହାସାସ୍ପଦ ହେବେ ନାହିଁ କି ? ସେ କଥା ଦୂରେ ଥାଉ, ଶିକ୍ଷିତ ପୂର୍ବାଞ୍ଚଳବାସୀମାନଙ୍କ କଥାରେ ସୁଦ୍ଧା ପ୍ରାଦେଶିକ ଭାବ ଅତ୍ୟନ୍ତ ଲକ୍ଷିତ ହୋଇଥାଏ । ଅନ୍ତତଃ ତାହା ପରିହାର କରିବାର ଚେଷ୍ଟା ପ୍ରାୟ ସର୍ବତ୍ର ଲକ୍ଷିତ ହେବ । ବିସ୍ତୃତ ଉତ୍କଳ ଭାଷୀ ପ୍ରଦେଶ ଘଟଣାଚକ୍ରରେ ଖଣ୍ଡ ବିଖଣ୍ଡ ହୋଇ ବିଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇ ପଡ଼ିଅଛି ଏବଂ ବିଭିନ୍ନ ଭାଷାମାନଙ୍କର ପ୍ରଭାବରେ ନାନା ଭାବରେ ପରିବର୍ତ୍ତିତ ହୋଇ ନାନା ଆକାର ଧାରଣ କରିଅଛି । ସମ୍ବଲପୁର ପ୍ରଭୃତି ସ୍ଥାନରେ ହିନ୍ଦୀର ପ୍ରଭାବ, ଗଞ୍ଜାମ ଅଞ୍ଚଳରେ ତୈଲଙ୍ଗର ପ୍ରଭାବ ଏବଂ କାନ୍ଥି ବିଭାଗରେ ଓ ବାଲେଶ୍ୱର ଅଞ୍ଚଳରେ ବଙ୍ଗଳାର ପ୍ରଭାବ ଉକ୍ତ ଅଞ୍ଚଳମାନଙ୍କ ଭାଷାକୁ ଭିନ୍ନ ଭିନ୍ନ ଛାଞ୍ଚରେ ଢାଳି କିମ୍ଭୂତକିମାକାର କରିପକାଇଅଛି । ପ୍ରତ୍ୟେକ ଅଂଶର କଥିତ ଭାଷା ସ୍ୱତନ୍ତ୍ର । ଆଉ କଥା ଦୂରେଥାଉ, ଏହି କଟକ ଜିଲ୍ଲାରେ ମଧ୍ୟ ସହର ଏବଂ ମଫସଲର ଭାଷାରେ କେତେ ପାର୍ଥକ୍ୟ ରହିଅଛି । ଏଥିମଧ୍ୟରୁ କେଉଁଟିକି ଆଦର୍ଶ ବୋଲି ଧରିବାକୁ ହେବ ? ପ୍ରତ୍ୟେକ ସ୍ଥାନର ଅଧିବାସୀମାନେ ଯଦି ଆତ୍ମଗୌରବ ରକ୍ଷାପାଇଁ ସ୍ୱସ୍ଥାନ ପ୍ରଚଳିତ ଭାଷାକୁ ସାହିତ୍ୟରେ ପ୍ରବର୍ତ୍ତିତ କରିବାକୁ ଚେଷ୍ଟା କରନ୍ତି, ତେବେ ଓଡ଼ିଆ ଭାଷା ଗୋଟିଏ ଅଦ୍ଭୁତ ଖେଚୁଡ଼ି ହେବ ନାହିଁ କି ? ବାଲେଶ୍ୱରର ଓଡ଼ିଆ କହିବେ - ଯାଇଥିନି, ଖାଇଥିନି, ଯିମି, ଖାଇମି, ତୋ ଘର କେଇଟି, ସେ ଘରକତିର ଅଛି, ଗୁଡ଼ (ଗୋଡ଼), କୁଠା ଇତ୍ୟାଦି । କଟକର ସାଧାରଣ ଲୋକେ କହନ୍ତି - ହାମେ, ହାମ ଘର, ଲଇ (ନଇ), ଲଡ଼ିଆ ଇତ୍ୟାଦି । ସମ୍ବଲପୁର ଅଞ୍ଚଳରେ ସେହିପରି ନାହିଁ ଯାଏଁ, ନାହିଁ ଖାଏଁ, ମୁଁ କେନ୍‌ତା କର୍‌ବି, ମୋର୍ ନେ ନାଇଁନ ଇତ୍ୟାଦି କେତେ ପ୍ରକାର ବିଶେଷତ୍ୱ ଦୃଷ୍ଟ ହେବ । କାନ୍ଥି ଅଞ୍ଚଳରେ ମଧ୍ୟ ଏକପ୍ରକାର ଓଡ଼ିଆ ଏପର୍ଯ୍ୟନ୍ତ ଅଛି । ତାହାର ଦିଓଟି ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ - ଆମ୍ଭେମାନେ ଜଣେ ନିମ୍ନଶ୍ରେଣୀର ଲୋକକୁ ପଚାରିଲୁ, "ତୋ ଘର କେତେ ବାଟ ? ଉତ୍ତର- 'ବାଟ ନଇ ତ କି ?' ଓଡ଼ିଆ ପାଠକ ! କିଛି ବୁଝି ପାରିଲେ କି ? ଆହୁରି ଦେଖନ୍ତୁ- ବେଚିଦିବ, ବଗାନ ଛାଡ଼ି ଦିଇଛି, କତକ ଆଳାପ ଥାଇଲା, ମାୟାମାନଙ୍କର, ଅନ୍ୟରକମ କୟ, ତୁମି ଦେଖି ଆଣିବ, ସେ ବିଟା ହୋଇଛେ, ବଡ଼ଗୁଲା ଫୁଟି ଯାଇଛେ, ଘୁମେଇ ଗଲା ନା କି ହେ ? ଇତ୍ୟାଦି । କାନ୍ଥି ଅଞ୍ଚଳର କୌଣସି ବ୍ୟକ୍ତି ପୁସ୍ତକ ଲେଖିବାକୁ ବସି ଏପରି କଥା ବ୍ୟବହାର କଲେ ପାଠକମାନେ ଅନୁମୋଦନ କରିବେ ତ ? ଏହିପରି ଭାଷାର ପ୍ରାଦେଶିକ ବିକୃତ ଆକାରକୁ ଆମ୍ଭେମାନେ ସର୍ବତ୍ର ଦୂଷଣୀୟ ବୋଲି ମନେ କରୁଁ ଏବଂ ସମାଲୋଚିତ ପୁସ୍ତକରେ ଏହିପରି ଅଂଶଗୁଡ଼ିକୁ ଦୋଷ ଦେଇଥିଲୁ । ପାଠକମାନଙ୍କର ବିଚାରର ସୁବିଧା ନିମିତ୍ତ ପୁଣି ଉକ୍ତ ପୁସ୍ତକରୁ କେତେଗୋଟି ଦୃଷ୍ଟାନ୍ତ ଦେଉଅଛୁ । - 'ନ

ଜାଣି ଯାହା ପାରୁ ତାହା ବୋଲି ଦେନ୍ତି ।' 'ଆସେ (ଆସ ବା ଆ) ଉଚ୍ଛୁର ହେଲାନି ଭୋଜନ କରିବୁ ।' 'କୋଠାରେ', 'କୋଠାରେ ଅଛନ୍ତି', 'କୋଆଡ଼େ', 'ହେଟି', 'ତୁ ଦେଖିଲେ ବାଲୁତ', 'ତୁ ଗଲେ ସେମାନେ ପଚାରିବେ ନାହିଁ ଯେ ତୋ ଆଡ଼େ ଦେଖିବେ ନାହିଁ', 'ବିଜେ ହେନ୍ତୁ', 'କେ ଜାଣି ପାରିବ', 'କେ କହିଲା', 'ଜାଣି ଦେଇଅଛନ୍ତି', 'କେ ନ ଦେଖୁଣୁ', 'କଣ ହେଲା ! ଆହୁରି ଆସିଲେ ନାହିଁ ।' (ଏଠାରେ ଆହୁରି କଥାର ଅର୍ଥ କଣ ?) 'କି ଗୋଳମାଳ ଚଳିଲା ନା ?' 'ସୁରୁଚି କହିଲାପରି ତୁ ବା ମୁଁ ପୂର୍ବଜନ୍ମରେ ତପସ୍ୟା କରି ନାହିଁ', 'ଧ୍ରୁବର ମନ ଭୁଲାଇ ଫେରି ମୋଠାକୁ ଆସିଲା ପରି କର', 'ବର୍ତ୍ତମାନ ଆମ୍ଭେ ମନେ କରିବା ଉପାୟ କଣ ?' ଅଧିକ ଦୃଷ୍ଟାନ୍ତ ଦେବାର ପ୍ରୟୋଜନ ନାହିଁ । ଆମ୍ଭେମାନେ ଜାଣୁ ଗଞ୍ଜାମ ଜିଲ୍ଲାର ଅଧିକାଂଶ ସ୍ଥଳର ଭାଷା ଏହାଠାରୁ ବହୁଗୁଣରେ ବିକୃତ । ଗ୍ରନ୍ଥାକର ବିଶେଷ ସତର୍କତା ଅବଲମ୍ବନ କରି ଅନେକ ପରିମାଣରେ ଭାଷାର ବିଶୁଦ୍ଧତା ରକ୍ଷା କରିଅଛନ୍ତି । ତଥାପି ସେ ସମ୍ପୂର୍ଣ୍ଣରୂପେ ପ୍ରାଦେଶିକତାର ହସ୍ତରୁ ରକ୍ଷା ପାଇପାରି ନାହାନ୍ତି । ଏହାହିଁ ଆମ୍ଭେମାନେ କହିଥିଲୁଁ ଏବଂ କହୁଅଛୁ । 'ଗଞ୍ଜାମ ଓଡ଼ିଆ ହିତବାଦିନୀ' ଥରେ ଯାହାଙ୍କ ଦୃଷ୍ଟିପଥରେ ପଡ଼ିଥିବ, ସେ ଗଞ୍ଜାମୀ ଓଡ଼ିଆର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାଇଥିବେ । ଖଣ୍ଡିଏ ସାମାନ୍ୟ ପତ୍ରରୁ କିଞ୍ଚିତ୍ ନମୁନା ଦେଉଅଛୁ – 'ଗତ ପତ୍ରିକାମାନଙ୍କ ତାହାଙ୍କଦ୍ୱାରା ଏହି ସ୍କୁଲକୁ ସପ୍ଲାଇ ହେଉଥିଲା । ତେଣୁକରି ମହାଶୟ ତାହାଙ୍କଠାକୁ ଲେଖିବାକୁ ଲୋଡ଼ା କରୁଅଛି ।' ଏହିପରି ଭାଷାର ବ୍ୟବହାରକୁ ଗୁଣ ବୋଲାଯିବ କି ?

ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁଁ । ବରଂ ନାଟକ ଉପନ୍ୟାସାଦିରେ ବ୍ୟକ୍ତିବିଶେଷଙ୍କ ମୁଖରେ ସେପରି ଭାଷାର ବ୍ୟବହାର ଏକାନ୍ତ ବାଞ୍ଛନୀୟ ବୋଲି ମନେକରୁଁ । ତଦଭାବରେ ଲିଖିତ ଭାଷା ଅପୂର୍ଣ୍ଣ ରହିବ ଏବଂ ଅନେକ ସ୍ଥଳରେ ବିଷୟ ସହିତ ଭାଷାର ସଙ୍ଗତି ରକ୍ଷା ହେବନାହିଁ । ପୁଣି ଭାଷାର idiom ରକ୍ଷା ନ କଲେ ବିଶେଷତ୍ୱ ରହିଲା ନାହିଁ – *idiom ଭାଷାର ବଳ ବୃଦ୍ଧି କରେ । ମାତ୍ର ପ୍ରାଦେଶିକତା ସର୍ବଥା* ପରିହାର୍ଯ୍ୟ । ଭିନ୍ନ ଭିନ୍ନ ପ୍ରଦେଶର ଓଡ଼ିଆ କାଳକ୍ରମେ ଏପରି ଭିନ୍ନଭାବାପନ୍ନ ହୋଇପଡ଼ିଅଛି ଯେ, ଅନେକ ସମୟରେ ଗୋଟିଏ ପ୍ରଦେଶର ଭାଷା ଅନ୍ୟ ପ୍ରଦେଶବାସୀଙ୍କ ପକ୍ଷରେ ବୁଝିବା ସୁକଠିନ ହୋଇପଡ଼େ । ଏପରି ସ୍ଥଳରେ କର୍ତ୍ତବ୍ୟ କ'ଣ ? ଲିଖିତ ଭାଷାର ଗୋଟିଏ ଆଦର୍ଶ (standard) ହେବା ଉଚିତ୍ ନୁହେଁ କି ? ତେବେ କାହାକୁ ଆଦର୍ଶ କରିବା ? ଆମ୍ଭମାନଙ୍କ ମତରେ ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idiom ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ କାହାରି କୌଣସି ଆପତ୍ତି ରହିବ ନାହିଁ । କେବଳ ଗ୍ରାମ୍ୟ ଭାଷାଦ୍ୱାରା ଯେ ବର୍ତ୍ତମାନ ସମୟୋପଯୋଗୀ ସକଳ ପ୍ରକାର ଲେଖା ଚଳିପାରିବ, ଏପରି ଆଶା କରାଯାଇ ନ ପାରେ । ବିଷୟ ଭେଦରେ ଭାଷାର ମଧ୍ୟ ପ୍ରଭେଦ ଘଟିବା ଅନିବାର୍ଯ୍ୟ । କେବଳ ଘରୁଆ ବା ଗ୍ରାମ୍ୟ ଭାଷା ବ୍ୟବହାର କଲାବେଳେ

କଥାଗୁଡ଼ିକର ଚଳାଚଳ ଓ ପ୍ରସାର ପ୍ରତି ଦୃଷ୍ଟି ରଖିବାକୁ ହେବ । ଯାହା ସମ୍ପୂର୍ଣ୍ଣରୂପେ ସ୍ଥାନୀୟ ଏବଂ ବିକାରପ୍ରାପ୍ତ, ତାହା ସର୍ବଥା ବର୍ଜନୀୟ । ସୁଖର ବିଷୟ, ପ୍ରାୟ ସର୍ବାଞ୍ଚଳର ଶିକ୍ଷିତ ଓଡ଼ିଆପୁଏ ଅଜ୍ଞାଧିକ ପରିମାଣରେ ଏହି ପନ୍ଥା ଅନୁସରଣ କରୁଅଛନ୍ତି । ଶ୍ୟାମସୁନ୍ଦରବାବୁ ମୁହଁରେ ଯାହା କହନ୍ତୁ, କାର୍ଯ୍ୟରେ ଏହି ପନ୍ଥାବଲମ୍ବୀ । ତାହାର ପ୍ରମାଣ, ତାଙ୍କର ଭାଷା ପ୍ରାୟ ପ୍ରାଦେଶିକତାବର୍ଜିତ । ଏହି ସମ୍ମିଳନ ଓ ସମ୍ପ୍ରସାରଣର ଯୁଗରେ କି ଭାଷା, କି ଭାବ, କି ଆଚାର ବ୍ୟବହାର, ଯେ କୌଣସି ବିଷୟରେ କ୍ଷୁଦ୍ର ପ୍ରାଦେଶିକତାକୁ ସର୍ବସ୍ୱ ମନେକରି ତାହାରି ସୀମା ମଧ୍ୟରେ ଆବଦ୍ଧ ରହିବାକୁ ଚେଷ୍ଟା କରିବା ନିତାନ୍ତ ବିଡ଼ମ୍ବନା ।

ପ୍ରସଙ୍ଗକ୍ରମେ ଅନେକ କଥା କହି ପକାଇଲୁଁ । ଆଉ ଅଧିକ କିଛି କହିବାର ନାହିଁ । ରାଜଗୁରୁ ମହାଶୟ ଜଣେ ସୁଶିକ୍ଷିତ, ବୁଦ୍ଧିମାନ୍ ଓ ବିଚକ୍ଷଣ ବ୍ୟକ୍ତି । ପୁସ୍ତକରୁ ଦୃଷ୍ଟାନ୍ତ ଦେଖାଇ ଆମ୍ଭମାନଙ୍କ ଉକ୍ତି ସମର୍ଥନ କରିଥିବା ସତ୍ତ୍ୱେ ସେ ଯେ ଭ୍ରମରେ ପତିତ ହେଲେ ଏବଂ ପ୍ରମାଣ ପ୍ରୟୋଗ କରିବାକୁ ବୃଥା ଲଣ୍ଡଭଣ୍ଡ ହେଲେ, ଏହାହିଁ ବିଚିତ୍ର । ଗଞ୍ଜାମ ଅଞ୍ଚଳର ଓଡ଼ିଆ ଭାଷା ବିକୃତ ଅବସ୍ଥା ପ୍ରାପ୍ତ ହୋଇଅଛି, ଏକଥା କ'ଣ ସେ ଅସ୍ୱୀକାର କରନ୍ତି ? ଭାଷା କାହିଁକି, ଓଡ଼ିଆ ଅକ୍ଷରର ମଧ୍ୟ କିଞ୍ଚିତ୍ ଅପବ୍ୟବହାର ଘଟିଅଛି । ସେ ଯାହାହେଉ, ଗଞ୍ଜାମ ଅଞ୍ଚଳର ଓଡ଼ିଆରେ ଯେ ଅନେକ ବିଶୁଦ୍ଧ ଓଡ଼ିଆ ଶବ୍ଦ ଓ idiom ଅବିକୃତଭାବରେ ରକ୍ଷିତ ହୋଇ ଚଳି ଆସୁଅଛି, ଏକଥା ଆମ୍ଭେମାନେ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛୁଁ । ସେଗୁଡ଼ିକର ସର୍ବତ୍ର ପ୍ରଚଳନ ଏକାନ୍ତ ବାଞ୍ଛନୀୟ । ଅନ୍ତତଃ ଭାଷା ସୂତ୍ରରେ ଯେପରି ବିଚ୍ଛିନ୍ନ ଉତ୍କଳଭାଷୀ ପ୍ରଦେଶମାନଙ୍କର ସମ୍ମିଳନର ସୂତ୍ରପାତ ହୋଇଅଛି ଏବଂ ପରସ୍ପରଙ୍କ ମଧ୍ୟରେ ଯେପରି ଆକର୍ଷଣର ଲକ୍ଷଣ ପ୍ରକାଶ ପାଉଅଛି, ସମସ୍ତ ଅଞ୍ଚଳର ଭାଷା ପରିଶୁଦ୍ଧ ହୋଇ ଏକଭାବାପନ୍ନ ହେବାର ସମୟ ଅଧିକ ଦୂରବର୍ତ୍ତୀ ନୁହେଁ । ସେହି ସୁଦିନ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରିବା ପ୍ରତ୍ୟେକ ସ୍ୱଦେଶବତ୍ସଳ ଉତ୍କଳସନ୍ତାନଙ୍କର ପବିତ୍ର କର୍ତ୍ତବ୍ୟ ।

ବିଶ୍ୱନାଥ କର

୪

ଶ୍ରୀଯୁକ୍ତ ଉତ୍କଳ-ସାହିତ୍ୟ-ସମ୍ପାଦକ ମହୋଦୟ ସମିପେଷୁ ।

ମହାଶୟ !

ଆପଣ ଜଣେ ସମ୍ପାଦକ । ସମ୍ପାଦକଙ୍କ ସହିତ ପ୍ରତିବାଦ କରିବା ବାଞ୍ଛନୀୟ ନୁହେଁ । ନ ହେଲେ ମଧ୍ୟ ଆପଣଙ୍କର ବିଚିତ୍ର ଯୁକ୍ତି ଓ ଏକପକ୍ଷୀୟ ଭାଷା ବିଚାରଟା ସାହିତ୍ୟ ପାଠକମାନଙ୍କୁ ଜଣାଇଦେବା ଆବଶ୍ୟକ ବୋଧ କରି ଏହି ପ୍ରତ୍ୟୁତ୍ତର ଖଣ୍ଡିକ ଆପଣଙ୍କଠାକୁ ପଠାଇଅଛୁ । ପ୍ରାର୍ଥନା ଏହି ଯେ, ଆପଣ ବିରକ୍ତ ନ ହୋଇ ଦୟାପୂର୍ବକ ଏହା ଆପଣଙ୍କ ପତ୍ରିକାରେ ପ୍ରକାଶକରି ଚିରବାଧିତ କରିବେ ।

ଆପଣ କହିଅଛନ୍ତି- "ଏକ ଭାଷା ବିଭିନ୍ନ ପ୍ରଦେଶରେ ଅବସ୍ଥାଭେଦରେ ଲୋକମୁଖରେ ଏବଂ ବହିଃପ୍ରଭାବର ସଂସ୍ପର୍ଶରେ ପରିବର୍ତ୍ତିତ ହୋଇ ଯେଉଁ ଆକାର ଧାରଣ କରିଥାଏ, ତାହା ଆମ୍ଭମାନଙ୍କ ମତରେ ଭାଷାର ପ୍ରାଦେଶିକତା ।" ଏଥିର ମର୍ମ ଆମ୍ଭେ କିଛି ବୁଝିପାରିଲୁ ନାହିଁ । ମନେ କରନ୍ତୁ, (କ) ବୋଲିବା ଭାଷା ଅବସ୍ଥାଭେଦରେ ପରିବର୍ତ୍ତିତ ହୋଇ (ଖ) ର ଆକାର ଧାରଣ କରିଅଛି । ତେବେ (ଖ) କେଉଁ ଭାଷାର ପ୍ରାଦେଶିକତା ବୋଲାଯିବ ? 'ଧ୍ରୁବ ନାଟକ'ରୁ ଯେଉଁ ପ୍ରାଦେଶିକତାଗୁଡ଼ିକ ଆପଣ ବାଛିଅଛନ୍ତି, ତାହା ଆପଣଙ୍କ ଏହି ସିଦ୍ଧାନ୍ତ ସହିତ ମିଳାଇ ପାରିବେ ? ଆପଣ ମନେ ରଖିବା ଉଚିତ ଯେ, ଅବସ୍ଥା ଭେଦରେ ବା ଲୋକ ମୁଖରେ ପରିବର୍ତ୍ତିତ ହୋଇ ଯେ କୌଣସି ଆକାର ଧାରଣ କରୁ, ସମୁଦାୟ ଭାଷାଟାକୁ କିଏ ପ୍ରାଦେଶିକତା କହନ୍ତି ନାହିଁ । "Provincialism is a peculiar word in a province." । ଯେଉଁ କଥା (a word, not a language) କୌଣସି ଏକ ପ୍ରଦେଶରେ ମାତ୍ର ପ୍ରାୟ ସକଳ ଶ୍ରେଣୀ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥାଏ ଏବଂ ଅନ୍ୟାନ୍ୟ ପ୍ରଦେଶରେ ବ୍ୟବହୃତ ହେଲେ ସହଜେ ବୁଝାଯାଏ ନାହିଁ, ତାହା ପ୍ରାଦେଶିକତା । ଉଦାହରଣ- ଆପଣଙ୍କ ପ୍ରଦେଶର 'ଗହଣା', 'ଭାଉ', 'ଭଣ୍ଡୁର', 'ଖଞ୍ଜ', 'କାଇ'; ଏ ଅଞ୍ଚଳର 'ଅଡ଼ଙ୍ଗା', 'ଲହି', 'ଭଣ୍ଡ', 'ଯାଡ଼ା' (ଯୋତା) 'ସାରିବା' (ଖାଇବା), 'ତଲାରି' (ଛତ୍ରବିଶେଷ) ଇତ୍ୟାଦି । ଏ ସବୁ ପୁସ୍ତକରେ ବ୍ୟବହୃତ ହେଲେ କି ଦୋଷ ? ବାଲେଶ୍ୱରର 'ଯାଇଥିନି', 'ଯିମି', 'ଗୁଡ଼' (ଗୋଡ଼); କଟକର 'ଲଇ', 'ଲଡ଼ିଆ', 'ମି'; ସମ୍ବଲପୁରର 'ମୁଁ କେନ୍‌ତା କରିବି', 'ମୋର କେ ନାହିଁନ'; କାନ୍ଥି ଅଞ୍ଚଳର 'ବାଟ ନଇତ କି', 'ବଗାନ ଛାଡ଼ିଦିଇଛି' ଏସବୁ କେବଳ ନିମ୍ନଶ୍ରେଣୀ ଲୋକମାନଙ୍କ କଥା (vulgarisms) ବା ଅପଭ୍ରଂଶ (corruptions), ପ୍ରାଦେଶିକତା (provincialism) ନୁହେଁ । ଏପରି କଥା ପୁସ୍ତକରେ ବ୍ୟବହାର କରିବା ଅବଶ୍ୟ ଦୂଷଣୀୟ' ଏହା ଆମ୍ଭେ ସ୍ୱୀକାର କରୁ । ମାତ୍ର 'ଧ୍ରୁବ ନାଟକ'ରୁ ଆପଣ ଯେଉଁ ଅଂଶଗୁଡ଼ିକ ଉଦ୍ଧାର କରିଅଛନ୍ତି, ସେ ସବୁ vulgarisms ବା provincialisms ବୋଲାଯାଇ ନ ପାରେ । ଥରେ ପରୀକ୍ଷା କରି ଦେଖନ୍ତୁ । 'କେ ଜାଣି ପାରିବ', 'କେ କହିଲା', 'କେ ନ ଦେଖୁଣ୍ଡୁ' - ଆପଣଙ୍କ ଅଞ୍ଚଳରେ ମଧ ଏପରି କହନ୍ତି । 'ବନବାଳା' ୨୦ ଓ ୩୧ ପୃଷ୍ଠାରେ ଲେଖାଅଛି- 'କେ ଜାଣେ କାହୁଁ ଏ ଆବିର୍ଭୂତ ହେଲା', 'କେ ଜାଣି କିଏ ମୁଁ କେମତେ କହିବି ।' 'ସର୍ବସାର ବ୍ୟାକରଣ'ରେ 'କେ' ଶବ୍ଦ ସର୍ବନାମ ତଳେ ଦିଆ ହୋଇଅଛି । 'ଉତ୍କଳ ଅଭିଧାନ' ମଧ ଦେଖନ୍ତୁ । 'ଯେ ଆଜ୍ଞା'-'ବନବାଳା' ୨୩ ଓ ୨୮ ପୃଷ୍ଠାରେ ଦେଖିଲେ, 'ଯେ ଆଜ୍ଞା' ଆପଣଙ୍କ ଅଞ୍ଚଳରେ ମଧ ବ୍ୟବହୃତ ହେବାର ଜଣାଯିବ । ତେବେ ଆପଣଙ୍କ ସିଦ୍ଧାନ୍ତାନୁସାରେ ଏସବୁ କିପରି ପ୍ରାଦେଶିକ ? 'ଆହୁରି' କଥାର ଅର୍ଥ 'ଏତେବେଳଯାଏ' । କବି ଗୋପାଳକୃଷ୍ଣ କହିଅଛନ୍ତି- "ତେତିକିବେଳୁ ମୋ ତନୁ ଅରିଲାଣି ଦେଖିନାହିଁ ଆହୁରି ଆଖିରେ ।" ଯେକୌଣସି ଅର୍ଥରେ

ବ୍ୟବହୃତ ହେଉ, କଥାଟା ଅନ୍ୟ ଆକାର ଧାରଣ କରି ନାହିଁ ତ ? ତେବେ କିପରି ପ୍ରାଦେଶିକତା ହେଲା ? 'କୋଆଡ଼େ'-ବାଲେଶ୍ୱରରେ 'ଗୋଡ଼'କୁ 'ଗୁଡ଼' ଯେପରି କହନ୍ତି, ଆପଣଙ୍କ ଅଞ୍ଚଳର 'କୁଆଡ଼େ' ବଦଳରେ ଏ ପ୍ରଦେଶ ଲୋକେ 'କୋଆଡ଼େ' କହନ୍ତି । 'ବନବାଳା' ୨୧ ଓ ୨୨ ପୃଷ୍ଠା ଦେଖନ୍ତୁ; "ଏଇଠି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା", "କୁଆଡ଼େ ଖୋଜିବାକୁ ଯିବି" । ଗଞ୍ଜାମର 'କୋ', ବଙ୍ଗାଳି 'କୋନ୍', ହିନ୍ଦୀ 'କୋ', ସଂସ୍କୃତ 'କଃ' (କେ) ଏସବୁ ସମାନ । ଏପରି ସ୍ଥଳେ 'କୋଆଡ଼େ' କାହିଁକି ପ୍ରାଦେଶିକତା ବୋଲାଯିବ ? ଅଗ୍ରସ୍ଥିତ ଲୋକ ବା ପଦାର୍ଥକୁ ଦେଖାଇ କହିବାକୁ ହେଲେ ଆପଣମାନେ 'ହେଇଟି' କହନ୍ତି; ଆମ୍ଭେମାନେ 'ହେଟି' କହୁଁ । ଉଚ୍ଚାରଣରେ ମଧ୍ୟବର୍ତ୍ତୀ ସ୍ୱରର ମାତ୍ର ଲୋପ ହୋଇଅଛି । ଏପରି ଅନେକଠାରେ ହେବାର ଦେଖାଯାଏ । ଉଦାହରଣ- 'କଅଣ-କଣ'; 'ପାଆନ୍ତା-ପାନ୍ତା'; 'ହେଉନ୍ତୁ ('ରାମବିଳାସ' ୨୫ପୃଷ୍ଠା ଦେଖନ୍ତୁ)-ହେନ୍ତୁ' । ସ୍ୱରବର୍ଣ୍ଣମାନେ ଲୁପ୍ତ ହେବା କିମ୍ବା ଅନ୍ୟ ଆକାର ଧାରଣ କରିବା କଥିତ ଭାଷାର ଗୋଟିଏ ସ୍ୱାଭାବିକ ଲକ୍ଷଣ । ଏଥିରେ ପ୍ରାଦେଶିକ ବିଭିନ୍ନତା କ'ଣ ? 'କୋଠାରେ'-ଆପଣମାନେ 'କଉଁଠି', 'କଉଁଠୁ', 'କୌଠୁଁ', ବ୍ୟବହାର କରନ୍ତି; ଆମ୍ଭେମାନେ 'କୋଠି' 'କୋଠାରେ', 'କୋଠୁ' କହୁଁ; ବଙ୍ଗାଳିମାନେ 'କୋଥା', 'କୋଥାୟ'; ମରହଟ୍ଟାମାନେ 'କୋଠେ' କହନ୍ତି । ଓଡ଼ିଶାରେ ମଧ୍ୟ 'କୋଠା', 'କୋଠାକୁ' ଏପରି ବ୍ୟବହାର ହୁଏ । (Vide Beams' 'Comparative Grammar' Vol. II, page-338.) । ତେବେ 'କୋଠାରେ' କିପରି ପ୍ରାଦେଶିକତା ହେଲା ? 'ଆସେ'-ଦ୍ୱିତୀୟ ପୁରୁଷ ଏକବଚନରେ ଆଦେଶାର୍ଥରେ କେତେକ କ୍ରିୟା ଏକାରାନ୍ତ ହେବାର ଦେଖାଯାଏ । ଯଥା- 'ତୁ ଦେ', 'ତୁ ନେ', 'ତୁ କରେ' । ଆପଣଙ୍କ ଅଞ୍ଚଳରେ ମଧ୍ୟ ଏପରି କହନ୍ତି । 'ଯୁଗଧର୍ମ' ନାଟକ ୪ ଓ ୧୧ ପୃଷ୍ଠାରେ ଲେଖାଅଛି- "ଏଇଥିରେ ଦେ"; "ନେ କିଛି ଅଣ୍ଟାଖୋସା ନେ"; 'ସତୀ' ନାଟକ ୧୮ପୃଷ୍ଠାରେ ଲେଖାଅଛି- "ଉଠାଇ ଆଣେ"; ଜଗନ୍ନାଥର ବ୍ରାହ୍ମଣମାନେ ମଧ୍ୟ ଏପରି ପ୍ରୟୋଗ କରିବାର ଆମ୍ଭେ ଶୁଣିଅଛୁ । ତେବେ 'ଆସେ' କାହିଁକି ପ୍ରାଦେଶିକ ହେବ ? 'ଯାହା ପାରୁ ତା' - ଏହା ଏ ପ୍ରଦେଶର ଘରୋଇ ଭାଷା । ଆପଣଙ୍କ ପ୍ରଦେଶରେ ମଧ୍ୟ ସ୍ତ୍ରୀମାନେ ଏପରି କହନ୍ତି । 'ସତୀ' ନାଟକ ୭୫ପୃଷ୍ଠା ଦେଖନ୍ତୁ; ଲାବଣ୍ୟ କହୁଅଛି- "ମୋର ଯାପାରି ତା ହେଲା, ତାଙ୍କୁ ଏ ଦଶା ଘଟି ନଥାନ୍ତା ।" ଆପଣ ଘରୁଆ ଭାଷାର ବିରୋଧୀ ନୁହନ୍ତି ପରା ? 'ଦେନ୍ତି', 'ହେନ୍ତୁ'-'ସେ ବଡ଼ ଚିନ୍ତାରେ ଥିଲେ ଏବେ ନିଶ୍ଚିନ୍ତ ହେନ୍ତୁ'; 'ହୋନ୍ତି କେଡ଼େ ଭୋଳ' ('ସତୀ' ନାଟକ ୧୫ ଓ ୧୬ ପୃଷ୍ଠା ଦେଖନ୍ତୁ) । "ଯେପରି କି ସେ ଆଉ ଆମର ଅନ୍ୟ ଆଦେଶ ନ ହେବା ପର୍ଯ୍ୟନ୍ତ ବନବାଳାକୁ ନ ପାନ୍ତି", "ସେ କେତେବେଳେ ଥାନ୍ତି" ('ବନବାଳା' ୧୯ ଓ ୨୬ ପୃଷ୍ଠା ଦେଖନ୍ତୁ) । 'ହେନ୍ତୁ', 'ହୋନ୍ତି', 'ପାନ୍ତି', 'ଥାନ୍ତି' ଏସବୁ କ'ଣ ? ବୋଧ କରୁଁ, ଆପଣଙ୍କ ପ୍ରଦେଶର କଥାସବୁ ଆପଣ ଜାଣି ନାହାନ୍ତି । ଆପଣ

ଯାହା ଜାଣିନାହାନ୍ତି, ସେସବୁ ପ୍ରାଦେଶିକ ପରା ? 'ହେଲାନି' - ଏ ମୁଦ୍ରାଙ୍କନ ଦୋଷ, 'ହେଲାଣି' ବଦଳରେ ପଡ଼ିଯାଇଅଛି । ଯାହାହେଉ କଥାଟା ଆପଣଙ୍କ ମତାନୁସାରେ ବିକାରପ୍ରାପ୍ତ ହୋଇନାହିଁ ତ ? 'ଣି' ସ୍ଥାନେ 'ନି' ପ୍ରୟୋଗ ହେବାର ଆପଣଙ୍କ ଅଞ୍ଚଳରେ ମଧ୍ୟ ଦେଖାଯାଏ । 'ସତୀ' ନାଟକ ୧୩ ପୃଷ୍ଠା ଦେଖନ୍ତୁ । ପଦୀ କହୁଅଛି – 'ସେ ଗୁଡ଼ିଆଣୀ ପରି ପଳାନ୍ତାନି' । 'ତୁ ଦେଖିଲେ ବାଲୁତ' ଅର୍ଥାତ୍ ଦେଖିଲେ ତୁ ବାଲୁତ ଅଟୁ; 'କି (କୌଣସି) ଗୋଳମାଳ ଚଳିଲା ନା ?' 'ବର୍ତ୍ତମାନ ଆମ୍ଭେମାନେ କରିବା ଉପାୟ କଣ ?' 'ତୁ ଗଲେ ସେମାନେ ପଚାରିବେ ନାହିଁ ଯେ ତୋଆଡ଼େ ଦେଖିବେ ନାହିଁ',- ଏ ବାକ୍ୟଗୁଡ଼ାକରେ ପ୍ରାଦେଶିକତା କ'ଣ ? କେଉଁ କଥାଟା ପରିବର୍ତ୍ତିତ ହୋଇ ଅନ୍ୟ ଆକାର ଧାରଣ କରିଅଛି ? ଆପଣ କହିଅଛନ୍ତି- "ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁଁ ।" ଘରୁଆ ଭାଷା ସମସ୍ତ ପ୍ରଦେଶରେ ସମାନ ନୁହେଁ । ଅତଏବ ଘରୁଆ ଭାଷା ବ୍ୟବହାର କରିବାକୁ ଗଲେ, ଅବଶ୍ୟ ପ୍ରାଦେଶିକତା ବ୍ୟବହାର କରିବାକୁ ହେବ । ତେବେ ଆପଣଙ୍କ ମତରେ ପ୍ରାଦେଶିକତା କିପରି ବର୍ଜ୍ଜନୀୟ ? ଆମ୍ଭେ ଆଉ କ'ଣ କହିଥିଲୁ ? "ଆମ୍ଭେମାନେ ଘରୁଆ ଭାଷା ବ୍ୟବହାରର ବିରୋଧୀ ନୋହୁ" ବୋଲି କହି, କିଛିଦୂର ଯାଇ ଆପଣ ଲେଖିଅଛନ୍ତି- "ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idiom ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତମୂଳକ ସହଜ (କାହା ପକ୍ଷରେ ?) ଶବ୍ଦମାନ ବ୍ୟବହାର କଲେ କାହାରି କୌଣସି ଆପତ୍ତି ରହିବ ନାହିଁ ।" ଆପଣଙ୍କ ଏ ଦୁଇ କଥାରୁ କେଉଁ କଥାଟା ଠିକ୍ ? ଯେଉଁ ଭାଷାର ଅଭିଧାନ ଆଜି ପର୍ଯ୍ୟନ୍ତ ସଙ୍କଳିତ ହୋଇନାହିଁ, ଯେଉଁ ଭାଷାର ଆଦର୍ଶ ଗଠିତ ହୋଇନାହିଁ, ସେହି ଭାଷାରେ ସର୍ବାଞ୍ଚଳପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ କଥା ବା idiom କିପରି ଜଣାଯିବ ? ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ ସାଧାରଣ ଲୋକେ ବୁଝିପାରିବେ କି ?

ଆପଣ ଟାହୁଲି କରି ଲେଖିଅଛନ୍ତି- "ଗଞ୍ଜାମ 'ଓଡ଼ିଆ ହିତବାଦିନୀ' ଥରେ ଯାହାଙ୍କ ଦୃଷ୍ଟିପଥରେ ପଡ଼ିଥିବ ସେ ଗଞ୍ଜାମୀ ଓଡ଼ିଆର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାଇଥିବେ ।" ଆପଣ ଜାଣନ୍ତି, 'ହିତବାଦିନୀ' ଜଣେ ତେଲେଙ୍ଗା ବ୍ୟକ୍ତିଙ୍କଦ୍ୱାରା ସମ୍ପାଦିତ । ତେଲଙ୍ଗା ଲୋକେ ବିଶୁଦ୍ଧ ଓଡ଼ିଆ ଲେଖିବେ, ଏପରି ଆଶା କରାଯାଇ ନ ପାରେ । ଯାହାହେଉ ସଟନ ସାହେବଙ୍କ 'ଓଡ଼ିଶା ଇତିହାସ'ର ଓଡ଼ିଆଠାରୁ 'ହିତବାଦିନୀ'ର ଓଡ଼ିଆ ତ କିଛି ଊଣା ନୁହେଁ । ସଟନ ସାହେବ କାହିଁକି ? ଆପଣଙ୍କ ଦେଶର ଜଣେ ଓଡ଼ିଆ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ 'ରାମବିଳାସ'ରେ କିପରି ଓଡ଼ିଆ ଲେଖିଅଛନ୍ତି, ଥରେ ଦେଖନ୍ତୁ- "ତିନି ଜଣେ ସେହି ସରୁଅନ୍ନ ଗ୍ରାସ କଲେ"; "ଏହି ବର୍ତ୍ତମାନରେ ତୋହ ବାକ୍ୟର ପ୍ରତିଫଳ ପାନ୍ତୁ"; "ଦୁହେଁ ମୃଗୟାକୁ ଯାଇ ବନ ମଧ୍ୟରେ ପଥଭ୍ରମ ହୁଅନ୍ତେ ଗୃହଶବରର ସାକ୍ଷାତ୍ ହେଉ ରାମଚନ୍ଦ୍ର ତାହା ସଙ୍ଗରେ ମିତ୍ରତା ସମ୍ପାଦନ କଲେ"; "ମନୋମଧରୁ ଦୁଃଖମାନଙ୍କୁ ବିସ୍ମରଣ କରି ସ୍ୱପ୍ନରେ

ହେଲେ ଦର୍ଶନ ନ କଲେ"; "ମୋତେ ଶୁଣାଯିବାରୁ"; "ଆମ୍ଭଙ୍କୁ ସେଠାକୁ ଘେନ"; ଏସବୁ କ'ଣ ? କଟକର ଆଦର୍ଶ ଓଡ଼ିଆ ?

ପରିଶେଷରେ ବକ୍ତବ୍ୟ ଏହି ଯେ, ଆପଣ ଗୋଟିଏ ସାହିତ୍ୟ ପତ୍ରିକାର ପରିଚାଳକ; ଭାଷା ବିଷୟରେ ଆପଣ ଯାହା ଲେଖନ୍ତି, ତାହା ଯୁକ୍ତିସଙ୍ଗତ, ପ୍ରାସଙ୍ଗିକ ଓ ଉପାଦେୟ ହେବା ନିତାନ୍ତ ଆବଶ୍ୟକ । ସ୍ୱମତ ବ୍ୟବସ୍ଥାପନ କରିବା ଲାଗି ମନରେ ଦୁରଭିମାନ ରଖି ଲେଖିଲେ ଆପଣଙ୍କ କଥାରେ କେହି ଗୁରୁତ୍ୱ ରଖିବେ ନାହିଁ ।

ଶ୍ୟାମ ସୁନ୍ଦର ରାଜଗୁରୁ



୭

# ଓଡ଼ିଆ ଶବ୍ଦସନ୍ଦର୍ଭ

## ଗୋପୀନାଥ ନନ୍ଦଶର୍ମା

ପ୍ରବନ୍ଧାନ୍ତରରେ ଏହି ଓଡ଼ିଆ ଭାଷାତତ୍ତ୍ୱ ବିଚାରର ଏକ ଦେଶରେ ସିଦ୍ଧାନ୍ତ କରାଯାଇଅଛି ଯେ ଓଡ଼ିଆଭାଷା ଦ୍ୱୈମାତୁର ଅର୍ଥାତ୍ ସଂସ୍କୃତ ଓ ପ୍ରାକୃତ-ଏହି ଦୁଇଭାଷା ଏହାର ମାତା ବା ପ୍ରକୃତି । ସମସ୍ତ ପ୍ରାଦେଶିକ ଭାଷା ପ୍ରାକୃତ । କାରଣ ସେ ସମସ୍ତଙ୍କର ପ୍ରକୃତି ବା ମୂଳ ନ୍ୟୂନାଧିକ ପରିମାଣରେ ସଂସ୍କୃତ ଭାଷାରେ ନିହିତ ଏବଂ ସେମାନେ ସଂସ୍କୃତରୁ ବିକୃତିପ୍ରାପ୍ତ । ପ୍ରାକୃତମଞ୍ଜରୀକାର କହିଅଛନ୍ତି – "ପ୍ରକୃତେଃ ସଂସ୍କୃତାୟାସ୍ତୁ ବିକୃତିଃ ପ୍ରାକୃତୀ ମତା ।" କିନ୍ତୁ ଏ ସ୍ଥଳରେ ପ୍ରାଚୀନ ଭାଷାତତ୍ତ୍ୱ ଗ୍ରନ୍ଥମାନଙ୍କରେ ପ୍ରାକୃତ ଯେଉଁ ଅର୍ଥରେ ବ୍ୟବହୃତ ତାହାହିଁ ବୁଝିବାକୁ ହେବ । ଏହା ସମସ୍ତ ଦେଶୀୟ ଭାଷାମାନଙ୍କର ସାରସମଷ୍ଟୀଭୂତ, ବରରୁଚି ଭମହ ବସନ୍ତରାଜାଦିକୃତ ଲକ୍ଷଣାବବୋଧ ନାଟକୀୟ ଭାଷା । ଏହା କାହାରି କାହାରି ମତରେ ଛଅ ଭାଗ, କାହାରି କାହାରି ମତରେ ଅଠର ଭାଗରେ ବିଭକ୍ତ । ଏହା ପ୍ରାକୃତକଳ୍ପଲତିକା, ପ୍ରାକୃତପ୍ରକାଶ, ହେମଚନ୍ଦ୍ର ଷଟ୍‌ଭାଷାଚନ୍ଦ୍ରିକା, ପ୍ରାକୃତମଞ୍ଜରୀ ପ୍ରଭୃତି ବ୍ୟାକୃତିମାନଙ୍କରେ ବ୍ୟାଖ୍ୟାତ ହୋଇଅଛି । ଏହି ଶାସ୍ତ୍ରୀୟ ପ୍ରାକୃତରେ ଯେଉଁ ଯେଉଁ ଦେଶୀୟ ଭାଷା ଅନ୍ତର୍ଗତ, ତାହାର ରୂପ ପୂର୍ବେ ଯେପରି ଥିଲା, ବର୍ତ୍ତମାନ ସେପରି ନାହିଁ । କାଳକ୍ରମେ ସେସବୁ ବିଭିନ୍ନ ଆକାର ଧାରଣ କଲାଣି । ଯେତେବେଳେ ପ୍ରାଚୀନ ପ୍ରାକୃତ ଭାଷାମାନଙ୍କର ସମଧିକ ପ୍ରଚାର ଓ ପ୍ରାବଲ୍ୟ ଥିଲା ସେତେବେଳେ ପୂର୍ବାଚାର୍ଯ୍ୟମାନେ ତତ୍‌ତତ୍‌ଦେଶୀୟ ଭାଷାମାନଙ୍କର ତଦାନୀନ୍ତନ ରୂପ ଓ ରୀତିମାନଙ୍କର ସମଷ୍ଟୀଭୂତ ପ୍ରାକୃତଭାଷାର ନିୟାମକ ବ୍ୟାକରଣଗ୍ରନ୍ଥମାନ ଲେଖିଯାଇଅଛନ୍ତି । ତଦନୁକ୍ରମରେ ସେହି ଭାଷା ସର୍ବତ୍ର ପ୍ରତିପନ୍ନ ହେଉଅଛି । ଅତଏବ ସ୍ଥାନବିଶେଷରେ ପ୍ରାକୃତ ଭାଷାକୁ ସାଧାରଣ ପ୍ରଚଳିତ ଦେଶୀୟ ଭାଷା ରୂପେ ନ ବୁଝି ନାଟକୀୟ ଭାଷା ବୋଲି ବୁଝିବାକୁ ହୁଏ । ଓଡ଼ିଆ ଭାଷା ସଂସ୍କୃତ ଓ ପ୍ରାକୃତ ଭାଷାରୁ ଉତ୍ପନ୍ନ ବୋଲି ଯେପରି ଦ୍ୱୈମାତୁର, ଅନ୍ୟାନ୍ୟ କେତେକ ଦେଶୀୟ ଭାଷା ମଧ୍ୟ ସେପରି ହୋଇପାରନ୍ତି । କିନ୍ତୁ ଓଡ଼ିଆ ଭାଷା ସହିତ ସଂସ୍କୃତ ଆଉ ପ୍ରାକୃତର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ ଏବଂ ଓଡ଼ିଆଭାଷା ସମଧିତଃ ପ୍ରାକୃତ ଲକ୍ଷଣକୁ ଅନୁସରି ଥାଏ । ସଂସ୍କୃତରୁ

ବିକୃତିପ୍ରାପ୍ତ ପ୍ରାକୃତ ଶବ୍ଦାଦି ଓଡ଼ିଆରେ ଯେତେ ବ୍ୟବହୃତ, ଅନ୍ୟ ଅନେକ ଭାଷାରେ ସେତେ ଦେଖିବାକୁ ମିଳେନାହିଁ ଏବଂ ପ୍ରାକୃତ ବ୍ୟାକରଣ ଲକ୍ଷଣମାନ ଓଡ଼ିଆ ଭାଷାରେ ଯେତେ ପରିମାଣରେ ଅନ୍ୱିତ, ଅନ୍ୟ ଭାଷାମାନଙ୍କରେ ସମ୍ଭବତଃ ସେତେ ନୁହେଁ । ଅତଏବ ଓଡ଼ିଆ ଭାଷା ଦ୍ୱୈମାତୁର ହେଲେ ସୁଦ୍ଧା କେତେକ ବିଷୟରେ ସଂସ୍କୃତ ଅପେକ୍ଷା ପ୍ରାକୃତର ଅତି ସନ୍ନିହିତ ।

ନାନା ଦେଶୀୟ ଭାଷାମାନଙ୍କର ସମଷ୍ଟି ପ୍ରାକୃତ ଯେପରି ଗୋଟିଏ ସ୍ୱତନ୍ତ୍ର ଭାଷା, ଓଡ଼ିଆ ମଧ୍ୟ ସେହିପରି ସ୍ୱତନ୍ତ୍ର । ଓଡ଼ିଆ ରାଜ୍ୟରେ ଏହାର ଅକ୍ଷୁଣ୍ଣ ଅଧିକାର । ସେଥିପାଇଁ ତାହାର ସ୍ୱତନ୍ତ୍ରତଃ ଅଶେଷ ଶାବ୍ଦିକ ସାମଗ୍ରୀ ଦରକାର । ତାହାପାଇଁ କାଳକ୍ରମରେ ଦେଶୀୟ ଭାଷାର ସ୍ୱଭାବସିଦ୍ଧ ବୈକୃତିକ କ୍ରମରେ ଯେତେଗୁଡ଼ିଏ ଶବ୍ଦର ସୃଷ୍ଟି ହୋଇଅଛି, ସେଗୁଡ଼ିକ ଏହାର ସ୍ୱକୀୟ ଶକ୍ତି ଓ ସମ୍ପତ୍ତି । ସେଗୁଡ଼ିକୁ ଆଦରର ସହିତ ସଂଗ୍ରହ କରିବାକୁ ହେବ ଏବଂ ତଦନୁକ୍ରମରେ ଆଉଗୁଡ଼ିଏ ଶବ୍ଦରତ୍ନ ସୃଷ୍ଟିକରି ତଦୀୟ ଭଣ୍ଡାରର ସମୃଦ୍ଧି ସାଧନ କରିବାକୁ ହେବ । ତାହାହେଲେ ଭାଷା ସର୍ବାଙ୍ଗଶକ୍ତି ସମ୍ପନ୍ନ ହେବ । ପ୍ରାକୃତ ବା ପ୍ରତ୍ୟେକ ଦେଶୀୟ ଭାଷା ତ୍ରିବିଧାତ୍ମକ ଅର୍ଥାତ୍ ତତ୍ସମ, ତଦ୍ଭବ ଓ ଦେଶ୍ୟ ଶବ୍ଦମାନଙ୍କରେ ସଙ୍କଳିତ । ତତ୍ସମର ଅର୍ଥ ଅନୁସ୍ୱାରବିସର୍ଗବିହୀନ ସଂସ୍କୃତ ଶବ୍ଦ; ତଦ୍ଭବ ଅର୍ଥାତ୍ ସଂସ୍କୃତରୁ ବିକୃତି ବଳରେ ଉତ୍ପନ୍ନ; ଦେଶ୍ୟ ଅର୍ଥାତ୍ ତତ୍ତତ୍ ଦେଶୀୟ ଲୋକମାନଙ୍କର ଭାବ ଓ ଭଙ୍ଗୀରୁ ସାଙ୍କେତିକ ରୂପେ ସଂଜାତ ଶବ୍ଦ ସନ୍ଦୋହ । ଏସବୁ ପ୍ରାୟ ସମସ୍ତ ଭାଷାରାଜ୍ୟରେ ପ୍ରଚଳିତ ଥାଏ । ପୂର୍ବାଚାର୍ଯ୍ୟମାନଙ୍କର ପ୍ରଦର୍ଶିତ ବିଧି ଅନୁସାରେ କେବଳ ଓଡ଼ିଆ ଭାଷାରେ ନୁହେଁ, ଅନ୍ୟାନ୍ୟ ଦେଶୀୟ ଭାଷାମାନଙ୍କରେ ମଧ୍ୟ ତତ୍ସମ ବା ଅନୁସ୍ୱାର-ବିସର୍ଗଶୂନ୍ୟ ସଂସ୍କୃତ ଶବ୍ଦମାନଙ୍କର ଯଥେଷ୍ଟ ପ୍ରଚାର ଅଛି । କିନ୍ତୁ ଓଡ଼ିଆ ପ୍ରଭୃତିରେ ସାଂସ୍କୃତିକ ଶବ୍ଦମାନଙ୍କର ମୌଳିକ ଆକାର ଯେପରି ପ୍ରାୟ ଅକ୍ଷୁଣ୍ଣ ରହେ, ତୈଲଙ୍ଗ ପ୍ରଭୃତିରେ ସେପରିନୁହେଁ । ଏହାର କାରଣ ପ୍ରଥମା ଏକବଚନ ବିଭକ୍ତିପ୍ରତ୍ୟୟର ଅଭାବ ଓ ସଦ୍ଭାବ । ତୈଲଙ୍ଗ ପ୍ରଭୃତିରେ ପ୍ରଥମା ଏକବଚନ ବିଭକ୍ତିର ପ୍ରତ୍ୟୟ ଯୋଗ ହୋଇ ଯାଉଥିବାରୁ ତତ୍ସମ ଶବ୍ଦର କିଞ୍ଚିତ୍ ଭିନ୍ନାକୃତି ଜଣାଯାଏ । ଓଡ଼ିଆ ପ୍ରଭୃତିରେ ତାହା ନ ଥିବାରୁ ତତ୍ସମ ଶବ୍ଦ ଅବିକଳ ସଂସ୍କୃତ ପରି ପ୍ରତିପନ୍ନ ହୋଇଥାଏ ।

ଯେ କୌଣସି ଦେଶୀୟ ଭାଷା ହେଉ, ତାହାର ତଦ୍ଭବ ଶବ୍ଦମାନଙ୍କର ତତ୍ତ୍ୱପରିଜ୍ଞାନ ସୀମାବଦ୍ଧ ନୁହେଁ । ଶବ୍ଦର ସୁସଙ୍ଗତ ମୂଳ ପ୍ରକୃତି ଯେ ପର୍ଯ୍ୟନ୍ତ ଅଜ୍ଞାତ, ସେ ପର୍ଯ୍ୟନ୍ତ ସେହିଟି ଦେଶଜ ରୂପେ ପରିଗଣିତ ହୋଇପାରେ । ବର୍ତ୍ତମାନ ଯାହା ଦେଶଜସ୍ୱରୂପ ଗୃହୀତ, ସମୟେ ସେହିଟି ପ୍ରାକୃତି ଉପଲବ୍ଧିରେ ତଦ୍ଭବ ଶବ୍ଦ ହୋଇପାରେ । ଏହା ଯେ କେବଳ ଆମ୍ଭମାନଙ୍କର ମତ, ତାହା ନୁହେଁ । ପ୍ରାକୃତର ପ୍ରାଚୀନ ଶବ୍ଦଶାସ୍ତ୍ରକାରମାନେ ଏହାହିଁ ସିଦ୍ଧାନ୍ତ କରିଯାଇଅଛନ୍ତି । ଅତଏବ ଭବିଷ୍ୟମାଣ ତଦ୍ଭବ ଶବ୍ଦ ଯଦି ଯଥାର୍ଥ ପ୍ରାକୃତି ଉପଲବ୍ଧିର ଅଭାବସତ୍ତ୍ୱେ କୁତ୍ରଚିତ୍ ଦେଶଜସ୍ୱରୂପ ପରିଗଣିତ ଥାଏ, ତାହା ଦୋଷାବହ ନୁହେଁ । ପ୍ରତ୍ୟୁତ

ତାହାକୁ ଅସଙ୍ଗତ ଅସମୀଚୀନ ବଳାଦାକୃଷ୍ଟ ବିଲକ୍ଷଣ ପ୍ରକୃତିର ସମନ୍ୱୟରେ ତଦ୍‌ଭବ ଶବ୍ଦ ବୋଲିବା ଦୋଷାବହ ।

ପ୍ରତ୍ୟେକ ଭାଷାରେ ତଦ୍‌ଭବ ଶବ୍ଦସନ୍ଦୋହ ସିଦ୍ଧ ଓ ସାଧ୍ୟଭେଦରେ ଦୁଇ ପ୍ରକାର । ଅତଏବ କାତ୍ୟାୟନମୁନି ପ୍ରଭୃତି ପ୍ରାକୃତ-ବ୍ୟାକୃତିକାରମାନେ ସିଦ୍ଧ ତଦ୍‌ଭବ ଶବ୍ଦମାନଙ୍କର ସୃଷ୍ଟି କ୍ରମ ବୁଝାଇ ଦେଇ ତଦନୁକ୍ରମରେ ସାଧ୍ୟ ତଦ୍‌ଭବ ଶବ୍ଦମାନ କରିନେବାକୁ ଶାସ୍ତ୍ରରେ ବିଧିନିହିତ କରିଯାଇଅଛନ୍ତି । ଏହି ବିଧି ଅନୁସାରେ ତୈଲଙ୍ଗ, ତାମିଲ, ହିନ୍ଦୀ, ମହାରାଷ୍ଟ୍ରୀ ପ୍ରଭୃତି ଭାଷାରେ ଭୂରିଭୂରି ତଦ୍‌ଭବ ଶବ୍ଦ ପର କାଳରେ ସୃଷ୍ଟ ହୋଇଅଛି । ଏ ସମ୍ବନ୍ଧେ ସର୍ବାପେକ୍ଷା ତାମିଲର ପ୍ରସାର ସମଧିକ । ତାମିଲ ଭାଷାରେ ଅଶେଷ ସଂଖ୍ୟକ ମୂଳ ଶବ୍ଦକୁ ଯେ କୌଣସିମତେ ବିକୃତ କରି ତାମିଲ ଶବ୍ଦ କରାହୋଇଅଛି ।

ବିକୃତପ୍ରକ୍ରିୟା ଦେଶୀୟ ଭାଷାମାନଙ୍କର ପ୍ରଧାନ ହୃତ୍‌ପିଣ୍ଡସ୍ୱରୂପ । ଏସବୁ ନଜାଣି ଲୋକେ ଅନେକ ସମୟରେ ଅଶ୍ରୁତ ତଦ୍‌ଭବ ଶବ୍ଦଟିଏ ଶୁଣିଲେ, ତାକୁ ଅପରିଶୁଦ୍ଧ ମନେ କରନ୍ତି । ସେମାନେ କୌଣସି ପ୍ରକାର ଯେବେ ତାର ମୂଳ ଶବ୍ଦଟି ଜାଣିପାରନ୍ତି, ତେବେ ସେହି ମୂଳ ପ୍ରକୃତିର ରୂପାନୁସାରୀ ବା ସମାନରୂପ କରୁଣାର୍ଥ ପରିଶୋଧନ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ ସେପରି କରିବା ବିହିତ ନୁହେଁ । ସେହି ପଦଟି ପ୍ରାକୃତର ନିୟମିତ ବିକୃତିପ୍ରକ୍ରିୟାରେ ସାଧୁ ଅଟେ । ସଂସ୍କୃତ ଶବ୍ଦ ଓ ପଦର ନିଷ୍ପତ୍ତି ସକାଶେ ଯାଦୃଶ ନିୟମମାନ ପ୍ରଯୋଜ୍ୟ, ଓଡ଼ିଆ ସକାଶେ ମଧ ସେହିପରି । ଓଡ଼ିଆ ନିଜେ ନିର୍ନିୟମ ଭାଷା ନୁହେଁ । ଏହା ଖୁବ୍ ନିୟମବଦ୍ଧ । ନିୟମ ବ୍ୟତିରିକ୍ତ କୌଣସି ଭାଷାରେ ଶବ୍ଦାଦି ସାଧୁ ହୋଇ ନପାରେ ।

ଭାଷା ରାଜ୍ୟରେ ପ୍ରଚଳିତ ଯେଉଁ ଶବ୍ଦଗୁଡ଼ିକର ପ୍ରକୃତି ନାହିଁ, କିମ୍ୱା ପରିଜ୍ଞାତ ହୋଇନାହିଁ, ଅଥଚ ଯେଉଁଗୁଡ଼ିକ ତତ୍ ଦେଶବାସୀଙ୍କ ଭାବଭଙ୍ଗୀସୂଚକ ରୂପେ ସୃଷ୍ଟ ଓ ବ୍ୟବହୃତ, ସେଗୁଡ଼ିକ ଦେଶୀୟ ଶବ୍ଦ । କୌଣସି ଦେଶୀୟ ଶବ୍ଦ ଯେ କେବେହେଁ କୌଣସି ପ୍ରକାରେ କାହାରି ତତ୍ତ୍ୱଜ୍ଞାନ ବଳରେ ବା ପ୍ରକୃତି ଅନୁସନ୍ଧିତ୍ସା ବଳରେ ସୁଦ୍ଧ ତଦ୍‌ଭବ ଶବ୍ଦ ରୂପେ ପରିଗଣିତ ହୋଇ ନ ପାରେ ତାହା ନୁହେଁ । ଅନୁସନ୍ଧିତ୍ସା ବଳରେ ଦେଶୀୟ ଶବ୍ଦର ମୂଳ ପ୍ରକୃତି ଆବିଷ୍କୃତ ହୋଇପାରେ । ତାହାହେଲେ ଦେଶଜ ଶବ୍ଦ ତଦ୍‌ଭବ ଶବ୍ଦରେ ପରିଣତ ହୁଏ । ଅତଏବ କୌଣସି ଦେଶୀୟ ଭାଷା ହେଉ, ତାହାର ଦେଶ୍ୟ ଶବ୍ଦମାନଙ୍କର ପରିମାଣ ଓ ପ୍ରଚାର ସୀମାବଦ୍ଧ ହୋଇ ନ ପାରେ । ଦେଶର କେଉଁ ଅଞ୍ଚଳରେ କେତେ ଦେଶ୍ୟ ଶବ୍ଦର ବ୍ୟବହାର ଅଛି, ସୁତରାଂ ଇତଃପର କେତେ ବା ସୃଷ୍ଟ ହୋଇପାରେ, ତାହା କିଏ କହି ପାରିବ ? ପ୍ରାଦେଶିକ ବିଭିନ୍ନ ଉଚ୍ଚାରଣବଶରୁ ନାନାପ୍ରକାର ଆକାରପ୍ରାପ୍ତ ଶବ୍ଦମାନ ଯେତେବେଳେ ବ୍ୟାବହାରିକ ଭାଷାରେ ଚଳିଆସୁଅଛି, ସୁତରାଂ ତହିଁରୁ କେତେକ ଗ୍ରନ୍ଥମାନଙ୍କରେ ଲିଖିତ ରହିଅଛି, ସେତେବେଳେ ସେଗୁଡ଼ିକୁ ଯୋଗ୍ୟତାନୁସାରେ ତଦୁଚିତ ସାହିତ୍ୟିକ ଗୌରବ ଦେବାକୁ ହେବ । ଏପରି ଶବ୍ଦମାନ ଯେ କେବଳ ଓଡ଼ିଆ ଭାଷାରେ

ଦେଖାଯାଏ, ତାହା ନୁହେଁ । ସମଗ୍ର (ପ୍ରାକୃତ) ଦେଶୀୟ ଭାଷାମାନଙ୍କରେ ଅଳ୍ପାଧିକ ପରିମାଣରେ ଏହା ପ୍ରଚଳିତ ଅଛି । ବରରୁଚି, ଭାମହ, ବସନ୍ତରାଜ ପ୍ରଭୃତି ପ୍ରାକୃତ ଶବ୍ଦ ଶାସ୍ତ୍ରକାରମାନେ ଏଭଳି ଶବ୍ଦଗୁଡ଼ିକୁ ସମାଦୃତ କରିଅଛନ୍ତି । ପ୍ରାକୃତପ୍ରକାଶ, ପ୍ରାକୃତମଞ୍ଜରୀ, ପ୍ରାକୃତକଳ୍ପଲତିକାଦି ଗ୍ରନ୍ଥମାନ ଲକ୍ଷ୍ୟଲକ୍ଷଣ ସହ ଲିଖିତ ଥିଲେ ମଧ୍ୟ ତଦୀୟ ଲକ୍ଷଣ - ବ୍ୟତିରିକ୍ତ ଦେଶ୍ୟ ଶବ୍ଦମାନଙ୍କୁ ଗୌରବ ସହ ଗ୍ରହଣ କରି ସେହି ସେହି ଭାଷାର ଅଭିବୃଦ୍ଧି ନିମନ୍ତେ ଶାସ୍ତ୍ରକାରମାନେ ତାଥକ୍‌ତଃ 'ଦେଶୀୟ ନାମମାଳା' ପ୍ରଭୃତି ସ୍ୱତନ୍ତ୍ର ଗ୍ରନ୍ଥମାନ ଲେଖି ଯାଇଅଛନ୍ତି । କେହି କେହି ସେଭଳି ଶବ୍ଦମାନଙ୍କ ସୃଷ୍ଟିର କାରଣ ବ୍ୟାକରଣ ଗ୍ରନ୍ଥମାନଙ୍କରେ ଲିପିବଦ୍ଧ କରିଅଛନ୍ତି ।

ପ୍ରତ୍ୟେକ ଦେଶୀ ଭାଷାରେ ପ୍ରଚଳିତ ଦେଶୀ ଶବ୍ଦନିଚୟ ସଜାତୀୟ ଓ ବିଜାତୀୟ ଭେଦରେ ଦ୍ୱିବିଧ । ସ୍ଥାନବିଶେଷରେ ଉଭୟ ନାମ ଦେଶଜ ବୋଲି ଅଭିହିତ ହୋଇପାରେ । କାରଣ ସ୍ୱଭାବତଃ ସେଗୁଡ଼ିକ ଯେ କୌଣସି ଦେଶର ଲୋକଙ୍କ ଭାବଭଙ୍ଗୀରୁ ଉତ୍ପନ୍ନ । ଓଡ଼ିଆ ଭାଷାରେ ମଧ୍ୟ ସଜାତୀୟ ଓ ବିଜାତୀୟ ବହୁସଂଖ୍ୟକ ଦେଶଜ ଶବ୍ଦମାନଙ୍କର ବ୍ୟବହାର ଅଛି । ସୁତରାଂ କ୍ରମଶଃ ସେହି ବ୍ୟବହାର ବଢୁଅଛି, ଚିରକାଳ ବଢ଼ିବ । ଏପରି ବଢ଼ିବାଟା ଦେଶୀୟ ଭାଷାମାନଙ୍କର ସ୍ୱଭାବସିଦ୍ଧ ।

ଯେଉଁ ଯେଉଁ ଭାଷାମାନଙ୍କରେ ପରସ୍ପର ସମ୍ପର୍କ ବା ସମ୍ବନ୍ଧ ଥାଏ,ସୁତରାଂ ଅତି ସାନ୍ନିଧ୍ୟବଶରୁ ପରସ୍ପର ଆଘାତପ୍ରତିଘାତ ହେଉଥାଏ, ବିଶେଷତଃ ସେପରି ଭାଷାମାନଙ୍କର ଦେଶ୍ୟ ଶବ୍ଦମାନ ତାହାର ସନ୍ନିହିତ ଭାଷାରେ ଯାଇ ସସ୍ୱରୂପରେ କିମ୍ବା କିଞ୍ଚିତ୍ ଭିନ୍ନ ଆକାରରେ ପ୍ରବେଶ କରିଥାଏ । ଆମ୍ଭମାନଙ୍କ ଭାଷାରେ ଏପରି କେତେକ ଶବ୍ଦ ଅଛି, ଯାହା କି ସସ୍ୱରୂପରେ ଅନ୍ୟାନ୍ୟ ଭାଷାରେ ମଧ୍ୟ ଚଳେ । ସେପରି ଶବ୍ଦଗୁଡ଼ିକ ଓଡ଼ିଆ ଭାଷା ସହ ଯେଉଁ ଭାଷାର ସମଧିକ ପାର୍ଥକ୍ୟ ନାହିଁ, ତହିଁରେ ପ୍ରାୟ ସମାନରୂପ ଓ ତୁଲ୍ୟାର୍ଥବାଚକ ରହେ । ତାହା ବୋଲି ସେପରି ଶବ୍ଦଗୁଡ଼ିକୁ ଓଡ଼ିଆ ନ କହିବା ସଙ୍ଗତ ନୁହେଁ । ଯଥାର୍ଥତଃ ଓଡ଼ିଆଭାଷା ଅତି ପ୍ରାଚୀନ କାଳରୁ ଲିଖିତାବସ୍ଥାରେ ସମୁଚିତ ସମୃଦ୍ଧି ବା ସମୁନ୍ନତି ଲାଭ କରିପାରି ନ ଥିଲେ ସୁଦ୍ଧା ଅନେକ ଭାଷା ଅପେକ୍ଷା ପ୍ରାଚୀନ । ପ୍ରାଚୀନ ପ୍ରାଦେଶିକ ଭାଷାମାନଙ୍କର ପ୍ରାଚୀନତ୍ୱ ଓ ମହତ୍ତ୍ୱନିର୍ଦ୍ଧାରଣର ପ୍ରଧାନ ଉପାୟ ବରରୁଚ୍ୟାଦିନିର୍ଦ୍ଦିଷ୍ଟ ପ୍ରାକୃତଭାଷା । ସେହି ପ୍ରାକୃତଭାଷାର ଏକ ଅଂଶ ରୂପେ ବା ଅବୟବରୂପେ ଉଡ୍ର ବା ଓଡ୍ରଭାଷା ବହୁକାଳରୁ ବିଦ୍ୟମାନ ଅଛି । ତାହା ଓଡ଼ିଆର ନାମାନ୍ତର ମାତ୍ର । ତାତ୍କାଳିକ ଉଡ୍ର ବା ଓଡ଼ିଆ ଭାଷା ଯାହା, ଆଧୁନିକ ଓଡ଼ିଆ ଭାଷା ତାହା ନ ହେଲେ ସୁଦ୍ଧା ତାହା କେବଳ କାଳକ୍ରମେ ଏହି ରୂପରେ ପରିଣତ ଓ ପରିବର୍ତ୍ତିତ ହୋଇଅଛି । ଅତଏବ ପ୍ରାଚୀନ କାଳରୁ ପ୍ରଚଳିତ ଓଡ଼ିଆ ଭାଷାର ସନ୍ନିହିତ ଏବଂ ବହୁ ପରିମାଣରେ ସଦୃଶରୂପ ବଙ୍ଗ ଭାଷାରେ ଓଡ଼ିଆର ଯେଉଁ କେତେକ ଶବ୍ଦ ଅବିକଳତଃ ବ୍ୟବହୃତ ହେଉଅଛି, ସେଗୁଡ଼ିକୁ ଯଥାର୍ଥତଃ

ଚିହ୍ନି ଓଡ଼ିଆ ଶବ୍ଦ ବୋଲି ସ୍ୱୀକାର କରିବା ଉଚିତ । ତାହା ନ କରିବା ଓଡ଼ିଆର ପ୍ରାଚୀନତ୍ୱ ପ୍ରତିଷ୍ଠା ପକ୍ଷେ ପ୍ରତ୍ୟବାୟ । ଉଦାହାରଣସ୍ୱରୂପ, ଗୋଟିଏ ଶବ୍ଦ ଓଡ଼ିଆଭାଷାରେ ବହୁକାଳରୁ ବ୍ୟବହୃତ ହୋଇ ଯଦି ବଙ୍ଗ ଭାଷାରେ ମଧ୍ୟ ବ୍ୟବହୃତ ହେବାର ଦେଖାଯାଏ, ତେବେ ତାହାକୁ ଓଡ଼ିଆ ଶବ୍ଦ କୁହା ନ ଯାଇ କି କାରଣରୁ ବଙ୍ଗ ଶବ୍ଦ ବୋଲି କୁହାଯିବ ? କେଉଁ ପ୍ରମାଣ ଦ୍ୱାରା ସେଭଳି ଓଡ଼ିଆ ଶବ୍ଦର ଓଡ଼ିଆତ୍ୱ ପ୍ରତିହତ ହୋଇପାରିବ ?

ବଙ୍ଗଭାଷା ଓ ଓଡ଼ିଆ, ତେଲୁଗୁ ଓ ତାମିଲ ପରି ଅତି ସନ୍ନିହିତ । ତେଲୁଗୁ ଓ ତାମିଲ ପରି କାହିଁକି, ବରଂ ତଦପେକ୍ଷା ଓଡ଼ିଆ ସହିତ ବଙ୍ଗ ଭାଷା ଅଧିକ ସମ୍ପର୍କନିଷ୍ଠ । ତେଣୁ ସେଥିରେ ଓଡ଼ିଆର ଶବ୍ଦସାଦୃଶ୍ୟ ରହିବା ସହଜ । ଓଡ଼ିଆ ଭାଷାର ଏକ ପାଖେ ବଙ୍ଗଭାଷା ଯେପରି, ଅନ୍ୟପାଖେ ତେଲୁଗୁ ଭାଷା ସେହିପରି ପ୍ରତିଷ୍ଠିତ । ତୈଲଙ୍ଗଭାଷା ସହିତ ଓଡ଼ିଆର ସେପରି କୌଣସି ସମ୍ପର୍କ ନାହିଁ କହିଲେ ଚଳେ । ତଥାପି ସାନ୍ନିଧ୍ୟବଶରୁ ଓଡ଼ିଆ ସହିତ ତାହାର ମଧ୍ୟ କେତେକ ଶବ୍ଦସାଦୃଶ୍ୟ ରହିଅଛି । ନିମ୍ନରେ ତାଦୃଶ କେତେକ ଉଦାହରଣ ଦିଆଗଲା ।

| | ଓଡ଼ିଆ | ତୈଲଙ୍ଗ |
|---|---|---|
| (୧) | ରମାରମି=ପ୍ରାୟ, ନ୍ୟୂନାଧିକତଃ-'ପ୍ରତ୍ୟେକ ଜାହାଜରେ ରମାରମି ପନ୍ଦର ଜଣ କର୍ମଚାରୀ ଧରାଯାଏ ।' 'ମୁକୁର' - ୨/୧ ୨୪ ପୃଷ୍ଠା । | ତେଲଙ୍ଗାମାନେ ମଧ୍ୟ ଠିକ୍ ଏହି ଅର୍ଥରେ ଏ ଶବ୍ଦ ବ୍ୟବହାର କରନ୍ତି । |
| (୨) | କୋଟ=ଦୁର୍ଗ ଅର୍ଥାତ୍ ରାଜାଙ୍କ ନିବାସ-ଭବନ । "ଅଭ୍ୟନ୍ତରରେ କୋଟାସନୀ ଦେବୀଙ୍କର ମନ୍ଦିର । ଏହି ଦେବୀଙ୍କର ନାମ କୋଟ ବା ଦୁର୍ଗ ଅଭ୍ୟନ୍ତରରେ ବାସ ହେତୁ ଏହିରୂପ ହୋଇଅଛି ।" 'ମୁକୁର'-୨/୨୩୮ ପୃଷ୍ଠା । | ତେଲଙ୍ଗାରେ ମଧ୍ୟ ଏହିପରି । |
| (୩) | ମୋକା=ପୁଞ୍ଜା, ପଂଷା, ସଂଘ । "ଯୋବରା-ପଡ଼ିଆର ଶଛମୂଳରେ ଛତା ପୋତି ଚାରି ମୋକା ହୋଇ ରହିଅଛନ୍ତି ।" ଉ:ସା-୩ୟ ଭାଗ ୨୧୮ ପୃଷ୍ଠା । | ତେଲେଙ୍ଗାରେ ଏହି ଅର୍ଥରେ (ମୋକା) ମୋଗା ଶବ୍ଦ ବ୍ୟବହୃତ ହୁଏ |
| (୪) | ପିଲାଝିଲା=ଅନେକ ସନ୍ତାନ । | ତେଲଙ୍ଗାରେ ଏ ଅର୍ଥରେ 'ପିଲାଜେଲ୍ଲା'ବ୍ୟବହୃତ ହୁଏ । ତେଲଙ୍ଗାରେ ମଧ୍ୟ ଏ ଶବ୍ଦ ଠିକ୍ ଏ ଅର୍ଥରେ ବ୍ୟବହୃତ ହୁଏ । |

(୫) ଡେରା=ଶିବିର ବା ତମ୍ବୁ । "ଶତ୍ରୁମାନେ ଏକ କ୍ରୋଶ ଦୂରରେ ଡେରାଗାଡ଼ି କରିଅଛନ୍ତି । ଲଛମା- ୯୦ ପୃଷ୍ଠା ।

(୬) ବୋତା = ମୁଗକୋଳଥାଦିର ଚୋପା । — ତେଲଙ୍ଗାରେ ଏ ଅର୍ଥରେ 'ବୋତୁ' ହୁଏ।

(୭) କୁନି = କ୍ଷୁଦ୍ର, ସୁକୁମାର । ଯେପରି କୁନି ପୁଅ କୁନି ଝିଅ । ମୁକୁର-୫/୨୩୦ ପୃଷ୍ଠା — ତେଲଙ୍ଗାରେ ଠିକ୍ ଏ ଅର୍ଥରେ 'ଗୁନି' ହୁଏ ।

(୮) ଡିବି = କ୍ଷୁଦ୍ର ଡିବା । 'ମୁକୁର'- ୭/୪୯ପୃଷ୍ଠା — ତେଲଙ୍ଗାରେ ମଧ୍ୟ ଏହିପରି ।

(୯) ତଲାମ = ସମଗ୍ରାର୍ଥ । — ତେଲଙ୍ଗାରେ ମଧ୍ୟ ଏହିପରି ।

(୧୦) ସଲ୍ଲା, ସଲାହା=ମନ୍ତ୍ରଣା — ତେଲଙ୍ଗାରେ ମଧ୍ୟ ଏହିପରି ।

(୧୧) ମୋଟାବୁଦ୍ଧି । ମୁକୁର-୫/୨୩୩ ପୃଷ୍ଠା । — ତେଲଙ୍ଗାରେ ମଧ୍ୟ ଏହିପରି ।

(୧୨) ଦୁଃଖ ପଡ଼ିବା, ସୁଖ ପଡ଼ିବା । — ତେଲଙ୍ଗାରେ ମଧ୍ୟ ଏହିପରି ଇତ୍ୟାଦି ।

ଏହିପରି କେତେକ ଶବ୍ଦ ଓ ପଦ ସମାନ ଥିବାର ଦେଖାଯାଏ । ଏଠାରେ ଏହାର ବିଶେଷ ଉଦାହରଣ ଦେବା ଅନାବଶ୍ୟକ । ପାଠକେ ଏତକରୁ ତୈଲଙ୍ଗ ଓ ଓଡ଼ିଆର କେତେକ ଶବ୍ଦ ସାଦୃଶ୍ୟ ବୁଝିପାରିବେ ।

କୌଣସି ଦେଶୀୟ ଭାଷା ତତ୍ର ପ୍ରଚଳିତ ତତ୍ସମ ଅର୍ଥାତ୍ ଶବ୍ଦଗୁଡ଼ିକୁ ଏବଂ ବିଜାତୀୟ ଦେଶଜ ଶବ୍ଦଗୁଡ଼ିକୁ ନିଜର ମୂଳ ସମ୍ପତ୍ତି ବୋଲି ଦାବିକରି ନ ପାରେ । ସଂସ୍କୃତ ଶବ୍ଦ ସମୁଦାୟରେ ସମଗ୍ର ଦେଶୀୟ ଭାଷାମାନଙ୍କର ସମାନ ଅଧିକାର ଓ ତୁଲ୍ୟ ସମ୍ପର୍କ । ଭାଷାର ସ୍ୱୀୟ ଶବ୍ଦସମ୍ପତ୍ତି ପ୍ରଦର୍ଶନ କଲାବେଳେ ତଦୀୟ ତଦ୍ଭବ ଶବ୍ଦନିଚୟ ଏବଂ ସଜାତୀୟ ଦେଶଜ ଶବ୍ଦସନ୍ଦୋହ କେବଳ ଧାର୍ଯ୍ୟ ହେବା ବିହିତ । ପୁନଶ୍ଚ ଦେଶୀୟ ଭାଷାମାନଙ୍କରେ ସଂସ୍କୃତ ଶବ୍ଦମାନ ଯେପରି ବ୍ୟବହୃତ, ସେପରି କେତେକ ବିଜାତୀୟ (ଯାବନିକ ପ୍ରଭୃତି) ଶବ୍ଦ ମଧ୍ୟ ପ୍ରଚଳିତ ଥାଏ । ଅତଏବ ଓଡ଼ିଆ, ତେଲେଙ୍ଗା, ବଙ୍ଗ ପ୍ରଭୃତି ଭାଷାମାନଙ୍କରେ କେତେକ ବିଜାତୀୟ ଶବ୍ଦନିଚୟ ଏକାର୍ଥରେ ବ୍ୟବହୃତ ହୋଇ ଆସୁଅଛି । କିନ୍ତୁ ସେସବୁ ସେଗୁଡ଼ିକର ମୂଳତଃ ନିଜସ୍ୱ ନୁହେଁ । ଯେଉଁ ଭାଷା ନିଜସ୍ୱରେ ସମୃଦ୍ଧିଶାଳିନୀ, ସେହି ଭାଷା କେବଳ ବଳବତୀ । ଆମ୍ଭମାନଙ୍କ ଓଡ଼ିଆ ଭାଷାର ସ୍ୱୀୟ ସମ୍ପତ୍ତି ଆଶାନୁରୂପ ପର୍ଯ୍ୟାପ୍ତ ନୁହେଁ । ଅତଏବ ତାହାର ପରିବର୍ଦ୍ଧନାର୍ଥ ଯତ୍ନବାନ୍ ହେବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ଯେ କୌଣସି ଭାଷା ହେଉ, ସେ ଯଦି ନିଜର ସାହଜିକ ବଳରେ, ତଥାଚ ସ୍ୱବିଭବ-ପ୍ରଭାବରେ ପ୍ରତିବେଶିନୀ ଭାଷାସମକ୍ଷରେ ସଧୈର୍ଯ୍ୟ ସମାସୀନ ହେବାକୁ ସମର୍ଥ ହୋଇନାହିଁ,

ତାହା ଶିକ୍ଷିତ ଜଗତରେ ଗୋଟିଏ ସ୍ୱତନ୍ତ୍ର ସଂପ୍ରାପ୍ତକର୍ତ୍ତୃତ୍ୱ ଭାଷା ବୋଲି ଗୃହୀତ ହୋଇ ନ ପାରେ । ସେହି ଭାଷାଭିମାନୀ ଜାତିକୁ ଭାଷା ଗୌରବର ଦରବାରରେ ଅନ୍ୟ ଶିକ୍ଷିତ ଜାତି ତାଦୃଶ ଗୌରବ ପ୍ରଦାନ କରିବାରେ କୁଣ୍ଠିତ ହୁଅନ୍ତି ।

ତେଲଙ୍ଗ ଭାଷାରେ ଯେଉଁ ଉଚ୍ଚ ସାହିତ୍ୟିକ ଗ୍ରନ୍ଥମାନ ଅଛି, ତାହାର ରଚନାପ୍ରଣାଳୀ ଓ ପ୍ରୌଢ଼ତା ସଂସ୍କୃତ ମହାକାବ୍ୟମାନଙ୍କର ରୀତି ଅପେକ୍ଷା ତେତେ ନ୍ୟୂନ ନୁହେଁ । ସେଥିରେ ସଂସ୍କୃତ ପ୍ରୟୋଗର ଆର୍ଭଟୀ ଖୁବ୍ ସମଧିକ ଏବଂ ସାଂସ୍କୃତିକ ରଚନାରୀତି ଯଥେଷ୍ଟ ଅଛି । ତଥାପି ସେହି ଭାଷାର ସାହିତ୍ୟିକ ସ୍ୱତନ୍ତ୍ରତା ସକାଶେ ପୂର୍ବାଚାର୍ଯ୍ୟମାନେ ପ୍ରଚୁର ମୌଳିକ ସମ୍ପତ୍ତି ସଞ୍ଚିତ କରିଯାଇଛନ୍ତି । ସେମାନଙ୍କର ବିଶୁଦ୍ଧ ତୈଲଙ୍ଗ କାବ୍ୟ ଓ ମହାକାବ୍ୟମାନ ଲେଖାଅଛି । ସେହି ଭାଷା ସ୍ୱକୀୟ ବିଭବରେ ସମୃଦ୍ଧିଶାଳିନୀ ହୋଇଥିଲେ ସୁଦ୍ଧା ଅଦ୍ୟାପି ସେହି ଭାଷାଭିମାନୀ ମହୋଦୟମାନେ ନିଜ ଭାଷା ରାଜ୍ୟର ଆହୁରି ସମଭିବୃଦ୍ଧି ନିମନ୍ତେ ଅଜସ୍ର ଚେଷ୍ଟା କରୁଅଛନ୍ତି । ସେଦିନ ଅଦୀନ-ମହତ୍ତ୍ୱ ପିଠାପୁରର ରାଜାମହୋଦୟ ସେଥିପାଇଁ ଦଶ ସହସ୍ର ଟଙ୍କା ପ୍ରଦାନ କରିଅଛନ୍ତି । ସେମାନେ ପୁଣି ଶ୍ରୀମାନ୍ ଗଭର୍ଣ୍ଣମେଣ୍ଟ ମହୋଦୟଙ୍କଠାରୁ କେତେକ ସାହାଯ୍ୟ ପାଇ ସେହି ଭାଷାର ଗୋଟିଏ ବୃହତ୍ତର ଅଭିଧାନ ନିର୍ମାଣରେ ଲାଗି ସେଥିପାଇଁ ଅନେକ ଭାଷାତତ୍ତ୍ୱବିତ୍ ପଣ୍ଡିତଙ୍କୁ ନିଯୁକ୍ତ କରି କୃତକାର୍ଯ୍ୟ ହୋଇଅଛନ୍ତି । ଆମ୍ଭମାନଙ୍କର ଏ ସବୁ କାହିଁ ? ସେଭଳି ମାତୃଭାଷା-ସମୁନ୍ନତି-ବ୍ରତୈକନିଷ୍ଠ ଅକନିଷ୍ଠ ପ୍ରଭାବ ଉଦାରଭାବ ରାଜା ମହାରାଜାମାନଙ୍କର ତାଦୃଶ ଚେଷ୍ଟା କାହିଁ ? ଏପରି ଅବସ୍ଥାରେ କେତେଜଣ ଭାଷାତତ୍ତ୍ୱବିତ୍ ପଣ୍ଡିତ ଓ ଦେଶାଭିମାନୀ ରାଜା, ମହାରାଜା ତଥା ଧନକୁବେର ମନୋଯୋଗ କରୁଅଛନ୍ତି ? ଏହା ଭାବିଲେ ହୃଦୟ ଦୁଃଖରେ ଅବସନ୍ନ ହୁଏ । ବରଂ ନୈରାଶ୍ୟ ଆସେ ।

ଏକ୍ଷଣି ଓଡ଼ିଆ ସାହିତ୍ୟରାଜ୍ୟରେ ଏପରି ଅନେକ ଲୋକ ଦେଖାଯାନ୍ତି, ଯେଉଁମାନେ କି ସଂସ୍କୃତପଦବହୁଳ ଲେଖାରେ ବିମୁଖତା ପ୍ରକାଶ କରି ଭାଷାର ମୌଳିକ ସତ୍ତାର ଅଭିବୃଦ୍ଧି ସକାଶେ ଖାଣ୍ଟି ଓଡ଼ିଆ ଶବ୍ଦ ସଂକଳିତ ଭାଷାର ବ୍ୟବହାରରେ ସବିଶେଷ ଅଭିମାନ ଦେଖାନ୍ତି । ଏତ ଭଲ କଥା । ଏହା ଯଦି ଅଭିଜ୍ଞତାମୂଳକ, ତେବେ ସୁଫଳପ୍ରଦ ହୋଇପାରେ । କିନ୍ତୁ ସେମାନେ ଭାବିବା ଉଚିତ ଯେ ଓଡ଼ିଆଭାଷାରାଜ୍ୟ ଚଳାଇ ନେବାକୁ ସେ ଭାଷାର ମୌଳିକ ସମ୍ପତ୍ତି ତାଦୃଶ ପର୍ଯ୍ୟାପ୍ତ ନୁହେଁ । ଓଡ଼ିଆର ନୈସର୍ଗିକ ସତ୍ତା ବଢ଼ାଇବାରେ ସେମାନେ ସର୍ବାଦୌ ନିଜେ ଚେଷ୍ଟିତ ହେବା ଆବଶ୍ୟକ । ଯଦି ବିଶୁଦ୍ଧ ଓଡ଼ିଆ ପଦମାନଙ୍କରେ ରଚନା ଲେଖିବାର ଉଦ୍ଦେଶ୍ୟ ଥାଏ, ତେବେ ପ୍ରଥମେ ଭୂରିଭୂରି ବହୁବିଧ ଓଡ଼ିଆ ଶବ୍ଦମାନଙ୍କର ସଂଚୟ, ସଂକଳନ ଓ ସଂଗଠନ କରିବାକୁ ହେବ । ସେଥିରେ କୃତ୍, ତଦ୍ଧିତ, ସମାସାଦିର ପ୍ରକ୍ରିୟା ଯୋଗ କରି କାବ୍ୟ ଉପନ୍ୟାସମାନ ଲେଖାଯିବ । ଏସବୁ କଲେ ଜାତୀୟ ଭାଷାର ଗୌରବ ବଢ଼ିବ । ସେଦିନ ଜଣେ ନାମଯାଦା ଲେଖକ ନିମ୍ନରେ ପ୍ରଦର୍ଶିତ ଗୋଟିଏ

ଯୁଦ୍ଧବର୍ଣ୍ଣନାର କେତେକ ପଂକ୍ତି ଲେଖି ବିଶୁଦ୍ଧ ଓଡ଼ିଆ ପଦ୍ୟ ବୋଲି ଦେଖାଯାଉଥିଲେ । ଯଥାର୍ଥତଃ ସେଥିରେ ତାଦୃଶ ଉତ୍କୃଷ୍ଟତା ନଥିଲେ ସୁଦ୍ଧା ଏବଂ ସ୍ଥାନେ ସ୍ଥାନେ ଯତିପାତଦୋଷ ଥିଲେ ସୁଦ୍ଧା ତାହା ଖାଣ୍ଟି ଓଡ଼ିଆ ପଦର ପଦ୍ୟ ବୋଲି ଆମ୍ଭେ ତାହାଙ୍କୁ ଅନୁକୂଳ ମତ ଦେଇ କହିଥିଲୁ ଯେ ଏପରି କେତେଗୋଟି ପଂକ୍ତି ଲେଖିବାରେ କିଛି ଫଳ ହେବନାହିଁ । ଏତାଦୃଶ ଧରଣର ଖଣ୍ଡିଏ ପୁସ୍ତକ ଲେଖାଗଲେ ସେହିଟି ଅନ୍ୟମାନଙ୍କ ଲେଖାର ଆଦର୍ଶ ହୋଇପାରିବ । ଯୁଦ୍ଧବର୍ଣ୍ଣନାର କେତେକ ପଂକ୍ତି -

ଖଣ୍ଡା ହାତ ଭେଣ୍ଡା ତହିଁ ଗଣ୍ଡା ଗଣ୍ଡା । ପଡ଼ି ଗଡୁଛନ୍ତି ଭଙ୍ଗାଢ଼େଣାଦଣ୍ଡା ।<br>
ସୁନାଚାନ୍ଦ-ମାଖା ତଉଲ ଢାଲ କେହି । ଭୂଇଁ କାମୋଡ଼ି ଶୋଇ ଧରିଛି ନିଠାଇ ।<br>
କାନଯାଏ କମାଣ ସିଞ୍ଜା ଟାଣି ଆଣି । କଣିଆଇଁ ଚାହିଁ ଦେଖାଉଥିଲା ଆଣି ।<br>
ପିଛଡ଼ା ପଡ଼ିବାରେ ଆନେ ହଣା ଖାଇ । ମୁଟୁଳା କରି ହାତ ଶୋଇଛି ଅଣିଆଇ ।<br>
କଣଅ ରସାଣିଆ-ଫାରସା-ପସା ହାତେ । ଛାତି ପାତି ଶୋଇଛି ସାଢ଼େ ତିନିହାତେ ॥

ଇତ୍ୟାଦି...

ଏପରି ଆଉ କେହି କେହି ଅଛନ୍ତି ଯେଉଁମାନେ ପ୍ରାଚୀନ ସାହିତ୍ୟର ଅଭ୍ୟାସ ଅଭାବରୁ ପ୍ରାଚୀନ ଓଡ଼ିଆ ଶବ୍ଦମାନ ବୁଝିବାକୁ ଅକ୍ଷମ । ସୁତରାଂ ସେମାନେ ସଂସ୍କୃତ ଶବ୍ଦଜ୍ଞାନରେ ତାଦୃଶ ପ୍ରାପ୍ତ ସାମର୍ଥ୍ୟ ନୁହନ୍ତି । ପ୍ରାକୃତ ଶବ୍ଦଧନ୍ଦାରେ ମଧ ସେମାନଙ୍କର ପ୍ରବେଶ ନାହିଁ, ଏ ଦୁଇଟି କାରଣରୁ ସେଭଳି ଶବ୍ଦମାନଙ୍କର ତତ୍ତ୍ୱ ବୁଝିବାରେ ସେମାନେ ଆସ୍ଥା ରଖନ୍ତି ନାହିଁ । ଅତଏବ ଭାଷାର ବିଶୁଦ୍ଧତା ପ୍ରତି ଦୃଷ୍ଟି ନଦେଇ ସ୍ୱେଚ୍ଛାମତେ ପ୍ରବର୍ତ୍ତି ଥାଆନ୍ତି । ସେମାନେ ଜାଣନ୍ତି ନାହିଁ ଯେ ଓଡ଼ିଆ ଶବ୍ଦତତ୍ତ୍ୱପରିଶୀଳନ ସଂସ୍କୃତ ଓ ପ୍ରାକୃତ-ଉଭୟ ଭାଷାରେ ଅଭିଜ୍ଞତାର ସାପେକ୍ଷ । ସେଥିପାଇଁ ସେହି ଉଭୟ ଭାଷାରେ ପାଣ୍ଡିତ୍ୟ ଦରକାର ।

ବର୍ତ୍ତମାନ ଓଡ଼ିଆ ଭାଷାର ଯୌବନ ସମୟ । ଏତେବେଳେ ଭାଷା ସର୍ବାଙ୍ଗସୁନ୍ଦର ଓ ପରିସଂସ୍କାର ପୂତ ହେବା ଆବଶ୍ୟକ । କ୍ରମଶଃ ତାହାହିଁ ହେଉଅଛି । ତଥାପି କେତେକ ପରିମାଣରେ ଉଚ୍ଛୃଙ୍ଖଳତା ଓ ନିର୍ନିୟମତା ରହି ଯାଉଅଛି । ସାହିତ୍ୟିକମାନେ ଏ ସବୁର ପରିହାର ନିମନ୍ତେ ଯଥାଶକ୍ତି ଚେଷ୍ଟିତ ରହିବା ଉଚିତ । ତାହା ନହେଲେ ଭାଷାର ଶକ୍ତି ବିକାଶ ପାଇବ ନାହିଁ ଏବଂ ଉଚ୍ଛୃଙ୍ଖଳତା ଉପସ୍ଥିତ ହେବ ।

ଦେଶୀୟ ଭାଷାମାନଙ୍କରେ ତତ୍ସମ, ତଦ୍ଭବ ଓ ଦେଶ୍ୟ ଶବ୍ଦମାନଙ୍କର ବ୍ୟବହାର ହୁଏ । ଏହା ଅଭିଜ୍ଞ ଲୋକେ ଜାଣନ୍ତି । ଅତଏବ ଓଡ଼ିଆ ଭାଷାର ସେହି ସେହି ଶବ୍ଦମାନଙ୍କର ପରିଶୁଦ୍ଧତା ପ୍ରତିପାଦନାର୍ଥ ଯତ୍ନବାନ ହେବା ଏବଂ ଏଥିପାଇଁ ଆବଶ୍ୟକୀୟ ଅଭିଜ୍ଞତା ସମ୍ପାଦନ କରିବା ନିତାନ୍ତ ପ୍ରୟୋଜନୀୟ । ତାହା ନହେଲେ ଭାଷା ପରିଶୁଦ୍ଧ ହେବନାହିଁ । ଓଡ଼ିଆର 'ସମାସାଦିରହିତ' ତତ୍ସମ ଶବ୍ଦମାନଙ୍କର ବ୍ୟବହାରରେ ତାଦୃଶ ଦୋଷ ରହି ନପାରେ । ଯଦି

କୁତ୍ରଚିତ୍ ଦୋଷ ଥାଏ, ତାହା ସହଜେ ଧରା ପଡ଼ିଯାଏ । କାରଣ ତତ୍ସମ ଶବ୍ଦସବୁ ସଂସ୍କୃତର ନିୟମବର୍ତ୍ତୀ । ସଂସ୍କୃତର ନିୟମାନୁସାରେ ତାକୁ ପରିଶୁଦ୍ଧ କରିଦେବାକୁ ହୁଏ । ମାତ୍ର ତଦ୍ଭବାଦି ଶବ୍ଦର ପରିଶୁଦ୍ଧି ସକାଶେ ପୃଥକ୍ ନିୟମମାନ ଜାଣିବା ଦରକାର । ତାହା ସ୍ପଷ୍ଟତଃ ଏକତ୍ର ଲେଖା ନଥିବାରୁ ଏବଂ ସର୍ବସାଧାରଣ ଅବଗତ ନଥିବାରୁ ଲୋକେ ଯେଝାମତେ ଲେଖିଯାଉଅଛନ୍ତି । କିଏ ଦୀର୍ଘକୁ ହ୍ରସ୍ୱ, କିଏ ବା ହ୍ରସ୍ୱକୁ ଦୀର୍ଘ, କିଏ ଏକବର୍ଣ୍ଣଠାରେ ଅପର ବର୍ଣ୍ଣ, କିଏ ବା ସାଧୁ ଶବ୍ଦକୁ ଅସାଧୁ ଏବଂ ଅସାଧୁ ଶବ୍ଦକୁ ସାଧୁ ବୋଲି କହି ପକାଉଅଛନ୍ତି ।...

ସ୍ଥାନ ଓ ସମାଜ ଭେଦରେ ଶବ୍ଦମାନଙ୍କର ଉଚ୍ଚାରଣ ଭିନ୍ନ ଭିନ୍ନ ହୋଇଥାଏ । ଉଚ୍ଚାରଣ ଅନୁସାରେ ସେମାନଙ୍କର ରୂପ ବା ଆକାର ନିରୂପିତ ହେବା ଉଚିତ । ଏହି ଆକାର ବା ରୂପର ସାଧୁତା ବିଚାରରେ ଅନେକ ବିଷୟ ପ୍ରତି ଦୃଷ୍ଟି ଦେବାକୁ ହୁଏ । ତଦ୍ଭବ ଶବ୍ଦମାନଙ୍କର ମୂଳ ପ୍ରକୃତି ଶବ୍ଦରୂପକୁ ଧରି ସେମାନଙ୍କର ସାଧୁତା ବିଚାର କରାଯାଏ । ଦେଶଜ ଶବ୍ଦମାନଙ୍କ ସମ୍ବନ୍ଧେ ସାଧାରଣତଃ ଲୋକମାନଙ୍କର ଉଚ୍ଚାରଣ କେବଳ ଅନୁସରଣୀୟ । ମାତ୍ର ତାହା ବୋଲି ଦେଶ ମଧ୍ୟରେ ବାସ କରୁଥିବା ଯେ କୌଣସି ଲୋକର ଯେ କୌଣସି ପ୍ରକାରେ ଉଚ୍ଚାରିତ ଯାବତୀୟ ରୂପ ବା ଆକାର ଗ୍ରହଣୀୟ ହୋଇ ନପାରେ । ଓଡ଼ିଆ ଦେଶରେ ଯେଉଁ ଓଡ଼ିଆମାନେ ବାସ କରନ୍ତି କେବଳ ସେହିମାନଙ୍କର ଉଚ୍ଚାରଣରୁ ସମ୍ୟକ୍ ପରିଶୀଳନଦ୍ୱାରା ଓଡ଼ିଆ ଶବ୍ଦର ସମୁଚିତ, ସୁସଙ୍ଗତ ଓ ନିୟମାନୁଗତ ରୂପମାନ ଗ୍ରହଣ କରିବାକୁ ହେବ । ଏହି ରୂପମାନଙ୍କ ମଧ୍ୟରୁ ଯାହାର ବ୍ୟବହାର ପୁସ୍ତକମାନଙ୍କରେ ଦେଖାଯାଏ, ତାହା ଶିଷ୍ଟ ପ୍ରୟୋଗ ହେତୁ ସର୍ବଥା ଆଦରଣୀୟ ଏବଂ ରକ୍ଷଣୀୟ ।

ଓଡ଼ିଆମାନଙ୍କ ସଙ୍ଗେ ସଙ୍ଗେ ବହୁକାଳରୁ ଏକତ୍ର ବାସ କରି ଆସୁଥିଲେ ସୁଦ୍ଧା ତେଲଙ୍ଗ, ବଙ୍ଗ ପ୍ରଭୃତିଙ୍କ ମୁଖଯନ୍ତ୍ରର ପ୍ରକ୍ରିୟାରେ ଓଡ଼ିଆ ଶବ୍ଦମାନଙ୍କର ଯେଉଁ ଧ୍ୱନି ପ୍ରକାଶ ପାଏ, ତାହା ତେତେ ସହଜ ଓ ସ୍ୱାଭାବିକ ନୁହେଁ ଏବଂ ଓଡ଼ିଆମାନଙ୍କର ସହଜ ଉଚ୍ଚାରିତ ଶବ୍ଦଠାରୁ ତାହାର ପାର୍ଥକ୍ୟ ମଧ୍ୟ ସ୍ପଷ୍ଟ ଜଣାପଡ଼େ । ତେଣୁ ଉତ୍କଳେତର ଉତ୍କଳବାସୀଙ୍କ ମୁଖରୁ ବାହାରିବା ଯାବତୀୟ ଶବ୍ଦରୂପମାନ ପ୍ରମାଣିକ ସ୍ୱରୂପ ଧାର୍ଯ୍ୟ ହୋଇ ନ ପାରେ ।

ନିମ୍ନଶ୍ରେଣୀର ଲୋକମାନଙ୍କ ହୃଦ୍‌ଭବ ଓ ତଦନୁଗତ ମୁଖଯନ୍ତ୍ର ଯେ ଅଧିକାଂଶ ଦେଶୀୟ ଶବ୍ଦମାନଙ୍କର ଉତ୍ପତ୍ତି ଓ ପରିପୋଷଣର ସ୍ଥାନ, ଏହା ଅନେକ ବୁଝନ୍ତି ନାହିଁ । ନିମ୍ନଶ୍ରେଣୀର ଲୋକେ ଦେଶୀୟ ଶବ୍ଦଗୁଡ଼ିକୁ ନିଜ ବ୍ୟବହାରରେ ପରିଣତ ଓ ପରିପୁଷ୍ଟ କରି ସେମାନଙ୍କର ସମ୍ୟକ୍ ରକ୍ଷଣାବେକ୍ଷଣ କରିଥାଆନ୍ତି । ସୁତରାଂ ଦେଶଜ ଶବ୍ଦମାନଙ୍କର ସ୍ୱାଭାବିକ ସତ୍ତା ସେମାନଙ୍କ ମୁଖରେ ବହୁ ପରିମାଣରେ ଅକ୍ଷୁଣ୍ଣ ରହିଥାଏ । ମାତ୍ର ଉଚ୍ଚଶ୍ରେଣୀୟ ଲୋକମାନେ ଦେଶୀୟ ଶବ୍ଦପ୍ରତି ତେତେ ଆଗ୍ରହ ରଖନ୍ତି ନାହିଁ । କାରଣ ସେମାନଙ୍କ ହୃଦୟ ଓ ଭାବ ବିଶେଷତଃ ସଂସ୍କୃତ ସାପେକ୍ଷ । ସେମାନେ ଦେଶୀୟ ଶବ୍ଦଗୁଡ଼ିକ କି ଭାବରେ ଓ କେଉଁ ରୂପରେ ସୃଷ୍ଟ ହୋଇଅଛି ଆଉ ସେସବୁ ସେହି ଭାଷାର କେତେ

ପରିମାଣରେ ଓ କିପରି କ୍ରମରେ ନୈସର୍ଗିକ ସତ୍ତା ତଥା ସ୍ୱାତନ୍ତ୍ର୍ୟକୁ ରକ୍ଷା କରୁଅଛି, ତାହାର କିଛି ବିଚାର ନ କରି ସମୟେ ସମୟେ ସେହି ସେହି ଦେଶୀୟ ଶବ୍ଦର ବାଚ୍ୟାର୍ଥ ପ୍ରତିପାଦକ ସଂସ୍କୃତ ଶବ୍ଦ ଆଡ଼େ ଆକୃଷ୍ଟ ହୋଇଥାଆନ୍ତି । ଫଳରେ ଦେଶୀୟ ଶବ୍ଦମାନଙ୍କର ଆଦିମ ଓ ଯଥାର୍ଥ ରୂପ ସମଧିକତଃ ଜାତିର ନିମ୍ନଶ୍ରେଣୀ ମଧ୍ୟରେ କେବଳ ପରିରକ୍ଷିତ ଥାଏ । ତଥାପି ନିମ୍ନ ଶ୍ରେଣୀସ୍ଥ ଲୋକେ ତାଦୃଶ ଶିକ୍ଷିତ ନ ଥିବା ଓ ପ୍ରାୟଶଃ ଅନିୟମିତ-ହୃଦୟ ଥିବା ଯୋଗୁଁ ସେମାନଙ୍କ ମଧ୍ୟରେ ସମୟେ ସମୟେ ଭିନ୍ନ ଲୋକେ ଭିନ୍ନ ଭିନ୍ନ ଆକାରରେ କେତେକ ଶବ୍ଦର ବ୍ୟବହାର କରିଥାଆନ୍ତି । ସେପରିଗୁଡ଼ିକୁ ଶବ୍ଦାମ୍ନାୟ ମଧ୍ୟରେ ଗ୍ରହଣ କଲାବେଳେ ସମ୍ୟକ୍ ବିଚାରପୂର୍ବକ ଧାର୍ଯ୍ୟ କରିବାକୁ ହୁଏ । ଯେଉଁ ରୂପ ସଙ୍ଗତ ବୋଧହୁଏ ତାହା ଗୃହୀତ ହୁଏ ଏବଂ ଯହିଁରେ ଅସାଙ୍ଗତ୍ୟ କିମ୍ବା ଅସ୍ୱାଭିବିକତା ଦେଖାଯାଏ, ତାକୁ ପରିତ୍ୟାଗ କରିବାକୁ ହୁଏ । ଏହି ନିୟମ ଯେ କେବଳ ଓଡ଼ିଆ ଭାଷାରେ ଖଟେ, ତାହା ନୁହେଁ; ସମଗ୍ର ଦେଶୀୟ ଭାଷାମାନଙ୍କର ଏହା ଗୋଟିଏ ପ୍ରଧାନ ନିୟମ । ତଦ୍ଭବ ଶବ୍ଦମାନଙ୍କର ସମୁତ୍ପାଦନ ଓ ସଂସ୍ଥାପନ ସମ୍ବନ୍ଧେ ମଧ୍ୟ ନିମ୍ନସ୍ଥ ଓ ଉଚ୍ଚଶ୍ରେଣୀର ଲୋକମାନଙ୍କ ବ୍ୟବହାର-ପରମ୍ପରାରେ ଏହି କ୍ରମହିଁ ସମଧିକ ଭାବରେ ଘଟିଥାଏ । ଅତଏବ ଜାତିର ଉଚ୍ଚଶ୍ରେଣୀର ଲୋକମାନଙ୍କ ଅପେକ୍ଷା ନିମ୍ନ ଶ୍ରେଣୀର ଲୋକସମାଜରେ ସେହି ଜାତିର ବିଶୁଦ୍ଧ ଜାତୀୟ ଶବ୍ଦମାନ ଓ ସେହି ଭାଷାର ମୌଳିକ ସତ୍ତା ମିଳିପାରେ । ଯେଉଁ ଜାତି ସମ୍ୟକ୍ ଉଦୀୟମାନ ହେଲାପରେ ନିଜର ଭାଷା ପ୍ରତି ଓ ନୈସର୍ଗିକ ସତ୍ତାରେ ଗଠିତ ବିଶୁଦ୍ଧ ଜାତୀୟ ଶବ୍ଦମାନଙ୍କ ପ୍ରତି ସମ୍ୟକ୍ ଆସ୍ଥା ଓ ଅଭିମାନ ରଖେ ନାହିଁ ସେହି ଜାତିର ତାଦୃଶ ଶବ୍ଦମାନ କିଛିକାଳ ପରେ ବନ୍ୟ କ୍ଷୁଦ୍ର କ୍ଷୁଦ୍ର ଉଦ୍ଭିଦପ୍ରାୟ ବିଲୁପ୍ତ ହୋଇଯାଏ ।

ଜାତୀୟ ପ୍ରାଣର ନୈସର୍ଗିକ ଭାବବ୍ୟଞ୍ଜନ ଶବ୍ଦଗୁଡ଼ିକ ଲୋପ ପାଇଗଲେ ଜାତୀୟ ଶକ୍ତିର ଯେ କି ଅନିଷ୍ଟ ହୁଏ, ତାହା ସାମାନ୍ୟ ଚିନ୍ତା କଲେ ଅନାୟାସରେ ଜଣାପଡ଼ିବ । ଯେଉଁମାନେ ଏହା ହୃଦୟଙ୍ଗମ କରିବାକୁ ଅସମର୍ଥ, ସେମାନେ ଜାତୀୟ ବା ଦେଶଜ ଶବ୍ଦମାନଙ୍କ ପ୍ରତି ଅବଜ୍ଞା ଦେଖାଇ ସଂସ୍କୃତ ଶବ୍ଦମାନଙ୍କର ଅତ୍ୟଧିକ ବ୍ୟବହାର ଦ୍ୱାରା ସେମାନଙ୍କର ବିନାଶ କରିବା ଲାଗି ସାହସୀ ହୋଇପାରନ୍ତି । ମାତ୍ର ଏଭଳି ଉଦ୍ୟମ ଜାତୀୟତାର ବିକାଶ ପକ୍ଷେ ପ୍ରଧାନ ଅନ୍ତରାୟ । କାରଣ ଭାଷାର ମୌଳିକ ସତ୍ତା କେବଳ ଜାତୀୟତାର ପ୍ରାଣ । ଭାରତୀୟ ଭାଷାତତ୍ତ୍ୱଜ୍ଞ ବିମସ୍‌ସାହେବ ଏ ସମ୍ବନ୍ଧେ ତାଙ୍କ ପ୍ରସିଦ୍ଧ 'ଭାରତୀୟ ଭାଷାତତ୍ତ୍ୱ ବିଚାର' '(Comparative Philology of Indian Tongues)'ରେ ଯାହା ଲେଖିଅଛନ୍ତି, ତାହା ସମସ୍ତଙ୍କର ମନେ ରଖିବା ଉଚିତ । ଯେଉଁ ଭାଷାରେ ଦେଶଜ ଜାତୀୟ ଶବ୍ଦ ଯେତେ ଅଧିକ, ସେହି ଭାଷା ସେତେ ପରିମାଣରେ ଶକ୍ତିଶାଳିନୀ । ଏହା ଏକ ପ୍ରକାରେ ସମସ୍ତ ଦେଶର ଭାଷାବିତ୍ ସମାଜରେ ସର୍ବବାଦିସମ୍ମତ । ଦେଶଜ ଶବ୍ଦର ବହୁଳତା ଏବଂ ପରିପୁଷ୍ଟତାରୁ ଜାତୀୟ ପ୍ରାଣର ପୂର୍ଣ୍ଣତା ଏବଂ ବହୁମୁଖୀ ଚିନ୍ତାର ପରିଚୟ

ମିଳେ ।

ପ୍ରାଦେଶିକ ଉଚ୍ଚାରଣରେ ଜାତୀୟ ଭାଷାର ସ୍ୱାଭାବିକ ସତ୍ତା ଅବଶ୍ୟ ନ୍ୟୂନାଧିକ ପରିମାଣରେ ବିଦ୍ୟମାନ ଥାଏ । ପ୍ରାଦେଶିକ ଉଚ୍ଚାରଣର ସେହି ସତ୍ତାର ଅନୁସରଣରେ ଓଡ଼ିଆ ଭାଷାର ସ୍ଥାନେ ସ୍ଥାନେ ଦକାର ଓ ଲକାର, ଦକାର ଓ ଜକାର, ଟକାର ଓ ତକାର, ଡକାର ଓ ଢକାର, ଚକାର ଓ କକାର, ଲକାର ଓ ନକାର ଇତ୍ୟାଦି ବ୍ୟଞ୍ଜନବର୍ଣ୍ଣମାନଙ୍କର ଅନ୍ୟୋନ୍ୟ ବିନିମୟ ଘଟିବା ସ୍ୱାଭାବିକ ହୋଇଥାଏ । ସୁତରାଂ ମୁଖଯନ୍ତ୍ରର ପରିଚାଳନାନୁଯାୟୀ ସ୍ୱରମାନଙ୍କର ବିନିମୟ ପ୍ରଚୁର ଭାବରେ ଘଟିଥାଏ । ଏପରି କେତେକ ସ୍ଥଳରେ ସମୟେ ସମୟେ ଅନ୍ୟୋନ୍ୟ ସମ୍ବନ୍ଧରହିତ ସ୍ୱରମାନଙ୍କର ବିନିମୟ ସୁଦ୍ଧା ହୋଇଯାଇଥାଏ । ଆଉ କେତେକ ସ୍ଥଳରେ କୌଣସି ଗୋଟାଏ ସ୍ୱରବର୍ଣ୍ଣ ଅଧିକ ବର୍ଣ୍ଣ ସ୍ୱରୂପ ଉଚ୍ଚାରିତ ହୋଇଯାଇଥାଏ । ଅତଏବ ପ୍ରାଦେଶିକ ଉଚ୍ଚାରଣ ସମ୍ବନ୍ଧରେ ସ୍ୱରମାନଙ୍କର ପରିବର୍ତ୍ତନ ବା ବିନିମୟାଦିର କୌଣସି ବ୍ୟଭିଚାରରହିତ ନିୟମ ଧାର୍ଯ୍ୟ କରାଯାଇନପାରେ । ପ୍ରାଦେଶିକ ମୁଖଯନ୍ତ୍ରର ପରିଚାଳନାକୁ କେହି ଅନ୍ୟଥା ବା ଦମିତ କିମ୍ବା ନିବାରିତ କରିନପାରନ୍ତି । ତଥାପି ପ୍ରାଦେଶିକ ଉଚ୍ଚାରଣଜନିତ ନାନାରୂପକ ଶବ୍ଦଗୁଡ଼ିକ ସଂସ୍କାରପୂର୍ବକ ଗୃହୀତ ହୋଇଥାଏ । ଏହି ଶବ୍ଦମାନଙ୍କରେ ମୌଳିକ କିମ୍ବା ଆଦିମ ବ୍ୟଞ୍ଜନବର୍ଣ୍ଣମାନଙ୍କ ସଂସ୍ଥାନର ପ୍ରାଧାନ୍ୟ ଯେପରି ରହିଥାଏ, ସ୍ୱରବର୍ଣ୍ଣମାନଙ୍କର ସେପରି ନୁହେଁ । ଏହାର ପ୍ରତ୍ୟକ୍ଷ ପ୍ରମାଣ କ୍ରମଶଃ ଦେଖିବାକୁ ପାଇବେ ।

କେବଳ ଓଡ଼ିଆ ଭାଷାରେ ନୁହେଁ, ସମଗ୍ର ଦେଶୀୟ ଭାଷାମାନଙ୍କରେ ତଦ୍ଭବ ଶବ୍ଦସମାମ୍ନାୟର କେତେକ ଶବ୍ଦରେ କେତେଗୁଡ଼ିଏ ବର୍ଣ୍ଣ (ସ୍ୱର ଓ ବ୍ୟଞ୍ଜନ) ଯାହା କି ଅଧିକ ବର୍ଣ୍ଣରୂପେ ମିଶି ଯାଇଥାଏ, ତାହା ସେହି ସେହି ଭାଷାର ପ୍ରାଦେଶିକ ଉଚ୍ଚାରଣ ସୌଲଭ୍ୟରୁ ହୋଇଥିଲେ ସୁଦ୍ଧା ଏହା ଯେ ପ୍ରାକୃତ ଭାଷାରୁ ଅନୁକୃତ, ଏଥିରେ ସନ୍ଦେହ ନାହିଁ । ପ୍ରାକୃତ ଭାଷାରେ ଅ, ହ, ର, ଲ, ପ୍ରଭୃତି କେତେଗୁଡ଼ିଏ ବର୍ଣ୍ଣ ତଦ୍ଭବ ଶବ୍ଦମାନଙ୍କରେ ଅଧିକ ବର୍ଣ୍ଣରୂପେ ନିହିତ ଥିବା ପରିଲକ୍ଷିତ ହୁଏ । ସଂସ୍କୃତ ଭାଷାରେ ସୁଦ୍ଧା ଏହାର ସତ୍ତା ଭିନ୍ନ କ୍ରମରେ ବିଦ୍ୟମାନ । ଏତାଦୃଶ ଅଧିକ ବର୍ଣ୍ଣଯୋଗକ୍ରମକୁ ମଧ୍ୟ ସଂସ୍କୃତ ବ୍ୟାକୃତିକାରମାନେ ଆଗମରେ ଅନ୍ତର୍ଭୁକ୍ତ କରିଅଛନ୍ତି । ସେ ଯାହାହେଉ, କେତେକ ଅଧିକ ବର୍ଣ୍ଣର ଯୋଗ ଓଡ଼ିଆରେ ପ୍ରାକୃତାନୁକରଣରୁ ହୋଇଅଛି । ଓଡ଼ିଆ ତଦ୍ଭବ ଶବ୍ଦ ସମାମ୍ନାୟ ମଧ୍ୟରୁ ସ୍ଥାନେ ସ୍ଥାନେ ଆକାର ଇକାରାଦି ସ୍ୱରବର୍ଣ୍ଣ ଏବଂ ରକାର, ଲକାର, ଯକାରାଦି ବ୍ୟଞ୍ଜନ ବର୍ଣ୍ଣମାନ ଅଧିକ ବର୍ଣ୍ଣ ରୂପେ ମିଶି ରହିଥିବା ସତ୍ୟ; ମାତ୍ର ଏ ସବୁ ସ୍ପଷ୍ଟତଃ ସର୍ବତ୍ର ସମସ୍ତଙ୍କର ପରିଜ୍ଞାତ ହୁଏନାହିଁ । କାରଣ ଏଗୁଡ଼ିକ ଅଲକ୍ଷିତ ଭାବରେ ସେହି ସେହି ଶବ୍ଦମାନଙ୍କରେ ଏକାତ୍ମତା (ଯେପରି ସ୍କୁଲ-ଇସ୍କୁଲ) ପ୍ରାପ୍ତ ହୋଇ ରହିଯାଇଥାଏ । ଯେଉଁ ଶବ୍ଦତତ୍ତ୍ୱ ଜିଜ୍ଞାସୁମାନେ ବର୍ଣ୍ଣବିଶ୍ଳେଷଣରେ ବିକୃତି ବିଚାର କରିବାକୁ ଚାହାନ୍ତି, ସେମାନେ କେବଳ ସହଜରେ ତାହା

ଜାଣିପାରନ୍ତି । ଏ ସମ୍ବନ୍ଧେ ଅନେକ ପ୍ରମାଣ ପଶ୍ଚାତ୍ ଦେଖିବେ । ଏ ସ୍ଥଳେ ଗୋଟିଏ ସୁଲଭ ଉଦାହରଣ ମାତ୍ର ଦିଆଗଲା । ଆପଣମାନେ ଅବଶ୍ୟ କେତେକଙ୍କ ମୁଖରୁ ସମୟେ ସମୟେ ଶୁଣିଥିବେ, "ମୁଁ ସେହିପରି କହିବାକୁ କିମ୍ବା କରିବାକୁ ଭାର୍ଜନ ନୁହେଁ" "ତାହାଙ୍କୁ ତୁ ଉତ୍ତର ଦେବାକୁ ଭାର୍ଜନ ନୋହୁ" । ଏହି ବାକ୍ୟଦ୍ୱୟରେ ବ୍ୟବହୃତ ଯୋଗ୍ୟାର୍ଥ ଭାଜନ ଶବ୍ଦର ତାଦ୍ଭବିକ ଭାର୍ଜନ ଶବ୍ଦ ଅନେକେ ଉଚ୍ଚାରଣ କରିଥାଆନ୍ତି ଏବଂ ବହୁ ଉଚ୍ଚାରଣରେ ଅଭ୍ୟସ୍ତ ହୋଇ ପଡ଼ିବାରୁ କେହି କେହି ଲିଖିତ ଭାଷାରେ ମଧ୍ୟ ଅଦ୍ୟାପି ବ୍ୟବହାର କରନ୍ତି । କେବଳ ଆମ୍ଭମାନଙ୍କ ମତରେ ନୁହେଁ ଯେଉଁମାନେ ତାଦ୍ଭବିକ ତତ୍ତ୍ୱବିଚାରରେ ନିଷ୍ଣାତ, ସେମାନଙ୍କ ମତରେ ମଧ୍ୟ ଏପରି ବ୍ୟବହାର ଅନୁଚିତ ବା ଅସଙ୍ଗତ ନୁହେଁ । କିନ୍ତୁ ଯେଉଁମାନେ ତାଦ୍ଭବିକ ଶବ୍ଦ ସୃଷ୍ଟିର ତତ୍ତ୍ୱ ଜାଣନ୍ତିନାହିଁ, ସେମାନେ ସମୟେ ସମୟେ ଏଭଳି ଶବ୍ଦମାନ ମୁଖରେ ଉଚ୍ଚାରଣ କରୁଥିଲେ ସୁଦ୍ଧା ଯେତେବେଳେ ସେହି ସେହି ଶବ୍ଦର ପ୍ରକୃତି ପ୍ରତି ଆକୃଷ୍ଟ ହୁଅନ୍ତି, ସେତେବେଳେ ଏପରି ତଦ୍ଭବ ଶବ୍ଦକୁ ଅସାଧୁ ମନେ କରନ୍ତି । କିନ୍ତୁ ଯଥାର୍ଥତଃ ତାହା ଅସାଧୁ ନୁହେଁ । ଅନେକ ସ୍ଥଳରେ ତାହା ଅଭିଜ୍ଞଙ୍କ କର୍ତ୍ତୃକ ପୁସ୍ତକଗତ ହୋଇ ମଧ୍ୟ ରହିଅଛି । ବିଶେଷତଃ ଏଭଳି ତଦ୍ଭବ ଶବ୍ଦମାନଙ୍କର ବ୍ୟବହାର ପ୍ରାଚୀନ ପୁରାଣ ସାହିତ୍ୟରେ ବହୁ ସ୍ଥଳେ ବିଦ୍ୟମାନ ରହିଅଛି । ତାହା ଆଧୁନିକ ଲେଖାରେ ସୁଦ୍ଧା ନିତାନ୍ତ ବିରଳ ନୁହେଁ । ବାନପ୍ରସ୍ଥ ଶ୍ରୀମାନ୍ ଧରଣୀଧର ମିଶ୍ରଙ୍କ ଅନୁବାଦିତ ଶ୍ରୀମଦ୍ଭାଗବତ, ଏକାଦଶ ସ୍କନ୍ଧ, ଚତୁର୍ଦ୍ଦଶାଧ୍ୟାୟରେ ଦେଖିବେ, "ଉଦ୍ଧବ କହିଲେ ହେ ପଦ୍ମଲୋଚନ ! ମମୁକ୍ଷୁ ବ୍ୟକ୍ତି ତୁମ୍ଭଙ୍କୁ ଯତ୍ସ୍ୱରୂପ ଓ ଯେ ପ୍ରକାରେ ଧ୍ୟାନ କରେ, ସେହି ଧ୍ୟାନ ମୋତେ ଉପଦେଶ କରିବାକୁ ଆପଣ ଭାର୍ଜନ ଅଟନ୍ତି" । ଧରଣୀଧର ମିଶ୍ର ଜଣେ ପଣ୍ଡିତ, ଆଧୁନିକ ଶିକ୍ଷିତ । ଭାର୍ଜନ ଶବ୍ଦକୁ ସାଧୁ ମନେକରି ଭାଜନ ଶବ୍ଦର ପରିବର୍ତ୍ତରେ ସେ ବ୍ୟବହାର କରିଅଛନ୍ତି । ପ୍ରାଚୀନ କବିମାନଙ୍କ ଲେଖାରେ ଏବଂ ଲୋକ ସାଧାରଣଙ୍କ କଥୋପକଥନରେ ଭାର୍ଜନ ଶବ୍ଦର ଅବାଧ ବ୍ୟବହାର ଦେଖାଯାଏ । ଯେଉଁମାନଙ୍କର ଦେଶୀୟ ଭାଷା ପ୍ରତି ଆସ୍ଥା ଥାଏ, ଅପିଚ ଯେଉଁମାନେ ଦେଶୀୟ ଭାଷାର ସୃଷ୍ଟିକ୍ରମକୁ ବୁଝି ପାରିଅଛନ୍ତି, ସେମାନେ ଭାଜନ ଶବ୍ଦକୁ ଯେପରି, ଭାର୍ଜନ ଶବ୍ଦକୁ ମଧ୍ୟ ସେହିପରି ସାଦର ଦୃଷ୍ଟିରେ ଦେଖିବେ ।

ଦେଶଜ ଓ ବୈଦେଶିକ ଶବ୍ଦମାନଙ୍କରେ ପ୍ରାଦେଶିକ ଉଚ୍ଚାରଣର ଅନୁଗତ ଜକାର ବା ଯକାର, ଶକାର ବା ସକାର କିମ୍ବା ଷକାର ପ୍ରଭୃତି ବର୍ଣ୍ଣ ଯାହାକି ଓଡ଼ିଆଙ୍କ ମୁଖରେ ଉଚ୍ଚାରିତ ହୋଇଥାଏ, ତାହା ଲିଖିତ ଭାଷାରେ ବିନ୍ୟସ୍ତ କରିବା ଉଚିତ । କାରଣ ସେ ସବୁର ତାଦୃଶ ଭିନ୍ନ ଉଚ୍ଚାରଣମାନ କୌଣସି ପ୍ରକାରେ ନିୟମିତ ବା ଦମିତ ହେଇ ନ ପାରେ । ସେଭଳି ଶବ୍ଦମାନଙ୍କର ଏପରି କୌଣସି ମୂଳ ପ୍ରକୃତି ଶବ୍ଦ ନାହିଁ ଯେ ତଦନୁସାରେ ତଦୀୟ ବର୍ଣ୍ଣମାନ ନିୟମିତ ହେବ । ତାଦୃଶ ଦେଶୀୟ ଶବ୍ଦମାନଙ୍କର ନିୟାମକ କେବଳ ଦେଶୀୟ ଲୋକଙ୍କ ମୁଖଯନ୍ତ୍ର । କିନ୍ତୁ ତଦ୍ଭବ ଶବ୍ଦମାନଙ୍କ ସମ୍ବନ୍ଧେ ଉପରେ ସୂଚିତ ବର୍ଣ୍ଣମାନଙ୍କର ନିୟମ

ଧାର୍ଯ୍ୟ ହେବା ସଙ୍ଗତ ଓ ସମୁଚିତ । ସେହି ନିୟମମାନ ସେହି ସେହି ଶବ୍ଦର ମୂଳ ପ୍ରକୃତି ସଂସ୍କୃତ କିମ୍ବା ପ୍ରାକୃତ ପଦର ଓ ଶିକ୍ଷିତ ସମାଜରେ ସମୁଚ୍ଚାରିତ ବର୍ଣ୍ଣସଂସ୍ଥିତିର ଅନୁସରଣରେ କରିବାକୁ ହୁଏ । ଏଥିରେ ଯେ ଏକ ଶବ୍ଦରେ ଅନେକ ରୂପ ଅବଶ୍ୟମ୍ଭାବୀ, ତାହା ସାମାନ୍ୟ ଅନୁଶୀଳନରେ ଜଣାଯାଏ । ଶବ୍ଦମାନଙ୍କର ଏଭଳି ରୂପବାହୁଲ୍ୟର ସଙ୍ଗତି ଓ ସମୀଚୀନତା ନିମନ୍ତେ ଲିଖିତ ଭାଷା ରାଜ୍ୟରେ ଏବଂ ଲୋକ ମୁଖ ବ୍ୟବହାରରେ ଅନୁସନ୍ଧାନ କଲେ ସନ୍ଦେହ ଦୂର ହୋଇଯିବ ।...

କେହି କେହି କହନ୍ତି, ଉଚ୍ଚାରଣ ହିଁ ଭାଷାର ଶୁଦ୍ଧି ବା ଅଶୁଦ୍ଧିର ନିୟାମକ ନୁହେଁ । ତାହାହେଲେ ଶବ୍ଦମାନଙ୍କର ଲିପିକରଣ ନିତାନ୍ତ ଦୁର୍ଘଟ ହୋଇ ଉଠିବ; ଯେହେତୁ ପ୍ରତ୍ୟେକ ଭାଷାରେ ଶିକ୍ଷିତ ଓ ଅଶିକ୍ଷିତ ସାଧାରଣ ଭେଦରେ ଉଚ୍ଚାରଣ ଦୁଇ ପ୍ରକାର । କିନ୍ତୁ ତେବେ ଆଉ କାହାକୁ ଧରି କେଉଁ ନିୟମ ଅନୁସାରେ ଶବ୍ଦମାନଙ୍କର ଶୁଦ୍ଧାଶୁଦ୍ଧତା ସ୍ଥିର କରାଯିବ, ତାହା ସେମାନେ କହିପାରନ୍ତି ନାହିଁ । କେବଳ ଆମ୍ଭମାନଙ୍କର ଭାଷା ନୁହେଁ, ଯେ କୌଣସି ଭାଷା ହେଉ, ଉଚ୍ଚାରଣ ଅନୁସାରେ ବର୍ଣ୍ଣବିନ୍ୟାସ କରିବାରେ କୁତ୍ରାପି କିଛି ଦୁର୍ଘଟଣା ଦେଖାଯାଏ ନାହିଁ । ପ୍ରତ୍ୟୁତ ତାହା ସୁଗମ । ଭାଷାର ଲିପିକରଣ ସମୟରେ ହୁଏତ ଉଚ୍ଚାରଣ ଅନୁସାରେ ବର୍ଣ୍ଣବିନ୍ୟାସ କରାଯାଏ, ନୁହେତ କରଣସିଦ୍ଧ ବର୍ଣ୍ଣାବଳୀ ବିନ୍ୟାସ କରି ଯେଉଁଠି ତାର ବିଲକ୍ଷଣ ହେତୁ ଉଚ୍ଚାରଣ ଅସଙ୍ଗତ ଓ ବ୍ୟବହାରବିରୁଦ୍ଧ ଶୁଣାଯାଏ, ତାକୁ ପରିବର୍ତ୍ତିତ ଓ ସଂସ୍କାରଶୁଦ୍ଧ କରିବାକୁ ହୁଏ । ଏହାହିଁ ଲିଖିତ ଭାଷାର ପରିଶୁଦ୍ଧିକରଣର କ୍ରମ । ଯଥାଯଥ ବର୍ଣ୍ଣବିନ୍ୟାସ ହେଲେ ଭାଷା ଶୁଦ୍ଧ ଏବଂ ଅଯଥା ବର୍ଣ୍ଣବିନ୍ୟାସରେ ଭାଷା ଅଶୁଦ୍ଧ ହୁଏ । ମୁଖରେ ଏକ ପ୍ରକାର ଉଚ୍ଚାରଣ କରି ଅନ୍ୟପ୍ରକାର ଲେଖିବା ବଡ଼ ବିଡ଼ମ୍ବନା । ଏହା ସର୍ବଭାଷାବିତ୍‌ମାନଙ୍କର ମତ ।

ପ୍ରକୃତରେ ପ୍ରଥମେ ମୂଳ ଶବ୍ଦମାନ କେବଳ ଅଶିକ୍ଷିତଙ୍କ ମୁଖରେ ବିକୃତି ପାଇ ତଦ୍ଭବ ଶବ୍ଦରେ ପରିଣତ ହୋଇ ଆସିଅଛି । ସେଗୁଡ଼ିକର ଆଦି ଜନ୍ମସ୍ଥାନ ଅଶିକ୍ଷିତଙ୍କ ମୁଖଯନ୍ତ୍ର ବୋଲି କୁହାଯାଇପାରେ । ଅଶିକ୍ଷିତମାନେ ସଂସ୍କୃତ ଶବ୍ଦର ଯଥାଯଥ ଉଚ୍ଚାରଣ କରି ନ ପାରି ଯେଉଁ ଉଚ୍ଚାରଣ ବ୍ୟତିକ୍ରମ ବା ବିକୃତୋଚ୍ଚାରଣ କରିଥାଆନ୍ତି, ତଦନୁସାରେ ତଦ୍ଭବ ଶବ୍ଦ ଗଠିତ ହୁଏ । ତା'ପରେ ସେହି ଶବ୍ଦ ଭାଷାରେ ପ୍ରବେଶ କରେ ଏବଂ ଶିକ୍ଷିତ ସମାଜରେ କ୍ରମେ ଗୃହୀତ ହୁଏ ।...

ଥରେ ଏହି ଅଞ୍ଚଳର ସ୍କୁଲ ବିଭାଗୀୟ ଇନ୍‌ସପେକ୍ଟର ମହୋଦୟଙ୍କ ସହିତ ଭାଷା ସମ୍ବନ୍ଧେ ଆଳାପ କଲା ସମୟରେ ସେ ପଚାରିଥିଲେ – ଆପଣମାନଙ୍କ ଓଡ଼ିଆ ଭାଷା କଟକୀ ଓ ଗଞ୍ଜାମୀ ଭେଦରେ ଦୁଇପ୍ରକାର ହୁଏ କି ? ମୁଁ ତାର ଉତ୍ତରସ୍ୱରୂପ – କହିଥିଲି, ତାହା ଯଥାର୍ଥ ନୁହେଁ । ତଥାପି କେହି କେହି ଜ୍ଞାନଲବ-ଦୁର୍ବିଦଗ୍ଧ ସେହି ଭ୍ରାନ୍ତ ଧାରଣାରେ ପଡ଼ିଅଛନ୍ତି । ଇନ୍‌ସପେକ୍ଟର ମହୋଦୟ ସ୍ମିତ ପ୍ରକାଶପୂର୍ବକ କହିଲେ, "ହଁ" ସେଭଳି ଲୋକେ

ତ ମୋତେ ତାହା କହୁଥିଲେ । ସେଭଳି ଲୋକେ ଭାଷା ବିଚାରରେ ବୃଥା ଅଭିମାନ କରି ବାକ୍‌ବ୍ୟୟ କରିବା ଯେ କେବଳ ବିଡ଼ମ୍ବନାର କଥା, ଏତିକିମାତ୍ର ନୁହେଁ ତଦ୍ୱାରା ସମୟରେ ଜାତିର ଘୋର କ୍ଷତି ହେବାର ସମ୍ଭାବନା । ଦେଖନ୍ତୁ, ଗୋଦାବରୀ ଓ କୃଷ୍ଣା ଜିଲ୍ଲା ପ୍ରଭୃତି ଦକ୍ଷିଣ ଅଞ୍ଚଳର ତେଲଙ୍ଗମାନଙ୍କ ଅପେକ୍ଷା ଗଞ୍ଜାମୀ ତେଲଙ୍ଗମାନଙ୍କ ଉଚ୍ଚାରଣଧ୍ୱନି ଓ ବ୍ୟବହାରରୀତିରେ କିଞ୍ଚିତ୍ ବୈଷମ୍ୟ ଅଛି । ଏହା ବୋଲି ତେଲଙ୍ଗ ଭାଷା ଦୁଇ ପ୍ରକାର ନୁହେଁ ତ । ଅତଏବ କଟକୀ ଗଞ୍ଜାମୀ ଭେଦରେ ଓଡ଼ିଆ ଭାଷା ଦୁଇ ପ୍ରକାର ବୋଲିବା ଯେପରି ଅସଙ୍ଗତ, ଭାଷାରେ ଶିକ୍ଷିତ, ଅଶିକ୍ଷିତ ଭେଦରେ ଉଚ୍ଚାରଣ ଦ୍ୱିବିଧ କହିବା ମଧ୍ୟ ସେହିପରି ।"

ତେବେ ପ୍ରଥମତଃ ଉଚ୍ଚାରଣ ପରିପନ୍ଥିମାନଙ୍କ ଉଦ୍ଧୃତ ପଂକ୍ତିଟିର ଟିକିଏ ବ୍ୟାଖ୍ୟା କରିବା ଆବଶ୍ୟକ । ଦେଶୀୟ ଭାଷାମାନଙ୍କରେ ପ୍ରଚଳିତ ସଂସ୍କୃତ ବା ତତ୍ସମ ଶବ୍ଦଗୁଡ଼ିକ ଶିକ୍ଷିତ ବୋଲ, ଅଶିକ୍ଷିତ ବୋଲ ସର୍ବସାଧାରଣଙ୍କ ଯେକୌଣସି ପ୍ରକାର ଉଚ୍ଚାରଣର ଅନୁଗତ ନୁହେଁ । ସେ ସବୁର ଉଚ୍ଚାରଣରେ କାହାରି ଯଥେଚ୍ଛାଚାର ସ୍ୱାଧୀନତା ନାହିଁ । ପ୍ରତ୍ୟୁତ ଉଚ୍ଚାରଣହିଁ ସଂସ୍କୃତ ଶବ୍ଦରୂପର ଏକାନ୍ତ ଅନୁଗତ । ସଂସ୍କୃତରେ ବିନ୍ୟସ୍ତ ବର୍ଣ୍ଣଗୁଡ଼ିକ ଯଥାଯଥ ଶାସ୍ତ୍ରସମ୍ମତ ଉଚ୍ଚାରିତ ହେଲେ ଉଚ୍ଚାରଣ ପରିଶୁଦ୍ଧ ବୋଲିବାକୁ ହେବ । ତାହାର ଅଣୁମାତ୍ର ବ୍ୟତିକ୍ରମରେ ଉଚ୍ଚାରଣ ଅଶୁଦ୍ଧ ହୋଇପଡ଼େ । ଅତଏବ ଉଚ୍ଚାରଣାନୁସାରେ ସଂସ୍କୃତ ଶବ୍ଦର କୌଣସି ଅଶୁଦ୍ଧି ଘଟି ନପାରେ । କିନ୍ତୁ ସଂସ୍କୃତ ଲିପିର କ୍ରମକୁ ଶରଣ କରି ଉଚ୍ଚାରଣ ସଂସ୍କର୍ତ୍ତବ୍ୟ । ସଂସ୍କୃତର ଶବ୍ଦ ଓ ପଦମାନ ଆନଖଶିଖ ଏପରି ପ୍ରଗାଢ଼ ନିୟମବଦ୍ଧ ଯେ ତାର ନିଜ ରୂପକୁ ଉଚ୍ଚାରଣ ବା ଅନ୍ୟ କୌଣସି ପ୍ରକାରେ କିଛିହିଁ ଅନ୍ୟଥା କରାଯାଇ ନପାରେ । ତହିଁରେ ନିର୍ଦ୍ଦିଷ୍ଟ ନିୟମ ଅଣୁମାତ୍ର ଅନ୍ୟଥା ହେଲେ ଅଶୁଦ୍ଧତା ସ୍ପଷ୍ଟତଃ ଜଣାଯାଏ ଏବଂ ଧ୍ୱନିର ଅସାମଞ୍ଜସ୍ୟ ହଠାତ୍ କର୍ଣ୍ଣପଟହରେ ଆଘାତ କରେ । ତେବେ ତଦ୍ଭବ ଓ ଦେଶୀୟ ଶବ୍ଦର କ୍ରମ କିପରି, ତାହା ବିଚାର କରାଯାଉ । ପୂର୍ବେ କୁହାଯାଇଅଛି, ତଦ୍ଭବ ଶବ୍ଦମାନଙ୍କ ସୃଷ୍ଟିର ପ୍ରଧାନ ନିଦାନ ବିକୃତିପ୍ରକ୍ରିୟା । ବିକୃତିପ୍ରକ୍ରିୟା ମଧ୍ୟରେ ବିଭିନ୍ନ ଉଚ୍ଚାରଣର ପ୍ରାଧାନ୍ୟ ଆତ୍ମଭୂତ ହୋଇ ରହିଅଛି । ଯେକୌଣସି ପ୍ରକାର ସଂସ୍କୃତ ଶବ୍ଦରୁ ଯେ କୌଣସି ପ୍ରକାର ତଦ୍ଭବ ଶବ୍ଦ ସୃଷ୍ଟି ହୋଇଅଛି । ତାହା କେବଳ ଉଚ୍ଚାରଣ ବୈଷମ୍ୟରୁ ଘଟିଅଛି । ଅତଏବ ପ୍ରାଦେଶିକ ଉଚ୍ଚାରଣାନୁସାରେ କେବଳ ଯେ ମୂଳ ଶବ୍ଦର ବିକୃତି, ତାହାହିଁ ତଦ୍ଭବ ଶବ୍ଦମାନଙ୍କର ନିସର୍ଗ ସର୍ଗକ୍ରିୟା ବୋଲିବାକୁ ହେବ । ତଥାପି ତାହା ନିୟମାନୁଗତ ଏବଂ ନିୟମାନୁସାରେ ସଂସ୍କର୍ତ୍ତବ୍ୟ । ସର୍ବପ୍ରଥମେ ମୂଳଶବ୍ଦଗୁଡ଼ିକ ସମସାମୟିକ ପ୍ରାଦେଶିକ ଲୋକମାନଙ୍କ ମୁଖଯନ୍ତ୍ରାନୁସାରୀ ଉଚ୍ଚାରଣର ଅନୁପାତରେ ତଦ୍ଭବ ଶବ୍ଦରେ ପରିଣତ ହୋଇ, ପରେ ନିୟମକୁ ଅପେକ୍ଷା କରି ଚାଲିଅଛି । ଯେତେବେଳେ ଭାଷାଗତ ତଦ୍ଭବ ଶବ୍ଦମାନ ବିଭିନ୍ନ ଉଚ୍ଚାରଣର ଅନୁଗତ ହୋଇ ସୁଦ୍ଧା ନିୟମସାପେକ୍ଷ । ସେତେବେଳେ ଜଡ଼ ବାତୁଳାଦି ଓ ନିତାନ୍ତ ଅଶିକ୍ଷିତମାନଙ୍କ ବିଲକ୍ଷଣ ଉଚ୍ଚାରଣ ଅଗ୍ରାହ୍ୟ ଓ ସଂସ୍କର୍ତ୍ତବ୍ୟ - ଏହା କହିବା

ବାହୁଲ୍ୟମାତ୍ର । ବର୍ତ୍ତମାନ ଓଡ଼ିଆ ଭାଷାରେ, କେବଳ ଓଡ଼ିଆ କାହିଁକି, ସମଗ୍ର ଦେଶୀୟ ଭାଷାମାନଙ୍କରେ ଯେତେଗୁଡ଼ିଏ ତଦ୍ଭବ ଶବ୍ଦ ବ୍ୟବହୃତ, ସେସବୁ ଏକା ବେଳକେ ସୃଷ୍ଟ ଏହା କୁହାଯାଇ ନ ପାରେ - କହିବା ମଧ୍ୟ ସଙ୍ଗତ ନୁହେଁ । ପ୍ରଥମେ ଦେଶୀୟ ଭାଷାରେ ସାମୟିକ ବ୍ୟବହାରର ଆବଶ୍ୟକତା ଅନୁସାରେ କେତେଗୁଡ଼ିଏ ତଦ୍ଭବ ଶବ୍ଦ ବ୍ୟବହୃତ ଥିଲା । ତାପରେ ତଦନୁକ୍ରମରେ ଆଉଗୁଡ଼ିଏ ସୃଷ୍ଟ ହେଲା ଏବଂ ଅଦ୍ୟାପି ପୂର୍ବ ଅନୁସୃତ ନିୟମକୁ ଧରି ତାଦୃଶ ତଦ୍ଭବ ଶବ୍ଦମାନଙ୍କର ସୃଷ୍ଟି ହେଉଅଛି ଓ ଆହୁରି ମଧ୍ୟ ଭବିଷ୍ୟତରେ ହେବ ।

ତଦ୍ଭବ ଶବ୍ଦମାନଙ୍କରେ ପ୍ରାଦେଶିକ ଉଚ୍ଚାରଣର ପ୍ରାଧାନ୍ୟ ରହିଥିବାରୁ ଅନେକ ସ୍ଥଳରେ କେବଳ ଗୋଟିଏ ଶବ୍ଦର ଦୁଇ ତିନିଗୋଟି ରୂପର ବ୍ୟବହାର ଘଟୁଅଛି । ଏଥିରେ ବର୍ଣ୍ଣମାନଙ୍କର ଯେଉଁ ପରିଣତି ବା ପରିବର୍ତ୍ତନ ଅର୍ଥାତ୍ ବର୍ଣ୍ଣାନ୍ତରପ୍ରାପ୍ତି ଘଟେ, ତଦ୍ଦ୍ୱାରା ସ୍ପଷ୍ଟ ଜଣାଯାଏ ଯେ ପ୍ରାଦେଶିକ ଉଚ୍ଚାରଣର ପ୍ରାଧାନ୍ୟ ଥିବାରୁ କେବଳ ସେହି ସେହି ଲୋକମାନଙ୍କ ମୁଖଯନ୍ତ୍ରର ଅନୁକୂଳ ବର୍ଣ୍ଣ ଗୃହୀତ ହେଉଅଛି । ଦେଶଜ ଶବ୍ଦମାନଙ୍କରେ ପ୍ରାଦେଶିକ ଉଚ୍ଚାରଣର ସମ୍ପୂର୍ଣ୍ଣ ଆଧିପତ୍ୟ ରହିଅଛି । ଦେଶ୍ୟ ଶବ୍ଦମାନଙ୍କର ବର୍ଣ୍ଣବିନ୍ୟାସ ସମ୍ବନ୍ଧେ ଆଉ କୌଣସି ପ୍ରକାର ବିଶିଷ୍ଟ ନିୟମ ନାହିଁ । ସୁତରାଂ ଉଚ୍ଚାରଣପଦ୍ଧତି କେବଳ ଅନୁସରଣୀୟ । ସ୍ଥୂଳରେ ତତ୍ସମ ବା ବିଶୁଦ୍ଧ ସଂସ୍କୃତ ଶବ୍ଦମାନଙ୍କୁ ଛାଡ଼ିଦେଲେ ପ୍ରାଦେଶିକ ଭାଷାରେ ପ୍ରଚଳିତ ତଦ୍ଭବ ଓ ଦେଶଜ ଶବ୍ଦର ରୂପ ନିର୍ଦ୍ଦେଶ ନିମନ୍ତେ ଲୋକସାଧାରଣଙ୍କ ଉଚ୍ଚାରଣ ଉପରେ ନିର୍ଭର କରିବାକୁ ହେବ ।

ମାନବଭାଷାର ଜୀବନ ଅଛି । ତହିଁରେ ଶବ୍ଦମାନଙ୍କର ପରିବର୍ତ୍ତନ, ପରିବର୍ଦ୍ଧନ ଓ ରୂପାନ୍ତର ଆଦି ପ୍ରକ୍ରିୟାର ନିୟମ ଏବଂ କ୍ରମ ଅଛି । ପ୍ରାକୃତିକ ପ୍ରକ୍ରିୟାମାନ ପର୍ଯ୍ୟବେକ୍ଷଣ କରି ତହିଁରୁ ଯେପରି ଜଡ଼ ବିଜ୍ଞାନର କୌଣସି ଏକ ସାଧାରଣ ନିୟମ ନିରୂପଣ କରିବାକୁ ହୁଏ, ଭାଷାରାଜ୍ୟରେ ସେହିପରି ଲୋକସାଧାରଣଙ୍କ ସ୍ୱରଯନ୍ତ୍ରର ସ୍ୱାଭାବିକ ପ୍ରକ୍ରିୟାରେ ଶବ୍ଦମାନଙ୍କର ଯେ ସ୍ୱାଭାବିକ ବୈଲକ୍ଷଣ୍ୟ ଘଟିଥାଏ, ତହିଁରୁ ଭାଷାବିଜ୍ଞାନର ନିୟମମାନ ଆବିଷ୍କାର କରାଯାଇପାରେ । ତୁମ୍ଭେ ଯେଡ଼େ ପଣ୍ଡିତ ହୁଅ, କୌଣସି ମୂଳ ଶବ୍ଦରୂପର ରକ୍ଷାଲାଗି ଯେଡ଼େ ତତ୍ପର ହୁଅ କିମ୍ବା ତୁମ୍ଭ ନିରୂପିତ ଉଚ୍ଚାରଣ ତୁମ୍ଭ ବିଚାରରେ ଯେତେ ପରିଶୁଦ୍ଧ ହେଉ ପଛକେ ଲୋକସାଧାରଣଙ୍କ ମୁଖନିଃସୃତ ଭାଷା-ବିଜ୍ଞାନର ନିୟମ ତାହା ଗ୍ରହଣ କରିବ ନାହିଁ । ବିଜ୍ଞାନର ଅଲଙ୍ଘ୍ୟ ନିୟମ ନିକଟରେ ବ୍ୟକ୍ତିବିଶେଷର ବା ଦଳବିଶେଷର ଜୋର ଜବରଦସ୍ତି ଚଳିବ ନାହିଁ ।



୮

# ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା

## ଗୋପାଳଚନ୍ଦ୍ର ପ୍ରହରାଜ

ଏହି ପ୍ରବନ୍ଧର କଅଣ ନାମ ଦେବି, ଏହା ମୁଁ ସ୍ଥିର କରି ନ ପାରି ଆପାତତଃ ଉପର୍ଯ୍ୟୁକ୍ତ ନାମଦେଇ ଏ ପ୍ରସଙ୍ଗ ଆରମ୍ଭ କରିଅଛି । ନବ୍ୟ ସଭ୍ୟତା ପ୍ରଭାବରେ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟ ପରି ଓଡ଼ିଆ ସାହିତ୍ୟ ମଧ୍ୟ ବର୍ତ୍ତମାନ ପ୍ରଗତିପଥରେ ପଥିକ ହୋଇଅଛି । ଲୋକଙ୍କର ଓ ଶିକ୍ଷିତ ଯୁବକମାନଙ୍କର ସାହିତ୍ୟ ଆଡ଼କୁ ଦୃଷ୍ଟି ପଡ଼ିଅଛି । ଦେଶରେ ଗୁଡ଼ିଏ ଦୈନିକ ଓ ସାପ୍ତାହିକ ସମ୍ବାଦପତ୍ର ଏବଂ ମାସିକ ଓ ସାମୟିକ ପତ୍ରିକା ପ୍ରକାଶ ହେବାଦ୍ୱାରା ଲେଖକମାନେ ତହିଁରେ ପ୍ରବନ୍ଧାଦି ଲେଖିବାପାଇଁ କ୍ଷେତ୍ର ପାଉଅଛନ୍ତି । ପୂର୍ବ ଅପେକ୍ଷା ଦେଶରେ ପାଠକ ସଂଖ୍ୟା ବଢ଼ିଲାଣି । ବର୍ତ୍ତମାନ ଆଶାର ଓ ଆନନ୍ଦର ବିଷୟ ଏହି କି, ପାଶ୍ଚାତ୍ୟ ଶିକ୍ଷା ଭାଷାରେ ଦୀକ୍ଷିତ ଅନେକଗୁଡ଼ିଏ ଯୁବକ ଓ କେତେଗୁଡ଼ିଏ ଲଳନା ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ଲେଖନୀ ଚାଳନ କରୁଅଛନ୍ତି । କାଳକ୍ରମେ ଓଡ଼ିଶାରେ ସ୍ତ୍ରୀ ଶିକ୍ଷା ପ୍ରସାର ଲାଭ କରୁଅଛି । ଏ ସବୁ ଦେଖି ସ୍ୱଭାବତଃ ମନୁଷ୍ୟ ଆଶା ବିସ୍ଫାରିତ ନୟନରେ ଓଡ଼ିଆଭାଷାର ଓ ସାହିତ୍ୟର ଉନ୍ନତି ଦେଖିବାକୁ ଉଦ୍‌ଗ୍ରୀବ ହୁଏ । କିନ୍ତୁ ସାହିତ୍ୟକ୍ଷେତ୍ରରେ ଲେଖକ ଲେଖିକାମାନଙ୍କ ସଂଖ୍ୟା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଉପରେ ଯେଉଁ ଦାୟିତ୍ୱ ପୂର୍ବ ଅପେକ୍ଷା ଗୁରୁତରଭାବରେ ନ୍ୟସ୍ତ ହେଉଅଛି ତାହା ମଧ୍ୟ ଚିନ୍ତା କରିବା ଆମ୍ଭମାନଙ୍କ ଉଚିତ ।

ଭାରତର ପ୍ରାଦେଶିକ ଭାଷା (vernacular) ମାନଙ୍କ ମଧ୍ୟରେ ଓଡ଼ିଆ ଗୋଟିଏ ପୁରାତନ ଓ ଶବ୍ଦବହୁଳ ଭାଷା ଅଟେ । ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷା ନୁହେଁ ବା ଓଡ଼ିଆ ଭାଷାର ବୈଶିଷ୍ଟ୍ୟ, ବିଚିତ୍ରତା ବା ଶବ୍ଦ-ବିଭବ ନାହିଁ, ଏକଥା କହି ଓଡ଼ିଆ ଭାଷାକୁ ହସରେ ଉଡ଼ାଇ ଦେବାଦିନ ଆଉନାହିଁ ।

ପରନ୍ତୁ ପ୍ରତିବେଶିମାନଙ୍କ ଭାଷା (ଯଥା ବଙ୍ଗଳା, ହିନ୍ଦି) ତୁଳନାରେ ଓଡ଼ିଆ ଭାଷାରେ କେତେଗୁଡ଼ିଏ ବୈଶିଷ୍ଟ୍ୟ ଆମ୍ଭେମାନେ ଲକ୍ଷ କରୁଁ । ହିନ୍ଦି ଓ ବଙ୍ଗଳା ଭାଷାରେ ଶବ୍ଦ ଶେଷରେ ଥିବା ଅକାରାନ୍ତ ବର୍ଣ୍ଣର ଉଚ୍ଚାରଣ ବିଷୟରେ ବିଭ୍ରାଟ ଦେଖାଯାଏ । ହିନ୍ଦୀରେ ଓ ବଙ୍ଗଳାରେ

ଲେଖାଯାଏ ପାନ, କିନ୍ତୁ ଉଚ୍ଚାରଣ କରାଯାଏ ପାନ୍ । ପୁନଶ୍ଚ ଏହି ନିୟମ ତଦ୍ଭବ ଭାଷାରେ ସର୍ବତ୍ର ପାଳିତ ହୁଏ ନାହିଁ । ବଙ୍ଗଳାରେ "ଆମି କାଲ ଏକଟି କାଲ କୁକୁର ଦେଖିଲାମ" ଲେଖାଯାଏ, କିନ୍ତୁ ଏ ଲେଖାକୁ "ଆମି କାଲ୍ ଏକ୍‌ଟି କାଲ କୁକୁର ଦେଖ୍‌ଲାମ୍" ପଢ଼ିବାକୁ ହୁଏ । ଏ ଲିଖିତ ବାକ୍ୟରେ ଥିବା ପ୍ରଥମ 'କାଲ୍' ଶବ୍ଦ ଓ ଦ୍ୱିତୀୟ 'କାଲ' ଶବ୍ଦର ଉଚ୍ଚାରଣ ପାର୍ଥକ୍ୟବୋଧକ କୌଣସି ଚିହ୍ନ ଦିଆଯାଏ ନାହିଁ । ବଙ୍ଗଳାରେ କହନ୍ତି "ଖାଓଆ" କିନ୍ତୁ ଲେଖନ୍ତି "ଖାଓୟା"; ଲେଖିବେ 'ବିଶ୍ୱାସ' ଉଚ୍ଚାରଣ କରିଲେ 'ବିଶସାସ' । ହିନ୍ଦି ଭାଷାରେ ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁର ବ୍ୟବହାରରେ ଓ ଉଚ୍ଚାରଣରେ ବିଭ୍ରାଟ ଦେଖାଯାଏ । ହିନ୍ଦୀରେ ଲେଖିବେ "ହମାରେ ଘରମେ ଚାରୋଁ ବଚେଁ ପାଠ ପଢ଼ତେ ହୈଂ" ଏ ବାକ୍ୟକୁ ପଢ଼ିବେ 'ହମାରେ ଘର୍‌ମେଁ ଚାରୋଁ ବଚ୍ଚେଁ ପାଠ୍ ପଢ଼୍‌ତେ ହେଁ ।" ହିନ୍ଦୀରେ ଓ ବଙ୍ଗଳାରେ "ଳ" ଉଚ୍ଚାରଣର ଓ "ଣ" ଉଚ୍ଚାରଣର ଅସ୍ତିତ୍ୱ ନାହିଁ । ହିନ୍ଦୀରେ ଅନ୍ତସ୍ଥ ଯ ର ଓ ୟ ର ପୃଥକ୍ ଉଚ୍ଚାରଣ ଲକ୍ଷିତ ହୁଏନାହିଁ । ହିନ୍ଦିଭାଷୀମାନେ ଅନ୍ତସ୍ଥ ଯ କୁ ୟ ଉଚ୍ଚାରଣ କରନ୍ତି । ବୈଦେଶିକ ଓ ବିଶେଷତଃ ଇଂରାଜୀ ଭାଷାରୁ ଆଗତ କେତେଗୁଡ଼ିଏ ଉଚ୍ଚାରଣ ବଙ୍ଗଳାରେ ଓ ହିନ୍ଦିରେ ବିକୃତଭାବରେ ଲେଖାଯାଏ । ଇଂରାଜୀର "ମ୍ୟାଜିକ୍" "ମ୍ୟାନ୍", "ଇଂଲଣ୍ଡ୍", "ମ୍ୟାନେଜର୍" ହିନ୍ଦୀରେ ଲେଖାଯାଏ "ମୈଜିକ", "ମୈନ୍", "ଇଂଲଣ୍ଡ", "ମୈନେଜର"; ବଙ୍ଗଳାରେ ଲେଖାଯାଏ "ମ୍ୟା(ମେ)ଜିକ୍", "ମ୍ୟା(ମେ)ନ୍", "ଇଂଲଣ୍ଡ", "ମ୍ୟା(ମେ) ନେଜର" । ଓଡ଼ିଆରେ ପୁରୁଣାକାଳିଆ ପଣ୍ଡିତମାନଙ୍କ ମୁହଁରୁ ଆଜି ମଧ୍ୟ 'ଜ' ଓ 'ଯ' ଉଚ୍ଚାରଣ ଏବଂ 'ସ', 'ଶ' ଉଚ୍ଚାରଣର ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଯଥା ଶନିର ଉଚ୍ଚାରଣ ସ୍ୟନି, ଶଙ୍କାର ସ୍ୟଙ୍କା, ଯାପନର ଜ୍ୟାପନ, ଯକ୍ଷର ଜ୍ୟକ୍ଷ, ଯଦିର ଜ୍ୟଦି, ଉଚ୍ଚାରଣ ଏଥିର ଉଦାହରଣ । ଏସବୁ ଉଲ୍ଲେଖ କରି ମୁଁ ତଦ୍ଭବ ଭାଷାର ନିକୃଷ୍ଟତା ପ୍ରତିପାଦିତ କରିବାକୁ ବସିନାହିଁ । ଏସବୁ ଉଦାହରଣଦ୍ୱାରା ମୁଁ ଓଡ଼ିଆ ଭାଷାର ବିଶିଷ୍ଟତା ପ୍ରତି ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଅଛି । ଓଡ଼ିଆ ଭାଷାରେ ଏସବୁ ଦୋଷ ପରିଲକ୍ଷିତ ହୁଏନାହିଁ । ଯେଉଁଠାରେ ଆମ୍ଭେମାନେ "ଅ" ସ୍ୱରଯୁକ୍ତ ଅକ୍ଷର ଲେଖୁଁ ସେଠାରେ ଲେଖା ଅନୁସାରେ ଉକ୍ତ ଅକ୍ଷରକୁ "ଅ"ସ୍ୱରଯୁକ୍ତ କରି ଉଚ୍ଚାରଣ କରୁ ଓ ଯେଉଁଠାରେ ହଳନ୍ତ ବର୍ଣ୍ଣ ଲେଖୁଁ ସେଠାରେ ହଳନ୍ତ ଉଚ୍ଚାରଣ କରୁଁ । ମୋର ସମସ୍ତଙ୍କଠାରେ ନିବେଦନ ଏହିକି, ଆମ ମାତୃଭାଷାର ଏହି ବୈଶିଷ୍ଟ୍ୟକୁ ଆମ୍ଭେମାନେ ଛାଡ଼ିବା ନାହିଁ ଓ ଯଥାଶକ୍ତି ଉଚ୍ଚାରଣ ସଙ୍ଗେ ଲେଖାର ସମତା ରକ୍ଷା କରିବା । ଅଧିକାଂଶ ହଳନ୍ତ ବୈଦେଶିକ କିନ୍ତୁ ଲେଖୁଥାଇଁ ଅନ୍ୟ ପ୍ରକାର; ଯଥା- କଲେଜ୍ ଲେଖୁଥାଇଁ କଲେଜ, ହେଡ଼ମାଷ୍ଟର, ପ୍ରୋଫେସର ଓ ମାଜିଷ୍ଟ୍ରେଟ । ଏହିପରି ଓଡ଼ିଆରେ ନାମବାଚକ ଶବ୍ଦମାନଙ୍କୁ ଅକାରାନ୍ତ କରି ଉଚ୍ଚାରଣ କରୁଥାଇଁ, କିନ୍ତୁ ଇଂରାଜୀରେ ଲେଖିଲା ବେଳକୁ ଲେଖୁଥାଇଁ ହଳନ୍ତ କରି- ଯଥା "ପଣ୍ଡିତ ରାମଶଙ୍କର"କୁ ଇଂରାଜୀରେ ଲେଖୁଥାଇଁ Pandit Ramsankar ପଣ୍ଡିତ୍ ରାମଶଙ୍କର୍ । ଏହି ପ୍ରସଙ୍ଗରେ

ବୋଲାଯାଇପାରେ ଯେ, ବିଦେଶାଗତ ବହୁ ଶବ୍ଦକୁ ଆମ୍ଭେମାନେ ମୁହଁରେ ହଳନ୍ତ ଉଚ୍ଚାରଣ କରୁଥିଲେ ହେଁ ଲେଖାରେ ହଳନ୍ତ ଚିହ୍ନ ରଖୁ ନ ଥାଇଁ, ଯଥା- ଠିକ୍, କମ୍, ବେଶ୍, ଭୁଲ୍, ଦାମ୍, ଖୁବ୍ । ଓଡ଼ିଆ ଭାଷାରେ ହଳନ୍ତ ଶବ୍ଦମାନଙ୍କର ବିଭକ୍ତ୍ୟନ୍ତ ଆକାରରେ ହଳନ୍ତ ବର୍ଜନ କରାଯିବା ବ୍ୟବହାରସିଦ୍ଧ ହେଲାଣି । ଆମ୍ଭେମାନେ ନାମ ଉଚ୍ଚାରଣ କରୁଥାଇଁ କୃଷ୍ଣ, ଲେଖୁଥାଇଁ Krishna କ୍ରିଷ୍ଣ । ଇଂରାଜୀ ଅକ୍ଷରରେ ଓଡ଼ିଆ ନାମମାନଙ୍କୁ ଉଚ୍ଚାରଣ ଅନୁସାରେ ଲେଖିଲାବେଳକୁ ଅନେକଗୁଡ଼ିଏ ଅସୁବିଧା ଅଛି । ଆଜି ପର୍ଯ୍ୟନ୍ତ ଅକାରାନ୍ତ ହୋଇ ଉଚ୍ଚାରିତ ନାମମାନ ସରକାରଙ୍କ ସିରସ୍ତାରେ, ସ୍କୁଲ୍, କଲେଜ୍ ଓ ବିଶ୍ୱବିଦ୍ୟାଳୟରେ ହଳନ୍ତ ଉଚ୍ଚାରଣ ଅନୁସାରେ ଇଂରାଜୀରେ ଲେଖା ହୋଇ ସାରିଲାଣି ଓ ତହିଁ ଉପରେ ସରକାର ଛାପାମାରି ମଞ୍ଜୁର କଲେଣି । ବର୍ତ୍ତମାନ ସେମାନେ ବଦଳାଇବାକୁ ପ୍ରସ୍ତାବ କରିବା ଅରଣ୍ୟରୋଦନରେ ପରିଣତ ହେବ । ଓଡ଼ିଆରେ ବ୍ରାହ୍ମଣ ଶବ୍ଦକୁ ଇଂରାଜୀରେ ଲେଖୁଥାଇଁ ବ୍ରାହ୍ମିନ୍, ବ୍ରାହ୍ମ ଶବ୍ଦକୁ ଇଂରାଜୀରେ ଲେଖୁଥାଇଁ ବ୍ରାହ୍ମୋ ।

ସଂସ୍କୃତ ସଙ୍ଗେ ଓଡ଼ିଆ ଭାଷାର ଦୃଢ଼ ସମ୍ବନ୍ଧ ଥିବା କଥା କେହି ଅସ୍ୱୀକାର କରିବେ ନାହିଁ । ଏପରି ସ୍ଥଳରେ ଅନେକ ବିଷୟରେ ସଂସ୍କୃତ ବ୍ୟାକରଣର ନିୟମମାନଙ୍କୁ ବରାବର ବର୍ଜନ କରି ଓଡ଼ିଆଭାଷା ବ୍ୟବହାର କରିବା ଉଚିତ ନୁହେଁ ବୋଲି ମୋ ମତ । ଉଦାହରଣ ସ୍ୱରୂପ ଦେଖାଯାଉ, ସଂସ୍କୃତରେ ଗୁଣବାନ୍ ପୁଲିଙ୍ଗ ଶବ୍ଦର ସ୍ତ୍ରୀଲିଙ୍ଗରୂପ ଗୁଣବତୀ ଓ କ୍ଳୀବଲିଙ୍ଗ ଗୁଣବତ୍ ଅଟେ । ଓଡ଼ିଆରେ ଆମେ ଲେଖିଲା ବେଳେ ଲେଖୁଥାଇଁ ଗୁଣବାନ୍ ପୁରୁଷ ଓ ଗୁଣବତୀ ସ୍ତ୍ରୀ, କିନ୍ତୁ ନପୁଂସକ ଲିଙ୍ଗବାଚକ ଶବ୍ଦ ଲେଖିଲାବେଳେ ଅମୁକ ଅମୁକ ଗୁଣବତ୍ ବସ୍ତୁ ନ ଲେଖି ଅମୁକ ଅମୁକ ଗୁଣବାନ ବସ୍ତୁ ବୋଲି ଲେଖୁଥାଇଁ । ସଂସ୍କୃତରେ ହସ୍ତିନ୍ ଶବ୍ଦର ପୁଲିଙ୍ଗ ହସ୍ତୀ, ସ୍ତ୍ରୀଲିଙ୍ଗ ହସ୍ତିନୀ ଅଟେ, ଓଡ଼ିଆରେ ମଧ ତାହା ଲେଖୁଥାଇଁ । ସଂସ୍କୃତରେ ହସ୍ତିନ୍ ଶବ୍ଦ ସଙ୍ଗେ ଦନ୍ତ ଶବ୍ଦଯୁକ୍ତ ହୋଇ ହସ୍ତିଦନ୍ତ ହେଉଅଛି । ଓଡ଼ିଆରେ ମୂଳ ଶବ୍ଦକୁ ହସ୍ତିନ୍ ବୋଲି ଧଇଲେ ଏହାତ ଓଡ଼ିଆ ବ୍ୟାକରଣ ହେଲାନାହିଁ । ଓଡ଼ିଆ ବ୍ୟାକରଣରେ ମୂଳଶବ୍ଦ କଅଣ କରିବା ? ଯେବେ ହସ୍ତୀ ଶବ୍ଦ ଧରିବା ତେବେ ବହୁ ବଚନରେ 'ହସ୍ତୀମାନେ' କରିବା, କିନ୍ତୁ ହସ୍ତିଗଣ ଲେଖିଲାବେଳେ ତ ହସ୍ତୀଗଣ ଲେଖିପାରିବା ନାହିଁ । ଏ କ୍ଷେତ୍ରରେକେତେ ଲେଖକ 'ହସ୍ତିମାନେ' ଲେଖୁଅଛନ୍ତି ଓ କେତେକ ଲେଖକ 'ହସ୍ତୀମାନେ' ଲେଖୁଅଛନ୍ତି । ଏହିପରି ହସ୍ତିନ୍ ଶବ୍ଦର ଅପଭ୍ରଷ୍ଟ 'ହାତୀ' ଓଡ଼ିଆ ଶବ୍ଦର ଭିନ୍ନ ଭିନ୍ନ ବିଭକ୍ତ୍ୟନ୍ତ ଆକାରରେ ଓ ସମସ୍ତ ପଦରେ କେହି କେହି ଲେଖୁଛନ୍ତି ହାତିଦାନ୍ତ କେହି କେହି ଲେଖୁଛନ୍ତି ହାତୀଦାନ୍ତ । ଶଶିନ ଶବ୍ଦର ଓଡ଼ିଆରେ ଶଶୀ ମୂଳ ଶବ୍ଦ ନେଉଥାଇଁ, କିନ୍ତୁ ସଂସ୍କୃତ ଶବ୍ଦ ଲେଖିଲାବେଳେ ଶଶିକଳା, ଶଶିଭୂଷଣ ଲେଖୁଥାଇଁ । ସଂସ୍କୃତରେ ସୁନ୍ଦର ପୁଂଲିଙ୍ଗ ଓ ସୁନ୍ଦରୀ ସ୍ତ୍ରୀଲିଙ୍ଗ ଥିଲେହେଁ ଓଡ଼ିଆରେ ସୁନ୍ଦରକୁ ସ୍ତ୍ରୀଲିଙ୍ଗ ଶବ୍ଦରୂପେ ମଧ ବ୍ୟବହାର କରୁଥାଇଁ; ଏଥିଯୋଗୁଁ ଓଡ଼ିଆ ଭାଷାରେ ଏ ବିଷୟରେ କୌଣସି ଦୃଢ଼ ନିୟମ ରହୁନାହିଁ ।

ଏହାଛଡ଼ା ଗୁଡ଼ିଏ ବ୍ୟାକରଣ ବିରୁଦ୍ଧ ପ୍ରୟୋଗ ଆମ୍ଭମାନଙ୍କ ଲେଖାରେ ପରିଲକ୍ଷିତ ହୁଏ । ସରକାରଙ୍କଠାରୁ ବେଶି ଦରମା ପାଉଥିବା ଅନୁବାଦକଙ୍କ ଲେଖାରେ ଓ ପ୍ରସିଦ୍ଧ ସୁପ୍ରତିଷ୍ଠିତ ଲେଖକମାନଙ୍କ ଲେଖାରେ ମଧ୍ୟ ଆବଶ୍ୟକ ସ୍ଥଳରେ ଆବଶ୍ୟକୀୟ, ନାନା ସ୍ଥଳରେ ନାନାଦି ଏକତ୍ର ସ୍ଥଳରେ ଏକତ୍ରିତ, ବିବିଧ ସ୍ଥଳରେ ବିବିଧ ପ୍ରକାର, ଉପର୍ଯ୍ୟୁକ୍ତ ସ୍ଥଳରେ ଉପରୋକ୍ତ, ଅଧୀନ ସ୍ଥଳରେ ଅଧୀନସ୍ଥ, ଅଧୀନତାରେ ସ୍ଥଳରେ ଅଧିନରେ, ସ୍ଥଗିତ ସ୍ଥଳରେ ସ୍ଥକିତ, ଠିକ୍ ସ୍ଥଳରେ ସଠିକ୍, ଉଦୟମାନ ସ୍ଥଳରେ ଉଦୀୟମାନ, ରାଜନୀତିକ ସ୍ଥଳରେ ରାଜନୈତିକ, ଗରିମା ସ୍ଥଳରେ ଗାରିମା, ଆରକ୍ତ ସ୍ଥଳରେ ରକ୍ତିମ ପ୍ରଭୃତି ଶବ୍ଦର ପ୍ରୟୋଗ ପରିଦୃଷ୍ଟ ହୁଏ ।

ସେହିପରି ବାସ୍ତବିକ ସ୍ଥାନରେ ବାସ୍ତବିକ୍, ତିର୍ଯ୍ୟକ୍ ସ୍ଥାନରେ ତୀର୍ଯ୍ୟକ, ଅସନ୍ଦିଗ୍ଧ ବା ନିଃସନ୍ଦେହ ସ୍ଥାନରେ ନିସଃନ୍ଦିଗ୍ଧ, ମନୋଯୋଗ ସ୍ଥାନରେ ମନଯୋଗ, ମନୋମୋହନ ସ୍ଥାନରେ ମନମୋହନ, ମନୋମୋହକର ସ୍ଥାନରେ ମନୋମୁଗ୍ଧକର, ଅନଟନ ସ୍ଥାନରେ ଅନାଟନ, ଐକ୍ୟ ସ୍ଥାନରେ ଐକ୍ୟତା, ଜଗତ୍ ସ୍ଥାନରେ ଜଗତ, ଜାଗ୍ରତ୍ ସ୍ଥାନରେ ଜାଗ୍ରତ ବା ସଜାଗ, କିମ୍ବା ସ୍ଥାନରେ କିମ୍ଵା, ତ୍ରିବାର୍ଷିକ ସ୍ଥାନରେ ତ୍ରୈବାର୍ଷିକ, ତ୍ରିମାସିକ ସ୍ଥାନରେ ତ୍ରୈମାସିକ, ସମ୍ମେଳନ (ନୀ) ସ୍ଥାନରେ ସମ୍ମିଳନ (ନୀ), ଷଣ୍ମାସିକ ସ୍ଥାନରେ ଷାଣ୍ମାସିକ, ସୌଜନ୍ୟ ସ୍ଥାନରେ ସୌଜନ୍ୟତା, ଦିଗମ୍ବର ସ୍ଥାନରେ ଦିଗାମ୍ବର, ପୃଥକୀକରଣ ସ୍ଥାନରେ ପୃଥକ୍‌କରଣ, ଦ୍ୱିବାର୍ଷିକ ସ୍ଥାନରେ ଦ୍ୱୈବାର୍ଷିକ, ନିନ୍ଦକ ସ୍ଥାନରେ ନିନ୍ଦୁକ, ଭୂମ୍ୟଧିକାରୀ ସ୍ଥାନରେ ଭୂମ୍ୟାଧିକାରୀ, ନିରପରାଧ ସ୍ଥାନରେ ନିରପରାଧୀ, ନିରପରାଧା ସ୍ଥାନରେ ନିରପରାଧିନୀ, ସଂନ୍ୟାସୀ ବା ସନ୍ୟାସୀ ସ୍ଥାନରେ ସନ୍ନ୍ୟାସୀ, ନିର୍ଦ୍ଦୋଷ ସ୍ଥାନରେ ନିର୍ଦ୍ଦୋଷୀ, ପର୍ବତୀୟ ସ୍ଥାନରେ ପାର୍ବତୀୟ, ମୁଁ ସ୍ୱୀକାର କଲି ସ୍ଥାନରେ ମୁଁ ସ୍ୱୀକୃତ ହେଲି, ଅନ୍ତର୍ଜାତୀୟ ସ୍ଥାନରେ ଆନ୍ତର୍ଜାତୀୟ, ଭୁଜଙ୍ଗୀ ସ୍ଥାନରେ ଭୁଜଙ୍ଗିନୀ, ହଂସୀ ସ୍ଥାନରେ ହଂସିନୀ, ମହାନ୍ ଲୋକ ସ୍ଥାନରେ ମହତ୍ ଲୋକ, ମହାତ୍ମଗଣ ସ୍ଥାନରେ ମହାତ୍ମାଗଣ, ଆତ୍ମରାଜ୍ୟ ସ୍ଥାନରେ ଆତ୍ମାରାଜ୍ୟ, ସମ୍ରାଜୀ ବା ସମ୍ରାଜ୍ଞୀ ସ୍ଥାନରେ ସାମ୍ରାଜ୍ଞୀ, କରୁଣ ନିବେଦନ ସ୍ଥାନରେ ସକରୁଣ ନିବେଦନ, ବୟଃସ୍ଥ ସ୍ଥାନରେ ବୟସ୍କ, ବଶଂବଦ ସ୍ଥାନରେ ବଶମ୍ବଦ, ବାହ୍ୟ ସ୍ଥାନରେ ବାହ୍ଯିକ, ବୃଥା ସ୍ଥାନରେ ବୃଥାରେ, ଚକିତ ସ୍ଥାନରେ ସଚକିତ, କ୍ଷମ ସ୍ଥାନରେ ସକ୍ଷମ, ସ୍ୱତ୍ୱ ସ୍ଥାନରେ ସତ୍ ବା ସତ୍ତ୍ୱ, ସମ୍ମତ ସ୍ଥାନରେ ସନ୍ମତ, ସମ୍ମାନ ସ୍ଥାନରେ ସନ୍ମାନ, ସର୍ଜନ ସ୍ଥାନରେ ସୃଜନ, ଜାଗର୍ତ୍ତି ବା ଜାଗ୍ରତି ବା ଜାଗରଣ ସ୍ଥାନରେ ଜାଗୃତି, ଯାଚଞ୍ଚା ସ୍ଥାନରେ ଯାଚନା, ସାବଧାନତାପୂର୍ବକ ସ୍ଥାନରେ ସାବଧାନପୂର୍ବକ, ସଶଙ୍କ ବା ଶଙ୍କିତ ସ୍ଥାନରେ ସଶଙ୍କିତ, ସବିନୟ ବା ବିନୟପୂର୍ବକ ସ୍ଥାନରେ ସବିନୟପୂର୍ବକ, ନିରୁତ୍ସାହ ସ୍ଥାନରେ ନିରୁତ୍ସାହିତ, ଅଦ୍ୟାବଧି ସ୍ଥାନରେ ଅବଧି, ପିତାମାତାଙ୍କୁ ସମ୍ମାନ କରିବା ସ୍ଥାନରେ ମାନ୍ୟ କରିବା, ମାନାସ୍ପଦ ସ୍ଥାନରେ ମାନ୍ୟାସ୍ପଦ, ପୂଜାସ୍ପଦ ସ୍ଥାନରେ ପୂଜ୍ୟାସ୍ପଦ, ପ୍ରୀତିପାତ୍ର ସ୍ଥାନରେ ପ୍ରିୟପାତ୍ର, ଅଦ୍ୟାପି ସ୍ଥଳରେ ଅଦ୍ୟାପି ସୁଦ୍ଧା, ତଥାପି ସ୍ଥଳରେ ତଥାପି ସୁଦ୍ଧା, ସ୍ଥିତିବାନ୍ ସ୍ଥଳରେ ସ୍ଥିତିମାନ୍, ଯଦିଚ

ସ୍ଥାନରେ ଯଦିଓ ଇତ୍ୟାଦି ଶବ୍ଦ ବା ପଦମାନଙ୍କର ଭ୍ରମାତ୍ମକ ପ୍ରୟୋଗ ନାନା ସ୍ଥଳରେ ପରିଦୃଷ୍ଟ ହୁଏ ।

ଉଚ୍ଚାରଣ ଅନୁସାରେ ଲେଖା ହେଉ ନ ଥିବାର ଉଦାହରଣସ୍ୱରୂପେ ଡ ଓ ଡ଼'ର ଏବଂ ଢ ଓ ଢ଼'ର ଯଥେଚ୍ଛ ବ୍ୟବହାର ଲେଖାରେ ଓ ବିଶେଷତଃ ଛାପାରେ ବହୁ ସ୍ଥଳରେ ଦେଖାଯାଏ । ଯଥା- କହୁଥାଇଁ ମାଢ଼, ଲେଖୁଥାଇଁ ଓ ଛାପୁ ଥାଇଁ ମାଢ । କହୁଥାଇଁ ପ୍ରେସିଡ଼େଣ୍ଟ, ଲେଖୁଥାଇଁ ଓ ଛାପୁଥାଇଁ ପ୍ରେସିଡେଣ୍ଟ । ଏହିପରି ଓଡ଼ିଆ ସ୍ଥଳରେ ଓଡିଆ ଓ ଡିଭିଜନ୍, ଡେପୁଟୀ, ଡାଇରେକ୍ଟର, ଓ ଡାକ୍ତର ଆଦି ଶବ୍ଦର ଡ ସ୍ଥଳରେ ଡ଼ର ପ୍ରୟୋଗ ଓ ଢ଼ାକା ସ୍ଥଳରେ ଢାକା, ମାଢ଼ ସ୍ଥଳରେ ମାଢ ଲେଖା ଓ ଛାପା ଯେକୌଣସି ପୁସ୍ତକରେ ବା ସମ୍ବାଦପତ୍ରରେ ବା ସାହିତ୍ୟ ପତ୍ରିକାରେ ଶତ ଶତ ହାବୁଡ଼େ ପଡ଼ିବ ।

ଅନୁସାରର ବ୍ୟବହାରରେ ମଧ୍ୟ ଆମ୍ଭେମାନେ ଉଚ୍ଚାରଣ ସଙ୍ଗେ ସମତା ରକ୍ଷାକରୁ ନ ଥାଇଁ । ଟ୍ରେନିଙ୍ଗ୍‌କୁ ଲେଖୁଥାଇଁ ଟ୍ରେନିଂ, ଓେଟିଙ୍ଗ୍ ରୁମ୍‌କୁ ଲେଖୁଥାଇଁ ଓୟେଟିଂ ରୁମ୍, ଇଙ୍ଗ୍‌ଲାଣ୍ଡକୁ ଲେଖୁଥାଇଁ ଇଂଲଣ୍ଡ, ହେଣ୍ଡିକୁ ଲେଖୁଥାଇଁ ହେଂଡ଼ି, ହେଡ଼ିଙ୍ଗ୍‌କୁ ଲେଖୁଥାଇଁ ହେଡ଼ିଂ । ଅନୁସ୍ୱାର ପ୍ରେମର ପ୍ରଗତି ପହଞ୍ଚିଲାଣି 'ମାନସିଂହ' ସ୍ଥଳରେ 'ମାନସିଂ' ବ୍ୟବହାରରେ ।

ବଙ୍ଗଳାର କେତେଗୁଡ଼ିଏ ଭ୍ରମପୂର୍ଣ୍ଣ ଲେଖାପଦ୍ଧତି ଏବଂ ଶବ୍ଦ ଓ ବାକ୍ୟରୀତି (Idiom) କୁ ମଧ୍ୟ ଆମ୍ଭେମାନେ ବିନା ବିଚାରରେ ଆମ ଭାଷା ଭିତରକୁ ଘେନି ଆସୁଥାଇଁ । ବର୍ଗ୍ୟ ବ ଓ ଅବର୍ଗ୍ୟ ୱର ପ୍ରଭେଦଜ୍ଞାପକ ଅକ୍ଷର ଓଡ଼ିଆ ଭାଷାରେ ସର୍ବତ୍ର ଚଳି ନ ଥିବାରୁ ଅବର୍ଗ୍ୟ ୱ ସ୍ଥାନରେ ବଙ୍ଗାନୁକରଣରେ ଓୟ ଲେଖି କିମ୍ବା 'ଓ' ସ୍ୱରବର୍ଣ୍ଣରେ ଯଫଳା ବା ବଫଳା ଯୋଗକରି ଆମ୍ଭେମାନେ ଭାଷାରେ ବିଶୃଙ୍ଖଳତା ପୂରାଉଥାଇଁ, କିମ୍ବା ମାରୱାଡ଼ି ସ୍ଥଳରେ ମାରଉଆଡ଼ି କରୁଥାଇଁ ।

ରେଲୱେ ସ୍ଥଳରେ ରେଲଓୟେ, ୱେଟିଙ୍ଗ୍ ରୁମ୍ ସ୍ଥଳରେ ଓୟେଟିଂ ରୁମ, ୱାଚ୍ ସ୍ଥଳରେ ଓୟାଚ, ବେୱା ସ୍ଥଳରେ ବେଉଆ, ୱ ସିଲ୍ ବାକୀ ସ୍ଥଳରେ ଓ୍ୟାସିଲ୍ ବାକୀ ବା ଉଆସିଲ୍ ବାକୀ ଲେଖୁଥାଇଁ ।

ପୁନଶ୍ଚ ଉପଯୁକ୍ତ ଶବ୍ଦ ଓ ବାକ୍ୟ ବିଦ୍ୟମାନ ଥାଉଁ ଥାଉଁ ଅନେକଗୁଡ଼ିଏ ବଙ୍ଗ ଭାଷାସୁଲଭ ବ୍ୟବହାର, ଶବ୍ଦ ଓ ରୀତି ପୂରାଇ ଆମ ଭାଷାକୁ ଆମେ ଖେଚାଡ଼ି କରି ପକାଉଥାଇଁ ।

ନିମ୍ନରେ କେତୋଟି ମାତ୍ର ଉଦାହରଣ ପ୍ରଦତ୍ତ ହେଲା ।

| ବଙ୍ଗଳା ସୁଲଭ ବ୍ୟବହାର | ଓଡ଼ିଆ |
|---|---|
| ଜାଗିବା | ଚେଇଁ ଉଠିବା |
| ଚାଲାକ | ଚଲାଖ |
| କାନ ଭୌଁ ଭୌଁ କରିବା | କାନ ଘୁଙ୍ଘୁ ହେବା |

| | |
|---|---|
| ମଥାରେ ଢୁକିଲା | ମୁଣ୍ଡରେ ପଶିଲା |
| ତିନିଜଣଙ୍କୁ ନେଇ | ତିନିଜଣଙ୍କୁ ଘେନି |
| ଝରକା ଦେଇ ଦେଖିଲା | ଝରକାବାଟେ ଦେଖିଲା |
| ମନରେ ଅବସାଦ ଆସେ | ମନରେ ଅବସାଦ ହୁଏ |
| କରନ୍ତୁ ନା କାହିଁକି | କରନ୍ତୁ ପଛକେ |
| ଅଫୁଟନ୍ତ | ଅଫଟା |
| ଏହାକୁଇ | ଏହାକୁହିଁ |
| ଅଫୁରନ୍ତ | ଅସରନ୍ତି |
| ଭଲ ପାଇବା | ସୁଖ ପାଇବା |
| ଭଲ ବାସିବା | ଦେଖି ପାରିବା |
| | ସ୍ନେହ କରିବା |
| ଶିର ତୋଳିବା | ମୁଣ୍ଡ ଟେକିବା |
| ଯିବାକୁ ହେଲା | ଯିବାକୁ ପଡ଼ିଲା |
| ଖାଇବାକୁ ଲାଗିଲା | ଖାଇଲା, ଖାଇବାରେ ଲାଗିଲା । |
| ଯୁଗଯୁଗାନ୍ତ ଧରି | ଯୁଗଯୁଗାନ୍ତ ବ୍ୟାପୀ |
| କିଚିରିମିଚି | ଚେଁଚାଁ, ଚେଏଁ ଚାଁ |
| ସେ ମରିବା ଉପରେ | ସେ ମରି ନାହିଁ, ମଲାପରି ହେଲାଣି |
| ଜୁତା | ଜୋତା |
| ସେ ମୋତେ ଯିବାକୁ ଦେଲାନାହିଁ | ସେ ମୋତେ (ଯିବାକୁ) ଛାଡ଼ିଲା ନାହିଁ |
| ନିକଟରେ | ଶୀଘ୍ର |
| କହାଗଲା | କୁହାଗଲା |
| ଏହି କଥା ନେଇ | ଏହି କଥା ଲାଗି |
| ବୋକା | ବକା ବା ଓଲୁ |
| ସେ ମୋତେ ଖାଇବାକୁ ଦେଲାନାହିଁ | ସେ ମୋତେ ଖୁଆଇ ଦେବନାହିଁ |
| ଧଡ଼ାସ୍ କରି | ଧଡ଼ୋକିନି |
| ଥତମତ ହେବା | ଥାଥା ମାମା ହେବା |
| ଦିନ ଥିଲା, ଯେତେବେଳେ ରଥେ ଓ ଦାସେ ନିର୍ବାଚନରେ ମାତିଥିଲେ | ଦିନେ ରଥେ ଓ ଦାସେ ନିର୍ବାଚନରେ ମାତିଥିଲେ |
| ଜାୟଗା | ଜାଗା, ଜେଗା |
| ଦୁଇଟି | ଦିଓଟି |
| ମୟଦାନ | ମୈଦାନ |

| | |
|---|---|
| କରତଃ | କରି |
| ସେ ଥିବା ସତ୍ତ୍ୱେ, ସତ୍ତ୍ୱେ ଓ | ସେ ଥିଲେହେଁ |
| ଯଦିଓ | ଯଦ୍ୟପି, ଯଦିବା |
| ପାୟାଯିବା | ମିଳିବା |
| ତୟାର | ତିଆର (ରି) |
| ମୋଟେ, ମୋଟେଇ | ଆଦୌ |
| ହୁଏତ | ବୋଧହୁଏ |
| କେବଳ ମାତ୍ର | କେବଳ |
| ମୂଲ୍ୟ ମାତ୍ର ଦଶଅଣା | ମୂଲ୍ୟ ଦଶଅଣା ମାତ୍ର |
| ବ୍ୟଥମାନ | ବ୍ୟୟମାନ |

ଏଥିରୁ କେତେଗୁଡ଼ିଏ ଶବ୍ଦ ଓ ବାକ୍ୟ ବଙ୍ଗୀୟମାନେ ଇଂରାଜୀ ଭାଷାରୁ ନେଇ ବଙ୍ଗଳାରେ ପୂରାଇଅଛନ୍ତି ଓ ଏବେ ସେମାନ ଆମେ ତାଙ୍କଠାରୁ ଆଣି ଆମ ଭାଷାରେ ପୂରାଉଁ ଥାଇଁ । ଏହିଠାରେ ବଙ୍ଗାନୁକରଣ ପ୍ରସଙ୍ଗରେ ଗୋଟିଏ ଅବାନ୍ତର କଥାର ଉତ୍ଥାପନ କରୁଅଛି ।

ଆମ୍ଭେମାନେ ମଫସଲରେ ଅଶିକ୍ଷିତ ଲୋକଙ୍କ ମୁହଁରୁ 'ଯୋଗୀନ୍ଦ୍ର ଦାଣ୍ଡଧୁଆ', 'ଶରୀରଭେଦ ଭଜନ', 'ତୁଳାଭିଣା' ଆଦି ଶୁଣିଥାଉଁ –

'ବସିଛି ଓଲଟ ହଂସ ସରୋବରରେ';

'ସାହୁକୁ ଖାତକ ଗଞ୍ଜି ମାରୁଅଛି
ବାଡ଼ ଭାଙ୍ଗି ପଳାଇଲେ ବେଉସା';

'ବଳଦ ବାପୁଡ଼ା ବିଭା ହୋଇଗଲା
ଗଗନେ ଉଡ଼ିଲା ଧୂଳି
ବିଲର କଙ୍କଡ଼ା ମୃଦଙ୍ଗ ଟିପିଲେ
ବେଙ୍ଗ ଦେଲେ ହୁଳହୁଳି' ।

ଏସବୁ ପଦମାନଙ୍କର ଗୁହ୍ୟ ଅର୍ଥ ତନ୍ତ୍ର, ଯୋଗ, ବାୟୁ ସାଧନ (ପ୍ରାଣାୟାମ) ସଙ୍ଗେ ସମ୍ପୃକ୍ତ; କିନ୍ତୁ ଯେଉଁ ଇତର ଲୋକେ ଖଞ୍ଜଣି ଓ ଘୁମୁରା ମାଡ଼ କରି ଏହାକୁ ଗାଆନ୍ତି, ତାଙ୍କ ମଧ୍ୟରୁ କେହି ଜଣେ ସୁଦ୍ଧା ଏଥିର ଗୁହ୍ୟ ଅର୍ଥ ବୁଝନ୍ତି ନାହିଁ, ଏଥିର ରହସ୍ୟ ଅନୁଭବ କରିବା ତ ଦୂରର କଥା । ଏ ଗୀତ ବୋଲି ସାରି କଥାଭାଷା ହେଲାବେଳେ ସେମାନଙ୍କ ମଧ୍ୟରୁ ଜଣେ କହେ "ଭାଇ ! ଇଅଁଳା ବାଟେ ପଶି ପିଅଁଳାରେ ବାହାରିଲା, ମଝିରେ ନିବାଡ଼ କୋଠିକି ଟିଆଁଟଇତନଠାରେ ଭେଟିଲା, ସେଇଠଉଁ ଓଲଟହଂସ ତା ଲାଞ୍ଜବାଟେ ପାଣି ପିଇଲା । ବୁଝିଲ ଟିକି ଭାଇ ?" ଅନ୍ୟଜଣକ କହେ "ହଁ ଭାଇ ! ସେ ଅଢ଼େଇ ଘେରାରେ ଉର୍ମି, ଧୂର୍ମି, କୋଠି, ଢାଳାକୁ ବୁଲି ଅଇଲା" । ଏହି କଥାବାର୍ତ୍ତା ଓ ଗୀତକୁ କେହି ବୁଝନ୍ତି ନାହିଁ, କିନ୍ତୁ ସମସ୍ତେ ହଁ ମାରନ୍ତି ।

ଆଜିକାଲି ଓଡ଼ିଆ କବିତା ରାଜ୍ୟରେ ଏ ଶ୍ରେଣୀର କବିତାର ପ୍ରାଦୁର୍ଭାବ ହୋଇଅଛି । ଅବଶ୍ୟ ସେମାନ ଶରୀରଭେଦ ଭଜନ, ବା ଦେ ବିଭା ନୁହେ । ସେଥିରେ ଯାହା ଲେଖାଥାଏ ତାର ମର୍ମ କବି ଉପଲବ୍ଧି କରୁଥିବେ, କିନ୍ତୁ ଆମ ଭଳି ସାଧାରଣ ପାଠକଙ୍କ ପକ୍ଷରେ ତାହା କାଲ ଆଗରେ ମୂଳା ଚୋବାଇବା ପରି ହେଉଅଛି ।

ଏଠାରେ ମୁଁ କାହା ପ୍ରତି ବ୍ୟକ୍ତିଗତ ଆକ୍ଷେପ କରୁନାହିଁ । ଏ ଶ୍ରେଣୀର କବିତାରେ ଅତିଦୃଷ୍ଟିବାଦ (transcendentalism) ଓ ରହସ୍ୟବାଦ (mysticism) ଅଛି କି ନାହିଁ, ମୁଁ ଆଲୋଚନା କରୁନାହିଁ । କିନ୍ତୁ ମୁଁ ଓ ମୋ ଶ୍ରେଣୀର ଯେଉଁ ପାଠକମାନେ ମାସିକ ପତ୍ରପତ୍ରିକାମାନ ନିୟମିତରୂପେ ପଢ଼ୁଁ, ଆମ୍ଭମାନଙ୍କ ବୁଝି ନ ପାରିବା ଭଳି ଲେଖା ପତ୍ରିକାମାନଙ୍କରେ ବାହାରିବା ଯୁକ୍ତିଯୁକ୍ତ ନୁହେଁ ବୋଲି ମୋ ମତ ଅଟେ । ଅତଏବ ଯାହା 'ଓଲଟହଂସ' ଭଳି ଅବୋଧ ଓ ରହସ୍ୟପୂର୍ଣ୍ଣ, ରବୀନ୍ଦ୍ରନାଥ ଓ ବିଶ୍ୱ ସାହିତ୍ୟିକମାନଙ୍କ ଦ୍ୱାହିଦେଇ ସେଗୁଡ଼ିକ ସାହିତ୍ୟରେ ପୂରାଇବା କେତେଦୂର ଯୁକ୍ତିଯୁକ୍ତ ତାହା ଆପଣମାନେ ସ୍ଥିର କରନ୍ତୁ । ଯେବେ ଆପଣମାନେ ସ୍ଥିର କରନ୍ତି ଯେ, ଏପରି ଲେଖା ବଢ଼ିଲେ ସାହିତ୍ୟର ଅଙ୍ଗପୁଷ୍ଟି ହେବ, ତେବେ ହେଉ, ମୋର ଆପତ୍ତି ନାହିଁ । ବରଞ୍ଚ ମୁଁ ମୋ ଆପତ୍ତିକୁ ପ୍ରତ୍ୟାହାର କରୁଅଛି ।

ତତ୍ପରେ କେତେ ଆଧୁନିକ କବିତା ରଚକ ଯେଉଁ ଛନ୍ଦରେ ଓ ଭାଷାରେ କବିତା ରଚନା କରୁଅଛନ୍ତି ତାହା ଓଡ଼ିଆ ସଂସ୍କୃତିର ଭିତ୍ତି ଉପରେ ପ୍ରତିଷ୍ଠିତ ନ ହେବାରୁ ଲେଖକମାନଙ୍କର କେବଳ ମନବୋଧ ହେଉଅଛି, କିନ୍ତୁ ତାହା ସାଧାରଣଙ୍କ ସୁଖସେବ୍ୟ ହେଉନାହିଁ । "ବାସଃ ପ୍ରଧାନଂ ଖଲୁ ଯୋଗ୍ୟତାୟାଃ" । ଯୋଗ୍ୟତା ବିଚାରରେ ପରିଧାନ ପ୍ରଥମ ସ୍ଥାନ ଅଧିକାର କରିଥାଏ । ଭାଷା ଓ ଛନ୍ଦ କବିତାର ପରିଧାନ; ଏ ଦୁଇଟି ଚିତ୍ତାକର୍ଷକ ନ ହେଲେ ପାଠକ ଓ ଶ୍ରୋତାଙ୍କ ମନୋରଞ୍ଜନ କରିବାକୁ ଅସମର୍ଥ ହୁଏ ଓ ଫଳତଃ ପତ୍ରିକାରେ ପ୍ରକାଶିତ କବିତା ପୃଷ୍ଠାଗୁଡ଼ିକ ପୋଟଳି ବଣିଆଙ୍କ ଗୁଜରାନ୍ ଚଳାଇବାରେ ଲାଗେ ।

ଆମ୍ଭେମାନେ ଚନ୍ଦ୍ରବିନ୍ଦୁ ଉଚ୍ଚାରଣର ସ୍ୱାତନ୍ତ୍ର୍ୟ ଲେଖାରେ ରକ୍ଷା କରୁ ନ ଥାଉଁ । ନଞର୍ଥକ ଓ ପ୍ରଶ୍ନାର୍ଥକ ନାଁ ସ୍ଥଳରେ ନା, ଆମ୍ଭେମାନେ ଘରକୁ ଗଲୁଁ ସ୍ଥଳରେ ଘରକୁ ଗଲୁ, ନୁହେ ସ୍ଥଳରେ ନୁହେଁ, ନୁହେଁ ସ୍ଥଳରେ ନୁହେ । ଆମ୍ଭେ କହିପାରୁଁ ସ୍ଥଳରେ ଆମ୍ଭେ କହିପାରୁ । ମୁଁ କହେଁ ସ୍ଥଳରେ ମୁ କହେ ଆଦି ଲେଖୁଥାଉଁ । ପୁନଶ୍ଚ ଆଉ କେତେଗୁଡ଼ିଏ ଶବ୍ଦ ଉଚ୍ଚାରଣ ବେଳେ କରୁଥାଉଁ ଏକପ୍ରକାର, ଲେଖୁଥାଉଁ ଅନ୍ୟ ପ୍ରକାର ଯଥା-

| | |
|---|---|
| ଗାଆଁ ସ୍ଥଳରେ | ଗାଁ |
| ମାଆ ସ୍ଥଳରେ | ମା |
| ନାଆ (ହା) ସ୍ଥଳରେ | ନା |
| କଅଣ ସ୍ଥଳରେ | କଣ |
| ଥାଆନ୍ତି ସ୍ଥଳରେ | ଥାନ୍ତି |

ତାହାର ସ୍ଥଳରେ ତାର
ଦୋଅଣି ସ୍ଥଳରେ ଦୋଣି

ଚନ୍ଦ୍ରବିନ୍ଦୁ ଯୁକ୍ତ ଓ ଚନ୍ଦ୍ରବିନ୍ଦୁ ବିହୀନ ଅନେକ ଶବ୍ଦର ଅର୍ଥ ପୃଥକ୍, ଏହା ଲକ୍ଷ କଲେ ଜଣାଯିବ ଯଥା-

ନାଆ ନାଆଁ
ନା ନାଁ
ବାଆ ବାଆଁ
ଖା ଖାଁ
ଆମ୍ଭେମାନେ ଉଚ୍ଚାରଣ,
କରୁଥାଇଁ ଲେଖୁଥାଇଁ
କିମିଆଁ କିମିଆ
ଅଢ଼େଇ ଦିନିଆଁ ଅଢ଼େଇ ଦିନିଆ;

ଆଉ କେତେ ଲେଖକ ଇଂରାଜୀ ଆପଷ୍ଟ୍ରଫି ଲୁପ୍ତଚିହ୍ନ (’) ବ୍ୟବହାର କରି ଲେଖାରେ ଗୋଟିଏ ନୂଆ ପଦ୍ଧତି କାଢୁଥାଇଁ । ଯଥା-

କଅଣ ସ୍ଥଳରେ କ’ଣ
ତାହାର ” ତା’ର
ଯାହା ” ଯା’
ଯାହାର ” ଯା’ର
ଚାଆ (ହା) ” ଚା’
ଚାଆ (ହା) ପାନ ” ଚା’ଖିଆ
ଛଅଟା ” ଛ’ଟା

କେତେଦିନ ହେଲା ଲେଖାରେ ‘ନି’ ଶବ୍ଦର ବ୍ୟବହାର ପଶିଅଛି । ନାହିଁ ସ୍ଥଳରେ ଆମ୍ଭେମାନେ କେତେ ସମୟରେ ନିଁ କହିଥାଉଁ । ‘ମୁଁ ଆଜି ଖାଇନାହିଁ’କୁ ମୁ ଆଜି ଖାଇନିଁ ‘ଓ ସେ ଆସିନାହିଁ’ କୁ ସେ ଆସିନି କହିଥାଉଁ । କିନ୍ତୁ ପର୍ଯ୍ୟବେକ୍ଷଣ କଲେ ଦେଖାଯିବ ଯେ, ଏହି ନିଁ ଅନୁନାସକ ନି ଅଟେ ଓ ତହିଁର ଅନ୍ୟ ଆକାର ନାଇଁ ଓ ନେଇଁ । ଆଉ ମଧ ନି ଶବ୍ଦ ପ୍ରାଦେଶିକ ପ୍ରୟୋଗରୂପେ କଥାରେ ଜୋର୍ ଦେବାପାଇଁ- ତୁ ଏକଥା କହନି, ତୁ ସେଠାକୁ ଯାଆନି ପ୍ରୟୋଗରେ ଓ କ୍ରିୟାର କାଙ୍କ୍ଷନିକ ଓ ନିଶ୍ଚୟାର୍ଥକ ଆକାରରେ ଣି ସ୍ଥଳରେ ବିକଳ୍ପରେ ବ୍ୟବହୃତ ହୁଏ । ଯଥା- ସେ ଆଜି ସକାଳୁଁ କଟକ ଅନୁକୂଳ କରିବେନି । ପଦ୍ୟରେ ମଧ ଣି ସ୍ଥଳରେ ନି ବା ନିକି ବ୍ୟବହାର ହୁଏ ।

ଯଥା- “ସରିଯିବନି ଜୀବନେ କିଶୋରୀ
ହେ ବଂଶୀଧାରି !”

କିନ୍ତୁ କେତେକ ନବ୍ୟ ଲେଖକ ଓ ତାଙ୍କ ଦେଖାଦେଖି ପ୍ରତିଷ୍ଠିତ ଲେଖକ ଏହି 'ନି'ର ବ୍ୟବହାର ତୁହାଇ ତୁହାଇ ଲେଖାରେ ପୂରାଇଲେଣି ।

ଜଣେ ପ୍ରବନ୍ଧଲେଖକଙ୍କର ଗୋଟିଏ ସନ୍ଦର୍ଭରେ ନି ଶବ୍ଦରେ ପ୍ରୟୋଗ ନିମ୍ନଲିଖିତ ରୂପେ ହୋଇଅଛି -

"ବିଶେଷ ଯତ୍ନ କରିବାର ଜଣାଯାଏ ନି ।

"ତା କରିବାପାଇଁ କେହିହେଲେ ଯତ୍ନ କରନ୍ତି ନି ।"

"ଜାତୀୟ ଜୀବନର ନିଦର୍ଶନ ଦେଖାଯାଇ ନି ।"

"କେହି କାହାକୁ ବୁଝି ପାରୁ ନି ।"

"ଜାତୀୟ ଭାବ ପ୍ରକାଶ ପାଇ ନି ।"

"ଆମ୍ଭର ନେତାମାନେ କଣ ଏଇ ଓଡ଼ିଶା ପ୍ରଦେଶ ପାଇଁ କୌଣସି ଜାତୀୟ ପୋଷକ ବା ଖାଦ୍ୟ ଠିକ୍ କରି ପାରିବେନି ?"

"ମୁଁ ତ ପଲ୍ଲୀର ଲୋକମାନଙ୍କଠୁଁ ଏପରି କୌଣସି ସ୍ପନ୍ଦନ ଦେଖିପାରି ନି ।"

ଏହି ନି-ପ୍ରୟୋଗପ୍ରେମିକ ଲେଖକ ଶେଷରେ ନିମ୍ନଲିଖିତ ବାକ୍ୟରେ ନି-ପ୍ରୟୋଗ ବିଷୟରେ ନବ୍ୟତାର ପରାକାଷ୍ଠା ଦେଖାଇ ଅଛନ୍ତି,-

"ଏହାକୁ ପଢ଼ିଲେ ଓଡ଼ିଶାର ସବୁ ଅଞ୍ଚଳବାସୀ ଏକ ଜାତୀୟ ଭାଷା ଶିକ୍ଷା କରି ପାରିବେ କି ନି ପାଠକ ପାଠିକା ସ୍ଥିର କରନ୍ତୁ ।"

ଏପରି 'ନି' ଟିଏ ଆପଣମାନେ କେବେ ଶୁଣିଛନ୍ତି ବା ଦେଖିଛନ୍ତି କି ?

୬ଷ୍ଠୀ ବିଭକ୍ତର ଚିହ୍ନ 'ର'କୁ ଆମ୍ଭେମାନେ ଲେଖାରେ ଅତିରିକ୍ତ ମାତ୍ରାରେ ବ୍ୟବହାର କରୁଥାଇଁ । ଏହା ବଙ୍ଗଭାଷାର ପ୍ରଭାବ ଅଟେ । ଓଡ଼ିଆଭାଷାରେ 'ସେ ତା ଘରକୁ ଗଲା' କହନ୍ତି । ସେ ତାର ଘରକୁ ଗଲା' କହନ୍ତି ନାହିଁ । "ମୋ ଦେହ ସୁଖ ନାହିଁ"କୁ ମୋର ଦେହ ସୁଖନାହିଁ ଲେଖାଯାଉଅଛି । କେତେକ ଲେଖକ ଏହି 'ର'କୁ ୧ମା ବିଭକ୍ତିରେ ବହୁଳ ବ୍ୟବହାର କରିବା ଦେଖାଯାଉଅଛି । ଯଥା-

(୧) ଦଶବର୍ଷ ତଳେ ଏପରି ଘଟିଥିବାର ଶୁଣାଯାଏ ।

(୨) ମୋର ସେଠାକୁ ଯିବାର ନ ହେଲା ।

ବ୍ୟାକରଣ ନିୟମର ବହିର୍ଭୂତ ପ୍ରୟୋଗମାନ ମଧ ଆମ୍ଭମାନଙ୍କ ଲେଖାରେ ଅଳ୍ପ ନୁହେଁ । ଯଥା-

୧. "ସେ ଦିଗରେ ଆମ୍ଭେମାନେ ଆଜହୁଁ କାର୍ଯ୍ୟ କରିବାକୁ ପଡ଼ିବ ।"

୨. "ତାହା ଆମ ଦେଶର ପ୍ରତ୍ୟେକ ଓଡ଼ିଆ ନେତା ଓ ବିଚ୍ଛିନ୍ନ ଓଡ଼ିଶାବାସୀ ଅନୁକରଣ କରିବାକୁ ହେବ ।"

୩. "ମୁଁ ତ ପଲ୍ଲୀର ଲୋକମାନଙ୍କଠୁ ଏପରି କୌଣସି ସ୍ପନ୍ଦନ ଦେଖି ପାରି ନି ।"

୪. "କିନ୍ତୁ ଆମ ଭାରତବର୍ଷର କଥା ଶୁଣିଲେ ହତାଶ ବୋଧ ହୁଏ ।"

ଗୁଡ଼ିଏ ସଂସ୍କୃତ ଶବ୍ଦ ଓ ସମସ୍ତ ପଦକୁ ଆମ୍ଭେମାନେ ଅଶୁଦ୍ଧ କରି ଲେଖୁଥାଉଁ । ଯଥା-

| ସଂସ୍କୃତ | ଅଶୁଦ୍ଧ ଓଡ଼ିଆ ପ୍ରୟୋଗ |
| --- | --- |
| ଅହରହଃ - | ଅହରହ |
| ପୁନଃ ପୁନଃ - | ପୁନପୁନ |
| ଇତସ୍ତତଃ - | ଇତସ୍ତତ |
| ମନୋଯୋଗ - | ମନଯୋଗ |
| ଜଗଦ୍‌ବନ୍ଧୁ - | ଜଗବନ୍ଧୁ |
| ମନୋମୋହନ - | ମନ୍ମୋହନ ବା ମନମୋହନ |
| ପୌନଃପୁନିକ - | ପୌନଃପୌନିକ |

ଆମ୍ଭମାନଙ୍କୁ ଅବଶ୍ୟ ଏହା ସ୍ୱୀକାର କରିବାକୁ ହେବ ଯେ, ଆମ ଭାଷାରେ ଯେଉଁ ଯେଉଁ ଶବ୍ଦ ନାହିଁ ଓ ବିଜ୍ଞାନ ଆଦିର ଆଲୋଚନା ଓ ଶିକ୍ଷାବିସ୍ତାର ଫଳରେ ଯେଉଁ ଯେଉଁ ବୈଜ୍ଞାନିକ ଓ ପାରିଭାଷିକ ଶବ୍ଦମାନ ହାବୁଡ଼େ ପଡୁଛି ତାକୁ ସବୁ ଅନ୍ୟଭାଷାରୁ ନ ଆଣିଲେ କିମ୍ବା ସେଥିପାଇଁ ନୂତନ ଶବ୍ଦ ନ ଗଢ଼ିଲେ ଚଳିବ ନାହିଁ । ବଙ୍ଗାଳୀ ଓ ହିନ୍ଦୁସ୍ଥାନୀମାନେ ସେମାନଙ୍କ ଭାଷାପାଇଁ ବୈଜ୍ଞାନିକ ପରିଭାଷା ଗଢ଼ିଲେଣି ଓ ବ୍ୟବହାର କଲେଣି, ଓଡ଼ିଆରେ ସେମାନଙ୍କୁ ଅନୁକରଣ କରିବା ଛଡ଼ା ଅନେକ ସମୟରେ ଉପାୟାନ୍ତର ନାହିଁ । ଇଂରାଜମାନେ ଲାଟିନ୍ ଓ ଗ୍ରୀକ୍ ଭାଷାର ସାହାଯ୍ୟ ଗ୍ରହଣ କରି ଅଧିକାଂଶ ପାରିଭାଷିକ ଶବ୍ଦ ଗଢ଼ିଅଛନ୍ତି, କିନ୍ତୁ ଏ ଯୁକ୍ତିର ଦ୍ୱାହି ଦେଇ ବିନା ଆଲୋଚନାରେ ଓ ବିନା ବିଚାରରେ ଯେଚ୍ଛାତା ଆଣି ଆମ ଭାଷାରେ ପୂରାଇବା ଉଚିତ ବା ସୁନ୍ଦର ନୁହେଁ । ବଙ୍ଗୀୟ, ହିନ୍ଦୀ, ମରହଟ୍ଟୀ, ଗୁଜରାଟୀ ଓ ତେଲିଙ୍ଗୀ ଭାଇମାନେ ନିଜ ନିଜର ମାତୃଭାଷାର ପୁଷ୍ଟି ସାଧନ ପାଇଁ ଯେଉଁ ଅଦମ୍ୟ ଉତ୍ସାହ ଦେଖାଉଅଛନ୍ତି, ସେ ଉଦ୍ୟମ ଆମ୍ଭମାନଙ୍କର ସର୍ବଥା ଅନୁକରଣୀୟ । ସ୍ନେହାସ୍ପଦ ପ୍ରୋଫେସର ବିପିନବିହାରୀ ରାୟ, ପ୍ରୋଫେସର ପରିଜାସାହେବ ଆମଭାଷାକୁ ଗୁଡ଼ିଏ ପରିଭାଷିକ ଶବ୍ଦ ଉପହାର ଦେଇ ଭାଷାର ଅଙ୍ଗପୁଷ୍ଟି କରୁଅଛନ୍ତି ।

କେତେଗୁଡ଼ିଏ ବୈଦେଶିକ ଶବ୍ଦ ଆଗରୁ ବିକୃତ ଉଚ୍ଚାରଣଯୁକ୍ତ ହୋଇ ଭାଷାରେ ଅଧିକାର ଜମାଇ ସାରିଲେଣି । ସେମାନେ ଆମଭାଷାରେ ପଶିଲାବେଳେ ଦେଶରେ ଇଂରାଜୀ ଶିକ୍ଷାର ପ୍ରସାର ନ ଥିଲା; କିନ୍ତୁ ବର୍ତ୍ତମାନ ଏ ରୀତିକୁ ସମର୍ଥନ କରି ହେବନାହିଁ । ବର୍ତ୍ତମାନ ଯାହା ହେବାର, ତା ହୋଇସାରିଲାଣି । ଏଣିକି ଆମର ଜାଗତିଆର ହେବା ଆବଶ୍ୟକ ।

"ବୋହିଗଲା ପାଣି ଯାଉ ତେଣିକି,
ବନ୍ଧେଇଲା ପାଣି ରହୁ ଏଣିକି ।"

କଲେକ୍ଟରକୁ କିଲଟର, ମାଜିଷ୍ଟ୍ରେଟ୍‌କୁ ମେଜେଷ୍ଟର, ଲାଣ୍ଟର୍ଣ୍ଣକୁ ଲଣଟଣ, ଲଲଟଣ, ନାଲଟିଣ, ଲାଲଟିଣି, ସୁପରିଣ୍ଟେଣ୍ଡେଣ୍ଟକୁ ସୁପ୍ରଦଣ୍ଡ, ଏହିପରି ଶବ୍ଦ ଗଢ଼ିବାବେଳ ଆଉ ନାହିଁ ।
ବର୍ତ୍ତମାନ ଫଟୋ ସ୍ଥାନରେ ଫୋଟ, ଭୋଟର୍ ସ୍ଥାନରେ ଭୋଟେର ଆଦି ବ୍ୟବହାର କରିବା

ନିନ୍ଦନୀୟ । ଅନ୍ୟାନ୍ୟ ପ୍ରଦେଶର ସୀମାନ୍ତବର୍ତ୍ତୀ ଓଡ଼ିଆ ଅଞ୍ଚଳରେ ବାସକରୁଥିବା ଓଡ଼ିଆମାନେ ତତ୍ତତ୍ ଅଞ୍ଚଳର ଅଧିବାସୀମାନଙ୍କର ବୈଦେଶିକ ଶବ୍ଦମାନଙ୍କ ବିକୃତ ଉଚ୍ଚାରଣମାନ ଅନୁକରଣ କରୁଅଛନ୍ତି ।

ଗଞ୍ଜାମୀମାନେ ତୈଲଙ୍ଗୀୟ ପ୍ରଭାବରେ -

| | | |
|---|---|---|
| ଜଜ୍ | ସ୍ଥାନରେ | ଜଡ୍‌ଜି |
| ବଜେଟ୍ | ” | ବଡ୍‌ଜେଟ |
| ହିଅରିଙ୍ଗ୍ | ” | ହେରିଙ୍ଗୁ |
| ମାଇଲ୍ | ” | ମଇଲ |
| ଇଞ୍ଜିନିଅର | ” | ଏଞ୍ଜିନିଏର୍ |
| ଜେଲ୍ | ” | ଜଇଲ |
| ମାଷ୍ଟର | ” | ମାଷ୍ଟ୍ରୁ |
| ମାଜିଷ୍ଟ୍ରେଟ୍ | ” | ମେଷ୍ଟ୍ରେଟ |
| ଲ | ” | ଲା |
| ଓଭରସିଅର | ” | ଓଭେରସିଏର |
| ଫରେଷ୍ଟର୍ | ” | ଫାରେଷ୍ଟର |
| ଫରେଷ୍ଟ | ” | ଫାରେଷ୍ଟ |
| ଅନ୍‌ଟ୍ରେନ୍‌ଡ୍ | ” | ଅନଟ୍ରେଇଣ୍ଡ |
| ଟାଇଫଏଡ୍ | ” | ଟାଇଫାଇଡ୍ |

ଗଞ୍ଜାମୀ ଭାଇମାନେ ଦେଶୀ ନାମମାନ ବିକୃତ କରି ଇଂରାଜୀରେ ଲେଖୁଅଛନ୍ତି । ଦାମୋଦର ରଥକୁ ଇଂରାଜୀରେ ଦାମୋଦରୋ ରୋଥୋ (Damadoro Rotho) ଲେଖୁ ଅଛନ୍ତି । ବାଲେଶ୍ୱରିଆ ଓ ମେଦିନୀପୁରିଆ ଭାଇମାନେ ବଙ୍ଗଳା ଭାଷାର ପ୍ରଭାବରେ ଫ

| | | |
|---|---|---|
| ଲୋକାଲ | ସ୍ଥାନରେ | ଲୋକେଲ |
| ମ୍ୟାନେଜର | ” | ମ୍ୟା(ମେ)ନେଜର |
| ସର୍ | ” | ସାର୍ |
| ମାଷ୍ଟର | ” | ମାଷ୍ଟାର୍ |
| ମାଜିକ୍ | ” | ମେ(ମ୍ୟା)ଜିକ୍ |
| ବାଙ୍କ୍ | ” | ବ୍ୟା(ବେ)ଙ୍କ୍ ଲେଖୁଅଛନ୍ତି । |

ସଂହଭୂମି ବାସୀମାନେ ହିନ୍ଦୀ ପ୍ରଭାବରେ -

| | | |
|---|---|---|
| ରେଲୱେ | ସ୍ଥାନରେ | ରେଲବେ |
| ମାନେଜର | ” | ମୈନେଜର |
| ମାଜିକ୍ | ” | ମୈଜିକ ଲେଖୁଅଛନ୍ତି । |

ଯେଉଁ ଯେଉଁ ବୈଦେଶିକ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହାର ନ କଲେ ନ ଚଳେ ତଦ୍‌ଭବ୍ ଶବ୍ଦମାନଙ୍କର ବୈଦେଶିକ ଆକାରକୁ କଥାରେ ଓ ଲେଖାରେ ସମାନ ରଖିବା ଉଚିତ । ଯଥା- ଇନସିପଟର ବା ଇନସପେକଟର ନ ଲେଖି ଇନ୍‌ସ୍‌ପେକ୍‌ଟର୍ ଲେଖିବା ଉଚିତ । ବଙ୍ଗଳାର ଲେଖକମାନେ କେତେକ ଅସଂସ୍କୃତ ଶବ୍ଦକୁ ସଂସ୍କୃତରୂପେ ବ୍ୟବହାର କରି ଆସିଅଛନ୍ତି । ଆମେ ମଧ୍ୟ ତାଙ୍କ ଦେଖାଦେଖି ସେସବୁକୁ ଓଡ଼ିଆ ଭାଷାରେ ପୂରାଇଥାଉଁ ଯଥା-

ଗଠିତ; ଗଠନମୂଳକ ଗଠନାତ୍ମକ ।

ବଙ୍ଗଳାରେ ବୈଦ୍ୟ ଅର୍ଥରେ କବିରାଜ ଶବ୍ଦର ପ୍ରୟୋଗ ହେଲା । ତାହା ଦେଖାଦେଖି ଏବେ ସେ ଶବ୍ଦ ସେହି ଅର୍ଥରେ ଓଡ଼ିଆର ଚଳିଲାଣି । ମୋ' ବାଲ୍ୟକାଳରେ କୋଠଦେଶର ରାଏଟ୍‌ସିଂହଙ୍କ ଦରବାରର ଉତ୍କଳ ବିଖ୍ୟାତ ବୈଦ୍ୟ ଯୋଗୀ ସାଆନ୍ତରାଙ୍କୁ ବୈଦ୍ୟରାଜ ବୋଲାଯିବା ମୁଁ ଶୁଣିଅଛି । ବିଦ୍ରୂପ ଶବ୍‌ଦ ମଧ୍ୟ ଏହି ଶ୍ରେଣୀର ବଙ୍ଗଳାଗତ ଶବ୍ଦ । କେତେଗୁଡ଼ିଏ ବହୁବଚନସୂଚକ ଶବ୍ଦ ଏକ ସ୍ଥାନରେ ଦୁଇଥର ବ୍ୟବହାର ଆମ୍ଭମାନଙ୍କ ମଧ୍ୟରେ ଦେଖାଯାଏ । ଯଥା -

କେତେ ବ୍ୟକ୍ତିମାନେ
ଅନେକ ଲୋକମାନେ
ସମସ୍ତ ଅଟ୍ଟାଳିକାଚୟ
କତିପୟ ବନ୍ଧୁମାନେ
ଯେଉଁଯେଉଁ ଉଦାହରଣମାନ
ସେହି ସେହି ବ୍ୟକ୍ତିମାନେ ।

କେତେକ ଲେଖକ ସଂସ୍କୃତ ଶବ୍ଦ ସଙ୍ଗେ ଓଡ଼ିଆ ଶବ୍ଦର ସନ୍ଧିକରି ଓ କେତେକ ଦୁଇଟି ଓଡ଼ିଆ ଶବ୍ଦକୁ ସଂସ୍କୃତ ବ୍ୟାକରଣର ସୂତ୍ର ଅନୁସାରେ ସନ୍ଧି ଓ ପ୍ରତ୍ୟୟ କରି ଉକ୍ତ ସନ୍ଧି ଓ ପ୍ରତ୍ୟୟ ନିଷ୍ପନ୍ନ ପଦମାନଙ୍କ ସୃଷ୍ଟି କରୁଅଛନ୍ତି । ଯଥା-

| | |
|---|---|
| ମନାନ୍ତର | ଉପରୋକ୍ତ |
| ଦିଗାମ୍ବର | ଅନାଟନ |
| ଚକ୍ଷୁଲଜ୍ଜା | ଅନାୟତ୍ତ |
| ଦିଗାଙ୍ଗନା | ଓଡ଼ିଆତ୍ୱ |

ବୈଦେଶିକ ଶବ୍ଦରେ ଥିବା ହଳନ୍ତ ଅକ୍ଷରମାନଙ୍କୁ କେତେକ ସ୍ଥଳରେ ପୂର୍ବ ବର୍ଣ୍ଣର ପ୍ରଭାବରେ ଇ ବା ଉ ଯୁକ୍ତ କରି ଓଡ଼ିଆରେ ଉଚ୍ଚାରଣ କରାଯାଏ ଯଥା-

| | |
|---|---|
| ମାଇଲ୍ | ମାଇଲି |
| ଇନ୍‌ସ୍‌ପେକ୍ଟର୍ | ଇନିସିପେକ୍ଟର |
| ପେନ୍‌ସିଲ୍ | ପେନ୍‌ସିଲି, ପେନିସିଲି |
| ଆଇନ୍ | ଆଇନି |

ସ୍କାଉଟ୍ — ସ୍କାଉଟୁ
ଖୁବ୍ — ଖୁଉବୁ
ସ୍କୁଲ୍ — ଇସ୍କୁଲ
ଷ୍ଟେସନ୍ — ଇଷ୍ଟେସନ

ବୈଦେଶିକ ଶବ୍ଦମାନଙ୍କର ଅକ୍ଷରାନ୍ତରିତକରଣରେ ମଧ୍ୟ ଆମ୍ଭମାନଙ୍କୁ ଉଚ୍ଚାରଣ ବିଭ୍ରାଟରେ ପଡ଼ିବାକୁ ହୁଏ ।

| | | |
|---|---|---|
| ଇଂରାଜୀ Zed (z) | ଅକ୍ଷରକୁ | ଜ |
| W ଓ Q | ” | ଵ |
| Ph ଠାରୁ ସ୍ୱତନ୍ତ୍ର F | ” | ଫ |
| S ଅକ୍ଷରର Zed ଉଚ୍ଚାରଣ | | ଜ-ଯଥା |
| ଯଥା (his) | | ଫିଜିକାଲ୍ |
| | | ଫିଜିଅଲଜି, ମିଉଜିଅମ୍ |

କରିବାକୁ ହୁଏ; କାରଣ ଓଡ଼ିଆରେ ତଥା ସଂସ୍କୃତରେ ତଦ୍‌ଭବ ଉଚ୍ଚାରଣଜ୍ଞାପକ ଅକ୍ଷର ନାହିଁ । ଯାହା ଅବଶ୍ୟମ୍ଭାବୀ ତାହା ମୁଣ୍ଡ ପତେଇ ଅଙ୍ଗେ ନିଭେଇ ନେବା ଛଡ଼ା ଉପାୟାନ୍ତର ନାହିଁ ।

ମୁଦ୍ରାକାରମାନେ ଡ ଓ ଡ଼, ଢ ଓ ଢ଼ ର ପ୍ରଭେଦ ଆଦୌ ରକ୍ଷା କରୁନାହାନ୍ତି ଏବଂ ଅନେକ ସ୍ଥଳରେ ଳ ଓ ଲ ଅକ୍ଷରର ମଧ୍ୟ ଯଥେଚ୍ଛ ବ୍ୟବହାର କରୁଅଛନ୍ତି ଓ ହଳନ୍ତ ଚିହ୍ନ ବିଷୟରେ ସାବଧାନ ହେଉନାହାନ୍ତି । ଏହାଛଡ଼ା ମୁଦ୍ରଣ କାଳରେ ଅକ୍ଷରମାନଙ୍କ ଦେହରୁ ମାତ୍ରାମାନ ଖସିପଡ଼ିବା ଓଡ଼ିଆରେ ମୁଦ୍ରିତ ପୁସ୍ତକରେ ଓ ପତ୍ରିକାରେ ନିତ୍ୟ ଅନୁଭୂତ ଘଟଣା । କିନ୍ତୁ ତା ଉପରେ ମୁଦ୍ରାକାରମାନେ ଉପର୍ଯ୍ୟୁକ୍ତ ବିଭ୍ରାଟମାନ ପୂରାଇ ଓଡ଼ିଆ ପୁସ୍ତକମାନଙ୍କୁ ଦୁଷ୍ପାଠ୍ୟ କରି ଦେଉଅଛନ୍ତି । ଅବର୍ଗ୍ୟ 'ୱ' ଓ ବର୍ଗ 'ବ'ର ଉଚ୍ଚାରଣସ୍ୱାତନ୍ତ୍ର୍ୟ ଗୁଜୁରାଟୀ ଓ ହିନ୍ଦୀରେ ରକ୍ଷା କରାଯାଏ । ଓଡ଼ିଆ ଭାଷାରେ ଅବର୍ଗ୍ୟ 'ବ' ପାଇଁ ଗୋଟିଏ ସ୍ୱତନ୍ତ୍ର ଅକ୍ଷର ନ ପୂରାଇଲେ କାମ ଚଳିବ ନାହିଁ ଓ ଏହା ନ ହେବା ପର୍ଯ୍ୟନ୍ତ ବଙ୍ଗଳାର ଅନୁକରଣରେ ଓ ସ୍ଥାନରେ ଓୟ କରି ଓ୍ୟାଚ୍-ଓୟାଚ୍, ଓୟାଟର, ଟ୍ରାମଓୟେ, ରେଲଓୟେ, ଓୟେଟିଙ୍ଗ୍ ରୁମ୍ କିମ୍ବା ଓ୍ୟାଇନ ସ୍ଥଳରେ ଉଆଇନ ଆଦି ଆମେ ଲେଖୁଥିବା ।

ଗଡ଼ଜାତ ଓ ସମ୍ବଲପୁର ଭାଷା ଓ ଶବ୍ଦମାନ ହିନ୍ଦୀଦ୍ୱାରା ପ୍ରଭାବିତ ହୋଇ, ମେଦିନୀପୁରର ଓ ଉତ୍ତର ବାଲେଶ୍ୱରର ଲୋକେ ବଙ୍ଗଳାଦ୍ୱାରା ପ୍ରଭାବିତ ହୋଇ ଶବ୍ଦର ଶେଷବର୍ଣ୍ଣକୁ ହଳନ୍ତ କରୁଅଛନ୍ତି ।

ଯଥା - ପାନ ସ୍ଥଳରେ ପାନ୍
ପାଣି-ପାନି
କୋଳ-କୋଲ୍

ଓ ଓକାର ସ୍ଥାନରେ ଉକାର କରୁଅଛନ୍ତି, ଯଥା -

ଗୋଡ଼-ଗୁଡ଼

ଜୋତା-ଜୁତା;

ଏବଂ ସମ୍ବଲପୁରୀ ଭାଇମାନେ ଆହୁରି ପାହୁଣ୍ଡେ ଆଗକୁ ବଢ଼ି

ପାଣିକୁ ପାଏନ

ନଦୀକୁ ନଏଦ୍

ଓ

ରାତିକୁ ରାଏତ୍ କରୁଅଛନ୍ତି ।

କଚିରି, ଜମିଦାରୀ ସିରସ୍ତା ଓ ମହାଜନୀ ସିରସ୍ତାରେ ବର୍ଣ୍ଣାଶୁଦ୍ଧି ପ୍ରତି ଆଦୌ ଦୃଷ୍ଟି ଦିଆଯାଉନାହିଁ । ସାହିତ୍ୟାନୁରାଗୀ ଓକିଲମାନେ ମଧ୍ୟ ନିଜ ନିଜ ସିରସ୍ତାର ଓ ମୋହରିରମାନଙ୍କ ଲେଖାର ବର୍ଣ୍ଣାଶୁଦ୍ଧି ପ୍ରତି ଆଦୌ ଦୃଷ୍ଟି ଦେଉ ନାହାନ୍ତି ।

ମୋର ଏ 'ପରୋପଦେଶେ ପାଣ୍ଡିତ୍ୟ'ରୁ ଆପଣମାନେ ମନେ କରିବେ ନାହିଁ ଯେ ମୁଁ ଏ ସବୁ ଦୋଷରେ ଓ ଭ୍ରମରେ ନିଜେ ଅପରାଧୀ ନୁହେଁ । ଆମ ଭାଷାରେ ବହୁଥିବା ହାଓ୍ୱାର ପ୍ରଭାବ ମୋତେ ମଧ୍ୟ ସଂକ୍ରମିଛି ଓ ମୋ ଲେଖାରେ ପୂର୍ବୋକ୍ତ ଭ୍ରମର ଉଦାହରଣ ଭୁରି ଭୁରି ବାହାରିବ । ଏମନ୍ତ କି, ଓଡ଼ିଆ ଭାଷାକୋଷରେ ମୁଁ ଗଠନ ଓ ଗଠିତକୁ କେତେକ ବଙ୍ଗଳା ଅଭିଧାନରୁ ଅନୁକରଣ କରି ସଂସ୍କୃତ ବୋଲି ନିର୍ଦ୍ଦେଶ କରିଅଛି ଓ କବିରାଜର ବୈଦ୍ୟ ଅର୍ଥ ସଂସ୍କୃତାନୁମୋଦିତ ବୋଲି ଲେଖିଅଛି । ଏ ସବୁ ବିଶୃଙ୍ଖଳତା ଅନ୍ୟ ଭାଷୀଭାଷୀମାନଙ୍କ ସଂସ୍ରବରେ ଆସିଥିବା ସବୁ ଭାଷାରେ ଅବଶ୍ୟମ୍ଭାବୀ । ଏସବୁ ଦୋଷର ଉପଲବ୍ଧି କରି ଏ ସବୁକୁ ସୁଧାରିବା ପାଇଁ ଆମ୍ଭମାନଙ୍କର ଯତ୍ନକରିବା ଦରକାର । ଯେଉଁପରି ଜହୁରୀ ମୋତିହାର ଗୁନ୍ଥିଲାବେଳେ ପ୍ରତ୍ୟେକ ମୋତିଦାନାକୁ ଟାଙ୍କି କରି ହାରରେ ଲଗାଏ, ସେହିପରି ଲେଖାରେ ପ୍ରତ୍ୟେକ ଶବ୍ଦ ଓ ବାକ୍ୟ ବସାଇବା ପୂର୍ବରୁ ଉକ୍ତ ଶବ୍ଦକୁ ଲେଖକଙ୍କର ଟାଙ୍କି, ତଉଲି ଓ ବାଛିନେବା ଦରକାର । ପ୍ରବନ୍ଧରେ, ପତ୍ରାଦିରେ ଓ ପୁସ୍ତକରେ ଆମ ମନବୋଧ ହେଲାଭଳି ଭାଷା ଓ ଶବ୍ଦମାନ ନ ଖଞ୍ଜି, ଯାହାଙ୍କ ପାଇଁ ଏମାନ ଅଭିପ୍ରେତ, ସେମାନଙ୍କ ବୁଝିଲା ଭଳି ଭାଷା ଓ ଶବ୍ଦମାନ ପ୍ରୟୋଗ କରିବା ଆମ୍ଭମାନଙ୍କ କର୍ତ୍ତବ୍ୟ ।

ଯାହା ଲେଖିବା ତାହା ଶୁଦ୍ଧ ହେବ, ବ୍ୟାକରଣଗତ ଦୋଷଦୁଷ୍ଟ ହେବନାହିଁ, ମାତୃଭାଷାର ରୀତିବିରୁଦ୍ଧ ହେବନାହିଁ, ପ୍ରାଦେଶିକ ଦୋଷପୂର୍ଣ୍ଣ ହେବନାହିଁ, ଉଚ୍ଚାରଣର ପ୍ରତିଲିପି ହେବ, ଯେବେ ଏ ସବୁ ପ୍ରତି ଦୃଷ୍ଟିରଖି ଲେଖିବା, ତେବେ ସାବଧାନତା ଫଳରେ ଆମ ଲେଖା ପୂର୍ବ ଅପେକ୍ଷା ଅବଶ୍ୟ ଭଲ ହେବ ।

ସମ୍ବାଦପତ୍ର ଓ ପତ୍ରିକାମାନଙ୍କର ସମ୍ପାଦକ ଓ ମୁଦ୍ରାଯନ୍ତ୍ରର ପରିଚାଳକମାନଙ୍କ ଉପରେ ଏ କ୍ଷେତ୍ରରେ କଠୋର ଦାୟିତ୍ୱ ରହିଅଛି । କାରଣ,

ଯଦ୍ ଯଦାଚରତି ଶ୍ରେଷ୍ଠଃ
ତତ୍ ଦେବେତରୋ ଜନଃ
ସ ଯତ୍ ପ୍ରମାଣଂ କୁରୁତେ
ଲୋକସ୍ତଦନୁବର୍ତ୍ତତେ ।
(ଭଗବଦ୍‌ଗୀତା)

ଅର୍ଥାତ୍ ଶ୍ରେଷ୍ଠ ବା ପ୍ରତିଷ୍ଠିତ ବ୍ୟକ୍ତି ଯାହା ଯାହା ଆଚରଣ କରନ୍ତି ଇତର ଜନ ତାହାକୁ ଅନୁକରଣ କରନ୍ତି । ସେମାନେ ଯାହା ଆଦର୍ଶ ବୋଲି ଥାପି ଦିଅନ୍ତି, ଏମାନେ ତହିଁର ଅନୁବର୍ତ୍ତନ କରନ୍ତି । ସାହିତ୍ୟ ଓ ପତ୍ରିକା କ୍ଷେତ୍ରରେ ଯେଉଁମାନେ ପ୍ରତିଷ୍ଠା ଲାଭ କରିଅଛନ୍ତି ସେମାନଙ୍କ ଉପରେ ଦେଶର ନବ୍ୟ ଲେଖକମାନଙ୍କ ଲେଖାର ରୀତି ଓ ଶୁଦ୍ଧି ଅନେକ ପରିମାଣରେ ନିର୍ଭର କରୁଅଛି । ସେମାନେ ଅସଂଯତ ହେଲେ ଭାଷାର ନିୟାମକ ହେବ କିଏ ?

ମୁଁ ଉପରେ ଯେଉଁ ଯେଉଁ ଉଦାହରଣ ଦେଇଅଛି ସେମାନେ କେବଳ ଗୋଟାଏ ଦୁଇଟି ପତ୍ରିକାର ଓ ପୁସ୍ତକର ଦୁଇଟି ଚାରୋଟି ସ୍ତମ୍ଭର ଓ ପୃଷ୍ଠାରୁ ସଂଗ୍ରହ କରିଅଛି । ସଭ୍ୟ ଜଗତର ଉନ୍ନତ ସାହିତ୍ୟମାନଙ୍କରୁ ଗ୍ରହଣୀୟ ଭାବ ବିଷୟମାନ ସଂଗ୍ରହ କରି ତଦ୍ୱାରା ମାତୃଭାଷା ଶ୍ରୀବୃଦ୍ଧି କରିବାପାଇଁ କେତେଜଣ ଯୁବକ ଓ କର୍ମଠ ଲେଖକ ଅଣ୍ଟା ଭିଡ଼ିଅଛନ୍ତି, ଏହା ସୁଖର ବିଷୟ । ଉଚ୍ଚ ପାଶ୍ଚାତ୍ୟ ଶିକ୍ଷା ଫଳରେ ଅନ୍ୟ ଦେଶର ଉନ୍ନତ ସାହିତ୍ୟମାନଙ୍କର ଯେଉଁ ରତ୍ନମାଳ ଆମେ ଆହରଣ କରୁଥାଇଁ ସେମାନେ ଆମ ମାତୃ ଭାଷାର ନିଜସ୍ୱ କରିବା ଓ ତତ୍ତତ୍ ଭାଷାନଭିଜ୍ଞ ଆମ ଦେଶବାସୀମାନଙ୍କୁ ତହିଁରୁ ଭାଗିଦାର କରାଇବା, ଏ ଉଦ୍ୟମ ପ୍ରଶଂସାର୍ହ । ଏ କ୍ଷେତ୍ରରେ ଓଡ଼ିଆ ପ୍ରବନ୍ଧ, ଉପନ୍ୟାସ ଓ ଗଳ୍ପ ଲେଖକମାନଙ୍କର ଜ୍ୟାମିତିକ 'ସ୍ୱୀକାର୍ଯ୍ୟ' ରୂପେ କଳ୍ପନା କରିବାକୁ ହେବ ଯେ, ଓଡ଼ିଆରେ ସେମାନେ ଏହି ଶ୍ରେଣୀର ଯାହା ଲେଖୁଅଛନ୍ତି ତାହା ଯେଉଁମାନେ ପଢ଼ିବେ ସେମାନେ ଓଡ଼ିଆ ଛଡ଼ା ଅନ୍ୟଭାଷା ଜାଣନ୍ତି ନାହିଁ; ଅତଏବ ବୈଦେଶିକ ନାମ, ଶବ୍ଦ ଓ ଉଦ୍ଧୃତବାକ୍ୟମାନଙ୍କୁ ବନ୍ଧନୀ ସାହାଯ୍ୟରେ ବା ପାଦଟୀକା ସାହାଯ୍ୟରେ ଓଡ଼ିଆରେ ବୁଝାଇ ଦେବା ସୂଚାଇ ଦେବା ଆବଶ୍ୟକ । ଏଥିପ୍ରତି ଲେଖକମାନଙ୍କ ଦୃଷ୍ଟି ରହୁନାହିଁ । ଆମ ଲେଖାରେ ଇଂରାଜୀଭାଷାରେ ବ୍ୟବହୃତ କମ୍ମା, ସେମିକୋଲନ, କୋଲନ୍, ପୂର୍ଣ୍ଣଚ୍ଛେଦ, ଡାସ୍ (dash) ତାରା ଚିହ୍ନ (asterisk) ଓ ବନ୍ଧନୀ ଆଦିର ସୁଚିନ୍ତିତ ବ୍ୟବହାର ଆମ୍ଭେମାନେ କରୁ ନ ଥାଇଁ ।

ଇଂରାଜୀରେ ଗୋଟିଏ ପ୍ରବଚନ ଅଛି "write as you speak" (ତୁମେ ଯେଉଁପରି କଥା କୁହ ସେହିପରି ଲେଖ) । ଏଥିର ଅର୍ଥ ଏହି ଯେ ଲେଖାମାନ ସରଳ ଓ ସର୍ବଜନବୋଧ ହେବା କିନ୍ତୁ ଲେଖାକୁ ସରଳ କରିବାକୁ ଯାଇ ଗୁଡ଼ିଏ ପ୍ରାଦେଶିକ ଓ ଗାଉଁଲି ଶବ୍ଦ ଭାଷାରେ ପୂରାଇବା ଉଚିତ ନୁହେଁ । ଉଚ୍ଚାଙ୍ଗ ସାହିତ୍ୟ ଓ ଜନ ସାହିତ୍ୟର ଭାଷା ମଧ୍ୟରେ ପ୍ରଭେଦ ରହିବା ଅବଶ୍ୟମ୍ଭାବୀ । ସବୁ ଲେଖା ଉଚ୍ଚାଙ୍ଗ ସାହିତ୍ୟ ହେଲେ ଚଳିବ ନାହିଁ ।

ପକ୍ଷାନ୍ତରରେ ସବୁ ଲେଖା ଗ୍ରାମ୍ୟ, ପ୍ରାଦେଶିକ ଓ ଇତରଜନପ୍ରିୟ ଶବ୍ଦ ବା ବାକ୍ୟବହୁଳ ହେଲେ ହେବନାହିଁ । ତଉତ୍ ଶ୍ରେଣୀର ଲେଖାମାନଙ୍କ ପାଇଁ ଆଦର୍ଶ ରହିବା ଦରକାର । ଏ ଆଦର୍ଶ ପାଇଁ ଗାର କାଟିବ କିଏ ?

ଓଡ଼ିଆ ଭାଷାରେ ଭାଷାତତ୍ତ୍ୱ ବିଚାର ଉପରେ ସୁପ୍ରତିଷ୍ଠିତ ଗୋଟିଏ ବ୍ୟାକରଣ ସଙ୍କଳିତ ହେବା ଦରକାର । ପ୍ରଥମରେ ଭାଷାର, ତା ପରେ ଲେଖାର ସୃଷ୍ଟି, ଏହା ଭାଷାତତ୍ତ୍ୱବିଦ୍‌ମାନେ ସ୍ଥିର କରିଅଛନ୍ତି । ବ୍ୟାକରଣକାର ତୁଳନାମୂଳକ ଗବେଷଣା ସାହାଯ୍ୟରେ ଭାଷାରୁ ଓ ଲେଖାରୁ ବ୍ୟାକରଣ ପାଇଁ ନିୟମମାନ ସଙ୍କଳନ କରନ୍ତି । ବ୍ୟାକରଣ ସଙ୍କଳନ ପରେ ଭାଷା ଓ ସାହିତ୍ୟ ଛାଞ୍ଚରେ ପଡ଼ିଯାଏ । ବ୍ୟାକରଣଦ୍ୱାରା ଉଚ୍ଛୃଙ୍ଖଳତାର ବାଟବୁଜା ହୋଇଯାଏ; ବିବାକ୍ ବୁଜା ହୋଇ ନ ଗଲେ ମଧ୍ୟ ସେ ବାଟରେ 'ଡିଆଁ' (Style) ବସିଯାଏ । ଓଡ଼ିଆ ଭାଷାରେ ଗୋଟିଏ ସୁଚିନ୍ତିତ ବ୍ୟାକରଣ ସଙ୍କଳିତ ହେଲେ ବର୍ତ୍ତମାନ ପରିଲକ୍ଷିତ ଉଚ୍ଛୃଙ୍ଖଳତା ଓ ନିୟମାଭାବ ବହୁ ପରିମାଣରେ କମି ଯାଆନ୍ତା ଓ 'ବ୍ରହ୍ମା ବିଳିବିଳେଇଲେ ବେଦ' ହୁଅନ୍ତା ନାହିଁ ।

ସଂସ୍କୃତ ଓ ପ୍ରାକୃତ ଭାଷା ସଙ୍ଗେ ଆମ ମାତୃଭାଷାର ଦୃଢ଼ ସମ୍ବନ୍ଧ ଅଛି, ତଥାପି ଆମ ଭାଷା ଗୋଟିଏ ସ୍ୱତନ୍ତ୍ର ଭାଷା ଅଟେ ଓ ତହିଁର ସ୍ୱତନ୍ତ୍ର ବ୍ୟାକରଣଗତ ନିୟମମାନ ଅଛି । ଏ କ୍ଷେତ୍ରରେ ସ୍ୱର୍ଗୀୟ ସର୍ ସୁଢ଼ଳ ଦେବ, ସ୍ୱର୍ଗୀୟ ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ଓ ପଣ୍ଡିତ ଗୋପୀନାଥ ନନ୍ଦ ଚେଷ୍ଟା କରୁଥିଲେ । କେତେବର୍ଷ ପୂର୍ବେ ପରମ ସ୍ନେହାସ୍ପଦ ପଣ୍ଡିତ ନୀଳକଣ୍ଠ ଦାଶ ଖଣ୍ଡିଏ ଓଡ଼ିଆ ବ୍ୟାକରଣ ସଙ୍କଳନ କର୍ମ ଆରମ୍ଭ କରିଥିଲେ, କିନ୍ତୁ ଓଡ଼ିଶାର ଅନ୍ୟାନ୍ୟ ଜନହିତକର ଉଦ୍ୟମ ଭଳି ଏ ଉଦ୍ୟମ ମଧ୍ୟ ଆଜିଯାଏ କାର୍ଯ୍ୟରେ ପରିଣତ ହେଲାନାହିଁ ଓ ହେବ କି ନାହିଁ, ମା ସରସ୍ୱତୀଙ୍କୁ ଜଣା । ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ କୁଳମଣି ଦାଶ ଓ ରାୟ ସାହେବ ଆର୍ତ୍ତବଲ୍ଲଭଙ୍କ ସମ୍ମିଳିତ ଉଦ୍ୟମରେ ଖଣ୍ଡିଏ ଓଡ଼ିଆ ବ୍ୟାକରଣ ସଙ୍କଳିତ ହେଲେ ତାହା ଓଡ଼ିଆ ଭାଷାକୁ ଅଧୁନା ପରିଲକ୍ଷିତ ଉଚ୍ଛୃଙ୍ଖଳତ୍ୱ ବହୁଳତାରୁ ରକ୍ଷା କରନ୍ତା ।

ତାପରେ ଓଡ଼ିଶାରେ ସମାଲୋଚକଙ୍କ ଅଭାବ । ସମାଲୋଚକଙ୍କ ଆସନ ଅତି ଉଚ୍ଚ ଓ ପବିତ୍ର । ସେ ଆସନ କିପରି ଓଡ଼ିଆଭାଷା ରାଜ୍ୟରେ କଳୁଷିତ ହେଉଅଛି, ତାହା ସମସ୍ତେ ଅଙ୍ଗେ ନିଭାଉଥାଇଁ । ସମାଲୋଚକଙ୍କ ଲେଖନୀ କିଘାଂସୁର ଅସି ନୁହେଁ, କିମ୍ବା ରଡ଼ ସାଧୁବାର ଠେଙ୍ଗଣୀ ନୁହେଁ । ଉଚ୍ଛୃଙ୍ଖଳତା ନିବାରଣ କରିବା ଓ ସୁଲେଖକଙ୍କୁ ସମୁତ୍ସାହିତ କରିବା ସମାଲୋଚକଙ୍କ କାର୍ଯ୍ୟ । ସମାଲୋଚନାର ସୌରଭ ଭାଷାକୁ ଓ ସାହିତ୍ୟକୁ ଆମୋଦିତ କରେ । କିନ୍ତୁ ଆମ୍ଭମାନଙ୍କର ଅଧିକାଂଶ ସମାଲୋଚନା ବ୍ୟକ୍ତିଗତ ଆକ୍ରମଣର ପୂତିଗନ୍ଧରେ କଳୁଷିତ ।

ଏକ ଦିଗରେ ଏ ଶ୍ରେଣୀର ସମାଲୋଚକଙ୍କ କଠୋରତା, ଅନ୍ୟ ଦିଗରେ ସାହିତ୍ୟ ରଥୀମାନଙ୍କ ସାର୍ଟିଫିକେଟ୍ ଦେବା ବିଷୟରେ ମୁକ୍ତହସ୍ତତା, ଏ ଦୁଇ ମୁଣ୍ଡ ମଧ୍ୟରେ ଉଦବେଇ

ଟୁବେଇ ହୋଇ ଓଡ଼ିଆ ସାହିତ୍ୟର ଦୁର୍ଗତି ବଢୁଅଛି । ଯେ ଖଣ୍ଡିଏ ପାଣ୍ଡୁଲିପି ମୋଠାକୁ 'ମତ' ପାଇଁ ଆଣିଲେ, ମୁଁ ତାଙ୍କ ମନ ରକ୍ଷା କରିବାକୁ ଲେଖିଦେଲି 'ପୁସ୍ତକଟି ଗୋଟିକଯାକ ତୁଳସୀ ।' ଏଥିରେ ଗ୍ରନ୍ଥକାରଙ୍କ ପାଣ୍ଡୁଲିପିର ମୁଦ୍ରଣ ବ୍ୟୟ ବହନକାରୀ ପୃଷ୍ଠପୋଷକ ସନ୍ତୁଷ୍ଟ ଓ ସାହିତ୍ୟ ଜଗତରେ ପଣ୍ଡାପଣିଆରେ ମୋ ପ୍ରସିଦ୍ଧିଲାଭ ମଧ୍ୟ ସୁନିଶ୍ଚିତ ।

ମୋର ଆପଣମାନଙ୍କଠାରେ ନିବେଦନ ଏହି କି, ଭାଷା ରାଜ୍ୟରେ ଉଚ୍ଛୃଙ୍ଖଳତା ନିବାରଣର ପ୍ରଧାନ ଉପାୟ, ଏକ ନିୟାମକ ଶକ୍ତିଶାଳୀ ସାହିତ୍ୟସଂଘର ପ୍ରତିଷ୍ଠା । ଓଡ଼ିଶାରେ ସେହି ସ୍ଥାନ ନାମତଃ ଉତ୍କଳ ସାହିତ୍ୟ ସମାଜଦ୍ୱାରା ଅଧିକୃତ । କିନ୍ତୁ ସମାଜ ଏ କ୍ଷେତ୍ରରେ କିଛି କରୁନାହାନ୍ତି । ନିୟମାବଳୀ ପୁସ୍ତିକାରେ ଉଦ୍ଦେଶ୍ୟ ତାଲିକାରେ "ସାହିତ୍ୟରୁ ଆବର୍ଜନା ଦୂରୀକରଣ" ରହିଅଛି । କିନ୍ତୁ 'ଲଫାପା ଦୋରସ୍ତ୍' ଛଡ଼ା ଫଳତଃ କିଛି ହେଉନାହିଁ । ସମାଜ ଯଦି ଗୋଟିଏ ଶକ୍ତିଶାଳୀ ସମିତି ଗଢ଼ି ଭାଷା ରାଜ୍ୟରେ ଯଥେଚ୍ଛାଚାର ରାଜତ୍ୱ ବିରୁଦ୍ଧରେ ଠିଆ ନ ହେବେ, ତେବେ ଓଡ଼ିଆ ସାହିତ୍ୟର ଓ ଭାଷାର ଘୋର କ୍ଷତି ହେବ ।

ଓଡ଼ିଆ ଭାଷାର ଓ ସାହିତ୍ୟର ନିୟମିତ ଓ ଦୈନନ୍ଦିନ ଚର୍ଚ୍ଚାପାଇଁ ଗୋଟିଏ ସାର୍ବଜନିକ ମିଳନ କ୍ଷେତ୍ର ଓଡ଼ିଶାର ସଂସ୍କୃତି (culture)ର କେନ୍ଦ୍ର ଏହି କଟକ ନଗରରେ ନାହିଁ । ଅନ୍ୟ ସ୍ଥାନମାନଙ୍କ କଥା କିଏ ପଚାରେ ? ଉତ୍କଳ ସାହିତ୍ୟ ସମାଜର ନେତୃବୃନ୍ଦ ନାମତଃ ରାମଚନ୍ଦ୍ର ଭବନରେ ଗୋଟିଏ ପାଠାଗାର ଥାପିଦେଇ ବସିଅଛନ୍ତି । ସାହିତ୍ୟ ସମାଜର ଅଧିବେଶନରେ ଯେଉଁ ପ୍ରବନ୍ଧ ପଢ଼ାଯାଉଛି ତହିଁର ଚର୍ଚ୍ଚା ସେତିକିରେ ବନ୍ଦ । ଓଡ଼ିଆ ଭାଷା ବର୍ତ୍ତମାନ ନାଓ୍ୱାରସି-ମାଲ ଭଳି ବାରଲୋକଙ୍କ ହାତ ସଫେଇରେ ବାରଚାଉଳିଆ ହୋଇ ହଲାପଟା ହେଉଅଛି । ଏହି ଦୁର୍ଦ୍ଦଶାର ନିରାକରଣ ଓ ମାତୃଭାଷାର ଉଦ୍ଧାର ପାଇଁ ମୁଁ ଉତ୍କଳ ସାହିତ୍ୟ ରଣ-ରଙ୍ଗଭୂମିର ସେନାପତି, ମାଜର୍, କର୍ଣ୍ଣେଲ୍, ଲେଫ୍‌ଟ୍‌ନେଣ୍ଟ, କାପ୍‌ଟେନ୍ ତଥା ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ, ପଦାତି, ତଥା ନୌକାରୋହୀ ଓ ଆକାଶପୋତାରୋହୀ ବୀରମାନଙ୍କୁ ଆବାହନ କରୁଅଛି । ସେମାନେ ଗୋଟିଏ ଟାଣୁଆ ସମିତି ଗଢ଼ି ଭାଷା ବ୍ୟବହାରରେ ଅଧୁନା ପରିଲକ୍ଷିତ ନିରଙ୍କୁଶତା ବା ଉଚ୍ଛୃଙ୍ଖଳତାର ଅବାରିତ ଗତିରୋଧ କରନ୍ତୁ ।

ଶେଷରେ କବିବର ରାଧାନାଥଙ୍କ ଦରବାରରୁ ମୂଲ୍ୟବାନ୍ ପଦ କେତୋଟି ଉଦ୍ଧାର କରି ଆପଣମାନଙ୍କ ମୂଲ୍ୟବାନ ସମୟନଷ୍ଟିର ଉପସଂହାର କରୁଅଛି -

ମଣ ନାହିଁ ମୁହିଁ ନେଇଛି ଏସନ
ଜ୍ଞାନଦର୍ପେ ଜ୍ଞାନଦାତାର ଆସନ;
ଥୋଇ ଏ ମୁକୁର ତୁମ୍ଭ ଆଗେ ଭାଇ ।
ନିଜ ମୁଖ ମୁଁ କି ନିଜେ ଦେଖୁନାହିଁ ?
ସବୁବେଳେ ମୁହିଁ କଲୁଛି ଅଧିକ
ସବୁବେଳେ ଯେଣୁ ହଲୁଛି ଅଧିକ ।

କାରଣ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷକୁ ପୂର୍ଣ୍ଣ କରିବାରେ ମୁଁ ଯେଉଁ ଦୋହଲରେ ପଡ଼ିଛି ସେ ଦୋହଲ ହଂସାଉଡ଼ା, ଧୈର୍ଯ୍ୟବୁଡ଼ା, ଆଳସ୍ୟଛଡ଼ା, ମୁକତା ତଡ଼ା, ଦମ୍ଭ ଘଉଡ଼ା, ଏରିଓପ୍ଲେନ ଚଢ଼ା, ଅଣ୍ଟାଭିଡ଼ା ଅଟେ ।

ପର୍ଯ୍ୟାଲୋଚିତ ତ୍ରୁଟିମାନଙ୍କ ବିଷୟରେ ମୁଁ ଜଣେ 'ସି' କ୍ଲାସ୍ ଦାଗୀ । ମୋ ଲେଖାରେ ଆପଣମାନେ ଏ ଦୋଷମାନ ଭୂରି ଭୂରି ପାଇବେ । ମୁଁ ସ୍ୱୟଂ ଆସିଦ୍ଧ, ଅନ୍ୟମାନଙ୍କୁ କଅଣ ସୁଧାରିବି ? ମୋର ଏହି ଆଶା ହେଉଛି ଯେ ଉତ୍କଳ ସାହିତ୍ୟ ସମାଜକୁ ଭାଷା ଓ ସାହିତ୍ୟ ରାଜ୍ୟରେ ନିୟାମକରୂପେ ଦୃଢ଼ ପ୍ରତିଷ୍ଠିତ କରି ଆପଣମାନେ ସୁଧୁରିବେ ଓ ଷ୍ଟୀମର୍ ପଛରେ ବନ୍ଧା ହୋଇଥିବା ଗଧିଆ ବୋଟ ଭଳି ଆପଣମାନଙ୍କ ବୋଲକରା ହୋଇ ମୁଁ ମଧ୍ୟ ସୁଧୁରିଯିବ ଓ ସମସ୍ତ ମିଶି ମାତୃଭାଷାର ଉନ୍ନତି କରିବା ଦିନେ ଆମ ମାତୃଭାଷା-ପ୍ରତିବେଶୀମାନଙ୍କ ଦ୍ୱାରା ଅବହେଳିତ ଓଡ଼ିଆ ଭାଷା-ଆନ୍ତର୍ଜାତୀୟ ଭାଷା ସଂସଦରେ ବିଶିଷ୍ଟ ଓ ମହନୀୟ ଆସନ ଅଧିକାର କରିବ । ଭଗବାନ୍ ଏ ଦିନ ଚଞ୍ଚଳ ଆଣନ୍ତୁ ଓ ତାଙ୍କ ମଙ୍ଗଳମୟ ପ୍ରେରଣା ଦ୍ୱାରା ଆମ ଦେଶ, ଆମ ଜାତି, ଆମ ଭାଷା ଓ ସାହିତ୍ୟ ଗୌରବମଣ୍ଡିତ ହେଉ । ତଥାସ୍ତୁ ।



## ୯

# ଭାଷା

## ଜଳନ୍ଧର ଦେବ

ଯଦ୍ୱାରା ମନୁଷ୍ୟ ନିଜ ହୃଦଗତ ଭାବ ବ୍ୟକ୍ତ କରିପାରେ ତାହାହିଁ ଭାଷା । ଭାଷା ଦୁଇ ପ୍ରକାର– କଥିତ ଭାଷା ଓ ଲିଖିତ ଭାଷା । ସର୍ବସାଧାରଣ ଯେଉଁ ପ୍ରଚଳିତ ଭାଷା କହନ୍ତି ତାହା କଥିତ ଭାଷା, ପରିମାର୍ଜିତ ଭାଷା ଲିଖିତ ଭାଷା । ଯେଉଁ ଭାଷାରେ ପୁସ୍ତକାଦି ଲିଖିତ ହୋଇ ଲେଖକର ଭାବ ବ୍ୟକ୍ତହୁଏ ଏବଂ ପାଠକର ମନ ତୃପ୍ତିଲାଭ କରେ ତାହା ଲିଖିତ ଭାଷା । କଥିତ ଭାଷା ପରିମାର୍ଜିତ ହୋଇ ଲିଖିତ ଭାଷା ହୋଇଅଛି ସତ କିନ୍ତୁ ତହିଁରେ ଭାବବ୍ୟକ୍ତକାରୀ ଅନେକ ସଂସ୍କୃତ ଓ ଅନ୍ୟଭାଷାର ଶବ୍ଦ ମିଶ୍ରିତ ହୋଇଅଛି । ଭାରତବର୍ଷରେ ବି କଥିତ ଲିଖିତ ଭାଷାର ସଂଖ୍ୟା ଅନେକ । ମାତ୍ର କଥିତ ଭାଷା ଅପେକ୍ଷା ଲିଖିତ ଭାଷାର ସଂଖ୍ୟା ଅଳ୍ପ । ଏହା ସ୍ୱାଭାବିକ କଥା । ଦୂରତାର ତାରତମ୍ୟ ଅନୁସାରେ କଥିତ ଭାଷାର ତାରତମ୍ୟ ଘଟେ; ଏହା ପ୍ରମାଣସିଦ୍ଧ, ପ୍ରତ୍ୟକ୍ଷସିଦ୍ଧ ।

ଆମମାନଙ୍କର ମାତୃଭାଷା ଓଡ଼ିଆ ଗୋଟିଏ ପ୍ରସିଦ୍ଧ ଭାଷା, ଏଥିରେ ସନ୍ଦେହ ନାହିଁ । ଭାରତରେ ପ୍ରଚଳିତ ଅନେକ ଭାଷା ଅପେକ୍ଷା ଓଡ଼ିଆ ଭାଷାର ଆସନ ଯେ ଉଚ୍ଚରେ ଏଥିରେ କେହି ଦ୍ୱିରୁକ୍ତି କରିପାରିବେ ନାହିଁ । ଭାଷା ଭିତରେ ଏହାର ବୈଶିଷ୍ଟ୍ୟ ଥିଲା, ଏବେ ମଧ ବଢୁଛି । ପଦ୍ୟ-ସାହିତ୍ୟରେ ଏହାର ବିଶିଷ୍ଟତା ଅସାଧାରଣ ଥିଲା, ଗଦ୍ୟ-ସାହିତ୍ୟରେ ମଧ ଅଳ୍ପକାଳ ମଧରେ ଏହାର ପ୍ରାଧାନ୍ୟ ଯଥେଷ୍ଟ ବଢ଼ିଅଛି । ରଚକ ଓ ଲେଖକମାନଙ୍କର ସ୍ୱାଧୀନ ପ୍ରବୃତ୍ତି ହିଁ ଏ ଉନ୍ନତିର ମୂଳକାରଣ । ଅନୁକରଣ ଦ୍ୱାରା ଭାବ ଓ ଭାଷା ସଂକୁଚିତ ହୁଏ । ଅନୁକରଣତା ସ୍ୱାଧୀନ ଭାବର ଅନ୍ତରାୟ । ଭାବରାଜ୍ୟ ସଂକୁଚିତ ହେଲେ ଭାଷାର ବିସ୍ତୃତି ଅସମ୍ଭବ । ପର୍ଯ୍ୟବେକ୍ଷଣ, ପର୍ଯ୍ୟଟନ, ଅଭାବ ଜ୍ଞାନ, ବିପତ୍‌ପାତ, ବିପତ୍‌ପାତରୁ ରକ୍ଷା ପାଇବାର ପନ୍ଥା, ଅନ୍ୱେଷଣ ଇତ୍ୟାଦିରୁ ମନୁଷ୍ୟର ଭାଷାର ଶବ୍ଦ ସଂଖ୍ୟା ବୃଦ୍ଧିପ୍ରାପ୍ତ ହୋଇଅଛି । ଯେଉଁ ଜାତି ଯେତିକି ସଭ୍ୟ ଓ ଉନ୍ନତିଶୀଳ ତାର ଭାଷାକୋଷ ତେତିକି ବଡ଼ । ଅଶିକ୍ଷିତ ପ୍ରଚଳିତ ଅଳ୍ପସଂଖ୍ୟକ ଶବ୍ଦ ଘେନି ତୃପ୍ତ । ମାତ୍ର ଶିକ୍ଷିତ ଓ ସଭ୍ୟର ଆଶା ଓ ଆକାଙ୍‌କ୍ଷା ସେତିକିରେ ତୃପ୍ତହେବା ଅସମ୍ଭବ । ସଭ୍ୟର ଭାବରାଜ୍ୟର ବିସ୍ତୃତି ସଙ୍ଗେ ସଙ୍ଗେ

ଶବ୍ଦ ସଂଖ୍ୟା ବୃଦ୍ଧି କରିବାର ନିତାନ୍ତ ପ୍ରୟୋଜନ ହୋଇଉଠେ । ସୁତରାଂ ଗ୍ରାମ୍ୟ ଓ ପ୍ରାଦେଶିକତା ତ୍ୟାଗକରି ବିଶୁଦ୍ଧ ଭାଷା ଓ ପ୍ରାଞ୍ଜଳ ସାହିତ୍ୟ ଗଠନରେ ସଭ୍ୟର ପ୍ରବୃତ୍ତି ଜନ୍ମେ । ଏହି ନିୟମରେ ଭାଷା ଓ ସାହିତ୍ୟର ଉନ୍ନତି ଘଟିଥାଏ ।

ଓଡ଼ିଆ ଭାଷାର ଗ୍ରାମ୍ୟ ଓ ପ୍ରାଦେଶିକତା ବେଶୀ, ଯେହେତୁ ଓଡ଼ିଶା ଗୋଟିଏ କ୍ଷୁଦ୍ର ପ୍ରଦେଶ ନୁହେଁ; ତାହାଛଡ଼ା ଅରଣ୍ୟ ଓ ଗିରିସଙ୍କୁଳ ଏ ପ୍ରଦେଶର ଗତିପଥ ସବୁ ନିର୍ବାଧ ଓ ସୁଗମ ନଥିଲା । ଏଣୁ ପ୍ରତ୍ୟେକ କ୍ଷୁଦ୍ର ଭୂମି ବିଭାଗ ମଧ୍ୟ ଭାଷାର ସ୍ୱାତନ୍ତ୍ର୍ୟ କରିଅଛି । ଏହା ବୁଝାଇବା ନିଷ୍ପ୍ରୟୋଜନ । କିନ୍ତୁ ଏତାଦୃଶ ବାଧାସତ୍ତ୍ୱେ ବିଶୁଦ୍ଧ ଓଡ଼ିଆ ଭାଷା ଗଠିତ ହୋଇଅଛି ଓଡ଼ିଶାର କୃତୀପୁତ୍ର ପ୍ରାଚୀନ କବିମାନଙ୍କ ଦ୍ୱାରା । ତାହା ପାଠ କଲାବେଳେ ପ୍ରତ୍ୟେକ ଓଡ଼ିଆ ପ୍ରାଦେଶିକ ଓ ଗ୍ରାମ୍ୟଭାଷାକୁ ଭୁଲିଯାଆନ୍ତି ଏବଂ ନିଜେ ରଚନା କଲାବେଳେ ପୂର୍ବ କବିମାନଙ୍କର ପଦାଙ୍କ ଅନୁସରଣ କରି ଗ୍ରାମ୍ୟ ଶବ୍ଦ ତ୍ୟାଗକରି ଶକ୍ତ୍ୟାନୁସାରେ କାବ୍ୟ ଲେଖନ୍ତି । ପ୍ରତ୍ୟେକ ଲେଖାରେ ଗ୍ରାମ୍ୟ ଓ ପ୍ରାଦେଶିକ ଶବ୍ଦ ଯେ ନଥାଏ ଏପରି ନୁହେଁ, ମାତ୍ର ଜଣକର ପ୍ରାଦେଶିକ ଓ ଗ୍ରାମ୍ୟକଥା ଯେପରି ଅନ୍ୟ ପ୍ରଦେଶର ବା ଗ୍ରାମର ଲୋକ ବୁଝିବା ଅସମ୍ଭବ ହୁଏ କାବ୍ୟ ବୁଝିବାକୁ ସେପରି ଅସମ୍ଭବ ହୁଏ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ସମ୍ବଲପୁରର ଗ୍ରାମ୍ୟଭାଷା କଟକବାସୀଙ୍କୁ ବୁଝିବାକୁ ଯେପରି କଷ୍ଟ ସ୍ୱୀକାର କରିବାକୁ ହେବ, ବିଶୁଦ୍ଧ କଟକ ଗ୍ରାମ୍ୟଭାଷା ବୁଝିବାକୁ ସମ୍ବଲପୁରବାସୀଙ୍କୁ ମଧ୍ୟ ସେହିପରି କଷ୍ଟ ସ୍ୱୀକାର କରିବାକୁ ହେବ ।

ବର୍ତ୍ତମାନ ଦେଖାଯାଏ ଅନେକ ଲେଖକ ଗ୍ରାମ୍ୟଭାଷା ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି । ସେମାନଙ୍କ ବ୍ୟବହୃତ ଗ୍ରାମ୍ୟ ଶବ୍ଦ ଯେବେ ସମସ୍ତ ଉତ୍କଳଭାଷୀଙ୍କର ବୋଧଗମ୍ୟ ହୁଅନ୍ତା, ତେବେ ଗୋଟାକେତେ ଶବ୍ଦ ବ୍ୟବହାରରେ କ୍ଷତି ନ ଥାନ୍ତା; ମାତ୍ର ସେମାନଙ୍କର ବୁଝିବା ଉଚିତ ଯେ ଲେଖକର ଗ୍ରାମ୍ୟ ଶବ୍ଦ ସବୁ ସ୍ଥଳରେ ପାଠକର ଗ୍ରାମ୍ୟ ଶବ୍ଦ ନୁହେଁ । ପାଠକ ସେ ଗ୍ରାମ୍ୟ ଶବ୍ଦର ଅର୍ଥ ବୁଝିବାକୁ କିଂକର୍ତ୍ତବ୍ୟବିମୂଢ଼ ହେବା କଥା- ଯେହେତୁ ଏ ଦେଶରେ ଗ୍ରାମ୍ୟ ଶବ୍ଦକୋଷ ନାହିଁ । 'ନନାଙ୍କ ବସ୍ତାନୀ'ରେ ବ୍ୟବହୃତ କଟକୀ ଗ୍ରାମ୍ୟଭାଷା ଲେଖକର ଲେଖା-ନୈପୁଣ୍ୟରୁ ପଢ଼ିବାକୁ ପ୍ରୀତିପ୍ରଦ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ଅନ୍ୟପ୍ରଦେଶର ଲୋକଙ୍କର ବୋଧଗମ୍ୟ ହୁଏନାହିଁ । ଯେଉଁମାନଙ୍କ ନିମନ୍ତେ ଲେଖା, ସେମାନେ ଯେବେ ବୁଝିବାକୁ ଅକ୍ଷମ ତେବେ ସେ ଲେଖାର ପ୍ରୟୋଜନ କ'ଣ ? ପର ନିମନ୍ତେ ସାହିତ୍ୟର ସୃଷ୍ଟି । ଶବ୍ଦ-କାଠିଣ୍ୟ ଯେମନ୍ତ କାବ୍ୟର ଦୋଷ, ଗ୍ରାମ୍ୟତା ବିଶେଷତଃ ଅପ୍ରଯୋଜ୍ୟ ଗ୍ରାମ୍ୟତା ତତୋଽଧିକ ଆଳଙ୍କରିକ ଦୋଷ ଅଟେ । ଓଡ଼ିଶାର ପ୍ରତ୍ୟେକ ପ୍ରଦେଶର ଲେଖକମାନେ ଯେବେ ଆପଣା ଆପଣା ପ୍ରଦେଶର ବା ଗ୍ରାମର ବ୍ୟବହୃତ ଶବ୍ଦ ବ୍ୟବହାର କରି ଦେଶ-ପ୍ରେମିକତା ଦେଖାଇବାକୁ ଯତ୍ନଶୀଳ ହୁଅନ୍ତି, ତା'ହେଲେ ଅଚିରେ ଯେ ଓଡ଼ିଆ ସାହିତ୍ୟର ଅଧୋଗତି ହେବ ଏଥିରେ କି ସନ୍ଦେହ କରିବାର ଅବସର ଅଛି ?

ଆଧୁନିକ ଲେଖାର ଗୋଟିଏ ମାତ୍ର ଉଦାହରଣ ଦେଲେ ବୋଧହୁଏ କେହି ଅସଙ୍ଗତ ମନେକରିବେ ନାହିଁ । ସମ୍ପାଦକମାନଙ୍କର କାଳି, କାଗଜ ଓ ଅକ୍ଷର ଯଥେଷ୍ଟ ଅଛି ଏଣୁ ବୋଧହୁଏ ଶବ୍ଦ - ସଂକ୍ଷେପର ସେମାନେ ପକ୍ଷପାତୀ ହୁଅନ୍ତେ ନାହିଁ । ତଥାପି ଲେଖକମାନେ ବୃଥାରେ କେତେଗୋଟା ଶବ୍ଦର ଅବୟବ ଛିନ୍ନ କରିବାକୁ ଯତ୍ନଶୀଳ । ଯେମନ୍ତ ନାହିଁ ସ୍ଥଳରେ 'ନି' । ଏହାର ବହୁଳ ବ୍ୟବହାର ଦେଖି ଭୟ ହେଲାଣି । ମୁଁ ଯିବିନାହିଁ ସ୍ଥଳରେ ଲେଖୁଅଛନ୍ତି ମୁଁ ଯିବିନି । ହୁଏତ କଟକ ଅଞ୍ଚଳରେ ଲୋକେ ତାହା ବୁଝିପାରନ୍ତି ମାତ୍ର ଅନ୍ୟ ଅଞ୍ଚଳର ଲୋକପ୍ରତି ତାହା ବୁଝିବାକୁ କଷ୍ଟକର ହେବ । ମୁଁ ଯିବିନି ବ୍ୟବହାରର 'ନି' ଅକ୍ଷରଟି ଏ ଅଞ୍ଚଳରେ ନିଶ୍ଚୟାର୍ଥରେ ପ୍ରୟୋଗ ହୁଏ । ତମେ ଯାଇଥାଅ, ମୁଁ ଯିବିନି ଅର୍ଥାତ୍ ମୁଁ ନିଶ୍ଚୟ ଯିବି । ସୁତରାଂ ଏତାଦୃଶ ଦ୍ୱିର୍ଥବୋଧକ ଗ୍ରାମ୍ୟଶବ୍ଦ ବ୍ୟବହାର ଦ୍ୱାରା ଯେ ସାହିତ୍ୟର ଉଦ୍ଦେଶ୍ୟ କ୍ଷୁଣ୍ଣ ହେବ ଏଥିରେ ସନ୍ଦେହ ନାହିଁ । ପ୍ରାଚୀନ ବୈୟାକରଣିକମାନେ କହନ୍ତି ଶବ୍ଦରୁ ଗୋଟାଏ ଅକ୍ଷର ସଂକ୍ଷେପ କରିପାରିଲେ ପୁତ୍ରଲାଭର ଆନନ୍ଦ ମିଳେ । ସେ ସମୟ ଆମ ଦେଶକୁ ଆସିନାହିଁ ।

ଭାଷାକୁ ବିଶୁଦ୍ଧ କରିବାକୁ ହେଲେ ଏବଂ ସମସ୍ତଙ୍କର ବୋଧଗମ୍ୟ ହେଉ ଏ ଇଚ୍ଛା ଥିଲେ ଗ୍ରାମ୍ୟ ଶବ୍ଦ ବ୍ୟବହାର ଯେ ବର୍ଜନୀୟ ଏହା ବୋଧହୁଏ ଅସ୍ୱୀକାର୍ଯ୍ୟ ନୁହେଁ । ଭାଷା ବ୍ୟବଧାନ ସାହିତ୍ୟ ପ୍ରଗତିର ଅନ୍ତରାୟ । ଭାଷାର ବ୍ୟବଧାନ ଘଟେ ଗ୍ରାମ୍ୟତା ଦୋଷରୁ । ସୁତରାଂ ଆଧୁନିକ ଉତ୍କଳର ଶିକ୍ଷିତା ମହିଳା ବା ଶିକ୍ଷିତା ଘରର ମହିଳାମାନେ ଯେପରି ଅଶିକ୍ଷିତା ଗ୍ରାମ୍ୟନାରୀଙ୍କ ବ୍ୟବହୃତ ପିତଳ ଅଳଙ୍କାର ଓ ମୋଟା ଲାଖ ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରନ୍ତି ନାହିଁ ସେହିପରି ଆଧୁନିକ ଲେଖକମାନେ ଗ୍ରାମ୍ୟ ଶବ୍ଦ ବ୍ୟବହାରକୁ ଦେଶ-ପ୍ରେମିକତାର ପରିଚାୟକ ବୋଲି ମନେକରିବେ ନାହିଁ ।



# ଭାରତର ଭବିଷ୍ୟତ ଭାଷା

ନନ୍ଦକିଶୋର ବଳ

ବିଶ୍ୱ-ଭାରତରେ ଏକତା ପ୍ରତିଷ୍ଠିତ ନହେଲେ ଭାରତବାସିଗଣ ଗୋଟିଏ ମହତ୍ ଜାତିରେ ପରିଣତ ହୋଇପାରିବେ ନାହିଁ ଏବଂ ପୃଥିବୀର ଅନ୍ୟାନ୍ୟ ଜାତି ସଙ୍ଗେ ମନୁଷ୍ୟତ୍ୱରେ ସମକକ୍ଷ ହୋଇପାରିବେ ନାହିଁ ।

ତିନିଗୋଟି ଉପାୟରେ ମନୁଷ୍ୟ-ମନୁଷ୍ୟ ମଧ୍ୟରେ ଏକତା ହୁଏ ଏବଂ ସେମାନେ ଏକଜାତିଭୁକ୍ତ ହୁଅନ୍ତି, (୧) ଧର୍ମ (Unity in Religion), (୨) ଶାସନ (Unity in Government), (୩) ଭାଷା (Unity in Language) ।

## ଭାଷାରେ ଏକତ୍ୱ

ଭାରତରେ ଅନ୍ତତଃ ହିନ୍ଦୁ ଆର୍ଯ୍ୟମାନଙ୍କ ମଧ୍ୟରେ ଭାଷା ସମ୍ବନ୍ଧରେ ଏକତ୍ୱ ଥିଲା । ପ୍ରଥମେ ସଂସ୍କୃତ ଓ ପରେ ସଂସ୍କୃତ, ପ୍ରାକୃତ ଲିଖିତ ଓ କଥିତ ଭାଷା ଥିଲା । କାଳକ୍ରମେ 'ପ୍ରାକୃତ' ନାନା ଅନାର୍ଯ୍ୟ ଭାଷା ସହିତ ସମ୍ମିଳିତ ହୋଇ ହିନ୍ଦୀ, ବଙ୍ଗଳା, ମହାରାଷ୍ଟ୍ରୀ, ଓଡ଼ିଆ ଇତ୍ୟାଦି ଭାଷାର ଆକାର ଧାରଣ କରିଅଛି । ଉକ୍ତ ଭାଷାକୁ କଥିତ ଭାଷାରୂପେ ବ୍ୟବହାର କରି ସେମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଭାଷାକୁ ଲିଖିତ ଭାଷାରୂପେ ସମଗ୍ର ଦେଶରେ ବ୍ୟବହାର କରିବାର ଆବଶ୍ୟକତା କେତେକ ଚିନ୍ତାଶୀଳ ଲୋକ ଅନୁଭବ କରୁଅଛନ୍ତି ଏବଂ ତାହାର ଆବଶ୍ୟକତା ମଧ୍ୟ ସ୍ପଷ୍ଟ । ଭାରତ ବ୍ରିଟେନ୍‌ଠାରୁ ଯେଉଁସବୁ ସୁଖସ୍ୱାଚ୍ଛନ୍ଦ୍ୟ ଲାଭ କରିଅଛି, ସମୟ ସମୟରେ ସେହି ସୁଖସ୍ୱାଚ୍ଛନ୍ଦ୍ୟରେ ମଧ୍ୟ ପ୍ରତିବନ୍ଧକ ଉପସ୍ଥିତ ହୁଏ । ପ୍ରଜାର ସକଳ ଦୁଃଖ ରାଜାଙ୍କୁ ଜଣାଇବା ଅଭିପ୍ରାୟରେ ରାଷ୍ଟ୍ରୀୟ ମହାସମିତି (National Congress) ସମଗ୍ର ଭାରତୀୟ ଏବଂ କତିପୟ ଇଉରୋପୀୟ ମନୀଷୀଦ୍ୱାରା ପ୍ରତିଷ୍ଠିତ ହୋଇ ଆଜିକୁ ପ୍ରାୟ ପଞ୍ଚଦଶ ବର୍ଷ ହେଲା ସ୍ୱକାର୍ଯ୍ୟ ନିର୍ବାହ କରିବାକୁ ଚେଷ୍ଟା କରିଆସୁଅଛି । ସମଗ୍ର ଦେଶରେ, ନାନାସ୍ଥାନରେ ଏହାର ସମର୍ଥକଦଳ ସୃଷ୍ଟ ଓ ପୁଷ୍ଟ ହୋଇଆସୁଛନ୍ତି । ପ୍ରତିବର୍ଷ ପ୍ରତି ପ୍ରଦେଶରୁ ବିଶିଷ୍ଟ ବ୍ୟକ୍ତିମାନେ ଆଗମନ କରି ଏକ ଅପୂର୍ବ ମିଳନ ସଂଘଟନ

କରିଅଛନ୍ତି । ଏହାର ଯୋଡ଼ିଏ ଅଭାବ ଅତିଶୀଘ୍ର ପୂରଣ ହେବା ବିଷୟରେ ପ୍ରତ୍ୟେକ ଶୁଭାକାଂକ୍ଷୀଙ୍କର ମସ୍ତିଷ୍କ ବିଘୂର୍ଣ୍ଣିତ ହେଉଅଛି । ଏହା ବର୍ତ୍ତମାନପରି ନାନାସ୍ଥାନରେ ଅନୁଷ୍ଠିତ ନ ହୋଇ କୌଣସି ଗୋଟିଏ ସ୍ଥାନରେ ଅନୁଷ୍ଠିତ ହେଲେ ଏତେ ବ୍ୟୟସାପେକ୍ଷ ହୁଅନ୍ତା ନାହିଁ ଏବଂ ସମିତିର ଆଲୋଚନାର ଭାଷା ଇଂରାଜୀ ନ ହୋଇ କୌଣସି ଗୋଟିଏ ଦେଶୀୟ ଭାଷାରେ ହେଲେ ଅଧିକ ସଂଖ୍ୟକ ସାଧାରଣ ଲୋକ ସମିତିରେ ସହଜରେ ଯୋଗଦେଇ ପାରନ୍ତେ । ବିଗତ ବର୍ଷଠାରୁ ସମିତିରେ ଦେଶୀୟ ଭାଷାର ପ୍ରବର୍ତ୍ତନ ହୋଇଛି । ରାଷ୍ଟ୍ରୀୟ ମହାସମିତିର କାର୍ଯ୍ୟ ନିର୍ବାହୋଦ୍ଦେଶ୍ୟରେ ଭାରତବାସୀଙ୍କୁ ପ୍ରାଣର ଏକତାସୂତ୍ରରେ ବନ୍ଧନ କରି ସମଗ୍ର ଭାରତକୁ ଏକକରିବା ଉଦ୍ଦେଶ୍ୟରେ କେଉଁ ଭାଷା ଭାରତର ଭାବୀ ବିଶିଷ୍ଟ ଭାଷା ହେବା ବାଞ୍ଛନୀୟ ? ଅବଶ୍ୟ ଏହା ସ୍ୱାଭାବିକ ଯେ, ଭାରତର ପ୍ରତ୍ୟେକ ପ୍ରଦେଶର ଅଧିବାସୀବୃନ୍ଦ ସ୍ୱ ସ୍ୱ ଭାଷାକୁ ସେହି ବିଶିଷ୍ଟ ଭାଷାର ସ୍ଥାନରେ ଅଧିଷ୍ଠିତ କରିବାକୁ ଆକାଂକ୍ଷା କରିବେ । କିନ୍ତୁ ଯାହା ସ୍ୱାଭାବିକ ତାହା ସର୍ବତ୍ର ସମୀଚୀନ ନ ହୋଇପାରେ ।

ଇତିମଧ୍ୟରେ କେତେକ ବଙ୍ଗୀୟ ଲେଖକ ନିଜ ଭାଷାକୁ ଭାରତର ଭାବୀ ଭାଷାସ୍ୱରୂପ ବିଜୟଘୋଷଣାରେ ମୁକ୍ତହସ୍ତତାର ପରିଚୟ ଦେଇ ସାରିଅଛନ୍ତି । ସେମାନେ ଆସାମୀ, ଓଡ଼ିଆ ଏବଂ ଏପରିକି ବିହାରୀମାନଙ୍କୁ ସ୍ୱ ସ୍ୱ ଭାଷା ବିସର୍ଜନ ଦେଇ ବଙ୍ଗଳାକୁ ମାତୃଭାଷାରୂପେ ଗ୍ରହଣ କରିବାକୁ ଉପଦେଶ ଦେଇଛନ୍ତି । ସେମାନଙ୍କର ଯୁକ୍ତି ପରମ୍ପରାର ଔଚିତ୍ୟାନୌଚିତ୍ୟ ଅନ୍ୟତ୍ର ବିଚାର୍ଯ୍ୟ । କିନ୍ତୁ ମୋର କ୍ଷୁଦ୍ର ବିବେଚନାରେ ହିନ୍ଦୀଭାଷା ହିଁ ଭାରତର ଭାବୀ ଭାଷା ହେବାପାଇଁ ଉପଯୁକ୍ତ । ପ୍ରାଦେଶିକ ଭାଷା ସମସ୍ତର ଅସ୍ତିତ୍ୱ ଲୋପ କରିବା ଆମର ଉଦ୍ଦେଶ୍ୟ ନୁହେଁ । ସର୍ବପ୍ରଥମ ଓ ସର୍ବପ୍ରଧାନ କାରଣ ଭାରତରେ ହିନ୍ଦୀଭାଷୀମାନଙ୍କର ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷା ବ୍ୟବହାର କରୁଥିବା ଲୋକମାନଙ୍କର (୧୮୯୧ ମସିହାର ସେନ୍‌ସସ୍‌ରେ ନିର୍ଦ୍ଧାରିତ) ସଂଖ୍ୟା ଉଦ୍ଧାର କଲୁଁ; ନିରପେକ୍ଷ ପାଠକମାନେ ଚିନ୍ତାକଲେ ଜାଣିପାରିବେ ଓ ମୋ ମତାବଲମ୍ବୀ ହେବେ ।

ସମଗ୍ର ଭାରତର ଲୋକସଂଖ୍ୟା ୨୮କୋଟି ୬ନିୟୁତ ।

(କ) ସଂସ୍କୃତମୂଳକ -

(୧) ବଙ୍ଗଭାଷାଭାଷୀ ୪ କୋଟି, (୨) ଓଡ଼ିଆଭାଷୀ ୭ ନିୟୁତ, (୩) ଆସାମୀଭାଷୀ ୨ନିୟୁତ, (୪) ହିନ୍ଦୀଭାଷୀ ୮କୋଟି, (୫) ପଞ୍ଜାବୀଭାଷୀ ୧କୋଟି ୬ନିୟୁତ, (୬) ସିନ୍ଧୀଭାଷୀ ୨ନିୟୁତ, (୭) ମହାରାଷ୍ଟ୍ରୀଭାଷୀ ୧କୋଟି ୭ନିୟୁତ, (୮) ଗୁଜରାଟୀଭାଷୀ ୧କୋଟି, (୯) ଉର୍ଦ୍ଦୁଭାଷୀ ୨କୋଟି ୫ନିୟୁତ ।

(ଖ) ଦ୍ରାବିଡ଼ିୟାନମୂଳକ-

ତାମିଲ ଭାଷାଭାଷୀ ୧କୋଟି ୩ନିୟୁତ, ମାଲୟାଲମଭାଷୀ ୫ନିୟୁତ, କାନାଡ଼ିଭାଷୀ

୯ନିୟୁତ, ତୈଲଙ୍ଗଭାଷୀ ୧କୋଟି ୭ନିୟୁତ ।
(ଗ) ବ୍ରହ୍ମଦେଶୀୟ ଭାଷାମୂଳକ - ଗଣ୍ଡଭାଷୀ ୨ନିୟୁତ ।

ଉପୋରକ୍ତ ହିସାବରୁ ଆମ୍ଭେମାନେ ଜାଣିପାରୁଛୁ ଯେ ହିନ୍ଦୀଭାଷୀ ଏବଂ ହିନ୍ଦୀପ୍ରସୂତ ହିନ୍ଦୁସ୍ଥାନୀଭାଷୀ ଭାରତୀୟଙ୍କ ସଂଖ୍ୟା ୧୦କୋଟିରୁ ଊର୍ଦ୍ଧ୍ୱ ।

ଏତଦ୍‌ବ୍ୟତୀତ ହିନ୍ଦୀର ଦାବୀ ଅନ୍ୟାନ୍ୟ କାରଣ ପରମ୍ପରା ବଳରେ ମଧ ସର୍ବପ୍ରଧାନ । ସନ୍ନ୍ୟାସୀ ପ୍ରଭୃତି ଦେଶ ପର୍ଯ୍ୟଟକମାନେ ଅଧିକାଂଶ ପଶ୍ଚିମବାସୀ । ସେମାନଙ୍କ ଯୋଗୁଁ ଭାରତର ପ୍ରାୟ ସର୍ବତ୍ର ହିନ୍ଦୀଭାଷାର ଅଳ୍ପାଧିକ ପ୍ରଚଳନ ଅଛି । ଏହା ସେହି ପଳିତକେଶା ମାତାମହୀ ସଂସ୍କୃତ ଭାରତୀଙ୍କର ଜ୍ୟେଷ୍ଠା ପୌତ୍ରୀ । ଏହା ଭାରତୀୟ ଆର୍ଯ୍ୟମାନଙ୍କର ଆଦିମ ଅଧିବାସ ଆର୍ଯ୍ୟବର୍ତ୍ତର ଭାଷା । ଅଥଚ ପଞ୍ଜାବ ଇତ୍ୟାଦି ଅଞ୍ଚଳର ଭାଷା ସଦୃଶ ଦୁର୍ବୋଧ ନୁହେଁ । ଏହା ବିଦେଶୀୟମାନଙ୍କର ସୁବୋଧ । ଦୃଷ୍ଟାନ୍ତ ସ୍ୱରୂପ ଅଧିକାଂଶ ଭାରତପ୍ରବାସୀ ଇଂରାଜୀ ପୁରୁଷ ଏବଂ ମହିଳା ହିନ୍ଦୀଭାଷା କଥନସମର୍ଥ । କିନ୍ତୁ ଅନ୍ୟକୌଣସି ଭାଷା ଏତେ ସହଜରେ ବ୍ୟବହାର କରିବାକୁ ସେମାନେ ସମର୍ଥ ହୁଅନ୍ତି ନାହିଁ । ଉର୍ଦ୍ଦୁ ହିନ୍ଦୀ ମିଶ୍ରିତ ଭାଷା ଥିବାରୁ ହିନ୍ଦୀର ପ୍ରଚଳନ ଭାରତର ଉଭୟବାହୁ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଏକତା ଓ ସୌହାର୍ଦ୍ଦ୍ୟ ସଂସ୍ଥାପିତ କରି ଭାରତର ପ୍ରକୃତ ଉନ୍ନତିର ପଥ ପରିଷ୍କାର କରିଦେବ । ହିନ୍ଦୀ ଏକଆଡ଼େ ଯେପରି ଓଜଃପୂର୍ଣ୍ଣ ଅନ୍ୟଆଡ଼େ ସେପରି ମଧୁର । କିନ୍ତୁ ବଙ୍ଗାଳୀମାନେ ରୁଷ୍ଟହେଲେ ହିନ୍ଦୀ ସ୍ୱତଃ ସେମାନଙ୍କ ମୁଖରୁ ନିଃସୃତ ହୁଏ । ହିନ୍ଦୀଭାଷା ମଧ ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟର ଗରିମାରେ ସମ୍ମାନାର୍ହ । ଜଗତ୍ ବିଖ୍ୟାତ ଚାନ୍ଦକବି ଓ ତୁଳସୀ ଦାସ ପ୍ରଭୃତି ମହାତ୍ମାବୃନ୍ଦ ଏହି ହିନ୍ଦୀ ଭାଷାରେ ସେମାନଙ୍କ ଅମର ସଙ୍ଗୀତବାଣୀ ବଜାଇ ଗାନ କରିଯାଇଅଛନ୍ତି । ଅତଏବ ଯେବେ ଭାରତରେ ଏକଭାଷା ପ୍ରଚଳିତ ହେବାର ଏକାନ୍ତ ଏବଂ ଅଲଘ୍ୟ ପ୍ରୟୋଜନୀୟତା ଥାଏ, ତେବେ ସେ ଭାଷା ହୋଇ ପାରେ । ଅତଏବ ବଙ୍ଗୀୟ ସ୍ୱଦେଶହିତୈଷୀମାନଙ୍କର ଉଚିତ ଯେ, ନିଜ ସ୍ୱାର୍ଥ ବିସର୍ଜନ କରି ମାତୃଭୂମିର ପ୍ରକୃତ ଉନ୍ନତି ସାଧନ କରନ୍ତୁ । ତା ନ ହେଲେ "ପରୋପଦେଶେ ପାଣ୍ଡିତ୍ୟ" ସର୍ବଥା ଏବଂ ସର୍ବଦା ସହଜସାଧ୍ୟ ।

ବଙ୍ଗଭାଷୀ କହନ୍ତି କି ସେମାନେ ନିଜ ସାହିତ୍ୟକୁ ଅତି ଉନ୍ନତ କରିଅଛନ୍ତି । କିନ୍ତୁ ବାସ୍ତବିକ୍ ଇଉରୋପୀୟ ଓ ସଂସ୍କୃତ ସାହିତ୍ୟର ତୁଳନାରେ ଏପରି କି ଉନ୍ନତି ହୋଇଛି ଯେ ତାହାର ଖାତିରରେ ମାତୃଭୂମିର ଏକତ୍ୱ ସାଧନ ଓ ଦୁଃଖମୋଚନ ରୂପ ମହତ୍‌କାର୍ଯ୍ୟରେ ବଙ୍ଗବାସୀ ସଦୃଶ ସ୍ୱଦେଶଭକ୍ତଙ୍କୁ ବାଧା ଦେବ ? ପରନ୍ତୁ ବଙ୍ଗବାସୀ ବିଚକ୍ଷଣ ଓ ବୁଦ୍ଧିମାନ୍ । ଅଳ୍ପଦିନ ମଧ୍ୟରେ ସେ ହିନ୍ଦୀ ପରି ଗୋଟିଏ ଉନ୍ନତ ଭାଷାକୁ ଆହୁରି ଉନ୍ନତତର କରିପାରିବେ ଏବଂ ତାହା ସେ ସହଜରେ କରିପାରନ୍ତି । "ମୁକୁଳ"ନାମକ ମାସିକ ପତ୍ରିକାର ୩ୟ ଭାଗ,

୧ମ ସଂଖ୍ୟାରେ ଆମ୍ଭେମାନେ ପଢ଼ିଥିଲୁଁ ଯେ, ସ୍ୱନାମଧନ୍ୟ ସ୍ୱର୍ଗୀୟ ନବୀନଚନ୍ଦ୍ର ରାୟ ହିନ୍ଦୀ ଭାଷାରେ ବ୍ୟାକରଣାଦି ନାନା ପୁସ୍ତକ ରଚନା କରି ଉତ୍ତର-ପଶ୍ଚିମାଞ୍ଚଳର ମହତ୍ ଉପକାର କରିଯାଇଅଛନ୍ତି । ଆମ୍ଭେମାନେ ଆଶାକରୁଁ, ସକଳ ପ୍ରତିଭାବାନ୍ ବଙ୍ଗବାସୀ ସେହିପରି ସ୍ୱୀୟ ନାମ ଧନ୍ୟ କରି କ୍ଷୁଦ୍ର ବଙ୍ଗ ପରିବର୍ତ୍ତେ ବିଶାଳ ଭାରତକୁ ଉନ୍ନତ କରିପାରିବେ ଏବଂ ପ୍ରତିଭାବାନ୍ ମହାରାଷ୍ଟ୍ରୀୟବୃନ୍ଦ ଓ ଭାରତର ପ୍ରତ୍ୟେକ ପ୍ରଦେଶର ଅଧିବାସୀବୃନ୍ଦ ସ୍ୱଦେଶର କଲ୍ୟାଣ ପାଇଁ ସେମାନଙ୍କ ସହାୟ ହେବେ ଏବଂ ଆର୍ଯ୍ୟାବର୍ତ୍ତର ଲଳିତ ଏବଂ ଓଜସ୍ୱିନୀ ଭାଷା 'ହିନ୍ଦୀ' ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଦେଶନିବାସୀ ପ୍ରତ୍ୟେକ ହୃଦୟକୁ ସଂଯୋଗ କରିବ ।



## ୧୧

# ଓଡ଼ିଆ ଭାଷା

## ଜଗବଂଧୁ ସିଂହ

କେହି କେହି କହନ୍ତି ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ । କେତେକ ବଙ୍ଗୀୟ ଲେଖକ କହନ୍ତି, ଓଡ଼ିଆଭାଷା ବଙ୍ଗଭାଷାରୁ ଜାତ ହୋଇଛି । ଏ କଥାଟି କେତେଦୂର ସମୀଚୀନ ଏହା ଆଲୋଚନା କରାଯାଉ ।

ଭାଷା କେବେ ସୃଷ୍ଟି ହେଲା ତାହାର ଆଦି ଅନ୍ତ ସ୍ଥିର କରିବା କଠିନ । ବୋଧହୁଏ ଯେତେ ଦିନରୁ ସୃଷ୍ଟି ହେଲାଣି ତେତେ ଦିନରୁ ଭାଷା ହେଲାଣି । ସୃଷ୍ଟି ଆଗ କି ଭାଷା ଆଗ ଏକଥା ସ୍ଥିର କରିବାର କୌଣସି ଉପାୟ ନାହିଁ । ବୀଜ ଓ ବୃକ୍ଷର ପୌର୍ବାପର୍ଯ୍ୟ ସ୍ଥିର କରିବା ଯେପରି କଠିନ ଭାଷା ଓ ସୃଷ୍ଟି ସମ୍ବନ୍ଧରେ ସେହିପରି । ଶାସ୍ତ୍ର କହେ, ନାଦ ବା ଶବ୍ଦ ବ୍ରହ୍ମସ୍ୱରୂପ । ଭାଷା ଅର୍ଥ ଭାବବୋଧକ ଶବ୍ଦ ବା ସ୍ୱର । ଯେଉଁ ଅଭିବ୍ୟକ୍ତିଦ୍ୱାରା ଆପଣାର ଭାବ ଅନ୍ୟକୁ ବୁଝାଇ ଦିଆଯାଇପାରେ ତାହାହିଁ ଭାଷା । ମନୁଷ୍ୟର ଭାଷା ଅଛି, ପଶୁପକ୍ଷୀର ଭାଷା ଅଛି, କୀଟପତଙ୍ଗର ଭାଷା ଅଛି, ଆଧୁନିକ ବିଜ୍ଞାନ ମତରେ ଉଦ୍ଭିଦର ମଧ ଭାଷା ଅଛି । ସାଧାରଣ କଥାରେ କହିବାକୁ ହେଲେ ଯେଉଁ ଶବ୍ଦ ବା ସ୍ୱରଦ୍ୱାରା ପ୍ରାଣୀମାତ୍ରକେ ଆପଣା ସ୍ୱଜାତୀୟ ପ୍ରାଣିମାନଙ୍କ ନିକଟରେ ଆପଣାର ମନୋଗତ ଭାବ ବ୍ୟକ୍ତ କରିପାରନ୍ତି ତାହାର ନାମ ଭାଷା । ପ୍ରତ୍ୟେକ ପ୍ରାଣୀ ଆପଣାର ସୁଖ ଦୁଃଖ, ଅଭାବ ଅଭିଯୋଗ ଅନ୍ୟ ଆଗରେ ପ୍ରକାଶ କରିବାକୁ ସକ୍ଷମ । ଯେ କୌଣସି ପ୍ରକାରେ ଯେ କୌଣସି ପ୍ରାଣୀ ଆପଣା ମନୋଗତ ଭାବ ପ୍ରକାଶ କରିବଇଁ କରିବ । ଏହା ପ୍ରାଣୀର ନୈସର୍ଗିକ ଧର୍ମ । ପ୍ରତ୍ୟେକ ପ୍ରାଣୀର ଗୋଟିଏ ଲେଖାଏଁ ସ୍ୱରଯନ୍ତ୍ର ଅଛି । ଭିନ୍ନ ଭିନ୍ନ ଜାତୀୟ ପ୍ରାଣୀଙ୍କର ସ୍ୱରଯନ୍ତ୍ରର ଗଠନପ୍ରଣାଳୀ ସ୍ୱତନ୍ତ୍ର । ମନୁଷ୍ୟ ଆପଣା ମନୋଗତ ଭାବ ଯେପରି ପ୍ରକାଶ କରିପାରେ ଅନ୍ୟାନ୍ୟ ପ୍ରାଣୀ ପକ୍ଷରେ ତାହା ଧାରଣାତୀତ । ପ୍ରସିଦ୍ଧ ଗ୍ରୀକ୍ ଦାର୍ଶନିକ ପଣ୍ଡିତ ଆରିଷ୍ଟଟଲ କହିଛନ୍ତି, . "ଭାଷାଦ୍ୱାରା ମନୁଷ୍ୟ ଆବଶ୍ୟକ ଓ ଅନାବଶ୍ୟକ, ନ୍ୟାୟ ଓ ଅନ୍ୟାୟ ବୁଝାଇପାରେ । ଭଲ ମନ୍ଦ ନ୍ୟାୟ ଅନ୍ୟାୟ ବୁଝିପାରେ ବୋଲି ଏବଂ ଜ୍ଞାନ ଓ ବୁଦ୍ଧିଦ୍ୱାରା ପଶ୍ୱାଦି ଅପେକ୍ଷା ଶ୍ରେଷ୍ଠ ବୋଲି ମନୁଷ୍ୟ ବାକ୍ୟ କଥନ ଭାଷାର ଅଧିକାରୀ ।"

ଭାଷା କିପରି ଉତ୍ପତ୍ତି ହେଲା ଏ ବିଷୟରେ ନାନା ମତଭେଦ ଦେଖାଯାଏ । କେହି କହନ୍ତି, ଭାଷା ଦୈବୀଶକ୍ତିସମ୍ଭୂତା । କେହି କେହି ଭାଷାତତ୍ତ୍ୱାନୁସନ୍ଧିତ୍ସୁ କହନ୍ତି, ମାନବସୃଷ୍ଟି । ମାନବ ସୃଷ୍ଟ ହେବାପରେ କିଛିକାଳ ମୌନୀ ଥିଲା, ଭାବଭଙ୍ଗିଦ୍ୱାରା ଆପଣା ମନୋଭାବ ପ୍ରକାଶ କରୁଥିଲା । ସେ ଉପାୟଦ୍ୱାରା ପୂର୍ଣ୍ଣ ମନୋଭାବ ପ୍ରକାଶ କରି ନ ପାରି ଶବ୍ଦ ଉଚ୍ଚାରଣ କଲା । ପ୍ରଥମ ଉଚ୍ଚାରିତ ଶବ୍ଦ ଅସମ୍ବନ୍ଧ ଓ ଅସମ୍ପୂର୍ଣ୍ଣ ଥିଲା । ଶେଷକୁ ଦୁଇ ତିନି ଶବ୍ଦ ସଂଯୋଗ କରି ମନୋଭାବ ପ୍ରକାଶ କଲା । କେହି କେହି କହନ୍ତି, ଭାଷା ଈଶ୍ୱରସୃଷ୍ଟ । ଅନ୍ୟ ଏକ ପକ୍ଷ କହନ୍ତି, ଭାଷା ମନୁଷ୍ୟର ସ୍ୱଭାବଜାତ । ଯେ କୌଣସି ମତ ଗ୍ରାହ୍ୟ କଲେ ଜଣାଯାଏ ଯେ ଭାଷା ଅନାଦି କାଳରୁ ଅଛି । ପୃଥିବୀରେ ଅନେକ ପ୍ରକାର ଭାଷା ପ୍ରଚଳିତ ଅଛି । ଭାଷା ପରିବର୍ତ୍ତନଶୀଳ । ଏକ ଭାଷା ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଆକାର ଧାରଣ କରିଛି । ଯୋଜନାନ୍ତେ ଭାଷା ଭିନ୍ନାକାର ଧାରଣ କରେ । ଏ ତ ଗଲା ଭାଷାର ସାଧାରଣ ନିୟମ । ବର୍ତ୍ତମାନ ଦେଖାଯାଉ ଉତ୍କଳ ଭାଷା ବା ଉଡ୍ରଭାଷା ବା ଓଡ଼ିଆଭାଷା କେତେ କାଳର । ବୃହଦ୍ଧର୍ମ ପୁରାଣରେ ଲେଖାଅଛି "ବ୍ରହ୍ମା ସର୍ବାଗ୍ରେ ବ୍ରହ୍ମରୂପୀ ବାକ୍ୟ ସୃଜନା କରି ଅକାରାଦି ସ୍ୱର ଓ କକାରାଦି ହଳବର୍ଣ୍ଣ ଏବଂ ହଳବର୍ଣ୍ଣ ଓ ସ୍ୱରବର୍ଣ୍ଣ ପରସ୍ପର ସମ୍ମିଳିତ ସକଳ ସୃଜନାନ୍ତେ ଷଟ୍‌ପଞ୍ଚାଶତ ସଂଖ୍ୟକ ଭାଷା ଏବଂ ବାଳକମାନଙ୍କ ଭାଷା ଶିକ୍ଷା ଲାଗି ଏ ସମସ୍ତ ଭାଷାର ବ୍ୟାକରଣ ସୃଷ୍ଟି କଲେ" (ବୃହଦ୍ଧର୍ମ ପୁରାଣ, ପୂର୍ବଖଣ୍ଡ ୨୫ ଅଧ୍ୟାୟ ୧୧-୧୩ଶ ଶ୍ଳୋକ)। ସେହି ଛପନ ଭାଷା ମଧ୍ୟରେ କେଉଁ କେଉଁ ଭାଷା ଥିଲା ତାହା ପୁରାଣରେ ଲେଖାନାହିଁ । ପ୍ରାକୃତ 'ଲଙ୍କେଶ୍ୱର ବ୍ୟାକରଣ'ରେ ଶାସ୍ତ୍ରୀୟ ଅଷ୍ଟାଦଶ ଭାଷାର ଉଲ୍ଲେଖ ଅଛି । ଏହି ଅଷ୍ଟାଦଶ ଭାଷା ମଧ୍ୟରେ ଓଡ୍ରିୟା ବା ଓଡ୍ରିଯା ଭାଷାର ନାମୋଲ୍ଲେଖ ଅଛି । 'ଲଳିତବିସ୍ତର' ଗ୍ରନ୍ଥରେ ଲେଖାଅଛି ଯେ ଆଚାର୍ଯ୍ୟ ବିଶ୍ୱାମିତ୍ର ବୁଦ୍ଧଦେବ ଲିପିଶିକ୍ଷା ପ୍ରଦାନ କରିବା ପୂର୍ବରୁ ବୁଦ୍ଧଦେବ ୬୪ ପ୍ରକାର ଲିପି ଶିକ୍ଷା କରିଥିଲେ । ବୁଦ୍ଧଦେବ ଯେଉଁ ୬୪ ପ୍ରକାର ଲିପି ଶିକ୍ଷା କରିଥିଲେ ସେଥିମଧ୍ୟରେ 'ଉଗ୍ରଲିପି' ନାମ ଉଲ୍ଲେଖ ଅଛି । ସମ୍ଭବତଃ ଉଡ୍ରଲିପି ଉଗ୍ରଲିପି ବୋଲି ଲେଖାଅଛି । ଜୈନମାନଙ୍କର 'ସମବାୟସୂତ୍ର' ଓ 'ପ୍ରଜ୍ଞାପନାସୂତ୍ର' ଗ୍ରନ୍ଥରେ 'ଦାସ ଉଡିଯା' ଏବଂ 'ଦାସ ପୁରିଯା' ଲିପିର ନାମ ଉଲ୍ଲେଖ ଅଛି । ନନ୍ଦୀସୂତ୍ର ନାମକ ଅନ୍ୟ ଏକ ଜୈନ ଗ୍ରନ୍ଥରେ ଛତ୍ରିଶ ପ୍ରକାର ଲିପି କଥା ଲେଖାଅଛି । ସେଥିରେ 'ଉଗ୍ରଲିପି' ନାମ ଉଲ୍ଲେଖ ଅଛି । ସଂସ୍କୃତ ମୂଳ ଭାଷା ଏବଂ ୨୭ ଗୋଟି ଉପଭାଷାର ପରିଚୟ ପ୍ରଦତ୍ତ ହୋଇଛି । ପ୍ରାୟ ସାତଶତ ବର୍ଷ ପୂର୍ବେ 'ପ୍ରାକୃତ ଚନ୍ଦ୍ରିକା' ନାମକ ଗ୍ରନ୍ଥରେ ସେହି ସମସ୍ତ ଭାଷାର ବିଷୟ ଲେଖାଅଛି ।

ଓଡ଼ିଆ ଭାଷା ଅନ୍ୟାନ୍ୟ ଭାଷା ପରି ସଂସ୍କୃତ ଭାଷାରୁ ଉତ୍ପନ୍ନ ହୋଇଛି । ଭାରତବର୍ଷର ଭାଷାସମୂହର ଉତ୍ପତ୍ତି ସମ୍ବନ୍ଧେ ନାନା ମତ ପ୍ରଚଳିତ । ପ୍ରଧାନତଃ ସଂସ୍କୃତ ଭାଷା ମୂଳ ଭାଷା ବୋଲି କଥିତ ହୁଏ । ଏକା ଭାରତ କାହିଁକି ସଂସ୍କୃତ ପୃଥିବୀର ଯାବତୀୟ

ଭାଷାର ଜନନୀ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପୁଣି ସଂସ୍କୃତ ନାନା ପ୍ରକାରର, ଯଥା- ବୈଦିକ ସଂସ୍କୃତ, ବ୍ରାହ୍ମଣାରଣ୍ୟକମାନଙ୍କ ସଂସ୍କୃତ, ଉପନିଷଦ ସଂସ୍କୃତ, ସୂତ୍ର ସଂସ୍କୃତ ଓ ପୁରାଣୋପରାୟଣ ସଂସ୍କୃତ । ଏମାନଙ୍କ ମଧ୍ୟରେ ଅନେକ ପାର୍ଥକ୍ୟ ଅଛି । ସଂସ୍କୃତ ସବୁ ଭାଷାର ଜନନୀ ହେଲେ ମଧ୍ୟ କେଉଁ ଭାଷା କି ପ୍ରକାରେ ସଂସ୍କୃତରୁ ଉତ୍ପନ୍ନ ହୋଇଛି ଏକଥା ନିଶ୍ଚୟ କରିବାର ସହଜ ନୁହେଁ । ମ୍ୟାକ୍ସମୁଲାରଙ୍କ ମତରେ ସଂସ୍କୃତ ଭାଷାରୁ ପ୍ରାକୃତ ଭାଷାର ଉତ୍ପତ୍ତି ଏବଂ ପ୍ରାକୃତ ଭାଷାରୁ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ଉତ୍ପତ୍ତି । ଏହାହିଁ ସାଧାରଣ ମତ । ପ୍ରାକୃତ ଶବ୍ଦର ଅର୍ଥୋତ୍ପତ୍ତି ସମ୍ବନ୍ଧେ ଅଭିଧାନକାରମାନେ କହିଛନ୍ତି, "ପ୍ରାକୃତ ସଂସ୍କୃତ ତତ୍ର ଭବଂ ତତୋ ଆଗତଂ ବା ପ୍ରାକୃତମ୍ ।"

ଆଉ ଏକ ଶ୍ରେଣୀର ପଣ୍ଡିତମାନେ କହନ୍ତି, ପାଲିଭାଷା ସମସ୍ତ ଭାରତୀୟ ଭାଷାର ଆଦି ସ୍ତର । ପାଲିଭାଷା ବ୍ୟାକରଣକାର କାତ୍ୟାୟନ ଏହି ମତର ପୋଷକତା କରିଛନ୍ତି । ତାଙ୍କ ମତରେ ପାଲିଭାଷା ମୂଳଭାଷା । ସିଂହଳ ଦେଶୀୟ ବୌଦ୍ଧମାନେ ପାଲିଭାଷାକୁ ମାଗଧୀ ଭାଷା ବୋଲି କହନ୍ତି । ଅନେକ ପ୍ରତ୍ନତତ୍ତ୍ୱବିଦ୍‌ମାନେ ସିଦ୍ଧାନ୍ତ କରିଛନ୍ତି ଯେ ପଲ୍ଲୀରେ ଏ ଭାଷା ବ୍ୟବହାର ହେଉଥିଲା ବୋଲି ଏହାର ନାମ ପାଲିଭାଷା । 'ପତି ସନ୍ନିୟ ଅତ୍ୱୟ' ନାମକ ପାଲି ଗ୍ରନ୍ଥରେ ଲେଖାଅଛି ଯେ ଏହି ଭାଷା ଦେବଲୋକ, ନରଲୋକ, ନରକ, ପ୍ରେତଲୋକ ଏବଂ ପଶୁଜାତିଙ୍କ ମଧ୍ୟରେ ବି ପ୍ରଚଳିତ ଥିଲା । ମାଗଧୀ ଭାଷା ସୁଗମ ଭାଷା; ଏହିହେତୁ ବୁଦ୍ଧଦେବ ସ୍ୱୟଂ ସର୍ବସାଧାରଣଙ୍କ ବୋଧସୌକର୍ଯ୍ୟାର୍ଥ ପିଟକନିଚୟ ଏହି ଭାଷାରେ ବ୍ୟକ୍ତ କରିଥିଲେ । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ସଂସ୍କୃତରୁ ପ୍ରଥମେ ପାଲିଭାଷାର ଜନ୍ମ । ପାଲିଭାଷା ସଂସ୍କୃତର ଜ୍ୟେଷ୍ଠ ଦୁହିତା । ତଦ୍‌ଦ୍ୱାରା ପାଲିଭାଷାରୁ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ଉତ୍ପତ୍ତି । ରାଜ ଚକ୍ରବର୍ତ୍ତୀ ଅଶୋକ ଭାରତବର୍ଷର ନାନା ପ୍ରଦେଶରେ ଘୋଷଣା ଲିପି ପ୍ରଚାର କରିଥିଲେ । ଓଡ଼ିଶାରେ ମଧ୍ୟ ଅଶୋକଙ୍କ ଦଶାଜ୍ଞ ଧଉଳି ଓ ଉଦୟଗିରି ପ୍ରଭୃତି ପାହାଡ଼ମାନଙ୍କରେ ଖୋଦିତ ହୋଇ ରହିଅଛି । ଅଶୋକ ଯେତେ ସ୍ଥାନରେ ସେହି ଆଜ୍ଞାମାନ ଖୋଦିତ କରାଇଥିଲେ ସେ ସମସ୍ତ ପାଲିଭାଷାରେ ଖୋଦିତ ହୋଇଥିଲା । ଦେଶଭେଦରେ ସାମାନ୍ୟ ସାମାନ୍ୟ ପ୍ରଭେଦ ଥାଇପାରେ । ମାତ୍ର ସାଧାରଣତଃ, ସମସ୍ତ ଏକପ୍ରକାର । ଅଶୋକ ସାଧାରଣ ଲୋକଙ୍କ ଶିକ୍ଷା ଲାଗି ତାଙ୍କ ଆଜ୍ଞାମାନ ପ୍ରଚାର କରିଥିଲେ । ସୁତରାଂ ସେ ସାଧାରଣ ଲୋକେ ଯେଉଁ ଭାଷା ବୁଝି ପାରୁଥିଲେ ସେହି ଭାଷାରେ ଲେଖାଇଥିବା ଯୁକ୍ତିସଙ୍ଗତ । ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ବିନ୍ଧ୍ୟଗିରି ପର୍ଯ୍ୟନ୍ତ ଯେଉଁ ଭାଷା ସାଧାରଣର ବୋଧଗମ୍ୟ ଥିଲା ସେହି ଭାଷାରେ ଅଶୋକ ଘୋଷଣା ଲିପି ଲେଖାଇଥିଲେ । ଉଚ୍ଚାରଣ ତାରତମ୍ୟ ହେତୁ ବିଭିନ୍ନ ସ୍ଥାନରେ ଟିକିଏ ପାର୍ଥକ୍ୟ ଥାଇପାରେ । ମାତ୍ର ସେ ଭାଷା ଯେ ଏକ ଭାଷା ଏଥିରେ କିଛି ସନ୍ଦେହ ନାହିଁ ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଭାଷା ପରିବର୍ତ୍ତନର ଯୁଗ ସ୍ଥିର କରିଛନ୍ତି । ବୈଦିକ ଯୁଗରେ

ଋଗ୍‌ବେଦର ସରଳ ସୁନ୍ଦର ଭାଷା ପ୍ରଚଳିତ ଥିଲା । ବୈଦିକ ଯୁଗ ପରେ ମହାକାବ୍ୟର ଯୁଗ । ଏହି ଯୁଗରେ ବ୍ରାହ୍ମଣ ଓ ଆରଣ୍ୟକମାନଙ୍କର ଅଭ୍ୟୁଦୟ ହୋଇଥିଲା । ତୃତୀୟ ଅବସ୍ଥା ଯୁକ୍ତିତର୍କର ଯୁଗ । ଏହି ଯୁଗରେ ବୌଦ୍ଧ ସାହିତ୍ୟର ଅଭ୍ୟୁଦୟ ହୋଇଥିଲା । ଏହି ସମୟରେ ଲିଖିତଭାଷା ଓ କଥିତଭାଷା ମଧ୍ୟରେ ପାର୍ଥକ୍ୟ ସାଧିତ ହୁଏ । ଏହି ଯୁଗରେ ବ୍ୟାକରଣ ବନ୍ଧନୀ ମଧ୍ୟରେ ଏକ ଆଡ଼େ ସୂତ୍ର ସାହିତ୍ୟ, ଅନ୍ୟ ଆଡ଼େ ସୁନ୍ଦର କଥିତ ଭାଷା ପ୍ରକାଶିତ ହେଲା । ଏହି ସମୟରେ ଗୌତମ ବୁଦ୍ଧ ଧର୍ମମତ ପ୍ରଚାର କଲେ ଏବଂ ଅଶୋକ ଘୋଷଣା ଲିପି ପ୍ରଚାର କଲେ । ଏହି ଯୁଗର ସାଧାରଣ କଥିତ ଭାଷା ପାଲି ଭାଷାର ଆଦିସ୍ତର । ଏହା ପରେ ଚତୁର୍ଥ ଯୁଗ-ପୌରାଣିକ ଯୁଗ । ଏହି ସମୟରେ ପ୍ରାକୃତ ଭାଷାର ଉତ୍ପତ୍ତି । ବୌଦ୍ଧ ପ୍ରଭାବ ଅବସାନ ହେଲାରୁ ହିନ୍ଦୁଧର୍ମର ପୁନରଭ୍ୟୁଦୟ ହେଲା ଓ ପାଲିଭାଷାର ଉନ୍ନତିପଥ ଅବରୁଦ୍ଧ ହେଲାରୁ ପ୍ରାକୃତଭାଷା ଆପଣା ପ୍ରଭାବ ବିସ୍ତାର କଲା । ପାଲିଭାଷା ସହିତ ଓଡ଼ିଆ ଓ ସଂସ୍କୃତ ଭାଷାର କିପରି ସମ୍ବନ୍ଧ ଦେଖାଯାଉ ।

| ସଂସ୍କୃତ | ପାଲି | ପ୍ରାକୃତ | ଓଡ଼ିଆ |
|---|---|---|---|
| ସର୍ବ | ସର୍ବ | ସର୍ବ | ସବୁ |
| ଅଦ୍ୟ | ଅଜ୍ଜ | ଅଦ୍ଦ | ଆଜି |
| ପୁତ୍ର | ପୁତ୍ତ | ପୁତ | ପୁଅ |
| ମତ୍ସ୍ୟ | ମଚ୍ଛ | ମଚ୍ଛ | ମାଛ |
| ରାଜନ୍ | ରାଆ | ଆଜା | ରାଜା |

| ପ୍ରାକୃତ | ପାଲି | ଓଡ଼ିଆ |
|---|---|---|
| କ୍ଷଣ | କ୍ଷନ | କ୍ଷଣ |
| ବିଜଲୀ | ବିଜ୍ଜୁମା | ବିଜୁଳି |
| ନଚ | ନଚ୍ଚ | ନାଚ |
| ଠାଣୀ | ଠାନାନି | ସ୍ଥାନ |

ନ ପୁଷ୍ପ ଗନ୍ଧଂ ପ୍ରତିବାତ ମେତି
ନ ଚନ୍ଦନଂ ତଗର ମଲ୍ଲିକେ ବା
ସତାଞ୍ଚ ଗନ୍ଧ ପ୍ରତିବାତ ମେତି
ସତ୍‌ପୁରୁଷଃ ସର୍ବାଦିଶଃ ପ୍ରବାତି ।(ସଂସ୍କୃତ)
ନ ପୁପ୍‌ଫ ଗନ୍ଧୋ ପଟିବାତ ମେତି
ନ ଚନ୍ଦନଂ ତଗର ମଲ୍ଲିକା ବା

ସତଞ୍ଚ ଗନ୍ଧୋ ପଟିବାତୋ ମେତି
ସବାଦିଶା ସପ୍ପୁରିସୋ ପବାତି । (ପାଲି)
ପୁଷ୍ପ ଗନ୍ଧ ବାୟୁର ବିପରୀତ ଦିଗକୁ ଯାଏ ନାହିଁ ।
ଚନ୍ଦନ କିମ୍ବା ମଲ୍ଲିକାର ଗନ୍ଧ ବାୟୁର ବିପରୀତ ଦିଗକୁ ଯାଏ ନାହିଁ ।
ସତ୍‌ଲୋକମାନଙ୍କ ଗନ୍ଧ ବାୟୁର ବିପରୀତ ଦିଗକୁ ଯାଏ ।
ସତ୍‌ପୁରୁଷମାନଙ୍କ ଗନ୍ଧ ଚାରିଆଡ଼େ ପ୍ରବାହିତ ହୁଏ । (ଓଡ଼ିଆ)

ଏଥିରୁ ପାଲି ସହିତ ଓ ସଂସ୍କୃତ ସହିତ ଓଡ଼ିଆର କିପରି ସାମଞ୍ଜସ୍ୟ ଅଛି ତାହା ଜଣାଯାଉଛି । ଏକା ଏହି ତିନି ଭାଷା କାହିଁକି, ଭାରତବର୍ଷର ସକଳ ଭାଷା ମଧ୍ୟରେ ପରସ୍ପର ସମ୍ବନ୍ଧ ଅଛି ।

ଏକ ସମୟରେ ଭାରତବର୍ଷର ସମସ୍ତ ଭାଷା ଦଶ ବିଭାଗରେ ବିଭକ୍ତ ହୋଇଥିଲା । ଯଥା- ପଞ୍ଚ ଗୌଡ଼ ଓ ପଞ୍ଚ ଦ୍ରାବିଡ଼ । ସ୍କନ୍ଦପୁରାଣରେ ଅଛି -

ସାରସ୍ୱତା କାନ୍ୟକୁବ୍‌ଜା, ଗୌଡ଼ ମୈଥିଳିକୌତ୍‌କଳାଃ,
ପଞ୍ଚ ଗୌଡ଼ ଇତି ଖ୍ୟାତା ବିନ୍ଧ୍ୟସ୍ୟୋତ୍ତରବାସିନଃ ।

ଏହି ପଞ୍ଚ ଗୌଡ଼ରେ ପଞ୍ଚ ଭାଷା ପ୍ରଚଳିତ ଥିଲା । ଏହି ଗୌଡ଼ୀୟ ଭାଷା ମଧରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ ଏବଂ ହିନ୍ଦୀର ଉପବିଭାଗମାନ ପ୍ରଧାନ ।

୧ ୯ ୦ ୧ ମସିହାର ଜନସୁମାରି ରିପୋଟରୁ ପ୍ରକାଶ ଯେ ଭାରତରେ ଅନ୍ୟୂନ ୧ ୪ ୭ ଭାଷା ପ୍ରଚଳିତ ଅଛି । କାର୍ଯ୍ୟାଧ୍ୟକ୍ଷ ରିଜିଲ ସାହେବ ସମସ୍ତ ଭାଷାକୁ ସାତ ଭାଗରେ ବିଭକ୍ତ କରିଛନ୍ତି । ସେ ମହାଶୟ ଓଡ଼ିଆ ଭାଷାକୁ ଇଣ୍ଡୋ-ଇଉରୋପୀୟ ବିଭାଗରେ ସ୍ଥାନ ଦେଇଛନ୍ତି । ଉତ୍କଳଭାଷା ନାନା ସ୍ଥାନରେ ନାନା ଆକାର ଧାରଣ କରିଛି- କଟକର ଓଡ଼ିଆ ଭାଷା, ସମ୍ବଲପୁରୀ ଓଡ଼ିଆ ଭାଷା, ଗଞ୍ଜାମୀ ଓଡ଼ିଆ ଭାଷା, ଖୋରଧାର ଓଡ଼ିଆ ଭାଷା, ବାଲେଶ୍ୱରୀ ଓଡ଼ିଆ ଭାଷା ଓ ପୁରୀର ଓଡ଼ିଆ ଭାଷା ମଧରେ ପାର୍ଥକ୍ୟ ଦେଖାଯାଏ । ଏକା ଓଡ଼ିଆ ଭାଷା କାହିଁକି ସବୁ ଭାଷା ଏହିପରି ସ୍ଥାନାନୁସାରେ ପାର୍ଥକ୍ୟ ଧାରଣା କରିଛି । ସୁତରାଂ ଅନ୍ୟାନ୍ୟ ପ୍ରାଦେଶିକ ଭାଷା ଯେପରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଭାଷା, ଓଡ଼ିଆ ଭାଷା ମଧ ଗୋଟିଏ ସ୍ୱତନ୍ତ୍ର ଭାଷା । କୌଣସି ପ୍ରାଦେଶିକ ଭାଷାର ଏହା ଉପଭାଷା ନୁହେଁ । କେତେକ ବଙ୍ଗାଳୀଙ୍କର ଧାରଣା ଯେ ଓଡ଼ିଆ ଭାଷା ବଙ୍ଗ ଭାଷାର ଉପଭାଷା; ମାତ୍ର ଏ କଥା ନିତାନ୍ତ ଅମୂଳକ । କୌଣସି ଭାଷାତତ୍ତ୍ୱାନୁସନ୍ଧିତ୍ସୁ ଆଜିପର୍ଯ୍ୟନ୍ତ ଏପରି ମତ ପ୍ରକାଶ କରିଥିବାର ଦେଖାଯାଏ ନାହିଁ । ପୃଥିବୀ ଇତିହାସ ଲେଖକ ଅଗାଧ ପରିଶ୍ରମ କରି ଭାରତର ଭାଷା ସମ୍ବନ୍ଧେ ଯେଉଁ ଆଲୋଚନା କରିଛନ୍ତି ସେଥିରେ ମଧ ଏ ପ୍ରକାର ମତ ଦେଖାଯାଏ ନାହିଁ । କେହି କେହି କହନ୍ତି, ଓଡ଼ିଆ ଭାଷା ସହିତ ବଙ୍ଗଳା ଭାଷାର ବିଶେଷ ନିକଟ ସମ୍ପର୍କ ଥିବାର ଦେଖାଯାଏ, ସୁତରାଂ ଓଡ଼ିଆ ଭାଷା ବଙ୍ଗ ଭାଷାର ଉପଭାଷା । ଯଦି ଏହାହିଁ ପ୍ରଧାନ ଯୁକ୍ତି

ହୁଏ, ତେବେ ବଙ୍ଗଭାଷା ଓଡ଼ିଆ ଭାଷାର ଉପଭାଷା କହିଲେ ଆପତ୍ତି କଣ ? ଭାରତର ପ୍ରତ୍ୟେକ ଭାଷା ସହିତ ପ୍ରତ୍ୟେକ ଭାଷାର ନିକଟ ସମ୍ପର୍କ, ସୌସାଦୃଶ୍ୟ ଥିବା ସ୍ଥଳେ ଏପରି ଧାରଣା ନିତାନ୍ତ ଅମୂଳକ ବୋଲି ବୋଧହୁଏ । ବରଂ ଉତ୍କଳ ଭାଷାର ସଂସ୍କୃତ ସହିତ ବେଶି ସୌସାଦୃଶ୍ୟ ଦେଖାଯାଏ । ଅତଏବ ଉତ୍କଳ ଭାଷା ସଂସ୍କୃତରୁ ଉତ୍ପତ୍ତି ହୋଇଥିବାର ନିଶ୍ଚୟ କଥା । ଭାରତର ସକଳ ଭାଷା ମଧ୍ୟରେ କିପରି ସମ୍ପର୍କ ଅଛି ଦେଖାଯାଉ-

| | ଏକବଚନ | ଏକବଚନ | |
|---|---|---|---|
| | ଅସ୍ମଦ୍ ଶବ୍ଦ | ଅସ୍ମଦ୍ ଶବ୍ଦ | |
| ସଂସ୍କୃତ | ଅହମ୍ | ଭୋଜପୁରୀ | ହମ୍ |
| ପ୍ରାକୃତ | ଅହମ୍ | ବ୍ରଜଭାଷା | ହାମ୍ |
| ପାଲି | ଅହମ୍ | ତେଲୁଗୁ | ନେନୁ |
| ହିନ୍ଦୀ | ହାମ୍ | ତାମିଲ୍ | ନାଂ |
| ବଙ୍ଗଳା | ଆମି | କେନାରୀ | ନା, ନୁ |
| ଗୁଜରାଟୀ | ହୁଁ | ମଳୟାଳମ୍ | ଞ୍ୟନ୍ |
| କନୌଜୀ | ମୈ | ପଞ୍ଜାବୀ | ମୈଂ |
| ମରାଠୀ | ମୀ | ନେପାଳୀ | ମୈଂ |
| | ଏକବଚନ | ଏକବଚନ | |
| ଅସ୍ମଦ୍ ଶବ୍ଦ | ଅସ୍ମଦ୍ ଶବ୍ଦ | | |
| ଓଡ଼ିଆ | ଆମେ ବା ଆମ୍ଭେ | ବର୍ମ୍ମିଜ | ଆଂ, ଉଂ |
| ମୈଥିଳୀ | ହମ୍ | ତିବ୍ବତୀ | ଉଂ, ଉଂ |

କୃ ଧାତୁ

ସଂସ୍କୃତ - କରୋତି

ପ୍ରାକୃତ - କରଇ

ଉତ୍କଳୀୟ - କରେ

ହିନ୍ଦୀ - କରୈ

ବଙ୍ଗଳା - କରେ

ପାଶ୍ଚାତ୍ୟ ପଣ୍ଡିତମାନଙ୍କ ସିଦ୍ଧାନ୍ତାନୁସାରେ ମଧ୍ୟ ଏସିଆର କେନ୍ଦ୍ରସ୍ଥାନରୁ ଆର୍ଯ୍ୟମାନେ ଦେଶବିଦେଶକୁ ଗମନ କଲା ସମୟରେ ସେମାନଙ୍କର ଭାଷା ଭିନ୍ନ ଭିନ୍ନ ମୂର୍ତ୍ତି ଧାରଣ କଲା । ସୁତରାଂ ମୂଳ ଭାଷାକୁ ସେମାନେ 'ଏରିୟାନ୍' ବା ଇଣ୍ଡୋ-ଇଉରୋପୀୟ ନାମରେ ଅଭିହିତ କରନ୍ତି । ସେହି ମୂଳ ଭାଷାର ସାତଗୋଟି ଶାଖା, ଯଥା- ଇଣ୍ଡିକ, ଇରାଣିକ, ସ୍ଲାଭୋନିକ, କେଲ୍‌ଟିକ, ହେଲେନିକ, ଇଟାଲିକ, ଟିଉଟୋନିକ। ଇଣ୍ଡିକ ଶାଖାରୁ ପ୍ରଥମେ ସଂସ୍କୃତ ଏବଂ ସଂସ୍କୃତରୁ ପ୍ରାକୃତ, ଓଡ଼ିଆ, ବଙ୍ଗଳା ପ୍ରଭୃତି ଭାରତୀୟ ଭାଷାମାନଙ୍କର ଉତ୍ପତ୍ତି ହୋଇଛି ।

ମ୍ୟାକ୍ସମୁଲାର ପ୍ରମୁଖ ପାଶ୍ଚାତ୍ୟ ପଣ୍ଡିତମାନେ ଏହି ମତର ପ୍ରବର୍ତ୍ତକ ଓ ପରିପୋଷକ । ଏହିହେତୁ ପୃଥିବୀର ଯାବତୀୟ ଭାଷାମଧ୍ୟରେ ସୌସାଦୃଶ୍ୟ ଦେଖାଯାଏ ।

ସଂସ୍କୃତ- ପିତୃ (ପ୍ରଥମାରେ) ପିତର

ଛେନ୍ଦ- ପଦର

ଲାଟିନ୍- ପେଟର

ଗ୍ରୀକ୍- ପାଟର

ଜର୍ମାନ୍ - ଫାତେର

ଇଂରାଜୀ - ଫାଦର

ଓଡ଼ିଆ - ପିତା

ବଙ୍ଗଳା - ପିତା

ଏହିପରି ଅନେକ ଶବ୍ଦର ସୌସାଦୃଶ୍ୟ ଦେଖାଯିବ ।

ପ୍ରାଦେଶିକ ଭାଷାର ଉତ୍ପତ୍ତି ହେଲା କିପରି ? ଖ୍ରୀଷ୍ଟ ୨ୟ ଶତାବ୍ଦୀର ମଧ୍ୟଭାଗରୁ ରାଜକୀୟ ଲିପିରେ ବିଶୁଦ୍ଧ ସଂସ୍କୃତଭାଷା ବ୍ୟବହାର ହେବାର ଆରମ୍ଭ ହେଲା । ୧୫୦ ଖ୍ରୀଷ୍ଟାବ୍ଦରେ ସର୍ବପ୍ରଥମ ବିଶୁଦ୍ଧ ସଂସ୍କୃତ ଭାଷା ବ୍ୟବହାର ହେବାର ଲିପିମାନଙ୍କରୁ ଦେଖାଯାଏ । ପରେ ତାମ୍ରଶାସନ ପ୍ରଭୃତି ସମସ୍ତ ପ୍ରୟୋଜନୀୟ ରାଜକୀୟ କାର୍ଯ୍ୟରେ ସଂସ୍କୃତ ଭାଷା ବ୍ୟବହୃତ ହେଲା । ଅଶୋକଙ୍କ ଅନୁଶାସନ ଏବଂ ପୁଲୁମାୟିର ଲିପିମାନଙ୍କରୁ ଅନୁମାନ ହୁଏ ଯେ ଆର୍ଯ୍ୟମାନଙ୍କର ଭାଷା ଏକ ଥିଲା ଏବଂ ତାହା ସଂସ୍କୃତାନୁଯାୟୀ ଥିଲା । ଦେଶଜ ଭାଷା ଅର୍ଥାତ୍ ଆଦିମ ଅଧିବାସୀଙ୍କ କଥିତ ଭାଷା ନାନାବିଧ ଏବଂ ସଂସ୍କୃତଠାରୁ ପୃଥକ୍ ଥିଲା । ଆର୍ଯ୍ୟ ଭାଷା ଏହି ସମସ୍ତ ଦେଶଜ ଭାଷାକୁ ବିଦୂରିତ କରି ସେମାନଙ୍କ ପ୍ରକାରର ଶବ୍ଦ ସମ୍ପତ୍ତି ଓ ରଚନାରୀତି ଗ୍ରହଣ କରି ଓଡ଼ିଆ, ବଙ୍ଗଳା ପ୍ରଭୃତି ପ୍ରାଦେଶିକ ଭାଷା ସୃଷ୍ଟି କଲା ।

ଓଡ଼ିଆ, ବଙ୍ଗଳା ପ୍ରଭୃତି ପ୍ରାଦେଶିକ ଭାଷାମାନ ପୂର୍ବେ 'ପ୍ରାକୃତ' ଭାଷା ନାମରେ ଅଭିହିତ ହେଉଥିଲା । ପ୍ରାକୃତ ଭାଷା ତ୍ରିବିଧ- ତତ୍‌ସମ, ତଦ୍ଭବ, ଦେଶଜ । ଯେଉଁ ଶବ୍ଦ ସଂସ୍କୃତ ତୁଲ୍ୟ ତାହା ତତ୍ସମ; ଯେଉଁ ଶବ୍ଦ ସଂସ୍କୃତରୁ ଉଦ୍ଭବ ହୋଇ କିଞ୍ଚିତ୍ ବିକୃତିପ୍ରାପ୍ତ ହୋଇଛି ତାହା ତଦ୍ଭବ; ଯେଉଁ ପ୍ରାଦେଶିକ ଶବ୍ଦମାନ ସଂସ୍କୃତତୁଲ୍ୟ ନୁହେଁ ବା ସଂସ୍କୃତରୁ ଉତ୍ପନ୍ନ ହୋଇନାହିଁ ସେଗୁଡ଼ିକ ଦେଶଜ ଶବ୍ଦ ।

| ତତ୍‌ସମ | ତଦ୍ଭବ | ଦେଶଜ |
|---|---|---|
| ଦର୍ଶନ | ଗଧ | ନଡ଼ିଆ |
| ଶ୍ରବଣ | ଚକ୍ଷୁ | ପଗଡ଼ି |
| ଲତା | କାନ | କାନ୍ଥ |
| ଅରଣ୍ୟ | ନାହା | ଠଙ୍ଗା |

ଏ ସମସ୍ତ ଆଲୋଚନା କଲେ ସ୍ପଷ୍ଟ ଜଣାଯିବ ଯେ ଓଡ଼ିଆଭାଷାର ପ୍ରାଚୀନତ୍ୱ ଅବିସମ୍ବାଦିତ ।

ଓଡ଼ିଆ ସ୍ୱତନ୍ତ୍ର ପ୍ରାଚୀନ ଭାଷା ବୋଲି କେହି ଅସ୍ୱୀକାର କରି ପାରିବ ନାହିଁ ।

ଆଉ ଗୋଟିଏ କଥା ଭାଷା ସମ୍ବନ୍ଧରେ କୁହାଯାଇପାରେ । ଭାଷା ଦୁଇ ପ୍ରକାର- କଥିତ ଓ ଲିଖିତ । ଭାରତରେ କଥିତଭାଷା ଅପେକ୍ଷା ଲିଖିତ-ଭାଷାର ମର୍ଯ୍ୟାଦା ଅଧିକ । କଥିତଭାଷା ନିୟମରେ କୌଣସି ପ୍ରାଚୀନ ଗ୍ରନ୍ଥ ଲେଖା ହୋଇଥିବାର ଦେଖାଯାଏ ନାହିଁ । ଲିଖିତ ଭାଷା ସମୟ ସମୟରେ କଥିତଭାଷାରୁ ଶବ୍ଦ ଗ୍ରହଣ କରିଛି, କିନ୍ତୁ କୌଣସି ପ୍ରୟୋଜନୀୟ କାର୍ଯ୍ୟରେ କଥିତଭାଷା ବ୍ୟବହୃତ ହୁଏ ନାହିଁ । ମହାରାଜା ଅଶୋକ ପ୍ରଭୃତି ସେମାନଙ୍କ ଉତ୍କୀର୍ଣ୍ଣ ଲିପିରେ କଥିତଭାଷା ବ୍ୟବହାର କରିଥିଲେ, ମାତ୍ର ତାହା ସ୍ଥାୟୀ ହେଲାନାହିଁ । କଥିତ ଭାଷା ସାହିତ୍ୟରେ ସ୍ଥାନ ପାଇ ନ ଥିଲା । କିନ୍ତୁ ବର୍ତ୍ତମାନ ଏ ଭାବର ପରିବର୍ତ୍ତନ ଘଟିଛି । ଆଜିକାଲି କଥିତଭାଷାର ସମ୍ପୂର୍ଣ୍ଣ ଆଦର ହେଉଛି ଏବଂ ଅଭ୍ୟୁନ୍ନତି ହେଉଛି ।

ଓଡ଼ିଆଭାଷାର ବର୍ଣ୍ଣମାଳା ସ୍ୱତନ୍ତ୍ର । ଭାରତରେ ଅନେକ ପ୍ରକାର ବର୍ଣ୍ଣମାଳା ପ୍ରଚଳିତ ଅଛି । ଦେବନାଗର, କୁଟିଳ ଓ ଓଡ଼ିଆ ବର୍ଣ୍ଣମାଳା ମଧ୍ୟରେ ବହୁତ ସୌସାଦୃଶ୍ୟ ଦେଖାଯାଏ । ଅନୁମାନ ହୁଏ, ବର୍ତ୍ତମାନ ଓଡ଼ିଆ ବର୍ଣ୍ଣମାଳାର ପୂର୍ବାକାର କୁଟିଳାକ୍ଷର ପରିଥିଲା । ଓଡ଼ିଆ ବର୍ଣ୍ଣମାଳା ପୁଣି ଦୁଇ ପ୍ରକାର - କରଣୀ ଓ ସରଳାକ୍ଷର । ବର୍ଣ୍ଣମାଳା କେବେ ସୃଷ୍ଟି ହେଲା ଏ ସମ୍ବନ୍ଧେ ନାନା ମତ ଦେଖାଯାଏ । କେହି କେହି ସିଦ୍ଧାନ୍ତ କରନ୍ତି ଯେ, ବର୍ଣ୍ଣମାଳା ପ୍ରଥମେ ଭାରତରେ ସୃଷ୍ଟ ହେଲା ଏ ସମ୍ବନ୍ଧେ ନାନା ମତ ଦେଖାଯାଏ । କେହି କେହି ସିଦ୍ଧାନ୍ତ କରନ୍ତି ଯେ, ବର୍ଣ୍ଣମାଳା ପ୍ରଥମେ ଭାରତରେ ସୃଷ୍ଟି ହୋଇ ପରେ ପୃଥିବୀର ଅନ୍ୟାନ୍ୟ ଅଂଶରେ ପ୍ରଚାରିତ ହେଲା । ଭାଷା ଯେତେ ଦିନରୁ ସୃଷ୍ଟି ହୋଇଛି ବର୍ଣ୍ଣମାଳା ତେତେ ଦିନରୁ ସୃଷ୍ଟି ହୋଇଛି । ଜ୍ଞାନସ୍ଫୁର୍ତ୍ତି ସଙ୍ଗେ ସଙ୍ଗେ ଭାଷାର ସ୍ଫୁର୍ତ୍ତି ହୁଏ ଏବଂ ସେହି ସ୍ଫୁର୍ତ୍ତି ବର୍ଣ୍ଣମାଳାରେ ପ୍ରକାଶିତ ହୁଏ । ଏହାହିଁ ପ୍ରାକୃତିକ ନିୟମ । ପୁରାତନ ଶାସ୍ତ୍ରମାନ ଆଲୋଚନା କଲେ ଜଣାଯାଏ ଯେ ସତ୍ୟ, ତ୍ରେତା, ଦ୍ୱାପର, କଳିଯୁଗମାନଙ୍କରେ ବର୍ଣ୍ଣମାଳା ବିଦ୍ୟମାନ ଥିଲା । ପୃଥିବୀର ଆଦିଗ୍ରନ୍ଥ ଋଗ୍‌ବେଦରେ ବର୍ଣ୍ଣମାଳାର ଅସ୍ତିତ୍ୱର ପରିଚୟ ମିଳେ ।

ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ପ୍ରଥମେ ମୌର୍ତ୍ତିକ ଅକ୍ଷର ବା ବସ୍ତୁଚିତ୍ର ଥିଲା ଏବଂ ଏହି ମୌର୍ତ୍ତିକ ଲିପି ପ୍ରଥମେ ମିଶର ଦେଶରେ ସୃଷ୍ଟି ହେଲା । ଏହି ମୌର୍ତ୍ତିକ ଚିତ୍ର ନାନା ପ୍ରକାରର ଥିଲା - ବସ୍ତୁଚିତ୍ର, ଭାବଚିତ୍ର, ଶବ୍ଦଚିତ୍ର । ଭାବଚିତ୍ର ପୁଣି ଦୁଇ ପ୍ରକାର - ଏକ ଭାବଚିତ୍ର ଓ ବହୁଭାବଚିତ୍ର । ଗୁଣାର୍ଥବୋଧକ ମୂର୍ତ୍ତିଚିତ୍ର, ଏକାଧିକ ମୌର୍ତ୍ତିକ ଅକ୍ଷର ସଂଯୋଗ ଦ୍ୱାରା ଶବ୍ଦ ଉଚ୍ଚାରଣ, ଏହିପରି ନାନା ପ୍ରକାର ଥିଲା । କେହି କହନ୍ତି ଫିନିସିୟା ଜାତି ପ୍ରଥମେ ବର୍ଣ୍ଣମାଳା ସୃଷ୍ଟି କଲେ । ଅଧିକାଂଶ ପାଶ୍ଚାତ୍ୟ ପଣ୍ଡିତଙ୍କ ମତରେ ପ୍ରଥମେ ମିଶରରୁ ଫିନିସିୟା ଏବଂ ଫିନିସିୟାରୁ ଇଉରୋପ ଓ ଏସିଆ ପ୍ରଭୃତି ଦେଶରେ ବର୍ଣ୍ଣମାଳା ପ୍ରବେଶ ଲାଭ କଲା । ଏ ସମ୍ବନ୍ଧେ ପୃଥିବୀ ଇତିହାସ ଲେଖକମାନେ ଅନେକ ଆଲୋଚନା କରି କହନ୍ତି ଯେ ବର୍ଣ୍ଣମାଳା

ପ୍ରଥମେ ଭାରତରେ ସୃଷ୍ଟି ହେବାର ଅନେକ କାରଣ ଅଛି ।

ପାଶ୍ଚାତ୍ୟ ପଣ୍ଡିତମାନେ ଆଲେକ୍‌ଜାଣ୍ଡରଙ୍କ ଭାରତାଗମନ ପୂର୍ବେ ଭାରତରେ ଲିପି ପ୍ରଚଳିତ ଥିବା ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଭାରତ ସମ୍ବନ୍ଧୀୟ ଅଭିଜ୍ଞତା ଏହି ଆଲେକ୍‌ଜାଣ୍ଡରଙ୍କ ସମୟରୁ ଆରମ୍ଭ । କିନ୍ତୁ ଆଲେକ୍‌ଜାଣ୍ଡରଙ୍କ ବହୁ ଶତାବ୍ଦୀ ପୂର୍ବରୁ ଭାରତରେ ଲିପି ପ୍ରଚଳିତ ଥିବା ବିଷୟ ବେଦବେଦାନ୍ତ, ପାଣିନୀ ପ୍ରଭୃତିରୁ ସ୍ପଷ୍ଟ ଜଣାଯାଏ । ଆଲେକ୍‌ଜାଣ୍ଡର ଖ୍ରୀଷ୍ଟପୂର୍ବ ୩୨୭ ଅବ୍ଦରେ ଭାରତକୁ ଆସିଥିଲେ । ଖ୍ରୀଷ୍ଟପୂର୍ବ ୨୫୦ରେ ବା ଅଶୋକଙ୍କ ରାଜତ୍ୱ ସମୟରେ ସ୍ତମ୍ଭ ପ୍ରଭୃତିରେ ଲିପି ଖୋଦିତ ହୋଇଥିଲା । ଏ ସମସ୍ତ ପାଲି ଲିପି । ଓଡ଼ିଶାରେ ମଧ ଅଶୋକଙ୍କ ଦଶାଜ୍ଞା ଧଉଳି ପାହାଡ଼ରେ ଖୋଦିତ ଅଛି । ସୁତରାଂ ଓଡ଼ିଆ ବର୍ଣ୍ଣମାଳା ଅଶୋକଙ୍କ ରାଜତ୍ୱ ପରେ ସୃଷ୍ଟ ହୋଇଥିବାର ସମ୍ଭବ । କାରଣ ତେତେବେଳେ ଉତ୍କଳାକ୍ଷର ପ୍ରଚଳିତ ଥିଲେ ସେହି ଅକ୍ଷରରେ ସେହି ଦଶାଜ୍ଞାମାନ ଅବଶ୍ୟ ଖୋଦିତ ହୋଇଥାନ୍ତା ।

ଭାରତରେ ନାନାପ୍ରକାର ବର୍ଣ୍ଣମାଳା ଦେଖାଯାଏ । ଯେତେ ଭାଷା ତେତେ ବର୍ଣ୍ଣମାଳା ଦେଖାଯାଏ । ପ୍ରତ୍ୟେକ ଭାଷାଭାଷୀ ଲୋକମାନେ ଆପଣା ଆପଣା ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଲାଗି ବର୍ଣ୍ଣମାଳାକୁ ଭିନ୍ନାକାର କରିଥିବାର ସମ୍ଭବ । ଭେଦବୁଦ୍ଧି ଏହା ମୂଳରେ ବର୍ତ୍ତମାନ ଥିବାର ସମ୍ଭବ । ସେ କଥା ଯାହାହେଉ ଉତ୍କଳାକ୍ଷର କେଉଁ ସମୟରେ ବର୍ତ୍ତମାନ ଆକାର ଧାରଣା କଲା ତାହା ସ୍ଥିର ହେବା ସୁକଠିନ । ମାତ୍ର ବହୁ କାଳରୁ ଉତ୍କଳାକ୍ଷର ସ୍ୱତନ୍ତ୍ର ଲିପିଭାବେ ଚଳି ଆସୁଛି ।

ମନୁଷ୍ୟର ଜ୍ଞାନ ସ୍ଫୁର୍ତ୍ତି ଯେତେ ବେଶି ହେଉଥାଏ ସାହିତ୍ୟ ତେତେ ପରିମାର୍ଜିତ ଓ ପରିବର୍ଦ୍ଧିତ ହେଉଥାଏ । ସାହିତ୍ୟ ଜାତୀୟ ଉନ୍ନତି ଚିନ୍ତାର ପରିଚାୟକ ଓ ପରିମାପକ । ଉଚ୍ଚ ଚିନ୍ତାମାନ ସାଧାରଣରେ ପ୍ରକାଶ କରିବା ଲାଗି ଭାଷାର ପ୍ରୟୋଜନ । ଭାଷା ଲିଖିତ ହେବାର ଉଦ୍ଦେଶ୍ୟ ଏହି ଯେ ଜାତୀୟ ଭାବ ସଂରକ୍ଷିତ ହେବ ଓ ବହୁଳ ପ୍ରଚାରିତ ହେବ । ବର୍ଣ୍ଣମାଳାର ସଂଯୋଗ ହିଁ ଭାଷା ।

ଆମ୍ଭେ ପୂର୍ବେ କହିଛୁ କ୍ରମବିକାଶ ହିଁ ପୃଥିବୀର ଧର୍ମ । ଶିଶୁ ଭୂମିଷ୍ଠ ହେବା ପରେ ଆପଣାର କ୍ରନ୍ଦନ ଓ ଅଙ୍ଗଭଙ୍ଗୀ ଓ ଇଙ୍ଗିତଦ୍ୱାରା ଆପଣା ମନୋଗତ ଭାବ ପ୍ରକାଶ କରେ । କ୍ରମେ ବୟସବୃଦ୍ଧି ହେଲେ ଅସ୍ଫୁଟ କଥା ଉଚ୍ଚାରଣ କରେ । କଥାରେ କହନ୍ତି ଦରୋଟି କଥା । ଦଶ ବାର ବର୍ଷ ବୟସରେ ପରିଷ୍କାର କଥା କହିପାରେ ଓ ଲେଖିବାକୁ ଆରମ୍ଭ କରେ । ପିଲା ଯେତେବେଳେ ଲେଖନ ତାଳପତ୍ର ଅବା କାଗଜ କାଳି କିମ୍ବା ଖଡ଼ିରେ ତଳେ ଲେଖେ, ତେତେବେଳେ ତା ଅକ୍ଷରର ଆକାର ଠିକଣା ନଥାଏ । ନିତାନ୍ତ ଅସୁନ୍ଦର ଦେଖା ଯାଉଥାଏ । କ୍ରମେ ଅକ୍ଷର ବସିଯାଏ ଓ ପିଲା ଆପଣା ମନକୁ ଆପଣା ଅକ୍ଷର କିପରି ସୁନ୍ଦର ଦେଖାଯିବ ସେଥିପ୍ରତି ଦୃଷ୍ଟି ଦିଏ । ବେଶି ଲେଖିବାର ଆବଶ୍ୟକ ପଡ଼ିଲେ ସମୟଜ୍ଞାନ ହୁଏ ଅର୍ଥାତ୍

ସୁନ୍ଦର ଅକ୍ଷର ପ୍ରତି ଦୃଷ୍ଟି ନ ଦେଇ ଅଳ୍ପ ସମୟରେ କିପରି ବେଶି ଲେଖି ପାରିବ ତହିଁପ୍ରତି ଦୃଷ୍ଟି ଦିଏ । ଏତେବେଳେ ଅକ୍ଷର ଲେଖିବାକୁ ଯେତେ ଅଳ୍ପ ଆୟାସରେ ଲେଖିହେବ ତହିଁପ୍ରତି ଦୃଷ୍ଟି ଦିଏ । ଅଳ୍ପ ଆୟାସରେ ଅଳ୍ପ ସମୟରେ ବେଶି ବିଷୟ ଲେଖିବାକୁ ପଡ଼ିଲେ ଅକ୍ଷର ଲେଖିବା ପ୍ରଣାଳୀ ଯେତେ ସରଳ ଓ ସହଜ ହୁଏ ତେତେ ସୁବିଧାଜନକ । ସୁତରାଂ ଅକ୍ଷରର ବର୍ଗ କ୍ରମେ ପରିବର୍ତ୍ତିତ ହୁଏ ।

ଲୌହ ଲେଖନ ଆମ୍ଭମାନଙ୍କ ଦେଶର ପୁରାତନ ଲେଖନୀ ଯନ୍ତ୍ର । ପୁଣି ତାଳପତ୍ର ଉପରେ ଆଗେ ସମସ୍ତ ଲେଖାପଢ଼ି ହେଉଥିଲା । ତାଳପତ୍ର ଉପରେ ଲେଖନରେ ଲେଖିବା ଟିକିଏ ଶ୍ରମସାଧ । ସୁତରାଂ ଅକ୍ଷର ଆକାର ଯେପରି ହେଲେ ତାଳପତ୍ର ଉପରେ ସହଜରେ ଲେଖିହେବ, ସେପରି ଆକାରରେ ପୁରାତନ କୁଟିଳାକ୍ଷର ପରିବର୍ତ୍ତିତ ହେବା ସ୍ୱାଭାବିକ । ସୁତରାଂ କୁଟିଳାକ୍ଷର କ୍ରମେ ବର୍ତ୍ତମାନ ଉତ୍କଳାକ୍ଷରର ଆକାର ଧାରଣ କରିଛି ।

ମୁଦ୍ରାଯନ୍ତ୍ର ପ୍ରତିଷ୍ଠିତ ହେବା ପୂର୍ବେ ଏ ଦେଶରେ ଲେଖନ ଦ୍ୱାରା ତାଳପତ୍ରରେ ଲିପିମାନ ଲିଖିତ ହେଉଥିଲା । ଆଜି ଓଡ଼ିଶାର ଘରେ ଘରେ ଅନେକ ତାଳପତ୍ର ପୋଥି ଅଛି । ଅନେକ ପୁରାତନ ପୁସ୍ତକ ଆଜିଯାଏ ସୂର୍ଯ୍ୟାଲୋକ ଦେଖି ନାହିଁ । ଆଉ ଅନେକ ପୋଥି କୀଟଦଷ୍ଟ ହୋଇଗଲାଣି । ୧୮୨୨ ସାଲରେ ମିସନରୀମାନେ ପ୍ରଥମେ ମୁଦ୍ରାଯନ୍ତ୍ର ସ୍ଥାପନ କଲେ । ପ୍ରିଣ୍ଟିଂ କମ୍ପାନି ୧୮୬୬ରେ ପ୍ରଥମେ ଓଡ଼ିଶାରେ ସ୍ଥାପିତ ହୋଇଥିଲା । ଏ ସମୟରେ ମଧ ବଙ୍ଗୀୟ ଭ୍ରାତାମାନଙ୍କର ସେହି ସଂକୀର୍ଣ୍ଣତା ଦେଖା ଦେଇଥିଲା । କେତେକ ବଙ୍ଗୀୟ ଭ୍ରାତା ପ୍ରସ୍ତାବ କରିଥିଲେ ଯେ ଓଡ଼ିଆ ଭାଷା ଗୋଟାଏ ସ୍ୱତନ୍ତ୍ର ଭାଷା ନୁହେଁ । ଓଡ଼ିଆ ଭାଷା ପରିବର୍ତ୍ତେ କଚେରୀ ଆଦିରେ ବଙ୍ଗଳା ଭାଷା ପ୍ରଚଳିତ ହେବ । ତେତେବେଳେ ଘୋର ଆପତ୍ତି ହୋଇଥିଲା ଏବଂ ତଦାନୀନ୍ତନ ଛୋଟ ଲାଟସାହେବ କାମ୍ବେଲ ମହୋଦୟ ଓଡ଼ିଆମାନଙ୍କର ଆପତ୍ତି ଶୁଣି ଓଡ଼ିଆ ଭାଷାକୁ ରକ୍ଷା କଲେ । 'ଜ୍ଞାନାରୁଣ' ଓ 'ପ୍ରବୋଧ ଚନ୍ଦ୍ରିକା' ନାମକ ଦୁଇଖଣ୍ଡ ଓଡ଼ିଆ ଖବରକାଗଜ ୧୮୫୮, ୧୮୫୯ ମସିହାରେ ମୁଦ୍ରିତ ହୋଇ ବାହାରିଲା । ୧୮୬୬ ମସିହାରେ ଉତ୍କଳର ପ୍ରଧାନ ଜନନାୟକମାନଙ୍କ ଉଦ୍ୟମରେ 'ଉତ୍କଳଦୀପିକା' ନାମକ ସମ୍ବାଦପତ୍ର ବାହାରିଥିଲା ଏବଂ ଏହି କାଗଜଟି ବର୍ତ୍ତମାନ ସୁଦ୍ଧା ବଞ୍ଚିଛି, ମାତ୍ର ବୟସ ବେଶୀ ହେବାରୁ କ୍ଷୀଣକଳେବର ଓ ବିକୃତମସ୍ତିଷ୍କ ହେବାକୁ ଆରମ୍ଭ କଲାଣି । ବୃଦ୍ଧ ଗୌରୀଶଙ୍କର ଜଣେ ବଙ୍ଗାଳୀ, ମାତ୍ର ବହୁକାଳରୁ ଆସି ଉତ୍କଳରେ ବାସ କରି ଓଡ଼ିଶାକୁ ମାତୃଭୂମି କରି ନେଇଛନ୍ତି । ଗୌରୀଶଙ୍କର ତାଙ୍କ ଜୀବନ ମଧରେ ସେ 'ଉତ୍କଳଦୀପିକା'ର ସମ୍ପାଦକ ହୋଇ ୫୦ ବର୍ଷକାଳ କାଗଜଟିକୁ ଚଳାଇ କାଗଜର ମହତ୍ତ୍ୱ ରଖି ଆସିଛନ୍ତି । ଓଡ଼ିଆଭାଷାର ଉନ୍ନତିଲାଗି ସେ ଯେଉଁ ଅଦମ୍ୟ ଉତ୍ସାହ ସହିତ କାର୍ଯ୍ୟ କରିଛନ୍ତି ତାଙ୍କଠାରେ ଓଡ଼ିଆ ଭାଷା ଚିର ଋଣୀ । ବୃଦ୍ଧ ଗୌରୀଶଙ୍କର ଓ ତାଙ୍କ ସମସାମୟିକ ପ୍ରାତଃସ୍ମରଣୀୟ ବିଚ୍ଛନ୍ଦ ପଟ୍ଟନାୟକ ଓ ବିଚିତ୍ରାନନ୍ଦ ପ୍ରମୁଖ ତଦାନୀନ୍ତନ ଉତ୍କଳ

ସାହିତ୍ୟସେବୀବୃନ୍ଦ ଅଣ୍ଟା ଭିଡ଼ି ନ ଥିଲେ ଓଡ଼ିଆ ଭାଷା କଚେରୀ ସ୍କୁଲମାନଙ୍କରୁ ଉଠି ଯାଇଥାନ୍ତା । ବୃଦ୍ଧ ଗୌରୀଶଙ୍କରଙ୍କଠାରେ ବଙ୍ଗାଳୀ ଅଭିମାନ ନାହିଁ । ସେ ଓଡ଼ିଆଙ୍କ ସହିତ ଆପଣା ଭାଗ୍ୟ ମିଳାଇ ନିରପେକ୍ଷଭାବରେ ଉତ୍କଳସାହିତ୍ୟର ଉନ୍ନତି କଳ୍ପେ ୫୦ ବର୍ଷ ଅକ୍ଷୁଣ୍ଣଭାବରେ କାର୍ଯ୍ୟ କରିଥିବା ବଡ଼ ଉଦାରତାର ବିଷୟ ।

ସଂସ୍କୃତ ଭାଷା ପ୍ରାଥମିକ ଭାଷା । ବ୍ରାହ୍ମଣମାନେ ପ୍ରାୟ ସଂସ୍କୃତଚର୍ଚ୍ଚା ବିଶେଷଭାବରେ କରୁଥିଲେ । ଅଧିକାଂଶ ପୁସ୍ତକ ସଂସ୍କୃତଭାଷାରେ ଲିଖିତ ହେଉଥିଲା । ବ୍ରାହ୍ମଣମାନେ ପ୍ରାକୃତ ଭାଷାକୁ ସୁଦୃଷ୍ଟିରେ ଦେଖୁ ନ ଥିଲେ, ବରଂ ପ୍ରାକୃତ ଭାଷାରେ ଲେଖା ପଢ଼ା ଓ ପ୍ରାକୃତ ପୁସ୍ତକ ପଢ଼ିବାକୁ ହେୟଜ୍ଞାନ କରୁଥିଲେ । ପ୍ରାକୃତ ପ୍ରତି ଏହି ଅନାଦର ଭାବ ଆଜିଯାଏଁ ଦୃଷ୍ଟିଗୋଚର ହେଉଛି । ଆଜି ମଧ୍ୟ ଅନେକ ଖାଣ୍ଟି ମରହଟି ପଣ୍ଡିତଙ୍କ ମୁଖରୁ ପ୍ରାକୃତ ପ୍ରତି ଅନାଦର ଶୁଣାଯାଏ । ବ୍ରାହ୍ମଣ ପଣ୍ଡିତମାନେ ସଂସ୍କୃତକୁ ଯେତେ ଆଦର କରନ୍ତି ପ୍ରାକୃତକୁ ତେତେ କରନ୍ତି ନାହିଁ । ଏହି କାରଣରୁ ପୁରାତନ ପ୍ରାକୃତ ଲେଖକଙ୍କ ମଧ୍ୟରେ ବ୍ରାହ୍ମଣକବିଙ୍କର ସଂଖ୍ୟା ଅଳ୍ପ । ଆଧୁନିକ ବ୍ରାହ୍ମଣ ପଣ୍ଡିତଙ୍କ ମଧରେ ପ୍ରାକୃତଭାଷା ଅଭିଜ୍ଞତା ଥିବା ପଣ୍ଡିତଙ୍କ ସଂଖ୍ୟା ଅଳ୍ପ ।

ପ୍ରାକୃତ ଭାଷାରୁ ବିଶୁଦ୍ଧ ଓଡ଼ିଆ ଭାଷାର ଜନ୍ମ । ବିଶୁଦ୍ଧ ଓଡ଼ିଆ ଭାଷା ସାଧାରଣଙ୍କର ବୋଧଗମ୍ୟ ଏବଂ ସଂସ୍କୃତଭାଷା ଅଳ୍ପ ସଂଖ୍ୟକ ଲୋକମାନଙ୍କ ମଧରେ ଆବଦ୍ଧ । ପୁରାଣ, ବେଦ, ବେଦାନ୍ତ, ଗୀତା, ଭାଗବତ ଆଦି ସମସ୍ତ ଗ୍ରନ୍ଥମାନ ସଂସ୍କୃତ ଭାଷାରେ ଲିଖିତ ହୋଇଥିଲା । ସେଗୁଡ଼ିକ ଭାଷାରେ ଅନୁବାଦିତ ହୋଇ ନ ଥିଲେ ସାଧାରଣ ଲୋକେ କିଛିମାତ୍ର ବୁଝିପାରି ନ ଥାନ୍ତେ । ସୁତରାଂ ସାଧାରଣ ଲୋକଶିକ୍ଷା ଲାଗି ଉଚ୍ଚ ଚିନ୍ତା ଓ ଉଚ୍ଚ ଭାବମାନ ମାତୃଭାଷାରେ ପ୍ରକାଶିତ ହେବା ନିତାନ୍ତ ଆବଶ୍ୟକ । ଭାଷାର ଗତି କିପରି ହେବା ଉଚିତ ? ସମସ୍ୟାର ଏହାହିଁ ପ୍ରଧାନ ସମାଧାନ । ଭାଷା ସଂସ୍କୃତ-ଶବ୍ଦାଡମ୍ବରରେ ପରିପୂରିତ ହେଲେ ଅଳ୍ପସଂଖ୍ୟକ ଲୋକଙ୍କ ମଧରେ ଆବଦ୍ଧ ରହିବ । ବିଶୁଦ୍ଧ ପ୍ରାଞ୍ଜଳ ସରଳ ସୁଲଭ ଓଡ଼ିଆ ଶବ୍ଦ ଦ୍ୱାରା ସାହିତ୍ୟ ଲେଖା ହେଲେ ସାଧାରଣଙ୍କର ବୋଧଗମ୍ୟ ହେବ । ଲୋକଶିକ୍ଷା ଲାଗି ଏହିଭଳି ଭାଷା ଆବଶ୍ୟକ ।



୧୨

# ଓଡ଼ିଆ ଭାଷା

## ଗୋପବନ୍ଧୁ ଦାସ

ଓଡ଼ିଆମାନଙ୍କ ଶିକ୍ଷାପଥରେ କେତେକ ଅଞ୍ଚଳରେ ବହୁ ଅନ୍ତରାୟ ରହିଅଛି । ଜାତୀୟ ଶିକ୍ଷା ଯେ ଜାତୀୟଭାଷାରେ ଦିଆଯିବା ଉଚିତ ଏହା ସର୍ବବାଦୀସମ୍ମତ । ମାତ୍ର କେତେକ ଓଡ଼ିଆ ଅଞ୍ଚଳରେ ଓଡ଼ିଆଭାଷା ବ୍ୟବହାର ପକ୍ଷେ ତେତେ ଯେ ସୁବିଧା ନାହିଁ ତାହା ନୁହେଁ, ଅନେକ ବାଧା ମଧ୍ୟ ଅଛି । କେତେକବର୍ଷ ପୂର୍ବେ ଓଡ଼ିଆଭାଷା ଓ ସାହିତ୍ୟର ବିଳାସଭୂମି ଗଞ୍ଜାମର ସ୍କୁଲ, କଲେଜ ଏବଂ ବିଚାର ଅଦାଲତରୁ ଓଡ଼ିଆ ଏକ ପ୍ରକାର ବିତାଡିତ ହୋଇଥିଲା । ଓଡ଼ିଆମାନେ ନିଜ ମାତୃଭାଷା ପଢ଼ିବାର ସୁଯୋଗ ପାଉ ନଥିଲେ । ଆଜି ସେ ଅବସ୍ଥା ବଦଳିଛି । ଗଞ୍ଜାମରେ ଓଡ଼ିଆର ସ୍ୱତ୍ୱ ଓ ଅଧିକାର ସରକାର ସ୍ୱୀକାର କରିଅଛନ୍ତି । ଓଡ଼ିଆ ସ୍କୁଲର ସଂଖ୍ୟା ଦିନଦିନ ବଢୁଅଛି । ମାତ୍ର ବିଚାର ଅଦାଲତରେ ଓଡ଼ିଆ ଏପର୍ଯ୍ୟନ୍ତ ଉପଯୁକ୍ତ ସ୍ଥାନ ପାଇନାହିଁ । କେବଳ ଘୁମୁସର ତାଲୁକାରେ ଓଡ଼ିଆ ଏକମାତ୍ର କଚେରୀଭାଷା ରୂପେ ଜାରୀ ହୋଇଅଛି । ଅନ୍ୟାନ୍ୟ ପୂରା ଓଡ଼ିଆଭାଷା ତାଲୁକାରେ ଏପର୍ଯ୍ୟନ୍ତ ପୂର୍ଣ୍ଣ ଅଧିକାର ମିଳିନାହିଁ । ଗଞ୍ଜାମର ନ୍ୟାଯପରାୟଣ କଲେକ୍ଟର କଟରେଲ ସାହେବ ଛତ୍ରପୁର ତାଲୁକାରେ ପୂରା ଓଡ଼ିଆ ଜାରୀ କରିବାଲାଗି ଗବର୍ଣ୍ଣମେଣ୍ଟଙ୍କୁ ଲେଖିଥିଲେ ସୁଦ୍ଧା ଗବର୍ଣ୍ଣମେଣ୍ଟ ଓଡ଼ିଆର ନ୍ୟାୟସଙ୍ଗତ ଦାବୀ ବିବେଚନା କରିନାହାନ୍ତି । ଏହା ଓଡ଼ିଆମାନଙ୍କ ପକ୍ଷେ ନିତାନ୍ତ ଅବିଚାର । ଅନେକସ୍ଥଳେ ଓଡ଼ିଆ ଶିକ୍ଷା ଯେପରି ହେବା ଉଚିତ ଓଡ଼ିଆମାନଙ୍କର ଅଦ୍ୟାପି ତେତେ କର୍ତ୍ତୃତ୍ୱ ନଥିବାରୁ ସେପରି ହୋଇପାରୁ ନାହିଁ । ଗଞ୍ଜାମରେ ଓଡ଼ିଆ ଜାତୀୟପ୍ରାଣ ଜାଗିଅଛି । ସେ ଏଣିକି କୌଣସି ବାଧା ମାନିବ ନାହିଁ । ମୋର ବିଶ୍ୱାସ ଓଡ଼ିଆଭାଷା ସେଠା ବିଦ୍ୟାଳୟ ଓ ବିଚାର ଅଦାଲତରେ ସମ୍ପୂର୍ଣ୍ଣ ଅଧିକାର ପାଇବାକୁ ଆଉ ଅଧିକ ଦିନ ଲାଗିବ ନାହିଁ ।

ମାନ୍ଦ୍ରାଜ ପ୍ରଦେଶରେ ଭିଜାଗାପଟମ ଏଜେନ୍‌ସି ପୂରା ଓଡ଼ିଆ ଅଞ୍ଚଳ । ସେଠାରେ ଓଡ଼ିଆଭାଷାର ଅବସ୍ଥା ଶୋଚନୀୟ । ଓଡ଼ିଆମାନଙ୍କ ପକ୍ଷେ ଓଡ଼ିଆଭାଷା ବ୍ୟବହାର ସରକାର ନାମକୁ ମାତ୍ର ସ୍ୱୀକାର କରୁଛନ୍ତି ସତ୍ୟ ମାତ୍ର କାର୍ଯ୍ୟରେ ଯଥାର୍ଥ ଓଡ଼ିଆଶିକ୍ଷା ଏପର୍ଯ୍ୟନ୍ତ ଆରମ୍ଭ ହୋଇନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ ।

ମେଦିନୀପୁରରେ ଓଡ଼ିଆସଂଖ୍ୟା କ୍ରମେ ଏପରି ଉଣା ହୋଇଆସୁଅଛି ଯେ ଆଉ ଅଳ୍ପଦିନ ମଧ୍ୟରେ ଓଡ଼ିଆ ନାମ ସେଠାରୁ ଲୋପପାଇବ । ତିନି ସେନ୍‌ସେସ୍ ଆଗେ ସେଠାରେ ଓଡ଼ିଆ ସଂଖ୍ୟା ଥିଲା ୬ଲକ୍ଷ, ତହିଁପର ସେନ୍‌ସେସ୍‌ରେ ୩ ଲକ୍ଷ, ବର୍ତ୍ତମାନ ଏହା ଦେଢ଼ଲକ୍ଷ ମାତ୍ର । ଯେପରି ଗତିରେ କମୁଛି ଆଗାମୀ ସେନ୍‌ସେସ୍ ବେଳକୁ ଓଡ଼ିଆବୋଲି ପରିଚୟ ଦେବାକୁ ସେଠାରେ କେହି ନ ଥିବା ବିଚିତ୍ର ନୁହେଁ ।

ସିଂହଭୂମରେ ଆଦିମ ଅଧିବାସୀମାନଙ୍କୁ ଛାଡ଼ିଦେଲେ ଓଡ଼ିଆମାନଙ୍କ ସଂଖ୍ୟା ଅନ୍ୟାନ୍ୟମାନଙ୍କ ଅପେକ୍ଷା ଅଧିକ ! ସେ ଜିଲ୍ଲାର ଏକ ଅଞ୍ଚଳରେ ପଢ଼ା ହୁଏ ହିନ୍ଦି, ଅନ୍ୟ ଅଞ୍ଚଳରେ ବଙ୍ଗଳା । କଚେରୀରେ ଏହି ଦୁଇ ଭାଷା ଚଳେ । ଓଡ଼ିଆର କୌଣସିଠାରେ ସ୍ଥାନ ନାହିଁ । ମୁଁ ନିଜେ ହିନ୍ଦି ଓ ବଙ୍ଗଳାସ୍କୁଲମାନଙ୍କରେ ଓଡ଼ିଆ ପିଲାଙ୍କର ଶିକ୍ଷା ଦେଖିଅଛି । ଶିଶୁମାନେ ପ୍ରାଥମିକ ପୁସ୍ତକର ପାଠ ଆଦୌ ବୁଝିପାରୁ ନାହାନ୍ତି । ଯେଉଁଠାରେ ଓଡ଼ିଆ ଶିକ୍ଷକ ଅଛନ୍ତି, ସେମାନେ ଘରୋଇ ଓଡ଼ିଆ ଭାଷାରେ ବୁଝାଇଦିଅନ୍ତି । ଯେଉଁଠାରେ ସେ ସୁବିଧା ନାହିଁ ଶିଶୁମାନେ ଶୁଆପରି କିଛି ନ ବୁଝି ମୁଖସ୍ଥ କରନ୍ତି । କୌଣସି ବିଦେଶୀଭାଷା ଶିଖିବାରେ ଯେତେ ଶ୍ରମ ଓ ଅଧ୍ୟବସାୟ ପଡ଼େ ଅତି ଶୈଶବାସ୍ଥାରୁ ଓଡ଼ିଆଛାତ୍ରମାନଙ୍କୁ ସେହି କଷ୍ଟ ସ୍ୱୀକାର କରିବାକୁ ହେଉଅଛି । ସିଂହଭୂମର ଓଡ଼ିଆମାନେ ପ୍ରାୟ ୩ବର୍ଷ ପୂର୍ବେ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କଠାରେ କଚେରୀ ଏବଂ ସ୍କୁଲରେ ଓଡ଼ିଆଭାଷା ଚଳନ ନିମନ୍ତେ ଦରଖାସ୍ତ ଦେଇଥିଲେ । ସରକାର ତହିଁରେ ଆଦେଶ କଲେ କି ସିଂହଭୂମରେ କଚେରୀ ଭାଷା ସଂଖ୍ୟା ଅଧିକ ବଢ଼ାଇବା ଉଚିତ ଓ ଆବଶ୍ୟକ ନୁହେଁ । ଆଉ ମଧ କହିଥିଲେ ଯେ ଓଡ଼ିଆମାନଙ୍କ ଶିକ୍ଷା ବିଷୟରେ ସରକାର ମନୋଯୋଗୀ ଅଛନ୍ତି ।

ସରକାର କିଭଳି ମନୋଯୋଗ ହେଉଅଛନ୍ତି କେଜାଣି, ମୁଁ କୌଣସି ମାଇନର ସ୍କୁଲରେ ଦେଖୁଅଛି ୧୩୮ ଜଣ ଛାତ୍ର ମଧ୍ୟରୁ ୧୨୧ ଜଣ ଓଡ଼ିଆ ଘରେ ଓଡ଼ିଆକଥା କହନ୍ତି, ଓଡ଼ିଆ ତାଳପତ୍ର ପୋଥି ସମ୍ପାଦି ରଖିଅଛନ୍ତି ମାତ୍ର ସ୍କୁଲରେ ଆସି ପଢ଼ନ୍ତି ବଙ୍ଗଳା । ଅଧିକାଂଶ ହିନ୍ଦି ସ୍କୁଲରେ ଓଡ଼ିଆମାନଙ୍କ ସଂଖ୍ୟା ଏହିପରି ଦେଖାଯିବ । ଦୁଇ ତିନୋଟି ସ୍କୁଲଛଡ଼ା ଆଉ କୌଣସି ହିନ୍ଦି ବିଦ୍ୟାଳୟରେ ପ୍ରକୃତ ହିନ୍ଦିଭାଷୀ ଛାତ୍ର ଆଦୌ ନାହାନ୍ତି । ଅଛନ୍ତି କେବଳ ଓଡ଼ିଆ ଏବଂ ସିଂହଭୂମର ଆଦିମ ଅଧିବାସୀ । ଆଦିମ ଅଧିବାସୀମାନେ ଓଡ଼ିଆମାନଙ୍କ ସଙ୍ଗେ ବହୁଦିନ ରହି କ୍ରମେ ଓଡ଼ିଆଭାଷା ଶିଖିଯାଉଅଛନ୍ତି । କୌଣସି ଆର୍ଯ୍ୟ ପ୍ରାକୃତଭାଷାରେ ସେମାନଙ୍କୁ ଶିକ୍ଷାଦେବାକୁ ହେଲେ ଓଡ଼ିଆଭାଷାର ଦାବୀ ଅଗ୍ରଗଣ୍ୟ । ମାତ୍ର ସେମାନଙ୍କୁ ଓଡ଼ିଆ ପରିବର୍ତ୍ତେ ହିନ୍ଦି ଶିକ୍ଷା ଦିଆଯାଉଅଛି ।

ରାୟପୁର ଜିଲ୍ଲା ଅନ୍ତର୍ଗତ ଫୁଲଝର, ପଦ୍ମପୁର, ଖଡିଆଳ ପ୍ରଭୃତି ଅଞ୍ଚଳରେ ଓଡ଼ିଆମାନେ ହିନ୍ଦି ପଢ଼ିବାକୁ ବାଧ୍ୟ । କଚେରୀରେ ଓଡ଼ିଆଭାଷାର ନାମ ମାତ୍ର ରହିଛି । ତଥାପି ଲୋକେ ନିଜ ନିଜର ସ୍ୱତନ୍ତ୍ର ଚାଟଶାଳୀ ବା ସ୍କୁଲ ବସାଇ ପିଲାମାନଙ୍କୁ ଓଡ଼ିଆଭାଷା ଶିଖାଉ

ଅଛନ୍ତି । ଏହା ଆଉ କେତେଦିନ ରହିବ ?

ଓଡ଼ିଆଭାଷାର ପରିସର କ୍ରମେ ଏହିପରି ସଙ୍କୁଚିତ ହୋଇ ଯାଉଅଛି । ଓଡ଼ିଆ ଜାତିର ଅଙ୍ଗ ଖଣ୍ଡ ବିଖଣ୍ଡିତ ହୋଇଅଛି, ପୁଣି ଜିଭ କଟା ହୋଇଅଛି । ଏ ଦୁରବସ୍ଥା ନ ଘୁଞ୍ଚିବା ଯାଏ ଓଡ଼ିଆର ଜାତୀୟ ଶିକ୍ଷାପଥ ପରିଷ୍କୃତ ହେବ ନାହିଁ କିମ୍ବା ଓଡ଼ିଆ ପ୍ରାଣର ସ୍ୱଛନ୍ଦ ଏବଂ ସ୍ୱାଭାବିକ ବିକାଶ ହେବନାହିଁ ।

ସମ୍ବଲପୁର ସମ୍ମିଳନୀରେ ସିଂହଭୂମରେ ଓଡ଼ିଆଶିକ୍ଷା ପ୍ରଚାର ନିମନ୍ତେ ଉଦ୍ୟମ କରିବା ଲାଗି ମୁଁ ପ୍ରତିଶ୍ରୁତ ହୋଇଥିଲି । ସେହିଦିନୁ ସେ ବିଷୟରେ ମୁଁ କେତେକ କାର୍ଯ୍ୟ କରିବାକୁ ଚେଷ୍ଟା କରିଅଛି । ମାତ୍ର ମୋ ପରି କ୍ଷୀଣଶକ୍ତି ଲୋକର ଏକାକୀ ହାତରେ ହଠାତ୍ କାର୍ଯ୍ୟର ସଫଳତା ଆଶା କରାଯାଇ ନ ପାରେ । ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷାର ପୁନରୁଦ୍ଧାର ଏବଂ ପ୍ରଚଳନ ନିମନ୍ତେ ବିସ୍ତର ଲୋକ ଓ ଅର୍ଥ ଆବଶ୍ୟକ । ସମ୍ମିଳନୀ ନିର୍ଦ୍ଧାରଣ କରୁଛନ୍ତି, ସରକାରଙ୍କୁ ଅନ୍ୟାନ୍ୟ ବିଷୟରେ କୁହାଯାଉଛି ଏବଂ ଭବିଷ୍ୟତ୍‌ରେ କୁହାଯିବ କିନ୍ତୁ ମୋର ବିଶ୍ୱାସ ଆମ୍ଭେମାନେ ନିଜ ଗୋଡ଼ରେ ଠିଆ ହେବାକୁ ଉଦ୍ୟତ ନ ହେବା ଯାଏ ଏ ସବୁରେ ବିଶେଷ କିଛି ଫଳ ହେବନାହିଁ । ଏ କ୍ଷେତ୍ରରେ ଓଡ଼ିଆମାନଙ୍କର passive resistance ବା ସତ୍ୟାଗ୍ରହ ନୀତି ଅବଲମ୍ବନ କରିବା ଉଚିତ୍ । ସେମାନଙ୍କର ପ୍ରଥମ କର୍ତ୍ତବ୍ୟ ହିନ୍ଦି, ବଙ୍ଗଳା ବା ତେଲଙ୍ଗ ସ୍କୁଲରେ ନ ପଢ଼ିବା । ଦୃଢ଼ତାର ସହିତ ଏହି ନୀତି କାର୍ଯ୍ୟରେ ଅନୁସରଣ କଲେ ମୋର ବିଶ୍ୱାସ ଓଡ଼ିଆ ଅଞ୍ଚଳରେ ଥିବା ଭିନ୍ନ ଭାଷାର ସ୍କୁଲମାନ ଆପେ ଆପେ ଉଠିଯିବ । ଯଦି ନ ଉଠିଲା ତ ନାହିଁ, ଓଡ଼ିଆ ଅଞ୍ଚଳରେ ଯଦି କୌଣସି ବିଶେଷ କାରଣରୁ ସେ ସବୁ ସ୍କୁଲ ରଖିବା ସରକାରଙ୍କ ଆବଶ୍ୟକ ହୁଏ, ରଖନ୍ତୁ; ଆମ୍ଭେମାନେ ନିଜର ଓଡ଼ିଆ ସ୍କୁଲ କରି ପିଲାଙ୍କୁ ପଢ଼ାଇବୁଁ । ମନେ ରଖିବାକୁ ହେବ ଯେ ଓଡ଼ିଆଭାଷା ଉପରେ ଆମ୍ଭମାନଙ୍କର ଜାତୀୟସତ୍ତା ନିର୍ଭର କରେ । ଭାଷା ଲୋପ ପାଇଲେ ଓଡ଼ିଆଜାତି ଲୋପ ପାଇବ । ସୁତରାଂ ଭାଷା ଆମ୍ଭମାନଙ୍କ ପକ୍ଷେ ଜୀବନ ମରଣର ସମସ୍ୟା । ଅବଶ୍ୟ ଭାରତରେ ସମସ୍ତଙ୍କ ଏକ ସାଧାରଣ ଭାଷା ହୋଇପାରିଲେ ପରମ ସୌଭାଗ୍ୟର ବିଷୟ ହୁଅନ୍ତା । ସେଥିଲାଗି ଓଡ଼ିଆ ଭାଷାକୁ ତ୍ୟାଗ କରିବା ନିମନ୍ତେ ମୁଁ କୁଣ୍ଠିତ ନୁହେଁ । ଭାରତରେ ଏକ ଭାଷା ପ୍ରଚାର ନିମନ୍ତେ ଯେ କୌଣସି ସ୍ୱାର୍ଥତ୍ୟାଗ ବ୍ୟକ୍ତିବିଶେଷ ବା ପ୍ରଦେଶବିଶେଷ ପକ୍ଷେ କଦାପି ଅତ୍ୟଧିକ ହୋଇ ନ ପାରେ । ଭାରତର ସମୂହ କଲ୍ୟାଣରେ ପ୍ରାଦେଶିକ ସ୍ୱାର୍ଥର ବଳି ଦେବା ସମସ୍ତଙ୍କର କର୍ତ୍ତବ୍ୟ ହେବା ଉଚିତ୍ । ମାତ୍ର ଯେତେଦିନଯାଏ ଭାରତରେ ଏକ ସାଧାରଣ ଭାଷାର ସମ୍ଭବ ହୋଇନାହିଁ, ଭାରତରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ବିଦ୍ୟମାନ ରହିଅଛି; ତେତେ ଦିନଯାଏ ଓଡ଼ିଆ ଅକାରଣ ତାହାର ସ୍ୱାତନ୍ତ୍ର୍ୟ ହରାଇବାକୁ ପ୍ରସ୍ତୁତ ନୁହେଁ । ସିଂହଭୂମିରେ ଓଡ଼ିଆଶିକ୍ଷା ପ୍ରଚାର ନିମନ୍ତେ ଆମ୍ଭେମାନେ ଓଡ଼ିଆ ଶିକ୍ଷାପାଣ୍ଠି ଖୋଲିଅଛୁଁ । ବର୍ତ୍ତମାନ ମୁଁ ଭାବି ଦେଖୁଛି କେବଳ ସିଂହଭୂମଲାଗି ନୁହେଁ ଓଡ଼ିଶାର ବାହାରେ ଯେ ସମସ୍ତ

ଓଡ଼ିଆ ଅଞ୍ଚଳରେ ଓଡ଼ିଆମାନେ ନିଜର ମାତୃଭାଷା ବ୍ୟବହାରରୁ ବଞ୍ଚିତ ହୋଇଅଛନ୍ତି ସେ ସମସ୍ତ ଅଞ୍ଚଳରେ ଓଡ଼ିଆଭାଷାର ଶିକ୍ଷା ଏବଂ ବ୍ୟବହାର ଯେପରି କ୍ରମେ ବଢ଼ିବ, ଓଡ଼ିଆର ନ୍ୟାଯ୍ୟ ଅଧିକାର ଓଡ଼ିଆ ଯେପରି ପାଇବ; ତହିଁର ବିହିତ ପ୍ରତିକାର କରିବା ନିମନ୍ତେ ସିଂହଭୂମ ଓଡ଼ିଆ ଶିକ୍ଷାପାଣ୍ଠି ଓଡ଼ିଆରକ୍ଷା ସମାଜରେ ପରିଣତ ହେବା ଉଚିତ୍ ।

ଏଠାରେ ପ୍ରଶ୍ନ ହୋଇପାରେ ଓଡ଼ିଶା ବାହାରେ ଭିନ୍ନ ଭିନ୍ନ ପ୍ରଦେଶ ବା ଜିଲ୍ଲାରେ ଥିବା ଓଡ଼ିଆମାନେ ଯେବେ ସେ ପ୍ରଦେଶ ବା ଜିଲ୍ଲାର ଭର୍ଣ୍ଣାକୁଲାର ବା ଦେଶିକ ଭାଷା ନ ପଢ଼ି ଓଡ଼ିଆ ପଢ଼ିବା ଲାଗି ଦାବୀ କରାଯାଏ ତେବେ ଓଡ଼ିଶାରେ ଯେଉଁ ସବୁ ବିଭିନ୍ନ ଜାତୀୟ ଲୋକେ ଅଛନ୍ତି ସେମାନେ ବା ଓଡ଼ିଆ ପଢ଼ିବେ କାହିଁକି ? ଯେ ଯେଉଁ ଦେଶରେ ବାସ କରିବେ ସେହି ଦେଶର ଭାଷା କ୍ରମେ ତାଙ୍କର ଭାଷା ହେବା ଉଚିତ୍, ତା ନ ହେଲେ କୌଣସି ଏକ ଦେଶରେ ଦୃଢ଼ ଜାତୀୟତା ଜନ୍ମିବ ନାହିଁ । ମାତ୍ର ରାଜନୈତିକ ଓଡ଼ିଶାର ସଂଲଗ୍ନ ଅଥଚ ଶାସନଭେଦରେ ଓଡ଼ିଶାରୁ ବିଚ୍ଛିନ୍ନ ଅଞ୍ଚଳମାନ ସ୍ୱାଭାବିକ ଓଡ଼ିଆ ଅଞ୍ଚଳ । ସେ ସବୁ ଅଞ୍ଚଳମାନ ଓଡ଼ିଶା ସଙ୍ଗେ ଏକଶାସନରେ ରହିବା ଲାଗି ଆମ୍ଭେମାନେ ଦାବି କରୁଁ । ସେହି ସବୁ ସ୍ଥାନରେ ଓଡ଼ିଆ ଅଧିବାସୀଙ୍କ ସଂଖ୍ୟା ଅଧିକ । ଓଡ଼ିଆ ହିଁ ସେହି ସବୁ ସ୍ଥାନର ଦେଶିକ ଭାଷା । ଶାସନ ଭେଦ ଘଟି ନଥିଲେ, ଏମନ୍ତ କି ଶାସନ ଭେଦରେ ସୁଦ୍ଧା ଶିକ୍ଷା ଆଦି ବିଷୟରେ ଲୋକମାନଙ୍କର ସଂପୂର୍ଣ୍ଣ ସ୍ୱାଛନ୍ଦ୍ୟ ଏବଂ ସ୍ୱାଧୀନତା ଥିଲେ ଏବଂ principle of self determination ବା ଆତ୍ମନିର୍ଣ୍ଣୟ ସେହି ସବୁ ଅଞ୍ଚଳରେ କାର୍ଯ୍ୟକାରୀ ହୋଇଥିଲେ ଆଜି ସେଠାରେ କେବଳ ଓଡ଼ିଆ ଭାଷା ଅକ୍ଷୁଣ୍ଣ ଭାବରେ ଥାଆନ୍ତା, ଅନ୍ୟ କୌଣସି ଭାଷା ପ୍ରବେଶର ଅବକାଶ ପାଇ ନ ଥାନ୍ତା । ଅନ୍ୟ ଭାଷାଭାଷୀ ଅଳ୍ପ ସଂଖ୍ୟକ ଲୋକ ସମସ୍ତେ ଆଜି ସେଠାରେ ଓଡ଼ିଆ ଭାଷା ଗ୍ରହଣ କରିଥାନ୍ତେ । ତ୍ରିହୁତ୍ ଜିଲ୍ଲାରେ ଅନେକ ଓଡ଼ିଆ ଅଛନ୍ତି । ସେମାନେ ସେଠାର ସ୍ଥାୟୀ ଅଧିବାସୀ । ବ୍ୟବହାର, କ୍ରିୟା, ରୀତି, ନୀତି, ପ୍ରଥା ପଦ୍ଧତି ଆଦି ସ୍ୱାଭାବିକ ପ୍ରକ୍ରିୟାରେ କ୍ରମେ କେତେ ବଦଳି ଗଲାଣି । ତଥାପି ଏ ଦେଶର ସ୍ଥାୟୀ ଅଧିବାସୀ ବଙ୍ଗାଳିମାନଙ୍କ ପରି ଘରେ ଭଙ୍ଗା ଓଡ଼ିଆ କହୁଛନ୍ତି ଏବଂ ଓଡ଼ିଆ ସ୍ମୃତି ସାମାଜିକ ବିଧାନରେ ଚଳୁଛି । କିନ୍ତୁ ତାହା ବୋଲି ସେଠାର ବହୁଦୂର ବିଚ୍ଛିନ୍ନ ଅଳ୍ପ ସଂଖ୍ୟକ ଓଡ଼ିଆଙ୍କ ଲାଗି ଓଡ଼ିଆଭାଷା କେହି ଦାବୀ କରୁନାହିଁ । ତାହା ସଙ୍ଗତ ବା ସ୍ୱାଭାବିକ ନୁହେ । ଭାରତର ହିନ୍ଦୁସମାଜର ନିଗଡ଼ସାମାଜିକ ବନ୍ଧନ ଯୋଗୁଁ ସେମାନେ ଓଡ଼ିଆ ସଙ୍ଗେ ବୈବାହିକ ସୂତ୍ରରେ ଆବଦ୍ଧ ହେଉଅଛନ୍ତି ମାତ୍ର ଓଡ଼ିଶାର କନ୍ୟା ତ୍ରିହୁତର ବଧୂ ହେଲେ ସେଠାରେ ତାଙ୍କୁ ହିନ୍ଦି ଶିଖିବାକୁ ଏବଂ କହିବାକୁ ହେବ ଏବଂ ତ୍ରିହୁତ କନ୍ୟା ଓଡ଼ିଶାକୁ ଆସିଲେ ସେ ଅବଶ୍ୟ ଓଡ଼ିଆ କହିବେ । ଭାଷାର ବାହୁଲ୍ୟ ଭାରତର ଏକତା ପଥରେ ପ୍ରଧାନ ପ୍ରତିବନ୍ଧକ । ଏହା ସମସ୍ତେ ଅନୁଭବ କରୁଛନ୍ତି । ଏ ଅସୁବିଧା ସହଜରେ ନିକଟରେ ଘୁଞ୍ଚିବାର ନୁହେ । ତାହା ବୋଲି ଏ ପ୍ରତିବନ୍ଧକକୁ ବଢ଼ାଇବାର କାହାରି କର୍ତ୍ତବ୍ୟ ନୁହେ । ଯେଉଁ ସ୍ଥାନ ବା କାଳରେ ଯେଉଁ

ଭାଷା ଲୋକଙ୍କର ସ୍ୱାଭାବିକ ଭାଷା, ଅଥବା ଅଧିକ ସଂଖ୍ୟକ ଲୋକଙ୍କ ଭାଷା, ସେହି ଭାଷା ସେହି ସ୍ଥାନର ସର୍ବସାଧାରଣଙ୍କର ଭାଷା ହେବା ଉଚିତ୍ । ଇଂରେଜ ରାଜତ୍ୱରେ ଓଡ଼ିଆମାନେ ଭାଷା ସମ୍ବନ୍ଧରେ ଯେ ବାଧା ପାଇଛନ୍ତି ଓ ପାଉଛନ୍ତି, ତାହା କଠୋର ନିର୍ଦ୍ଦୟତା ଏବଂ ଉତ୍କଟ ଅନ୍ୟାୟ ବୋଲି ମୁଁ ଅସଙ୍କୋଚ ଭାବରେ କହିପାରେ । ମାତୃଭାଷା ମନୁଷ୍ୟ ହୃଦୟର ସ୍ୱାଭାବିକ ପ୍ରବାହ । ତାହାକୁ ମାତୃଭାଷାରୁ ବଞ୍ଚିତ କରିବା ଅର୍ଥ ତାହାର ହୃଦୟର ଗତିରୋଧ କରିବା, ହୃଦୟର ଦ୍ୱାର ମୁଖ ବନ୍ଦ କରିବା ଏବଂ ଅନ୍ତରର ଚାବି ଜିଭ କାଟିଦେବା । ଏହି ନିଗ୍ରହ ଓ ନିର୍ଯ୍ୟାତନା ଆମ୍ଭମାନଙ୍କୁ ଏ ରାଜତ୍ୱରେ ଏକପ୍ରକାର ପ୍ରାରମ୍ଭରୁ ଆଜିଯାଏ ସହିବାକୁ ହୋଇଛି । ଗତ ଶତାବ୍ଦିର ମଧ୍ୟଭାଗରେ ରାଜନୈତିକ ଓଡ଼ିଶାରେ ବଙ୍ଗଳା ଚଳିବାର ଉଦ୍ୟମ ହୋଇଥିଲା, ମଧ୍ୟ କେତେକ ସ୍କୁଲରେ ଚଳିଥିଲା । ବିଚିତ୍ରାନନ୍ଦ ଗୌରୀଶଙ୍କର ପ୍ରଭୃତି କ୍ଷଣଜନ୍ମା ଉତ୍କଳପୁତ୍ରଙ୍କ ଯତ୍ନରେ ସେ ଉଦ୍ୟମ ବିଫଳ ହେଲା । ତାହା ନ ହୋଇଥିଲେ ଓଡ଼ିଶାରେ ମଧ୍ୟ ଓଡ଼ିଶାର ସତ୍ତା ଆଜି ନ ଥାନ୍ତା ଏବଂ ଓଡ଼ିଆ ଜାତିର ନାମ ବୋଧ ହୁଏ ଲୁପ୍ତ ହୋଇଥାନ୍ତା । ଗଙ୍ଗାମୁହାଣ ପର୍ଯ୍ୟନ୍ତ ଓଡ଼ିଶାର ନୈସର୍ଗିକ ସୀମା ବିସ୍ତୃତ ଥିଲାବେଳେ ମେଦିନୀପୁର ଓଡ଼ିଶାର ଅନ୍ତର୍ଗତ ଥିଲା । ଓଡ଼ିଆ ସେଠାର ଭାଷା ଥିଲା । ବାସ୍ତବରେ ମେଦିନୀପୁର ଇଂରେଜମାନଙ୍କର ସାବକ କାଗଜପତ୍ରରେ ଓଡ଼ିଶାର ବୋଲି ଉଲ୍ଲେଖ ହୋଇଅଛି ମାତ୍ର ସେଠାରୁ ଓଡ଼ିଆ ବର୍ତ୍ତମାନ ଲୋପ ପାଇଲାଣି । ଗଞ୍ଜାମ, ଭାଇଜାଗପଟ୍ଟମର କଥା ପୂର୍ବରୁ କୁହାଯାଇଅଛି । ସମ୍ବଲପୁର ହିନ୍ଦି ଓଡ଼ିଆ ମଧ୍ୟରେ କେତେ ଆଘାତ ପ୍ରତିଘାତ ସହି ଅବଶେଷରେ ନିଜ ଭାଷା ପାଇଅଛି ମାତ୍ର ଏଥିଲାଗି ତାକୁ ଯେ ସଂଗ୍ରାମ କରିବାକୁ ପଡ଼ିଥିଲା ଓ ସଂଗ୍ରାମ ଫଳରେ ତାହାର ଯେ ଅଙ୍ଗହାନୀ ଘଟିଅଛି, ତାହାର କେତେକ ଅଞ୍ଚଳ ଯେ ହିନ୍ଦିଭାଷୀ ପ୍ରଦେଶ ସଙ୍ଗେ ରହିଗଲା ତାହା ଓଡ଼ିଶାପକ୍ଷେ ଗୁରୁତର କ୍ଷତି । ସିଂହଭୂମ ହିନ୍ଦି ବଙ୍ଗଳା ଉଭୟ ସଂକଟ ମଧ୍ୟରେ ବର୍ତ୍ତମାନ ସୁଦ୍ଧା ପଡ଼ିରହିଅଛି । ସ୍ଥୂଳରେ କହିବାକୁ ଗଲେ ସମଗ୍ର ଉତ୍କଳପ୍ରଦେଶରେ ଏପରି ସ୍ଥାନ ବା ଜିଲ୍ଲା ନାହିଁ, ଯେଉଁଠାରେ କୌଣସି କୌଣସି ସମୟରେ ଓଡ଼ିଆମାନଙ୍କ ଭାଷା ଉପରେ ଅଯଥା ଆକ୍ରମଣ ଏବଂ ଅତ୍ୟାଚାର ହୋଇ ନାହିଁ, ଏବଂ ସେଥିଯୋଗୁଁ ଓଡ଼ିଆମାନେ କଷ୍ଟ ଏବଂ ଦୁଃଖ ଭୋଗୁନାହାନ୍ତି । ଓଡ଼ିଆମାନଙ୍କ ଶାସନରେ ଇଂରେଜ ସରକାର ସେମାନଙ୍କର ପ୍ରକୃତ ଅବସ୍ଥା ବୁଝିବାକୁ ଚେଷ୍ଟା କରିଥିଲେ ଏ ଅନ୍ୟାୟ ଏବଂ ଅତ୍ୟାଚାର କଦାପି ଘଟି ନଥାନ୍ତା ।



୧୩

# ଜାତୀୟ ଭାଷା

## ଶଶୀଭୂଷଣ ରାୟ

ଭାଷା, ଧର୍ମ ଏବଂ ଆଚାର ଜାତୀୟ ଜୀବନର ଏହି ତିନୋଟି ହିଁ ପ୍ରଧାନ ଉପାଦାନ । ଜାତୀୟ ଜୀବନର ଏହି ତିନୋଟି ହିଁ ପ୍ରାଣ । ଯେ ଜାତିର ଭାଷା, ଧର୍ମ ଓ ଆଚାର ବିଲୁପ୍ତ ହୁଏ, ସେ ଜାତିର ଅସ୍ତିତ୍ୱ ଲୁପ୍ତ ହୁଏ । ଯେଉଁ ଜନସମଷ୍ଟି ଘେନି ଜାତି, ଭାଷାଦି ପ୍ରାଣତ୍ରୟର ଲୋପ ହେଲେ ସେ ଜନସମଷ୍ଟି ଥାଏ, କିନ୍ତୁ ସେ ଜନସମଷ୍ଟିର ସେ ଜାତୀୟତା ରହେ ନାହିଁ; ସେହି ଦେହ ଥିଲେ ହେଁ ସେ ପ୍ରାଣ ରହେ ନାହିଁ । ଦେହ ପ୍ରାଣଶୂନ୍ୟ ହୋଇ ପଡ଼ିଥାଏ, ନତୁବା ତହିଁରେ ଅନ୍ୟ ପ୍ରାଣ ଆସି ଅଧିକାର ସ୍ଥାପନ କରେ । ସେତେବେଳେ ସେହି ଜନସମଷ୍ଟିକୁ ଅନ୍ୟ ଜାତିରୂପରେ ପରିଚିତ ହେବାକୁ ହୁଏ ।

ଦୃଷ୍ଟାନ୍ତ ବିରଳ ନୁହେଁ । ପୁରାତନ ଅଧୁନାତନ ଉଭୟ ଇତିହାସରେ ହିଁ ଏହାର ଦୃଷ୍ଟାନ୍ତ ପାଇବେ; ପ୍ରାଚୀନ ଓ ନବୀନ ଉଭୟ ସମାଜରେ ମଧ ଦୃଷ୍ଟାନ୍ତ ରହିଅଛି; ଅତୀତ ଓ ବର୍ତ୍ତମାନ ଉଭୟ ଯୁଗରେ ମଧ୍ୟ ଦୃଷ୍ଟାନ୍ତ ପ୍ରଚୁର । ଖ୍ରୀଷ୍ଟଧର୍ମର ଆଧିପତ୍ୟ ପୂର୍ବରୁ ଇୟୁରୋପର ଯେଉଁ ଇୟୁରୋପତ୍ୱ ଥିଲା, ବର୍ତ୍ତମାନ ସେ ଇୟୁରୋପତ୍ୱ ନାହିଁ । ସେହି ଦେଶ ପ୍ରଦେଶ ପଡ଼ି ରହିଅଛି, ସେହି ନଦନଦୀ ପ୍ରବାହିତ ହେଉଅଛି, ସେହି ପର୍ବତ ଓ ଶୈଳାବଳୀ ଉନ୍ନତ ମସ୍ତକରେ ଦଣ୍ଡାୟମାନ ରହିଅଛି, ମାତ୍ର ସେ ଇୟୁରୋପ ଆଉ ନାହିଁ । ସେହି ସମସ୍ତ ଗ୍ରାମ ନଗରର ଅବସ୍ଥାନଭୂମି ସେହିପରି ରହିଅଛି, କିନ୍ତୁ ସେ ସମସ୍ତ ଗ୍ରାମର ସେ ଗ୍ରାମତ୍ୱ ଆଉ ନାହିଁ, ସେ ସମସ୍ତ ନଗରର ସେ ନଗରତ୍ୱ ଆଉ ନାହିଁ ।

ଇୟୁରୋପରେ ସେହିପରି ଜନସମଷ୍ଟି ବର୍ତ୍ତମାନ ସୁଦ୍ଧା ରହିଅଛି, ସେତେବେଳେ ଯେଉଁମାନଙ୍କ ବଂଶ ଇୟୁରୋପରେ ବିରାଜିତ ଥିଲା, ଏତେବେଳେ ମଧ ସେହିମାନଙ୍କ ବଂଶ ବିରାଜମାନ । କିନ୍ତୁ ଜାତୀୟତାର ବ୍ୟତିକ୍ରମରେ ଜାତିର ମଧ ବ୍ୟତିକ୍ରମ ହୋଇଅଛି; ଇୟୁରୋପରେ ସମସ୍ତ ଭୂମିଭାଗହିଁ ବର୍ତ୍ତମାନ ନବ ନବ ଜାତିରେ ପୂର୍ଣ୍ଣ ।

ସେହି ଗ୍ରୀସ ବର୍ତ୍ତମାନ ରହିଅଛି, ଗ୍ରୀସର ସେହି ଏଥେନ୍ସ ମଧ ବର୍ତ୍ତମାନ ରାଜଧାନୀରୂପେ ବିରାଜିତ; ସେହି ସୌର୍ଯ୍ୟନିକେତନ ଥାର୍ମପଲି ଏବଂ ମାରାଥନ ପଡ଼ି

ରହିଅଛି । ସେହି ସମସ୍ତ ଯୁଦ୍ଧକ୍ଷେତ୍ର ବର୍ତ୍ତମାନ ସୁଦ୍ଧା ରହିଅଛି, କିନ୍ତୁ ଗ୍ରୀସର ସେ ଗ୍ରୀସତ୍ୱ ଆଉ ନାହିଁ । ଗ୍ରୀସର ସେ ଭାଷା ଧର୍ମ ଏବଂ ଆଚାର ନାହିଁ; ସୁତରାଂ ସେ ଗ୍ରୀସର ଆଉ କିଛିହିଁ ନାହିଁ, ଗ୍ରୀସର ତିନି ପ୍ରଧାନ ପ୍ରାଣହିଁ କେତେଦିନ ହେଲା ଉଡ଼ିଗଲାଣି !

ତିନି ପୁରାତନ ପ୍ରାଣ ସ୍ଥାନରେ ତିନି ନୂତନ ପ୍ରାଣ ଆସି ବସି ଗଲାଣି । ଯେଉଁ ଭାଷାରେ ଗ୍ରୀକ ବାଲ୍ମୀକି ହୋମର ଗ୍ରୀକ୍-ରାମାୟଣ ଇଲିୟଡି ଓଡ଼ିସି ରଚନା କରିଥିଲେ, ଯେଉଁ ଭାଷାରେ ସକ୍ରେଟିସ ପ୍ଲେଟୋ ଦର୍ଶନର ସୃଷ୍ଟି କରିଥିଲେ, ଯେଉଁ ଭାଷାରେ ଆରିଷ୍ଟଟଲ ବିଜ୍ଞାନ ଲେଖିଥିଲେ, ଯେଉଁ ଭାଷାରେ ଡିମସ୍ଥିନିସ୍ ବକ୍ତୃତା କରି ସୁପ୍ତ ନିର୍ଜୀବ ଗ୍ରୀସକୁ ଜାଗରିତ ଓ ସଜୀବ କରିଥିଲେ, ଯେଉଁ ଭାଷାରେ ପିଥାଗୋରସ ଭାରତୀୟ ଆର୍ଯ୍ୟଶାସ୍ତ୍ରର ଅନୁସରଣ କରିଥିଲେ, ଯେଉଁ ଭାଷାରେ ଏରିଷ୍ଟୋଫେନିସ୍ ଏବଂ ଇୟୁରେପିଡିସ୍ ନାଟକ ଲେଖିଥିଲେ, ଯେଉଁ ଭାଷାରେ ଥସିଡିଡସ୍ ଏବଂ ଜେନୋଫନ ଇତିହାସ ଲେଖିଥିଲେ, ଯେଉଁ ଭାଷାରେ ପେରିକ୍ଲିସ୍ ରାଜନୀତିର ଚର୍ଚ୍ଚା କରିଥିଲେ, ଗ୍ରୀସର ସେ ଭାଷା ବର୍ତ୍ତମାନ ଆଉ ଜୀବିତ ନାହିଁ, ସେ ଭାଷା ଗ୍ରୀକ ମୁଖରେ ଆଉ ଶୁଣାଯାଏ ନାହିଁ । ଗ୍ରୀକ୍ ଜାତିର ସେହି ମୃତଭାଷା ବର୍ତ୍ତମାନ ଇତିହାସ କାବ୍ୟାଦିମୟ ପ୍ରାଚୀନ ଗ୍ରୀକ ସାହିତ୍ୟରେ ହିଁ ସମାହିତ ହୋଇ ରହିଅଛି ।

ଗ୍ରୀକ୍ ଜାତି ରୋମ ଲେଖକ ଜାତିର ବଶୀଭୂତ, ଗ୍ରୀକ୍ ରାଜ୍ୟ ରୋମକ ରାଜ୍ୟର ଅଙ୍ଗୀଭୂତ ହେଲେ ଗ୍ରୀକ ଭାଷା ଓ ରୋମକ ଭାଷାର ଯେଉଁ ସମିଶ୍ରଣ ହେଉଥିଲା, ପରେ ସେହି ସମିଶ୍ରଣ ହିଁ ଗାଢତର ଓ ଘନୀଭୂତ ହୋଇ ଉଠିଲା, ସେହି ଘନୀଭୂତଭାବ ପରେ ଗ୍ରୀସ ରାଜ୍ୟର ଏକ ନୂତନ ପ୍ରକାର ଭାଷା ଆବିର୍ଭୂତ ହେଲା । ସେହି ଭାଷାହିଁ ରୋମର ନାମରେ 'ରୋମାୟିକ' ଭାଷା ବୋଲି ପରିଚିତ । ଭାରତର ଉର୍ଦ୍ଦୁ ଯେପରି ମିଶ୍ରିତ ଭାଷା, ଗ୍ରୀସ୍‌ର ସେହି ରୋମାୟିକ ମଧ୍ୟ ସେହିଭଳି ମିଶ୍ରିତ ଭାଷା । ରୋମାୟିକ ଗ୍ରୀସର ଉର୍ଦ୍ଦୁ । କିନ୍ତୁ ଗ୍ରୀସର ସେହି ରୋମାୟିକ ବର୍ତ୍ତମାନ ଆଉ ନାହିଁ । ପ୍ରାଚୀନ ଗ୍ରୀକର ଅପଭ୍ରଂଶ ଏବଂ ପରିବର୍ତ୍ତନରେ ଏକ ନୂତନ ଗ୍ରୀକ ଉତ୍ପନ୍ନ ହୋଇଅଛି, ସେହି ଗ୍ରୀକ୍ ହିଁ ବର୍ତ୍ତମାନ ଗ୍ରୀସର ଭାଷା ।

ରୋମକର ମଧ୍ୟ ସେହିପରି ଦଶା । ଯେଉଁ ଦଶା ଗ୍ରୀସର, ସେହି ଦଶା ରୋମର । ପ୍ରାଚୀନ ରୋମର ସେହି ପ୍ରାଚୀନ ଲାଟିନ ବର୍ତ୍ତମାନ ପ୍ରାଚୀନ ଗ୍ରୀକ ଭଳି ପ୍ରାଚୀନ ସାହିତ୍ୟରେ ହିଁ ବିରାଜମାନ । ସିସିଓ, ସୀଜର, କେଟୋ, ଭର୍ଜିଲ, ହୋରେସ, ଟାସିଟସ, ସେନେକା ପ୍ରଭୃତିଙ୍କର ଭାଷା ବର୍ତ୍ତମାନ ଲୁକ୍କାୟିତ । ରୋମକଙ୍କ ମୁଖରେ ବର୍ତ୍ତମାନ ଅନ୍ୟ ଭାଷା, କଲମରେ ମଧ୍ୟ ଅନ୍ୟ ଭାଷା ।

ଇୟୁରୋପର ଅନେକ ସ୍ଥଳରେ ଏହାର ଦୃଷ୍ଟାନ୍ତ ବର୍ତ୍ତମାନ । କିନ୍ତୁ ପ୍ରାଚୀନ ଗ୍ରୀସ

ଓ ରୋମରେ ଏହି ଦୃଷ୍ଟାନ୍ତ ଯେପରି ପରିସ୍ଫୁଟ ଅନ୍ୟତ୍ର ସେଭଳି ନୁହେଁ । ରୁଷ୍, ଜର୍ମାନି, ଫରାସୀ ଓ ଇଂରାଜୀ ପ୍ରଭୃତି ଭାଷା ଅପେକ୍ଷାକୃତ ନୂତନ ଭାଷା; ଗ୍ରୀକ୍ ଲାଟିନ୍‌ର ତୁଳନାରେ ନବୀନ ଭାଷା । ମାତ୍ର ପ୍ରାଚୀନର ଯେତେ ପରିବର୍ତ୍ତନ, ନବୀନର ତେତେ ନୁହେଁ । ଖ୍ରୀଷ୍ଟଙ୍କ ପୂର୍ବରେ ଯେଉଁ ଭାଷାର ଯେଉଁ ପ୍ରକୃତି ଥିଲା ବର୍ତ୍ତମାନ ସେ ଭାଷାର ସେ ପ୍ରକୃତି ନାହିଁ ।

କିନ୍ତୁ କେବଳ ଭାଷାଲୋପରେ ଜାତିୟତାର ଲୋପ ହୋଇ ନାହିଁ । ତିନି ପ୍ରାଣରେ ଏକ ପ୍ରାଣ ଉଡିଗଲେ ହେ ୟୁରୋପୀୟ ଜାତି ଆଉ ଦୁଇ ପ୍ରାଣ ଘେନି ଜୀବନ ଧାରଣ କରିଥାନ୍ତେ । ଧର୍ମ ଏବଂ ଆଚାର ଯେବେ ଠିକ୍ ରହିଥାନ୍ତା- ଏହି ଦୁଇ ପ୍ରାଣ ଯେବେ ବର୍ତ୍ତମାନ ରହିଥାନ୍ତା, ତାହା ହେଲେ ଆମ୍ଭେମାନେ ବର୍ତ୍ତମାନ ଇଉରୋପରେ ସେହି ପ୍ରାଚୀନ ଇୟୁରୋପତ୍ୱ ଦେଖନ୍ତୁ ।

ଧର୍ମାନ୍ତର ହିଁ ଏକାବେଳକେ ରୂପାନ୍ତର କରି ଦେଇଅଛି । ଇୟୁରୋପର ଯେବେ ଧର୍ମାନ୍ତର ହୋଇ ନ ଥାନ୍ତା, ତାହାହେଲେ ଇଉରୋପୀୟଙ୍କର ସେହି ପୁରାତନ ଜାତୀୟତା କେତେକ ପରିମାଣରେ ଜୀବିତ ରହିଥାନ୍ତା । ଇୟୁରୋପରେ ସେତେବେଳେ ଭିନ୍ନ ଭିନ୍ନ ଜାତିର ଭିନ୍ନ ଭିନ୍ନ ଧର୍ମ ଥିଲା, ସେହି ସକାଶେ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନ ଜାତୀୟତା ବିଦ୍ୟମାନ ଥିଲା । ବର୍ତ୍ତମାନ ସମଗ୍ର ଇୟୁରୋପର ଏକ ଜାତି; ଇୟୁରୋପରେ ବର୍ତ୍ତମାନ ଏକ ମହା ଖ୍ରୀଷ୍ଟିୟାନ ଜାତିର ହିଁ ବସତି; ପ୍ରାଚୀନ ଭିନ୍ନ ଭିନ୍ନ ଜାତି ସମୂହ ବର୍ତ୍ତମାନ ଭିନ୍ନ ଭିନ୍ନ ସମ୍ପ୍ରଦାୟରେ ହିଁ ପରିଣତ । ଗ୍ରୀକ୍, ଇଟାଲୀୟ, ଜର୍ମାନ, ଫରାସୀ, ରୁଷ ଏବଂ ଇଂରାଜ ଜାତି ପ୍ରଭୃତି ସବୁ ଜାତିହିଁ ବର୍ତ୍ତମାନ ପ୍ରକୃତ ପ୍ରସ୍ତାବରେ ଖଣ୍ଡ ଖଣ୍ଡ ଉପଜାତି, ଗୋଟିଏ ଖ୍ରୀଷ୍ଟିଆନ ଜାତିର ଭିନ୍ନ ଭିନ୍ନ ଅଂଶ ମାତ୍ର । ଇୟୁରୋପର ପ୍ରାଚୀନ ଜାତିର ହିଁ ତିରୋଭାବ ହୋଇଅଛି, ସେ ଜାତି ଆଉ ନାହାନ୍ତି । ସେ ଜନସମଷ୍ଟି ମାତ୍ର ପଡ଼ିରହି ଅଛି । ସେ ଦେହ ଅଛି; ମାତ୍ର ସେହି ଦେହରେ ସେ ଧର୍ମ ପ୍ରାଣ ନାହିଁ । ଯେଉଁ ଧର୍ମପ୍ରାଣ ତିରୋହିତ ହୋଇଅଛି, ନୂତନ ଗୋଟିଏ ଧର୍ମପ୍ରାଣ ତାହାର ଆସନ ଅଧିକାର କରି ରହିଅଛି ।

ଧର୍ମର ତିରୋଭାବ ହେଲେ ସମୟର ତିରୋଭାବ ହୋଇଥାଏ । ଆଚାର ଧର୍ମରହିଁ ନିତ୍ୟ ସହଚର । ତାପ ଯେପରି ତେଜର ସହଚର, ଗୁରୁତ୍ୱ ଯେପରି ଦ୍ରବ୍ୟର ସହଚର, ଆଚାର ସେହିପରି ଧର୍ମର ସହଚର; ଆଚାରହୀନ ଧର୍ମ ନାହିଁ । ବର୍ତ୍ତମାନ ମହାଖ୍ରୀଷ୍ଟିଆନ ଜାତିଙ୍କ ଆଚାରରେ ପ୍ରାୟତଃ ଏକତାହିଁ ଦେଖିବାକୁ ମିଳେ । ସ୍ଥାନଭେଦରେ ସମ୍ପ୍ରଦାୟ ଭେଦରେ ଯେଉଁ ତାରତମ୍ୟ, ତାହା ଅତି ସାମାନ୍ୟ । ଅଖ୍ରୀଷ୍ଟିଆନ ପ୍ରାଚୀନ ଇଉରୋପୀୟ ଜାତିସମୂହ ମଧ୍ୟରେ ଧର୍ମର ଜଡ଼ିତ ଯେଭଳି ଆଚାର ଭେଦ ଥିଲା, ସେଭଳି ଆଚାର ଭେଦ ବର୍ତ୍ତମାନ ଆଉ କୁତ୍ରାପି ଦେଖିବାକୁ ମିଳେ ନାହିଁ ।

ଆଚାରଭେଦ ହେଲେ ଅନୁଷ୍ଠାନ ଭେଦ ହୋଇଥାଏ । ଆଚାର ଭେଦରେ ଅନୁଷ୍ଠାନ

ଭେଦ, ଆଚାର ଭେଦରେ ବ୍ୟବହାର ଭେଦ, ଆଚାର ଭେଦରେ ଆହାର ଓ ପରିଚ୍ଛଦର ଭେଦ; ସୁତରାଂ ଆଚାର ଭେଦର ତାରତମ୍ୟରେ ଆଉ ସମସ୍ତ ଭେଦର ତାରତମ୍ୟ ହୋଇଥାଏ । ଇୟୁରୋପରେ ବର୍ତ୍ତମାନ ମୂଳଧର୍ମ ଏକ, ମୂଳ ଆଚାର ମଧ୍ୟ ଏକ । ସ୍ଥଳ ଭେଦରେ, ପ୍ରଦେଶ ଭେଦରେ, ମୂଳଧର୍ମରେ ଯେପରି ସାମାନ୍ୟ, ତାରତମ୍ୟ ହୋଇଅଛି, ମୂଳ ଆଚାରରେ ସେହିପରି ନାମ ମାତ୍ର ତାରତମ୍ୟ ରହିଅଛି । ଆହାର, ବିହାର, ବିବାହମିଳନ, ପରିଚ୍ଛଦ ପ୍ରଭୃତି ଆଚାରର ଅଙ୍ଗୀଭୂତ । ସମସ୍ତ ଘେନି ଆଚାର, ସୁତରାଂ ଆଚାରଭେଦ ଯେଉଁଠାରେ ଯେପରି, ଆହାର ବ୍ୟବହାରାଦିର ମଧ୍ୟ ସେଠାରେ ସେହିଭଳି ତାରତମ୍ୟ; ସୁତରାଂ ଇୟୁରୋପର ଭିନ୍ନ ଭିନ୍ନ ପ୍ରଦେଶରେ ଏବଂ ଭୂମିଭାଗରେ ସର୍ବପ୍ରଚଳିତ ଭାଷା, ଧର୍ମ ଏବଂ ଆଚାର ବର୍ତ୍ତମାନ ନାହିଁ । କିନ୍ତୁ ଭାଷାର ଯେପରି ଭିନ୍ନତା ରହିଅଛି, ଧର୍ମର ଠିକ୍ ସେହିପରି ଭିନ୍ନତା କୁତ୍ରାପି ନାହିଁ, ଅତଏବ ଆଚାରର ମଧ୍ୟ ତେତେ ଭିନ୍ନତା ଦେଖିବାକୁ ମିଳେ ନାହିଁ । ଆଚାରର ଭିନ୍ନତା ନାହିଁ ବୋଲି ଆହାର ବ୍ୟବହାର ଓ ପରିଚ୍ଛଦାଦିର ସେପରି ଭିନ୍ନତା ନାହିଁ ।

ଧର୍ମଗତ ତାରତମ୍ୟ ପୂର୍ବରେ ଯେପରି ଥିଲା, ବର୍ତ୍ତମାନ ସେପରି ନାହିଁ । ମୂଳ ଖ୍ରୀଷ୍ଟଧର୍ମ ଇୟୁରୋପର ଏକ-ଏହି ହେତୁରୁ ମୂଳ ଉପାସନା ପଦ୍ଧତି ମଧ୍ୟ ସର୍ବତ୍ର ଏକ । ଖ୍ରୀଷ୍ଟଧର୍ମ ମୂଳରେ ଏକ ରହି ସୁଦ୍ଧା ଶାଖା ପ୍ରଶାଖା ପତ୍ର ପଲ୍ଲବୀଦ୍ୟବଚ୍ଛେଦରେ ସ୍ଥଳଭେଦରେ ଯେପରି ସାମାନ୍ୟ ଭେଦ ଗ୍ରହଣ କରିଅଛି, ଉପାସନା ପଦ୍ଧତିର ମଧ୍ୟ ସେହିଭଳି ସାମାନ୍ୟ ଭେଦଗ୍ରହ ହୋଇଅଛି ମାତ୍ର । ଫଳତଃ ଭାଷା ସକାଶେ ଇୟୁରୋପରେ ଜାତିୟତାର ପରିବର୍ତ୍ତନ ଘଟିଅଛି, ଧର୍ମ ସକାଶେ ଇୟୁରୋପରେ ଜାତୀୟତାର ପରିବର୍ତ୍ତନ ଘଟିଅଛି, ଧର୍ମ ସକାଶେ ଇୟୁରୋପରେ ଜାତୀୟତାର ପରିବର୍ତ୍ତନ ହୋଇଅଛି । ଆଚାର ଅନୁଷ୍ଠାନ ସକାଶେ ମଧ୍ୟ ୟୁରୋପରେ ଜାତୀୟତାର ପରିବର୍ତ୍ତନ ହୋଇଅଛି । ଇୟୁରୋପ ଜାତୀୟସମୂହର ଜାତୀୟ ପ୍ରାଣର ଭାଷା, ଧର୍ମ ଏବଂ ଆଚାରର ଘୋର ବ୍ୟତିକ୍ରମ ହୋଇଅଛି । ସେ ଜାତି କୁତ୍ରାପି ନାହିଁ, ସେ ଜନସମଷ୍ଟି ସର୍ବତ୍ର ରହିଅଛି । ଜନସମଷ୍ଟିର ପୁରାତନ ତିନି ପ୍ରାଣ ତିରୋହିତ ହୋଇ ସେହି ସ୍ଥାନରେ ତିନି ନୂତନ ପ୍ରାଣର ଆଧିପତ୍ୟ ହୋଇଅଛି ।

ଇୟୁରୋପରୁ କାର୍ତ୍ତମାନ ଭାରତରେ ଉପସ୍ଥିତ ହେଉନ୍ତୁ ଦେଖିବେ, ଭାରତ ମଧ୍ୟ ଇୟୁରୋପ ଭଳି ଭିନ୍ନ ଭିନ୍ନ ପ୍ରଦେଶର- ଭିନ୍ନ ଭିନ୍ନ ଭୂମିଭାଗର ସମବାୟ । ଭାରତର ହିନ୍ଦୁଜାତି ମଧ୍ୟ ଭିନ୍ନ ଭିନ୍ନ ଉପଜାତିର ସମବାୟ, ଏକ ମହାଜନସଙ୍ଘ ଭିନ୍ନ ଭିନ୍ନ ଜନସମଷ୍ଟିର ସମବାୟ । ଭାରତରେ ବଙ୍ଗ, ବିହାର, ଉତ୍ତରପଶ୍ଚିମ, ଆସାମ, ପଞ୍ଜାବ, ରାଜପୁତାନା, ମଧ୍ୟଭାରତ, ମଧ୍ୟପ୍ରଦେଶ, ବୋମ୍ବାଇ, ମାନ୍ଦ୍ରାଜ, ଉତ୍କଳ ଏହି ଗୁଡ଼ିକ ତ ପ୍ରଦେଶ । ଏହି ଭିନ୍ନ ଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ଉପପ୍ରଦେଶ ବିଦ୍ୟମାନ । ଉତ୍ତରପଶ୍ଚିମ ଅଯୋଧ୍ୟା ଏବଂ

ପଞ୍ଜାବ ପ୍ରଭୃତିରେ ଠିକ୍ ଉପପ୍ରଦେଶ ନ ଥିଲେ ହେଁ, ଋତୁଭେଦ, ଭାଷାଭେଦ ଏବଂ ପ୍ରକୃତି ଭେଦରେ ସେହି ସମସ୍ତ ପ୍ରଦେଶରେ ଭିନ୍ନ ଭିନ୍ନ ଉପପ୍ରଦେଶର ଦର୍ଶନ ମିଳେ । ଉତ୍ତରପଶ୍ଚିମ କିମ୍ବା ଅଯୋଧ୍ୟାର ପୂର୍ବଭାଗର ଯେଉଁ ଅବସ୍ଥା, ପଶ୍ଚିମଭାଗର ସେଭଳି ନୁହେ; ପଞ୍ଜାବର ଉତ୍ତର ଭାଗରେ ଯେଉଁ ଅବସ୍ଥା, ଦକ୍ଷିଣ ଭାଗରେ ସେଭଳି ନୁହେ; ସମତଳ ପଞ୍ଜାବରେ ଯେଉଁ ପ୍ରକୃତି, ବିଷମତଳ ପାର୍ବତ୍ୟ ପଞ୍ଜାବରେ ସେ ପ୍ରକୃତି ଦେଖିବା ଅସମ୍ଭବ । ବୋମ୍ବାଇ ପ୍ରଦେଶର ସିନ୍ଧୁ, ଗୁଜରାଟ, ମହାରାଷ୍ଟ୍ର, ପ୍ରଭୃତି ଉପପ୍ରଦେଶ ସମୂହର ଅସ୍ତିତ୍ୱ ଯଥାର୍ଥରେ ହୃଦୟଙ୍ଗମ ହୋଇଥାଏ । ମଧ୍ୟପ୍ରଦେଶର ନାଗପୁର ଅଞ୍ଚଳର ଭାବ ରାୟଗଡ଼ ଅଞ୍ଚଳରେ ଦେଖିବାକୁ ମିଳେ ନାହିଁ । ମାନ୍ଦ୍ରାଜର କର୍ଣ୍ଣାଟ ଉପପ୍ରଦେଶରେ ଏବଂ ମାଲବାର ଉପପ୍ରଦେଶରେ ବୈଲକ୍ଷଣ୍ୟ ଦେଖାଯାଏ । ମଧ୍ୟଭାରତ ରାଜପୁତାନାରେ ରାଜ୍ୟଭେଦରେ ଉପପ୍ରଦେଶଭେଦ ଅନାୟାସରେ ବୁଝି ହୁଏ । ଆସାମରେ ଉତ୍ତର ଆସାମ, ଦକ୍ଷିଣ ଆସାମ କିମ୍ବା ସମତଳ ଆସାମ ଓ ପାର୍ବତ୍ୟ ଆସାମରେ ଅନେକ ପ୍ରଭେଦ । ଉତ୍କଳର ମାଗଧ ଏବଂ ଅନୂପୀ ପ୍ରଦେଶର ତାରତମ୍ୟ, ମୋଗଲବନ୍ଦୀ ଓ ଗଡ଼ଜାତ ଅଞ୍ଚଳରେ କିପରି ପ୍ରଭେଦ ଲକ୍ଷିତ ହୁଏ, ତାହା ସମସ୍ତେ ପରିଜ୍ଞାତ ।

ସୁତରାଂ ଭାରତରେ ନବୀନ ଓ ପ୍ରାଚୀନର ଭେଦ ହୃଦୟଙ୍ଗମ କରିବା କଠିନ ନୁହେଁ । ସେତେବେଳର ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧରେ ଆଉ ବର୍ତ୍ତମାନର ବଙ୍ଗ, ବିହାର, ଉତ୍କଳ, ମଧ୍ୟପ୍ରଦେଶରେ କିରୂପ ପ୍ରଭେଦ, ତାହା ବ୍ୟାସଦେବଙ୍କ ମହାଭାରତରୁ ବୁଝିବା କଠିନ ନୁହେଁ । ପ୍ରାଚୀନ ପ୍ରାଗ୍‌ଜ୍ୟୋତିଷର ଆଉ ବର୍ତ୍ତମାନ କାମରୂପ ଆସାମର ଅନାୟାସରେ ତାରତମ୍ୟ ହୁଏ । ସେତେବେଳର ବ୍ରହ୍ମାବର୍ତ୍ତ ଓ ପଞ୍ଚନଦରେ ଏବଂ ବର୍ତ୍ତମାନର ପଞ୍ଜାବରେ କେତେ ବୈଷାଦୃଶ୍ୟ । କର୍ଣ୍ଣାଟ କାର୍ଣ୍ଣାରର ମଧ୍ୟ ସେହିଭଳି ତାରତମ୍ୟ । ବର୍ତ୍ତମାନର ଏଲାହାବାଦ ଆଉ ସେ ସମୟର ପ୍ରୟାଗରେ ଅନେକ ପ୍ରଭେଦ । ସେତେବେଳର ହସ୍ତିନାପୁର ଆଉ ନାହିଁ । ନବ ହସ୍ତିନାପୁର ଆଉ ଦିଲ୍ଲୀ ସହରରେ କେତେ ପ୍ରଭେଦ ? ସେ ଅବନ୍ତୀ ଆଉ ବର୍ତ୍ତମାନ ଉଜ୍ଜୟିନୀର ତୁଳନାରେ ଆଲୋଚନା କରନ୍ତୁ, ବିରାଟ ବିଭ୍ରାଟରେ ହତବୁଦ୍ଧି ହେବେ ।

ସେତେବେଳର କର୍ଣ୍ଣାଟୀ, ମହାରାଷ୍ଟ୍ରୀ, ଗୁର୍ଜ୍ଜରୀ, ମାଗଧୀ ପ୍ରଭୃତି ରୀତିଭେଦରେ ଭାଷାଭେଦ ଦେଖା ଯାଉଥିଲା, ମାତ୍ର ବର୍ତ୍ତମାନର ଏକବିଧ ଭାଷାରେ ସେ ରୂପ ରୀତିଭେଦରେ ସେଭଳି ଭିନ୍ନତା ନାହିଁ ।

ସେହି ସଂସ୍କୃତ ପ୍ରାକୃତ ମୂଳରେ ଏବଂ ପାଲିରୂପ ଅପଭ୍ରଂଶରେ ବର୍ତ୍ତମାନ ହିନ୍ଦୀ, ବଙ୍ଗଳା, ମରହଟ୍ଟୀ, ଗୁଜରାଟୀ ପ୍ରଭୃତି ଭାଷା ଉତ୍ପନ୍ନ ହୋଇ ବିରାଜିତ ହୋଇଅଛନ୍ତି, ଏଗୁଡ଼ିକର ମଧ୍ୟ ସ୍ୱାତନ୍ତ୍ର୍ୟ ଅଛି । ବର୍ତ୍ତମାନ ପ୍ରଦେଶଭେଦରେ ଭାଷାଭେଦ,

ଉପପ୍ରଦେଶଭେଦରେ ଭାଷାର ଅବାନ୍ତର ଭେଦ । ସେତେବେଳେ ଏକ ଭାଷାରେ ରୀତିଭେଦ ଥିଲା, ବର୍ତ୍ତମାନ ଭିନ୍ନ ଭିନ୍ନ ଭାଷାରେ ପ୍ରକୃତିଭେଦ ହୋଇଅଛି । ବର୍ତ୍ତମାନର ବଙ୍ଗଳା, ଓଡ଼ିଆ, ଆସାମୀ ଏକ ହୋଇ ସୁଦ୍ଧା ଭିନ୍ନ । ଏକା ହିନ୍ଦୀ ବିହାରରେ ଯେଉଁଭଳି, ପଶ୍ଚିମରେ ସେଭଳି ନୁହେଁ । ମୁଷଲମାନଙ୍କ ଆବିର୍ଭାବରେ ଗୋଟିଏ ନୂତନ ଅତିରିକ୍ତ ସୃଷ୍ଟି- ଉର୍ଦ୍ଦୁଭାଷା । ହିନ୍ଦୀ, ଆରବୀ, ପାରସୀର ମିଳନରେ ଉତ୍ପନ୍ନ ଉର୍ଦ୍ଦୁ ମୁଷଲମାନ ବାଦସାହ ନବାବଙ୍କ ଭାଷାରୂପେ ଭାରତର ସର୍ବତ୍ର ଅଧିପତ୍ୟ କରିଥିଲା । ମୁଷଲମାନ ବାଦସାହଙ୍କ ଆଧିପତ୍ୟ ବିଲୁପ୍ତ ହେଲେହେଁ ରାଜକୀୟ ଭାଷାର ଆଧିପତ୍ୟ ଅକ୍ଷୁଣ୍ଣ ଭାବରେ ରହିଅଛି । ଉର୍ଦ୍ଦୁ ବର୍ତ୍ତମାନ ଭାରତର ଭାଷା ସମୂହରେ ରାଜତ୍ୱ କରୁଅଛି ।

ସଂସ୍କୃତ, ପ୍ରାକୃତ, ଆରବୀ ଏବଂ ପାରସୀ ବର୍ତ୍ତମାନ ମୃତଭାଷା; ପାଳି ଆହୁରି ମୃତ । ପାଳି ଭାଷା କିନ୍ତୁ ବୌଦ୍ଧ ଆଧିପତ୍ୟ ସମୟରେ ସମଗ୍ର ଭାରତରେ ଏକାଧିପତ୍ୟ ସ୍ଥାପନ କରିଥିଲା । ବୌଦ୍ଧ ଧର୍ମର ଭାଷା ବୋଲି ପାଳି ଭାରତର ବାହାରେ ମଧ ରାଜତ୍ୱ କରିଥିଲା । ବୌଦ୍ଧ ରାଜାମାନଙ୍କ ସମୟରେ, ଅଶୋକଙ୍କ ଭଳି ବୌଦ୍ଧ ସମ୍ରାଟଙ୍କ ସମୟରେ ପାଳି ମଧ ଭାରତରେ ଉର୍ଦ୍ଦୁଭଳି ଆଧିପତ୍ୟ କରିଥିଲା । ରାଜଭାଷାର ସର୍ବତ୍ର ସମସ୍ତ ଯୁଗରେ ଏକାଧିପତ୍ୟ ହୋଇଥାଏ । ବୌଦ୍ଧଯୁଗରେ ପାଳିର ଯାହା ହୋଇଥିଲା, ମୁଷଲମାନ ଯୁଗରେ ଉର୍ଦ୍ଦୁର ଯାହା ହୋଇଥିଲା, ବର୍ତ୍ତମାନ ଇଂରାଜୀ ଯୁଗରେ ଇଂରାଜୀର ମଧ ତାହା ହୋଇ ଅଛି । ବର୍ତ୍ତମାନ ଭାରତରେ ସର୍ବତ୍ର ଇଂରାଜୀର ଜୟଜୟକାର । କିନ୍ତୁ ଇଂରାଜୀ ବର୍ତ୍ତମାନ ଉର୍ଦ୍ଦୁ ହୋଇ ପାରିନାହିଁ । ଉର୍ଦ୍ଦୁ ବାହାରେ, ଘରେ ଆଧିପତ୍ୟ କରିଥିଲା, ହାଟ ବଜାରରେ ମଧ ବିରାଜିତ ଥିଲା । ଅମୀର, ଫକୀର, ଜମିଦାର, ରଇତ, ଭିକ୍ଷୁକ, କୁବେର, ମୂର୍ଖ, ପଣ୍ଡିତ ସମସ୍ତଙ୍କ ମୁଖରେ ଉର୍ଦ୍ଦୁର ଅଧିକାର ଥିଲା । ଇଂରାଜୀର ଏପର୍ଯ୍ୟନ୍ତ ସେ ମାହେନ୍ଦ୍ର ଯୋଗ ଆସି ନାହିଁ । ଇଂରାଜୀ କେବଳ ବିଦ୍ୱାନର ଭାଷା । ଇଂରାଜୀ ସହିତ ସଂସ୍ରବ ରଖିବାକୁ ହେଲେ ଇଂରାଜୀ ଭାଷାର ଆଶ୍ରୟ ନେବାକୁ ହୋଇଥାଏ ମାତ୍ର ।

ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ପୂର୍ବେ ଯେପରି ପ୍ରଦେଶୀୟ ଭାଷାର ଆଧିପତ୍ୟ ଥିଲା, ବର୍ତ୍ତମାନ ସେହି ସମସ୍ତ ପ୍ରାଦେଶିକ ଭାଷାର ଆଧିପତ୍ୟ ନାହିଁ । ସୂର୍ଯ୍ୟବଂଶାବତଂସ ମହାରାଜ ରଘୁ ଯେତେବେଳେ ଭାରତରେ ଦିଗ୍ବିଜୟରେ ବହିର୍ଗତ ହୋଇଥିଲେ, ସେତେବେଳେ ଭିନ୍ନ ଭିନ୍ନ ପ୍ରଦେଶରେ ସେ ଯେଉଁ ସମସ୍ତ ଭାଷା ଦେଖିଥିଲେ, ତାହାଙ୍କ ବଂଶଧର ରାମଚନ୍ଦ୍ରଙ୍କ ଅଶ୍ୱମେଧର ଅଶ୍ୱ ଘେନି ଯେତେବେଳେ ରାମାନୁଜ ମାନେ ସୈନ୍ୟ ସହିତ ଚତୁର୍ଦ୍ଦିଗରେ ଭ୍ରମଣ କରିଥିଲେ, ସେତେବେଳେ ଭିନ୍ନ ଭିନ୍ନ ପ୍ରଦେଶରେ ଠିକ୍ ସେହିସବୁ ଭାଷା ଦେଖି ନାହାନ୍ତି । ଚନ୍ଦ୍ରବଂଶାବତଂସ ପାଣ୍ଡବମାନଙ୍କ ଦିଗ୍ବିଜୟ କାଳରେ ଭିନ୍ନ ଭିନ୍ନ ପ୍ରାଦେଶିକ ଭାଷାସମୂହ ଆହୁରି ପରିବର୍ତ୍ତିତ ହୋଇ ଯାଇଥିବା ବିଷୟରେ ଇତିହାସ ସାକ୍ଷ୍ୟ

ଦେଇଥାଏ ।

ସେତେବେଳେ ଭାଷାର କିଛି କିଛି ରୂପାନ୍ତର ହେଉଥିଲା, ବର୍ତ୍ତମାନ ଏକାବେଳକେ ରୂପାନ୍ତର । ସତ୍ୟ, ତ୍ରେତା, ଦ୍ୱାପରର ଭାଷାରେ ଏବଂ କଳିର ଭାଷାରେ ସମ୍ପୂର୍ଣ୍ଣ ପ୍ରଭେଦ । ପୁଣି କଳିର ଯେତେ ସମୟ ଚାଲି ଯାଉଅଛି କଳିର ଭାଷାର ମଧ ତେତିକି ପରିବର୍ତ୍ତନ ଚାଲିଅଛି । କେବଳ ଭାଷାରେ ଯେବେ ଜାତୀୟତାର ଜୀବନ ନିର୍ଭର କରିଥାନ୍ତା, ତାହାହେଲେ ଭାରତର ହିନ୍ଦୁଜାତିର ଜାତୀୟତା ଏକାବେଳକେ ଲୁପ୍ତ ହୋଇଥାନ୍ତା ।

କିନ୍ତୁ ଧର୍ମର ଲୋପ ନ ହେଲେ ଜାତୀୟଜୀବନର ଲୋପ ଅସମ୍ଭବ । ଧର୍ମ ଲୁପ୍ତ ନ ହେଲେ ଜାତୀୟ ଆଚାର ବିଲୁପ୍ତ ହେବନାହିଁ । ଭାଷା, ଧର୍ମ ଏବଂ ଆଚାର, ଜାତୀୟ ଜୀବନର ଏହି ତିନୋଟି ପ୍ରଧାନ ପ୍ରାଣ । ଭାରତରେ ଗୋଟିଏ ପ୍ରାଣର, ଭାଷାରୂପ ପ୍ରାଣର ତିରୋଭାବ ହୋଇଅଛି, ଆଉ ଦିଓଟି ପ୍ରାଣର- ଧର୍ମପ୍ରାଣ ଓ ଆଚାର ପ୍ରାଣର ତିରୋଭାବ ହୋଇନାହିଁ । ଏହି ହେତୁରୁ ଭାରତରେ ବର୍ତ୍ତମାନ ଜାତୀୟ-ଜୀବନ ବିଦ୍ୟମାନ । ଜୀବନର ଏକ ପ୍ରାଣ ଯାଇଅଛି, ସୁତରାଂ ଏକ ପାଦ ଯାଇଅଛି; କିନ୍ତୁ ହିନ୍ଦୁର ଜାତୀୟ ଜୀବନ ବର୍ତ୍ତମାନ ସୁଦ୍ଧା ଦୁଇ ପ୍ରାଣରେ ଦୁଇ ପାଦରେ ରହି ଯାଇଅଛି । ଏହି ଦୁଇ ପ୍ରାଣ ଯେତେଦିନ ରହିଥିବ, ହିନ୍ଦୁଙ୍କ ଜାତୀୟ ଜୀବନର ଅସ୍ତିତ୍ୱ ତେତେ ଦିନ ।

ଧର୍ମରେ ଅନେକ ଆଘାତ ଲାଗିଅଛି, ଅନେକ ଥର ଆଘାତ ଲାଗି ଯାଇଥିଲେ ମଧ ଭାରତର ହିନ୍ଦୁଧର୍ମ ପ୍ରାଣରେ ମରି ନାହିଁ । ବୌଦ୍ଧର ବିଷମ ବହ୍ନିବାଣ ଦିଗ୍‌ଦେଶ ଜଳାଇ ହିନ୍ଦୁଧର୍ମକୁ ଆକ୍ରମଣ କରିଥିଲା; ଆର୍ଯ୍ୟଭୂମି ସେହି ବୌଦ୍ଧ ବହ୍ନିବାଣରେ ପ୍ରଜ୍ୱଳିତ ହୋଇଥିଲା, ଦଗ୍‌ଧ ହୋଇ ଯାଇଥିଲା । କିନ୍ତୁ ଆର୍ଯ୍ୟଧର୍ମର ଅପଘାତ ହୋଇନାହିଁ । ହିନ୍ଦୁର ରାଜ୍ୟ ବୌଦ୍ଧରାଜ୍ୟରେ ପରିଣତ ହୋଇଥିଲା, ହିନ୍ଦୁମନ୍ଦିର ଦେବାଳୟ ବୌଦ୍ଧମଠ - ସମୂହରେ ପରିଣତ ହୋଇ ଯାଇଥିଲା, ହିନ୍ଦୁ ଦେବତାଙ୍କ ପୂଜକ ପୁରୋହିତମାନେ ବୌଦ୍ଧ ପ୍ରଚାରକ ହୋଇ ଥିଲେ, ହିନ୍ଦୁସନ୍ୟାସୀମାନେ ବୌଦ୍ଧ ଭିକ୍ଷୁ ହୋଇ ଯାଇଥିଲେ । କିନ୍ତୁ ହିନ୍ଦୁ ଧର୍ମର ମୃତ୍ୟୁ ହୋଇନାହିଁ । ମୁଷଲମାନଙ୍କ ପ୍ରବାହ ଆସି ହିନ୍ଦୁଧର୍ମକୁ ବୁଡ଼ାଇ ଦେବାର ଉଦ୍‌ଯୋଗ କରିଥିଲା, କିନ୍ତୁ ସେ ପ୍ରଳୟପ୍ରବାହରେ ସୁଦ୍ଧା ହିନ୍ଦୁଧର୍ମ ପୁଣି ମୁଣ୍ଡ ଟେକି ଛିଡ଼ା ହେବାକୁ କ୍ଷମ ହୋଇଥିଲା । ଭଗ୍ନ ହିନ୍ଦୁ ସମାଜ ପୁଣି ସଂଯୁକ୍ତ ହୋଇଥିଲା, ଜୀର୍ଣ୍ଣ ହିନ୍ଦୁସମାଜ ପୁଣି ସଂସ୍କୃତ ହୋଇଥିଲା । ମୁଷଲମାନ ଧର୍ମ ସକାଶେ ହିନ୍ଦୁଧର୍ମକୁ ପ୍ରଥମରେ ଅବସନ୍ନ ହେବାକୁ ପଡ଼ିଥିଲା , ମାତ୍ର ସେ ଅବସାଦ ସ୍ଥାୟୀ ହୋଇନାହିଁ ।

ରାଜଭେଦରେ ପ୍ରକୃତିଭେଦ । ବୌଦ୍ଧ ରାଜାମାନେ ଭାରତର ସମସ୍ତ ହିନ୍ଦୁଙ୍କୁ ବୌଦ୍ଧ କରିବାକୁ ବଦ୍ଧ ପରିକର ହୋଇଥିଲେ । ମୁଷଲମାନ ବାଦସାହ ନବାବମାନେ ଭାରତର ସମସ୍ତ ହିନ୍ଦୁଙ୍କୁ ମୁଷଲମାନ କରିବାକୁ ଲାଳାୟିତ ହୋଇଥିଲେ । ଆମ୍ଭମାନଙ୍କ ରାଜାଧିରାଜ

ଇଂରାଜୀଙ୍କ ପ୍ରକୃତି ଅନ୍ୟରୂପ; ମତି ବୁଦ୍ଧି ଅନ୍ୟରୂପ । ସ୍ୱୟଂ ଖ୍ରୀଷ୍ଟାନ ହୋଇ ରାଜା ଇଂରାଜ କାହାରି ଧର୍ମ ନାଶରେ ପ୍ରବୃତ୍ତ ହୁଅନ୍ତି ନାହିଁ; କାହାରି ଧର୍ମରେ କୌଣସିରୂପେ ହସ୍ତକ୍ଷେପ କରନ୍ତି ନାହିଁ । ନିଜେ କରନ୍ତି ନାହିଁ, ପରକୁ ମଧ୍ୟ କରିବାକୁ ଦିଅନ୍ତି ନାହିଁ । ବୌଦ୍ଧ ମୁସଲମାନ ଭାରତପତିମାନେ ଭାରତର ହିନ୍ଦୁଙ୍କୁ ଯେପରି ଧର୍ମତ୍ୟାଗରେ ବାଧ୍ୟ କରୁଥିଲେ, ଭାରତର ଇଂରାଜ ନରପତି ସେଭଳି ବାଧ୍ୟ କରନ୍ତି ନାହିଁ ; ପରନ୍ତୁ ଯେ ସେପରି ବାଧ୍ୟ କରିବାକୁ ଇଚ୍ଛା କରେ, ତାହାକୁ ପ୍ରଶ୍ରୟ ଦିଅନ୍ତି ନାହିଁ; ନିଷେଧ କରନ୍ତି, ନିବାରଣ କରନ୍ତି । ସୁତରାଂ ଭାରତର କାହାରି ଧର୍ମତ୍ୟାଗରେ ସମଦର୍ଶୀ ଇଂରାଜରାଜ ଉତ୍ସାହ ବା ପ୍ରଶ୍ରୟ ଦିଅନ୍ତି ନାହିଁ ।

ଧର୍ମରକ୍ଷାରେ ହିନ୍ଦୁର ପଥ ସହଜ ହୋଇଅଛି । ଭାଷାରେ ବୌଦ୍ଧ ମୁସଲମାନ ଆଘାତ କରିଥିଲେ; ଇଂରାଜରାଜ ଭାଷାରେ ଆଘାତ ନ କରି ଉତ୍ସାହ ଦେଉଅଛନ୍ତି । ପୂର୍ବେ ଆମ୍ଭମାନଙ୍କ ଭାଷା ରକ୍ଷାର, ଧର୍ମ ରକ୍ଷାର ଆଚାର ପାଳନର ପଥ ଯେଭଳି ଦୁର୍ଗମ, ଯେପରି ବିପଦସଙ୍କୁଳ ଥିଲା, ବର୍ତ୍ତମାନ ସେପରି ନାହିଁ । ବର୍ତ୍ତମାନର ଭାଷା ରାଜାଙ୍କ ଦୋଷରେ ବିକୃତ ହୋଇନାହିଁ, ବରଂ ରଜାଙ୍କ ଉତ୍ସାହରେ ଓ ସାହାଯ୍ୟରେ ଭାଷା ଉନ୍ନତି ଲାଭ କରୁଅଛି । ବର୍ତ୍ତମାନର ଧର୍ମ ରାଜାଙ୍କ ଦୋଷରେ ବିକୃତ ହେଉନାହିଁ, ବର୍ତ୍ତମାନର ଆଚାର ମଧ୍ୟ ରାଜାଙ୍କ ଦୋଷରେ କଳୁଷିତ ହେଉନାହିଁ । ବର୍ତ୍ତମାନ ଯେଉଁ ଦିଗରେ ଯେଉଁ ଦୋଷ, ତାହା ଆମ୍ଭମାନଙ୍କ ସ୍ୱକୃତ । ଭାଷା, ଧର୍ମ ଏବଂ ଆଚାର, ଜାତୀୟ ଜୀବନର ଏହି ତିନି ମହାପ୍ରାଣ ହିଁ ବର୍ତ୍ତମାନ ଆମ୍ଭମାନଙ୍କ ହସ୍ତରେ । ଆମ୍ଭେମାନେ ରଖି ନ ପାରିଲେ ଆଉ କେହି ରଖି ପାରିବ ନାହିଁ ।

ଭାରତ ସହିତ ଆମ୍ଭମାନଙ୍କର ଘନିଷ୍ଠ ସମ୍ବନ୍ଧ, ଭାରତ ଉପରେ ଆମ୍ଭମାନଙ୍କର ପ୍ରଗାଢ଼ ଭକ୍ତି; କିନ୍ତୁ ଉତ୍କଳରେ ଆମ୍ଭମାନଙ୍କର ଘନିଷ୍ଠତର ସମ୍ବନ୍ଧ ଏବଂ ପ୍ରଗାଢ଼ତର ଭକ୍ତି । ଉତ୍କଳ ଆମ୍ଭମାନଙ୍କ ଜନ୍ମଭୂମି, ଉତ୍କଳଭାଷା ଆମ୍ଭମାନଙ୍କ ମାତୃଭାଷା । ଦେବଭାଷା ସଂସ୍କୃତଭାଷା ଆମ୍ଭମାନଙ୍କ ଚିରପୂଜ୍ୟା । ଏହି ଦେବଭାଷା ହିଁ ଉତ୍କଳ ଭାଷାର ଜନନୀ । ସେହିହେତୁରୁ ଏହି ଦେବଭାଷା ପ୍ରତି ଉତ୍କଳୀୟମାନଙ୍କ ଅଚଳାଭକ୍ତି । ଉତ୍କଳଭାଷା ଆମ୍ଭମାନଙ୍କ ମାତା, ସଂସ୍କୃତ ଭାଷା ଆମ୍ଭମାନଙ୍କ ମାତାମହୀ । ମାତାମହୀ ଆମ୍ଭମାନଙ୍କ ମାତାଙ୍କ ପୂଜ୍ୟା । କିନ୍ତୁ ଆମ୍ଭମାନଙ୍କ ନିକଟରେ ସାକ୍ଷାତ୍ ମାତାହିଁ ସର୍ବାପେକ୍ଷା ଅଧିକ ପୂଜ୍ୟା ଏବଂ ଏହି ହେତୁରୁ ଉତ୍କଳ ଭାଷା ହିଁ ଆମ୍ଭମାନଙ୍କର ଅଧିକତର ପୂଜ୍ୟା । ଅଗ୍ରେ ମାତା, ପରେ ମାତାମହୀ । ମା ପୂଜା ନ କରି ମାତାମହୀଙ୍କ ପୂଜାରେ ଅବା ତତ୍ପର ହେବୁ କିପରି ? ଉତ୍କଳ ଭୂମି ଆମ୍ଭମାନଙ୍କ ନିକଟରେ ଯେତେ ପ୍ରିୟ, ଭାରତ ଭୂମି ସେପରି ନୁହେଁ । ଉତ୍କଳର ଭାଷା ଆମ୍ଭମାନଙ୍କର ଯେପରି ଶ୍ରଦ୍ଧାର ବସ୍ତୁ, ଭାରତର ସଂସ୍କୃତ ଭାଷା ସେଭଳି ନୁହେଁ ।

ଉତ୍କଳର ଯାହା ନିତ୍ୟ, ଯାହା ଚିରନ୍ତନ, ତାହାହିଁ ଆମ୍ଭମାନଙ୍କୁ ରଖିବାକୁ ହେବ;

ତହିଁରେ ଆମ୍ଭମାନଙ୍କୁ ଅନୁରାଗ ବୃଦ୍ଧି କରିବାକୁ ହେବ । ଏବଂ ତହିଁରେ ଆମ୍ଭମାନଙ୍କୁ ଅଧିକ ଶ୍ରଦ୍ଧା ଓ ଭକ୍ତି ଅର୍ପଣ କରିବାକୁ ହେବ ।

ଜାତୀୟ ଜୀବନରେ ଜାତୀୟ ଭାଷାର କିପରି ଉପଯୋଗିତା, ତାହା ଅଧିକ କହିବା ବାହୁଲ୍ୟ ମାତ୍ର । ଉତ୍କଳର ଓଡ଼ିଆ ଭାଷା ଯେତେଦିନ ରହିବ, ଉତ୍କଳୀୟଙ୍କ ଜାତୀୟ ଜୀବନ ତେତେ ଦିନ ଅକ୍ଷୁଣ୍ଣ ରହିବ । ଓଡ଼ିଆ ଭାଷାକୁ ଅକ୍ଷୁଣ୍ଣ ନ ରଖିଲେ ଆମ୍ଭମାନଙ୍କ ଉତ୍କଳୀୟ ନାମ ଧାରଣର ଅଧିକାରୀ ହେବା ବୃଥା । ଭାଷା ଆମ୍ଭମାନଙ୍କ ଜାତୀୟ ଜୀବନର ପ୍ରାଣସ୍ୱରୂପ, ଉତ୍କଳୀୟଙ୍କ ଉତ୍କଳୀୟତ୍ୱ ରକ୍ଷା ପକ୍ଷରେ ଆଉ ଦୁଇ ପ୍ରାଣଠାରୁ ଏହି ପ୍ରାଣର ହିଁ ଅଧିକ ଉପଯୋଗିତା ।

ଯେତେବେଳେ ଓଡ଼ିଆ ଭାଷା ନ ଥିଲେ ଆମ୍ଭମାନଙ୍କ ଉତ୍କଳୀୟତ୍ୱ ରହିବ ନାହିଁ, ଓଡ଼ିଆ ଭାଷାର ତିରୋଭାଗରେ ଯେତେବେଳେ ଆମ୍ଭମାନଙ୍କ ଉତ୍କଳୀୟତ୍ୱ ରୂପର ମୃତ୍ୟୁ ନିଶ୍ଚିତ, ସେତେବେଳେ ଏହି ଓଡ଼ିଆ ଭାଷା ପ୍ରତି ଆମ୍ଭମାନଙ୍କ ଶ୍ରଦ୍ଧା, ଭକ୍ତି, ଆଦର ଓ ଯତ୍ନ ତିଳେ ମାତ୍ର ଯେପରି କ୍ଷୁଣ୍ଣ ନ ହୁଏ, ଓଡ଼ିଆ ଭାଷାର ପୁଷ୍ଟି ଏବଂ ଉନ୍ନତି ଆଡକୁ ଆମ୍ଭମାନଙ୍କର ଅଧିକ ଦୃଷ୍ଟି ଥିବା ସର୍ବତୋଭାବରେ କର୍ତ୍ତବ୍ୟ ।

ଯେଉଁମାନେ ଉତ୍କଳୀୟ ହୋଇ ଅନ୍ୟଭାଷାକୁ ଓଡ଼ିଆ ଭାଷା ଅପେକ୍ଷା ବେଶି ଶ୍ରଦ୍ଧା ଅଥବା ଭକ୍ତି କରିଥାନ୍ତି, ସେମାନେ ଉତ୍କଳର ପ୍ରକୃତ ସୁସନ୍ତାନ ରୂପରେ ଗୃହୀତ ହୋଇ ପାରିବେ କି ? ସଂସ୍କୃତ ଭାଷା ମାତାମହୀ, ଭାରତର ହିନ୍ଦୀ, ମହାରାଷ୍ଟ୍ରୀ, ଦ୍ରାବିଡୀ, ବଙ୍ଗ ପ୍ରଭୃତି ଭଳି ସମସ୍ତ ଭାଷାହିଁ ଆମ୍ଭମାନଙ୍କ ମାତୃ ସ୍ୱରୂପା ଓଡ଼ିଆ ଭାଷାର ସହୋଦରା । ମାଉସୀମାନଙ୍କୁ ଆମ୍ଭେମାନେ ଶ୍ରଦ୍ଧା ଓ ଭକ୍ତି କରିଥାଉଁ, କିନ୍ତୁ ମାଉସୀଙ୍କୁ କେବେହେଁ ମାଙ୍କଠାରୁ ବଳି ଉଚ୍ଚ ଆସନ ଦେଇ ନ ଥାଉଁ । ମାତାର ସହୋଦରା ବୋଲି ମାତୃଷ୍ୱସା ଆମ୍ଭମାନଙ୍କ ପୂଜନୀୟା, କିନ୍ତୁ ମାତଷ୍ୱସାଙ୍କୁ ମାତା ଅପେକ୍ଷା ଅଧିକ ଶ୍ରଦ୍ଧା ଓ ଭକ୍ତି କିପରି ଦେଇ ପାରିବୁଁ ? ମାତାର ଉପଯୁକ୍ତ ଭକ୍ତି ଶ୍ରଦ୍ଧା ମାତାଙ୍କରହିଁ ପ୍ରାପ୍ୟ ।

ରାଜା ଆମ୍ଭମାନଙ୍କ ଜାତୀୟ ଭାଷା ଉପରେ ପୂର୍ଣ୍ଣମାତ୍ରାରେ ଦୃଷ୍ଟି ନିକ୍ଷେପ କରିଅଛନ୍ତି । ଆମ୍ଭମାନଙ୍କ ଅଦାଲତରେ ଜାତୀୟ ଭାଷାର ଗୌରବ ରହିଅଛି । ଆମ୍ଭମାନଙ୍କ ଆଇନର ମଧ୍ୟ ରାଜା ଆଦେଶରେ ଜାତୀୟ ଭାଷାରେ ଅନୁବାଦ ଏବଂ ପ୍ରଚାର ହେଉଅଛି । ଆମ୍ଭେମାନେ ଜାତୀୟଭାଷାରେ ରାଜଦ୍ୱାରରେ ଅଭାବ ଏବଂ ଆକାଙ୍କ୍ଷା ଜଣାଇବାକୁ କ୍ଷମ ହୋଇଥାଉଁ । ଆମ୍ଭମାନଙ୍କ ବିଦ୍ୟାଳୟ ସମୂହରେ ଏବଂ ବିଶ୍ୱବିଦ୍ୟାଳୟରେ ଜାତୀୟ ଭାଷା ସୁସ୍ପଷ୍ଟଭାବରେ ଆଦୃତ । ଏଭଳି ଅବସ୍ଥାରେ ଯେବେ ଆମ୍ଭେମାନେ ଆମ୍ଭମାନଙ୍କ ଜାତୀୟ ଭାଷା ଉପରେ ବୀତରାଗ ହେଉଁ, ତାହାହେଲେ ଏ ମହାପାପ ଆମ୍ଭମାନଙ୍କର; ଏ ମହାପାପର ପ୍ରାୟଶ୍ଚିତ୍ତ ଆମ୍ଭମାନଙ୍କୁ କରିବାକୁ ହେବ । ଜନ୍ମଦାତ୍ରୀ ମାତା, ଜନ୍ମଭୂମି ମାତା, ଆଉ ଭାଷା

ମାତା; ଏହି ତିନି ମାତା ହିଁ ଆମ୍ଭମାନଙ୍କର ଚିରପୂଜ୍ୟା । ଏକ ମାତା ଉପରେ ଅଶ୍ରଦ୍ଧା ହେଲେ ଆମ୍ଭମାନଙ୍କୁ ମାତୃଦ୍ରୋହୀ ହେବାକୁ ହେବ । ଆମ୍ଭମାନଙ୍କ କର୍ମମାନଙ୍କରେ, ସଭାସମିତିରେ, ଚିଠି ପତ୍ରାଦିରେ ପୁସ୍ତକ ପତ୍ରିକାରେ, ସମ୍ବାଦ ପତ୍ର ଓ ସାମୟିକ କଳ୍ପନା ପ୍ରଭୃତିରେ ଯେବେ ଆମ୍ଭେମାନେ ଆମ୍ଭମାନଙ୍କ ଓଡ଼ିଆ ଭାଷାକୁ ଏକାଧିପତ୍ୟ କରିବାକୁ ନ ଦେଉଁ, ତାହାହେଲେ ଆମ୍ଭେମାନେ ପ୍ରକୃତ ମାତୃଦ୍ୱେଷୀ । ଇଂରାଜୀ ଭାଷା ରାଜଭାଷା, ମାତୃଭାଷା ନୁହେଁ । କେଉଁ ଭାଷା ଉପରେ ଆମ୍ଭମାନଙ୍କର ଅଧିକ ଶ୍ରଦ୍ଧା, ଭକ୍ତି, ଯତ୍ନ ଏବଂ ଅନୁରାଗ ଥିବାର ଉଚିତ, ଏହି ବୁଝିବା ଅତି ସହଜ । ଯେଉଁ ଭାଷାରେ ଆମ୍ଭେମାନେ ଶୈଶବରେ 'ମା' ବୋଲି ସମ୍ବୋଧନ କରିଅଛୁଁ, ଯେଉଁ ଭାଷାରେ ଆମ୍ଭେମାନେ ସୁଖସମୃଦ୍ଧି ଉତ୍ସବ ସମୟରେ ଆନନ୍ଦ ପ୍ରକାଶ କରୁଅଛୁଁ ଯେଉଁ ଭାଷାରେ ଦୁଃଖ ସମୟରେ କାତରତା ପ୍ରକାଶ କରୁଅଛୁଁ, ଯେଉଁ ଭାଷରେ ଆମ୍ଭେମାନେ ହସୁଅଛୁଁ ଓ କାନ୍ଦୁଅଛୁଁ, ବିପଦକାଳରେ ଭଗବାନଙ୍କୁ ଡାକୁଅଛୁଁ, ଯେଉଁ ଭାଷାରେ ମରଣ କାଳରେ ହରିନାମ ସ୍ମରଣ କରୁଅଛୁଁ – ସେହି ଭାଷା ଆମ୍ଭମାନଙ୍କ ସେହି ମାତୃଭାଷା – ଉତ୍କଳୀୟଙ୍କ ସେହି ପ୍ରିୟତମ ଓଡ଼ିଆ ଭାଷା କିଭଳି ପୂଜନୀୟା – କିପରି ମାନନୀୟା – କିଭଳି ବରଣୀୟା – କିପରି ସ୍ମରଣୀୟା କିଭଳି ଭରଣୀୟା – ଏହା ଯେବେ ଆମ୍ଭେମାନେ ବୁଝି ନ ପାରୁଁ, ତାହା ହେଲେ ଆମ୍ଭେମାନଙ୍କ ଭଳି ନରାଧମ ଆଉ କେହି ନାହାନ୍ତି । ଶୋକସନ୍ତପ୍ତ ସନ୍ତାନମାନେ ମଧ୍ୟ ମାତୃଭାଷା ଭୁଲି ପାରନ୍ତି ନାହିଁ ।



## ୧୪

# ଓଡ଼ିଆ ଭାଷାର ବର୍ତ୍ତମାନ ଅବସ୍ଥା ଓ ଗତି

### ମୃତ୍ୟୁଞ୍ଜୟ ରଥ

ସମବେତ ଭଦ୍ରମହୋଦୟଗଣ, ଏ ସମାଜର ଉତ୍ସାହସମ୍ପନ୍ନ ସମ୍ପାଦକଙ୍କ ଅନୁରୋଧରେ ମୁଁ ଆପଣାକୁ ଏ କାର୍ଯ୍ୟରେ ନିତାନ୍ତ ଅକ୍ଷମ ଜାଣିଲେ ହେଁ ବାରଣ କରିବାର କୌଣସି ବାଟ ନ ପାଇ ମୌନାବଲମ୍ବନ ଦ୍ୱାରା ସମ୍ମତିସୂଚନା କରିଥିଲି । ମୋହର ପୁଣି ଅଭିଭାଷଣ ଆବଶ୍ୟକ ହେବ ଶୁଣି, ବଡ଼ ଶଙ୍କା ଜନ୍ମିଅଛି । ତେଣୁ ମୁଁ ନିଶ୍ଚିନ୍ତ ହୋଇ ପାରିନାହିଁ ସତ୍ୟ, କିନ୍ତୁ ଅତ୍ୟନ୍ତ ଦୁଃଖରେ ଜଣାଉଅଛି ଯେ, ଗୋଟିଏ ବିଶେଷ ବିଘ୍ନବଶତଃ ମୁଁ ଏ ବିଷୟରେ ଚିନ୍ତା କରିବାକୁ ଯଥେଷ୍ଟ ଅବସର ପାଇନାହିଁ । ତେଣୁ ମୋହର ଏ ବକ୍ତବ୍ୟରେ ଅନେକ ତ୍ରୁଟି ଏବଂ ଅପୂର୍ଣ୍ଣତା ଲକ୍ଷିତ ହେବ । ଆଶାକରେ ଆପଣମାନେ ମୋ ପ୍ରତି ଦୟାର୍ଦ୍ର ହୋଇ ଏ ତ୍ରୁଟ ମାର୍ଜନା କରିବେ ।

ବନ୍ଧୁଗଣ, ଉତ୍କଳରେ ସାହିତ୍ୟର ସୁପ୍ରଚାର, ନବ ନବ ଉତ୍କୃଷ୍ଟ ଗ୍ରନ୍ଥର ରଚନା ବା ଏପ୍ରକାର ଉତ୍ସାହପ୍ରାଣ ସଭା ସମାଜର ଅନୁଷ୍ଠାନ ବା ଅନ୍ୟକୌଣସି ପ୍ରକାର ସାହିତ୍ୟିକ ଅଭ୍ୟୁଦୟ ଦେଖିଲେ ଯେଉଁମାନେ ଅପୂର୍ବ ପୁଲକରେ ପୁଲକିତ ହୁଅନ୍ତି, ଉଲ୍ଲାସରେ ଚକ୍ଷୁବିସ୍ଫାରଣ କରନ୍ତି ବା ଆଶା ନେତ୍ରରେ ଭବିଷ୍ୟତ ଦର୍ଶନ କରନ୍ତି; ସେମାନଙ୍କର ମୁଁ କନିଷ୍ଠ ବୋଲି ପରିଚୟ ଦେବାକୁ ଗର୍ବ କରିପାରେ । ବହୁକାଳରୁ ଅବହେଳିତା ମାତୃସମା ଉତ୍କଳଭାଷାର ଶ୍ରୀବୃଦ୍ଧି ଦେଖିଲେ ପ୍ରାଣରେ ଯଥାର୍ଥ ଆନନ୍ଦ ଜନ୍ମେ । ଏକା ଜନନୀଠାରୁ ଜନ୍ମି ଅନ୍ୟାନ୍ୟ ଭଗିନୀମାନଙ୍କ ମଧରେ ଏହାକୁ ମଳିନବେଶା ଅତିକୃଶା ଦେଖିବାକୁ କାହାର ପ୍ରାଣ ସହିବ ? ଉତ୍କଳଭାଷା ଦେହରେ ଏପରି କୌଣସି ଦୋଷ ଲକ୍ଷିତ ହୁଏନାହିଁ, ଯଦ୍ୱାରା ଏ ଅପୁଷ୍ଟତା ଘଟିଅଛି । ଆଲୋଚନାରୁ ଦେଖାଯାଏ, କ୍ଷେତ୍ର ଓ ପାତ୍ର ଦୋଷରୁ ଏପରି ଦୁର୍ଗତି । ଉତ୍କଳଭାଷା ଅତି ପ୍ରାଚୀନା ହେଲେହେଁ ବହୁକାଳ ଯାବତ୍ ଦେଶବାସୀମାନେ ତାହାର ଅନୁଶୀଳନ କରି ନାହାନ୍ତି । ଦେଶଭାଷାରେ ଗ୍ରନ୍ଥ ଲେଖିବା ଦୂରେଥାଉ, ପତ୍ର ଲେଖିବା ସୁଦ୍ଧା ଘୃଣାର ବିଷୟ ଥିଲା । ଭାଷାକୁ ଏପରି ଘୃଣା ଚକ୍ଷୁରେ ଦେଖୁଥିବାରୁ ତାହାର କ୍ରମୋନ୍ନତି ପଥରେ ଯଥେଷ୍ଟ ବାଧା ପଡ଼ିଅଛି ଏବଂ ଯେଉଁ କ୍ଷତି ହୋଇଅଛି, ଶତାବ୍ଦୀରେ ତାହାର ପୂରଣ

ହେବା ଦୁରୂହ । ସଂସ୍କୃତ କୌଣସି ଦେଶଭାଷାର ମାତା ନୁହେଁ; ବରଂ ମାତାମହୀ ବା ପ୍ରମାତାମହୀ ହୋଇପାରେ; ସଂସ୍କୃତରୁ ସଦ୍ୟୋଜାତ ପାଲି; ତାହା ପଛେ ଅର୍ଦ୍ଧମାଗଧୀ, ଓଡ୍ରମାଗଧୀ ନାମରେ କେତୋଟି ପ୍ରସିଦ୍ଧ ପ୍ରାକୃତ ଭାଷା, ଏମାନଙ୍କର ଜନନୀ ମାଗଧୀକୁ ଲୋକେ ମୂଳଭାଷା କହୁଥିଲେ । ବ୍ରାହ୍ମଣମାନେ ସଂସ୍କୃତରେ ଏବଂ ବୌଦ୍ଧମାନେ ପାଲିରେ କଥୋପକଥନ କରୁଥିଲେ ।

ସାମାଗଧୀ ମୂଳଭାଷା ନରାଜା ଚାଦି କପ୍ପିକା
ବ୍ରାହ୍ମଣା ସଂସ୍କୃତାଳାପା ସଂବୁଦ୍ଧା ଚାପିଭାସିରେ ।

ମାଗଧୀ ଯେତେବେଳେ ଦେଶପ୍ରଚଳିତ ଭାଷା, ପାଳି ତେତେବେଳେ ଶାସ୍ତ୍ରୀୟ ଭାଷା । ଏ ଦେଶରେ ବୌଦ୍ଧଯୁଗରେ ପାଲିର ପ୍ରଚଳନ ଥିଲା । କେଶରୀବଂଶୀୟ ରାଜାମାନଙ୍କ ରାଜତ୍ୱକାଳରେ ମଧ୍ୟ ପାଲିଭାଷାରେ ପତ୍ରାଦି ଲେଖାଯାଉଥିବାର ପ୍ରମାଣ ମିଳେ । ମାଗଧୀ ଅର୍ଦ୍ଧମାଗଧୀ ଏବଂ ଓଡ୍ର ମାଗଧୀରୁ ଆଧୁନିକ ହିନ୍ଦୀ, ବଙ୍ଗଳା, ଓଡ଼ିଆର ଉତ୍ପତ୍ତି ହୋଇଅଛି । ଏହି ତିନି ସହୋଦରା ମଧ୍ୟରୁ ଏକ ବିପୁଳ ଐଶ୍ୱର୍ଯ୍ୟଶାଳିନୀ, ଏକ ବିଶ୍ରୁତକୀର୍ତ୍ତି; କିନ୍ତୁ ଅନ୍ୟ ଅତି ଦୀନହୀନା । ଗୋଟିକର ଦୈନ୍ୟର କାରଣ ଆଉ କିଛି ନୁହେଁ, ତାହାର କୋଟିଏ ସନ୍ତାନ ଉତ୍ତମରୂପେ ବୁଝିନାହାନ୍ତି ଯେ ଜାତୀୟଜୀବନରେ ଭାଷାର ସ୍ଥାନ କେତେ ଉଚ୍ଚ ? ଜାତୀୟ କବି ରାଧାନାଥ ଗୋଟିଏ ସହଜ ସୁନ୍ଦର ଉପମାରେଏହା ବୁଝାଇ ଦେଇଅଛନ୍ତି । ତାହା ଏହି ଯେ, ଶତ ସହସ୍ର ଲକ୍ଷ ପ୍ରଭୃତି ସଂଖ୍ୟାରୁ ମୂଳ ଏକଟି (୧) ଉଠାଇ ଦେଲେ କେବଳ ଶୂନ୍ୟଗୁଡ଼ିକର ଯେପରି ମୂଲ୍ୟ କିଛି ନ ଥାଏ, ସେହିପରି ଜାତିରୁ ଭାଷାକୁ ଉଠାଇନେଲେ ଜାତିର ମୂଲ୍ୟ ରହିପାରେ ନାହିଁ । ଅତଏବ ଜାତିର ଜାତୀୟତା କେବଳ ଭାଷାର ସ୍ଥିତି ଉପରେ ନିର୍ଭର କରେ । ଭାଷାର ନାମାନୁସାରେ ଜାତିର ତଥା ଜାତିର ନାମାନୁସାରେ ଭାଷାର ନାମକରଣ ହୋଇଥିବାର ଦେଖାଯାଏ । ଯେଉଁ ଜାତି ଭାଷାର ଏ ସ୍ଥିତି ଯେତେ ବୁଝିପାରି ଅଛନ୍ତି, ସେହି ଜାତି ତେତେ ଜାତୀୟଭାଷାର ଶ୍ରୀବୃଦ୍ଧିକରଣରେ ନିଯୁକ୍ତ ଅଛନ୍ତି । ଓଡ଼ିଆମାନେ ବହୁକାଳ ଦେଶଭାଷାର ଉନ୍ନତି ବିଷୟରେ ମନ ଦେଇନାହାନ୍ତି । ତେଣୁ ଆଜିକାଲି ଅନେକ ସ୍ୱମତାଭିମାନୀ ବୈଦେଶିକ ପଣ୍ଡିତଙ୍କ ମୁଖରୁ ଶୁଣାଯାଏ ଯେ, ଓଡ଼ିଆ ଭାଷା ତେତେ ପ୍ରାଚୀନ ନୁହେଁ; ବିଶେଷତଃ ବଙ୍ଗଳା ଅପେକ୍ଷା ପୁରାତନ ନୁହେଁ । ସେମାନେ କହନ୍ତି, ଚୈତନ୍ୟଙ୍କର ଧର୍ମପ୍ରଚାର ପୂର୍ବେ ଏ ଦେଶରେ ସାହିତ୍ୟର ସୃଷ୍ଟି ହୋଇନାହିଁ । ଯାହାକିଛି ସାହିତ୍ୟ ପଦବାଚ୍ୟ ଅଛି । ସେ ସମସ୍ତ ଚୈତନ୍ୟଙ୍କ ଯୁଗର ପରବର୍ତ୍ତୀ କିନ୍ତୁ ଏଥିରେ ସତ୍ୟର ଭାଗ କେତେ, ତାହା ଇତିହାସଜ୍ଞମାନେ ବିଚାର କରିବେ । ଆମ୍ଭମାନଙ୍କ ମତରେ ଏହା ନିତାନ୍ତ ଅଦୂରଦର୍ଶିତା ଓ ଆତ୍ମପକ୍ଷପାତିତାର କଥା । ଚୈତନ୍ୟଙ୍କର ପୂର୍ବ ଓ ପରବର୍ତ୍ତୀ ବୈଷ୍ଣବୀୟ ସାହିତ୍ୟରେ ମଧ୍ୟ ଭେଦର ଚିହ୍ନ ଲକ୍ଷିତ ହୁଏ । ବୈଷ୍ଣବୀୟ ଲକ୍ଷଣବର୍ଜିତ ସାହିତ୍ୟ ଚିହ୍ନିବା ତ ଆହୁରି ସହଜ କଥା । ଶାରଳାଦାସଙ୍କ ବିରାଟ ମହାଭାରତ ଚୈତନ୍ୟଙ୍କ ଉତ୍କଳାଗମନ ପ୍ରାୟ ଏକଶତ ବର୍ଷ ପୂର୍ବେ ରଚିତ ବୋଲି ଏଥିପୂର୍ବେ

ପ୍ରମାଣିତ ହୋଇଅଛି । ତାହା ପୂର୍ବେ ଓଡ଼ିଆ ଭାଷାରେ ଯେ ଆଉ ଗ୍ରନ୍ଥ ଲିଖିତ ହୋଇ ନ ଥିଲା, ଏମନ୍ତ ନୁହେଁ । ଉତ୍କଳ ବୌଦ୍ଧଧର୍ମର କେନ୍ଦ୍ରସ୍ଥଳ ଥିଲା । ବୌଦ୍ଧଯୁଗର ଗ୍ରନ୍ଥ ବା ବୌଦ୍ଧସମ୍ପର୍କ ବିଶିଷ୍ଟ ଗ୍ରନ୍ଥମାନ ଯେ ପ୍ରାଚୀନତର, ଏଥିରେ ସନ୍ଦେହ କରିବାର କାରଣ ନାହିଁ । ଯୋଗୀ ଭାରତୀଙ୍କ ମୁଖରୁ ଯେଉଁସବୁ ଗୀତ ଶୁଣାଯାଏ, ତାହା ସେମାନଙ୍କ ମୁଖରେ ଏପର୍ଯ୍ୟନ୍ତ ଅପରିବର୍ତ୍ତିତ ଆକାରରେ ନ ଥିଲେହେଁ ତନ୍ମଧ୍ୟରେ କିଏ କେତେ ପ୍ରାଚୀନ, ତାହା ନିରୂପଣ କରିବା ପାଇଁ ଅଦ୍ୟାପି କେହି ପ୍ରମାଣ କାଠି ଘେନି ବାହାରି ନାହାନ୍ତି । ଉତ୍କଳର ପ୍ରାଚୀନ ପୋଥିମାନ ସଂଗ୍ରହ କରି ଭାଷା ଓ ସାହିତ୍ୟର ଗୋଟିଏ ଧାରାବାହିକ ଇତିହାସ ପ୍ରକାଶ ନ କରିବାଯାଏ ଆମ୍ଭମାନଙ୍କୁ ଏସବୁ ତଥ୍ୟ ବିଷୟରେ କିଛିକାଳ ଅନ୍ଧକାରରେ ପଡ଼ି ରହିବାକୁ ହେବ । ଆଜିଯାଏ କେହି କୃତୀପୁରୁଷ ଏ ବିଷୟରେ ଅଗ୍ରସର ହୋଇନାହାନ୍ତି । ଭାଷାର ଇତିହାସ ଲିଖିତ ହେବାର ଉପକ୍ରମ ଏ ଦେଶରେ ସୁସ୍ପଷ୍ଟ ଲକ୍ଷିତ ହୋଇନାହିଁ ସତ୍ୟ; ମାତ୍ର ତାହାର ପୂର୍ବାଭାସ ଦେଖାଗଲାଣି । କେତେକ ଲେଖକଙ୍କର ଏ ବିଷୟରେ ଅଧ୍ୟବସାୟ ଦେଖାଯାଉଅଛି । ଆଶାର କଥା, କେତେଜଣ ସାହିତ୍ୟାନୁରାଗୀ ଧନୀ ଉତ୍କଳ ସନ୍ତାନ ବର୍ତ୍ତମାନ ମାତୃଭାଷା ଓ ସାହିତ୍ୟର ଖଣ୍ଡିଏ ସର୍ବାଙ୍ଗ ସୁନ୍ଦର ଇତିହାସ ପ୍ରସ୍ତୁତ କରାଇବାପାଇଁ ପ୍ରଯତ୍ନଶୀଳ ଅଛନ୍ତି । ଭଗବାନଙ୍କ ଆଶୀର୍ବାଦରୁ ସେମାନଙ୍କ ଏ ଯତ୍ନ ଏବଂ ଉଦ୍ୟମ ଅବ୍ୟାହତ ରହିଲେ, ଅଦୂର ଭବିଷ୍ୟତରେ ଉତ୍କଳରେ ଗୋଟିଏ ବହୁ ଗବେଷଣାସାଧ୍ୟ ଉପାଦେୟ ପୁସ୍ତକର ସମ୍ଭାବ ହେବ ।

ପ୍ରାଚୀନ ତାମ୍ରଶାସନ ଓ ଶିଳାଲିପି ପ୍ରଭୃତିରେ ଯେଉଁ କୁଟିଳ ଅକ୍ଷର ଦୃଷ୍ଟ ହୁଏ, ତାହା ବଙ୍ଗଳା ଓଡ଼ିଆ ଅକ୍ଷରର ଜନନୀ । ଏହି କୁଟିଳଲିପିର କେତୋଟି ବର୍ଣ୍ଣ ଅବିକଳ ଓଡ଼ିଆରେ ଅଛି । ନେପାଳରୁ ଯେଉଁ ବୁଦ୍ଧମୂର୍ତ୍ତି ଆବିଷ୍କୃତ ହୋଇଅଛି, ସେଥିରେ ଖୋଦିତ 'ଶ୍ରୀ' ଅବିକଳ ଓଡ଼ିଆ ଅକ୍ଷର । ପ୍ରାଚୀନ ଓଡ଼ିଆଲିପି ଆଧୁନିକଠାରୁ କିଞ୍ଚିତ୍ ଭିନ୍ନ । ପୁରୀର ମାଦଳାପାଞ୍ଜିରେ ଭାଷା ପ୍ରାୟ ଲିପିର ପ୍ରାଚୀନରୂପ ଦେଖିବାର ଆଶା କରାଯାଉ ଥିଲେହେଁ ସେଥିରେ ସେ ଆଶା ମେଣ୍ଟିବାର ସମ୍ଭାବନା ଅତି ଅଳ୍ପ । କାରଣ ତାହା ଭିନ୍ନ ଭିନ୍ନ ସମୟରେ ଲେଖନକାରମାନଙ୍କ ଦ୍ୱାରା ନକଲ କରାଯାଇ ଅଛି । କଟକ ଜିଲ୍ଲା ଅନ୍ତର୍ଗତ ଗୋପୀନାଥପୁର ଶାସନର ଶିଳାଲିପି ଗଜପତି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱକାଳରେ ଖୋଦିତ । ସେଥିରେ କେତେକ ଓଡ଼ିଆ ଅକ୍ଷର ବିଶେଷତଃ ଯୁକ୍ତାକ୍ଷର ସହିତ ଆଧୁନିକ ଅକ୍ଷରର ବୈସାଦୃଶ୍ୟ ଲକ୍ଷିତ ହୁଏ । ଯୁକ୍ତାକ୍ଷରରେ ପ୍ରଧାନବର୍ଣ୍ଣ ଆଧୁନିକ ଓଡ଼ିଆ ପ୍ରାୟ, ମାତ୍ର ଯୁକ୍ତ ବର୍ଣ୍ଣର ମାତ୍ରା ବା ସଙ୍କେତ କୁଟିଳଲିପିର ଅନୁରୂପ । ମଦନ ମହାଦେବଙ୍କ କାଳର ତାମ୍ରଶାସନରେ ଯେଉଁ ଓଡ଼ିଆ ଅକ୍ଷର ଉତ୍କୀର୍ଣ୍ଣ ଦେଖାଯାଏ, ସେଥିରେ ଆଧୁନିକ ଲିପି ସହିତ ଅତ୍ୟନ୍ତ ପ୍ରଭେଦ ଲକ୍ଷିତ ହୁଏ । ପ୍ରାଚୀନ ପୋଥିମାନଙ୍କରେ ଯେଉଁ ଅଙ୍କମାନ ଏବଂ 'ଅ'ବର୍ଣ୍ଣ ଦେଖାଯାଏ, ତାହା କୁଟିଳାକ୍ଷର । କେତୋଟି ଯୁକ୍ତାକ୍ଷର ମଧ୍ୟ ତାଦୃଶ । କେବେ କାହାର ଆଦର୍ଶରେ ଆଧୁନିକ ଅଙ୍କମାଳାର ସୃଷ୍ଟି ହୋଇଅଛି, ତାହା ନିରୂପଣ କରାଯାଇ ନାହିଁ ।.

ଓଡ଼ିଆ ଭାଷାର ପ୍ରାଚୀନ ସାହିତ୍ୟ ଅପ୍ରଚୁର ନୁହେଁ । ବରଂ ଗୋଟିଏ ସମୃଦ୍ଧ ସାହିତ୍ୟ ପ୍ରତି ତାହା ପର୍ଯ୍ୟାପ୍ତ ହୋଇଅଛି । ଆଧୁନିକ ସାହିତ୍ୟର ଦୁର୍ଗତିରେ ସେ ଗୌରବପ୍ରଭା ଉଦ୍ଦୀପ୍ତ ହେବା ଦୂରେ ଥାଉ, ପ୍ରତ୍ୟୁତ ମ୍ଳାନିଭଜୁଅଛି । ମଧ୍ୟଯୁଗରେ ଜଗନ୍ନାଥ ଦାସ ପ୍ରମୁଖ ଭକ୍ତ କବିମାନେ ଅଦମ୍ୟ ଉଦ୍ୟମ ଏବଂ ଅଧ୍ୟବସାୟ ବଳରେ ସଂସ୍କୃତର ଅଧିକାଂଶ ପୁରାଣ ମାତୃଭାଷାରେ ଅନୁବାଦ କରିଅଛନ୍ତି । ଅନ୍ୟାନ୍ୟ ଶାଖାରେ ସଂସ୍କୃତଗ୍ରନ୍ଥର ସେହିପରି ଅନୁବାଦ ହୋଇଥିଲେ ଆମ୍ଭମାନଙ୍କ ପ୍ରାଚୀନ ସାହିତ୍ୟ ଆହୁରି ପରିପୁଷ୍ଟ ଓ ଏବଂ ସୌଷ୍ଠବାନ୍ୱିତ ହୋଇଥାନ୍ତା । ମୁସଲମାନଯୁଗରେ ସାହିତ୍ୟର ଗତି ଅନ୍ୟପ୍ରକାର ହୋଇଅଛି । ଏହି ସମୟରେ ଆମ୍ଭମାନଙ୍କ ଭାଷାରେ ଅନେକ ପାରସୀକ ଶବ୍ଦ ଏପରି ମିଶିଯାଇ ଅଛି ଯେ, ସେ ସବୁର ଓଡ଼ିଆ ଶବ୍ଦ ଏବେ ଖୋଜି ପାଇବା ବା ସ୍ଥାନ ପୂରଣ କରିବା ସମ୍ଭବ ନୁହେଁ । ଭାଷାରେ ସେମାନଙ୍କର ଦଖଲସତ୍ତ୍ୱ ଜନ୍ମିଅଛି, ତାହାକୁ ଉଚ୍ଛେଦ କରିବା ବର୍ତ୍ତମାନ କାହାରି ସାଧ୍ୟ ନୁହେଁ । ଅନେକେ ସେ ସବୁକୁ ଯଥା ଶକ୍ତି ପରିହାର ପୂର୍ବକ ବିଶୁଦ୍ଧ ଓଡ଼ିଆ ଶବ୍ଦ ବ୍ୟବହାର ଦ୍ୱାରା ଭାଷାର ମୌଳିକତା ରକ୍ଷା କରିବାକୁ ଯତ୍ନ କରିଅଛନ୍ତି; କିନ୍ତୁ ସେ ଯତ୍ନ କେବେ ସଫଳ ହୋଇନାହିଁ, ମଧ ହୋଇ ପାରିବାର ଆଶା ନାହିଁ । ଏହି ଯାବନିକ ବାକ୍‌ବର୍ଜନପ୍ରଯତ୍ନ କଦାପି ନ୍ୟାୟସଙ୍ଗତ ନୁହେଁ । ଅନେକ ସୁକବି ଓ ସୁଲେଖକ ସ୍ୱସ୍ୱଗ୍ରନ୍ଥରେ ଏପ୍ରକାର ଶବ୍ଦମାନ ସୁପ୍ରଯୁକ୍ତ କରି ଆପଣା ଲେଖାର ଶ୍ରୀବୃଦ୍ଧି ସମ୍ପାଦନ କରିଅଛନ୍ତି । ସେମାନଙ୍କ ରସନାରେ ଏଗୁଡ଼ିକ ନୂତନ ଆକାର ଧାରଣ କରି ଆମ୍ଭମାନଙ୍କ ମାତୃଭାଷାର ସମ୍ପଦ ହୋଇଅଛି । ଅତଏବ ତାହାକୁ ହରାଇ ଭାଷାକୁ ବିକଳାଙ୍ଗ କରିବା କାହାରି ମତରେ ବାଞ୍ଛନୀୟ ନୁହେଁ । ଭାଷାର ବିଶୁଦ୍ଧି ବା ମୌଳିକତା ରକ୍ଷାକରିବା ସର୍ବଥା ବିଧେୟ, ଏହା ସ୍ୱୀକାର୍ଯ୍ୟ; କିନ୍ତୁ ଭିନ୍ନ ଭିନ୍ନ ଯୁଗରେ ଭାଷା ଯେ ବିଭିନ୍ନ ଉପାଦାନରେ ପୁଷ୍ଟିଲାଭ କରେ, ଏହା ସ୍ୱଭାବସିଦ୍ଧ । ଭାଷାର ଏ ଗତିରୋଧ କରିବା ବା ଏଥିରେ ବାଧା ଦେବା ଯୁକ୍ତି ସଙ୍ଗତ ନୁହେଁ । ଯେଉଁମାନେ ଏପରି ବାଧା ଦିଅନ୍ତି, ସେମାନେ ଭାଷାର ଉନ୍ନତି ବିଧାନ କରନ୍ତି ନାହିଁ, ବରଂ କିଛିଦିନ ତାହାକୁ ପଛକୁ ଘୁଞ୍ଚାଇ ନିଅନ୍ତି । ଆମ୍ଭମାନଙ୍କ ଭାଷା ଯେ ଏପରି ପଛଘୁଞ୍ଚା କେତେଥର ପାଇଅଛି, ପ୍ରାଚୀନ ସାହିତ୍ୟ ଅନୁଶୀଳନକାରିମାନେ ତାହାର ଆଭାସ ପାଇଥିବେ । ଭାଷାର ଯେପରି ଭାବରେ ଗତି ହୋଇ ଆସୁଅଛି, ତାହାକୁ ଅବ୍ୟାହତ ରଖି ଅଗ୍ରସର ନ ହେଲେ ଉନ୍ନତି ହୋଇ ନ ପାରେ । ପୂର୍ବବର୍ତ୍ତୀ କବିମାନଙ୍କ କାବ୍ୟାଦିରେ ପରିଲକ୍ଷିତ ଭାଷାର ଗତିକୁ ଅନୁସରଣ ନ କରି ଆଧୁନିକ କବି ଓ ଲେଖକମାନେ ଲକ୍ଷ୍ୟଭ୍ରଷ୍ଟ ହେଉଅଛନ୍ତି । ପ୍ରାଚୀନ ସହିତ ସମ୍ପର୍କ ନ ରହିବାରୁ ଭାଷା ମୌଳିକତା ହରାଇ ଶ୍ରୀଭ୍ରଷ୍ଟ ହୋଇ ପଡୁଅଛି । ଜଣେ ଜଣେ ସେ ସ୍ରୋତର ମୁଖପ୍ରତି ଦୃଷ୍ଟି ନ ରଖି ନିର୍ଲକ୍ଷ୍ୟଭାବରେ ଏଣିକି ତେଣିକି ଟଣାଟଣି କରୁଅଛନ୍ତି । ତଦ୍ୱାରା ଭାଷାସ୍ରୋତର ଯଥାର୍ଥ ଗତି ନ ହୋଇ ଆବର୍ତ୍ତନ ମାତ୍ର ହେଉଅଛି । ଏହି ଆବର୍ତ୍ତ ଅତିକ୍ରମ ନ କଲେ ଭାଷା ଦ୍ରୁତଗତିରେ ଧାବିତ ହୋଇପାରିବ ନାହିଁ । ବିଜ୍ଞ ପାଠକମାନେ ଦେଖି

ପାରୁଥିବେ ଯେ, କେତୋଟି ବିଭିନ୍ନ ବା ପରସ୍ପର ବିରୋଧୀ ମତର ଆକର୍ଷଣରେ ଏ ଆବର୍ତ୍ତ ଉପସ୍ଥିତ ହୋଇଅଛି । କେହି କେହି ଅଭାବ ସ୍ଥଳରେ ଭିନ୍ନ ଭାଷାର ନାମଗ୍ରହଣରେ ଅନିଚ୍ଛୁକ ଏବଂ ସଙ୍କୁଚିତ । ଦଳେ ଭାଷାର ରଚନାପ୍ରଣାଳୀ କିପରି ହେବା ଉଚିତ, ସେଥିପାଇଁ ଚିନ୍ତିତ । ଅବଶିଷ୍ଟ ସମାଜ, ରଚନାରେ ବହୁଳ ସଂସ୍କୃତ ଶବ୍ଦ ବ୍ୟବହାର କରିବେ କି ସରଳ ସୁବୋଧ ଓଡ଼ିଆ ଶବ୍ଦ ବ୍ୟବହାର କରିବେ ଏ ବିଷୟରେ ସନ୍ଦିହାନ । ପ୍ରଥମ ପକ୍ଷର ଯୁକ୍ତିର ସାରତା ପୂର୍ବ ପ୍ରସଙ୍ଗରେ ପ୍ରତିପାଦନ କରିଅଛୁଁ । ଦ୍ୱିତୀୟ ପକ୍ଷଙ୍କ ସମ୍ବନ୍ଧରେ ବକ୍ତବ୍ୟ ଏହି, ଭାଷାର ରଚନାପ୍ରଣାଳୀ ଜଣକର କଳ୍ପନାର ବିଷୟ ନୁହେଁ । ଭାଷାରେ ଅଧିକାର ଜନ୍ମିଥିଲେ ଭାବୁକ ହୃଦୟରୁ ଭାବସ୍ରୋତ ଗିରି ନିର୍ଝରିଣୀ ପ୍ରାୟ ଆପେ ବାଟ କାଟି ଚାଲିଯିବ । ସେହି ପଦ୍ଧତି ପଶ୍ଚାତ୍ ଅନ୍ୟର ଆଦର୍ଶ ହୋଇପାରେ । ତୃତୀୟ ପକ୍ଷର ଆନ୍ଦୋଳନ ଚିନ୍ତା କରିବାର ବିଷୟ । କିପରି ଭାଷା ହେବା ଉଚିତ, ଏ ବିଷୟରେ ସମସ୍ତଙ୍କର ଏକମତ ହେବା ବାଞ୍ଛନୀୟ । ଉନ୍ନତଭାଷାର ବଡ଼ ବଡ଼ ପଣ୍ଡିତଙ୍କର ମତରେ ଭାଷା ଯେତେ ସହଜ ଶୁଦ୍ଧ ହୋଇ ସର୍ବଜନବୋଧ ହେବ, ତେତେ ଭଲ । ଅଧିକସଂଖ୍ୟକ ପାଠକ ଲାଭ କରିବା ଲେଖକ ପକ୍ଷରେ ପରମସୌଭାଗ୍ୟର ବିଷୟ । ପାଠକ ଓ ଶ୍ରୋତାମାନଙ୍କ ପ୍ରତି ତୀକ୍ଷ୍ଣଦୃଷ୍ଟି ରହିଲେ ଲେଖକ ଏବଂ ବକ୍ତାଙ୍କର ଭାଷାର ସ୍ୱାଭାବିକ ଗତି ହୋଇପାରିବ । ଯାହାର ଭାଷାରେ ଯେତିକି ମୋହ ଅଛି, ସେ ତେତିକି ପାଠକସମାଜର ହୃଦୟ ଅଧିକାର କରି ବସିବେ ଏବଂ ତାହାଙ୍କ ଭାଷା ତେତିକି ସ୍ଥାୟିତ୍ୱ ବା ଅମରତ୍ୱ ଲାଭ କରିବ । ଏ ବିଷୟରେ ଭକ୍ତକବି ଜଗନ୍ନାଥ ଉତ୍କଳରେ ଅଗ୍ରଣୀ ଅଟନ୍ତି ।...

ଓଡ଼ିଆ ଭାଷାଜ୍ଞାନ ଲାଗି ଏପର୍ଯ୍ୟନ୍ତ ଖଣ୍ଡିଏ ସର୍ବାଙ୍ଗସୁନ୍ଦର ଅଭିଧାନ ସଙ୍କଳିତ ହୋଇ ନାହିଁ । ସଂସ୍କୃତ ଶବ୍ଦବହୁଳ ଯେଉଁ ଖଣ୍ଡେ ଦୁଇଖଣ୍ଡ କୋଷଗ୍ରନ୍ଥ ଏଥି ମଧ୍ୟରେ ପ୍ରକାଶିତ ହୋଇଅଛି, ତାହା କେବଳ ବିଦ୍ୟାଳୟର ପାଠ୍ୟପୁସ୍ତକର ଅର୍ଥବୋଧ ନିମନ୍ତେ ଛାତ୍ରମାନଙ୍କର ଉପଯୋଗୀ ହୋଇପାରେ । କିନ୍ତୁ ସମଗ୍ର ଓଡ଼ିଆ ଭାଷାର ଶବ୍ଦରାଶିର ସଙ୍କଳନର ଚେଷ୍ଟା ଏ ପର୍ଯ୍ୟନ୍ତ ହୋଇନାହିଁ । ପଣ୍ଡିତ ଗୋପୀନାଥ ନନ୍ଦ ମହାଶୟ ଯେଉଁ ଅଭିଧାନ ସଂକଳନ କରିଅଛନ୍ତି, ସେଥିରେ ସର୍ବାଞ୍ଚଳ ପ୍ରଚଳିତ ଶବ୍ଦାବଳୀର ସଙ୍କଳନ ସମ୍ପୂର୍ଣ୍ଣରୂପେ ହୋଇଅଛି ବୋଲି କୁହା ଯାଇ ନ ପାରେ । ଏପ୍ରକାର ଅଭିଧାନ ପ୍ରସ୍ତୁତ କରିବା ଜଣକର କାର୍ଯ୍ୟ ନୁହେଁ । ଉତ୍କଳର ବିଭିନ୍ନ ଅଞ୍ଚଳରୁ ଜଣେ ଜଣେ ବାଗାର୍ଥକୁଶଳ ବ୍ୟକ୍ତି ଏ କାର୍ଯ୍ୟରେ ନିଯୁକ୍ତ ରହିବେ ଏବଂ କେନ୍ଦ୍ରସ୍ଥଳରେ ବା କଟକରେ ଜଣେ ସମ୍ପାଦକ ରହିବେ । ପୁସ୍ତକ ପ୍ରକାଶକ ସମ୍ପାଦକ କାର୍ଯ୍ୟ କଲେ ମଧ ଭଲ ହେବ । ଏ କୋଷଗ୍ରନ୍ଥ କ୍ରମଶଃ ପ୍ରକାଶିତ ହେଲେ ଏ ଦେଶ ପକ୍ଷରେ ଅଧିକ ସୁବିଧାଜନକ ହେବ । ପ୍ରତ୍ୟେକ ସ୍ଥଳରେ ନିଯୁକ୍ତ ବ୍ୟକ୍ତି ନିର୍ଦ୍ଧାରିତ ବର୍ଣ୍ଣର ଶବ୍ଦାବଳୀ ସଂଗ୍ରହ କରି ନିର୍ଦ୍ଦିଷ୍ଟ ସମୟରେ ସମ୍ପାଦକଙ୍କ ନିକଟକୁ ପଠାଇଲେ ସେଗୁଡ଼ିକ ମିଳାଇ ସଂଶୋଧନାଦି କରାଇ ମୁଦ୍ରଣାର୍ଥ ପ୍ରଦାନ କରିବେ । ଏଥିରେ ସଂସ୍କୃତ, ତଦ୍ଭବ, ଦେଶଜ

ଏବଂ ଭାଷା ପ୍ରଚଳିତ ଯାବତୀୟ ବୈଦେଶିକ ବା ଯାବନିକ ଶବ୍ଦର ସଂଗ୍ରହ ରହିବା ସଂଗତ ମନେ ହୁଏ । ଏ କାର୍ଯ୍ୟ ଦୀର୍ଘକାଳ ସାପେକ୍ଷ ହେଲେ ହେଁ ଜଣେ ଦକ୍ଷ ସମ୍ପାଦକ ହସ୍ତରେ ସୁଚାରୁରୂପେ ସମ୍ପାଦିତ ହୋଇ ପାରିବ ଏବଂ ଗ୍ରାହକମାନଙ୍କଠାରୁ ପୂର୍ବ ପୂର୍ବ ଖଣ୍ଡର ମୂଲ୍ୟସ୍ୱରୂପ ଆଂଶିକ ବ୍ୟୟ ଆଦାୟ ହେବାଦ୍ୱାରା ମୁଦ୍ରଣର ସୁବିଧା ହୋଇପାରିବ ।

ଓଡ଼ିଆ ବହୁକାଳର ଭାଷା ହେଲାଣି । ଭିନ୍ନ ଭିନ୍ନ କାଳରେ ସେଥିରେ ନାନା ପଦ ପଦାବଳୀ ପ୍ରବେଶ କରୁଅଛି । ବର୍ତ୍ତମାନ ସେଥିରେ ଗୋଟିଏ ଶୃଙ୍ଖଳା ଆବଶ୍ୟକ । ଅନେକ ପ୍ରାଚୀନ ବଡ଼ କବି ବ୍ୟାକରଣ ଶାସନ ନ ମାନି ନିରଙ୍କୁଶ ଭାବରେ ଲେଖି ଯାଇଥିବାରୁ ଭାଷା ମଧ୍ୟରେ ଯଥେଷ୍ଟ ବିଶୃଙ୍ଖଳା ଘଟାଇଅଛନ୍ତି । ବର୍ତ୍ତମାନ ଭାଷାର ବିଶୁଦ୍ଧତା ରକ୍ଷା ନିମିତ୍ତ ଖଣ୍ଡିଏ ପୂର୍ଣ୍ଣାଙ୍ଗ ବ୍ୟାକରଣ ପ୍ରସ୍ତୁତ ହେବା ଆବଶ୍ୟକ । ଭଟ୍ଟାଚାର୍ଯ୍ୟଙ୍କ ସର୍ବସାର ବା ରାୟ କବିଙ୍କ ବ୍ୟାକରଣ ପ୍ରବେଶ ମୁଦ୍ରିତ ବ୍ୟାକରଣମାନଙ୍କ ମଧ୍ୟରେ ଅଗ୍ରାସନ ପାଇବାର ଯୋଗ୍ୟ ହେଲେହେଁ ତାହା ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ବ୍ୟାକରଣ ନୁହେଁ । ତାହା କେବଳ ସାଧୁଭାଷା ବା ସଂସ୍କୃତ ଅଂଶର ବ୍ୟାକରଣ; ଏଣୁ ଏହା ଆଂଶିକ ବ୍ୟାକରଣ ହୋଇପାରେ । ଏତେ ବ୍ୟାକରଣ ବାହାରି ଏପର୍ଯ୍ୟନ୍ତ ଓଡ଼ିଆର ପଦାନ୍ୱୟ ସମ୍ବନ୍ଧରେ କିଛି ସିଦ୍ଧାନ୍ତ ହୋଇନାହିଁ । ବିଦ୍ୟାଳୟରେ ପଦପରିଚୟ ସ୍ଥଳରେ ଇଂରାଜୀ ଅଭିଜ୍ଞ ଶିକ୍ଷକ ଇଂରାଜୀ ଅନୁକରଣରେଏବଂ ସଂସ୍କୃତଜ୍ଞ ଶିକ୍ଷିତ ସଂସ୍କୃତ ଅନୁକରଣରେ ଯଥା-ଜ୍ଞାତ କହି ଚାଲିଯାନ୍ତି । ସେ ବିଷୟରେ ଉତ୍କଳ ସାହିତ୍ୟ ସମାଜରେ ଆଲୋଚନା ହୋଇ ଗୋଟିଏ ସିଦ୍ଧାନ୍ତ ହେବା ଅଗ୍ରେ ଆବଶ୍ୟକ । ପ୍ରଚଳିତ ଭାଷାର ଯେଉଁ ଯେଉଁ ସ୍ଥାନରେ ଯେପରି ଶୃଙ୍ଖଳା ବା ନିୟମର ପ୍ରୟୋଜନ, ସଂସ୍କୃତ ବ୍ୟାକରଣ ଅନୁକରଣରେ ସେଗୁଡ଼ିକ ଉତ୍ତମରୂପେ ନିରୂପଣ କରି ଗୋଟିଏ ଗୋଟିଏ ଅଂଶ ଉକ୍ତ ସଭାରେ ଆଲୋଚନା ଦ୍ୱାରା ଦୃଢ଼ କରାଇ ନେଇ ପ୍ରକାଶ କଲେ ତାହା ସମାଜରେ ଆଦରଣୀୟ ହେବ । ଓଡ଼ିଆ ବର୍ଣ୍ଣମାଳାର କ୍ଷୟବୃଦ୍ଧି ବିଚାର, ବର୍ଣ୍ଣମାନଙ୍କର ଉଚ୍ଚାରଣ ଏବଂ ବର୍ଣ୍ଣନାର ଶୁଦ୍ଧି ପ୍ରସଙ୍ଗ ଏହି ଗ୍ରନ୍ଥର ଗୋଟିଏ ଦୀର୍ଘ ପରିଚ୍ଛେଦରେ ଆଲୋଚିତ ହେବ ।

ଏଥି ସଙ୍ଗେ ଆଉ ଗୋଟିଏ କଥା କହିବାକୁ ଅଛି ଯେ, ଉପେନ୍ଦ୍ରଭଞ୍ଜପ୍ରମୁଖ କବିମାନେ ଓଡ଼ିଆରେ ଯେଉଁ କାବ୍ୟମାନ ଲେଖି ଯାଇଅଛନ୍ତି, ସେଥିରେ ପ୍ରାୟ ସଂସ୍କୃତର ସମସ୍ତ ଅଳଙ୍କାରର ସମାବେଶ ଅଛି । ତାହା ବ୍ୟତୀତ ଆଉ କେତୋଟି ନୂତନ ମଧ୍ୟ ଦେଖୁଁ । ସେଗୁଡ଼ିକ ସଂଗ୍ରହ କରି ଭଞ୍ଜଙ୍କ ରଚିତ ଅଳଙ୍କାର ଗ୍ରନ୍ଥର ଅନୁଶୀଳନପୂର୍ବକ ଗୋଟିଏ ଅଳଙ୍କାର ଗ୍ରନ୍ଥ ପ୍ରସ୍ତୁତ କରିବା ଓଡ଼ିଆ ଭାଷା ପ୍ରତି ଆବଶ୍ୟକ ବୋଧହୁଏ । ଏହି ଗ୍ରନ୍ଥରେ ଛନ୍ଦଶାସ୍ତ୍ର ମଧ୍ୟ ଅନ୍ତର୍ନିହିତ ରହିବ । ଓଡ଼ିଆରେ ଅନେକ ଛାନ୍ଦ ଓ ବୃତ୍ତ ପ୍ରଚଳିତ ଅଛି । ସେଗୁଡ଼ିକର ଉତ୍ପତ୍ତି ଓ ପ୍ରଚାରର ଇତିହାସ ସହିତ ଲକ୍ଷଣ ଓ ଦୃଷ୍ଟାନ୍ତ ସେଥିରେ ଉଲ୍ଲିଖିତ ହେଲେ ଉତ୍କଳର କବି ଏବଂ କାବ୍ୟପାଠକମାନଙ୍କର ତାହା ପରମ ସହାୟ ହେବ । ଓଡ଼ିଆରେ ଅଳଙ୍କାର ଗ୍ରନ୍ଥର ରଚନା ବିଷୟରେ ଆମ୍ଭେମାନେ ସାହିତ୍ୟନିଷ୍ଠ ବାମଣ୍ଡାର ସ୍ୱର୍ଗତ ଭୂପତି

ସୁତ୍ରଳଦେବ ଏବଂ ବର୍ତ୍ତମାନ ଭୂପତି ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କଠାରେ କୃତଜ୍ଞ ଅଛୁଁ । ବର୍ତ୍ତମାନ ଆମ୍ଭେମାନେ ସେହି ଅଳଙ୍କାରସାର ଓ ଅଳଙ୍କାର ବୋଧୋଦୟ ଅପେକ୍ଷା ଉତ୍କୃଷ୍ଟତର ଗ୍ରନ୍ଥର କାମନା କରୁଁ । ଅଳଙ୍କାର ଶାସ୍ତ୍ରରେ କାବ୍ୟର ଦୋଷଗୁଣ ସୁବିସ୍ତର ଆଲୋଚନା ହୋଇଥାଏ । ତେଣୁ ସେଥିରୁ ଭାବୀ ଲେଖକମାନେ ଉପଦେଶ ପାଇ ସତର୍କ ହୁଅନ୍ତି ଏବଂ ତାଙ୍କର ରଚନା ଅପେକ୍ଷାକୃତ ଦୋଷ ବିମୁକ୍ତ ହୁଏ ।



୧୫

# ଓଡ଼ିଆ ଲିପି

## ତାରିଣୀ ଚରଣ ରଥ

ଓଡ଼ିଶାର କେଶରୀବଂଶୀୟ ରାଜାମାନଙ୍କ ଶେଷକାଳରେ ଅର୍ଥାତ୍ ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଆଭାଷା ପ୍ରଥମତଃ ଲିଖିତ ସାହିତ୍ୟିକ ଭାଷାରେ ପରିଣତ ହୋଇଥିବାର ଅନୁମାନ କରାଯାଇଅଛି । କୌଣସି ଭାଷା ଲିଖିତ ସାହିତ୍ୟିକ ଭାଷାରେ ପରିଣତ ହେବାର କେତେକାଳ ପୂର୍ବେ ତାହାର ଲିପିମାଳାର ସୃଷ୍ଟିହୋଇଥାଏ । ଅତଏବ ଖ୍ରୀଷ୍ଟ ପର ଦଶମ ଶତାବ୍ଦୀରେ ଓଡ଼ିଆ ଲିପିମାଳାର ସୃଷ୍ଟି ହୋଇଥିବା ନିରୂପଣ କରାଯାଇପାରେ । ପ୍ରାରମ୍ଭରେ ତାହା ଚିଠିପତ୍ର, ହିସାବ ଓ ଦାନପଟା ପ୍ରଭୃତିରେ ବ୍ୟବହୃତ ହୋଇଥିବାର ସମ୍ପୂର୍ଣ୍ଣ ସମ୍ଭବ ଅଟେ । ଏହାପରେ ସାହିତ୍ୟିକ ଗ୍ରନ୍ଥମାନ ଲେଖିବାରେ ବ୍ୟବହୃତ ହୋଇଅଛି ।

ମଗଧ ନରେଶ ପୃଥିବୀବିଖ୍ୟାତ ଅଶୋକ ବର୍ଦ୍ଧନ ମହାରାଜା କଳିଙ୍ଗ ବା ଓଡ଼ିଶାରାଜ୍ୟ ଘୋର ଯୁଦ୍ଧଦ୍ୱାରା ଜୟକରି ତହିଁର ଭୀଷଣ ହତ୍ୟାକାଣ୍ଡରେ ମର୍ମାହତ ହୋଇ ବୌଦ୍ଧଧର୍ମ ଅବଲମ୍ବନ କରିଥିଲେ । ସେହି ଦିନାବଧି ସେ ରାଜର୍ଷିରୂପେ ପରିଗଣିତ ହୋଇ ସମଗ୍ର ପ୍ରଦେଶରେ ପବିତ୍ର ବୌଦ୍ଧ ଧର୍ମର ପ୍ରଚାର କରିଥିଲେ । ତାହାଙ୍କର ପ୍ରସିଦ୍ଧ ଶିଳାଲିପିମାନ ଖ୍ରୀଷ୍ଟପୂର୍ବ ୨୫୬ ସମ୍ବତ୍ସରରେ ଖୋଦିତ ହୋଇଥିଲା । ଓଡ଼ିଶାରେ ଏହି ଲିପିମାନ ଆଜିଯାଏ ପୁରୀ ଜିଲ୍ଲାସ୍ଥିତ ଧଉଳି ପାହାଡ଼ରେ ଓ ଗଞ୍ଜାମର ଜଉଗଡ଼ଠାରେ ବିଦ୍ୟମାନ । ଓଡ଼ିଶା ଦେଶବାସୀମାନଙ୍କ ଉଦ୍ଦେଶ୍ୟରେ ଏହି ଲିପିମାଳା ଖୋଦିତ ହୋଇଥିଲା । ଲିପିଗୁଡ଼ିକର ଭାଷା ପ୍ରାକୃତ ମାଗଧୀ ପାଳି ଓ ତହିଁର ଅକ୍ଷରଗୁଡ଼ିକ ପୁରାତନ ବ୍ରାହ୍ମୀଲିପି ଅଟେ । ଅଶୋକ ରାଜାଙ୍କ ପରେ ଓଡ଼ିଶା ମଗଧ ରାଜ୍ୟରେ ଖାରବେଳ ରାଜାଙ୍କ ରାଜତ୍ୱରେ ସ୍ୱାତନ୍ତ୍ର୍ୟ ଲାଭ କରିଥିଲା । ଖାରବେଳ ରାଜାଙ୍କ ଦ୍ୱାରା ଖୋଦିତ ଶିଳାଲିପିମାଳା ସୁଦ୍ଧା ଆଜିଯାଏ ଓଡ଼ିଶାର ଖଣ୍ଡଗିରି ଗୁମ୍ଫାମାନଙ୍କରେ ବିଦ୍ୟମାନ ରହିଅଛି । ଏହାର ସମୟ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ମଧ୍ୟଭାଗ ଅଟେ । ଏହା ମଧ୍ୟ ସେହି ଭାଷା ଓ ଲିପିରେ ଖୋଦିତ ହୋଇଅଛି । ଏଥିରୁ ସ୍ପଷ୍ଟରୂପେ ଧରାଯାଉଅଛି ଯେ, ସେହି ସମୟରେ ଓଡ଼ିଆଭାଷା ଲିଖିତ ହୋଇ ନ ଥିଲା; ଅର୍ଥାତ୍ ଓଡ଼ିଆ ଲିପିମାଳାର ସୃଷ୍ଟି ହୋଇ ନ ଥିଲା । ସେହି ସମୟରେ ଯଦି ଓଡ଼ିଆ ଲିପି ସୃଷ୍ଟି ହୋଇଥାନ୍ତା,

ତେବେ ତାହା ନିଷ୍ଚୟରେ ଏହି ଖୋଦିତ ଶିଳାଲିପିମାନଙ୍କରେ ବ୍ୟବହୃତ ହୋଇଥାନ୍ତା ।

ଏହି ବ୍ରାହ୍ମୀ ଲିପି ସହିତ ଓଡ଼ିଆ ଲିପିର କୌଣସି ପ୍ରକାର ସାମଞ୍ଜସ୍ୟ ଦେଖାଯାଏ ନାହିଁ । ଉଭୟର ଗଠନପ୍ରଣାଳୀ ସମ୍ପୂର୍ଣ୍ଣ ଭିନ୍ନ ଅଟେ । କେତେକ ଶତାବ୍ଦୀ ପରେ ଭାରତବର୍ଷରେ ବର୍ତ୍ତମାନ ବ୍ୟବହୃତ ଦେବନାଗର ଲିପିର ସୃଷ୍ଟି ହୋଇଥିଲା, ଏହା ସମ୍ଭବତଃ ଖ୍ରୀଷ୍ଟପର ସପ୍ତମ ବା ଅଷ୍ଟମ ଶତାବ୍ଦୀରେ ଘଟିଥିବାର ଅନୁମାନ କରାଯାଇଅଛି । ସଂସ୍କୃତ ଭାରତବର୍ଷର ଅତି ପୁରାତନ ଭାଷା, ଅତଏବ ତାହା ଲେଖିବା ସକାଶେ ଦେବନାଗର ଲିପି ଏହାର ବହୁପୂର୍ବେ ସୃଷ୍ଟି ହୋଇଥିବାର କେହି କେହି କହନ୍ତି । କିନ୍ତୁ ଭାରତବର୍ଷର ପ୍ରାଚୀନ ଭାଷା ସଂସ୍କୃତ ନୁହେଁ; ତାହା ବୈଦିକ ଭାଷା ଅଟେ । ଉକ୍ତ ବୈଦିକଭାଷାରେ ଭାରତବର୍ଷର ସକଳ ପୁରାତନ ଶାସ୍ତ୍ରମାନ ରଚିତ ହୋଇ କେବଳ ଜନସାଧାରଣ ଅର୍ଥାତ୍ ଆର୍ଯ୍ୟମାନଙ୍କର ସ୍ମୃତିଶକ୍ତିର ସାହାଯ୍ୟରେ ବଂଶାନୁକ୍ରମରେ ରକ୍ଷିତ ହୋଇଥିଲା ।

ବୌଦ୍ଧଧର୍ମର ପ୍ରଭାବରୁ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠାରୁ ଖ୍ରୀଷ୍ଟପର ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ, ପ୍ରାଚୀନ ବୈଦିକ ଭାଷାର ଅବନତି ଘଟି ପ୍ରାକୃତ ଭାଷାର ଉଦୟ ହୋଇଥିଲା । ଏହାପରେ ଭାଷା ମାର୍ଜିତ ଓ ନିୟମବଦ୍ଧ ହୋଇ ଅର୍ଥାତ ତାହାର ସଂସ୍କାର କରାଯାଇ ସଂସ୍କୃତ ଭାଷା ଗଠିତ ହୋଇଥିଲା । ଏଣୁ ଦେବନାଗର ଲିପି ସୃଷ୍ଟି ସମ୍ବନ୍ଧରେ ଏହି ମତ ଅବିଶ୍ୱାସ କରିବା ସକାଶେ ଉପଯୁକ୍ତ କାରଣ ନାହିଁ ।

ଏହି ଦେବନାଗର ଲିପିହିଁ ଓଡ଼ିଆ ଲିପିର ଜନନୀ । ପ୍ରଥମାବସ୍ଥାରେ ଓଡ଼ିଆ ଲିପି ଗୋଲାକାର ନଥିଲା । ବିଶେଷତଃ ତାଳପତ୍ରରେ ପୂର୍ବକାଳରେ ତାହା ଲିଖିତ ହେଉଥିବାରୁ ତାହାର ବର୍ତ୍ତମାନ ଗୋଲାକାର ଜନ୍ମିଥିବାର କେହି କେହି ଅନୁମାନ କରିଅଛନ୍ତି; କିନ୍ତୁ ଏହା ପ୍ରକୃତ କଥା ବୋଲି ବୋଧ ହେଉନାହିଁ । ଭାରତବର୍ଷରେ ତାମିଲ୍, ମଳୟାଳମ୍ ପ୍ରଭୃତି ଭାଷାମାନଙ୍କରେ ସୁଦ୍ଧା ତାଳପତ୍ର ଲିଖିତ ପୁସ୍ତକମାନ ବିଦ୍ୟମାନ, କିନ୍ତୁ ସେହି ଭାଷାର ଅକ୍ଷର ଗୁଡ଼ିକର ଆକାର ଗୋଲ ନୁହେଁ । ଶୁଷ୍କ ତାଳପତ୍ର ଉପରେ ଲୌହ ଲେଖନୀ ଦ୍ୱାରା ଲେଖିବା ମାତ୍ରକେ ଯେ ଅକ୍ଷର ଗୋଲାକାର ହେବା ଆବଶ୍ୟାମ୍ଭାବୀ, ଏହା କଦାପି ସମୀଚୀନ ବୋଧ ହୁଏ ନାହିଁ । ଓଡ଼ିଆ ଲିପିର, ଗୋଲାକାର ହଠାତ୍ ହୋଇ ନାହିଁ, ତାହା କେବଳ କ୍ରମଶଃ ସଂଘଟିତ ହୋଇଅଛି । ତାଳପତ୍ରରେ ଲେଖିବା ମାତ୍ରକେ ଅକ୍ଷର ଗୋଲାକାର ଧାରଣ କରିଥିଲେ ଆହୁରି ଅନେକକାଳ ପୂର୍ବରୁ ଓଡ଼ିଆ ଲିପିର ଗୋଲାକାର ଜନ୍ମିଥାନ୍ତା ଓ ଭାରତବର୍ଷର ଇତର ପ୍ରାଦେଶିକ ଭାଷାମାନଙ୍କର ଲିପି ସୁଦ୍ଧା ସମସ୍ତ ଗୋଲାକାର ଧାରଣ କରିଥାନ୍ତା । ଭାରତବର୍ଷ ମଧ୍ୟରେ କେବଳ ଉତ୍କଳ ପ୍ରଦେଶରେ ଯେ ଗ୍ରନ୍ଥମାନ ତାଳପତ୍ରରେ ଲିଖିତ ହେଉଥିଲା, ତାହା କଦାପି ନୁହେଁ । ଅନେକ ଇତର ଭାଷାରେ ଗ୍ରନ୍ଥମାନ ସୁଦ୍ଧା ସେହିପରି ଲିଖିତ ହେଉଥିଲା ଓ ସେ ସମସ୍ତ ସେଥିଯୋଗୁଁ ଗୋଲାକାର ଧାରଣ କରି ନାହିଁ । କାଳକ୍ରମେ ଏକପ୍ରକାର ରୁଚିର ପ୍ରଭାବରୁ ଓଡ଼ିଆ ଲିପି ଗୋଲାକାର ଧାରଣ କରିଅଛି ।

ପଡ଼ୋଶୀ ତୈଲଙ୍ଗଭାଷା ଲିପିରୁ ଗୋଲାକାର ଅନୁକୃତ ହୋଇଥିବା ଯେ ଅସମ୍ଭବ ବା ଅଯୌକ୍ତିକ, ଏହା କୁହାଯାଇ ନ ପାରେ । ଆଜିକାଲି ସୁଦ୍ଧା ଓଡ଼ିଆ କରଣି ଅକ୍ଷରମାନଙ୍କର ଆକାର ଭିନ୍ନ ଅଟେ । ଆମ୍ଭମାନଙ୍କର ଶ୍ରଦ୍ଧାସ୍ପଦ ବନ୍ଧୁ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି.ଏ. ମହାଶୟ 'ଉତ୍କଳ-ସାହିତ୍ୟ' ପତ୍ରିକାର ସପ୍ତମଭାଗରେ ତାହାଙ୍କ ଦ୍ୱାରା ପ୍ରକାଶିତ 'ଓଡ଼ିଆଭାଷା ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ' ନାମକ ପ୍ରବନ୍ଧରେ ଲେଖିଅଛନ୍ତି, "ଖୋର୍ଦ୍ଧା ନଗରର ନିକଟବର୍ତ୍ତୀ ବରୁଣାଇ ପର୍ବତର ଗୋଟିଏ ଗୁମ୍ଫାରେ ପାଞ୍ଚ ପ୍ରକାର ଶିଳାଲିପି ଦେଖାଯାଏ । ତନ୍ମଧ୍ୟରୁ ଏକପ୍ରକାର ଗୋଲ ଓଡ଼ିଆ ଅକ୍ଷରରେ ଖୋଦିତ ଏବଂ ତାହା ୭୮୦ ସମ୍ବତ୍‌ରେ ଖୋଳା ହୋଇଥିବାର ତହିଁରେ ଲେଖା ଅଛି । ...ଅତଏବ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ଗୋଲାକାର ଓଡ଼ିଆ ଅକ୍ଷର ଯେ ସୃଷ୍ଟ ହୋଇଥିଲା, ଏଥିରେ ସନ୍ଦେହ ନାହିଁ ।" ଦୁଃଖର ବିଷୟ ଲେଖକ ଉକ୍ତ ଲିପିର ନକଲ ଦେଇ ନାହାନ୍ତି କିମ୍ବା ତାହାର କୌଣସି ବିଶେଷ ବିବରଣ ପ୍ରକାଶ କରି ନାହାନ୍ତି । ଅତଏବ ଉପଯୁକ୍ତ ରୂପେ ପରୀକ୍ଷା ନ କରିବା ପୂର୍ବରୁ ଏହି ଲିପି ଉପରେ ଆମ୍ଭେମାନେ ନିର୍ଭର କରି କୌଣସି ମତ ପ୍ରକାଶ କରି ନ ପାରୁଁ । ନିମ୍ନୋକ୍ତ ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀର ଲିପିମାନଙ୍କରୁ ଦେଖାଯିବ ଯେ, ସେହି ସମୟରେ ସୁଦ୍ଧା ଓଡ଼ିଆ ଅକ୍ଷର ସମ୍ପୂର୍ଣ୍ଣ ଗୋଲାକାର ପ୍ରାପ୍ତ ହୋଇ ନଥିଲା । ଅତଏବ ତାହା ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ଗୋଲାକାର ଧାରଣ କରିଥିବା କଥା କଦାପି ବିଶ୍ୱାସ କରାଯାଇ ନ ପାରେ । ଲେଖକଙ୍କର ସମୟ ଗଣନା ସୁଦ୍ଧା ନିତାନ୍ତ ଭୁଲ୍ ଅଟେ । ଲିପିର ସମୟ ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭ ପୂର୍ବରୁ ବୋଲି ସେ କିପରି ନିରୂପଣ କଲେ, ଜଣାଯାଉ ନାହିଁ । ଲେଖକ ସେହି ପ୍ରବନ୍ଧର କିଛି ପୂର୍ବରେ ଲେଖିଅଛନ୍ତି ଯେ, ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଶେଷ ଭାଗକୁ ଓଡ଼ିଆଭାଷା ଲିଖିତ ଭାଷାରେ ପରିଣତ ହୋଇ ନଥିଲା । ତେବେ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ବା ଉକ୍ତ ଶତାବ୍ଦୀ ମଧ୍ୟରେ ହଠାତ୍ ଓଡ଼ିଆ ଅକ୍ଷର କିପରି ଏକାବେଳକେ ସୃଷ୍ଟ ହୋଇ ଗୋଲାକାର ଧାରଣ କରି ପାରିଥିଲା, ତାହା ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିର ଅଗୋଚର । ଅବଶ୍ୟ ଅକ୍ଷରଗୁଡ଼ିକ ସୃଷ୍ଟି ହେବାର କେତେକ ଶତାବ୍ଦୀ ପରେ ତାହାର ଗୋଲାକାର କ୍ରମଶଃ ଜାତ ହୋଇଅଛି । ଅଷ୍ଟମ ବା ନବମ ଶତାବ୍ଦୀରେ ସୁଦ୍ଧା ଓଡ଼ିଆ ଲିପିର ସୃଷ୍ଟି ହୋଇଥିବାର କୌଣସି ପ୍ରମାଣ ଆଜିଯାଏ ମିଳି ନାହିଁ । ଯାହା ହେଉ 'ଉତ୍କଳ-ସାହିତ୍ୟ ସମାଜ'ର ଅନୁସନ୍ଧାନ ସମିତିକୁ ପ୍ରାର୍ଥନା କରୁଁ ଯେ, ତାହା ବରୁଣାଇ ପର୍ବତର ଓଡ଼ିଆ ଲିପିର ନକଲ ନେଇ ବିଶେଷ ବିବରଣ ସହିତ ଶୀଘ୍ର ପ୍ରକାଶ କରିବେ ।

ବର୍ତ୍ତମାନ ଯେତେଦୂର ପର୍ଯ୍ୟନ୍ତ ପ୍ରକାଶିତ ହୋଇଅଛି, ଆମ୍ଭେମାନେ କୋଣାର୍କ ମନ୍ଦିରସ୍ଥ ଏକଶିଳା ଲିପିରେ ଅତି ପୁରାତନ ଓଡ଼ିଆ ଲିପି ଦେଖିବାକୁ ପାଉଁ । ଏହା ଶ୍ରୀଯୁକ୍ତ ରାୟ ବାହାଦୁର ମନୋମୋହନ ଚକ୍ରବର୍ତ୍ତୀ M.Aଙ୍କ ଦ୍ୱାରା ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରରେ (*Journal of the Behar and Orissa Research Society*)

ପ୍ରାୟ ଚାରି ବର୍ଷ ପୂର୍ବେ ପ୍ରକାଶିତ ହୋଇଅଛି । ଲିପିଟି କ୍ଷୁଦ୍ର ହେଲେହେଁ ପ୍ରତ୍ନତତ୍ତ୍ୱବିତର ଚକ୍ଷୁରେ ବଡ଼ ମୂଲ୍ୟବାନ ଅଟେ । ତହିଁର ଅକ୍ଷରଗୁଡ଼ିକ ବର୍ତ୍ତମାନ ଓଡ଼ିଆ ଅକ୍ଷରଠାରୁ ବହୁ ପରିମାଣରେ ଭିନ୍ନ ଅଟେ । ଓଡ଼ିଶାର ରାଜା ଲାଙ୍ଗୁଡ଼ା ନରସିଂହ ଦେବଙ୍କଦ୍ୱାରା କୋଣାର୍କ ମନ୍ଦିରଟି ନିର୍ମିତ ହେବା ସମୟରେ ଉକ୍ତ କାର୍ଯ୍ୟରେ ବ୍ୟାପୃତ ଥିବା ରାଜକର୍ମଚାରିମାନଙ୍କର ନାମ ଲିପିରୁ ଜଣାଯାଏ । ଅତଏବ ଲିପିଟି ଖୋଦିତ ହେବାର କାଳ ପ୍ରାୟ ୧୨୬୦ ଖ୍ରୀଷ୍ଟାବ୍ଦ ବୋଲି ନିରୁପିତ ହୋଇଅଛି । ଓଡ଼ିଶାର ଏହି ପ୍ରସିଦ୍ଧ ନରପତି ଦକ୍ଷିଣରେ ସୁଦ୍ଧା ସୀମାଚଳ ନୃସିଂହ ମନ୍ଦିର ନିର୍ମାଣ କରାଇଥିଲେ । ତାହାର ସମୟ ୧୨୬୮ ଖ୍ରୀଷ୍ଟାବ୍ଦ ଅଟେ । ଲିପିଟିର ଦ,ପ,ଭ,କ,ର,ଏ,ବ,ନ, ଇ ପ୍ରଭୃତି ଅକ୍ଷର ଗୁଡ଼ିକର ଆକାର ଓ ଢଙ୍ଗ ସ୍ପଷ୍ଟରୂପେ ଭିନ୍ନ; ଦେବନାଗର ଲିପିର ନିକଟବର୍ତ୍ତୀ ଅଟେ । ବର୍ତ୍ତମାନ ଲିପି ସହିତ ତୁଳନା କଲେ ଦେଖାଯିବ ଯେ, ଏହି ଲିପିରେ-

(୧) ଅକ୍ଷରଗୁଡ଼ିକ ଉପରେ ଦେବନାଗର ପରି ସାଧାରଣତଃ ଏହି କ୍ଷୁଦ୍ର ସରଳ ରେଖା ବିଦ୍ୟମାନ ।

(୨) ସାଧାରଣତଃ ତାହା ଛାଟ ଓ ବକ୍ର, ଭାଗ ବା ପୁଡ଼ାଶୂନ୍ୟ ଅଟେ ।

ଏହାଠାରୁ ଅଧିକ ପ୍ରାଥମିକ ଓଡ଼ିଆ ଲିପି ଆଜିପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ । ପରବର୍ତ୍ତୀ ନରସିଂହ ଦେବଙ୍କର କେତେକ ତାମ୍ରଶାସନ ମିଳି ଅଛି ଓ ପ୍ରକାଶିତ ହୋଇଅଛି ।

ଏହା ପରେ କପିଳେନ୍ଦ୍ରଦେବ ଗଜପତି ଓ ପୁରୁଷୋତ୍ତମଦେବ ଗଜପତିଙ୍କ ସମୟର ଲିପିରେ ବର୍ତ୍ତମାନ ଓଡ଼ିଆ ଲିପି ସହିତ ଅଧିକ ସାମଞ୍ଜସ୍ୟ ଦେଖାଯାଏ । ପୁରୀ ଜଗନ୍ନାଥ ମନ୍ଦିରରେ ଓ ସୀମାଚଳ ନୃସିଂହ ମନ୍ଦିରରେ ଏହି ରାଜାମାନଙ୍କର ଲିପିମାଳା ଯଥେଷ୍ଟ ଦେଖିବାକୁ ମିଳେ । ଉପରୋକ୍ତ ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରରେ ୧୯୧୮ ସମ୍ବତ୍ସର ଡିସେମ୍ବରମାସର ସଂଖ୍ୟାରେ ପୁରୁଷୋତ୍ତମଦେବଙ୍କ ସମୟର ଏକ ଦାନପଟା ପ୍ରକାଶିତ ହୋଇଅଛି । ତାହା କୁଠାର ଆକାରର ତାମ୍ରଫଳକ ଉପରେ ଖୋଦିତ ହୋଇ ଅଛି । ଏହି ତାମ୍ରଶାସନଟିର ଶେଷଭାଗର ଭାଷା ସଂସ୍କୃତ ହେଲେ ସୁଦ୍ଧା ସମଗ୍ର ଓଡ଼ିଆ ଲିପିରେ ଖୋଦିତ ହୋଇଅଛି । ଏହି ଲିପିରୁ ଦେଖାଯିବ ଯେ, ପୂର୍ବ ପରି ଅକ୍ଷରମାନଙ୍କ ଉପରେ ରେଖା ନାହିଁ ଓ ପୁଡ଼ା ବିଦ୍ୟମାନ ଓ କ୍ଷୁଦ୍ର କ୍ଷୁଦ୍ର ଛାଟ ବ୍ୟବହୃତ ହୋଇଅଛି । କିନ୍ତୁ ଢ,ଯ,ମ,ର,ତ,ଉ,ଢ,ଡ଼(ଓଡ଼ା), ଳ ପ୍ରଭୃତି କେତେକ ଅକ୍ଷରର ଆକାର ଭିନ୍ନ ଅଟେ । ଏହି ଲିପି ପଞ୍ଚଦଶ ଶତାବ୍ଦୀର ଅଟେ । କପିଳେନ୍ଦ୍ର ବା କପିଳେଶ୍ୱର ଦେବ ଗଜପତିଙ୍କ ସମୟର ଲିପିର ଗୋଲାକାର ଏହାଠାରୁ ଊଣା ଅଟେ । ତହିଁରେ ଅଧିକ ବକ୍ରାକାର ଦେଖାଯାଏ ।

କେତେକ ଦିନ ହେଲା, ଗଞ୍ଜାମ ଜିଲ୍ଲା ସ୍ଥିତ ଗୁମସର ରାଜ୍ୟର ପୁରାତନ ପ୍ରସିଦ୍ଧ ଭଞ୍ଜବଂଶର ରାଜା ଜୟ ଭଞ୍ଜଙ୍କଦ୍ୱାରା ପ୍ରଦତ୍ତ ଏକ ତାମ୍ରପଟା ଆମ୍ଭର ହସ୍ତଗତ ହୋଇଅଛି । ସେ ରାଜା ରାୟ ଭଞ୍ଜଙ୍କର ପୁତ୍ର ଓ ବୀରଭଞ୍ଜଙ୍କର ପୌତ୍ର ବୋଲି ତାମ୍ରଶାସନରେ ଲିଖିତ

ହୋଇଅଛି । ରାଜା ତାହାଙ୍କଦ୍ୱାରା ବିଜିତ ଓ ପ୍ରତିଷ୍ଠିତ କୋଲାଡ (ବର୍ତ୍ତମାନ କୁଲାଡ) କଟକ ବା ନଗରରୁ ବିଜୟର ତୃତୀୟ ସମ୍ବତ୍ସରରେ ଜ୍ୟେଷ୍ଠ ପୂର୍ଣ୍ଣିମାର ଚନ୍ଦ୍ର ଗ୍ରହଣକାଳରେ ଜଣେ ବ୍ରାହ୍ମଣଙ୍କୁ ଏକ ଗ୍ରାମଦାନ କରିଅଛନ୍ତି । ଓଡ଼ିଶାରେ ଭଞ୍ଜବଂଶୀୟ ରାଜାମାନେ ସୁପ୍ରସିଦ୍ଧ । ଗୁମସର ରାଜାମାନଙ୍କର ରାଜଧାନୀ ପ୍ରଥମେ ପୁରୁଣା ଗୁମସର ଦୁର୍ଗରେ ବିଦ୍ୟମାନ ଥିଲା । ଦେଶୀୟ ଇତିହାସରୁ ଜଣାଯାଏ ଯେ, ପ୍ରତାପ ଭଞ୍ଜ ନାମକ ଜଣେ ରାଜା କନ୍ଧ ଅଧ୍ୟକ୍ଷଙ୍କୁ ପରାଜିତ କରି ତାହାର ପ୍ରାଣ ସଂହାର କରି କୁଲାଡଠାରେ ନୂତନ ଦୁର୍ଗ ସ୍ଥାପନ କଲେ । ଏହା ଦ୍ୱାଦଶ ଶତାବ୍ଦୀରେ ଘଟିଥିଲା । ବୋଧ ହୁଏ, ଏହି ରାଜାହିଁ ତାମ୍ରଶାସନରେ ଜୟ ଭଞ୍ଜ ନାମରେ ପରିଚୟ ଦେଇଅଛନ୍ତି । ତାହାଙ୍କର ଅନ୍ୟ ଏକ ତାମ୍ରଶାସନରେ ସେ ନିଜକୁ ଯଶ ଭଞ୍ଜ ନାମ ଦେଇଅଛନ୍ତି । ଅତଏବ ଏହି ଲିପି ଦ୍ୱାଦଶ ଶତାବ୍ଦୀର ବୋଲି ନିରୂପଣ କରିବାକୁ ହେବ । ଲିପିର ଭାଷା ସଂସ୍କୃତ । ତହିଁର ଅକ୍ଷର ଗୁଡ଼ିକ ହଠାତ୍ ଦେଖିବା ମାତ୍ରକେ ଏକ ବିଶିଷ୍ଟ ପ୍ରକାର ଦେବନାଗର ପରି ଜଣାଯାଏ, କିନ୍ତୁ ଉଚିତ ପରୀକ୍ଷା କରିବାଦ୍ୱାରା ଧରାଯାଏ ଯେ, ତାହା ଅତି ପୁରାତନ ଓଡ଼ିଆ ଲିପି ଅଟେ । ଦେବନାଗର ଲିପି କ୍ରମଶଃ କିପରି ପୁରାତନ ଓଡ଼ିଆ ଲିପିରେ ପରିଣତ ହେଉଥିଲା, ତହିଁରୁ ସ୍ପଷ୍ଟ ଧରାଯାଏ । ଏହି ଲିପିମାଳା ଖୋଦିତ ହେବା ସମୟ ଦେବନାଗର ଲିପିରୁ ପୁରାତନ ଓଡ଼ିଆ ଲିପି ଜାତ ହେବାର ସନ୍ଧିକାଳ ବୋଲିବାକୁ ହେବ । ଓଡ଼ିଶାର ଭଞ୍ଜ ରାଜାମାନଙ୍କର କେତେଗୁଡ଼ିଏ ତାମ୍ରଶାସନ ପ୍ରକାଶିତ ହୋଇଅଛି। ଆମ୍ଭେ ମଧ୍ୟ ସେମାନଙ୍କର ଅନ୍ୟ କେତେଗୋଟି ନୂତନ ତାମ୍ରଶାସନ ପାଇ ପାରିଅଛୁଁ । ସେଗୁଡ଼ିକରେ ବ୍ୟବହୃତ ହୋଇଥିବା ନାଗରାକ୍ଷର ଭିନ୍ନ ଧରଣର ଅଟେ । ସେଗୁଡ଼ିକ ଅବଶ୍ୟ ଦ୍ୱାଦଶ ଶତାବ୍ଦୀ ପୂର୍ବର । କେଶରୀ ବଂଶୀୟ ରାଜାମାନଙ୍କର କେତେକ ଲିପି ଭୁବନେଶ୍ୱରସ୍ଥିତ ଶିବମନ୍ଦିରମାନଙ୍କରେ ନାଗରାକ୍ଷରରେ ଖୋଦିତ ହୋଇଅଛି । ଓଡ଼ିଶାର ରାଜାମାନେ ଓ ସାମନ୍ତରାଜାମାନେ ନିଜ ନିଜର ଦାନପତ୍ର ପବିତ୍ର ସଂସ୍କୃତ ଭାଷାରେ ଲେଖିବା ଅଧିକ ଗୌରବର ବିଷୟ ବୋଲି ମଣୁଥିଲେ ।

ଏହି ଜୟ ଭଞ୍ଜଙ୍କ ତାମ୍ରଶାସନ ଲିପିରୁ ଦେଖାଯିବ ଯେ, ଖ,ଗ,ଘ,ଟ,ଣ,ଥ ପ,ଶ,ଷ,କ୍ଷ ପ୍ରଭୃତି କେତେକ ଅକ୍ଷର ଭୃଣାବସ୍ଥାରୁ ପ୍ରାୟ ବହିର୍ଗତ ହୋଇ ସାରି ଥିଲା ଏବଂ କ, ଜ, ଠ,, ଡ,ଢ,ଦ,ନ,ଭ,ମ,ସ, ହ ପ୍ରଭୃତି ଆହୁରି ଭୃଣାବସ୍ଥାରେହିଁ ଥିଲା । ତାମ୍ରଶାସନଟି Epigraphia Indica ପତ୍ରରେ ପ୍ରକାଶିତ ହେବା ସକାଶେ Government Epigraphist for India ବିଭାଗର କର୍ମଚାରିଙ୍କ ନିକଟକୁ ପ୍ରେରିତ ହୋଇଅଛି ।

ଲିପିଟିର କେତେକ ଅକ୍ଷର ଭୃଣାବସ୍ଥାରୁ ବହିର୍ଗତ ହୋଇ ସାରିଥିବାରୁ ଅନୁମିତ ହୋଇ ପାରେ ଯେ, ତାହାର କେତେକାଳ ପୂର୍ବେ ହିଁ ପୁରାତନ ଓଡ଼ିଆ ଲିପି ସୃଷ୍ଟି ହୋଇଥିଲା । ଉପରୋକ୍ତ ଖ, ଗ, ଘ ପ୍ରଭୃତି ଅକ୍ଷରଗୁଡ଼ିକ ଉପରେ କୌଣସି ରେଖା ନାହିଁ ଓ ତହିଁର ପୁଡାଗୁଡ଼ିକ ଗଠିତ ହୋଇଅଛି, କିନ୍ତୁ କ, ଜ,ଠ, ଡ ପ୍ରଭୃତି ଅକ୍ଷରଗୁଡ଼ିକ ଉପରେ ରେଖାଅଛି

ଓ ସୁଦ୍ଧା ମାନ ଆହୁରି ଗଠିତ ହୋଇ ନାହିଁ । ଉପରୋକ୍ତ କୋଣାର୍କମନ୍ଦିର ଲିପିରେ ସୁଦ୍ଧା ଦେଖାଯିବ ଯେ, ଏହି ପ୍ରକାର ଦୁଇ ଜାତିର ଅକ୍ଷର ବିଦ୍ୟମାନ । ଭିନ୍ନ ଭିନ୍ନ ଅକ୍ଷର ଭିନ୍ନ ଭିନ୍ନ ସମୟରେ ବର୍ତ୍ତମାନ ଆକାର କ୍ରମଶଃ ଧାରଣ କରିଥିଲା ।

ଓଡ଼ିଆ ଲିପି ଯେଉଁ କୁଟିଳ ଲିପିରୁ ଜନ୍ମିଥିବାର କେହି କେହି ଅନୁମାନ କରନ୍ତି, ତାହା କୌଣସି ଏକ ବିଶିଷ୍ଟ ଲିପି ନୁହେଁ, ଦେବନାଗର ଲିପିର ପ୍ରାଦେଶିକ ରୂପାନ୍ତର ମାତ୍ର । ପୁରାତନ ନାଗର ଲିପି ଭାରତବର୍ଷର ବିଭିନ୍ନ ପ୍ରଦେଶରେ, ବିଶେଷତଃ ଉତ୍ତର ଓ ଦକ୍ଷିଣରେ, କିଛି କିଛି ଭିନ୍ନ ଭିନ୍ନ ଆକାର ଧାରଣ କରିଥିଲା । ସମୟକ୍ରମେ ତାହାର ପୂର୍ବ ଆକାର ମଧ କେତେଦୂର ପର୍ଯ୍ୟନ୍ତ ବଦଳୁ ଥିଲା । ଏହି ପ୍ରଭେଦ ସର୍ବଦା ସମସ୍ତ ଲିଖିତ ଭାଷାରେ ଦେଖାଯାଇଥାଏ । ବର୍ତ୍ତମାନ ସୁଦ୍ଧା ଆମ୍ଭର ଓଡ଼ିଆ ଲିପି ଗଞ୍ଜାମ, ପୁରୀ, କଟକ, ସମ୍ବଲପୁର ପ୍ରଭୃତି ସ୍ଥାନରେ କିଛି କିଛି ଭିନ୍ନ ଭାବରେ ଲେଖାଯାଏ । ପୂର୍ବେ କହିଅଛୁଁ ଯେ, ପ୍ରାଚୀନ ବ୍ରାହ୍ମୀ ଲିପି ସହିତ ଆମ୍ଭର ଓଡ଼ିଆ ଲିପିର କୌଣସି ସମ୍ପର୍କ ନାହିଁ । ଦକ୍ଷିଣ ଭାରତର ଅନ୍ୟ କେତେକ ଲିପି ସେହି ଲିପିରୁ ଜାତ ହୋଇ ଥାଇ ପାରେ । ମାତ୍ର ତାହା ଭିନ୍ନ କଥା । ଭଞ୍ଜବଂଶୀୟ ରାଜାମାନଙ୍କର ପ୍ରକାଶିତ ତାମ୍ରଶାସନଗୁଡ଼ିକ ନାଗର ଲିପିରେ ଖୋଦିତ ଅଟେ । ଏହାକୁ ହିଁ କେହି କେହି କୁଟିଳ ଲିପି ବୋଲି କହିଥାନ୍ତି ।

ଅତଏବ ଅନ୍ୟ କୌଣସି ବିଶ୍ୱାସଯୋଗ୍ୟ ଦୃଢ଼ ପ୍ରମାଣ ପାଇବା ପର୍ଯ୍ୟନ୍ତ ଓଡ଼ିଆ ଲିପି ଦେବନାଗର ଲିପିରୁ ପ୍ରଥମତଃ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ସୃଷ୍ଟି ହୋଇଥିବାର ନିରୂପଣ କରାଯାଉଅଛି ।



୧୬

# ଓଡ଼ିଆ ବର୍ଣ୍ଣ ବିଚାରର ସଂକ୍ଷିପ୍ତ ସୂଚନା

## ନୀଳକଣ୍ଠ ଦାସ

ବର୍ଣ୍ଣ କହିଲେ ଲିଖିତ ଅକ୍ଷର ଓ ଅକ୍ଷରର ଉଚ୍ଚାରଣ ଉଭୟ ବୁଝାଯାଏ । ମାତ୍ର ଭଲକରି ବୁଝିଲେ ଦେଖାଯିବ ମୁଖର ଉଚ୍ଚାରଣ ହିଁ ବର୍ଣ୍ଣ । ଲିଖିତ ଅକ୍ଷର ସଙ୍ଗେ ତାହାର କୌଣସି ଦୃଷ୍ଟି ବା ସାକ୍ଷାତ୍ ସମ୍ବନ୍ଧ ନାହିଁ । ଲିଖିତ ଅକ୍ଷର ସଙ୍ଗେ ତାହାର କୌଣସି ଦୃଷ୍ଟି ବା ସାକ୍ଷାତ୍ ସମ୍ବନ୍ଧ ନାହିଁ । ଲିଖିତ ଅକ୍ଷରରେ ଉଚ୍ଚାରଣ ନ ଥାଏ । ଉଚ୍ଚାରଣ ଲୋକମୁଖରେ । ସେହି ଲୋକମୁଖର ଉଚ୍ଚାରଣ ସବୁ ବ୍ୟକ୍ତିଙ୍କ ମୁଖରେ ସମାନ କରିବାପାଇଁ ବର୍ଣ୍ଣର ସଙ୍କେତ ସ୍ୱରୂପ ଲିଖିତ ଅକ୍ଷରର ସୃଷ୍ଟି । ଗୋଟିଏ ଗୋଟିଏ ଅକ୍ଷରକୁ ଗୋଟିଏ ଗୋଟିଏ ବିଶିଷ୍ଟ ଉଚ୍ଚାରଣରେ ନାମିତ କରି ସମସ୍ତେ ସେହି ଲିଖିତ ଚିହ୍ନ ଦେଖିଲେ, ସେହି ଉଚ୍ଚାରଣ ପ୍ରକାଶ କରିବେ ବୋଲି ଧରି ନିଆଯାଏ । ଭାଷାର ସାର୍ବଜନୀନତା ଓ ସ୍ଥାୟିତ୍ୱ ଦୃଢ଼ହୁଏ । ଗୋଟିଏ ଗୋଟିଏ ଅକ୍ଷର ଗୋଟିଏ ଗୋଟିଏ ଉଚ୍ଚାରଣ ନିର୍ଦ୍ଦେଶ କରେ । ଉଚ୍ଚାରଣହିଁ ସେ ଅକ୍ଷରର ପ୍ରାଣ । ଉଚ୍ଚାରଣରେ ବ୍ୟତିକ୍ରମ ଘଟିଲେ, ଏକ ଅକ୍ଷର ବିଭିନ୍ନ ମୁଖରେ ବିଭିନ୍ନ ଉଚ୍ଚାରଣ ପାଇଲେ, ଭାଷାର ବ୍ୟାପକତା ବିଶୃଙ୍ଖଳ ଓ ସ୍ଥିତି ସନ୍ଦେହାପନ୍ନ ହୁଏ । ସେଥିପାଇଁ କାଳକ୍ରମେ ପଣ୍ଡିତମାନେ ଉଚ୍ଚାରିତ ବର୍ଣ୍ଣ ଓ ଲିଖିତ ଅକ୍ଷର ମଧ୍ୟରେ କୌଣସି ପ୍ରଭେଦ ରଖିପାରି ନାହାନ୍ତି । ମୁଖର ଉଚ୍ଚାରଣ ଓ ଲେଖନର ବିକାଶ ଅନେକଙ୍କୁ ଏକ ବୋଲି ବୋଧ ହେଉଅଛି । ପାଣିନି ପ୍ରଭୃତି ବ୍ୟାକରଣର ସୂତ୍ରକାରମାନେ ଲିଖିତ ଅକ୍ଷର ଧରି ବ୍ୟାକରଣ ଲେଖି ନ ଥିଲେ । ମୁଖର ଉଚ୍ଚାରଣହିଁ ତାଙ୍କ ବ୍ୟାକରଣର ସର୍ବସ୍ୱ । ମାତ୍ର ପରବର୍ତ୍ତି କାଳର ବୈୟାକରଣ ବ୍ୟାକରଣ ଟୀକାରେ ହେଳାରେ ରଖିଗଲେ-

"ଅଜଳତୁମ୍ବିକା ନ୍ୟାୟେନ ରେଫସ୍ୟୋର୍ଦ୍ଧ୍ୱ ଗମନଂ"

"ଏକ ବିନ୍ଦୁରନୁସ୍ୱାରଃ" । ଇତ୍ୟାଦି ।

ମାତ୍ର ଏସବୁ ପ୍ରମାଦ ନିମନ୍ତେ ମୂଳର ସୂତ୍ରକାର, ବୃତ୍ତିକାର, ଏମନ୍ତ କି ଭାଷ୍ୟକାର, କାହାରି ଲେଖାରେ ଲେଶମାତ୍ର ଅବକାଶ ନାହିଁ । "ରେଫ" ଅର୍ଥାତ୍ 'ର' ମନୁଷ୍ୟର ସ୍ୱରଯନ୍ତ୍ରରୁ ବାହାରିବ । ଜଳତୁମ୍ବିକାପରି ତାହା ସ୍ୱରଯନ୍ତ୍ରରେ ବା ଉଠିଯିବ କିପରି ?

ଅନୁସ୍ୱାରଗୋଟିଏ ଅନୁନାସିକ ଉଚ୍ଚାରଣ । ତାହା ସ୍ୱରଯନ୍ତ୍ରରେ ଗୋଟିଏ ବିନ୍ଦୁ ନୁହେଁ । ପୁଣି ଦେବନାଗର ଅକ୍ଷରରେ ତାହା ବିନ୍ଦୁ । ବଂଗଳାରେ ଆଉ ଗୋଟିଏ ଲାଞ୍ଜ ଅଛି । ତେବେ ବଙ୍ଗାଳୀଙ୍କ ଅନୁସ୍ୱାର କ'ଣ ସଂସ୍କୃତଭାଷୀଙ୍କ ଅନୁସ୍ୱାରଠାରୁ ଭିନ୍ନ ? ଏସବୁ ପ୍ରମାଦର ବିଶେଷ ଆଲୋଚନା ନିଷ୍ପ୍ରୟୋଜନ । କ, ମ, ଳ, ଏହି ତିନୋଟି ଅକ୍ଷର ସଙ୍ଗେ ପଦ୍ମଫୁଲର ଯେ ସମ୍ବନ୍ଧ, ଅକ୍ଷର ସଂଗେ ବର୍ଣ୍ଣର ପ୍ରାୟ ସେହିପରି ସଂମ୍ବନ୍ଧ । କ,ମ,ଳ, ଏହି ତିନୋଟି ଅକ୍ଷରରେ ଆମୋଦ ନାଇ । ସେଥିରେ ଚାରୁକିଞ୍ଜଳ୍କରୁଚି ବିକାଶ ପାଏନାହିଁ । ସେହିପରି ଲିଖିତ ଅକ୍ଷରରେ ବର୍ଣ୍ଣର ଉଚ୍ଚାରଣ ବା ଉଚ୍ଚାରଣର ପ୍ରାଣ ଥାଇ ନ ପାରେ । ଅତଏବ ବର୍ଣ୍ଣର ବିଚାର କଲାବେଳେ ଉଚ୍ଚାରଣ ହିଁ ବିଚାର୍ଯ୍ୟ । ଲିଖିତ ଅକ୍ଷର ଚିହ୍ନ ମାତ୍ର । ତାହାର ସେତିକି ମର୍ଯ୍ୟାଦା ପାଇବା ଉଚିତ ।

ଭାଷାର ଆଦି ତେବେ କେଉଁଠାରେ ? ଅବଶ୍ୟ ଲେଖନରେ ନୁହେଁ, ଉଚ୍ଚାରଣରେ । ଲେଖନ ପଦ୍ଧତି ଲୋକମୁଖ ଉଚ୍ଚାରଣର ଅନୁସରଣ କରେ ମାତ୍ର । ଏହି କ୍ରମରେ ଭାଷାର ଅକ୍ଷର ନିୟମ ସ୍ଥିର ହେଲାପରେ ଭାଷାର ସାର୍ବଜନୀନତା ରଖିବାପାଇଁ ଉଚ୍ଚାରଣକୁ କୌଣସି ଆଦର୍ଶରେ ନିବଦ୍ଧ କରିବାପାଇଁ ଲୋକେ ହୁଏତ ଲିଖିତ ଅକ୍ଷରରୁ ଉଚ୍ଚାରଣ ଶିଖିଥିବେ । ସଂସ୍କୃତଭାଷାରେ ଏହି ନିୟମରେ ଲୋକେ ସର୍ବଦା ବର୍ଣ୍ଣର ଲେଖନ ବିକାଶରୁ ତାହାର ନିର୍ଦ୍ଦିଷ୍ଟ ଉଚ୍ଚାରଣ ଶିଖୁ ଅଛନ୍ତି । କୌଣସି କଥିତ ଭାଷା ବିଦେଶୀ ଲୋକ ଶିଖିଲାବେଳେ ସେହିପରି କରିବେ । ତଥାପି କଥିତ ବା ପ୍ରାକୃତ ଭାଷାମାନଙ୍କରେ ଲୋକମୁଖର ଉଚ୍ଚାରଣରେ ବହୁ ବିଶେଷତ୍ୱ ଅଛି । ଓଡ଼ିଆ, ବଙ୍ଗଳା ପ୍ରଭୃତି ପ୍ରାକୃତ ଭାଷାର ସଂସ୍କୃତ ସଙ୍ଗେ ନିତ୍ୟ ସଂବଂଧ । ହେଲେହେଁ ଏହି ପ୍ରାକୃତ ଭାଷାମାନଙ୍କରେ ଲୋକମୁଖରେ ଉଚ୍ଚାରଣହିଁ ବର୍ଣ-ବିନ୍ୟାସ ବା ଅକ୍ଷର-ଗଠନର ଆଦର୍ଶ ହେବା ଉଚିତ ବୋଲି ମନେହୁଏ । ସଂସ୍କୃତ ଭାଷାର ଦୃଢ଼ବଦ୍ଧ ପଦ୍ଧତି ଅନେକେ ଏ କ୍ଷେତ୍ରରେ ଯଥା ଅଯଥା ଅନୁକରଣ କରନ୍ତି । ସେପରି ଅନୁକରଣ କରିବାରେ ଜାତିର ପ୍ରତ୍ନଜୀବନପ୍ରତି ପ୍ରଶଂସନୀୟ ପ୍ରୀତି ବା ଅନୁରାଗ ଥାଇପାରେ । କିନ୍ତୁ ସମୀଚୀନତା ଅଛି କି ନା, ଏହା ବିଶେଷରେ ଆଲୋଚନୀୟ ।

ଏ ଆଲୋଚନାରେ ପ୍ରବେଶ କରିବା ପୂର୍ବରୁ ସଂସ୍କୃତଭାଷା ତଥା ତାହାର ବର୍ଣ୍ଣ-ବିନ୍ୟାସ ପଦ୍ଧତିର ପ୍ରକୃତି, ସଂସ୍କୃତ ଓ ପ୍ରାକୃତର ସମ୍ପର୍କ ପ୍ରତି ପ୍ରଣିଧାନ ଦେବାକୁ ହେବ । ଆଦିମ ଅର୍ଥରେ ବୁଝିଲେ 'ସଂସ୍କୃତ'ର ଅର୍ଥ 'ସମ୍+କୃତ୍' ଅର୍ଥାତ୍, ଏକତ୍ରୀକୃତ ଏବଂ ସୂକ୍ଷ୍ମ ପ୍ରୟୋଗରେ ସଂସ୍କୃତର ଅର୍ଥ ପରିଷ୍କୃତ ବା ନବୀନୀକୃତ । ଏହି ଶବ୍ଦାର୍ଥରୁ ପ୍ରତୀତ ହୁଏ, ସଂସ୍କୃତ କଦାପି କୁତ୍ରାପି ଆଦିମ କଥିତ ଭାଷା ନଥିଲା । ପ୍ରାକୃତ ଭାଷାହିଁ ସର୍ବଦା କଥିତ ଭାଷା । ପାଳି ହେଉ, ମାଗଧୀ ହେଉ, ଶୌରସେନୀ ହେଉ, ପୈଶାଚୀ ହେଉ, ଓଡ଼ିଆ ବା ବଂଗଳା ହେଉ, ସମସ୍ତେ ପ୍ରାକୃତ, ଅର୍ଥାତ୍, ପ୍ରକୃତି ବା ଲୋକସାଧାରଣଙ୍କ ଦ୍ୱାରା ବ୍ୟବହୃତ ।

ପାଳି, ଭାରତର ପ୍ରାଚୀନତମ ପ୍ରାକୃତ ଭାଷା । ଅବଶ୍ୟ ଆଦିମ ବୈଦିକ କାଳରେ

ପ୍ରାକୃତ ଭାଷା କିପରି ଥିଲା, ତାହା ଗବେଷଣାପର ତତ୍ତ୍ୱସନ୍ଧିତ୍ସୁମାନଙ୍କର ଅନୁସନ୍ଧେୟ। ସମ୍ଭବତଃ ତାହା ପାଲିଠାରୁ କିଞ୍ଚିତ୍ ଭିନ୍ନ ଥିଲା। ମାତ୍ର ଭେଦ ବଡ଼ ବିଶେଷ ନ ଥିବ। ପୁଣି ଆଧୁନିକ ସଂସ୍କୃତଭାଷା ସୃଷ୍ଟିର ନିତାନ୍ତ ପୂର୍ବବର୍ତ୍ତି ନ ହେଉ ପଛକେ ପାଲି କଦାପି ବହୁପରିମାଣରେ ତା'ର ପରବର୍ତ୍ତି ଭାଷା ନୁହେଁ। ଆଧୁନିକ ସଂସ୍କୃତଭାଷାର ବ୍ୟବହାର ରାମାୟଣ, ମହାଭାରତ କାଳରୁ ପ୍ରାଚୀନ ନୁହେଁ। କିନ୍ତୁ ସମସ୍ତେ ଜାଣନ୍ତି, ବୁଦ୍ଧଦେବଙ୍କ ଜନ୍ମବେଳକୁ ପାଲି ଭାରତୀୟ ଆର୍ଯ୍ୟମାନଙ୍କର କଥିତ ଭାଷା ଥିଲା। ତେବେ ପାଲି ସଂସ୍କୃତଠାରୁ ନିତାନ୍ତ ନବୀନ ହେବ କିପରି ? ସମସ୍ତ ଦର୍ଶନ, କାବ୍ୟ, ପୁରାଣ, ନାଟକାଦି ବୁଦ୍ଧ-କାଳ ପରେ ଲିଖିତ ହୋଇଥିବାର ପ୍ରମାଣ ମିଳେ। ଅତି ପ୍ରାଚୀନ ପୁରାଣମାନଙ୍କରେ ମଧ ମଗଧର ନନ୍ଦବଂଶର ଉଲ୍ଲେଖ ଅଛି। ବୁଦ୍ଧ-କାଳର ପ୍ରାୟ ତିନିଶହ ବର୍ଷପରେ ମଗଧର ନନ୍ଦବଂଶ। ଏହିପରି ପାଲିଠାରୁ ସଂସ୍କୃତ ଗ୍ରନ୍ଥମାନଙ୍କର ଆଧୁନିକତା ସମ୍ବନ୍ଧରେ ବହୁ ପ୍ରମାଣ ଉଲ୍ଲେଖ କରାଯାଇପାରେ।

ଆଉ ଗୋଟିଏ କଥା। ସଂସ୍କୃତ ନାଟକମାନଙ୍କରେ ପ୍ରାକୃତହିଁ ଲୋକସାଧାରଣର ଭାଷା ଏବଂ ସେ ପ୍ରାକୃତ, ପାଲି ନୁହେଁ। ପାଲି ତୁଳନାରେ ଆଧୁନିକ ମାଗଧୀ, ପୈଶାଚୀ ପ୍ରଭୃତି ବହୁବିଧ ପ୍ରାଦେଶିକ ପ୍ରାକୃତ ଭାଷାର ଉଲ୍ଲେଖ ନାଟକମାନଙ୍କରେ ଦେଖାଯାଏ। ବୋଧହୁଏ, ଯେତେବେଳେ ଭାରତରେ ଆର୍ଯଜାତି ମୁଷ୍ଟିମେୟ ବ୍ରହ୍ମାବର୍ତ୍ତ ତଥା ସ୍ୱଳ୍ପ-ବିସ୍ତୃତ ବ୍ରହ୍ମର୍ଷି ଦେଶର ସୀମାଲଙ୍ଘନ କରି ବହୁ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ବ୍ୟାପ୍ତ ହେଲା ସେତେବେଳେ ଏକ ପ୍ରାକୃତ ଭାଷା ସ୍ୱାଭାବତଃ ପ୍ରାଦେଶିକତା ଓ ବିଭିନ୍ନ ଜାତୀୟ ଲୋକ ସଂସ୍ରବ ହେତୁରୁ ବହୁବିଧ ଭାଷାରେ ପରିଣତ ହେବାକୁ ଲାଗିଲା ଏବଂ ଫଳରେ ଆର୍ଯର ସମୂହ-ଜାତୀୟତା ବିଚ୍ଛିନ୍ନ ହେବାର ଆଶଙ୍କା ହେଲା। ସେତିକିବେଳେ ମନୀଷୀମାନେ ଜାତୀୟ ଭାଷା ଓ ଜାତୀୟ ସାହିତ୍ୟ ସୂତ୍ରରେ ଆର୍ଯଜାତୀୟତା ସଂରକ୍ଷଣ କରିବାକୁ ପ୍ରୟାସ କରି ଦୃଢ଼ ନିୟମବଦ୍ଧ ସଂସ୍କୃତ ଭାଷାର ସୃଷ୍ଟିକଲେ। ସେହି ସଂସ୍କୃତ ଭାଷାହିଁ ଏପର୍ଯ୍ୟନ୍ତ ଭାରତ ଭୂମିରେ ଆର୍ଯର ମହାଜାତୀୟ ଭାଷାରୂପେ ପ୍ରତିଷ୍ଠା ପାଉଅଛି। କାହିଁ ମାଲବାରର ଶଙ୍କରାଚାର୍ଯ୍ୟ, କାହିଁ କାଶ୍ମୀରର କଲ୍ହନ, କାହିଁ ବା ଉତ୍କଳର ବିଶ୍ୱନାଥ, କାହିଁ ବା କଲ୍ୟାଣର ବିଲ୍ହଣ-ସମସ୍ତେ ଏହି ସଂସ୍କୃତ ଭାଷାକୁ ନିଜର ଜାତୀୟ ଭାଷା ମଣି ତହିଁରେ ଗ୍ରନ୍ଥମାନ ଲେଖିଯାଇ ଅଛନ୍ତି।

ସଂସ୍କୃତଭାଷାର ଏ ପ୍ରକୃତି ବୁଝିଲେ ତାହାର ନିର୍ଦ୍ଦିଷ୍ଟ ଅପରିବର୍ତ୍ତନୀୟ ବର୍ଣ୍ଣାକ୍ଷର ନିୟମ ବୁଝିବାରେ ଆଉ କିଛି ଅସୁବିଧା ନାହିଁ। ସଂସ୍କୃତକୁ ଦେବଭାଷା କହନ୍ତି। ବାସ୍ତବିକ ଏହା ଅଲୌକିକ ଅପୌରୁଷେୟ ଦେବଭାଷା। ଲୋକମୁଖରେ ଏ ଭାଷାର ଆଦି ବିକାଶ ନୁହେଁ, ଏବଂ ଏହା କଦାପି ଲୋକସାଧାରଣର ଭାଷା ହୋଇ ନ ପାରେ। ନିର୍ଦ୍ଦିଷ୍ଟ ନିୟମ ଧରି ଲୋକ ସଂସ୍କୃତ ଭାଷାର ବର୍ଣ୍ଣ-ବିକାଶ ଶିଖି ଆସିଅଛି ମାତ୍ର। ପୁଣି ସଂସ୍କୃତ ଭାଷାର ବର୍ଣ୍ଣ-ନିୟମ ଓ ବିକାଶ-ପଦ୍ଧତି ଅତ୍ୟନ୍ତ ଜଟିଳ ଏବଂ ନିୟମବଦ୍ଧ। ଗୋଟିଏ ମହାଜାତିକୁ

ଗୋଟିଏ ଭାଷା ସୂତ୍ରରେ ବାନ୍ଧି ରଖିବାର ଉଦ୍ୟମ ବେଳେ ଭାଷାଟି ଏପରି ନ ହୋଇ ଆଉ କଅଣ ହୋଇପାରେ ? ପୁଣି ଏହାର ଅନ୍ୟତର କାରଣ ମଧ୍ୟ ଅଛି ।

ଭାରତ ସର୍ବଦା ପ୍ରାଚୀନତାର ଭକ୍ତ । ପ୍ରାଚୀନତା ମଧ୍ୟରେ ରହି ପୁରାଣ ପ୍ରୀତିର ପାବନ ମହନୀୟ ଅନୁଭୂତି ମଧ୍ୟରେ ଭାରତ ସର୍ବଦା ଜୀବନର ଭୂୟୋବିକାଶ କରିଅଛି । ଯାହା ପ୍ରାଚୀନ, ଭାରତବାସୀ ପକ୍ଷରେ ତାହା ଅଲଙ୍ଘନୀୟ ପରମ ପ୍ରମାଣ । ସଂସ୍କୃତ ଭାଷା ସୃଷ୍ଟିର ବହୁ ପୂର୍ବରୁ ବେଦ, ଏବଂ ସେହି ବେଦର ଭାଷା କଳ୍ପିତ ସଂସ୍କୃତଭାଷାର ଆଦର୍ଶ ହୋଇଥିବା ସ୍ୱାଭାବିକ । ଅବଶ୍ୟ ବୈଦିକ କାଳର ପ୍ରାକୃତ ବା ଲୋକମୁଖର ଭାଷା ଆଦର୍ଶ ହୋଇଥିଲେ ସଂସ୍କୃତ ଭାଷାର ପ୍ରକୃତି କଅଣ ହୋଇଥାଆନ୍ତା ତାହା ଆଜି କହିହେବ ନାହିଁ । କିନ୍ତୁ ବୈଦିକ କାଳର କଥିତ ଭାଷା ସେତେବେଳେ ନ ଥିଲା । ଥିଲା କେବଳ ଶ୍ରୁତି-ପରାମ୍ପରାଲବ୍ଧ ବେଦ, ବା ବୈଦିକ ସ୍ତବସବୁ । ସେସବୁ ସ୍ତବ, ସଂଗୀତ; ଏବଂ ସେଥିରେ ହ୍ରସ୍ୱ ଦୀର୍ଘ ବିସର୍ଗାଦିର ପ୍ରାଚୁର୍ଯ୍ୟ ସ୍ୱାଭାବିକ । ଫଳତଃ ସେହି ଅନୁକ୍ରମରେ ବର୍ଣ୍ଣ -ବୈଭବମୟ, ସ୍ୱରସଙ୍ଗୀତସଂକୁଳ ସଂସ୍କୃତଭାଷାର ସୃଷ୍ଟି । ଲୋକମୁଖର କଥିତ ପ୍ରାକୃତଭାଷା ସ୍ୱରନିୟମାଦିରେ ସଂସ୍କୃତ ସମାନ ହୋଇ ନ ପାରେ । ପ୍ରାଚୀନତମ ସଂସ୍କୃତର ସମସାମୟିକ ପାଲିଭାଷାରେ ମଧ୍ୟ ଏହା ନ ଥିଲା । ଯେଉଁମାନେ ପାଲିଭାଷା ଆଲୋଚନା କରନ୍ତି, ସେମାନେ ଜାଣିଥିବେ ପାଲିଭାଷାରେ ବର୍ଣ୍ଣସଂଖ୍ୟା ଏକଚାଳିଶ । ବିସର୍ଗାଦିର କଥା ଦୂରେ ଥାଉ, ଋ, ଌ, ଐ, ଔ, ଏହି ସ୍ୱରମାନଙ୍କର ମଧ୍ୟ ଭାଷାରେ ସ୍ଥାନ ନାଇ । ସମାସ ଓ ସନ୍ଧି ପ୍ରଭୃତି ଅତି ସରଳ ଓ ସ୍ୱାଭାବିକ । ସେ କାଳର ପ୍ରାକୃତ ପାଲିଭାଷାର 'ଐ' ପରିବର୍ତ୍ତରେ 'ଅଇ' ଓ 'ଔ' ପରିବର୍ତ୍ତରେ 'ଅଉ' ପ୍ରଭୃତିର ବ୍ୟବହାର ଦେଖିଲେ ଆଜି ଆମ୍ଭମାନଙ୍କର ପ୍ରଚଳିତ ପ୍ରାକୃତ ଓଡ଼ିଆ ଭାଷାର କଥା ସ୍ୱତଃ ମନେପଡ଼େ ।

ଓଡ଼ିଆ ଭାଷାର ବର୍ଣ୍ଣ ବିଚାର ସଂବଧରେ କିଛି କହିବାକୁ ଗଲାବେଳେ ଆଉ ଗୋଟିଏ ପ୍ରମାଦର କଥା ସ୍ପଷ୍ଟ ଉଲ୍ଲେଖ କରି ରଖିବା ଅସଙ୍ଗତ ନୁହେଁ । ଅନେକ ଗତାନୁଗତିକ-ନ୍ୟାୟରେ ବୁଝନ୍ତି, ସଂସ୍କୃତ ହିଁ ଆର୍ଯ୍ୟର ମୂଳଭାଷା । ପ୍ରାକୃତ ସବୁ ତାହାର ବିକୃତି । ଏହା ଆଜି ନୁହେଁ, ଅନେକ ଦିନରୁ ଭାରତବାସୀ ବୁଝି ଆସୁଅଛନ୍ତି । ବାସ୍ତବିକ ଅନେକ ପଣ୍ଡିତଙ୍କର ଏହାହିଁ ଧାରଣା ଥିଲା, ଅପୌରୁଷେୟ ବେଦର ଭାଷାରୁ ଦେବଭାଷା ସଂସ୍କୃତର ଉତ୍ପତ୍ତି । ସେ ଭାଷାକୁ ଭକ୍ତି କରିବାହିଁ ମାନବର କାର୍ଯ୍ୟ । ତାହାର ମୂଳ ପ୍ରକୃତି ବିଶ୍ଳେଷଣ ସମ୍ବନ୍ଧରେ ପ୍ରଶ୍ନ କରିବ କିଏ ? ପୁଣି ଭାରତର ପ୍ରାଚୀନ ଜାତୀୟ ସାହିତ୍ୟରେ ପ୍ରାକୃତ ଭାଷାର ବା ସ୍ଥାନ କାହିଁ ? ଭାରତଗୌରବ ବୁଦ୍ଧଦେବ ସେହି ଭାଷା ବ୍ୟବହାର କରିଥିବାରୁ ସମ୍ଭବତଃ ଜନ୍ମଭୂମିରେ ଅନାଦୃତ ହୋଇଅଛନ୍ତି । ଆଉମାନଙ୍କ କଥା ଦୂରେ ଥାଉ, ସ୍ୱୟଂ ପ୍ରାକୃତବ୍ୟାକରଣକାର କହି ଅଛନ୍ତି -

"ପ୍ରକୃତତିତସ୍ତୁସଂସ୍କୃତେର୍ବିକୃତିଃ ବିକୃତିଃ ପ୍ରାକୃତୀ ମତା"

ଅର୍ଥାତ୍, ପ୍ରକୃତି, ଅର୍ଥାତ୍ ଲୋକସାଧାରଣଙ୍କ ମୁଖରେ ସଂସ୍କୃତର ଯେ ବିକୃତି ହେଲା, ତାହାହିଁ ପ୍ରାକୃତଭାଷା । ଏହି ଧାରଣାର ବଶବର୍ତ୍ତୀ ହେଲେ, କଥିତଭାଷା ଯାହାହେଉ, ତାହାର ଲେଖନ ଉଚ୍ଚାରଣ ମୁଖଭଙ୍ଗୀ ପ୍ରଭୃତିରେ ସଂସ୍କୃତର ଅନୁକରଣ କରି ପଣ୍ଡିତଂମନ୍ୟତାରେ ସ୍ଫୀତ ହେବା ଲୋକପକ୍ଷରେ ସ୍ୱାଭାବିକ । ଭାରତ ସମାଜର ଅତି ନିୟମବଦ୍ଧ ଜାତିବିଭାଗ ସଙ୍ଗେ ଏ ଅନୁଭବଟି ମଧ୍ୟ ଖାପ ଖାଉଅଛି ଏବଂ ଫଳରେ କେବଳ କେତେକ ଉଚ୍ଚଜାତିଙ୍କ ମଧ୍ୟରେ ବିଦ୍ୟା ଓ ଶାସ୍ତ୍ର-ଚର୍ଚ୍ଚାଦି ସୀମାବଦ୍ଧ ହୋଇ ରହିଅଛି । ଆଜି ଯେଉଁମାନେ ପ୍ରାକୃତ ଭାଷାର ପ୍ରକୃତି ନ ବୁଝି ସଂସ୍କୃତର ମୂଳ ବିଶ୍ଳେଷଣ ପ୍ରତି ସମ୍ଭବତଃ ପାରମ୍ପର୍ଯ୍ୟ ଉକ୍ତି ପ୍ରଭାବରେ ପରାଙ୍ମୁଖ ହୋଇ ସେହି ଗତାନୁଗତିକ ନ୍ୟାୟରେ ଚାଲୁଅଛନ୍ତି, ସେମାନଙ୍କ ବିଚାରରେ ମୌଳିକତାର ଏକାନ୍ତ ଅଭାବ ଦେଖି କେବଳ ବ୍ୟଥିତ ହେବାକୁ ହୁଏ ।

ଓଡ଼ିଆ, ପ୍ରାକୃତ ବା ଉତ୍କଳ ସାଧାରଣର କଥିତଭାଷା । ଅତଏବ ଏହାର ବର୍ଣ୍ଣବିନ୍ୟାସ ସର୍ବଦା ଲୋକମୁଖରୁ ଗୃହୀତ ହେବ । ଅକ୍ଷରର ଉଚ୍ଚାରଣ ମଧ୍ୟ ଲୋକମୁଖ ଉଚ୍ଚାରଣର ଅନୁରୂପ ହେବା ଉଚିତ । ତାହା ନ ହେଲେ ଭାଷାର ଜୀବନ, ଶକ୍ତି ଓ ବର୍ଦ୍ଧିଷ୍ଣୁତା ପ୍ରତିବଦ୍ଧ ହେବାର ଆଶଙ୍କା ଅଛି । ସଂସ୍କୃତ ଭାଷାର ଉଚ୍ଚାରଣ ନିୟମରେ ଓଡ଼ିଆର ବର୍ଣ୍ଣବିନ୍ୟାସ କଲେ ଆମ୍ଭମାନଙ୍କର ଉଚ୍ଚାରିତ ଭାଷା ଲୋକରେ ଦୁରଧିଗମ୍ୟ ହେବ । ପକ୍ଷାନ୍ତରେ ଆମ୍ଭମାନଙ୍କର ଲିଖିତ ଭାଷା ଲୋକର ଉଚ୍ଚାରଣରେ ଉଚ୍ଚାରିତ ନ ହେଲେ ତାହା ଯେ କେବଳ ଜାତୀୟ ଭାଷା ନ ହେବ ଏମନ୍ତ ନୁହେଁ, ଭାଷାର ସ୍ଥାୟିତ୍ୱ ଓ ସାର୍ବଜନୀନତା ବିନଷ୍ଟ ହେବ । କୌଣସି ବିଦେଶୀ ଆମ୍ଭ ଭାଷା ଶିଖିପାରିବେ ନାହିଁ । ଶିଖିଲେ ମଧ୍ୟ ଉଚ୍ଚାରଣ ଦୋଷରୁ ଆମ୍ଭମାନଙ୍କ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରିପାରିବେ ନାହିଁ । ଆମ୍ଭମାନଙ୍କର ସୁପରିଚିତ ଇଂରାଜୀ ଭାଷାରେ ଏ ଦୁଃସହ ଦୋଷ ସ୍ପଷ୍ଟ ଦେଖାଯାଏ । ସେଥିପାଇଁ ସେମାନେ ଅଭିଧାନରେ ବନାନ ଲେଖିସାରି ପୁଣି ଗୋଟିଏ ଉଚ୍ଚାରଣ ଚିହ୍ନାଇଥାନ୍ତି, ଏବଂ ଏତେକାଳ ପ୍ରଚଳନରେ ମଧ୍ୟ ଏହି ଅସୁବିଧା ଦୂରକରିବା ପାଇଁ ଅକ୍ଷର ନିୟମକୁ ଲୋକମୁଖର ଉଚ୍ଚାରଣ ସଂଗେ ସମାନ କରିବାପାଇଁ ଆଜି ବିଲାତରେ କେତେକ ଲୋକଙ୍କର ତୀବ୍ର ଉଦ୍ୟମ । ଆମେରିକା ଏହା ଏକପ୍ରକାର କରି ସାରିଅଛି । ବାସ୍ତବିକ ତାହା ନ ହେଲେ ଗୋଟିଏ ପ୍ରଚଳିତ ଭାଷା ଜାତୀୟ ଭାଷା ହେବ କିପରି ? ଓଡ଼ିଆର ଲେଖନ ଉଚ୍ଚାରଣ ଭିନ୍ନହେଲେ ଲିଖିତ ସାହିତ୍ୟ ଆମ୍ଭମାନଙ୍କର ଜାତୀୟ ସାହିତ୍ୟର କାର୍ଯ୍ୟ କରିବ କିପରି ?

ଓଡ଼ିଆଭାଷାର ସଂସ୍କୃତ ଭାଷା ସଙ୍ଗେ ସମ୍ବନ୍ଧ ଅଛି । କିନ୍ତୁ ଓଡ଼ିଆ ବ୍ୟବହାରରେ, ପଦବିନ୍ୟାସରେ ତଥା ଉଚ୍ଚାରଣରେ – କାହିଁରେ ସଂସ୍କୃତ ନୁହେଁ । ଦିନଥିଲା ଯେତେବେଳେ ସଂସ୍କୃତଭାଷା କଳ୍ପିତ, ସୁଚିନ୍ତିତ ଜାତୀୟ ଭାଷା ଥିବାରୁ ରାଜଦରବାର ଓ ପଣ୍ଡିତ ସଭାଠାରୁ ମୁଖ୍ୟ ବ୍ୟକ୍ତିମାନଙ୍କର କଥୋପକଥନରେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଶିକ୍ଷା, ସଭ୍ୟତା ଓ ଶାସ୍ତ୍ରାଲୋଚନା ସେତେବେଳେ କେତେକ ଉଚ୍ଚଶ୍ରେଣୀୟ ଲୋକମାନଙ୍କ ମଧ୍ୟରେ

ମାତ୍ର ସୀମାବଦ୍ଧ ଥିଲା ଏବଂ ଲୋକସାଧାରଣର ଆଚାର ବ୍ୟବହାର, ପ୍ରକ୍ରିୟା ପଦ୍ଧତି, ଶିକ୍ଷା ସଭ୍ୟତା, ଏପରିକି ସମସ୍ତ ଜାତୀୟ ଜୀବନଟା ସମାଜର ସେହି ଉଚ୍ଚଶ୍ରେଣୀର କେତେକ ଲୋକଙ୍କ ହସ୍ତରେ କ୍ରୀଡ଼ନକ ପରି ଥିଲା । ଲୋକେ ସର୍ବଦା ଜୀବନର କିଞ୍ଚିତ୍ ପରିଣତ ବୟସରେ ନାଟିତକ ପରି ସଂସ୍କୃତଭାଷାରେ କଥୋପକଥନ ଆରମ୍ଭ କଲେ ମଧ୍ୟ ସଂସ୍କୃତ ଭାଷାହିଁ ମୁଖ୍ୟଭାଷା ବୋଲି ବିବେଚିତ ହେଉଥିଲା ଏବଂ ସମାଜର ମୁଖ୍ୟ ବ୍ୟକ୍ତିମାନେ କାଳକ୍ରମେ ପ୍ରାକୃତର ଅସ୍ତିତ୍ୱ ରହିବ ନାହିଁ ବୋଲି ବିଶ୍ୱାସ କରୁଥିଲେ । ମାତ୍ର ବିଶାଳ ପ୍ରକୃତିର ନୈସର୍ଗିକତା ପ୍ରତିରୁଦ୍ଧ ହେବାର ନୁହେଁ । ସହସ୍ର ସହସ୍ର ବର୍ଷବ୍ୟାପୀ କଠୋର ସାଧନାରେ ମଧ୍ୟ ପ୍ରାକୃତ ଭାଷାର ଲୋପ ହେଲାନାହିଁ । ସଂସ୍କୃତ ତାକୁ ପ୍ରଭାବିତ କରିଅଛି । କିନ୍ତୁ ନିର୍ମୂଳକରି ଉଠାଇ ଦେଇ ପାରିନାହିଁ । ଭାରତର ସେ ଯୁଗରେ, ଏତେକାଳ କଠୋର ସାଧନାରେ ଯାହା ହୋଇନାହିଁ ଆଜି ତାହା ହେବ କି ? ତେବେ ଯେଉଁମାନେ ଉଚ୍ଚାରଣ, ବର୍ଣ୍ଣବିନ୍ୟାସ ତଥା ବାକ୍ୟଗଠନ ପ୍ରଭୃତି ପ୍ରକ୍ରିୟାରେ ସଂସ୍କୃତର ଅନୁକରଣ କରିବେ, ସେମାନଙ୍କର କେବଳ ପୁରୋଦୃଷ୍ଟିର ଅଭାବ ବୁଝିବାକୁ ହେବ । ସେମାନେ ହୁଏତ ଇତିହାସର ଯଥାଯଥ ଆଲୋଚନା କରିବାରେ ଅକ୍ଷମ, କିମ୍ବା ଅତ୍ୟନ୍ତ ରକ୍ଷଣଶୀଳତା ହେତୁରୁ ତାଙ୍କର ପୁରୋଦୃଷ୍ଟି ଭୂୟୋଦର୍ଶନ ଉପରେ ସୁପ୍ରତିଷ୍ଠିତ ହେଉନାହିଁ । ଫଳତଃ ସେମାନଙ୍କର ବିଡ଼ମ୍ବିତ ଉଦ୍ୟମ ଚିନ୍ତାହୀନତାର ଲକ୍ଷଣ ମାତ୍ର ।

ପୁଣି ଭାରତୀୟ ଜାତୀୟତାରେ ଆଉ ଗୋଟିଏ ସ୍ୱତନ୍ତ୍ର ବିଭାବ ଫୁଟି ଉଠିଅଛି । ବ୍ୟାକରଣ ନିବଦ୍ଧ ସଂସ୍କୃତ ଯେତେଦିନ ଭାରତର ଜାତୀୟ ଭାଷାଥିଲା, ତେତେଦିନ ଜାତୀୟ ଜୀବନରେ କେବଳ ନିୟମ ଓ ବିଧିବଦ୍ଧ ଅନୁଷ୍ଠାନପ୍ରବଣତାହିଁ ପରମ ଲକ୍ଷଣ ରୂପେ ପ୍ରତିଭାତ ହେଉଥିଲା । ଆଜି ଯେ କାରଣରୁ ହେଉ, ଜୀବନକ୍ରିୟାରେ ପରିବର୍ତ୍ତନ ଘଟିଅଛି । ଜାତୀୟଜୀବନର ଧାରା ନିର୍ଦ୍ଦିଷ୍ଟ ଖାତ ବା ପ୍ରଣାଳୀ ପୂର୍ଣ୍ଣକରି ଉପକୂଳରେ ଉଚ୍ଛ୍ୱସିତ ଓ ବିସ୍ତୀର୍ଣ୍ଣ ହେଉଅଛି । ଜୀବନର ଏ ତରଳତରଙ୍ଗିତତା ତଥା ବିଶ୍ୱପ୍ରାଣ ସଂସ୍ରବଜନିତ ଏ ଉଦାରଭାବ ଅଯଥା ଅବରୁଦ୍ଧ ହେଲେ ମଙ୍ଗଳ ନାହିଁ । ଆଜି ଲୋକେ ସେଥିପାଇଁ କଥିତ ଭାଷାକୁ ହିଁ ଜାତୀୟ ସାହିତ୍ୟର ଏକମାତ୍ର ଆଧାର ବୋଲି ବୁଝୁଅଛନ୍ତି, ଏବଂ ତାହାକୁ ହିଁ ଲୋକସାଧାରଣର ଶକ୍ତି ଉଦ୍‌ବୋଧନରେ ଲଗାଉ ଅଛନ୍ତି । ତାହା ନ କଲେ ଏ ଜୀବନସଂଘର୍ଷରେ ତିଷ୍ଠିବା ଅସମ୍ଭବ ହୋଇପଡ଼ିବ । ଭାବବିକାଶରେ ଘୋର ନିୟମବଦ୍ଧତା ଆଉ ଚଳିବ କି ? ଅତଏବ କଥା ଯାହାହେବ ଲେଖା ତାହାହିଁ ପ୍ରକାଶ କରିବା ଉଚିତ । ଲେଖାର ଉଚ୍ଚାରଣ ଲୋକସାଧାରଣଙ୍କ ଉଚ୍ଚାରଣରୁ ଭିନ୍ନହେଲେ ଲୋକେ ଭାବରେ ପ୍ରଭାବିତ ହେବେ କିପରି ? ଆଜି ଭାଷାର ଯେ ସାହିତ୍ୟ ହେବ ସେ ଆଉ ସ୍ମୃତିନୁହେଁ ଯେ କେତେକ ମାତ୍ର ଲୋକ ବୁଝି ତାହାର ବ୍ୟବସ୍ଥା ଦେବେ; ସେ ଆଉ ବେଦାନ୍ତ ନୁହେ ଯେ ଅନଧିକାରୀର ତହିଁରେ ପ୍ରବେଶ ରହିବ ନାହିଁ; ଶାସ୍ତ୍ର ନୁହେଁ ଯେ କେବଳ କେତେକ ପଣ୍ଡିତଙ୍କର ସ୍ଥିର ସମ୍ପଦ

ହୋଇ ରହିବ । ତାହା ମଧ୍ୟ ପୁରାଣ ପରି ହେବା ଉଚିତ ନୁହେଁ । ଓଡ଼ିଆ ଉପନ୍ୟାସକୁ ଓଡ଼ିଆଙ୍କୁ ବୁଝାଇବା ପାଇଁ ଆଉ କଥକ ନିଯୁକ୍ତ ହେବା ଉଚିତ କି ? ଜାତୀୟସାହିତ୍ୟ ଆଜି ଜାତୀୟ ଲୋକସାଧାରଣଙ୍କର ସମ୍ପଦ ଏବଂ ଜାତିର କଥିତ ଭାଷାରେ ତାହା ପ୍ରକାଶିତ ହେବା ଉଚିତ । ଲୋକ ବ୍ୟବହାର ନିମନ୍ତେ ମଧ୍ୟ ଏହାହିଁ କରଣୀୟ । କଥାରେ ସମସ୍ତେ କହିବେ 'ମୁସାଜନ୍ତା', ଲେଖାଢ଼ିପ ସଂସ୍କୃତ ଅକ୍ଷର ନିୟମରେ ଉଚ୍ଚାରଣ କରିବେ 'ମୂଷାୟନ୍ତା' । ବଜାରରେ 'ମୁସାଜନ୍ତା' ନ ମାଗି 'ମୂଷାୟନ୍ତା' ମାଗିଲେ ଦୋକାନୀ ଦେବ ତ ? ବର୍ତ୍ତମାନ ଲେଖା କଥାରେ ଏ ପ୍ରଭେଦ ଅନେକେ ଭଲ ବୁଝି ନ ପାରନ୍ତି । କିନ୍ତୁ ମନେକର, ଜଣେ ଜାପାନୀ, ପୁସ୍ତକରୁ ଓଡ଼ିଆ ପଢ଼ିଛନ୍ତି । ସେ ଲେଖାରେ 'ମୂଷାୟନ୍ତା' ପଢ଼ି 'ମୁସାଜନ୍ତା' ଉଚ୍ଚାରଣ କରିବେ କି ? ସେ ଯଦି ବଜାରକୁ କିଣିବାକୁ ଆସନ୍ତି ତାଙ୍କର କି ଦଶା ହେବ ? ଉତ୍କଳର ମୁଖ୍ୟ ବ୍ୟକ୍ତିମାନଙ୍କର ବର୍ଣ୍ଣ ବିଚାର ବେଳେ ଏ କଥା ପ୍ରତି ଆଦୌ ପ୍ରଣିଧାନ ଦେବା ଉଚିତ ।

ଏ ସମସ୍ତ କଥାରୁ ଅବଶ୍ୟ ବୁଝିବା ଉଚିତ ନୁହେଁ, ବର୍ଣ୍ଣ ବିନ୍ୟାସରେ କୌଣସି ନିୟମ ବା ଆଦର୍ଶ ରହିବନାହିଁ । ଏପରି କେହି କେହି ବୁଝିବାର ଆଶଙ୍କା ଅଛି । କାରଣ, ସବୁ ଶବ୍ଦ ଲୋକମୁଖର ଉଚ୍ଚାରଣରେ ସମାନ ନୁହେ । ଭିନ୍ନ ଭିନ୍ନ ସ୍ଥାନର ଓ ଭିନ୍ନ ଭିନ୍ନ ଜାତିର ଲୋକେ ଏକ ଶବ୍ଦକୁ ଭିନ୍ନ ଭିନ୍ନ ଭାବରେ ଉଚ୍ଚାରଣ କରନ୍ତି । ପୁଣି ଏକ ପଦାର୍ଥକୁ ଭିନ୍ନ ଭିନ୍ନ ନାମରେ ମଧ୍ୟ କହନ୍ତି । ଏ ସମସ୍ତ ମଧ୍ୟରେ ଗୋଟିଏ ଆଦର୍ଶ ନ ରହିଲେ ଭାଷାର କୌଣସି ସ୍ଥିରତା ରହିବ ନାହିଁ । ପ୍ରତ୍ୟେକ ବ୍ୟକ୍ତିର ଭାଷା ଓ ଲେଖା ଭିନ୍ନ ଭିନ୍ନ ହେଲେ ଭାଷାଟି ଜାତୀୟ ଭାଷା ହେବ ବା କିପରି ? ସେଥିପାଇଁ ଭାଷାର ଆଦର୍ଶ ରହିବ ସତ, କିନ୍ତୁ ସେ ଆଦର୍ଶ କଦାପି ସଂସ୍କୃତଭାଷା ହେବନାହିଁ । ଆଦର୍ଶ ଭାଷା ମଧ୍ୟ ଓଡ଼ିଆ ହେବ । ପୃଥିବୀର ଯେକୌଣସି ଶ୍ରୀସମ୍ପନ୍ନ ପ୍ରାକୃତ ବା ଲୋକମୁଖର ଭାଷା ଆଦର୍ଶହୀନ ରହି ନ ପାରେ । ଇଂରେଜୀ ଅଭିଧାନରେ ମଧ୍ୟ ବହୁ ଶବ୍ଦ ପ୍ରାଦେଶିକ ଏବଂ ନୀଚ-ଲୋକୋଚ୍ଚାରିତ ବୋଲି ଚିହ୍ନାଇ ଦିଆ ହୋଇଅଛି । ଏଥିରୁ ବୋଧ ହେଉଅଛି, କୌଣସି ସ୍ଥାନରେ ଓ କୌଣସି ଶ୍ରେଣୀ ଲୋକର ମୁଖରେ ଚଳୁଥିବା ଭାଷାକୁ ଆଦର୍ଶଧରି, ବାକି ସବୁକୁ ସେହି ମାପକାଠିରେ ବିଚାର କରିବାକୁ ହୁଏ । ମିଡ଼ିଲ୍‌ସେକ୍ସ ଓ ଲଣ୍ଡନର ଉଚ୍ଚଶ୍ରେଣୀ ଲୋକଙ୍କର ଭାଷା ଇଂରାଜୀ ଭାଷାର ଆଦର୍ଶ । ତେଣୁ ଚେମ୍ବର୍‌ସ ପ୍ରକାଶିତ ଅଭିଧାନର ଉଚ୍ଚାରଣ ସର୍ବଦା ସାଧୁବୋଲି ଗୃହୀତ ହୁଏ । ଓୟେବ୍‌ଷ୍ଟର୍ ପ୍ରଭୃତି ବଡ଼ ବଡ଼ ଅଭିଧାନ ଥିଲେ ମଧ୍ୟ ଉଚ୍ଚାରଣରେ ସେମାନେ ଆଦର୍ଶ ନୁହନ୍ତି, ଏବଂ ଅକ୍ସଫୋର୍ଡ଼ ପରି ଶିକ୍ଷାକେନ୍ଦ୍ରର ଅଭିଧାନ ମଧ୍ୟ ଉଚ୍ଚାରଣରେ ସେହି ଲଣ୍ଡନ ଆଦର୍ଶ ଅନୁବର୍ତ୍ତନ କରିବାକୁ ଚେଷ୍ଟା କରିଅଛନ୍ତି ।

ଓଡ଼ିଆ ଭାଷାରେ ସେ ଆଦର୍ଶ ବିଚାର କରିବାରେ ଅନେକଗୁଡ଼ିଏ ସମସ୍ୟାର ସମାଧାନ ଆବଶ୍ୟକ ହେବ । ଏ ସୂଚନାରେ କେବଳ ସମସ୍ୟାଗୁଡ଼ିକର ଯଥାକିଞ୍ଚିତ ମାତ୍ର

ଦିଆଯାଉଅଛି । ସେମାନଙ୍କର ସମାଧାନ ବହୁବିଚାର ସାପେକ୍ଷ । ଉତ୍କଳର ସୁଧୀମଣ୍ଡଳୀ ଅଚିରେ ସେ ସବୁ ପ୍ରତି ପ୍ରଣିଧାନ ଦେବେ ବୋଲି ଆଶା କରାଯାଏ ।

ସମାହିତବ୍ୟ ବିଷୟରେ ସୂଚନା -

୧. ଉତ୍କଳ ଜାତୀୟ ଜୀବନର କେନ୍ଦ୍ର କେଉଁଠାରେ ? ଅର୍ଥାତ୍ କେଉଁ ସ୍ଥାନର ରୀତି ବ୍ୟବହାରାଦି ଉତ୍କଳପ୍ରାଣଙ୍କୁ ପ୍ରଭାବିତ କରିବାରେ ଅଧିକ ସମର୍ଥ ?

୨. କେଉଁ ସ୍ଥାନର ଭାଷାରେ ବିଦେଶୀ ସଂସ୍ରବ ସବୁଠାରୁ ଊଣା ?

୩. କେଉଁ ଶ୍ରେଣୀର ଲୋକେ ସମାଜରେ ସମୂହ ଭାବରେ ସମ୍ମାନିତ ?

୪. ପ୍ରାଚୀନ ଉତ୍କଳର ଗରିମାଦି କେଉଁ ସ୍ଥାନର ଲୋକଙ୍କୁ ଅଧିକ ପ୍ରଭାବିତ କରି ରଖିଅଛି ? ଐତିହାସିକ ଉତ୍କଳର ପରମ୍ପରା କେଉଁଠାରେ ଅଧିକ ରହିଅଛି ? ଇତିହାସ ସମ୍ମାନିତ ଉତ୍କଳର ବଂଶଧର କେଉଁଠାରେ ଅଧିକ ଅଛନ୍ତି ?

୫. ପ୍ରାଚୀନ ସାହିତ୍ୟରେ କେଉଁ ସ୍ଥାନର କେଉଁ ଲୋକଙ୍କ ଭାଷା ବହୁଳ ପ୍ରଚାର ଲଭିଅଛି ?

୬. କେଉଁ ସ୍ଥାନର କେଉଁ ଲୋକଙ୍କ ଭାଷା ଅଦ୍ୟାପି ଲୋକେ ବିଶେଷ ଆଦର ଓ ସମ୍ମାନ କରନ୍ତି ?

୭. ଭୌଗୋଳିକ ଓ ରାଜନୈତିକ ଭାବରେ କେଉଁଠାରେ ବାହାରର ଶକ୍ତି ଓ ପ୍ରଭାବ ଅଧିକ ପ୍ରବେଶ କରୁନାହିଁ ?

ଇତ୍ୟାଦି ଏବଂ ଏହିଭଳି ବହୁ ବିଷୟର ଆଲୋଚନା କରି ଆଦର୍ଶ ସ୍ଥିର କରିବାକୁ ହେବ । ସାଧୁ ଓଡ଼ିଆ ଭାଷାର ଆଦର୍ଶ ସ୍ଥିର ହେଲେ ପ୍ରାଦେଶିକ ଓ ଗ୍ରାମ୍ୟ ବା ଅତିଜାନପଦ ଭାଷା ଓ ଶବ୍ଦାଦି ସ୍ଥିର ହେବ । ଆଜିକାଲି ବେଳେ ବେଳେ ପରୀକ୍ଷା ପ୍ରଶ୍ନାଦିରେ ପଡ଼େ 'ଚାଉଳ'ର, ସାଧୁଶବ୍ଦ ଲେଖ । ପରୀକ୍ଷାର୍ଥୀ ଉତ୍ତରରେ ଲେଖେ 'ତଣ୍ଡୁଳ', ଏବଂ ତାହାହିଁ ପ୍ରକୃତ ଉତ୍ତର ବୋଲି ଧରାହୁଏ । କିନ୍ତୁ ସଂସ୍କୃତ ଓଡ଼ିଆର ସାଧୁଭାଷା ନୁହେଁ । 'ଆମେ' ନ ଲେଖି 'ଅହଂ' ଲେଖିଲେ କଦାପି ସାଧୁ ଓଡ଼ିଆ ଲେଖା ହୁଏନାହିଁ । ବରଂ 'ନରଦୀ' ପରିବର୍ତ୍ତରେ 'ହଳଦୀ' ଲେଖିବା ସାଧୁଭାଷା ବୋଲି କୁହାଯାଇପାରେ । ସାଧୁଭାଷାର ଆଦର୍ଶ ରହିବ, କିନ୍ତୁ ବର୍ତ୍ତମାନ କିଏ ସାଧୁ, ତାହା ଆମ୍ଭେ କହୁନାହୁଁ । ପଣ୍ଡିତମାନେ ବିବେଚନା କରି ସମସ୍ୟାର ସମାଧାନ କରନ୍ତୁ ।

ଏ ପ୍ରଶ୍ନର ସମାଧାନ ଓଡ଼ିଶାରେ ହୋଇନାହିଁ ସତ, କିନ୍ତୁ ହିନ୍ଦୀ, ମରହଟ୍ଟୀ ପ୍ରଭୃତି ପ୍ରାକୃତ ଭାଷାମାନେ ଲେଖନ ଓ ଉଚ୍ଚାରଣ ଏକ କରି ସାରିଛନ୍ତି । ସେମାନେ ସଂସ୍କୃତକୁ ସାଧୁ ପ୍ରାକୃତ ଭାଷାର ମାନଦଣ୍ଡ ବୋଲି ଧରି ନାହାନ୍ତି । ଅକ୍ଷରବିନ୍ୟାସରେ ମଧ୍ୟ ସଂସ୍କୃତର ଅତିବାସତ୍ୱ ସେମାନଙ୍କ ଭାଷାରେ ଆଦୌ ନାହିଁ । ହିନ୍ଦୀରେ ଲେଖାହୁଏ ଜୋ (ଯେ), ଜିସ୍ (ଯାହା), ଜାବେଗା (ଯିବ), ହୋ ସକ୍ତା (ହେବାକୁ ଶକ୍ତ) ଇତ୍ୟାଦି । ନାମ ଲେଖିଲାବେଳେ

ସେମାନେ ଲେଖନ୍ତି, 'ରମେସଚନ୍ଦ୍ର', 'ପୁରୁଷୋତ୍ତମ' । ଏଥିରେ ସେମାନଙ୍କ ଭାଷାର ପ୍ରାକୃତତା ସୁରକ୍ଷିତ ହେଉଅଛି, ଏବଂ ଭାଷା ଜାତିର ଭାଷା ହେବା ଆଡ଼କୁ ଯାଉଅଛି ।

କେବଳ ବଙ୍ଗଳା ଭାଷାର ଏ କ୍ଷେତ୍ରରେ ବହୁଦିନୁ ପନ୍ଥା ଭିନ୍ନ ହୋଇଥିଲା । ବିଦ୍ୟାସାଗର ପ୍ରଭୃତି ସଂସ୍କୃତର ଅନୁକରଣରେ ଶବ୍ଦ ଲେଖି ଯାଇଥିଲେ । ତାହା ଏତେଦିନ ଲେଖକମାନଙ୍କୁ ପ୍ରଭାବିତ କରି ଆସିଥିଲା । ଅଳ୍ପଦିନ ହେଲା ସେ ବିଷୟରେ ପ୍ରତିବାଦ ଉଠିଅଛି । ମାତ୍ର ନୂତନ ରୀତି ସମୀଚୀନ ହେଲେହେଁ ପ୍ରାଚୀନ ପ୍ରୀତିର ବନ୍ଧ ସହଜରେ ଭାଙ୍ଗି ପାରୁନାହିଁ । ଓଡ଼ିଶାର ବହୁ ମୁଖ୍ୟ ଲୋକେ ନାନାଭାବରେ ବଙ୍ଗଳାଠାରେ ନିଜକୁ ଋଣୀ ମନେକରନ୍ତି । କରିବାର ମଧ୍ୟ କାରଣ ଅଛି । କିନ୍ତୁ ସେ ଋଣର ସୀମା ଭୁଲିଯିବା ଠିକ୍ ନୁହେଁ । ବଙ୍ଗଳାରେ ଯେଉଁବିଭାଗରେ ଯାହା ହେଲା ଓଡ଼ିଶାରେ ତାହାର ଅନୁକରଣ ଚିରକାଳ ଚାଲିଥିବ – ଏ ଧାରଣା ଅନେକଙ୍କର ଥିବା ବଡ଼ ଆକ୍ଷେପର କଥା । କେତେକ ବାସ୍ତବିକ ଯୁକ୍ତି କରିବାର ଶୁଣାଯାଇଛି– 'ବଙ୍ଗଳାରେ ମଧ୍ୟ ଆଜିଯାଏ ଏକଥା ହୋଇପାରିନାହିଁ' । ଭାଷା ପ୍ରଭୃତି କ୍ଷେତ୍ରରେ ଏପରି କଥା ଅଯଥା ପ୍ରୟୋଗ କରିବାର ଶୁଣିଲେ ଆତ୍ମଗ୍ଲାନି ଓ ଯାତନା ହୁଏ । ବୁଝିବା ଉଚିତ, ଆଲୋଚନାରେ ଅତି ଦାସତ୍ୱ ଅବଲମ୍ବନ କଲେ, ଜାତୀୟ ଶକ୍ତି ଜାଗେ ନାହିଁ ।

ଉପସଂହାରରେ ଆଉ ଗୋଟିଏ କଥା କହି ରଖିବା ଉଚିତ । କଅଣ ବିଧେୟ, କଅଣ କରିବା ଉଚିତ – ତାହାହିଁ ଏ ପର୍ଯ୍ୟନ୍ତ ପ୍ରାୟଶଃ କୁହା ଯାଉଅଛି । ମାତ୍ର କେବଳ କୁହାଯାଉ ଅଛି, ସଂସ୍କୃତର ବହୁ ସାଧନାରେ ମଧ୍ୟ ପ୍ରାକୃତ ଲୋପ ପାଇନାହିଁ । ଲୋକମୁଖର ଭାଷା ଓ ଉଚ୍ଚାରଣ ଲୋପ ପାଇବା ଅସମ୍ଭବ । ଆଜି ଯେଉଁମାନେ ଅକ୍ଷରବିନ୍ୟାସରେ ସଂସ୍କୃତର ଅନୁବୃତ୍ତିହିଁ ବିଧି ବୋଲି ପ୍ରଚାର କରନ୍ତି, ସେମାନଙ୍କର ଉଦ୍ୟମ କିପରି ଫଳପ୍ରଦ ହେବ, ବିଚାର କରିବା ଉଚିତ । କେତେଗୁଡ଼ିଏ ଦେଶ୍ୟ ଶବ୍ଦ ଅଛି । ତାର ସଂସ୍କୃତ ମୂଳଶବ୍ଦ ସେମାନେ ପାଆନ୍ତି ନାହିଁ । ସେଠାରେ ତ ନିଶ୍ଚୟ ଲୋକମୁଖର ଉଚ୍ଚାରଣହିଁ ସେମାନଙ୍କର ଅକ୍ଷର ବିନ୍ୟାସରେ ସମାନ । ତେବେ ଯେଉଁ ବ୍ୟବହୃତ ଶବ୍ଦ ସଙ୍ଗେ ସଂସ୍କୃତ ଶବ୍ଦର ସାମଞ୍ଜସ୍ୟ ମିଳେ ବା ସମ୍ପର୍କ ଅନୁମିତ ହୁଏ, ସେହିଠାରେ ସେମାନଙ୍କର ଆପତ୍ତି ହୋଇଥାଏ । ସେଠାରେ ମଧ୍ୟ ଭାଷାର ପ୍ରକୃତି ସେମାନଙ୍କର ନୀତି ରଖି ଦେଉନାହିଁ । ଏହା ସେମାନେ ଦେଖି ଦେଖୁନାହାନ୍ତି । ସେମାନେ କହନ୍ତି, ଲବଣରୁ ଲୁଣ ହୋଇଅଛି, ଏବଂ 'ଲୁଣ' ଲେଖିଲାବେଳେ ସେମାନେ ସଂସ୍କୃତର 'ଅବ' ସ୍ଥାନରେ ଓଡ଼ିଆର 'ଉ' ଲେଖିବାକୁ ଆପତ୍ତି କରନ୍ତି ନାହିଁ; କିନ୍ତୁ କହନ୍ତି 'ନୂଆ', ଲେଖନ୍ତି 'ନୂଆ'; କହନ୍ତି 'ଜମ', ଲେଖନ୍ତି 'ଯମ'; କହନ୍ତି 'ସହେ', ଲେଖନ୍ତି 'ଶହେ' । କେବଳ କେତୋଟି ଦୀର୍ଘ ହ୍ରସ୍ୱ ଓ ଯ, ଶ ପ୍ରଭୃତିରେ ସେମାନଙ୍କର ନୀତି ସୀମାବଦ୍ଧ ରହିଅଛି ମାତ୍ର । ଏହିତକ ହୁଏତ ସେମାନେ ଛାଡ଼ିବାକୁ ନାରାଜ । ଆଉ କୌଣସିଠାରେ ପ୍ରାକୃତ ପ୍ରଭାବ ତାଙ୍କ କଥା ରଖି ଦେଉନାହିଁ । ହ୍ରସ୍ୱ

ଦୀର୍ଘାଦିରେ ମଧ୍ୟ ସେମାନେ ବେଳେ ବେଳେ ଶତ ଚେଷ୍ଟା କରି ନିଜର ବର୍ଣ୍ଣବିନ୍ୟାସ ରଖିବାକୁ ଅକ୍ଷମ ହେଉ ଅଛନ୍ତି । 'ପ୍ରାଣ ପୁରିଉଠେ', 'ପୁରୁବ ଗଗନ', 'ଚାହାଳୀର ଶୁନ' ଏକ' ପ୍ରଭୃତି ଆଜିକାଲି ବହୁ ସ୍ଥଳରେ ପ୍ରାକୃତିକ ଉଚ୍ଚାରଣରେ ଲେଖାହେବା ଆଡ଼ିକି ଟାଲି ଯିବାର ଦେଖା ଯାଉଅଛି । ତାହା ଚେଷ୍ଟାକଲେ ମଧ୍ୟ କେହି ବାରଣ କରି ପାରୁନାହିଁ । ତେବେ ଆଉ କେବଳ ରକ୍ଷଣଶୀଳତାର କେତେଗୁଡ଼ିଏ ପରିବଦ୍ଧ ଧାରଣା ଘେନି ବର୍ଣ୍ଣବିନ୍ୟାସରେ ଅନୈସିର୍ଗିକ ଉତ୍ପାତ ଓ ବିଭ୍ରାଟ ଘଟାଇ ଜାତୀୟ ଶକ୍ତି କ୍ଷୟ କରିବାରେ କି ଲାଭ ଅଛି ? ଯାହା ଉଚିତ ନୁହେଁ, ପୁଣି ପ୍ରକୃତି ଯାହା ରଖି ଦେଉନାହିଁ, ସେଥିର ଆଲୋଚନାରେ ଯେଉଁମାନେ କ୍ରିୟାଗତି ଲକ୍ଷ୍ୟ କରିବାକୁ ଅକ୍ଷମ, ସେମାନଙ୍କର ବିଚାର ନିମନ୍ତେ ଏ ଲୋକଶକ୍ତି ଗଠନ ଯୁଗରେ ଏହି କେତେକ ବିଷୟର ଅବତାରଣା କରାଗଲା ।



୧୭

# ଭାଷାତତ୍ତ୍ୱ-ପ୍ରବେଶ

## ନୀଳକଣ୍ଠ ଦାସ

ଭାବ, ଚିନ୍ତା ଓ ଅନୁଭୂତି ବ୍ୟକ୍ତ କରିବା ଉପାଦାନ ମାନବର ଭାଷା । ତେଣୁ ଭାଷାର ବ୍ୟବହାରରେ ଗୋଟିଏ ଶିଳ୍ପ ଫୁଟିଉଠେ । ଶିଳ୍ପର ସାମାନ୍ୟ ବା ସାର୍ବଜନୀନ ବିଭାବ ଯେପରି ଲୋକସାଧାରଣର ପ୍ରୀତି ଓ ଆଦର ଜନ୍ମାଏ, ସ୍ୱାତନ୍ତ୍ର୍ୟ ମଧ୍ୟ ସେହିପରି ତାହାର ଗୋଟିଏ ବିଶେଷତ୍ୱ । ରଚନାରେ ବ୍ୟକ୍ତିତ୍ୱ, ଭାଷା-ବିନ୍ୟାସରେ ଭାଷାର ବିଶେଷତ୍ୱ, ଏବଂ ଭାବ ବିକାଶରେ ସେହି ଶିଳ୍ପର ସାର୍ବଜନୀନତା ପ୍ରକାଶିତ ହୁଏ । ଏହି ତିନୋଟି ଘେନି ଶିଳ୍ପ ସର୍ବାଙ୍ଗ ସୁନ୍ଦର ହୁଏ ସତ; ମାତ୍ର କୌଣସିଟିରେ ଆଧିକ୍ୟ ବା ଯଥେଚ୍ଛାଚାରିତା ଶିଳ୍ପର ସୌନ୍ଦର୍ଯ୍ୟ ନିମନ୍ତେ ସ୍ପୃହଣୀୟ ନୁହେଁ । ଭାଷାରେ ଲେଖକର ବିଶେଷତ୍ୱ ଯେପରି ଗୋଟିଏ ଉପାଦାନ, ଭାଷାର ସ୍ୱାତନ୍ତ୍ର୍ୟ ଓ ସଜୀବତା ସେହିପରି ଆବଶ୍ୟକ । ତୃତୀୟତଃ ଭାଷାର ସାର୍ବଜନୀନତା, ସ୍ୱାତନ୍ତ୍ର୍ୟରେ ନଷ୍ଟହେଲେ, ଭାଷାର ବିଶେଷତ୍ୱ ନାହିଁ, ଏବଂ ସମୟରେ ଅସ୍ତିତ୍ୱ ମଧ୍ୟ ଅସମ୍ଭବ ହୁଏ ।

ସମସ୍ତ ଶିଳ୍ପର ସଂରକ୍ଷଣ ନିମନ୍ତେ ସଭ୍ୟତାର ବିକାଶ ସଙ୍ଗେ ବିଜ୍ଞାନ ବିକାଶ ଲଭେ । ଭାଷାରେ ସେହିପରି ବିଜ୍ଞାନ, ଅର୍ଥାତ୍, ସମାଲୋଚନା ବା ତତ୍ତ୍ୱ-ବିଚାର, ଉପରେ କୁହାଯାଇଥିବା ତିନୋଟି ବିଭାବ ପ୍ରତି ଲକ୍ଷ୍ୟରଖି ସର୍ବଦା ଗତି କରିବା ଉଚିତ । ସେଥିମଧ୍ୟରୁ ରଚନାରେ ବ୍ୟକ୍ତିର ବିଶେଷତ୍ୱ ସମୂହ ଭାଷାତତ୍ତ୍ୱ ଆଲୋଚନାର ଅଙ୍ଗୀଭୂତ ନୁହେଁ । ତାହା ସାହିତ୍ୟର ସମାଲୋଚନାରେ ସ୍ଥାନପାଏ । ବାକି ଦୁଇଟି ବିଭାବ ଭାଷାତତ୍ତ୍ୱ ବିଚାରରେ ଆଲୋଚନୀୟ । ସେ ଦୁଇଟି ଭାଷାର ସ୍ୱାତନ୍ତ୍ର୍ୟ ଓ ସାର୍ବଜନୀନତା । ଏ ଦୁଇଟିର ସ୍ୱତନ୍ତ୍ର ବିଚାର ବଡ଼ ଜଟିଳ । ଗୋଟିଏ ଅପରଟିକୁ ଗ୍ରାସ କରିବାର ଆଶଙ୍କା ଅଛି । ଭାଷାର ସ୍ୱାତନ୍ତ୍ର୍ୟ ବଢ଼ାଇବାକୁ ଯାଇ ସାର୍ବଜନୀନତା ପ୍ରତି ଦୃଷ୍ଟି ନ ଦେଲେ ଭାଷା ଗ୍ରାମ୍ୟ ହୁଏ, ଏବଂ ବରାବର ସାର୍ବଜନୀନତା ଦେଖିବାରେ ଆତ୍ମବିସ୍ମୃତ ହେଲେ ଭାଷା କୃତ୍ରିମ ହୁଏ । ଭାଷାତତ୍ତ୍ୱ ବିଚାରରେ ଏକଥା ପ୍ରତି ସମ୍ୟକ୍ ଦୃଷ୍ଟିଦେଇ ପଦେ ପଦେ ଅଗ୍ରସର ହେବାକୁ ହେବ । ସ୍ୱାତନ୍ତ୍ର୍ୟରେ ଭାଷା-ଭାଷୀ ଲୋକଙ୍କର ସାହିତ୍ୟ ଓ ସଭ୍ୟତା ଯେପରି ପୁଷ୍ଟହୁଏ, ସାର୍ବଜନୀନତାରେ ସେହିପରି

ଭାଷାର ଶକ୍ତି ଓ ଜୀବନ ସଂରକ୍ଷିତ । ଦୁଇଟିର ବ୍ୟବହାର ଅଛି । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ବିଚାରରେ ଏ ଦୁଇଟି ବିଭାବ ପ୍ରତି ଲକ୍ଷ୍ୟ ରଖି ତାହାର ମର୍ଯାଦା ବୁଝିବାକୁ ହେବ ।

ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଭାଷାତତ୍ତ୍ୱ' ଏକା ଓଡ଼ିଆରେ କାହିଁକି, ଭାରତର ସମସ୍ତ ଚଳିତ ଭାଷାରେ ଗୋଟିଏ ନୂତନ ଗ୍ରନ୍ଥ । ଜୀବନ୍ତ ଚଳିତ ଭାଷାର ଶକ୍ତି ଓ ଅଭିବୃଦ୍ଧି ଉପରେ ଶିକ୍ଷା ଓ ସଭ୍ୟତାର ପ୍ରକୃତି ଓ ପ୍ରସାର ନିର୍ଭର କରେ । ଭାଷାତତ୍ତ୍ୱର ଅନୁସନ୍ଧାନ ଓ ପ୍ରଚାରରେ ଭାଷା ସାର୍ବଜନୀନ ଓ ବିଦେଶୀ ପକ୍ଷରେ ସୁଖସେବ୍ୟ ଓ ସୁଶିକ୍ଷଣୀୟ ହୁଏ । ଏହା ଏକପ୍ରକାର ଇଙ୍ଗିତରେ କୁହାଯାଇଅଛି । ମାତ୍ର ସାମାଜିକ କୃତ୍ରିମତାରୁ ହେଉ, ରାଜନୀତିକ ପରାଧୀନତାରୁ ହେଉ, ପ୍ରାଚୀନତାର ସ୍ଥିତି ସଂରକ୍ଷଣ ଉଦ୍ଦେଶ୍ୟ ବା ଉଦ୍ୟମରୁ ହେଉ, ଉପରେ କୁହାଯାଇଥିବା ନୀତି ଅବଲମ୍ବନରେ ଭାରତର ଭାଷାଚର୍ଚ୍ଚା ଅଦ୍ୟାପି କଦାଚିତ୍ ହୋଇଅଛି । ସେଥିପାଇଁ କେବଳ ଯେ ଶିଶୁର ଶିକ୍ଷା ବ୍ୟଙ୍ଗ ଓ ପ୍ରତିହତ ହୁଏ, ସେତିକି ନୁହେଁ, ଭାରତୀୟ ଚଳିତଭାଷାମାନଙ୍କର ସ୍ୱାଧୀନ ସାର୍ବଜନୀନ ସାର୍ବକାଳିକ ପ୍ରକୃତି ଫୁଟୁନାହିଁ । ଇଉରୋପରେ ଭାଷାର କୃତ୍ରିମତା ଓ ସଂକୋଚ ବହୁଶତାବ୍ଦୀ ଧରି ଇଉରୋପର ଜୀବନକୁ ବିକୃତ ଓ ଏକଦେଶଦର୍ଶୀ କରି ରଖିଥିଲା । ଗତ ଶତାବ୍ଦୀ ମଧ୍ୟରେ ତାହା ସଂପୂର୍ଣ୍ଣରୂପେ ବଦଳି ଯାଇଅଛି । ଗ୍ରୀକ୍, ଲାଟିନ୍ ବନ୍ଧନରୁ ଭାଷା ସ୍ୱାଧୀନ ହୋଇ ବର୍ତ୍ତମାନ ସମସ୍ତ ଜଗତରେ ନିଜର ବୈଜ୍ଞାନିକ ସମ୍ପର୍କ ସ୍ଥାପନ କରି ଇଉରୋପୀୟ ଭାଷା ନିଜର ସ୍ୱାତନ୍ତ୍ର୍ୟ ସୂତ୍ରରେ ସାର୍ବଜନୀନତାର ଶ୍ରେଷ୍ଠ ଭିତ୍ତିଭୂମି ଅଧିକାର କରି ବସିଅଛି । ଜୀବନ୍ତ ଭାଷାର ସ୍ୱତନ୍ତ୍ର ଅଭିବୃଦ୍ଧି ସଙ୍ଗେ ସାର୍ବଜନୀନତାର ଭିତ୍ତି ବରଂ ଦୃଢ଼ରୁ ଦୃଢ଼ତର ହେଉଅଛି । ଭାରତର ଭାଷା-ବିଜ୍ଞାନର ସେ ବିଭାବ ଏବେ ମଧ୍ୟ ଲୋକଦୃଷ୍ଟି ଆକର୍ଷଣ କରିଅଛି କି ନା ସନ୍ଦେହ । ମାତ୍ର ସୁଖର କଥା, ଏ କ୍ଷେତ୍ରରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କର ସତ୍‌ସାହସ ଓ ଶ୍ଳାଘ୍ୟ ଉଦ୍ୟମ ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ ।

କେହି କେହି କହନ୍ତି, ଶିକ୍ଷାପଦ୍ଧତିରେ ଚଳିତଭାଷାର ସମ୍ୟକ୍ ଚର୍ଚ୍ଚା ବଡ଼ ବେଶି ଦରକାର ନାହିଁ । ଯେଉଁଠାରେ ଯେଉଁ ଭାଷା ଚଳେ ସେଠାରେ ସେହି ଭାଷାରେ ଶିକ୍ଷାଦେଲେ ବ୍ୟାକରଣ ବା ଭାଷାତତ୍ତ୍ୱର ଆବଶ୍ୟକତା କଅଣ ? ଭାଷାର ସ୍ୱାତନ୍ତ୍ର୍ୟ ଦୃଷ୍ଟିରେ ଏ ମତ ପ୍ରଶଂସନୀୟ ହୋଇପାରେ । ମାତ୍ର ଏଥିରେ ଭାଷାର ସାର୍ବଜନୀନତା ଅବଚ୍ଛିନ୍ନ ଓ ଫଳରେ ବିଧ୍ୱସ୍ତ ହୁଏ । ଗ୍ରାମ୍ୟତା, ପ୍ରାଦେଶିକତା ଆଦି ଭେଦକରି ଜାତୀୟଭାଷା ସୂତ୍ରରେ ଲୋକ ସଭ୍ୟତା ବିକାଶ ପ୍ରୟାସ ହେଲେ, ଭାଷାତତ୍ତ୍ୱର ସମ୍ୟକ୍ ଆଲୋଚନା ଓ ପ୍ରଚାର ବିନା ତାହା ସମ୍ଭବ ହେବନାହିଁ । ପୁଣି ଭାଷାହିଁ ସାହିତ୍ୟ ତଥା ସଭ୍ୟତାର ଆଧାର । ଭାଷାଚର୍ଚ୍ଚା ବିନା ଆଜିଠାରୁ ତିନିଶହ ବର୍ଷ ପରେ ଲୋକେ ବର୍ତ୍ତମାନର ସାହିତ୍ୟ ବୁଝିବେ ନାହିଁ । ସଭ୍ୟତାର ଭୂୟୋବିକାଶ ପକ୍ଷରେ ଏହା ଏକ ଘୋର ଅନ୍ତରାୟ ।

ଆହୁରି ଗୋଟିଏ କଥା । ପ୍ରାଣକୁ ସଂକୁଚିତ କରି ସାହିତ୍ୟ ବା ଭାଷାଚର୍ଚ୍ଚା କରିବା

ଠିକ୍ ନୁହେଁ । ଆଜି ପଞ୍ଜାବ, ସିନ୍ଧୁ ଓ ଜାପାନ ବା କାନାଡ଼ାର ଲୋକେ ଆମ ଭାଷା ଶିଖିଲେ, ଆମ ଲୋକଙ୍କ ସଙ୍ଗେ କଥାବାର୍ତ୍ତା ବ୍ୟବହାର କରିବାକୁ ସମର୍ଥ ହେବା ଉଚିତ । ସେଥିପାଇଁ କୃତ୍ରିମତାର ଛାଞ୍ଚରେ ଭାଷାକୁ ଢାଳି କେବଳ ସ୍ୱାତନ୍ତ୍ର୍ୟ ରଖିବାର ଉଦ୍ୟମ କରିବା ଠିକ୍ ନୁହେଁ । ମାତ୍ର ଭାରତର ଏସବୁ ନୀତି, ଉଦ୍ଦେଶ୍ୟ ଓ ଆଦର୍ଶରେ ଘୋର ଅନ୍ତରାୟ ଅଛି, ତାହା ଏଠାରେ ସ୍ପଷ୍ଟ ବୁଝିରଖିବା ଉଚିତ ।

ବହୁଶତାବ୍ଦୀ ପୂର୍ବେ ଭାରତର ଆର୍ଯ୍ୟଜାତି ନିଜର ଶିକ୍ଷା ସଭ୍ୟତାଦି ଅକ୍ଷୁର୍ଣ୍ଣ ସଂରକ୍ଷଣ କରିବା ଉଦ୍ଦେଶ୍ୟରେ ସଂସ୍କୃତଭାଷାର ସୃଷ୍ଟି କରିଥିଲେ । ସେହିଦିନଠାରୁ ସମସ୍ତ ପ୍ରାଦେଶିକ ଭାଷାର ମୂଳ ସଂସ୍କୃତ ବୋଲି ଗୋଟିଏ ଧାରଣା ଚାଲି ଆସୁଅଛି । ପ୍ରାକୃତ ବ୍ୟାକରଣକାର ସେହି ଧାରଣାର ବଶବର୍ତ୍ତୀ ହୋଇ ଲେଖିଅଛନ୍ତି, "ପ୍ରକୃତିତସ୍ତୁ ସଂସ୍କୃତେ ର୍ବିକୃତିଃ ପ୍ରାକୃତିର୍ମତା" ଅର୍ଥାତ୍ ପ୍ରାକୃତ ବା ଚଳିତ ଭାଷାସବୁ ସଂସ୍କୃତ ଭାଷାର ବିକୃତି ମାତ୍ର । ଏ ଧାରଣା ଭାରତର ସାହିତ୍ୟିକମାନଙ୍କ ମଧ୍ୟରେ ବଡ଼ ଦୃଢ଼ । ବିଶେଷତଃ କେବଳ ସଂସ୍କୃତଭାଷାରେ ଯେଉଁମାନେ ପଣ୍ଡିତ, ସେମାନଙ୍କ ଏକଦେଶଦର୍ଶିତା ଏ ଧାରଣାରୁ ସ୍ୱାଧୀନ ହେବା ଏକପ୍ରକାର ଅସମ୍ଭବ କହିଲେ ଅତ୍ୟୁକ୍ତି ହେବନାହିଁ । ସେଭଳି ପଣ୍ଡିତମାନଙ୍କ ମତରେ ସମସ୍ତ କଥିତ ବା ପ୍ରାକୃତ ଭାଷା ଗ୍ରାମ୍ୟ । ଏପରି କି ନିତାନ୍ତ ଚଳିତଭାଷା ବ୍ୟବହାରରେ ମଧ୍ୟ ସେମାନେ 'ପାଉଚ'କୁ 'ପାବଚ୍ଛ', 'ଛଇଳ'କୁ 'ଛବିଳ', 'ଗଢ଼ଣ'କୁ 'ଗଠନ' ପ୍ରଭୃତି ଜାରଜ ଅପସଂସ୍କୃତରେ ପରିଣତ ନ କରି ସାଧୁ ଶବ୍ଦବୋଲି ଗ୍ରହଣ କରିବାକୁ କୁଣ୍ଠିତ । ପ୍ରାୟ ତିରିଶବର୍ଷ ତଳେ ଏହି ଧାରଣା ଓ ନୀତି ଅବଲମ୍ବନ କରି ଏ ଦେଶର କେହି କେହି ପଣ୍ଡିତ ଶିଶୁଶିକ୍ଷା ଉଦ୍ଦେଶ୍ୟରେ 'ଅପଭ୍ରଂଶବୋଧିନୀ' ବୋଲି ପୁସ୍ତିକା ପ୍ରଚାର କରିଥିଲେ, ଓ ସେହି ସୂତ୍ରରେ ଶିଶୁମାନଙ୍କୁ ସାଧୁଶବ୍ଦ ନାମରେ ସଂସ୍କୃତ ବା ଉଲ୍ଲିଖିତ ପ୍ରକାର ଅପସଂସ୍କୃତ ଶବ୍ଦମାନ ଶିକ୍ଷାଦେବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଲୋକମୁଖରେ 'କୁହାଯାଏ' ପ୍ରଭୃତି ପରି ସାଧୁ ଓଡ଼ିଆ ଶବ୍ଦକୁ 'କହାଯାଏ' ପ୍ରଭୃତିରେ ପରିଣତ କରିବା ଏବେ ମଧ୍ୟ କେତେକ ତଥାକଥିତ ସାହିତ୍ୟସେବୀଙ୍କର ନୀତି ହୋଇ ରହିଅଛି । ବ୍ୟାକରଣରେ ମଧ୍ୟ 'ମୁଁ କରିପାରେ'ର କର୍ମବାଚ୍ୟ 'ମୋ ହାତେ କରି ହୁଏ'–ଏପରି ସାଧୁ ଓଡ଼ିଆଭାଷାର ପବିତ୍ର ବୈଭବ ପରିବର୍ତ୍ତେ ଶିଶୁକୁ ଶିକ୍ଷା ଦିଆଯାଏ – 'ମୋ ଦ୍ୱାରା କରି ପାରାଯାଏ'; ଇତ୍ୟାଦି ଉଦାହରଣ ଦେଇ ବୁଝାଇବାର ଅବକାଶ ଏଠାରେ ନାହିଁ ।

ସ୍ଥୂଳତଃ ଏତିକିମାତ୍ର କହିଲେ ଯଥେଷ୍ଟ ହେବ ଯେ, ପ୍ରାକୃତ ବା ପ୍ରାକୃତିକ ଚଳିତ ଓ ଜୀବନ୍ତ ଭାଷାର ବର୍ଣ୍ଣ ଶବ୍ଦ ବ୍ୟାକରଣାଦି ଜଡ଼ ସଂସ୍କୃତର କୃତ୍ରିମ ଛାଞ୍ଚରେ ବ୍ୟକ୍ତ କରିବାର ପ୍ରୟାସ ସର୍ବତ୍ର ପ୍ରଭାବ ବିସ୍ତାର କରି ରହିଅଛି । ଶିକ୍ଷା ସଭ୍ୟତାଦିର ପ୍ରସାର ଏହି ହେତୁରୁ କି ପରିମାଣରେ ପ୍ରତିହତ ହେଉଅଛି, ତାହା ଲୋକେ ସାଧାରଣତଃ ବୁଝୁନାହାନ୍ତି । ବଙ୍ଗଦେଶର ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଅନୁକରଣରେ ଏ ଦେଶରେ ଆଧୁନିକ

ସାହିତ୍ୟର ପ୍ରବର୍ତ୍ତକ ରାଧାନାଥ ରାୟ ଓ ମଧୁସୂଦନ ରାଓ ଶିକ୍ଷା ବିଭାଗର କର୍ତ୍ତାରୂପେ ପ୍ରଥମେ ଏ କୃତ୍ରିମ ପନ୍ଥା ଫିଟାଇଲେ, ଓ ତାହାହିଁ ଆଦର୍ଶରୂପେ ସାହିତ୍ୟରାଜ୍ୟ ବହୁ ପରିମାଣରେ ପ୍ରଭାବିତ କରି ଆସୁଅଛି ।

ରାଜନୀତିକ ପରାଧୀନତା ଓ ବହୁକାଳର ସାମାଜିକ ସଂକୋଚ ହେତୁରୁ ଦେଶରେ ଯେ ମାନସିକ ଭାବ ଦୃଢ଼ବଦ୍ଧ ହୋଇ ରକ୍ଷଣଶୀଳ ଭାରତବାସୀଙ୍କୁ ଏକପ୍ରକାର ଅଜ୍ଞାତ ଅନୁକରଣଶୀଳ ଜଡ଼ବସ୍ତୁରେ ପରିଣତ କରିଅଛି, ତାହାର କ୍ରିୟା ମଧ୍ୟ ଏ କ୍ଷେତ୍ରରେ କମ୍ କାର୍ଯ୍ୟ କରିନାହିଁ । ଜୀବନର ବିକାଶ ସଙ୍ଗେ ଭାବ ଓ ଭାଷା ବିକାଶର ନିତ୍ୟ ସମ୍ବନ୍ଧ । ସ୍ୱାଧୀନ ପ୍ରାଣରେ ଆଲୋଚନାର ସ୍ୱାଧୀନ ପନ୍ଥା ଫିଟିଥାଏ । ରାଜନୀତିକ ଓ ସାମାଜିକ ପରତନ୍ତ୍ରତା, ପ୍ରାଣ ସଂକୁଚିତ କରେ । ଭୂୟୋଦର୍ଶନ ତଥା ସୁରୋଦୃଷ୍ଟି ସେଥିରେ ପ୍ରତିହତ ହୁଏ । ଗଭୀର ଆତ୍ମରକ୍ଷାର ପ୍ରବୃତ୍ତି ଜାଗତ୍ର ହୋଇ ମାନବର ବହିର୍ଦୃଷ୍ଟି ନିରୁଦ୍ଧ କରେ । ସଂସ୍କୃତ ସାହିତ୍ୟରେ ମଧ୍ୟ ଭାସ, ଅଶ୍ୱଘୋଷ ଓ କାଳିଦାସଙ୍କ ତରଳ ତରଙ୍ଗିତ ସ୍ୱାଧୀନତା କ୍ରମେ ସଂକୁଚିତ ହୋଇ ନୈଷଧ ଯୁଗର କୃତ୍ରିମତା ଓ ସାହିତ୍ୟର ଘୋର ଅପବ୍ୟବହାରରେ ପର୍ଯ୍ୟବସିତ ହେଲା । ଦର୍ଶନର ସୂତ୍ରସବୁ ଭାମତୀ, ପରିମଳ ପ୍ରଭୃତିର କୃତ୍ରିମ ଜଟିଳ ନ୍ୟାୟତର୍କ ବିଚାରରେ ଦେଶରେ ଦାର୍ଶନିକ ଭାବ ବିକୃତ କଲା । ଏବେ ମଧ୍ୟ ଇଂରେଜ ସାହିତ୍ୟର ପ୍ରସାର ହେଲେହେଁ ସଂସ୍କୃତଭାବ ଓ ବିନ୍ୟାସ ସଙ୍ଗେ ମିଳାଇ ରଚନା କେବଳ ଅନୁକରଣରେ ପର୍ଯ୍ୟବସିତ ହୋଇଅଛି । ରକ୍ଷଣଶୀଳତାର ବନ୍ଧନରେ ଅଜ୍ଞାତ ଭାବରେ ସ୍ୱାଧୀନତା ପ୍ରବେଶ କରି ସଭ୍ୟତା ତଥା ସାହିତ୍ୟକୁ ବହୁ ସ୍ଥଳରେ ବିକୃତ କରୁଅଛି । ଉଦାହରଣ ସ୍ୱରୂପ ଓଡ଼ିଆରେ ରାଧାନାଥଙ୍କ କବିତାରୁ ଯେଉଁ ଉପଧା ସ୍ୱର ମିଳାଇବାର ସୃଷ୍ଟି ହେଲା, ତାହା ଯେ ଓଡ଼ିଆରେ କିପରି ଅସଙ୍ଗତ ଓ ଭାଷାର ଶକ୍ତି ସୌନ୍ଦର୍ଯ୍ୟ ସଙ୍ଗେ ସମ୍ବନ୍ଧହୀନ, ତାହା ବିଚାର କଲେ ବିସ୍ମିତ ହେବାକୁ ହୁଏ । ଏହିପରି ନାନା କ୍ଷେତ୍ରରେ କେବଳ ଅନୁକରଣର ନୂତନତା ସ୍ୱାଧୀନତା ନାମରେ ପ୍ରଚାରିତ ହେଉଅଛି ସତ; କିନ୍ତୁ ପରାଧୀନତାର ଦୃଢ଼ ବନ୍ଧନ ଓ ରକ୍ଷଣଶୀଳତାର ଭିତ୍ତି ତୁଟାଇ ସ୍ୱାଧୀନ ଭାଷାଶିକ୍ଷ ଫୁଟାଇବାର ଶକ୍ତି ଏ ଦେଶ ଲୋକଙ୍କର ଜନ୍ମିଅଛି ବୋଲି ମନେହୁଏ ନାହିଁ ।

ତେଣୁ ରକ୍ଷଣଶୀଳ ଭାରତବାସୀ ପକ୍ଷେ ପରଂପରାରୁ ପ୍ରକୃତ ସ୍ୱାଧୀନତା ଅନୁଭବ କରି ଅବଲମ୍ବନ କରିବା ସହଜ ନୁହେଁ । ସେଥିପାଇଁ ଚଳିତଭାଷାମାନଙ୍କର ସ୍ୱାଧୀନ ଓ ସାଧୁ ପରିଶୀଳନ ପର୍ଯ୍ୟନ୍ତ ଭାରତବାସୀଦ୍ୱାରା କଦାଚିତ୍ ହୋଇଅଛି । ବିମ୍‌ସ୍ (Beams), କଲ୍‌ଡ୍‌ବେଲ (Caldwell), ଗ୍ରିଏରସନ୍ (Grierson), ପ୍ରଭୃତି ସାହେବମାନେ ଏ କ୍ଷେତ୍ରରେ ପନ୍ଥା ଦେଖାଇ ଅଛନ୍ତି ସତ, କିନ୍ତୁ ସେମାନଙ୍କର ଆଲୋଚନାର ଉଦ୍ଦେଶ୍ୟ ଓ କ୍ଷେତ୍ର ଭିନ୍ନ ଥିବାରୁ ସେମାନେ ଦେଶୀ ସାହିତ୍ୟସେବୀମାନଙ୍କ ଉପରେ ତାଦୃଶ ପ୍ରଭାବ ବିସ୍ତାର କରିପାରି ନାହାନ୍ତି । ସାକ୍ଷାତ୍ ଭାବରେ ନ କହିଲେ ରକ୍ଷଣଶୀଳ ଭାରତବାସୀ ଇଙ୍ଗିତର ପ୍ରଭାବ

ବୁଝି କାର୍ଯ୍ୟ କରିବାରେ ଏବେ ମଧ୍ୟ ବହୁ ପରିମାଣରେ ଅସମର୍ଥ । ତେଣୁ ଅନ୍ୟର ସ୍ୱାଧୀନ ଚିନ୍ତାର ଅବାନ୍ତର ପ୍ରଭାବ ଦେଶୀ ସାହିତ୍ୟସେବୀଙ୍କ ଉପରେ କାର୍ଯ୍ୟକାରୀ ନ ହେବାରେ ବିଚିତ୍ରତା କିଛିନାହିଁ ।

ଈଶ୍ୱରଚନ୍ଦ୍ର ପ୍ରଭାବିତ ବଙ୍ଗଳା ଓ ଓଡ଼ିଆଠାରୁ ହିନ୍ଦିଭାଷା ଓ ସାହିତ୍ୟରେ ଏ କ୍ଷେତ୍ରରେ କିଞ୍ଚିତ୍ ସ୍ୱାଧୀନତା ଥିବାର ଦେଖାଯାଏ । ମାତ୍ର ହିନ୍ଦିଭାଷା ନିଜେ କେତେକ ପରିମାଣରେ କୃତ୍ରିମ ଥିବାରୁ ତାହାର ସ୍ୱାଧୀନତା କାହାରି ମାତୃଭାଷା ଉପରେ କିଛି ପ୍ରଭାବ ପକାଇ ପାରିନାହିଁ । ନାଗରୀ ପ୍ରଚାରିଣୀ ସଭା ଏ କ୍ଷେତ୍ରରେ କେତେକ ଉଦ୍ୟମ କରୁଥିବାର ଆଭାସ ମିଳେ, କିନ୍ତୁ ହିନ୍ଦିଭାଷାର ପ୍ରାଦେଶିକତା ଭେଦକରି ତାହାର ପ୍ରାକୃତିକ ସାର୍ବଜନୀନତା ଓ ସମୂହ-ଶକ୍ତି ଫୁଟାଇବା ବଡ଼ ସହଜ କଥା ନୁହେଁ । ହିନ୍ଦିଭାଷାର ମଧ୍ୟ ଅନ୍ୟତର ଉଦ୍ଦେଶ୍ୟ ଅଛି । ତାହା ବର୍ତ୍ତମାନ ଭାରତର ଜାତୀୟ ଭାଷା ହେବାର ଉଦ୍ୟମ ହେଉଅଛି । ସେଥିରେ ତାହାର ପ୍ରାକୃତିକତା ଫୁଟିବା ଯେ ବହୁ ସମୟସାପେକ୍ଷ, ତାହାର ବିଶେଷ ବିଶ୍ଳେଷଣ ଓ ଆଲୋଚନା ଏଠାରେ ନିଷ୍ପ୍ରୟୋଜନ ।

ପ୍ରାୟ ୪୦ବର୍ଷ ପୂର୍ବେ ମରହଟ୍ଟୀ ଭାଷାରେ ରେଭରେଣ୍ଡ ନାଭଲ୍‌କର୍ ନିଜର ବ୍ୟାକରଣରେ କେତେକ ସ୍ୱାଧୀନତା ଦେଖାଇଥିଲେ ସତ, ମାତ୍ର ଯେତେଦୂର ଜଣାଯାଏ, ମରହଟ୍ଟୀ ଭାଷାରେ ଓଡ଼ିଆ, ବଙ୍ଗଳାପରି କୃତ୍ରିମ ସଂସ୍କୃତର ପ୍ରଭାବ ତେତେ ନ ଥିଲା । ତେଣୁ ନାଭଲ୍‌କରଙ୍କ ବ୍ୟାକରଣ କୌଣସି ବିଶେଷ ସଂସ୍କାର ପ୍ରୟାସର ଚିହ୍ନବୋଲି ଜଣା ପଡ଼ିନାହିଁ । ପୁଣି ନାଭଲ୍‌କର୍ ନିଜେ କିରସ୍ତାନ୍ ପାଦ୍ରୀ ଥିଲେ । ରକ୍ଷଣଶୀଳ ସମାଜରେ ତାଙ୍କ ଗ୍ରନ୍ଥର ଆଦର କେତେଦୂର ହୋଇଅଛି ତାହା ଅନୁସନ୍ଧାନର ବିଷୟ । ଇଉରୋପୀୟ ପାଦ୍ରୀମାନଙ୍କୁ ମରହଟ୍ଟୀ ଭାଷା ଶିଖାଇବା ବୋଧହୁଏ ତାଙ୍କ ବ୍ୟାକରଣର ଉଦ୍ଦେଶ୍ୟ ଥିଲା । ତେଣୁ ଇଂରାଜୀରେ ଲେଖା ହେଲେ ମଧ୍ୟ ଅନ୍ୟ ପ୍ରଦେଶକୁ ତାହାର ଇଙ୍ଗିତ ବା ପ୍ରଭାବ ପହଞ୍ଚି ନାହିଁ ।

ମରହଟ୍ଟୀ ପରି ଗୁଜୁରାଟୀ ଭାଷା ଓ ସାହିତ୍ୟରେ କେତେକ ସ୍ୱାଧୀନତା ଅଛି । ମାତ୍ର ସେ ଭାଷାର ବ୍ୟାକରଣରେ ତାହା ତାଦୃଶ ପ୍ରକାଶିତ ହୋଇନାହିଁ । ଗୁଜୁରାଟୀ ଜାତି ବଣିକ୍ । ସେମାନଙ୍କର ଭାଷା ସ୍ୱଭାବତଃ କେତେକ ସ୍ୱାତନ୍ତ୍ୟ ଓ ସାର୍ବଜନୀନତା ଦେଖାଇବା ବିଚିତ୍ର ନୁହେ । କିନ୍ତୁ ସାହିତ୍ୟଭାବରେ ଦେଶ ବିଦେଶରେ ପ୍ରଭାବ ବିସ୍ତାର କରିବା ସେ ଭାଷା ପକ୍ଷରେ ଏପର୍ଯ୍ୟନ୍ତ ସେତେ ସମ୍ଭବ ହୋଇନାହିଁ ।

ଦକ୍ଷିଣଭାରତର ଭାଷାମାନଙ୍କ ମଧ୍ୟରେ ବିଶେଷରେ ତେଲୁଗୁ ଆର୍ଯ୍ୟଭାଷା ଚଳୁଥିବା ପ୍ରଦେଶକୁ ଲାଗି ରହିଛି । ତେଣୁ ରକ୍ଷଣଶୀଳତା ଓ କୃତ୍ରିମତା ସେ ଭାଷାରେ ବଙ୍ଗଳା, ଓଡ଼ିଆଠାରୁ ଅଧିକ ଦେଖିବାକୁ ମିଳେ । ଏପରିକି ସେ ଭାଷାରେ ଲେଖକମାନେ ଏବେ ମଧ୍ୟ ନିଜ ଲେଖାରେ ସାମାନ୍ୟ ଚଳିତ ଭାଷାର ପଦ୍ଧତି ଓ ଶବ୍ଦମାନ ପ୍ରୟୋଗ କରିବା ନିମନ୍ତେ

ପ୍ରାଚୀନପନ୍ଥିମାନଙ୍କ ସଙ୍ଗେ ଘୋର ସଂଗ୍ରାମ କରୁଅଛନ୍ତି । ସେ ସଂଗ୍ରାମ ମଧ୍ୟ ବଡ଼ ନୂତନ । ଆର୍ଯ୍ୟ ଓ ସଂସ୍କୃତ ଭାବ ରକ୍ଷା କରିବାର ପ୍ରବୃତ୍ତି ସେ ପ୍ରଦେଶର ଓଡ଼ିଶା ପ୍ରଭୃତି ପ୍ରଦେଶଠାରୁ ବେଶି ଭୟଙ୍କର ହେବାର କଥା । ବିଶେଷତଃ ଭାଷାରାଜ୍ୟରେ ଯେଉଁଠାରେ ଆର୍ଯ୍ୟ ଅଧିକାର ପଶିପାରି ନାହିଁ, ସେ ପ୍ରଦେଶରୁ ଭାଷାର ସ୍ୱାଧୀନତା ଓ ସାର୍ବଜନୀନତା ଶିଖିବାର ପ୍ରୟାସ ଆମ୍ଭମାନଙ୍କ ପକ୍ଷରେ ବର୍ତ୍ତମାନ ଅବସ୍ଥାରେ ଏକପ୍ରକାର ବିଡ଼ମ୍ବନା କହିଲେ ଚଳେ ।

ବଙ୍ଗଦେଶରେ ରବୀନ୍ଦ୍ରନାଥ କେତେକ ପ୍ରବନ୍ଧରେ ସ୍ୱାଧୀନ ବଙ୍ଗଭାଷା ଚର୍ଚ୍ଚାର ଗଭୀର ଇଙ୍ଗିତ ଦେଇଥିଲେ ଏବଂ ଏବେ ବିଜୟଚନ୍ଦ୍ର ମଜୁମ୍‌ଦାର ବଙ୍ଗଭାଷାର ଇତିହାସରେ ପ୍ରାକୃତିକ ଚଳିତ ଭାଷାର ମର୍ଯ୍ୟାଦା ଦେଖାଇବାର ଭୂୟଃ ପ୍ରଯତ୍ନ କରିଅଛନ୍ତି । ମାତ୍ର ସେ ପ୍ରଦେଶରେ ମଧ୍ୟ କେହି ଏପର୍ଯ୍ୟନ୍ତ ସ୍ୱତନ୍ତ୍ର ଓ ସମୂହ ଭାବରେ ଭାଷାତତ୍ତ୍ୱ ତଥା ବ୍ୟାକରଣର ସମ୍ୟକ୍ ସ୍ୱାଧୀନ ପରିଶୀଳନ କରିବାର ଜଣାନାହିଁ ।

ଓଡ଼ିଆରେ ଏ ଉଦ୍ୟମ ପ୍ରଥମେ ପାରଳାର ସୁଲେଖକ ସୁପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ଆରମ୍ଭ କରିଥିଲେ । ଉତ୍କଳସାହିତ୍ୟ ପତ୍ରରେ ଓଡ଼ିଆଭାଷା ଓ ଛନ୍ଦ ସମ୍ବନ୍ଧରେ କେତୋଟି ମାତ୍ର ମୌଳିକ ପ୍ରବନ୍ଧ ପ୍ରକାଶ କରି, ସେ ଅକାଳରେ ଇହଧାମ ତ୍ୟାଗକଲେ । ତାଙ୍କପରେ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ତଥା ପ୍ରାକୃତ ଭାଷାତତ୍ତ୍ୱର ସ୍ୱାଧୀନ ପରିଶୀଳନରେ ଅଦ୍ୟାପି ଅଦ୍ୱିତୀୟ କହିଲେ ଚଳେ । ବଙ୍ଗଦ୍ୱାରା ସାକ୍ଷାତ୍ ପ୍ରଭାବିତ ଉତ୍କଳ ଖଣ୍ଡରେ ଜନ୍ମ ହୋଇଥିଲେ, କିଏ କହିପାରେ ଶ୍ୟାମସୁନ୍ଦର ଓ ଗୋପୀନାଥ ପିଲାଦିନୁ ହୁଏତ ଭାଷାକୁ ଭିନ୍ନ ଭାବରେ ଦେଖିଥାଆନ୍ତେ । କିନ୍ତୁ ଗଞ୍ଜାମରେ, ପ୍ରାକୃତିକ ଉତ୍କଳର ପ୍ରାୟ ଦକ୍ଷିଣ ସୀମାରେ ରହି ସେମାନେ ଭାଷାକୁ ପ୍ରାଣରୁ ଅଧିକ ମଣି ଆରାଧନା କରୁଥିଲେ । ତାହା ହୁଏତ ତାଙ୍କ ଭାଷାଚର୍ଚ୍ଚାର ସ୍ୱାଧୀନତାରେ ପ୍ରଧାନ ଉପାଦାନ ଥିଲା । ମାତ୍ର ଗୋଟିଏ କଥା ଏଠାରେ ମନେରଖିବାକୁ ହେବ, ପଣ୍ଡିତ ଗୋପୀନାଥ ନନ୍ଦ ଶ୍ୟାମସୁନ୍ଦରଙ୍କ ପରି ଇଂରାଜୀଭାଷା ତଥା ପ୍ରତୀଚ୍ୟ ରୀତିରେ ଶିକ୍ଷା ଲଭି ନ ଥିଲେ । ସଂସ୍କୃତରେ ପଣ୍ଡିତ ଥାଇ, ପ୍ରାକୃତ ଓଡ଼ିଆରେ ଆଲୋଚନାରେ ସେ ଯେଉଁ ମୌଳିକ ସ୍ୱାଧୀନତା ଦେଖାଇ ଅଛନ୍ତି, ତାହା ଅନନ୍ୟସାଧାରଣ ପ୍ରତିଭା ଓ ସାହସର ପରିଚାୟକ । ଏ ସମ୍ପର୍କରେ ଏଠାରେ ତାଙ୍କ ଜୀବନର ସଂକ୍ଷେପତଃ ଆଭାସ ଦେଲେ, ବିଷୟଟି ସୁବୋଧ ଓ ସ୍ପଷ୍ଟ ହେବାର ଆଶା କରାଯାଏ ।

ଖ୍ରୀଷ୍ଟାବ୍ଦ ୧୮୬୯ ସାଲ ଅଗଷ୍ଟମାସ ୨୧ ତାରିଖରେ ଗୋପୀନାଥ ନନ୍ଦ ଗଞ୍ଜାମ ଜିଲାର ପାରଳାଖେମୁଣ୍ଡି ସହରରେ ଜନ୍ମ ହୋଇଥିଲେ । ନନ୍ଦେ ଉତ୍କଳ ଶ୍ରେଣୀର ବ୍ରାହ୍ମଣ । ପ୍ରାୟ ୧୫୦ବର୍ଷ ତଳେ ପାରଳାଖେମୁଣ୍ଡି ରାଜା ନନ୍ଦଙ୍କ ପୂର୍ବପୁରୁଷଙ୍କୁ ପୁରୀ ନିକଟସ୍ଥ ବୀରବଳଭଦ୍ରପୁର ଶାସନରୁ ନେଇ ପାରଳାରେ ରଖାଇଥିଲେ । ପ୍ରାୟ ସେହି ସମୟକୁ ବା ତାହାର କିଛିଦିନ ପରେ ଗଞ୍ଜାମ ଜିଲ୍ଲା, ଉତ୍ତର ସରକାର ସଙ୍ଗେ, ଇଂରେଜ ଶାସିତ ମାନ୍ଦ୍ରାଜ ପ୍ରେସିଡେ଼ନ୍ସିର ଅନ୍ତର୍ଗତ ହେଲା; ଏବଂ ବିଦେଶୀ ଇଂରେଜମାନଙ୍କ ପାଖେ ତେଲେଙ୍ଗା

ଦେଶରେ ପରିଗଣିତ ହେଲା । ସ୍କୁଲ୍ କଚେରୀରେ କ୍ରମେ ସ୍ପଷ୍ଟ ଓ ସାକ୍ଷାତ ଭାବରେ ତେଲଙ୍ଗାର ପ୍ରତିପତ୍ତି ବଢ଼ିଲା । ତେଲଙ୍ଗା ନ ଜାଣିଲେ କେହି ରାଜକର୍ମଚାରୀ ହୋଇପାରିଲେ ନାହିଁ । ଏପରି ଅବସ୍ଥାରେ ଅନ୍ୟ କ୍ଷୁଦ୍ର ଅପରିଣତ ଭାଷା ଆତ୍ମବିସ୍ମୃତ ହୋଇ ଲୁଚିଯିବାର କଥା; ମାତ୍ର ଓଡ଼ିଆ ଜାତିର ସଭ୍ୟତା ଥିଲା, ଭାଷା ଥିଲା, ସାହିତ୍ୟ ଥିଲା । ପ୍ରାୟ ଦୁଇ ଶତାବ୍ଦୀର ରାଜନୀତିକ ପରତନ୍ତ୍ରତା ଓ ଆନୁଷଙ୍ଗିକ ସାମାଜିକ ବିକ୍ଷୋଭରେ ଓଡ଼ିଆ ଧ୍ୱଂସପାଇବା ଦୂରେ ଥାଉ, ଆତ୍ମଜ୍ଞାନରେ ଜର୍ଜରିତ ହେଉଥିଲା । ଏପରି ଅବସ୍ଥାରେ ଇଂରେଜଶାସନରେ ତାହା ଲୁଚିଯିବା ଅସମ୍ଭବ । ଇଂରେଜଶାସନର ରୀତିମତ ଉଦ୍ୟମ ସତ୍ତ୍ୱେ ତାହା ଧ୍ୱଂସ ଆଡ଼କୁ ନ ଯାଇ, ବରଂ କ୍ରମେ ଆତ୍ମବୁଦ୍ଧିରେ ଉଦ୍‌ବୁଦ୍ଧ ହେବାକୁ ଲାଗିଲା । ଲୋକେ ନିଜେ ନିଜେ ଓଡ଼ିଆଭାଷା ଶିଖିଲେ, ପିଲାଙ୍କୁ ଶିଖାଇଲେ, ଓଡ଼ିଆରେ ଗ୍ରନ୍ଥ ଲେଖିଲେ । ଏମନ୍ତ କି, ଗଞ୍ଜାମ ଗତ ଅଢ଼େଇଶ' ତିନିଶ' ବର୍ଷ ମଧ୍ୟରେ ଓଡ଼ିଆଭାଷା ଓ ସାହିତ୍ୟର ଏକମାତ୍ର କେନ୍ଦ୍ରଭୂମି ହୋଇଅଛି କହିଲେ ଚଳେ । ଜାତୀୟ ଜୀବନର ଏ ସ୍ୱାତନ୍ତ୍ର୍ୟ, ଏ ବଳିଷ୍ଠତା ନଷ୍ଟ କରିବା ତେଲଙ୍ଗା ପକ୍ଷରେ ସମସ୍ତ ରାଜଶକ୍ତିର ସହାୟତା ସତ୍ତ୍ୱେ ଅସମ୍ଭବ ହୋଇଅଛି । ସେତେବେଳୁ ମଧ୍ୟ ଓଡ଼ିଆ ଦେଶଯାକ ଚାଟଶାଳୀମାନଙ୍କରେ ଓଡ଼ିଆ ପଢ଼ା ହେଉଥାଏ, ମାତ୍ର ରାଜ୍ୟର ବ୍ୟବହାର ନିମନ୍ତେ ଲୋକେ ବିଦେଶୀ ଭାଷା ପରି ତେଲେଙ୍ଗା ମଧ୍ୟ ପଢୁଥାଆନ୍ତି ।

ଗୋପୀନାଥ ବାଲ୍ୟକାଳରେ ନିତ୍ୟାନନ୍ଦ ଶତପଥୀଙ୍କ ଚାଟଶାଳୀରେ ଦେଶୀୟ ରୀତିରେ ଶିକ୍ଷାରମ୍ଭ କରିଥିଲେ, ଏବଂ ଘରେ ଅବସର ବେଳେ ନିଜ ପିତାଙ୍କ ପାଖେ ଅମରକୋଷ ଅଭିଧାନ ପଢୁଥାଆନ୍ତି । ସେତେବେଳକୁ ଚାଟଶାଳୀମାନଙ୍କରେ ଓଡ଼ିଆ ସଙ୍ଗେ ତେଲେଙ୍ଗାଭାଷା ମଧ୍ୟ ଶିକ୍ଷା ଦିଆ ଯାଉଥିଲା, ଓ ନନ୍ଦେ ବି ଓଡ଼ିଆ ସଙ୍ଗେ ତେଲେଙ୍ଗା ଶିଖୁଥିଲେ । ବର୍ତ୍ତମାନ ପାରଳାଖେମୁଣ୍ଡି ରାଜାଙ୍କର ଯେଉଁ କଲେଜ ଅଛି, ତାହା ସେତେବେଳେ ମଧ୍ୟ ଇଂରାଜୀ ବିଦ୍ୟାଳୟ ମାତ୍ର ଥିଲା । ୧୮୮୨ ଖ୍ରୀଷ୍ଟାବ୍ଦଠାରୁ ୧୮୮୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗୋପୀନାଥ ସେହି ମଧ୍ୟଇଂରାଜୀ ବିଦ୍ୟାଳୟରେ ପଢ଼ିଥିଲେ ଏବଂ ଫଳରେ ସାମାନ୍ୟ ଇଂରାଜୀ ଶିକ୍ଷା ମଧ୍ୟ ପାଇବା ତାଙ୍କ ଭାଗ୍ୟରେ ଘଟିଥିଲା ।

ବିଦେଶୀ ଭାଷାମାନଙ୍କର ନିଷ୍ପେଷଣ ମଧ୍ୟରେ ଜାତୀୟ ଆତ୍ମଜ୍ଞାନ ତାଙ୍କର ସବୁବେଳେ ଉଦ୍‌ବୁଦ୍ଧ ଥାଏ, ଏବଂ ଫଳତଃ ମାତୃଭାଷା ପ୍ରତି ଶ୍ରଦ୍ଧା ଓ ଆଦର ବଢୁଥାଏ । ସେ ସାମାଜିକ ଭାବରେ ଗୌଡ଼ୀୟ ବୈଷ୍ଣବ ଥିଲେ, ଏବଂ ଓଡ଼ିଆର ଗୌଡ଼ୀୟ ବୈଷ୍ଣବ ଭଜନ ସବୁ ତାଙ୍କୁ ଖୁବ୍ ମୁଗ୍ଧ କରୁଥିଲା । କ୍ରମେ ଧର୍ମ ପ୍ରତି ତାଙ୍କର ମନ ଅତିଶୟ ଆକୃଷ୍ଟ ହେବାରୁ, ସେ ଦିନେ ପିତାଙ୍କ ଅନୁପସ୍ଥିତି ଏବଂ ମାତା ଓ ଜ୍ୟେଷ୍ଠଭ୍ରାତାଙ୍କ ଅଜ୍ଞାତରେ ବୃନ୍ଦାବନ ଯାତ୍ରା ଉଦ୍ଦେଶ୍ୟରେ ଘରୁ ବାହାରିଗଲେ । ପିତା ଘରକୁ ଫେରିଆସି ଓ ସମ୍ବାଦ ପାଇ ପଛେ ପଛେ ଖୋଜିବାକୁ ବାହାରି କଟକଠାରୁ ଗୋପୀନାଥଙ୍କୁ ଫେରାଇନେଲେ । ଏହାପରେ ସେ

ଆଉ ମଧ ଇଂରାଜୀ ବିଦ୍ୟାଳୟକୁ ପଢ଼ିବାକୁ ଯାଇନାହାନ୍ତି ।

ଗୌଡ଼ୀୟ ବୈଷ୍ଣବ ଦୀକ୍ଷା ତେଲଙ୍ଗାଙ୍କ ସାମାଜିକ ଭାବ ନୁହେଁ । ଓଡ଼ିଆର ଭାଷା, ସାହିତ୍ୟ ଓ ଭାବ ସେଥିରେ ସର୍ବଥା ପ୍ରଭାବିତ ଓ ଜଡ଼ିତ । ତେଣୁ ଏହି ଗୌଡ଼ୀୟ ବୈଷ୍ଣବ ଭାବର ପ୍ରଭାବ ଗୋପୀନାଥଙ୍କର ଓଡ଼ିଆ ଭାବକୁ କିପରି ଜୀବନ୍ତ ଓ ଶକ୍ତିମାନ୍ ରଖିଥିଲା, ତାହା ସମସ୍ତେ ଅନୁମାନ କରିନେବେ । ଓଡ଼ିଆର ପୁରାଣ ଓ ବୈଷ୍ଣବ ଧର୍ମଗ୍ରନ୍ଥମାନ ପାଠକରିବା ବହୁଦିନରୁ ତାଙ୍କର ଅଭ୍ୟାସ ହୋଇ ସାରିଥିଲା । ଏବେ ସେ ପ୍ରାଚୀନ ଓଡ଼ିଆ କାବ୍ୟଗ୍ରନ୍ଥମାନଙ୍କର ପରିଶୀଳନ କଲେ ।

ଓଡ଼ିଆଭାଷା ପ୍ରତି ତାଙ୍କର ସମଧିକ ଆଦର ଓ ପ୍ରୀତି, ତହିଁରେ ପୁଣି ସମ୍ପୂର୍ଣ୍ଣ ଭିନ୍ନ ପ୍ରାକୃତିକ ତେଲଙ୍ଗା ଭାଷାର ନିଷ୍ପେଷଣରେ ଜୀବନ୍ତ ଆତ୍ମଜ୍ଞାନ ଉପରେ ଆଘାତ । କାରଣ ବଙ୍ଗଳା, ହିନ୍ଦୀ ପ୍ରଭୃତି ପରି ତେଲଙ୍ଗାର ପ୍ରଭାବ ଓଡ଼ିଆ ଉପରେ ପଡ଼ିବା ସମ୍ଭବ ନୁହେଁ । ଏତେଦିନ ପରେ ମଧ ସେଥିପାଇଁ ଗଞ୍ଜାମର ଘୁମୁସରରେ ବିଶୁଦ୍ଧ ଓଡ଼ିଆର ଉପାସକ ଥିଲେ । ଅନ୍ୟଭାଷାର ପ୍ରଭାବରେ ବିବ୍ରତ ହୋଇ ଆଲୋଚନାରେ ପଥଭ୍ରଷ୍ଟ ହେବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ସାରଳାଦାସଙ୍କ ମହାଭାରତ ଓ ବଳରାମଦାସଙ୍କ ରାମାୟଣ ପ୍ରଭୃତିରେ 'ତୁଳୁ', 'ମୁକୁ', 'ପୁତ୍ରନ୍ତ', 'ତୋଏ', 'ହୁଅସି', 'ଜାନ୍ତେଣ' (ଯାନ୍ତେଣ) ପ୍ରଭୃତି ପ୍ରୟୋଗ ତଥା ବାକ୍ୟମାନଙ୍କରେ ସଂସ୍କୃତ ବ୍ୟାକରଣର ନିୟମ ଦୃଷ୍ଟିରେ ବେଳେ ବେଳେ ଘୋର ସ୍ୱାତନ୍ତ୍ର୍ୟମାନ ଦେଖି ଭାଷାର ଅଭ୍ୟନ୍ତର ଦେଖିବାପାଇଁ ନନ୍ଦଙ୍କର ମନ ଟାଳିଲା । ତଥାକଥିତ ସାଧାରଣ ସାହିତ୍ୟସେବୀଙ୍କପରି ନନ୍ଦେ ସେ ସବୁକୁ ଅଶୁଦ୍ଧ ନ ବିଚାରି ସେମାନଙ୍କର କିଛି ତାତ୍ତ୍ୱିକ କାରଣ ଅଛି ବୋଲି ଅନୁମାନ କଲେ, ଏବଂ ପ୍ରାକୃତ ଓ ସଂସ୍କୃତ ଭାଷାର ସମ୍ୟକ୍ ଆଲୋଚନା ବିନା ସେସବୁ ତତ୍ତ୍ୱର ମୀମାଂସା ହୋଇପାରିବ ନାହିଁ ବୋଲି ବିଚାରି, ସେହି ଦୃଷ୍ଟିରେ ସେ ଗଭୀର ମମତା, ଆଦର ଓ ଅନୁସନ୍ଧିତ୍ସାର ସହିତ ପ୍ରାକୃତ ଓ ସଂସ୍କୃତ ବ୍ୟାକରଣାଦିର ଚର୍ଚ୍ଚାରେ ମନଦେଲେ ।

ସଂସ୍କୃତରେ ବ୍ୟୁତ୍ପତ୍ତି ବିନା ପ୍ରାକୃତର ଆଲୋଚନା ସହଜ ନୁହେଁ । ସେହିହେତୁରୁ ସେ ସଂସ୍କୃତ ବ୍ୟାକରଣ ଓ କାବ୍ୟନାଟକମାନ ଭଲକରି ପଢ଼ିସାରି ପରେ ପାଳି ଓ ପ୍ରାକୃତର ବ୍ୟାକରଣ ତଥା କାବ୍ୟମାନ ଚର୍ଚ୍ଚା କଲେ; ଏବଂ ଏହି ଚର୍ଚ୍ଚା ସଙ୍ଗେ ସଙ୍ଗେ ଶବ୍ଦ ଓ ବ୍ୟାକରଣ ତତ୍ତ୍ୱର ଅନୁସନ୍ଧାନ ତାଙ୍କର ଏକପ୍ରକାର ବ୍ରତ ହୋଇପଡ଼ିଲା । ଓଡ଼ିଆ ଛାନ୍ଦର ବିଶେଷତ୍ୱ ମଧ ବୋଧହୁଏ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ବହୁ ପୂର୍ବରୁ ସେ ଓଡ଼ିଆରେ କ୍ଷୁଦ୍ର କ୍ଷୁଦ୍ର କବିତାମାନ ଲେଖିଥିଲେ; ପରେ ସଂସ୍କୃତର ବହୁତ କାବ୍ୟଗ୍ରନ୍ଥ ମଧ ଅନୁବାଦ କରିଅଛନ୍ତି । ମାତ୍ର ଏ କ୍ଷେତ୍ରରେ ତାଙ୍କର ଆଲୋଚନାର ମୌଳିକତା ସମ୍ପୂର୍ଣ୍ଣ ଭିନ୍ନ ଦିଗରେ ଗତି କରିଥିଲା । ସେ ଦେଖିଲେ, ସଙ୍ଗୀତ କବିତାର ଗୋଟିଏ ଅଙ୍ଗ । ସ୍ୱର ନିୟମରେ ଅକ୍ଷର ବିନ୍ୟାସ ନ ହେଲେ, କବିତା ବ୍ୟଙ୍ଗ ହୁଏ । ଓଡ଼ିଆ ଭାଷାରେ ଏହି ସ୍ୱର ନିୟମର ସ୍ୱାତନ୍ତ୍ର୍ୟ ସାର୍ବଜନୀନତା

ଉପରେ ପ୍ରତିଷ୍ଠିତ ନ ଥିବାର ସେ ଦେଖିଲେ । ଦେଖିଲେ, ଓଡ଼ିଆ ଛାନ୍ଦ, ଗୀତ ହେବାର ନ ଶୁଣି, ନ ଶିଖି, କାହାରି ପକ୍ଷରେ ଗାଇବା ତାଦୃଶ ସମ୍ଭବ ନୁହେଁ । ବିଦେଶୀ ପକ୍ଷରେ ତାହା ବୁଝିବା ଏକାବେଳକେ ଅସମ୍ଭବ । ତେଣୁ ସେ କବିତାର ଛନ୍ଦକୁ ସାର୍ବଜନୀନ କରିବା ପାଇଁ ସଂସ୍କୃତ ଗୁରୁ ଲଘୁ ସମ୍ବଳିତ ଗଣ ଓ ମାତ୍ରା ନିୟମକୁ ଓଡ଼ିଆରେ ଭର୍ତ୍ତିକରିବାର ପ୍ରୟାସ କଲେ । ମାତ୍ର ଏଠାରେ ଓଡ଼ିଆ ବର୍ଣ୍ଣର ଉଚ୍ଚାରଣ ତଥା ଛନ୍ଦ ନିୟମର ଯେଉଁ ଘୋର ଭୟଙ୍କର ସ୍ୱାତନ୍ତ୍ର୍ୟ ଥିଲା, ତାହାକୁ ସାର୍ବଜନୀନତାର ନିଷ୍ପେଷଣରେ ଏକାବେଳକେ ଏତେ ଶୀଘ୍ର ଏପରି ଭାବରେ ନଷ୍ଟ କରିବାର ପ୍ରୟାସ ଶ୍ଳାଘନୀୟ ହୋଇପାରେ, କିନ୍ତୁ ସଙ୍ଗତ ବା ସ୍ପୃହଣୀୟ ନୁହେଁ । ପୁଣି ଭାଷାତତ୍ତ୍ୱର ଗବେଷଣା, ମନ ଓ ଚିନ୍ତାର ବିଶ୍ଳେଷଣ କ୍ରିୟା ଉପରେ ପ୍ରତିଷ୍ଠିତ । ଲୋକମୁଖରେ ବା ସାହିତ୍ୟରେ ଯାହା ଅଛି, ତାହା ଫିଟାଇ ଦେଖାଇଦେବାହିଁ ସେ ଗବେଷଣାର ବିଶେଷ କାର୍ଯ୍ୟ । ସେପରି ମାନସିକତାରେ ସଂଶ୍ଳେଷଣ ବା ନୂଆ କିଛି ଗଢ଼ିବା ବଡ଼ ସୁଗମ ନୁହେଁ । ବିଶ୍ଳେଷଣ ସୂତ୍ରରେ ସାଧାରଣ ନୀତି ଦେଖାଇବା ପାଇଁ ବେଳେ ବେଳେ ସଂଶ୍ଳେଷଣ ଦରକାର ହେଲେ ମଧ, ପଣ୍ଡିତ ନନ୍ଦଙ୍କ ପକ୍ଷରେ ଏକାବେଳକେ ଗୋଟିଏ ନୂତନ ନୀତି ଆଦର୍ଶ କରି କାବ୍ୟଛନ୍ଦରେ ତାହାର ପ୍ରତିଷ୍ଠା ପ୍ରୟାସ କରିବା ନିଜ ଧାତୁର ଅନୁକୂଳ ନ ଥିଲା ବୋଲି ଅନୁମାନ କରିବାରେ ଅସ୍ୱାଭାବିକତା ବା ଅସଙ୍ଗତି କିଛି ନାହିଁ ।

ମାତ୍ର ଭାଷାର ବିଶ୍ଳେଷଣ ଫଳରେ ସେ ଯେପରି ଗବେଷଣାର କ୍ରିୟା ଆରମ୍ଭ କରିଥିଲେ ତାହା ଏକାବେଳକେ ବିସ୍ମୟକର । ସେ ପ୍ରଥମେ ଶବ୍ଦତତ୍ତ୍ୱର ଅନୁସନ୍ଧାନ ପ୍ରକାଶ କରିଥିଲେ । ୧୯୦୩ ଖ୍ରୀଷ୍ଟାବ୍ଦରେ ତାଙ୍କର "ଶବ୍ଦତତ୍ତ୍ୱବୋଧ" ଅଭିଧାନ ଲେଖା ସରିଥିଲା । ଉତ୍କଳ ସାହିତ୍ୟ ସମାଜ ପ୍ରଥମେ ତାହା ଅନୁମୋଦନ କରିଥିଲେ; କିନ୍ତୁ ପରେ ନନ୍ଦଙ୍କର ଆବିଷ୍କୃତ ଶବ୍ଦତତ୍ତ୍ୱ ବୁଝିବାରେ ବୋଧହୁଏ ଅକ୍ଷମ ହୋଇ ତାହା ଗ୍ରହଣ କରିବାରେ କିଞ୍ଚିତ୍ କୁଣ୍ଠା ପ୍ରକାଶ କଲେ । ପଣ୍ଡିତ ନନ୍ଦେ ଶବ୍ଦତତ୍ତ୍ୱବୋଧରେ କୌଣସି ନୂତନ ନୀତି ପ୍ରଚାର କରି, ଦେଶ ଉପରେ ଲଦି ଦେବାକୁ ଯାଇନାହାନ୍ତି, ଏହା ବୋଧହୁଏ ଲୋକେ ବୁଝିପାରିଲେ ନାହିଁ । ଖୋଜି ଖୋଜି ସଂସ୍କୃତରେ ପ୍ରତ୍ୟେକ ଶବ୍ଦର ମୂଳ ଦେଖିବାକୁ ନ ପାଇ ସେ ଅନେକ ଶବ୍ଦ ଦେଶ୍ୟ ବୋଲି ବାହାର କରିଦେଲେ; କିନ୍ତୁ ସେଥିପାଇଁ ସେ କୌଣସି ଶବ୍ଦର ମୂଳ ଦେଖିବାରେ କାହାକୁ ବାଧା ଦେବାର ପ୍ରୟାସ କରିନାହାନ୍ତି; ନିଜର କୌଣସି ମତବ୍ୟକ୍ତ କରି ତାହା ଦୃଢ଼ଭାବରେ ପୋଷଣ ଓ ପ୍ରଚାର କରିବାର ଉଦ୍ୟମ କରିନାହାନ୍ତି । ଶବ୍ଦସବୁ ଫିଟାଇ ଲୋକଙ୍କ ଆଗରେ ପକାଇ ଦେଇଛନ୍ତି ମାତ୍ର ।

ଶବ୍ଦତତ୍ତ୍ୱବୋଧର ଦ୍ୱିତୀୟ ବିଶେଷତ୍ୱ ଉଚ୍ଚାରଣରେ । ଶବ୍ଦର ଯେତେ ପ୍ରକାର ଉଚ୍ଚାରଣ ଲୋକମୁଖରେ ହୁଏ, ସେ ତାହା ସବୁ ଫିଟାଇ ପକାଇ ଦେଇଛନ୍ତି । କେଉଁ ଉଚ୍ଚାରଣ ଗ୍ରାମ୍ୟ, କେଉଁ ଉଚ୍ଚାରଣ ପ୍ରାଦେଶିକ, କେଉଁ ଉଚ୍ଚାରଣ ଆଦର୍ଶ, ତାହା ସେ କହିବାକୁ ଯାଇନାହାନ୍ତି । ଅନ୍ୟାନ୍ୟ ଆଭିଧାନିକମାନଙ୍କ ପରି ଉଚ୍ଚାରଣର କେତେଗୁଡ଼ିଏ କୃତ୍ରିମ

ରାଜମାର୍ଗରେ ସେ ପାଠକକୁ ଝିଙ୍କିବାର ଉଦ୍ୟମ କରିନାହାନ୍ତି । କେଉଁଠାରେ ମଧ ଭାରତର ପ୍ରାଚୀନ ପ୍ରାକୃତ ପ୍ରଭାବରେ ତାଲବ୍ୟ (ଶ) ଦନ୍ତ୍ୟ (ସ) ହେବ, କେଉଁଟି ବା ମାଗଧୀ ପ୍ରଭାବରେ ଦନ୍ତ୍ୟ (ସ) ତାଲବ୍ୟ (ଶ) ହେବ, କେଉଁଟି ବା ସାହିତ୍ୟର ମାନଦଣ୍ଡ ହେବ, ତାହା ସେ ସେତେବେଳେ କହିବା ସଙ୍ଗତ ମନେ କରିନାହାନ୍ତି । ସେ ଖାଲି ଆଲୋଚନାର ସବୁ ଦ୍ୱାର ଫିଟାଇ ଦେଇଛନ୍ତି ଏବଂ ଜାତୀୟ ଭାଷାର ଆଦର୍ଶ ନିର୍ଣ୍ଣୟ କରିବା ନିମନ୍ତେ ଉପାଦାନ ସବୁ ତନ୍ନ ତନ୍ନ କରି ଅତି ପ୍ରାଞ୍ଜଳ ଭାବରେ ପାଠକ ସମକ୍ଷରେ ସଜାଡ଼ି ରଖି ଦେଇଛନ୍ତି । କିନ୍ତୁ ଦୁଃଖର କଥା, ଓଡ଼ିଶାର ସାହିତ୍ୟସେବୀମାନେ କୃତ୍ରିମ ଆଦର୍ଶର ବନ୍ଧନରେ ଚିରକାଳ ବଦ୍ଧଦୃଷ୍ଟି ଥିବାରୁ ସେତେବେଳେ ନନ୍ଦଙ୍କର ଏ ନୂତନତ୍ୱ, ଏ ପୁରୋଦୃଷ୍ଟି, ଏ ସତ୍‌ସାହସ ଏ ସାଧୁ ଉଦ୍ୟମ ବୁଝିନାହାନ୍ତି ।

ନନ୍ଦେ କିନ୍ତୁ ନିଜର ଭାଷାତତ୍ତ୍ୱ ଗବେଷଣାକୁ ଏହି ଉପାଦାନ ସଂଗ୍ରହ ମାତ୍ରରେ ପର୍ଯ୍ୟବସିତ ରଖିନାହାନ୍ତି । ଅଭିଧାନ ଶେଷ କରିବାର ଠିକ୍ ପରେ ସେ ବ୍ୟାକରଣ ସମ୍ବନ୍ଧୀୟ ଭାଷାତତ୍ତ୍ୱର ଆଲୋଚନାରେ ଲାଗିଲେ । ପ୍ରବନ୍ଧ ମାନ ଭିନ୍ନ ଭିନ୍ନ ମାସିକ ପତ୍ରିକାରେ ପ୍ରକାଶ କଲେ । ପ୍ରତିବାଦମାନ ହେଲା । ନନ୍ଦେ ଆଦର୍ଶ ଦୃଢ଼କରି କ୍ରମେ ନୀତିପୀଠରେ ଦଣ୍ଡାୟମାନ ହୋଇ ପ୍ରତିବାଦମାନଙ୍କର ଉତ୍ତର ଦେଲେ । ଦେଶର ସାହିତ୍ୟ ସେତେବେଳେ ଯେ ଦଶାରେ ଥିଲା, ସେଥିରେ ସାହିତ୍ୟସେବୀ ବୋଲି ଯେଉଁମାନେ ପରିଚିତ ଥିଲେ, ସେମାନଙ୍କ ମଧରୁ ଅଧିକାଂଶ ନନ୍ଦଙ୍କ ଯୁକ୍ତିର ଗଭୀରତା ଓ ମୌଳିକତା ବୁଝିବାକୁ ସମର୍ଥ ହୋଇ ନ ଥିଲେ ସତ, ମାତ୍ର କେହି କେହି ପୁରୋଦୃଷ୍ଟିସମ୍ପନ୍ନ ଅନୁଶୀଳନେଚ୍ଛୁ ନନ୍ଦଙ୍କର ଏକାବେଳକେ ଭକ୍ତପରି ହୋଇପଡ଼ିଥିଲେ । ସେହି ମୁଷ୍ଟିମେୟ ଲୋକଙ୍କ ଉତ୍ସାହ ଓ ପ୍ରବର୍ତ୍ତନା ନନ୍ଦଙ୍କର ରୁକ୍ଷ କର୍ତ୍ତବ୍ୟନିଷ୍ଠାକୁ କି ପରିମାଣରେ ସରସ କରିଥିଲା ତାହା ଜଗତ ଜାଣିନାହିଁ; କିନ୍ତୁ ଏହା ସ୍ୱୀକାର କରିବାକୁ ହେବ, ନନ୍ଦଙ୍କର ଘୋର ବ୍ରତ କୌଣସି ଉତ୍ସାହ ପ୍ରଣୋଦନାର ତାଦୃଶ ଅପେକ୍ଷା ରଖି ନ ଥିଲା । କାଳକ୍ରମେ ସେ ଶୃଙ୍ଖଳାବଦ୍ଧ ଭାବରେ ଏହି ଭାଷାତତ୍ତ୍ୱ ଗ୍ରନ୍ଥ ଆରମ୍ଭ କଲେ । ଏ ଗ୍ରନ୍ଥର କ୍ରିୟାଭାଗ ଶେଷ ହୋଇନାହିଁ, ହଠାତ୍ ୧୯୨୪ ଖ୍ରୀଷ୍ଟାବ୍ଦ ଜାନୁଆରୀ ୧୪ ତାରିଖରେ ୫୪ ବର୍ଷ ବୟସରେ ପଣ୍ଡିତ ନନ୍ଦେ ଇହଧାମ ଛାଡ଼ିଲେ । କ୍ରିୟାଭାଗ ବିଷୟରେ ସେ କେତେ ଟିପ୍ପଣୀ ମାତ୍ର ରଖିଥିଲେ । ତାହା ଯେପରି ଲେଖା ହୋଇଥିଲା, ସେହିପରି ପ୍ରକାଶିତ ହୋଇଅଛି । ଓଡ଼ିଆଭାଷା ଓ ସାହିତ୍ୟର ଇତିହାସ ଲେଖିବା ତାଙ୍କର ଅନ୍ୟତମ କଳ୍ପନା ଥିଲା । ତାହା ବି ଅପୂର୍ଣ୍ଣ ରହିଗଲା ।

(୨)

ଭାଷାର ପ୍ରକୃତି କାହିଁରେ ? ଶବ୍ଦର ଆଦାନ ପ୍ରଦାନରେ ଭାଷାର ପ୍ରକୃତି ବଦଳିଯାଏ ନାହିଁ । ଓଡ଼ିଆ, ବଙ୍ଗଳା, ହିନ୍ଦୀ ତଥା ଉତ୍ତରକାଳର ସଂସ୍କୃତରେ ମଧ ଦ୍ରାବିଡ଼ ଶବ୍ଦ କମ୍

ପଶିନାହିଁ । ଏପରି କି ପରବର୍ତ୍ତୀ ବୈଦିକଯୁଗରେ 'ଅପ୍' ଅର୍ଥରେ 'ନୀର' ପରି ଦ୍ରାବିଡ଼ ଶବ୍ଦ ମଧ୍ୟ ପଶି ଯାଇଅଛି । ଓଡ଼ିଆ, ବଙ୍ଗଳାର ଶବ୍ଦସଂଗ୍ରହ ପରୀକ୍ଷା କଲେ ଦେଖାଯିବ, ଅଧିକରୁ ବେଶି ଶବ୍ଦର ମୂଳ ଦ୍ରାବିଡ଼ । ବଡ଼, ସାନ, ପିଲା, ମାଇପ, ନନା, ନାନୀ, ଅପା ପ୍ରଭୃତି ପରି ନିତ୍ୟ ବ୍ୟବହାର୍ଯ୍ୟ ଶବ୍ଦରେ ଯେ କେତେ ଦ୍ରାବିଡ଼ମୂଳକ ଶବ୍ଦଅଛି, ତାହା ଏବେ ମଧ୍ୟ ନିର୍ଣ୍ଣିତ ହୋଇନାହିଁ । ମାତ୍ର ଏସବୁ ଶବ୍ଦ ଓ ତାହାର ମୂଳ ପ୍ରକୃତି ଘେନି କୌଣସି ଆର୍ଯଭାଷା ଦ୍ରାବିଡ଼ ହେବ ନାହିଁ । କେବଳ ଦ୍ରାବିଡ଼ ଶବ୍ଦ କାହିଁକି, ମୁସଲମାନ ପ୍ରଭାବରେ ମୌଜା, ତଉଜି, ମଜୁଦୁର, ନେକି, ବଦି, କିତାବ୍ କରାମତ୍, ଅକ୍ତିଆର୍ ପ୍ରଭୃତି କେତେ ଆରବୀ ବା ସେମିଟିକ୍ ଶବ୍ଦ, ଏବଂ ଏବେ ମଧ୍ୟ ପାଦ୍ରୀ, ଚାବି ପ୍ରଭୃତି ପର୍ତ୍ତୁଗୀଜ ଶବ୍ଦ ଓ ସିଠାମ୍, କାଞ୍ଜିହାଉସ୍, ଗିଲାସ, ଟେବୁଲ ପ୍ରଭୃତି ଇଂରେଜ ଶବ୍ଦ ପଶିବାରୁ ଭାଷାର ଶବ୍ଦସମଷ୍ଟି ପରିପୁଷ୍ଟ ହେଉଅଛି । ମାତ୍ର ଭାଷାର ପ୍ରକୃତି ବଦଳାଇବାରେ ତାହାର କ୍ରିୟା ନାହିଁ ।

ଯେଉଁସବୁ ଶବ୍ଦ ଭାଷାକୁ ଆସୁଅଛି, ତାହା କିନ୍ତୁ ଅବିକଳ ସେହିପରି ରହୁନାହିଁ; ଭାଷାର ସ୍ୱତନ୍ତ୍ର ପ୍ରକୃତିରେ ପଡ଼ି ପରିବର୍ତ୍ତିତ ହେଉଅଛି । ସେମାନଙ୍କର ସ୍ୱର ବ୍ୟଞ୍ଜନ ବିନ୍ୟାସର ଯଥେଷ୍ଟ ଆକୁଞ୍ଚନ, ପ୍ରସାରଣ ଓ ବିବର୍ଦ୍ଧନ ହେଉଅଛି । ଏହି ସ୍ୱର ବା ବର୍ଣ୍ଣନିୟମର ପରିଣତି ପ୍ରକ୍ରିୟା ଓ ପ୍ରଣାଳୀକୁ ଭାଷାର ପ୍ରାଣ ଓ ବ୍ୟାକରଣ ନିୟମକୁ ତାହାର ସ୍ଥୂଳ ଶରୀର କହିଲେ ଚଳେ । ପୁଣି ପଦମାନଙ୍କର ଅନ୍ୱୟର ଧାରା ବ୍ୟାକରଣର ପ୍ରଧାନ ଉପାଦାନ, ଏବଂ ଏହି ଅନ୍ୱୟଧାରାରେ ବିଭକ୍ତି, ବିଶିଷ୍ଟ ଆଲୋଚ୍ୟ ବସ୍ତୁ । ସେହି ବିଭକ୍ତି ଦୁଇଭାଗ - କାରକ ଓ କ୍ରିୟା ବିଭକ୍ତି । ଫଳତଃ ବାକ୍ୟଟି ଦୁଇ ପ୍ରଧାନ ଭାଗରେ ବିଭକ୍ତ । ଯଥା- କାରକ ବା ବିଷୟ ଭାଗ; ଓ କ୍ରିୟା ବା ବାଚ୍ୟଭାଗ, ଏ ଦୁଇଟି ମଧ୍ୟରେ କ୍ରିୟା ବା ବାଚ୍ୟ ଭାଗ ପ୍ରଧାନ । କାରଣ, ଏହି ଭାଗ ବାକ୍ୟରେ ଭାବ ପ୍ରକାଶର ପ୍ରଧାନ ଉପକରଣ । ପ୍ରଧାନ ଓ ସହାୟକ କ୍ରିୟା ଏବଂ ସେମାନଙ୍କ ବିଶେଷକମାନଙ୍କର ଯଥା ପ୍ରୟୋଗଦ୍ୱାରା ବିଷୟ ସମ୍ବନ୍ଧରେ ଯାହା କୁହାଯାଏ, ତାହାର ତାହାର ସମ୍ୟକ୍ ଓ ସର୍ବାଙ୍ଗୀନ ଅବବୋଧ ସୁଷ୍ଟହୁଏ । ମାତ୍ର ଦୁଃଖର କଥା, ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ଗ୍ରନ୍ଥର କ୍ରିୟାଭାଗ ଲେଖାହୋଇ ପାରିନାହିଁ ଏବଂ ଏଣୁ ଗ୍ରନ୍ଥଟି ଯଥାର୍ଥରେ ଅପୂର୍ଣ୍ଣ ଅଛି ।

କେବଳ ବର୍ଣ୍ଣ, ଶବ୍ଦ, ଏବଂ ଅବ୍ୟୟ ଓ ସର୍ବନାମ ସମେତ କାରକାଦି ସମ୍ବନ୍ଧରେ ଏହି ଭାଷାତତ୍ତ୍ୱ ଗ୍ରନ୍ଥରେ ବିଶେଷ ଆଲୋଚନା ହୋଇଅଛି । ଗ୍ରନ୍ଥପ୍ରବେଶ ସୂତ୍ରରେ ସେହି ସବୁର କେତେକ ସମାଲୋଚନାର ଆଭାସ ଦେବା ପ୍ରୟୋଜନ । ତାହା ପୁଣି ବିଶେଷ ଭାବରେ ଦେବାର ଅବକାଶ ବା ସୁଯୋଗ ଏଠାରେ ନାହିଁ । କାହିଁକି ନା, ତାହାହେଲେ 'ଗ୍ରନ୍ଥପ୍ରବେଶ'ର ଯେ କଳେବର ପ୍ରକାଶକଙ୍କ ଦ୍ୱାରା ସଂକଳ୍ପିତ ହୋଇଅଛି, ତାହା ବହୁ ଅତିକ୍ରାନ୍ତ ହେବାର ଆଶଙ୍କା ହୁଏ । ତେଣୁ ଏହି ଭାଷାତତ୍ତ୍ୱ ଆଲୋଚନାରେ ଗ୍ରନ୍ଥକାର ଭାଷାର ସ୍ୱାତନ୍ତ୍ର୍ୟ ସଙ୍ଗେ ସାର୍ବଜନୀନତା ପ୍ରତିଷ୍ଠା କରିବାର କି ପ୍ରଣାଳୀ କିପରି ଅବଲମ୍ବନ କରିଅଛନ୍ତି,

ଭାଷାର ପ୍ରାଣ ଓ ପିଣ୍ଡ କିପରି ବିଶ୍ଳେଷଣ ନିୟମରେ ପ୍ରକଟ କରିଅଛନ୍ତି, ତାହାର ହିଁ ସଂକ୍ଷେପତଃ ଉଲ୍ଲେଖ କରି ଏହି ଗ୍ରନ୍ଥପ୍ରବେଶର ଉପସଂହାର କରିବାକୁ ହେବ ।

ମାତ୍ର ଆରମ୍ଭରୁ ଗୋଟିଏ କଥା କହି ରଖିବା ଉଚିତ ଯେ ପଣ୍ଡିତ ଗୋପୀନାଥଙ୍କ ଆଲୋଚନାରେ ଗଦ୍ୟ ଓ ଛନ୍ଦରେ ଭେଦ ଧରା ହୋଇନାହିଁ । ଉଦାହରଣସ୍ୱରୂପ, ବର୍ଣ୍ଣ ନିୟମ ବା ସନ୍ଧି ନିୟମରେ ସେ ଦୃଷ୍ଟାନ୍ତ ଦେଇ ଅଛନ୍ତି - ତାଟଙ୍କ+ଆଳତି=ତାଟଙ୍କାଳତି; କଳା+ଅଙ୍ଗ=କଳାଙ୍ଗ; ସେହିପରି ସ୍ତ୍ରୀଲିଙ୍ଗ ପ୍ରତ୍ୟୟରେ ବାଳୁତି, ଦୁହିତୀ ଇତ୍ୟାଦି । ଏସବୁ ବାସ୍ତବରେ ଓଡ଼ିଆ ସନ୍ଧି ବା ସ୍ତ୍ରୀ ପ୍ରତ୍ୟୟ ନିୟମର ଅନୁବର୍ତ୍ତୀ ନୁହନ୍ତି । ଛନ୍ଦର ଆବଶ୍ୟକତା ଦୃଷ୍ଟିରେ ଏସବୁ ସଂସ୍କୃତ ନିୟମ ଅନୁକରଣ ସୂତ୍ରରେ କରାହୋଇଅଛି ମାତ୍ର । ଛନ୍ଦ-ସାହିତ୍ୟ ନାନା ଭାବରେ ଗଦ୍ୟ-ସାହିତ୍ୟରୁ ପୃଥକ୍ । ଛନ୍ଦରେ ସନ୍ଧି ଓ ସ୍ୱର ନିୟମ ପ୍ରଭୃତି ଲାଗି ବହୁ ସ୍ୱାଧୀନତା ଥାଏ ପୁଣି ସୁଶ୍ରାବ୍ୟ ହେବାପାଇଁ ବହୁତ ପ୍ରାଚୀନ ପ୍ରୟୋଗ ମଧ୍ୟ ବ୍ୟବହୃତ ହୁଏ । 'ଦିଶେ' ଠାରେ ଛନ୍ଦରେ 'ଦିଶଇ' ଲେଖାହୁଏ । ଏହି 'ଦିଶଇ' ପଦ ପ୍ରାଚୀନ ପ୍ରୟୋଗ ହିସାବରେ ଗଦ୍ୟରେ ସାଧୁ ହେଲେହେଁ ଲୋକମୁଖରେ ତାହା ଆଜି ଗ୍ରାମ୍ୟ ବୋଲି ଧରାହୁଏ । ଏହାଛଡ଼ା ମଧ୍ୟ ଛନ୍ଦରେ ସ୍ୱାଧୀନତା ବହୁତ । 'କାହାକୁ କହିବି' ପରିବର୍ତ୍ତେ 'କାହାରେ କହିବି' ଛନ୍ଦରେ ଚଳେ । ଏପରି ସ୍ଥଳେ ଭାଷାତତ୍ତ୍ୱ ବିଚାରରେ ନନ୍ଦଙ୍କର ଛନ୍ଦପ୍ରୟୋଗ ସ୍ୱତନ୍ତ୍ର ଚିହ୍ନାଇବା ଅନ୍ତତଃ ଉଚିତ ଥିଲା ବୋଲି ମନେ ହୁଏ । 'ପୁତ୍ରକଇ', 'ପୁତ୍ରନ୍ତ' ପ୍ରଭୃତିର ବିଚାର ନନ୍ଦେ ବିଭକ୍ତି ସମ୍ପର୍କରେ କରିଚନ୍ତି ଏବଂ ସେସବୁ ବିଚାର ଫଳରେ ଆଧୁନିକ ବିଭକ୍ତିମାନଙ୍କର ମୂଳ ନିରୂପଣ କେତେକ ସୁଗମ ହୋଇଅଛି । କିନ୍ତୁ କେବଳ ଆଧୁନିକ ବିଭକ୍ତିମାନଙ୍କର ମୂଳ ନିର୍ଣ୍ଣୟ କରିବାରେ ସେସବୁର ବ୍ୟବହାର ଯେତିକି ଦରକାର, ସେତିକିରେ ଆଲୋଚନା ସୀମାବଦ୍ଧ ରହିଥିଲେ ଯଥେଷ୍ଟ ହୋଇଥାଆନ୍ତା । ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀର ପଦ୍ୟ-ସାହିତ୍ୟରୁ ବିଭକ୍ତି କାଢ଼ି ତାକୁ ଆଧୁନିକ ସାହିତ୍ୟର ବିଭକ୍ତି ସଙ୍ଗେ ସମାନ ଆସନ ଦେଇ ବିଚାର କରିବାରେ ଯଥେଷ୍ଟ ଅସୁବିଧା ହେବାର କଥା । ଏଣୁ ପାଠକମାନେ ଗ୍ରନ୍ଥ ପାଠ କଲାବେଳେ ଏ ବିଷୟ ପ୍ରତି ବିଶିଷ୍ଟ ଧ୍ୟାନ ଦେଇ ଅଗ୍ରସର ହେବେ ବୋଲି ଆଶା କରାଯାଏ ।

ଓଡ଼ିଆ ଭାଷାର ବଳିଷ୍ଠ ସ୍ୱାତନ୍ତ୍ର୍ୟକୁ ବିଶ୍ଳେଷଣରେ ବ୍ୟକ୍ତ କରିବା ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ଆଲୋଚନାର ପ୍ରଧାନ ଉଦ୍ଦେଶ୍ୟ କହିଲେ ଚଳେ । ରାଜନୀତିକ ତଥା ଅନ୍ୟାନ୍ୟ ବିକ୍ଷୋଭ ଓ ଉପଦ୍ରବରୁ ଓଡ଼ିଆ ଭାଷାକୁ ରକ୍ଷାକରି ନିଜ ଆସନରେ ସ୍ଥାପନ କରିବା ତାଙ୍କ ଜୀବନର ମୌଳିକ ଭିତ୍ତିକୁ ପ୍ରଭାବିତ କରିଥିଲା । ଓଡ଼ିଆ ସାହିତ୍ୟସେବୀ ସେହି ବିକ୍ଷୋଭ ଓ ଉପଦ୍ରବରେ ଯେପରି କି ବିବ୍ରତ ହୋଇ ଯେତେବେଳେ ବିଶାଳ ବଳିଷ୍ଠ ସଂସ୍କୃତରେ ନିଜ ଭାଷାର ଭୂୟୋପ୍ରତିଷ୍ଠା ଖୋଜିବାକୁ ଯାଇ ଭାଷାର ଯଥାର୍ଥ ଶିଷ୍ଟ ପ୍ରୟୋଗମାନଙ୍କୁ ମଧ୍ୟ ସଂସ୍କୃତର କୃତ୍ରିମ ନିକଷରେ କଷି ଅଶୁଦ୍ଧ ବୋଲି କହିବାକୁ ଆରମ୍ଭ

କରି ପାରିଥିଲେ, ସେତେବେଳେ ସେସବୁ ପ୍ରୟୋଗମାନଙ୍କର ତାତ୍ତ୍ୱିକ ଭିତ୍ତି ଅନୁସନ୍ଧାନ କରୁଁ ନନ୍ଦେ ଭାଷାଚର୍ଚ୍ଚା ଆରମ୍ଭ କରିଥିଲେ; ଏବଂ ଫଳରେ ଓଡ଼ିଆଭାଷାର ପ୍ରକୃତ ପରମ୍ପରା ଓ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବାକୁ ଯାଇ ସେ ନିମାଇ ବଲ୍ଲଭ ଭଟ୍ଟାଚାର୍ଯ୍ୟ ଓ ରାଧାନାଥ ରାୟ ପ୍ରଭୃତିଙ୍କ ବ୍ୟାକରଣ ତଥା ତଦାନୁଷଙ୍ଗିକ ସାହିତ୍ୟରେ ପ୍ରବର୍ତ୍ତିତ ଭାଷା କବଳରୁ ଓଡ଼ିଆଙ୍କୁ ଏକାବେଳକେ ଦୂରକୁ ଘେନି ଆସିଚନ୍ତି । ଓଡ଼ିଆର ବର୍ଣ୍ଣ ସମାମ୍ନାୟ ବିନ୍ୟାସ ସନ୍ଧି ବା ବର୍ଣ୍ଣଯୋଗ, ବର୍ଣ୍ଣର ସମ୍ପ୍ରସାରଣ ବିକୁଞ୍ଚନରେ ପ୍ରସାର ପରିବର୍ତ୍ତନ ଓ କ୍ରମପରିଣତି, ଓଡ଼ିଆ ଶବ୍ଦ ସଂହତିର ସ୍ୱାଧୀନ ଓ ସ୍ୱତନ୍ତ୍ର ବ୍ୟବହାର ଏବଂ ପ୍ରୟୋଗ ପରିପାଟୀ, ପଦ ବିଭକ୍ତିମାନଙ୍କର ତାତ୍ତ୍ୱିକ ବିଚାର ଓ ବ୍ୟବହାର, ସବୁଥିରେ ସେ ସ୍ୱାଧୀନ ସ୍ୱତନ୍ତ୍ର ଓ ନୂତନ ପନ୍ଥା ଫିଟାଇ ଅଛନ୍ତି । ସଂସ୍କୃତକୁ ସାଧୁଭାଷା ନ କହି ସେ ଯଥାଶକ୍ତି ଓଡ଼ିଆ ସାଧୁ ଗ୍ରାମ୍ୟ ଓ ପ୍ରାଦେଶିକ ଭାଷାର ସୀମା ପରିସର ଓ ବ୍ୟାପ୍ତି ନିର୍ଦ୍ଦେଶର ସୂଚନା କରିବା ଦ୍ୱାରା ପାଠକଙ୍କୁ ଭାଷାର ଯଥାର୍ଥ ଆଲୋଚନା ଦିଗରେ ଯଥେଷ୍ଟ ଇଙ୍ଗିତ ଦେଇ ଅଛନ୍ତି ।

ଜନ+ଏକ ସନ୍ଧି ନିୟମରେ 'ଜନୈକ' ନ ହୋଇ 'ଜଣେକ' (ବା ଜଣକ ?), ଆର+ଏକ 'ଆରୈକ' ନ ହୋଇ 'ଆରେକ' ବା 'ଆରକ' ହେଲେ ଯେ ସାଧୁ ଓଡ଼ିଆ ହୁଏ, 'ପୁଷ୍ପବୃନ୍ତ' ବା 'ଫୁଲବେଣ୍ଟ' ନ କହି 'ଫୁଲଡ଼େମ୍ଫ' କହିବାହିଁ ଯେ ଓଡ଼ିଆରେ ସାଧୁ ଓ ସଙ୍ଗତ, କର୍ଣ୍ଣମୂଳ ବା କାନମୂଳ ପରିବର୍ତ୍ତରେ କାନମୁଣ୍ଡା ଯେ ସାଧୁ ଓ ବିଶୁଦ୍ଧ ଓଡ଼ିଆ, ଏସବୁ ବୋଧହୁଏ କେହି ଅଦ୍ୟାପି ଭାବିଥିବେ କି ନା ସନ୍ଦେହ । ସେହିପରି କାଶ ନୁହେଁ, କାଇଁସ; ମାନ୍ୟ ନୁହେଁ, ମାଇନ; ପାଂଶୁ ନୁହେଁ, ପାଉଁସ ସାଧୁ ଓଡ଼ିଆ ଥିବାର ସେ ଦେଖାଇ ଅଛନ୍ତି । କାଣିକଉଡ଼ି, ଗେଡ଼ିପଇସା, କୁଲିବେଙ୍ଗ, କୁନିପୁଅଠାରୁ ମା ପାନ, ପୁଅପିଢ଼ା, ପେଣ୍ଡାବାଳ, କଳାହାଣ୍ଡିଆମେଘ ପ୍ରଭୃତି ପର୍ଯ୍ୟନ୍ତରେ ଓଡ଼ିଆରେ ବିଶିଷ୍ଟ ସୁରମ୍ୟ ପ୍ରୟୋଗ ପରିପାଟୀ ନନ୍ଦେ ଯେପରି କି ସାହିତ୍ୟିକ କୃତ୍ରିମତା-ମୋହର ଯବନିକା ଫିଟାଇ ଆଖିଆଗରେ ପକାଇ ଦେଇଅଛନ୍ତି ।

'ସ' କାର ଓ 'ଯ'କାରର ଆଲୋଚନା ସୂତ୍ରରେ ଆରମ୍ଭକରି ନନ୍ଦେ ଓଡ଼ିଆ ଲେଖା ଓ ଅଭିଧାନଗତ ଶବ୍ଦମାନଙ୍କର ତାତ୍ତ୍ୱିକ ଉଚ୍ଚାରଣ ଓ ଲେଖନ ପ୍ରଣାଳୀର ଯେ ସଙ୍ଗତ ସୂଚନା ଦେଇଛନ୍ତି; ତାହାର ମୂଲ୍ୟ ନିର୍ଣ୍ଣୟ କରିବାରେ ଅଦ୍ୟାପି ଅନେକ ଓଡ଼ିଆ ସାହିତ୍ୟସେବୀ ଅକ୍ଷମ କହିଲେ ଚଳେ । ମୁହଁରେ 'ମୁସାଜନ୍ତା' କହି, ପୁସ୍ତକ ପ୍ରବନ୍ଧାଦିରେ ପୁଣି 'ମୂଷାୟନ୍ତା' ଲେଖିବା କିପରି ସମୀଚୀନ ତାହା ବୁଝାଇବା ନିଷ୍ପ୍ରୟୋଜନ । ଆମେରିକାର କେହି ସାହେବ ଘରେ ବ୍ୟାକରଣ ଅଭିଧାନାଦି ସାହାଯ୍ୟରେ ଓଡ଼ିଆ ପଢ଼ିସାରି କଟକ ବଜାରରେ ଆସି 'ମୂଷାୟନ୍ତା' ମାଗିଲେ, ଦୋକାନୀ ବୁଝିକରି ତାଙ୍କୁ ଜିନିଷ ଦବ କି ? ଜଣେ ପାଦ୍ରିସାହେବ ଓଡ଼ିଆ ଭଲକରି ପଢ଼ି ମଧ୍ୟ ଯଥାର୍ଥରେ 'ବାଇଶଟି ଶିଶୁ' – ଏ କଥାର ଅର୍ଥ ବୁଝିପାରି ନ ଥିଲେ । ପରେ ଯେତେବେଳେ ଶୁଣିଲେ 'ବାଇଶିଟି ପିଲା', ସେତେବେଳେ ସେ କଥାଟିର

ଅର୍ଥ ବୁଝିଲେ । ଏହାଶୁଣି ଜଣେ ଓଡ଼ିଆ ସାହିତ୍ୟସେବୀ ବାହାଦୁରି କରିଥିଲେ, ଭାରତୀୟମାନଙ୍କର ତଥା ଓଡ଼ିଆଙ୍କର ଭାଷା ଶିଖିବାରେ ଯେପରି ଦକ୍ଷତା ଅଛି, ସାହେବମାନଙ୍କର ସେପରି ନାହିଁ । କିନ୍ତୁ ବୁଝିବା ଉଚିତ, ଇଂରାଜୀ ବ୍ୟାକରଣ ଓ ଅଭିଧାନ କିପରି ସମସ୍ତ ଲୋକ ପ୍ରଚଳିତ ପ୍ରୟୋଗ ଓ ଉଚ୍ଚାରଣର ଆଲୋଚନାରେ ପୂର୍ଣ୍ଣ । ଇଂରାଜୀରେ ଲେଖାଠାରୁ ଉଚ୍ଚାରଣ ଭିନ୍ନ ବୋଲି ପ୍ରତ୍ୟେକ ଶବ୍ଦର ଉଚ୍ଚାରଣ ଚିହ୍ନାଇ ଦିଆଯାଏ; ସେଥିରେ ବିଦେଶୀ ଶିଖିବା ଲୋକର କିଛି ଅସୁବିଧା ହୁଏନାହିଁ । କିନ୍ତୁ ଓଡ଼ିଆରେ ସେପରି ବୈଜ୍ଞାନିକ ଭାବରେ ପୁରୋଦୃଷ୍ଟିପୂର୍ଣ୍ଣ ଉଦାର ଆଲୋଚନା ଓ ପ୍ରଚାର କାହିଁ ? ସେଥିରେ ସାହେବଙ୍କର ଦୋଷ କଅଣ ? ବିଦେଶୀ ଯଦି ପଢ଼େ 'ବାଇଶ', 'ବାଇଶି' କହିଲେ ସେ ବୁଝିବ କାହୁଁ ? 'ଶିଶୁ' କହିଲେ ଶିଶୁକାଠ' ନବୁଝି 'ପିଲା' ବୁଝିବା କେତେଜଣ ଓଡ଼ିଆଭାଷୀଙ୍କ ପକ୍ଷେ ସମ୍ଭବ ? ସେସବୁ ଆଗନ୍ତୁକ ଶବ୍ଦ ସଙ୍ଗେ ଲୋକଙ୍କର ପରିଚୟ କରାଇବା ପାଇଁ କି ବ୍ୟବସ୍ଥା ହୋଇଅଛି ?

ତେବେ ଆଗନ୍ତୁକ ଶବ୍ଦମାନଙ୍କ ସଙ୍ଗେ ଲୋକଙ୍କ ପରିଚୟ କରାଇବା ନନ୍ଦଙ୍କ ଭାଷାତତ୍ତ୍ୱ ଗ୍ରନ୍ଥର କାର୍ଯନୁହେଁ । ସେଥିପାଇଁ ଲୋକରେ ଯଥେଷ୍ଟ ସୁସାହିତ୍ୟ-ପ୍ରଚାର ଲୋଡ଼ା । ମାତ୍ର ଓଡ଼ିଆମାନେ ଏ ପର୍ଯ୍ୟନ୍ତ ଆଧୁନିକ ରୀତିରେ ନିଜ ସାହିତ୍ୟଚର୍ଚ୍ଚା କରିବାର ସମ୍ୟକ୍ ଉଦ୍ୟମ କରିଛନ୍ତି ବୋଲି ମନେହୁଏ ନାହିଁ । ତଥାକଥିତ ଶିକ୍ଷିତ ଲୋକେ ଅନୁଗ୍ରହ କଲାପରି ଓଡ଼ିଆ ପଢ଼ନ୍ତି । ଖାଇସାରି ଆରାମ ଚଉକିରେ ପଡ଼ି ଓଡ଼ିଆ ପଢ଼ିବାର ସୁବିଧା ନ ହେଲେ, ଅନେକଙ୍କୁ ଯୋଗାଏ ନାହିଁ । ଓଡ଼ିଆର ଆଲୋଚନା ନିମନ୍ତେ ଅଧ୍ୟବସାୟପୂର୍ଣ୍ଣ ଗ୍ରନ୍ଥପାଠ ବା ଚର୍ଚ୍ଚାର ଯେ ଆବଶ୍ୟକତା ଅଛି, ଏହା ସେମାନେ ହୁଏତ କାର୍ଯରେ ବୁଝିନାହାନ୍ତି । ଗୀତ, ଗଳ୍ପ ଏବେ କେତେକ ଦେଖାଯାଉ ଅଛି, କିନ୍ତୁ ସେଥିରେ ଆଲୋଚନା ବା ଆଦର୍ଶର ପ୍ରାୟଶଃ ଅଭାବ ଦେଖାଯାଏ । ସମାଲୋଚନାମୂଳକ ଦୃଢ଼ ସାହିତ୍ୟପାଇଁ କେହି ବିଶେଷ ଅଣ୍ଟା ଭିଡ଼ିବାର ଦେଖା ଯାଉନାହିଁ । ପ୍ରାଚୀନ ସାହିତ୍ୟର ଆଲୋଚନାରେ ଲୋକ-ସାହିତ୍ୟର ଭିତ୍ତି ସ୍ଥାପିତ ହେବାର କଥା, କିନ୍ତୁ ପ୍ରାଚୀନ ସାହିତ୍ୟ ଅଦ୍ୟାପି କେତେକ ପରିମାଣରେ ଘୃଣିତ ଓ ଅନାଦୃତ ଭାବରେ ରହିଅଛି କହିଲେ ଚଳେ । ଲୋକରେ ମଧ୍ୟ ସାହିତ୍ୟ-ରୁଚି ପ୍ରବେଶ କରିବାର ବିଶେଷ ଲକ୍ଷଣ ଦେଖାଯାଉନାହିଁ । ଗତ ଶତାବ୍ଦୀ ଶେଷଆଡ଼କୁ ବାମଣ୍ଡାର ବାସୁଦେବ ସୁଢ଼ଳ ଦେବଙ୍କ ଆନୁକୂଲ୍ୟରେ ମଧ୍ୟ, ରାଧାନାଥ ପ୍ରଭୃତି ଯେଉଁ 'ବିଜୁଳି' ଯୁଗର ପ୍ରବର୍ତ୍ତନ କରିଥିଲେ, ତହିଁରେ ଏକପ୍ରକାର ଜାତୀୟ ଭାଷା ଓ ସାହିତ୍ୟର ବିକାଶ ନାନା କାରଣରୁ ଅବଚ୍ଛିନ୍ନ ହୋଇ ପଡ଼ିଥିଲା; ପରେ ସେହି ନୀତିରେ ରଚିତ ସାହିତ୍ୟକୁ ରାଧାନାଥ ଓ ମଧୁସୂଦନ ଲୋକରୁଚିର ବିରୋଧରେ ଶିକ୍ଷାବିଭାଗର କର୍ତ୍ତାରୂପେ ଔଷଧସେବନ ବିଧିରେ ଦେଶରେ ଭର୍ତ୍ତି କଲେ । ତେଣୁ ପ୍ରବର୍ତ୍ତକମାନଙ୍କର ସମସ୍ତ ସାଧୁ ଉଦ୍ଦେଶ୍ୟ ସତ୍ତ୍ୱେ ଜାତୀୟ ସାହିତ୍ୟ ତଥା ଭାଷାର ଭୂୟୋବିକାଶ ହ୍ରାସ ହେଲା । ଏବେ ମଧ୍ୟ ସେ ଆଦର୍ଶ ଦେଶରେ ଅତିକ୍ରାନ୍ତ

ହୋଇନାହିଁ । ଅତଏବ ଦେଶସେବୀଙ୍କର ଏସବୁ ବିଷୟ ଆଦୌ ପ୍ରଣିଧାନଯୋଗ୍ୟ । ଦେଶରେ ସାହିତ୍ୟର ରୁଚି ଓ ଆଦର୍ଶ ବଦଳାଇ ସାହିତ୍ୟ ତଥା ଭାଷାର ଅନବଚ୍ଛିନ୍ନ ଧାରା ଅକ୍ଷୁଣ୍ଣ ଚଳାଇବାକୁ ହେବ । ନନ୍ଦେ ଏ କାର୍ଯ୍ୟର କ୍ଷେତ୍ର ପ୍ରସ୍ତୁତ କରିବାରେ ଯଥେଷ୍ଟ କରିଅଛନ୍ତି ବୋଲିବା ବାହୁଲ୍ୟ ମାତ୍ର ।

ପଣ୍ଡିତ ଗୋପୀନାଥ 'ଭାଷାତତ୍ତ୍ୱ'ରେ ବାଇଶି ପ୍ରଭୃତି ଚଳିତ ସାଧୁ ଶବ୍ଦର କ୍ରମ ଓ ନିୟମ ସ୍ୱାଧୀନ ଭାବରେ ଆଲୋଚନା କରିଅଛନ୍ତି । ସାହେବ ଓ ଲୋକସାଧାରଣଙ୍କ କଥା ଦୂରେଥାଉ, ସଂସ୍କୃତ ଛଡ଼ା ଓଡ଼ିଆ ସାଧୁ ଶବ୍ଦର ପରିଚୟ ଅନେକ ସାହିତ୍ୟିକ ମଧ୍ୟ ଏବେ ପାଇ ନାହାନ୍ତି । ଉଦାହରଣ ସ୍ୱରୂପ, 'ଗୁଣର' କହିଲେ ଗୁଣୀ ବା ଗୁଣବାନ୍ ଅର୍ଥ ହୁଏ । ଯଥା- ବଡ଼ ଗୁଣର ପିଲା । ଷଷ୍ଠୀ ବିଭକ୍ତିର ଏ ତତ୍ତ୍ୱ ବୁଝାଇ ଦେଖାଇଦେବା ଭଳି କାର୍ଯ କି ମୌଳିକ ଅଧ୍ୟବସାୟସାପେକ୍ଷ ତାହା ସହଜରେ ଅନୁମେୟ । ନନ୍ଦେ ଭାଷାତତ୍ତ୍ୱ ସୂତ୍ରରେ ଏହିସବୁ ମୌଳିକ ସ୍ୱାଧୀନ ଆଲୋଚନାର ପନ୍ଥା ଫିଟାଇ ଅଛନ୍ତି ବୋଲି ତାଙ୍କର ବିଶେଷତ୍ୱ ସ୍ୱୀକାର କରିବାକୁ ଓଡ଼ିଆ ମାତ୍ରେ ବାଧ୍ୟ ।

ଏହିପରି ପଦ, କାରକ, ବିଭକ୍ତି ପ୍ରଭୃତି ସମସ୍ତର ଆଲୋଚନାରେ ନନ୍ଦେ ମୌଳିକ ଓ ସ୍ୱାଧୀନ ପନ୍ଥା ଫିଟାଇ ଭାଷାର ବଳିଷ୍ଠ ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଅଛନ୍ତି, ଏବଂ ଏହି ସ୍ୱାତନ୍ତ୍ର୍ୟ ସଙ୍ଗେ ସାର୍ବଜନୀନତା ଦେଖିବାକୁ ଯାଇ ସେ ପ୍ରାକୃତ ବା ପ୍ରାଚୀନ ଚଳିତ ଭାଷାରେ ଯଥାସମ୍ଭବ ସମସ୍ତର ମୂଳ ଓ ଭିତ୍ତି ଅନୁସନ୍ଧାନ କରିଅଛନ୍ତି । କୌଣସିଠାରେ ସେ ହଠାତ୍ ସଂସ୍କୃତକୁ ଯିବାପାଇଁ ଲୋଡ଼ି ନାହାନ୍ତି ସତ, ମାତ୍ର ସ୍ୱୀକାର କରିବାକୁ ହେବ, ଏହିଠାରେ ସେ କେତେକ ପରିମାଣରେ ଭିନ୍ନ ଦ୍ୱାରରେ ଗତାନୁଗତିକ ପନ୍ଥାରେ ପ୍ରବେଶ କରିଅଛନ୍ତି । ପ୍ରାକୃତକୁ ସର୍ବଦା ସଂସ୍କୃତର ବିକୃତି ବୋଲି ସ୍ଥିର କରି ସେ ପ୍ରାକୃତର ଜୀବନ୍ତ ସରସତା ଫୁଟାଇ ପାରି ନାହାନ୍ତି । ଶବ୍ଦାଦିର ପ୍ରକୃତି ନିର୍ଣ୍ଣୟ କରିବାରେ ସେ ପ୍ରାକୃତବାଟେ ଗଲେ ମଧ୍ୟ, ଏବଂ 'ଗୋଡ଼' ପ୍ରଭୃତିରେ କେବଳ ପ୍ରାକୃତ ମୂଳ ସ୍ୱୀକାର କଲେହେଁ, ଯଥାସାଧ୍ୟ ସବୁ ସଂସ୍କୃତରୁ ବାହାର କରିବାର ପ୍ରୟାସ କରିଛନ୍ତି । ସଂସ୍କୃତ ଯେ ବେଳେ ବେଳେ ପ୍ରାକୃତର ବିକୃତି, ଏହା ସେ ସ୍ୱୀକାର କରି ନାହାନ୍ତି । ଉଦାହରଣସ୍ୱରୂପ, ଦ୍ରାବିଡ଼ 'ପେଦ୍ଦା'ରୁ ବଡ଼୍ଡ଼ (ବଡ଼) ହୋଇ, ପରେ ସଂସ୍କୃତ ଶବ୍ଦାନୁକୃତିରେ 'ବଡ୍ର', ହୋଇଅଛି । ଛଇଲ୍ଲ, ବଇଲ୍ଲ ପ୍ରଭୃତି ପ୍ରାକୃତ ଶବ୍ଦର ସଂସ୍କୃତ ଏ ପର୍ଯ୍ୟନ୍ତ ବ୍ୟବହାରରେ ଆସିନାହିଁ । ଏସବୁ କଥା ପ୍ରତି ନନ୍ଦଙ୍କର ତାଦୃଶ ଦୃଷ୍ଟି ଯାଇନାହିଁ । ସେଥିପାଇଁ ସେ ସଂସ୍କୃତ 'ବଳୀବର୍ଦ୍ଦ' ଶବ୍ଦରୁ ରୂପାନ୍ତରିତ ପ୍ରାକୃତ 'ବଇଲ୍ଲ' ଶବ୍ଦରୁ ଓଡ଼ିଆ 'ବଇଲ' (ବଅଳ) ହୋଇଥିବାର ସ୍ଥିର କରି ଅଛନ୍ତି; ପ୍ରାକୃତ ଓ ଓଡ଼ିଆର 'ଜିଣା' ଶବ୍ଦକୁ ସଂସ୍କୃତ 'ଜୟ'ରୁ ବାହାର କରିଛନ୍ତି; ପ୍ରାକୃତ ପେଚାସୀ (ସଂସ୍କୃତ-ପିଶାଚୀ) ଶବ୍ଦରୁ ଓଡ଼ିଆ ପେଚାସୁଣୀ (ପିଚାସୁଣୀ) ବାହାର ନ କରି, 'ପ୍ରେତାଶିନୀ' ବୋଲି ସଂସ୍କୃତରେ ଏକ ଶବ୍ଦ ସୃଷ୍ଟିକରି, ସେଥିରୁ ପ୍ରାକୃତ ବାଟେ ପୁଣି ଓଡ଼ିଆ ପେଚାସୁଣି ଶବ୍ଦ

କାଢ଼ିଅଛନ୍ତି । ଦ୍ରାବିଡ଼ 'ଚେନ୍' ଶବ୍ଦରୁ ଓଡ଼ିଆ 'ସାନ' ନ କାଢ଼ି, ସେ ସଂସ୍କୃତର 'ସାମାନ୍ୟ' ଶବ୍ଦରେ ତାହାର ମୂଳ ଖୋଜି ଅଛନ୍ତି । ସେହିପରି 'ବିସା'ର ମୂଳ 'ବିଶ୍ୱା'ରେ ଓ 'ସଅଳ' (ସକାଳ, ସସ୍କାଳ)ର ମୂଳ ସଂସ୍କୃତ 'ସଦ୍ୟକାଳ'ରେ ପ୍ରଭୃତି ଖୋଜିବା କେତେ ଠିକ୍ ହୋଇଅଛି, ତାହା ଅନୁସନ୍ଧାନସାପେକ୍ଷ । ବିଭକ୍ତି ବିଚାରରେ ମଧ ଚତୁର୍ଥୀ 'କୁ' ବିଭକ୍ତିର ମୂଳ ଦ୍ରାବିଡ଼ ଭାଷାରେ ନ ଖୋଜି ଦୀର୍ଘସୂତ୍ର ଅବଲମ୍ବନ କରି ତାକୁ ସଂସ୍କୃତ 'କୃତେ'ରୁ ବାହାର କରିବାର ପ୍ରୟାସ ଏଠାରେ ଉଲ୍ଲେଖଯୋଗ୍ୟ ।

ଏମନ୍ତ କି, ଓଡ଼ିଆର ଲିଖିତ-ବର୍ଣ୍ଣ ବା ଲିପି ବିଚାର ବେଳେ ମଧ ନନ୍ଦେ ଓଡ଼ିଆ ଅକ୍ଷରକୁ ଅତି ଅର୍ବାଚୀନ ନାଗରାକ୍ଷରର ଅନୁକୃତି ବୋଲି ନିର୍ଦ୍ଦେଶ କରିଅଛନ୍ତି । ପ୍ରାୟ ସବୁ ସଂସ୍କୃତ ଏବେ ନାଗରାକ୍ଷରରେ ଛପା ଓ ଲେଖାହୁଏ ସତ, କିନ୍ତୁ ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀର ବ୍ରାହ୍ମୀ ଲିପିରୁ ଆରମ୍ଭ କରି ଅନୁସନ୍ଧାନ କଲେ ଦେଖାଯାଏ, ନାଗରୀ ଓ ଓଡ଼ିଆ ମଧ୍ୟରେ ବରଂ ପ୍ରାଚୀନତା ଓଡ଼ିଆ ଆଡ଼କୁ ଢଳିବ । ଅନ୍ତତଃ ନାଗରୀରୁ ଯେ ଓଡ଼ିଆ ହୋଇନାହିଁ, ଏହା ଏକପ୍ରକାର ପ୍ରମାଣିତ । ଖ୍ରୀଷ୍ଟ ଦଶମ ଓ ଏକାଦଶ ଶତାବ୍ଦୀର ଶିଳାଲିପିମାନଙ୍କରେ ଯେଉଁ ଅକ୍ଷର ମିଳେ ସେଥିରୁ ଜଣାଯାଏ, ବଙ୍ଗଳା, ଓଡ଼ିଆ ଓ ନାଗରୀ ଏକ ମୂଳ ବୃକ୍ଷର ବିଭିନ୍ନ ଶାଖା ମାତ୍ର । କେହି ବୋଧହୁଏ କାହାରି ଅନୁକୃତି ନୁହନ୍ତି ।

ନନ୍ଦେ ପ୍ରାକୃତର ଭକ୍ତ, ଏଥିରେ ସନ୍ଦେହ ନାହିଁ । ଏହାହିଁ ତାଙ୍କର ଏକ ବିଶେଷ । କିନ୍ତୁ ବରରୁଚି ପ୍ରଭୃତି ପ୍ରାକୃତ ବ୍ୟାକରଣକାରମାନଙ୍କର ମାନସିକତା ଓ ଗ୍ରନ୍ଥର ଉଦ୍ଦେଶ୍ୟ ସେ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରିଥିବାର ଅନୁମାନ ହୁଏନାହିଁ । ପ୍ରାକୃତ ବହୁ ଶତାବ୍ଦୀ ଧରି ଅନାଦୃତ ଥିଲା । କୃତ୍ରିମ ସଂସ୍କୃତ ଭାଷାରେ ଲୋକେ ଗ୍ରନ୍ଥାଦି ଲେଖୁଥିଲେ । ଏମନ୍ତ କି ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ବିଚାରାଳୟରେ ସଂସ୍କୃତ, ସମସ୍ତ ବିଚାରଣାର ଭାଷା ଥିବାର ପ୍ରମାଣ ମିଳେ । ହୁଏତ ବହୁକାଳଧରି ଏହା ଭାରତରେ କଚେରୀ ଭାଷା ରୂପେ ବ୍ୟବହୃତ ହେଉଥିଲା । ସମାଜର ଉଚ୍ଚଶ୍ରେଣୀର ଲୋକେ ଏହି ଭାଷାରେ କଥା କହୁଥିଲେ; କେବଳ ନାଟକାଦିରେ ସ୍ତ୍ରୀମାନେ ଓ ଇତର ଲୋକେ ପ୍ରାକୃତମାନ ବ୍ୟବହାର କରୁଥିଲେ; ଏବଂ ପରେ ଖ୍ରୀଷ୍ଟ ଦଶମ ଶତାବ୍ଦୀ ବେଳକୁ ରାଜଶେଖର ପ୍ରଭୃତି କେହି କେହି ପ୍ରାକୃତରେ କେତେକ ସାମାନ୍ୟ ଗ୍ରନ୍ଥ ଲେଖିଥିଲେ । ପ୍ରାଚୀନ ମାଗଧୀ ପ୍ରାକୃତରେ ଯେଉଁ ବୌଦ୍ଧ ଓ ଜୈନଗ୍ରନ୍ଥମାନ ଚଳୁଥିଲା, ହିନ୍ଦୁ ତଥା ବ୍ରାହ୍ମଣମାନେ ତାହାର ଆଦର କରୁ ନ ଥିଲେ । ଅଳ୍ପଦିନ ପରେ ସେହିସବୁ ଧର୍ମର ଗ୍ରନ୍ଥମାନ କ୍ରମେ ସଂସ୍କୃତରେ ଲେଖା ହେବାର ଆରମ୍ଭ ହେବାରୁ, ବୌଦ୍ଧ ଓ ଜୈନମାନଙ୍କ ମଧ୍ୟରେ ମଧ ପ୍ରାକୃତ ବ୍ୟବହାର ଏକପ୍ରକାର ଲୋପ ପାଇଲା । ଫଳରେ ପ୍ରାକୃତର ସ୍ଥାୟିତ୍ୱ କେହି ସ୍ୱୀକାର ବା ଆଶଙ୍କା ସୁଦ୍ଧାକଲେ ନାହିଁ । ନାଟକାଦିରେ ଯାହା ସାମାନ୍ୟ ପ୍ରାକୃତ ଥିଲା, ଏବଂ ପରେ ନାଟକାଦି ଲେଖିବା ପାଇଁ ଯାହା ପ୍ରାକୃତ ଦରକାର ହେବାର ଆଶଙ୍କା ହେଲା, ତାକୁହିଁ ଯେନତେନ ପ୍ରକାରେ ବୁଝିବା ଓ ଚଳାଇବା ପାଇଁ ବରରୁଚି, କଚ୍ଚାୟନ ପ୍ରଭୃତି ପ୍ରାକୃତ

ବ୍ୟାକରଣ ଲେଖିଥିଲେ । ଫଳତଃ ସେସବୁରେ ସଂସ୍କୃତ ଆଉ ପ୍ରାକୃତର ଆଲୋଚନା ହେବା ସ୍ୱାଭାବିକ । ପ୍ରକୃତରେ ପୂର୍ବେ ସଂସ୍କୃତ ଯେ ପ୍ରାକୃତରୁ ତିଆରି ହୋଇଥିଲା ଏବଂ କାଳକ୍ରମେ ପ୍ରାକୃତମାନଙ୍କ ଉପାଦାନରେ ପୁଷ୍ଟ ହେଉଥିଲା, ତାହା ଲୋକେ ଭୁଲିବାପାଇଁ ଯତ୍ନ କରୁଥିଲେ; ଫଳତଃ ତାହାର କୌଣସି ଚିହ୍ନ ପର୍ଯ୍ୟନ୍ତ ଭାରତ ସାହିତ୍ୟରେ ନାହିଁ । ଅତଏବ ସଂସ୍କୃତ ଶବ୍ଦ, ପଦ ବିଭକ୍ତି ପ୍ରଭୃତିକୁ ପ୍ରାକୃତରେ ପ୍ରକାଶ କରିପାରିବା ଭଳି କେତେକ ବିକ୍ଷିପ୍ତ ବର୍ଣ ପରିବର୍ତନ କ୍ରମହିଁ ପ୍ରାକୃତ ବ୍ୟାକରଣମାନଙ୍କର ସର୍ବସ୍ୱ କହିଲେ ଚଳେ । ସେଥିରେ ପାଣିନି ପରି ଭାଷା, ଶବ୍ଦ ଓ ବର୍ଣତତ୍ତ୍ୱର ଆଲୋଚନା ପ୍ରାୟଶଃ ସ୍ଥାନ ପାଇନାହିଁ । ପ୍ରାକୃତ ଭାଷାମାନଙ୍କର ଯଥାର୍ଥ ଜୀବନ୍ତ ସ୍ୱାତନ୍ତ୍ର୍ୟ ଫୁଟାଇ ସେମାନଙ୍କୁ ସାର୍ବଜନୀନ ଭିତ୍ତିରେ ସ୍ଥାପନ କରିବା ଉଦ୍ଦେଶ୍ୟରେ କୌଣସି ପ୍ରାକୃତ ବ୍ୟାକରଣ ଲେଖାହୋଇ ନ ଥିଲା ।

ପ୍ରାଚୀନ ପ୍ରାକୃତମାନଙ୍କରେ କୌଣସି ଶୃଙ୍ଖଳାବଦ୍ଧ ଭାଷାତତ୍ତ୍ୱ ଆଲୋଚିତ ହୋଇନାହିଁ । ବହୁପରିମାଣରେ ସେହି ପ୍ରାକୃତ ପନ୍ଥା ଅବଲମ୍ବନ କରିଥିବାରୁ ନନ୍ଦେ ଏହି ଓଡ଼ିଆ ଭାଷାତତ୍ତ୍ୱକୁ ମଧ୍ୟ ସର୍ବତୋଭାବରେ ଗୋଟିଏ ବିଜ୍ଞାନସମ୍ମତ ଶୃଙ୍ଖଳାବଦ୍ଧ ଆଲୋଚନା କରିପାରି ନାହାନ୍ତି । ଓଡ଼ିଆ ଶବ୍ଦ ପଦାଦି ଓ ବିଶେଷରେ ଦେଶ୍ୟ ଶବ୍ଦାଦିର ପ୍ରୟୋଗ, ବ୍ୟବହାର, ବିବର୍ତନ, ପରିଣତି ଓ ଶକ୍ତି ସମ୍ବନ୍ଧରେ ସେ ବହୁତ ବିକ୍ଷିପ୍ତି ପରିଶୀଳନ ସହିତ ସୁନ୍ଦର ଉଦାହରଣମାନ ସଂଗ୍ରହ କରିଅଛନ୍ତି, କିନ୍ତୁ ବୈଜ୍ଞାନିକ ଶୃଙ୍ଖଳାରେ ସେମାନଙ୍କର ପରିବର୍ତନ ଓ ପ୍ରୟୋଗ ନିୟମ ଲକ୍ଷ୍ୟରେ ସେସବୁ ଉଦାହରଣାଦି ଅନୁସନ୍ଧାନ କରିବାର ସ୍ପଷ୍ଟ ଜଣା ପଡୁନାହିଁ । ସୁଚାରୁ କର୍ତବ୍ୟ ସାଙ୍ଗ କରିବାର ଭାର ନନ୍ଦେ ଯେପରି କି ଭବିଷ୍ୟତ ଉପରେ ନ୍ୟସ୍ତ କରିଯାଇ ଅଛନ୍ତି । ବେଳେ ବେଳେ ସ୍ପଷ୍ଟ ଆଖିରେ ପଡ଼ିବା ଭଳି ନିୟମମାନ ଉଲ୍ଲେଖ କରି ସଙ୍କେତ ଦେବାରେ ନନ୍ଦେ ପରାଙ୍‌ମୁଖ ନୁହନ୍ତି । କିନ୍ତୁ ସେସବୁକୁ ତାତ୍ତ୍ୱିକ ବିଚାରରେ ଆଣି ସୁସ୍ପଷ୍ଟ ସାର୍ବଜନୀନ ଭିତ୍ତିରେ ସ୍ଥାପନ କରିଯିବାର ଉଦ୍ୟମ ସେ କରିଥିଲା ପରି ଜଣାପଡୁ ନାହିଁ ।

ସାମାନ୍ୟ ଉଦାହରଣ ଦେଲେ କଥାଟି ସ୍ପଷ୍ଟତର ହେବ । ‘ଗୁଡ଼ାଇବା’ ‘ଗୁଡ଼େଇବା’ରେ, ‘କଠାଉ’ ‘କଠୋଉ’ରେ ଇତ୍ୟାଦି କ୍ରମେ ପରିଣତ ହୋଇଯାଉଛି ବୋଲି ନନ୍ଦେ ଉଲ୍ଲେଖ କରି, ଗୋଟିଏ ଅବାନ୍ତର ନିୟମ ମାତ୍ରର ସଙ୍କେତ କରିଛନ୍ତି କି, ଓଡ଼ିଆ ମୁଖଯନ୍ତ୍ରରେ ପରେ ‘ଇ’ କିମ୍ବା ‘ଉ’ ଥିଲେ, ପୂର୍ବବର୍ତୀ ‘ଆ’ଠାରେ ଯଥାକ୍ରମେ ‘ଏ’ କିମ୍ବା ‘ଓ’ ହୁଏ । ଏହା କିନ୍ତୁ ଓଡ଼ିଆ ସନ୍ଧିର ଗୋଟିଏ ସ୍ପଷ୍ଟ ଓ ବିଶିଷ୍ଟ ନିୟମ ଏବଂ ଏହି କ୍ରମରେ ଓଡ଼ିଆର ଅନ୍ୟାନ୍ୟ ସ୍ୱର ଓ ବର୍ଣ ପରିବର୍ତନର ନିୟମ ଓ ନିପାତମାନ ବାହାର କରି ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟରେ ସାର୍ବଜନୀନ ଭାବ ଫୁଟାଇବାକୁ ହେବ । ଉଦାହରଣ ସ୍ୱରୂପ, ‘କହା’ ଶବ୍ଦ ଲୋକମୁଖରେ ‘କୁହା’ ହୁଏ । ଏହା ଏହା ନନ୍ଦେ ହୁଏତ ଉଲ୍ଲେଖ କରିଅଛନ୍ତି । କିନ୍ତୁ କୁହାଯାଏ, କୁହାଳିଆ, ପୁଆଣି, ନୁଆଣିଆ, ନୁଆଁଇବା, ବୁହାଇଲା, ସୁହାଉଛି, ପୁହାଇଲା

ପ୍ରଭୃତି ଏକତ୍ରକରି ସେଥିରୁ ଓଡ଼ିଆ ମୁଖଯନ୍ତ୍ରର ସ୍ୱର ପରିବର୍ତ୍ତନର ନିୟମ, ଯଥା- 'ଅ' ପରେ 'ଆ' ବା 'ହା' ଥିଲେ 'ଅ' ଠାରେ 'ଉ' ହୁଏ - ଓ ତାହାର କୌଣସି ନିପାତନ ଥିଲେ ତାହାର ଉଲ୍ଲେଖ ପ୍ରଭୃତି କରିବାର ପ୍ରଯତ୍ନ ନନ୍ଦେ କରିନାହାନ୍ତି । ଗୋଟିକିଆ ଉଦାହରଣମାନ ସେ ବହୁତ ଯତ୍ନ ଓ ପରିଶ୍ରମରେ ସଂଗ୍ରହ କରିଛନ୍ତି; ଏବଂ ଏହିପରି ନିୟମ, ନିପାତନ ପ୍ରତି ଦୃଷ୍ଟି ବିଶେଷ ନ ଥିବାରୁ ଅବାନ୍ତର ଭ୍ରମ ମଧ ରହିଯାଇଅଛି । 'ବଖରା' ଓ 'ବଖୁରା' ଦୁଇ ରୂପକୁ ସେ ସଂସ୍କୃତ 'ପକ୍ଷାଗାର' ଶବ୍ଦଜ ବୋଲି ସନ୍ଦେହ କରି ଏକ ଶବ୍ଦର ଭିନ୍ନ ଭିନ୍ନ ରୂପ ମାତ୍ର ବୋଲି ଉଲ୍ଲେଖ କରିଛନ୍ତି; ଏବଂ ମୁକୁରରୁ ଶିଷ୍ଟ ପ୍ରୟୋଗର ଉଦାହରଣ ଦେଇଛନ୍ତି, "ଆଠହାତ ଲମ୍ବ ବଖୁରିକ ଘର ମରିନାହିଁ ତା' ମଉଡ଼" ମାତ୍ର ଏଠାରେ ଦେଖିବାକୁ ହେବ 'ବଖୁରା' ଶବ୍ଦ ସାଧୁ ନୁହେଁ । କ୍ଷୁଦ୍ରାର୍ଥକ 'ଈ' ଲାଗି 'ବଖରା' 'ବଖୁରି'ରେ ପରିଣତ ହୁଏ । ସେହିପରି 'ମସିଣା'-'ମସୁଣି', 'ଖପରା'-'ଖପୁରି', 'ବଗଲା'-'ବଗୁଲି', 'ତାସୁଣୀ', 'ଉକୁଣି', 'ଚାଲୁଣି', 'ବସୁଣି' 'ତେଲୁଣୀ', 'ପାଣୁ (ଲୁ) ଣୀ', 'ଡମୁଣୀ', 'ପଠାଉଣୀ', 'ସଉତୁଣୀ', 'ଗଇତୁଣୀ' ଇତ୍ୟାଦି; କିନ୍ତୁ 'କରଣି' 'ଘରଣୀ', 'ଖଞ୍ଜଣି', 'ସାଆଁତାଣୀ' ଇତ୍ୟାଦି । ପିଲାଙ୍କ ବ୍ୟାକରଣ ପାଇଁ 'ଣି', 'ଆଣୀ', 'ଉଣୀ' ପ୍ରଭୃତି ପ୍ରତ୍ୟୟମାନ ଲେଖାଯାଇପାରେ; କିନ୍ତୁ ଭାଷାତତ୍ତ୍ୱର ବିଚାରରେ ସେ ସବୁର ମୂଳ ଓ ପରିଣତିକ୍ରମ ଦେଖିବା ଉଚିତ ।

କକର୍ଥନା, ଫୋପଡ଼ା, ବୋବାଳି ପ୍ରଭୃତି ପରି ଯେଉଁ ଶବ୍ଦମାନଙ୍କରେ ଆଶ୍ରୟକ୍ରମରେ ବର୍ଣ୍ଣ ଦ୍ୱିତ୍ୱ ଘଟେ; ବେମାରି-ବେରାମି, ମଳିଆ-ମଇଳା ପ୍ରଭୃତି ପରି ଯହିଁରେ ବର୍ଣ୍ଣ ବିପର୍ଯ୍ୟାସ ହୁଏ; ଭେଳା, ଭେଳ ପ୍ରଭୃତି ପରି ଯେଉଁଠାରେ ସ୍ୱର ଭେଦରେ ଅର୍ଥ ଭିନ୍ନ ବା ବିପରୀତ ହୋଇଯାଏ; ସେସବୁର ସମୂହ-ବିଚାର ଭାଷାତତ୍ତ୍ୱରେ ଯେ ଅତ୍ୟନ୍ତ ସମୀଚୀନ ତାହା କହିବା ନିଷ୍ପ୍ରୟୋଜନ । ମାତ୍ର ସେସବୁର ନିୟମାନୁଗତ ବିଚାର ନନ୍ଦେ କରି ନ ଥିବାର ଦେଖାଯାଏ । ଫୋପାଡ଼ିବା, ଧନ୍ଦାଳିବା, ଘୁଙ୍ଗୁଳେଇବା, ବୋବାଇବା, ଚୋବାଇବା, ଛିଣ୍ଡାଡ଼ିବା, କଚାଡ଼ିବା, ବିଗାଡ଼ିବା, ବିଜାଡ଼ି ହେବା ପ୍ରଭୃତିର ସମୂହ ତାତ୍ତ୍ୱିକ ବିଚାର କ୍ରିୟା ଭାଗରେ ହୋଇଥାନ୍ତା ଏବଂ ସେତେବେଳେ ହୁଏତ ନନ୍ଦେ ପୁଣି ବର୍ଣ୍ଣ ବିଚାରକୁ ଫେରିଥାନ୍ତେ - କାରଣ, ଓଡ଼ିଆରେ ନୂତନ ଭାଷାର ବିଜ୍ଞାନ ଆଲୋଚନାରେ ପଦ୍ଧତି ଓ ନିୟମମାନ କ୍ରମେ ବିକାଶ ପାଇବା ବେଶି ସ୍ୱାଭାବିକ । ମାତ୍ର ଏ ଅନୁମାନର ଫଳାଫଳ ଦେଖିବାର ସୁବିଧା ନାହିଁ ।

ପଦ, କାରକ, ବିଭକ୍ତି, ସର୍ବନାମ ଓ ଅବ୍ୟୟ ପ୍ରଭୃତିର ବିଚାରରେ ମଧ ବହୁ ପରିମାଣରେ ସେହିପରି ସଂସ୍କୃତ ଛାଞ୍ଚକୁ ଆଗରେ ରଖି ପ୍ରାକୃତ ସୂତ୍ରରେ ଓଡ଼ିଆରେ କିପରି ବ୍ୟତ୍ୟୟ ବା ବିଶେଷ ପରିବର୍ତ୍ତନ ଘଟିଅଛି, ତାହାରି ବ୍ୟସ୍ତ ବା ଗୋଟି ଗୋଟିକିଆ ଆଲୋଚନା ମାତ୍ର ନନ୍ଦେ କରିଛନ୍ତି । ଓଡ଼ିଆରେ କର୍ମ, ସମ୍ପ୍ରଦାନର ବିଶେଷ ବିଧି, ତଥା ଦ୍ୱିତୀୟା, ଚତୁର୍ଥୀ ବିଭକ୍ତିର ବିଶେଷ ବ୍ୟବହାର ବ୍ୟାକରଣଗତ ବାଚ୍ୟ ବିଧିରେ ବିଭକ୍ତି

ନିୟମର ସୌକର୍ଯ୍ୟ, ସର୍ବବ୍ୟାପକ ଷଷ୍ଠୀ ବିଭକ୍ତିର ତାତ୍ତ୍ୱିକ ସୌନ୍ଦର୍ଯ୍ୟ ପ୍ରଭୃତିର ଆଲୋଚନା ସମୂହ ସାଧନାର ଭିତ୍ତିରେ ପ୍ରତିଷ୍ଠିତ ହେଲାପରି ଜଣାପଡ଼େ ନାହିଁ । ବରଂ ବିଶେଷରେ କାରକ ଓ ବିଭକ୍ତିରେ ସଂସ୍କୃତର ଟିକିଏ ଦାସ୍ୟ ଭାବରେ ଅନୁବର୍ତ୍ତନ କରିବାର ଆଭାସ ମିଳେ । 'କୁ' ବିଭକ୍ତି ଓଡ଼ିଆରେ କର୍ମର ଚିହ୍ନ ହୋଇପାରେ କି ନା ? କର୍ମବାଚ୍ୟରେ ତୃତୀୟାନ୍ତ କର୍ତ୍ତାର ଉଲ୍ଲେଖ ଆବଶ୍ୟକ ଥିବାର, ଦାର୍ଶନିକ ଧାରଣାରେ କାରକ ବିଚାରର ଜଟିଳତା ବଢ଼ାଇବାର କେତେ ପ୍ରୟୋଜନ ଅଛି ? ପୁଣି ଷଷ୍ଠୀ ବିଭକ୍ତି ପରେ ଶବ୍ଦରେ ଅନ୍ୟାନ୍ୟ ବିଭକ୍ତ୍ୟନ୍ତ ପଦମାନ ପ୍ରାୟ ଲଗାଇ କିପରି ଭିନ୍ନ ଭିନ୍ନ କାରକ ଓ ବିଭକ୍ତି ବ୍ୟକ୍ତ କରାଯାଏ ? ଏ ସବୁର ତାତ୍ତ୍ୱିକ ବ୍ୟାଖ୍ୟା ଖୁବ୍ ସ୍ୱାଧୀନ ଭାବରେ କରିବାକୁ ନନ୍ଦେ ଯେପରି କି କୁଣ୍ଠିତ ହୋଇଅଛନ୍ତି । ଠାରୁ, ଠାରେ, ଠାକୁ, ଠୁଁ, ଠି, ଠିକି ପ୍ରଭୃତି ବିଭକ୍ତିକୁ ସ୍ଥାନାର୍ଥକ 'ଥା' ବା 'ଠା'ରେ ବିଭକ୍ତି ଲଗାଇ ନନ୍ଦେ ବ୍ୟାଖ୍ୟା କରିଛନ୍ତି ସତ, କିନ୍ତୁ ତାହା ଅବାନ୍ତର ଉଲ୍ଲେଖପରି ବୋଧହୁଏ । ପୁଣି ଏହି ସମ୍ପର୍କରେ 'ଠାକୁ', 'ଠାରେ', 'ଠାରୁ', 'ଠାରୁ' ପ୍ରଭୃତି ଯେ ସମ୍ପୂର୍ଣ୍ଣ ଅବ୍ୟୟତ୍ୱ ପାଇନାହିଁ ଏବଂ 'ଠା'କୁ ଆସ', 'ଠା'ରୁ ଉଠ', 'ଠା'ରେ ବସ' ପ୍ରଭୃତି ପ୍ରୟୋଗରେ ଯେ ତାହା ବିଭକ୍ତି ନୁହେଁ - ଏହାର ଆଲୋଚନା କରି ସାର୍ବବିଭକ୍ତିକ ଷଷ୍ଠୀକୁ ଉଠିବାଟି ନନ୍ଦଙ୍କ ବିଭକ୍ତି ଆଲୋଚନାରେ ସ୍ପଷ୍ଟ ନୁହେଁ । 'ରାମଠାକୁ' - ରାମର ସ୍ଥାନକୁ; 'ଘରଆଡ଼କୁ'-ଘରର ଆଡ଼ (ଦିଗ)କୁ; 'ହରିଦ୍ୱାରା'-ହରିର ଦ୍ୱାରା; 'ମଧୁପାଇଁ'-ମଧୁର ପାଇଁ (ପାଇବାକୁ) ଏବଂ ସ୍ପଷ୍ଟତଃ ସର୍ବନାମ ପ୍ରୟୋଗରେ 'ମୋଦ୍ୱାରା', 'ମୋ ପାଇଁ' ପ୍ରଭୃତିର ବିଚାରରେ ବିଭକ୍ତିରୁ ଶବ୍ଦକୁ ପୃଥକ୍ କରିବା, ଏବଂ ପ୍ରସଙ୍ଗତଃ ବିଭକ୍ତିର ଅବ୍ୟୟତ୍ୱ ପ୍ରମାଣ କରି ମୌଳିକ ଷଷ୍ଠ୍ୟନ୍ତ ବିଶେଷକର ସର୍ବବ୍ୟାପୀ ଶକ୍ତି ଧରିବା, ବିଭକ୍ତି ଓ କାରକ-ତତ୍ତ୍ୱ-ବିଚାରର ଏକ ପ୍ରଧାନ ଅଙ୍ଗ ବୋଲିବାକୁ ହେବ ।

ପୁଣି ପ୍ରାକୃତ ମାତ୍ରରେ ଓଡ଼ିଆଭାଷାର ମୂଳ ଦେଖିବାକୁ ଯାଇ ନନ୍ଦେ 'ଶ', 'ସ', 'ଷ' ଓ 'ଯ', 'ୟ', 'ଜ' ସମ୍ବନ୍ଧରେ ବ୍ୟସ୍ତ ହେଲେହେଁ କେତେକ ସୁନ୍ଦର ତାତ୍ତ୍ୱିକ ଆଲୋଚନା ସାହାସର ସହିତ କରିଅଛନ୍ତି । କିନ୍ତୁ ମଗଧ, ଶୂରସେନ ତଥା ମହାରାଷ୍ଟ୍ରର ପ୍ରାଚୀନ ପ୍ରାକୃତ ଏ କ୍ଷେତ୍ରରେ ଭିନ୍ନ ଭିନ୍ନ ଓ କେତେକ ପରିମାଣରେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ପ୍ରକୃତିକ ଥିବାର ଜାଣି ମଧ୍ୟ, ସେ ଓଡ଼ିଆରେ କାହାର କିପରି କେତେ ମାତ୍ରାରେ ପ୍ରଭାବ ପଡ଼ିଚି ଓ ତହିଁରେ କି ଫଳ ଫଳିଚି, ତାହାର କୌଣସି ସମୂହ ଆଲୋଚନା ଦ୍ୱାରା ଭାଷାସୂତ୍ରରେ ଜାତି କିମ୍ବା ସଭ୍ୟତାର ଇତିହାସ-ସନ୍ଧିତ୍ସୁଙ୍କ ପାଇଁ କୌଣସି ବିଶେଷ ସଂକେତ ବା ସୂଚନା ରଖି ନାହାନ୍ତି; ଏବଂ ଏହି ସମ୍ପର୍କରେ ଓଡ଼ିଆ 'ଳ', 'ଣ' ଓ ଶବ୍ଦମାନଙ୍କର ଅକାରାନ୍ତ ଉଚ୍ଚାରଣରେ ବିଶେଷ ପ୍ରଣିଧାନ ଦେଇ, ଯଥାର୍ଥ ତାତ୍ତ୍ୱିକ ଭିତ୍ତି ଖୋଜି ଦେଖାଇବାର ଉଦ୍ୟମ ପଣ୍ଡିତ ଗୋପୀନାଥ କରି ନାହାନ୍ତି ।

ସଂସ୍କୃତ ଭିତ୍ତିରେ ଯେପରି ପ୍ରାକୃତ ପ୍ରତିଷ୍ଠିତ ବୋଲି ସେ ବୁଝିଥିଲେ, ସେହିପରି ସାକ୍ଷାତ୍ ପ୍ରାକୃତ ଭିତ୍ତିରେ ଓଡ଼ିଆର ଆଲୋଚନା ସ୍ଥିର କରି, ନନ୍ଦେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟରେ ସାର୍ବଜନୀନତା ଫୁଟାଇବାର ପ୍ରୟାସ କରିଅଛନ୍ତି; ଆଉ ଅଧିକ ଦୂରକୁ ସେ ଯାଇନାହାନ୍ତି । ପୁଣି ଓଡ଼ିଆର ସେ ଯେଉଁ ସ୍ୱାତନ୍ତ୍ର୍ୟ ଦେଖାଇଛନ୍ତି, ତାହା ଅତି ସୁସ୍ପଷ୍ଟ ଓ ସୁଗମ ହେଲେହେଁ, ସିଂହାବଲୋକନ ନ୍ୟାୟରେ ବାରମ୍ବାର ପ୍ରାକୃତ ମାର୍ଗରେ ସଂସ୍କୃତକୁ ଫେରୁଅଛି । ତେଣୁ ସାଂସ୍କୃତିକ ଭିତ୍ତିର ବାହାରେ ଓ ଦୂରରେ ଓଡ଼ିଆ ଭାଷାର ଯେ ଗଭୀର ସ୍ୱାତନ୍ତ୍ର୍ୟମୂଳକ ସାର୍ବଜନୀନ ପରିସର ଖୋଜାଯାଇ ପାରେ, ତାହା କାର୍ଯ୍ୟରେ ଗ୍ରହଣ କରିବାକୁ ନନ୍ଦେ ସମର୍ଥ ହୋଇ ନାହାନ୍ତି । ଫଳତଃ ଓଡ଼ିଆ ସ୍ୱରଯନ୍ତ୍ରରେ ବର୍ଣ୍ଣର ସ୍ୱାଧୀନ ଓ ଐତିହାସିକ ପରିଣତି, ତଥା ତଦାନୁସଙ୍ଗିକ ଘଟଣାରାଶିର ଆଲୋଚନାରେ ପୃଥିବୀର ଆର୍ଯ୍ୟ, ଦ୍ରାବିଡ଼ାଦି ଭାଷାମାନଙ୍କର ପ୍ରଭାବ ଓ ପ୍ରକ୍ରିୟା ସମୂହଭାବରେ ଓଡ଼ିଆକୁ କି ପରିମାଣରେ, ବା କି ଅନୁପାତରେ, କେଉଁ ଘଟଣା ସୂତ୍ରରେ ବା କେଉଁ ପାରିପାର୍ଶ୍ୱିକ ବେଷ୍ଟନୀ ମଧ୍ୟରେ ପ୍ରଭାବିତ କରିଅଛି, ବା ଓଡ଼ିଆରୁ ଉପାଦାନ ସମ୍ପାଦନ କରିବାର ସମ୍ଭାବନାରେ ଅଛି, କିମ୍ୱା ଓଡ଼ିଆ ସଙ୍ଗେ ସମଭାବରେ ଗତି କରିଅଛି – ଏ ସବୁର ଇଙ୍ଗିତ କରିବାରେ ପଣ୍ଡିତ ଗୋପୀନାଥ ସମ୍ପୂର୍ଣ୍ଣ ଅଧିକାରୀ ହୋଇପାରି ନାହାନ୍ତି ।

ଏ କ୍ଷେତ୍ରରେ ନନ୍ଦଙ୍କର ଗୋଟିଏ ସ୍ୱାଭାବିକ ଘୋର ଅନ୍ତରାୟ ଥିଲା, ଏହା ମଧ ଏଠାରେ ଭଲକରି ବୁଝି ରଖିବାକୁ ହେବ । ତୈଲଙ୍ଗ ଭାଷାର ପେଷଣରେ ଓଡ଼ିଆ ଭାଷାର ପ୍ରାଣ ନିପୀଡ଼ିତ ହେଉଥିବାର ଭାବ ସବୁବେଳେ ତାଙ୍କ ହୃଦୟକୁ ଆଲୋଡ଼ିତ କରୁଥିଲା । ଫଳରେ ପ୍ରତିବେଶୀ ଭାଷାମାନଙ୍କ ପ୍ରତି ସହାନୁଭୂତି, ଶ୍ରଦ୍ଧା ଓ ଆଦର ପରିବର୍ତ୍ତରେ ବରଂ ଏକ ପାରମ୍ପରିକ ଦୂରାଗ୍ରହ ତାଙ୍କ ପ୍ରାଣକୁ ଅଭିଭୂତ କରିଥିବା ସ୍ୱାଭାବିକ । ତେଣୁ ବଙ୍ଗ ଓ ବିଶେଷରେ ଦ୍ରାବିଡ଼ ଭାଷାରୁ ଗ୍ରହଣ କରିବାର ଭାବ ପର୍ଯ୍ୟନ୍ତ ସେ ସହଜରେ ମନକୁ ଆଣିପାରୁ ନ ଥିଲେ । ପୁଣି ତାମିଲ, ତେଲୁଗୁ ଓ କାନାଡ଼ୀ ପ୍ରଭୃତି ପ୍ରାକୃତ ସୂତ୍ରରେ ସଂସ୍କୃତର ରୂପାନ୍ତର ଥିବାର ତାଙ୍କର କେତେକ ଧାରଣା ଥିଲା । 'ସ'କାରାଦିର ବିଚାରରେ ସେ ତାହାର ପ୍ରମାଣ ଦେଇଛନ୍ତି । ଅନ୍ତତଃ ଶବ୍ଦମାନଙ୍କର ବିଚାର ମାତ୍ରରେ ଏ ଧାରଣା ସେ ସ୍ଥିର କରିଥିଲେ । ତେଣୁ ଭାଷାମାନଙ୍କ ମଜ୍ଜା ଦେଖି ଆର୍ଯ୍ୟ ଦ୍ରାବିଡ଼ ଭେଦ ବୁଝିବାରେ ଭାଷାମାନଙ୍କର ଗଭୀର ଓ ସମୂହ ସାର୍ବଜନୀନତା ପରିଶୀଳନ କରିବାକୁ ସେ ଯାଇ ନାହାନ୍ତି । ବିଶେଷରେ ଓଡ଼ିଆ ଉପରେ କୌଣସି ପ୍ରକାର ତୈଲଙ୍ଗ ବା ଦ୍ରାବିଡ଼ ପ୍ରଭାବ ଆଲୋଚନାରେ ସେ ଯେପରିକି ପରାଙ୍ମୁଖ । ଯେଉଁ ଓଡ଼ିଆ ଓ ବଙ୍ଗଭାଷା ସମ୍ଭବତଃ ଏକହଜାର ବର୍ଷପୂର୍ବେ ଏକ ଉତ୍କଳ-ରାଢ଼ ଭାଷା ଥିଲା, ସେ ଦୁଇ ଭାଷାରେ ମଧ ସେ ଆଦାନପ୍ରଦାନ ଓ ପରସ୍ପରର ପ୍ରଭାବ ସ୍ପଷ୍ଟ ଦେଖିବାକୁ ଲୋଡ଼ି ନାହାନ୍ତି । ଦୁଇଟିର ଏକାନ୍ତ ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିବାର

ପ୍ରୟାସରେ ସେହି ଦୁଇଟି ଭାଷାରେ ବ୍ୟବହୃତ ସମଶବ୍ଦମାନଙ୍କର ଆଲୋଚନା କରାଯାଇ ଅଛି ।

ସେ ଯାହା ହେଉ, ପଣ୍ଡିତ ଗୋପୀନାଥ ନିଜ ଆଲୋଚନାରେ ଯେ ମୌଳିକତା ଓ ସାହସ ଦେଖାଇ ଅଛନ୍ତି, ସେ ଦୃଷ୍ଟିରେ ଉପରଲିଖିତ ଅଭାବମାନ ଦେଖାଇବାର ହୁଏତ ପ୍ରୟୋଜନ ନ ଥିଲା । ମାତ୍ର ଭବିଷ୍ୟତରେ ତାଙ୍କର ସାଧୁ ମହୀୟ ଇଙ୍ଗିତ କେଉଁ ଦିଗରେ କିପରି ଗତିକରିବା ଉଚିତ, ଏବଂ ନନ୍ଦଙ୍କ ପ୍ରସ୍ତାବିତ ଭାଷାର ସ୍ୱାତନ୍ତ୍ର୍ୟ ଓ ସାର୍ବଜନୀନତାର ସୂଚନା କେଉଁଆଡ଼େ, କି ଆଦର୍ଶରେ ଧାବିତ ହେବ - ଏହା ସବୁ ଟିକିଏ ଫେଡ଼ି ଦେଖାଇଦେବା ଉଦ୍ଦେଶ୍ୟରେ ଏ ସବୁ ଅଭାବର ସଙ୍କେତ ଦିଆଗଲା । ଏସବୁ ସତ୍ତ୍ୱେ ନନ୍ଦେ ଭାଷାତତ୍ତ୍ୱ ଆଲୋଚନାରେ ଯେ ମୂଳଦୁଆ ପକାଇଛନ୍ତି, ନିଜର ଆପାତତଃ ବ୍ୟସ୍ତ ଆଲୋଚନାରେ ମଧ୍ୟ ଯେ ସାମଗ୍ରୀ ସଂଗ୍ରହ କରି ରଖିଯାଇଛନ୍ତି, ତାହା ଏକା ଓଡ଼ିଆରେ କାହିଁକି, ସମସ୍ତ ଚଳିତ ଭାରତୀୟ ଭାଷାରେ ମଧ୍ୟ ଏବେ ନୂତନ ଓ ଅନନ୍ୟସାଧାରଣ ।

ନନ୍ଦଙ୍କ ସଂସ୍କୃତ ଓ ପ୍ରାକୃତମୂଳକ ସାର୍ବଜନୀନତାର ଆଲୋଚନାରେ ଏଠାରେ ଯାହା କୁହାଗଲା, ମୁଖ୍ୟତଃ ଭାରତର ତଥା ଗୌଣତଃ ପୃଥିବୀର ଭାଷା ସମୂହ ମଧ୍ୟରେ ଓଡ଼ିଆର ସାର୍ବଜନୀନତା ପ୍ରତିଷ୍ଠାର ଯେ ଇଙ୍ଗିତ ଏଠାରେ ଦିଆଗଲା, ନନ୍ଦଙ୍କ ଆଲୋଚନାରେ ତାହାର ଅଭାବ ବୋଲି କହିଦେବା ପୂର୍ବରୁ ମଧ୍ୟ ଆଉ ଗୋଟିଏ କଥା ଚିନ୍ତା କରିବାର ଅଛି । ଓଡ଼ିଆର ପ୍ରଚାର ଏ ପର୍ଯ୍ୟନ୍ତ ଓଡ଼ିଶା ମାତ୍ରରେ ସମ୍ପୂର୍ଣ୍ଣ ସ୍ଥାୟୀ ପ୍ରସାର ଲଭିଅଛି କି ନା ସନ୍ଦେହ । ପ୍ରାନ୍ତ ଓ ଉପାନ୍ତ ଭୂମିରେ ଠାଏ ଠାଏ ତାହାର ନିର୍ବାସନ ଉଦ୍ୟମ ଏବେ ମଧ୍ୟ ଲାଗିଅଛି । ଏପରି ଅବସ୍ଥାରେ 'ଓଡ଼ିଆ ଭାଷାତତ୍ତ୍ୱ' ଆଲୋଚନାରେ ଭାରତର ତଥା ପୃଥିବୀର ଭାଷାସମୂହ ମଧ୍ୟରେ ଓଡ଼ିଆର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଆଦର୍ଶ କରି ମସ୍ତିଷ୍କ ଚଳାଇବା ଜଣେ ଓଡ଼ିଆ ପକ୍ଷରେ କେତେଦୂର ସମ୍ଭବ ଓ ସ୍ୱାଭାବିକ ତାହା ଭାବିବାକୁ ହେବ । ନନ୍ଦେ ଯେଉଁତକ କରିଛନ୍ତି, ସେତିକି ମଧ୍ୟ ଦୃଷ୍ଟିପ୍ରସାର କରି ଦେଖିବାପାଇଁ ଓଡ଼ିଶାରେ ବୀର ପୁରୁଷର ଏକାନ୍ତ ଅଭାବ । ପୁଣି କେବଳ ନନ୍ଦଙ୍କ ସଂକେତ ଲକ୍ଷ୍ୟରେ ଗଭୀରତର ଆଲୋଚନା କରିବାପାଇଁ କ୍ଷେତ୍ରପ୍ରସ୍ତୁତ ହେଲେ, ଆଶାହୁଏ, ନନ୍ଦଙ୍କ ଭାଷାତତ୍ତ୍ୱ ଆଲୋଚନା ପନ୍ଥାରେ ହିଁ ଭାଷାର ଉନ୍ନତି ଓ ମହତ୍ତ୍ୱ ବହୁଦୂର ଅଗ୍ରସର ହେବ; ନନ୍ଦେ ମଧ୍ୟ ଏହି ଗ୍ରନ୍ଥ ବଳରେ ଓଡ଼ିଶା ତଥା ଭାରତରେ ଭାଷାତତ୍ତ୍ୱ ଆଲୋଚନାର ମୂଳଭିତ୍ତି ଦୃଢ଼ଭାବରେ ସ୍ଥାପନା କରିଛନ୍ତି ବୋଲି ପରିଚିତ ଓ ସମ୍ମାନିତ ହେବେ ।



୧୮

# ଭାଷାର ଉତ୍ପତ୍ତି

## ରତ୍ନାକର ପତି

ବିଭିନ୍ନ ଚିନ୍ତା, କଳ୍ପନା, ଅନୁଭୂତି ଓ ସଂକଳ୍ପ ପ୍ରଭୃତି ପ୍ରକ୍ରିୟାଗୁଡ଼ିକ ନେଇ ମାନବର ମନ କାର୍ଯ୍ୟ କରେ । ଏହି ପ୍ରକ୍ରିୟାଗୁଡ଼ିକର ବହିଃପ୍ରକାଶ ପାଇଁ ସେ ନାନାଭାବରେ ଚେଷ୍ଟା କରିଥାଏ । ଯେଉଁ ଯେଉଁ ଉପାୟରେ ସେ ସେଗୁଡ଼ିକୁ ପ୍ରକାଶ କରେ, ସେହି ଉପାୟଗୁଡ଼ିକ ତାହାର ଭାଷା । ସୁତରାଂ 'ଭାଷା' କହିଲେ ବ୍ୟାପକ ଅର୍ଥରେ ଆମ୍ଭେମାନେ ବୁଝୁଁ, ମାନବର ମାନସିକ ପ୍ରକ୍ରିୟାଗୁଡ଼ିକର ପ୍ରକାଶ, ପ୍ରଚାର ଓ ଆଦାନ-ପ୍ରଦାନର ଏକ ମାଧ୍ୟମ । ଏହି ମାଧ୍ୟମଟି କେତେବେଳେ ହସ୍ତଚାଳନା, ମୁଖଭଙ୍ଗୀ ଓ ଚିତ୍କାର ପ୍ରଭୃତିର ଆକାର ଧାରଣ କରିଥାଏ, କେତେ କେତେବେଳେ ପୁଣି କଥୋପକଥନ, ତଥା ଲିଖିତ ବର୍ଣ୍ଣ, ଶବ୍ଦ, ପଦ-ବିନ୍ୟାସ ଓ ବାକ୍ୟ ରୂପରେ କାର୍ଯ୍ୟକରେ । ମୂକ-ବଧିରର ଅଙ୍ଗଚାଳନା ଓ ମୁଖଭଙ୍ଗୀ, ଶିଶୁର ହାସ୍ୟ-କ୍ରନ୍ଦନ ଓ ଅଙ୍ଗ ପ୍ରତ୍ୟଙ୍ଗର ପ୍ରକ୍ଷେପ ଓ ଚାଳନା, ସୁସ୍ଥ ମାନବର ବିକଟ ହାସ୍ୟ, ମୁଖମଣ୍ଡଳର ସଂକୋଚନ ଓ ପ୍ରସାରଣ, ଚକ୍ଷୁ ଗୋଲକର ପରିଚାଳନା ଓ ମୁଖ-ବିକୃତି ପ୍ରଭୃତି ଶାରୀରିକ ସଂକେତମାନ ଓ ଯୁଦ୍ଧକ୍ଷେତ୍ରରେ ଦୂରବର୍ତ୍ତୀ ସେନାମାନଙ୍କ ମଧ୍ୟରେ ପତାକା-ଚାଳନା ଓ ଭେରୀ ବାଦନ ରୂପ ନିଶାଣମାନ ଏହି ଭାଷାର ଅନ୍ତର୍ଗତ । ବ୍ୟାପକ ଅର୍ଥରେ ଏ ସମସ୍ତ, ଭାଷାର ବିଭିନ୍ନ ରୂପରେଖା । ଏହି ଅର୍ଥରେ ଭାଷା କେବଳ ମାନବଠାରେ ନୁହେଁ, ଇତର ପ୍ରାଣୀମାନଙ୍କଠାରେ ମଧ୍ୟ ଦେଖା ଦେଇଥାଏ । ମାନବପରି ଇତର ପ୍ରାଣୀମାନେ ମଧ୍ୟ ସେମାନଙ୍କ କ୍ଷୁଧା, ତୃଷା, ସୁଖ, ଦୁଃଖ ପ୍ରଭୃତି ଅନୁଭୂତି ବା ଅବସ୍ଥାଗୁଡ଼ିକୁ ବିବିଧ ଚିତ୍କାର ଓ ସଂକେତର ଆକାରରେ ପ୍ରକାଶ କରିଥାଆନ୍ତି । ମାତ୍ର ସଂକୀର୍ଣ୍ଣ ଅର୍ଥରେ 'ଭାଷା' କହିଲେ, ଆମ୍ଭେମାନେ ଉଲ୍ଲିଖିତ ଶାରୀରିକ ସଂକେତଗୁଡ଼ିକ ବୁଝୁନାଇ-ବୁଝୁଁ କେବଳ ମାନବର କଥିତ ଓ ଲିଖିତ ଭାଷା । ଏହି ଅର୍ଥରେ ଭାଷା କେବଳ ଶବ୍ଦ, ପଦ, ବାକ୍ୟ ଓ ସନ୍ଦର୍ଭ ଆକାରରେ ବିନ୍ୟସ୍ତ ହୋଇଥାଏ । ମାନବ ପ୍ରଥମେ କଥିତ ଭାଷା ପ୍ରୟୋଗକରି ନିଜର ଭାବ ବ୍ୟକ୍ତ କରେ, ମାତ୍ର କ୍ରମେ ବର୍ଣ୍ଣମାଳା ସୃଷ୍ଟିକରି ସେମାନଙ୍କ ସଂଯୋଗରେ ଲିଖିତ ତଥା ଦୃଶ୍ୟମାନ ଆକାରରେ ତାହାର ଭାଷାକୁ ସୁଶୃଙ୍ଖଳ ରୂପରେଖ ଦିଏ । ଏହି ଶକ୍ତି ବଳରେ ହିଁ ମାନବ

ଇତର ପ୍ରାଣୀମାନଙ୍କଠାରୁ ସ୍ୱତନ୍ତ୍ର ଏକ ଜୀବ ବୋଲି ବିବେଚିତ ହୋଇଥାଏ । ସେ ଯାହାହେଉ, 'ଭାଷା' ଶବ୍ଦଟି ଏହି ପ୍ରବନ୍ଧରେ ଶେଷୋକ୍ତ ଅର୍ଥରେ ବ୍ୟବହୃତ ହୋଇଅଛି । ବର୍ତ୍ତମାନ ଏହି ଅର୍ଥରେ ଭାଷାର ଉତ୍ପତ୍ତି କିପରି ଘଟିଲା- ବିଚାର କରିବାକୁ ହେବ ।

ଭାଷାର ଉତ୍ପତ୍ତି ସମ୍ବନ୍ଧରେ ପଣ୍ଡିତଗଣ ବହୁତ ଗବେଷଣା କରି ଆସିଅଛନ୍ତି । ବିଶେଷତଃ ପାଶ୍ଚାତ୍ୟଖଣ୍ଡରେ ଇଉରୋପୀୟ ମନୀଷୀମାନେ ଏହାର ଅନୁସନ୍ଧାନରେ ଲାଗିପଡ଼ି ଅଛନ୍ତି । ଏହାର ଫଳରେ ଭାଷାର ଉତ୍ପତ୍ତି ନେଇ ବିଭିନ୍ନ ମତ ଦେଖିବାକୁ ମିଳେ । ନିମ୍ନରେ ପ୍ରଧାନ ପ୍ରଧାନ କେତୋଟିର ଅବତାରଣା କରାଗଲା ।

କେତେକଙ୍କ ମତରେ ଈଶ୍ୱର ସର୍ବପ୍ରଥମ ମାନବକୁ ଏ ଅଲୌକିକ ଘଟଣାର ମାଧ୍ୟମରେ ସର୍ବପ୍ରଥମ ଭାଷା ଦାନ କରିଥିଲେ । ଏହି ଆଦି ଭାଷାରୁ କ୍ରମେ ଦେଶ-କାଳ-ପାତ୍ର ଭେଦରେ ଅନ୍ୟାନ୍ୟ ବିଭିନ୍ନ-ଜାତୀୟ ଭାଷାର ଉଦ୍ଭବ ଘଟିଅଛି । ପ୍ରାଚୀନ ଗ୍ରୀସ୍‌ର 'ଲୋଗସ୍' (Logos) ଓ ପ୍ରାଚୀନ ଭାରତର ବୈଦିକ 'ବାକ୍' ଏହି ମତର ସମର୍ଥକ । ପ୍ରାଚୀନ ଗ୍ରୀସ୍‌ର ଲୋଗସ୍, ଭାବ ଓ ଭାଷା, ଉଭୟ ଅର୍ଥର ବ୍ୟଞ୍ଜକ ଏବଂ ଏହା ସର୍ବ ପ୍ରଥମେ ମାନବର ହୃଦୟ-ରାଜ୍ୟରେ କି ଏକ ଅଦ୍ଭୁତ ଐଶ୍ୱରୀକ ବିଧିରେ ଜନ୍ମଲାଭ କରି ମାନବ ଜାତିର ଏକ ଅତ୍ୟାବଶ୍ୟକ ସମ୍ବଳ ହୋଇଅଛି । ପ୍ରାଚୀନ ଭାରତର ବୈଦିକ କବି ସେଥିପାଇଁ 'ବାକ୍'କୁ ଦେବୀରୂପେ କଳ୍ପନା କରିଅଛନ୍ତି ଓ ଏହି ଐଶୀ ଶକ୍ତିର ବଳରେ ଭାଷାର ଉତ୍ପତ୍ତି ସମ୍ଭବପର ହୋଇଅଛି । ତେଣୁ ଉପନିଷଦ୍‌ରେ ଦେଖିବାକୁ ମିଳେ – 'ଯଦ୍‌ବାଚା ନାଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ' । ବୃହଦାରଣ୍ୟକ ଉପନିଷଦ, ବେଦ-ବେଦାନ୍ତ ମାନଙ୍କର ଉତ୍ପତ୍ତି ବୁଝାଇବାକୁ ଯାଇ କହିଅଛି, "ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତଦ୍ ଯଦୃଗ୍ ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ଇତିହାସ ପୁରାଣମ୍" ଅର୍ଥାତ୍, ସେହି ଏକମାତ୍ର ମହାନ ମୂଳବସ୍ତୁ ବ୍ରହ୍ମଠାରୁ ହିଁ ଚତୁର୍ବେଦ ଓ ଇତିହାସ, ପୁରାଣ ପ୍ରଭୃତି ଜ୍ଞାନଶାସ୍ତ୍ର ଉତ୍ପତ୍ତି ଲାଭ କରିଅଛନ୍ତି । ଆହୁରି ମଧ୍ୟ ପ୍ରଣବ ବା ଓଁକାର ସର୍ବବିଧ ବାକ୍‌ର ଉତ୍ପତ୍ତିସ୍ଥଳ ବୋଲି ଏହି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ । ସେଥିପାଇଁ ନୈଷ୍ଠିକ ବ୍ରାହ୍ମଣମାନଙ୍କର ବିଶ୍ୱାସ ଯେ 'ସଂସ୍କୃତ' ଦେବଭାଷା । ଋକ୍ ବେଦରେ ଚତୁର୍ବିଧ ବାକ୍‌ର ଉଲ୍ଲେଖ ଅଛି; ଯଥା- "ଚିତ୍ୱାରି ବାକ୍‌ପରିମିତା ପଦାନି" । ଭର୍ତ୍ତୃ ହରି ଓ ନାଗେଶ ପ୍ରଭୃତି ବ୍ୟାକରଣକାରମାନେ ତଥା ଗୌଡ଼ପାଦ ଓ ସାୟନାଦି ଦାର୍ଶନିକମାନେ ଏହି ଚତୁର୍ବିଧ ବାକ୍‌ର ନାମକରଣ କରିଅଛନ୍ତି- ପରା, ପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀ । ସେମାନଙ୍କ ମତରେ ପ୍ରଥମ ତିନୋଟି ଗୁହାନିହିତ, ଅର୍ଥାତ୍, ଅନ୍ତଃକରଣସ୍ଥିତ ମୂଳାଧାର, ନାଭିଚକ୍ର ଓ ହୃଦୟଚକ୍ର ସେମାନଙ୍କର ଅଧିଷ୍ଠାନ । ତେଣୁ ଏଗୁଡ଼ିକ ମାନସ-ଅଗୋଚର । ଏମାନଙ୍କ ମତରେ ନିତ୍ୟ ଚୈତନ୍ୟରୁ ସର୍ବପ୍ରଥମେ 'ନାଦ' ଉତ୍ପତ୍ତି ଲାଭକରି, ମୂଳାଧାର ନିର୍ଗତ ଆଭ୍ୟନ୍ତରୀଣ ବାୟୁଚାଳନା କ୍ରିୟାରୁ ଶବ୍ଦର ଉତ୍ପତ୍ତି ହୁଏ । ଏହି ପରା, ପଶ୍ୟନ୍ତୀ ଓ ମଧ୍ୟମା – ତ୍ରିବିଧ ଅବସ୍ଥାର ମଧ୍ୟଦେଇ ନାଦ

ବା ଶବ୍ଦବ୍ରହ୍ମ ପରିଶେଷରେ ବୈଖରୀ ବା ପ୍ରକାଶମାନ ଧ୍ୱନିରେ ପରିଣତହୁଏ । ଅର୍ଥାତ୍, ନାଦ ମୂଳାଧାରରୁ ଉତ୍ପତ୍ତି ଲାଭକରି, ଆଭ୍ୟନ୍ତରୀଣ ବାୟୁ ସାହାଯ୍ୟରେ ନାଭିଚକ୍ରକୁ ଆସିଲାବେଳେ ପଶ୍ୟନ୍ତ ବାକ୍ ହୁଏ; ବାକ୍‌ର ଏହି ଦୁଇ ଅବସ୍ଥା ଭେଦହୀନ ଓ ଅବିଭାଜ୍ୟ । ନିରତିଶୟ ସୂକ୍ଷ୍ମ ହୋଇଥିବାରୁ କେବଳ ଯୋଗୀମାନଙ୍କର ସମାଧି ଅବସ୍ଥାରେ ବୋଧଗମ୍ୟ ବୋଲି କୁହାଯାଇଅଛି । ମଧ୍ୟମାବାକ୍ ମଧ୍ୟବାୟୁ ଦ୍ୱାରା ପ୍ରକାଶ ପାଏ । ଯେତେବେଳେ ଆଭ୍ୟନ୍ତରୀଣ ବାୟୁ ହୃଦୟଚକ୍ରରେ ପ୍ରବେଶ କରେ, ସେତେବେଳେ ଏହାର ଉତ୍ପତ୍ତି ଘଟେ । ଏହା କେବଳ ବୋଧଗମ୍ୟ । ନାଗେଶଙ୍କ ମତରେ ଏହି ତ୍ରିବିଧବାକ୍ ଯଥାକ୍ରମେ 'ପ୍ରଣବର' ସୂକ୍ଷ୍ମତମ, ସୂକ୍ଷ୍ମତର ଓ ସୂକ୍ଷ୍ମ ଅବସ୍ଥା । ଯେତେବେଳେ ଅନ୍ତରବାୟୁ ହୃଦୟଚକ୍ରରୁ ବାହାରି, କଣ୍ଠମଧଦେଇ ମୁଖଦ୍ୱାରରେ ପ୍ରକାଶ ପାଏ, ସେତେବେଳେ ବୈଖରୀ ବାକ୍‌ର ଉଦ୍ଭବ ହୁଏ । ଏହାଛଡ଼ା ମହାଭାରତରେ କଥିତ ଅଛି, ଈଶ୍ୱର ଆରମ୍ଭରୁ ବସ୍ତୁମାନଙ୍କର ନାମ, ରୂପ ଓ ସେମାନଙ୍କର କ୍ରମିକ ପ୍ରକ୍ରିୟା ସୃଷ୍ଟିକରି ଅଛନ୍ତି । ଏହିସବୁ ବିଷୟରୁ ସ୍ପଷ୍ଟ ଅନୁମିତ ହେବ ଯେ ପ୍ରାଚୀନ ଭାରତରେ ମନୀଷୀମାନେ ଭାଷା-ବିଚାର କରିଥିଲେ । ଏହା ଯେ ଅପୌରୁଷେୟ ଭାବରେ ପ୍ରଥମେ ମାନବର ଅନ୍ତଃକରଣରେ ଜାତ ହୋଇ ମାନବ ସମାଜରେ ପ୍ରବେଶ ଲାଭ କରିଛି, ଏହାହିଁ ବୈଦିକ ଭାରତର ମତ । ୟୁରୋପରେ ସ୍ମିଟ୍ (W. Schmidt) ପ୍ରଭୃତି ପଣ୍ଡିତମାନେ ଏହି ମତର ସମର୍ଥକ ।

ଉଲ୍ଲିଖିତ ମତଟି ଅତି ସହଜ ବୋଧ ହୁଏ । କାରଣ, ଈଶ୍ୱରଙ୍କୁ ଯଦି ମାନବୀୟ ଯାବତୀୟ ବ୍ୟାପାରର ସ୍ରଷ୍ଟାବୋଲି ଧରାଯାଏ, ତାହା ହେଲେ ଭାଷାର ଉତ୍ପତ୍ତି ରୂପକ ଜଟିଳ ସମସ୍ୟାର ସମାଧାନ ପାଇଁ ଆଲୋଚନା, ବିଶ୍ଳେଷଣ ବା ପରୀକ୍ଷାର ଆବଶ୍ୟକତା ନାହିଁ । ସୃଷ୍ଟିବାଦୀମାନେ ଜଗତର ପ୍ରତ୍ୟେକ ବିଭାବକୁ ଏହି ଐଶ୍ୱରୀକ ବିଧାନର ଅବଲମ୍ବନରେ ଅତି ସହଜରେ ବ୍ୟାଖ୍ୟା କରିପାରନ୍ତି । ଖ୍ରୀଷ୍ଟୀୟ ଧର୍ମଶାସ୍ତ୍ରରେ ଲେଖାଅଛି- 'ଈଶ୍ୱର କହିଲେ ଆଲୋକ ହେଉ', ଏବଂ ଆଲୋକ ପ୍ରତିଭାତ ହେଲା । ସେହିପରି ଭାରତୀୟ ଧର୍ମଶାସ୍ତ୍ରରେ ବ୍ରହ୍ମ କହିଲେ- 'ଏକୋଽହଂ, ବହୁସ୍ୟାମ୍' ଏବଂ ଫଳରେ ବ୍ରହ୍ମମୟ ଜଗତର ସୃଷ୍ଟି ହୋଇଗଲା । ସେହିପରି ଈଶ୍ୱର ମାନବୀୟ ଯାବତୀୟ ବ୍ୟାପାରକ, ତେଣୁ ମାନବର ଭାଷାକୁ, ଏକ ଅଲୌକିକ ତଥା ଅନିର୍ବଚନୀୟ ବିଧାନରେ ସୃଷ୍ଟିକରି ତାହାର ହୃଦୟ-ରାଜ୍ୟରେ ଅବତୀର୍ଣ୍ଣ କରାଇ ଅଛନ୍ତି । ଏହା ଯଦି ସତ୍ୟ, ତାହାହେଲେ ସର୍ବତ୍ର ଓ ସର୍ବଦା ଏକ ଭାଷା ପରିଦୃଷ୍ଟ ହେଉଥାନ୍ତା । ଅବଶ୍ୟ ଏହି ମତବାଦୀମାନେ କହିପାରନ୍ତି, ଭାଷା ସର୍ବାଦୌ ଆଦିମାନବର ହୃଦୟରେ ଏକ ବିଶିଷ୍ଟ ଆକାରରେ ଉତ୍ପତ୍ତି ଲାଭକରି ଦେଶ-କାଳ-ପାତ୍ର ଭେଦରେ ବିଭିନ୍ନ ରୂପ ଧାରଣ କରିଅଛି । ଏହା ଆପାତତଃ ସମୀଚୀନ ବୋଧହୁଏ । ମାତ୍ର ତଳେଇ ଦେଖିଲେ ଏହା ଗ୍ରହଣୀୟ ବୋଲି ବୋଧହୁଏ ନାହିଁ । କାରଣ, ଯଦି ଭାଷା ଈଶ୍ୱରଦତ୍ତ, ତାହାହେଲେ ମାନବର ପରବର୍ତ୍ତୀ ବଂଶଧରଙ୍କଠାରେ ଏହାର ପ୍ରଭାବ ବରାବର

ଦେଖା ଯାନ୍ତା ଏବଂ ବିଭିନ୍ନ ପ୍ରକାରର ଭାଷାମାନଙ୍କରେ ସୌସାଦୃଶ୍ୟ ପରିଲକ୍ଷିତ ହେଉଥାନ୍ତା । ମାତ୍ର କିଏ କହିବ ଯେ ପୃଥିବୀର ବିଭିନ୍ନ ଜାତିର ଭାଷାଗୁଡ଼ିକ ଏକ ଆଦିଭାଷାର ବିବର୍ତ୍ତନ ? ଭାରତ ତଥା ଇଉରୋପରେ ପ୍ରଚଳିତ ଆର୍ଯ୍ୟଭାଷାଗୁଡ଼ିକରେ ଅବଶ୍ୟ ମୂଳଧାତୁ (Roots) ଘେନି କେତେକ ସାମ୍ୟ ପରିଦୃଷ୍ଟ ହୁଏ । ମାତ୍ର ଏହାଛଡ଼ା ପୃଥିବୀର ଅନୁନ୍ନତ ଜାତିମାନଙ୍କର ଓ ଅନେକ ସଭ୍ୟଜାତିଙ୍କର ଭାଷା (କଥିତହେଉ ବା ଲିଖିତ ହେଉ) ଏହି ଆର୍ଯ୍ୟଭାଷାମାନଙ୍କଠୁ ସ୍ୱତନ୍ତ୍ର ପ୍ରତୀୟମାନ ହୁଏ । ତେବେ କ'ଣ କହିବାକୁ ହେବ ଯେ, ଭିନ୍ନଭିନ୍ନ ସ୍ଥାନରେ ଓ ଭିନ୍ନ ଭିନ୍ନ ଜାତିରେ ଈଶ୍ୱର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଭାଷା ଜନ୍ମାଇଲେ ? ଅବଶ୍ୟ ଆମ୍ଭେମାନେ କହୁନାହୁଁ ଯେ, 'ବାକ୍‌ଶକ୍ତି' ଈଶ୍ୱରଦତ୍ତ ନୁହେଁ, ମାତ୍ର 'ବାକ୍‌ଶକ୍ତି' 'ବାକ୍' ନୁହେଁ । ମାନବ ଈଶ୍ୱର-ସୃଷ୍ଟ ହେଉ ବା ପ୍ରକୃତିର ସନ୍ତାନ ହେଉ, ଅନ୍ୟାନ୍ୟ ଶକ୍ତିପରି ତାହାଠାରେ ଏହି ବାକ୍‌ଶକ୍ତି ନିହତ ଅଛି ବୋଲି କହିବାକୁ ହେବ । ମାତ୍ର ଏଥିରୁ କ'ଣ ପ୍ରମାଣିତ ହେଲା ଯେ ଈଶ୍ୱର ଭାଷା ବା ବାକ୍‌କୁ ମାନବର ହୃଦୟରେ ପୁରାଇ ଦେଇଥିଲେ । ଗ୍ରୀସର ଲୋଗସ ବା ଭାରତର ବାକ୍‌କୁ ତେଣୁ ବାକ୍ ବା ଭାଷା ଅର୍ଥରେ ନ ବୁଝି କେବଳ 'ବାକ୍‌ଶକ୍ତି' ଅର୍ଥରେ ବୁଝିଲେ କୌଣସି ଅସୁବିଧା ହେବନାହିଁ । ବୋଧହୁଏ ଏହି ବ୍ରାହ୍ମୀଶକ୍ତିକୁ ଲକ୍ଷ୍ୟକରି ପ୍ରାଚୀନ ଭାରତର ଧର୍ମଶାସ୍ତ୍ର 'ବାଗ୍‌ଦେବୀ'ର କଳ୍ପନା କରିଥିଲା । ସୁତରାଂ ଏହି ମତଟି ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଯଥାର୍ଥ ବ୍ୟାଖ୍ୟା ଉପସ୍ଥାପିତ କଲାପରି ବୋଧ ହେଉନାହିଁ । ଏହାଛଡ଼ା ପରା, ପଶ୍ୟନ୍ତୀ ପ୍ରଭୃତି ବାକ୍‌ର ଯେଉଁ ଚତୁର୍ବିଧ ଆକାର କଥିତ ହୋଇଅଛି, ସେଗୁଡ଼ିକ ଏହି 'ବାକ୍‌ଶକ୍ତି'ର କ୍ରମିକ ବିକାଶରେ ଭିନ୍ନ ଭିନ୍ନ ଅବସ୍ଥାମାତ୍ର । ମୂଳତଃ ଦେଖିବାକୁ ଗଲେ ବାକ୍ ବା ବାକ୍‌ଶକ୍ତି ସେହି ନିତ୍ୟଚୈତନ୍ୟରୁ ଉଦ୍ଭୂତ ଶବ୍ଦବ୍ରହ୍ମର ପ୍ରକାଶମାତ୍ର ।

ଆଉ କେତେକ ପଣ୍ଡିତ କହନ୍ତି, ଶବ୍ଦ ଓ ଅର୍ଥ ମଧ୍ୟରେ ଏକ ପ୍ରାକୃତିକ ବା ନୈସର୍ଗିକ ସମ୍ବନ୍ଧଥିବା ହେତୁରୁ କେବଳ ପ୍ରାକୃତିକ ନିୟମରେ ଭାଷାର ଉତ୍ପତ୍ତି ଘଟିଅଛି । ଏମାନଙ୍କ ମତରେ ଭାବ ସଙ୍ଗେ ଭାଷା ଜଡ଼ିତ ରହି ଆବହମାନ କାଳରୁ ଉତ୍ପତ୍ତି ଲାଭ କରିଅଛି । ଭାବ ନ ଥାଇ ଭାଷା ନାହିଁ, କି ଭାଷା ନଥାଇ ଭାବ ନାହିଁ । ଏହି ମତର ସମର୍ଥକ ଭାବରେ କେତେକ କହିବାକୁ ଯାଇଅଛନ୍ତି, ଭାବ ମାତ୍ରକେ ଅନ୍ତର ଭାଷା (Thought is inner speech) । ସୁତରାଂ ଭାବ ଓ ଭାଷାର ସ୍ୱାତନ୍ତ୍ର୍ୟ ଏମାନେ ଆଦୌ ସ୍ୱୀକାର କରନ୍ତି ନାହିଁ । ହମ୍‌ବୋଲ୍ଟ ବା ଷ୍ଟାଇନ୍‌ଥାଇଲ ପ୍ରଭୃତି ଊନବିଂଶ ଶତାବ୍ଦୀର ଭାଷାତତ୍ତ୍ୱବିତ୍‌ମାନେ ଏହିମତଟି ଅବଲମ୍ବନ କରିବାର ଦେଖାଯାଏ । ପ୍ରଧାନ ଭାଷାତତ୍ତ୍ୱବିତ୍ ପଣ୍ଡିତ ମ୍ୟାକ୍ସମୁଲାର ଗ୍ରୀସର 'ଲୋଗସ'ର ସୂଚିତ ଭାଷା ଓ ଭାବର ତଦାତ୍ମ୍ୟକୁ ଆଶ୍ରୟକରି ଏହି ମତର ସମର୍ଥକ ହୋଇଅଛନ୍ତି ।

ଏହି ମତଟି ଭାଷାର ଉତ୍ପତ୍ତିକୁ ପ୍ରାକୃତିକ ନିୟମର ଅଧୀନ କରିଅଛି । ମାତ୍ର ଏହା

ବହୁ ପରିମାଣରେ ଭାଷାର ଉତ୍ପତ୍ତି ବ୍ୟାଖ୍ୟା କରିପାରିଥିଲେ ହେଁ ସମ୍ପୂର୍ଣ୍ଣ ଦୋଷମୁକ୍ତ ନୁହେଁ । କାରଣ ଭାଷା ଓ ଭାବର ଏହି ସ୍ୱାଭାବିକ ସମ୍ବନ୍ଧ ସବୁ ଅବସ୍ଥାରେ ଦେଖିବାକୁ ମିଳେ ନାଇ । ମାନବର କଳ୍ପନା ଓ ଉଚ୍ଚତମ ଚିନ୍ତା, ସବୁ ସମୟରେ ଭାଷାଶ୍ରୟୀ ହେବା ପରିବର୍ତ୍ତେ ବରଂ ଭାଷାକୁ ଅତିକ୍ରମ କରି ଗତି କରିଥାଏ । ଉଦାହରଣ ସ୍ୱରୂପ, ବ୍ରହ୍ମବିଷୟକ ଚିନ୍ତାରେ ଉପନିଷଦ୍‌କାର କହିଅଛନ୍ତି- 'ନତତ୍ର ଚକ୍ଷୁର୍ଗଚ୍ଛତି, ନ ବାଗ୍ ଗଚ୍ଛତି, ନ ମନୋ ନ ବିଦ୍ମେ, ନ ବିଜାନୀମୋ ଯଥୈତତ୍' । ଏଥିରୁ ସ୍ପଷ୍ଟ ଅନୁମିତ ହେବ, ମାନବର କଳ୍ପନା ବା ଚିନ୍ତା ବ୍ରହ୍ମକୁ ବୁଝୁଚି, ମାତ୍ର ଭାଷାର ଅତୀତ ସେ ଚିନ୍ତା । ସେଥିପାଇଁ ସିନା ଲୋକେ ଅନେକ ସମୟରେ କହିଥାନ୍ତି, ଅମୁକ ବିଷୟଟି ବଚନାତୀତ । ଏପରି ସ୍ଥଳେ କିପରି କୁହାଯାଇପାରେ ଯେ, ଭାଷା ଓ ଭାବ ଯୁଗପତ୍ ଉତ୍ପିତ ହୋଇପାରେ ? ଅବଶ୍ୟ କେତେକ ଚିନ୍ତାକୁ ନୀରବଭାଷା ବା ଅନ୍ତରଭାଷା ବୋଲି କହିଥାନ୍ତି । ଅନ୍ତର୍ଦର୍ଶନରେ (In Introspcction) ମାନବ ମନ ମଧ୍ୟରେ ଚିନ୍ତା କରୁଥିବା ସମୟରେ ନିଜେ ନିଜକୁ କହୁଥିଲା ପରି ବୋଧହୁଏ । କିନ୍ତୁ ନିମ୍ନଲିଖିତ କେତୋଟି ବିଷୟରୁ ଏହାର ଅଯଥାର୍ଥ୍ୟ ଅନୁମିତ ହେବ ।

ଉଚ୍ଚ ଚିନ୍ତାବେଳେ ଭାଷା ଅନେକ ସ୍ଥଳରେ ଅନ୍ତରାୟ ହୋଇଥାଏ । ଗାଣିତିକ ଭାଷାବିନ୍ୟାସର ନିୟମ ଅନୁଯାୟୀ ଚିନ୍ତା ନ କରି କେତେକ ପ୍ରତୀକର ଆଶ୍ରୟ ନେଇଥାଏ । ଏହି ପ୍ରତୀକଗୁଡ଼ିକ ବସ୍ତୁମାନଙ୍କର ପ୍ରତୀକ, ଚିନ୍ତାର ପ୍ରତୀକ ନୁହନ୍ତି । ଚିନ୍ତା ବସ୍ତୁନିଷ୍ଠ ପର୍ଯ୍ୟବେକ୍ଷଣ ଉପରେ ଯେତେ ନିର୍ଭର କରେ, ଭାଷା ଉପରେ ସେତେ ନିର୍ଭର କରେ ନାଇ । ଚିନ୍ତା ଅତିଶୟ ଗଭୀର ଓ ତୀବ୍ରହେଲେ ଭାଷା ଉପରେ ନିର୍ଭର କରି ନ ଥାଏ, ବରଂ ଭାଷା ଉକ୍ତ ସମୟରେ ଭଗ୍ନପ୍ରାୟ ହୋଇପଡ଼େ । ପୁଣି ଦେଖାଯାଏ, ଉଚ୍ଚସ୍ୱରରେ ପଢ଼ିଲାବେଳେ ଚିନ୍ତା ଓ ଭାଷାର ସହଗାମିତ୍ୱ ରହିପାରେନାହିଁ । କାରଣ, ବେଳେବେଳେ ଶବ୍ଦଜ୍ଞାନ ଆସିବାପୂର୍ବରୁ ବିଷୟ ବୋଧ ହୋଇଯାଏ । ଚିନ୍ତା ଅନେକ ସମୟରେ ବାଗିନ୍ଦ୍ରୀୟର ଚାଳନା ପର୍ଯ୍ୟନ୍ତ ଅପେକ୍ଷା ନ ରଖି ଅଗ୍ରସର ହୋଇଥାଏ । ଆମ୍ଭେମାନେ ଯେ ସମୟ ସମୟରେ ଏକ ବିଷୟ ଚିନ୍ତାକରୁ, ମାତ୍ର ଅନ୍ୟ ଗୋଟିଏ କଥା କହିଥାଉଁ, ଏହା ଏହାର ପ୍ରମାଣ । ପୁଣି ଅନେକ ସମୟରେ ଏକ କଥାକୁ ବାରମ୍ବାର ଉଚ୍ଚାରଣ କଲେ ହେଁ, ତାହାର ଅନୁରୂପ ଚିନ୍ତା ମନରେ ଉଦିତ ହୋଇପାରେ ନାଇ । ଏହିସବୁ ବିଷୟପ୍ରତି ଦୃଷ୍ଟିଦେଲେ ଜଣାଯିବ, ଭାବ ଓ ଭାଷା, ଏ ଦୁହିଁଙ୍କ ମଧ୍ୟରେ କୌଣସି ଅବିଚ୍ଛେଦ୍ୟ ପ୍ରାକୃତିକ ସମ୍ବନ୍ଧ ନାଇ । ଭାଷା ଓ ଭାବ ଯେ ପରସ୍ପର ଘନିଷ୍ଠଭାବରେ ସମ୍ବନ୍ଧ, ଏହା ସତ୍ୟ, ମାତ୍ର ଏଥିରୁ ବୁଝିବାକୁ ହେବନାଇ ଯେ, ଭାଷା ପ୍ରାକୃତିକ ବିଧିରେ ଭାବର ସହଗାମୀ ବା ଭାବହିଁ କେବଳ ଅନ୍ତର ବା ନୀରବ ଭାଷା । ମାନବର ବ୍ୟାବହାରିକ କ୍ଷେତ୍ରରେ ଭାଷା ଭାବର ପ୍ରକାଶ ଓ ଆଦାନପ୍ରଦାନର ଅତ୍ୟାବଶ୍ୟକ ବାହନ ।

ପୁଣି କେତେକଙ୍କ ମତରେ ଭାଷା ଏକ ମାନବୀୟ ସୃଷ୍ଟି । ମାନବସମାଜରେ

ବ୍ୟକ୍ତିମାନଙ୍କ ମଧ୍ୟରେ ଚିନ୍ତା, ଅନୁଭୂତି ପ୍ରଭୃତି ମାନସିକ ଅବସ୍ଥାର ଆଦାନପ୍ରଦାନ ଓ ବ୍ୟାବହାରିକ ଜୀବନର ସୁଚାରୁ ପରିଚାଳନା ନିମିତ୍ତ ଏକ ଉପାୟ ବା କୌଶଳ ରୂପରେ ଭାଷାର ସୃଷ୍ଟି ଘଟିଅଛି । ପ୍ରତ୍ୟେକ ଜାତି ତାହାର ମାନସିକ, ରାଜନୈତିକ, ସାମାଜିକ ତଥା ଭୌଗୋଳିକ ପରିସ୍ଥିତି ଓ ଅନ୍ୟାନ୍ୟ ପ୍ରାକୃତିକ ପରିବେଷ୍ଟନୀର ସମ୍ମୁଖୀନ ହୋଇ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ କାର୍ଯ୍ୟନିର୍ବାହ ନିମିତ୍ତ ଭାବବିନିମୟ କରିବା ଉଦ୍ଦେଶ୍ୟରେ କେତେଗୁଡ଼ିଏ ଶବ୍ଦସଂକେତ ଉଦ୍ଭାବନ କରିବାକୁ ଲାଗିଲେ ଏବଂ ଏଗୁଡ଼ିକ ସର୍ବସମ୍ମତିକ୍ରମେ ଲିଖିତ ବା କଥିତଭାବରେ ବ୍ୟବହାର କରି ଏକ ଏକ ଭାଷା ସୃଷ୍ଟି କରିଅଛନ୍ତି । ବସ୍ତୁବିଶେଷ କାହିଁକି ଏକ ବିଶିଷ୍ଟ ନାମରେ ନାମିତ ହେବ, ଏହାର କୌଣସି ଆବଶ୍ୟକ କାରଣ ନାଇ । କେବଳ ବ୍ୟାବହରିକ ସୁବିଧା ଦୃଷ୍ଟିରେ ଭାଷାର ସୃଷ୍ଟି – ଭାଷା ସର୍ବବାଦୀସମ୍ମତ ଏକ ଉପାୟ ମାତ୍ର । ଏହି ବ୍ୟାବହାରିକ ବିଧିରେ ଭାଷା ମାନବସମାଜର ଏକ ବିଚିତ୍ର ସୃଷ୍ଟି । ଏହାର ମୂଳରେ କୌଣସି ଦୈବୀ ଶକ୍ତିର ହାତ ନଥିଲା, କି ଭାବ ସହିତ ଭାଷାର କୌଣସି ପ୍ରାକୃତିକ ସମ୍ପର୍କ ନ ଥିଲା । ପାଶ୍ଚାତ୍ୟଖଣ୍ଡରେ ମ୍ୟାଡ୍‌ଭିଗ୍, ହ୍ୱିଟ୍‌ନୀ ଓ ମାର୍ଟି ପ୍ରଭୃତି ଭାଷାବିଦ୍‌ମାନେ ଏହି ମତର ପୃଷ୍ଠପୋଷକ । ଭାରତର ମନୀଷିମାନଙ୍କ ମଧ୍ୟରୁ କେତେକ ଏହି ମତଟି ପ୍ରକାଶ କରିଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ, ଋଗ୍‌ବେଦରେ ଲିଖିତ ଅଛି, 'ବ୍ରାହ୍ମଣଃ ସୋମିନୋ ବାଚମବ୍ରତ' – ଅର୍ଥାତ୍, ସୋମପା ବ୍ରାହ୍ମଣମାନେ ବାକ୍ ସୃଷ୍ଟି କରିଥିଲେ । ସେହିପରି ନ୍ୟାୟ ଓ ବୈଶେଷିକ ଦର୍ଶନ ମତରେ ଭାଷା ମାନବୀୟ ସୃଷ୍ଟି ('ଅନିତ୍ୟଶ୍ଚାୟଂ କାରଣତଃ – ବୈଶେଷିକ; ଆଦିମତ୍ତ୍ୱାଦୈନ୍ଦ୍ରିକତ୍ୱାତ୍ କୃତକବଦୁପଚାରାତ୍' – ନ୍ୟାୟ) ।

ଉପରୋକ୍ତ ମତଟି ଯଥାର୍ଥ ବୋଲି ମନେ ହୁଏ । ମାନବର ସୃଷ୍ଟିକାରୀ ଶକ୍ତି ତାହାର ବ୍ୟାବହାରିକ ଜୀବନର ସୁପରିଚାଳନା ନିମିତ୍ତ ତଥା ଭାବୀ ବଂଶଧରମାନଙ୍କର ସକଳ ଦିଗର ବିକାଶ ନିମିତ୍ତ ଭାଷାର ଉଦ୍ଭାବନ କରିଅଛି । ଏହି ମତ ଅନୁସାରେ ଭାଷାର ବିଭିନ୍ନତା ସମ୍ୟକ୍ ବ୍ୟାଖ୍ୟାତ ହୋଇପାରେ । ମାନବର ବାକ୍‌ଶକ୍ତି ନ ଥିଲେ ଭାଷାର ସୃଷ୍ଟି ହୋଇ ପାରନ୍ତା ନାହିଁ । ସୁତରାଂ ଏହି ବାକ୍‌ଶକ୍ତି ବଳରେ ମାନବ ପରିସ୍ଥିତି ଓ ଆବଶ୍ୟକତା ପ୍ରତି ଦୃଷ୍ଟିରଖି ମାନସିକ ଅବସ୍ଥା ବା ପ୍ରକ୍ରିୟାଗୁଡ଼ିକର ପ୍ରକାଶନ ଓ ଆଦାନପ୍ରଦାନର ପନ୍ଥା ଭାଷା ସୃଷ୍ଟିକରି ଇତର ପ୍ରାଣିମାନଙ୍କ ଉପରେ ନିଜର ସ୍ୱତନ୍ତ୍ର ଆସ୍ଥାନ ଜମାଇ ବସିଅଛି । ସୁତରାଂ ଏହି ମତଟି ଅନ୍ୟାନ୍ୟ ମତମାନଙ୍କ ଅପେକ୍ଷା ଉତ୍କୃଷ୍ଟତର ବୋଧ ହୁଏ । ଭାଷା, ଈଶ୍ୱର ସୃଷ୍ଟ ନୁହେଁ । ବାକ୍-ଶକ୍ତି, ଭାଷା ଗଢ଼ିବାର ଶକ୍ତି, ମାନବଠାରେ ବିଦ୍ୟମାନ ଏବଂ ଏହି ଅନ୍ତର୍ନିହିତ ଶକ୍ତିକୁ ଲଗାଇ ବହିର୍ଜଗତ୍ ସଙ୍ଗେ ନିଜକୁ ସମାଯୋଜିତ କରିବା ଉଦ୍ଦେଶ୍ୟରେ ନିଜର ବ୍ୟାବହାରିକ ଜୀବନ ପ୍ରକ୍ରିୟା ସମାଧାନ କରିବା ନିମିତ୍ତ ସେ ଏହି ବିଚିତ୍ର ଉପାୟ ଭାଷାର ଉଦ୍ଭାବକ ଓ ବିକାଶକ ହୋଇଅଛି । ଭାଷା ସେଥିପାଇଁ କେତେକ ଅନିୟନ୍ତ୍ରିତ ପରିସ୍ଥିତିର କାର୍ଯ୍ୟ ନୁହେଁ, କି କେବଳ ଈଶ୍ୱରଦତ୍ତ ଶକ୍ତିର କାର୍ଯ୍ୟନୁହେଁ । ଉଭୟର ସଂଘର୍ଷ ଓ ସହଯୋଗର ଫଳ ।

ଏହାଛଡ଼ା ମ୍ୟାକ୍ସମୁଲର ଭାଷାର ଉତ୍ପତ୍ତି ସମ୍ବନ୍ଧରେ ତିନୋଟି ମତର ଉଲ୍ଲେଖ କରିଅଛନ୍ତି । ସେ ତିନୋଟିର ନାମ ହେଉଛି- (୧) ଧ୍ୱନ୍ୟାନୁକରଣ ବାଦ (The Bow-Wow or Onomatopoe theory), (୨) ପ୍ରକ୍ଷେପବାଦ (The Pooh Pooh theory) ଏବଂ (୩) କର୍ମଧ୍ୱନିବାଦ (The yo he-ho Theory) ପ୍ରଥମ ମତରେ ଭାଷା ପ୍ରାକୃତିକ ବସ୍ତୁ ଓ ପ୍ରାଣିମାନଙ୍କର ବିଶିଷ୍ଟ ବିଶିଷ୍ଟ ଧରଣର ଧ୍ୱନିର ଅନୁକରଣରୁ ଉତ୍ପନ୍ନ ହୋଇଅଛି । ମାନବ ତାହାର ସ୍ୱଭାବଗତ ଅନୁକରଣପ୍ରିୟତାରେ ଚାଳିତ ହୋଇ ଅନ୍ୟାନ୍ୟ ପଦାର୍ଥ ଓ ଅନ୍ୟାନ୍ୟ ପ୍ରାଣିଙ୍କର ଧ୍ୱନି ବା ଚିତ୍କାରଗୁଡ଼ିକୁ ଅନୁକରଣ କରିବାକୁ ଲାଗିପଡ଼ିଲା । ଉଦାହରଣସ୍ୱରୂପ, ପତ୍ରର ମର୍ମର, ମେଘର ମନ୍ଦ୍ର, ବାୟୁର ସୁ ସୁ ଧ୍ୱନି, କୋକିଳର କୁହୁ କୁହୁ ତାନ, ନଦୀର କୁଳୁ କୁଳୁ ନାଦ, ସ୍ୱାନର ଭାଉ ଭାଉ ରଡ଼ି ପ୍ରଭୃତି ଅନୁକରଣ କରିବା ଫଳରେ ପ୍ରଥମେ କେତେଗୁଡ଼ିଏ ଶବ୍ଦର ସୃଷ୍ଟି ହେଲା ଓ କ୍ରମେ ସମାଜସ୍ଥ ବ୍ୟକ୍ତିମାନଙ୍କର ହର୍ଷ ବିଷାଦ ପ୍ରଭୃତି ଅବସ୍ଥାଗୁଡ଼ିକର ବହିଃପ୍ରକାଶ ନିମିତ୍ତ ବାଟ ଫିଟିଗଲା । ଜର୍ମାନ୍ ପଣ୍ଡିତ ଲାଜାରସ୍ ଗେିଗେର ଏହି ମତର ପ୍ରବର୍ତ୍ତକ । ଦ୍ୱିତୀୟ ମତରେ ଶାରୀରିକ ଯନ୍ତ୍ରଣା ଓ ସୁଖ ଦୁଃଖ ପ୍ରଭୃତି ଭାବର ଉଚ୍ଛ୍ୱାସ ବା ତୀବ୍ରତାବଶତଃ ମାନବର ଯେଉଁସବୁ ସ୍ୱାଭାବିକ ଚିତ୍କାର ବା ଭାବୋଦ୍‌ଗାର ଘଟେ, ସେଥିରୁହିଁ ଭାଷାର ଉତ୍ପତ୍ତି ଘଟିଅଛି । ଭାଷା ମାନବର ଜନ୍ମଗତ ଅଧିକାର ନ ଥିଲା । ଜନ୍ମଗ୍ରହଣ କରି ପରିବେଷ୍ଟନୀର ସଂଘର୍ଷରେ ଆସିଲା ମାତ୍ରକେ ତାହାର ମନରେ ବିଭିନ୍ନ ଅନୁକୂଳ ଓ ପ୍ରତିକୂଳ ପ୍ରତିକ୍ରିୟା ଘଟିବାରେ ଲାଗିଲା । ସ୍ୱଭାବତଃ ଆତ୍ମରକ୍ଷଣଶୀଳ ମାନବ ତାହାର ମାନସିକ ଏହି ପ୍ରତିକ୍ରିୟାଗୁଡ଼ିକୁ, ଏହି ଭାବ ଓ ଅନୁଭୂତିଗୁଡ଼ିକୁ ସହ୍ୟକରି ନ ପାରି, ସେଗୁଡ଼ିକର ଦୂରୀକରଣ ବା ଲାଘବ ନିମିତ୍ତ ନାନାଭାବରେ ଚିତ୍କାର କରିଥାଏ । ତାହାର ଏହି ଆଦି ଚିତ୍କାରଗୁଡ଼ିକରୁହିଁ ଭାଷାର ଜନ୍ମ ଘଟିଅଛି ବୋଲି ଏହି ମତବାଦୀମାନେ ଭାବନ୍ତି । ତୃତୀୟ ମତଟି, ବିଭିନ୍ନ କର୍ମକ୍ଷେତ୍ରରେ ନିଯୁକ୍ତ କର୍ମୀମାନଙ୍କର ପରସ୍ପର ଆହ୍ୱାନ ବା ଅନୁଜ୍ଞା ପ୍ରଭୃତିରୁ ଅବଲମ୍ବିତ ହୋଇଅଛି । ଏହାର ମର୍ମ ଏହି ଯେ, ଯେତେବେଳେ କେତେଗୁଡ଼ିଏ ଲୋକ କୌଣସି କର୍ମକ୍ଷେତ୍ରରେ କାର୍ଯ୍ୟ ସମାଧାନ ନିମିତ୍ତ ଆପଣା ଆପଣା ମଧ୍ୟରେ ଡକାଡ଼କି ଓ କଥାଭାଷା ହୁଅନ୍ତି, ସେତେବେଳେ ସେମାନେ କେତେଗୁଡ଼ିଏ ଅନୁଜ୍ଞାନିସୂଚକ ବା ଆହ୍ୱାନ ବ୍ୟଞ୍ଜକ ଧ୍ୱନି କରିଥାନ୍ତି । ଏହି ଧ୍ୱନିଗୁଡ଼ିକ ଗୋଟିଏ ଗୋଟିଏ ମୂଳଶବ୍ଦର ଆକାରରେ ବାହାରିପଡ଼େ । ଏହି ଗୁଡ଼ିକରୁହିଁ ଭାଷାର ଉତ୍ପତ୍ତି ଘଟିଅଛି । ନାବିକମାନଙ୍କର ନୌଚାଳନ ସମୟରେ "ହେଇ, ଉଠାଅ-ଧର, ଧର" ପ୍ରଭୃତି ଧ୍ୱନିଗୁଡ଼ିକ ପ୍ରତି ଦୃଷ୍ଟିଦେଲେ ଏହି ମତଟି ବୁଝାଯିବ ।

ଏହି ମତମାନଙ୍କ ମଧ୍ୟରୁ କୌଣସିଟି ସନ୍ତୋଷଜନକ ବୋଧହୁଏ ନାହିଁ । ପ୍ରତ୍ୟେକରେ କିଛି ସତ୍ୟ ନିହିତ ଅଛି । ମାତ୍ର କୌଣସିଟି ପୂର୍ଣ୍ଣ ସତ୍ୟ ହୋଇନାହିଁ । ଏହା ସତ୍ୟ ଯେ, ମାନବର ସ୍ୱାଭାବିକ ଅନୁକରଣ ପ୍ରବୃତ୍ତି ବଳରେ ସେ ବହିର୍ଜଗତର

ପଦାର୍ଥମାନଙ୍କରୁ ଉତ୍ପନ୍ନ କେତେକ ଧ୍ୱନି ବା ଶବ୍ଦର ଅନୁକରଣ କରିଥାଏ, ଏବଂ ଏହି ଶବ୍ଦଗୁଡ଼ିକ ତାହାର ଭାଷାର ଅଙ୍ଗୀଭୂତ ହୋଇଥାଏ । ମାତ୍ର ଏମାନଙ୍କର ସଂଖ୍ୟା ଏତେ ଅଳ୍ପ ଯେ, ଭାଷାର ଶବ୍ଦସମ୍ଭାରରେ ଏଗୁଡ଼ିକ ନଗନ୍ୟ ଉପାଦାନ ପରି ବୋଧହୁଏ । କୌଣସି ଭାଷା ଏହି କେତୋଟି ଶବ୍ଦରେ ଗଠିତ ନୁହେଁ, ତେଣୁ ପ୍ରଥମ ମତଟି ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ସେହିପରି ମାନସିକ ଉଦ୍‌ବେଗ ବା ପ୍ରକ୍ଷେପାବସ୍ଥାରେ ମାନବ ଯେଉଁ ଚିତ୍କାର ବା ଧ୍ୱନି କରିଥାଏ, ତାହା ତାହାର ମନୋଭାବ ବ୍ୟକ୍ତ କରିବାର ବ୍ୟାପକ ଉପାୟ ନୁହେଁ । ସୁଖ, ଦୁଃଖ ଯନ୍ତ୍ରଣା, ଭୟ, ପ୍ରମାଦ ପ୍ରଭୃତି ଅବସ୍ଥା ମନର ସମଗ୍ର ଅବସ୍ଥା ନୁହେଁ । ଏଣୁ ଦ୍ୱିତୀୟ ମତଟି ପ୍ରଥମ ମତ ପରି କେବଳ ଆଂଶିକ ଭାବରେ ସତ୍ୟ । ତୃତୀୟ ମତଟି ମଧ୍ୟ ପ୍ରଥମ ଦୁଇମତ ପରି ଗ୍ରହଣୀୟ ନୁହେଁ । କର୍ମକ୍ଷେତ୍ର ମଧ୍ୟରେ ସମ୍ମିଳିତ ଜନତା ମଧ୍ୟରେ କର୍ମସୂଚକ ଯେଉଁସବୁ ଧ୍ୱନ୍ୟାତ୍ମକ ସଂକେତର ବ୍ୟବହାର ହୁଏ, ସେଥିରୁ ଅବଶ୍ୟ ଭାଷାର ମୂଳ କେତେକ ଉପାଦାନ ମିଳିଥାଏ; ମାତ୍ର ଏହି ଧ୍ୱନି ବା ତଦୁତ୍ପନ୍ନ ଶବ୍ଦ ବା ବାକ୍ୟଛଡ଼ା, ମାନବର ଅନ୍ୟାନ୍ୟ ମାନସିକ ଅବସ୍ଥା ବା ପ୍ରକ୍ରିୟାର ପ୍ରକାଶନ ପାଇଁ ଅନ୍ୟ ଉପାଦାନ ଆବଶ୍ୟକ ।

ଉପରେ ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଅବଲମ୍ବିତ କେତୋଟି ପ୍ରଧାନ ମତର ଗୋଟିଏ ସ୍ଥୂଳ ଆଲୋଚନା ଦିଆଗଲା । ପରିଶେଷରେ ବକ୍ତବ୍ୟ ଏହି ଯେ, ଭାଷାର ଉତ୍ପତ୍ତି ସମସ୍ୟା ଗୋଟିଏ ବଡ଼ ଜଟିଳସମସ୍ୟା । ଏହାର ବିଶଦ ଆଲୋଚନା ଏହି କ୍ଷୁଦ୍ର ପ୍ରବନ୍ଧରେ ଅସମ୍ଭବ ।



୧୯

# ଭାଷା-ସଂସ୍କାର

## ସୁଧାକର ପଟ୍ଟନାୟକ

'ସାହିତ୍ୟ'ର ବିଗତ ଦ୍ୱାଦଶ ସଂଖ୍ୟାରେ ପଣ୍ଡିତ ବିନାୟକ ମିଶ୍ର ମହାଶୟ ଭାଷାସଂସ୍କାର ସମ୍ବନ୍ଧରେ ଗୋଟାଏ ପ୍ରବନ୍ଧ ଲେଖିଅଛନ୍ତି । ପ୍ରବନ୍ଧଟି ଯେ ସମୟୋଚିତ ହୋଇଅଛି, ଏଥିରେ ସନ୍ଦେହ ନାହିଁ; ମାତ୍ର କେତେକ କାରଣରୁ ମୁଁ ଲେଖକଙ୍କ ସହିତ ଏକମତ ହୋଇପାରୁ ନାହିଁ । ଏଣୁ ଏ ବିଷୟରେ ଦୁଇ ଚାରି କଥାରେ ମୋର ମତବ୍ୟକ୍ତ କରୁଅଛି ।

ପ୍ରଥମେ ଯେ କୌଣସି ଜାତିର ଭାଷାର ଇତିହାସ ପ୍ରତି ଦୃଷ୍ଟିପାତ କଲେ ସ୍ପଷ୍ଟ ମନେହୁଏ ଯେ, ଭାଷା କୌଣସି କାଳେ ଗୋଟାଏ ପୂର୍ଣ୍ଣାବୟବ ବିଶିଷ୍ଟ ସ୍ୱର୍ଗରୁ ଖସି ପଡ଼ିଥିବା ଜିନିଷ ନ ଥିଲା ବା ନୁହେଁ । ଭାଷାର ବରାବର ଭଙ୍ଗା ଗଢ଼ା ଲାଗିଅଛି, ବରାବର କ୍ରମବିକାଶ ଚାଲିଅଛି । କୌଣସି କୌଣସି ସ୍ଥଳରେ କେତେକ ଶବ୍ଦର କେତେକ ବିଶେଷ ଅର୍ଥରେ ବ୍ୟବହାର, ଅନ୍ୟ କୌଣସି କୌଣସି ସ୍ଥଳରେ କେତେକ ଶବ୍ଦ ଏକାବେଳକେ ଭାଷାରୁ ଲୋପ ପାଇଅଛି ଓ ପାଉଅଛି ଏବଂ ତହିଁ ସଙ୍ଗେ ସଙ୍ଗେ ପାର୍ଶ୍ୱବର୍ତ୍ତୀ ଭାଷାରୁ ମଧ କେତେ ନୂତନ ଶବ୍ଦସମ୍ଭାର ଆସି ଏକ ଭାଷାର ପୁଷ୍ଟିସାଧନ କରୁଅଛି । ବସ୍ତୁତଃ ଭାଷା ଗୋଟିଏ ସଜୀବ ପଦାର୍ଥ । ବ୍ୟାକରଣର ଦୃଢ଼ ନିଗଡ଼ଦ୍ୱାରା ଭାଷାର ସ୍ୱଚ୍ଛନ୍ଦ ବିକାଶରେ ବାଧାଦେଲେ ତାହା ବିକଳାଙ୍ଗ ଓ ବିଷମ (disproportionate) ହୋଇପଡ଼ିବ ସିନା ! ତାହାହେଲେ ଭାଷାର ସେ ଲାଳିତ୍ୟ, ସେ ମାଧୁର୍ଯ୍ୟ ଆଉ କେଉଁଠାରେ ରହିବ ? ଅବଶ୍ୟ ତାହା ବୋଲି ଆମ୍ଭେମାନେ ଭାଷାରାଜ୍ୟରେ ଅଯୌକ୍ତିକ ଓ ଅନାବଶ୍ୟକ ଯଥେଚ୍ଛାଚାରର ପକ୍ଷପାତୀ ନୋହୁଁ ।

ଲେଖକ ମହାଶୟଙ୍କ ମତରେ କଥୋପକଥନରୁ କଥିତ ଭାଷା ଏବଂ ସାହିତ୍ୟରୁ ଲିଖିତ ଭାଷା ଶିଖିବାକୁ ପଡ଼େ । ତାହା ହୋଇ ପାରେ କେବଳ ସେତେବେଳ ପର୍ଯ୍ୟନ୍ତ, ଯେତେବେଳ ପର୍ଯ୍ୟନ୍ତ ଲିଖିତ ଭାଷା ଓ କଥିତ ଭାଷାର ପାର୍ଥକ୍ୟ ଘୁଞ୍ଚିଯାଇ ନାହିଁ; ମାତ୍ର ଜୋର କରି ଏ ପାର୍ଥକ୍ୟ ରଖିବାର କୌଣସି ଆବଶ୍ୟକତା - ଆମ୍ଭେମାନେ ଦେଖି ପାରୁନାହୁଁ, ବିଶେଷତଃ ସ୍ପଷ୍ଟତଃ ଯେତେବେଳେ ବର୍ତ୍ତମାନ ଦେଖା ଯାଉଅଛି ଯେ, ଲୋକଙ୍କର ସଜ୍ଞାନରେ ବା ଅଜ୍ଞାନରେ ଏ ପାର୍ଥକ୍ୟ ଧୀରେ ଧୀରେ ଲୋପ ପାଇବାକୁ ବସିଅଛି । ଲେଖକ ମହାଶୟଙ୍କ

ନିଜର ଉଦାହରଣ ଦ୍ୱାରା କଥାଟା ଆହୁରି ଟିକିଏ ସ୍ପଷ୍ଟ କରି ଦେଉଅଛୁଁ । ତାଙ୍କ ମତରେ 'ନଇଲେ ଭାରିଯା', 'ଦୂତୀ ମୁଇଁତ କେମନ୍ତ କରୁଚି ଗୋ', 'ମୁହଁହାତ ଧୁଇତେ ଯାଇଚି' ଏସବୁ ଲେଖାରେ ସ୍ଥାନପାଇବା ଉଚିତ ନୁହେଁ । ବେଶ୍ କଥା, ଆମ୍ଭେମାନେ ମଧ କହୁଁ, ଏସବୁ ଲିଖିତ ଭାଷାରେ ସ୍ଥାନ ପାଇବା ଉଚିତ ନୁହେଁ; ମାତ୍ର ଲେଖକ ମହାଶୟ ଯେଉଁ କାରଣରୁ କହନ୍ତି, ଠିକ୍ ସେହି କାରଣରୁ ନୁହେଁ । ଲେଖକ ମହାଶୟଙ୍କ ମତରେ ଉଦାହରଣଗୁଡ଼ିକ କଥିତ ଭାଷା, ସୁତରାଂ ତାହା ଲିଖିତ ଭାଷାରେ ସ୍ଥାନ ପାଇ ନ ପାରେ; ମାତ୍ର ଆମ୍ଭେମାନେ କହୁଁ, ତାହା ନୁହେଁ; ଉଲ୍ଲିଖିତ ଉଦାହରଣ ସବୁ ପ୍ରାଦେଶିକତା (Provinisialism) ଦୋଷରେ ଦୁଷ୍ଟ, ସୁତରାଂ ତାହା ସାହିତ୍ୟରେ ସ୍ଥାନ ପାଇବା ଉଚିତ ନୁହେଁ । ଧରନ୍ତୁ, କେହି କଥିତ ଭାଷାର ଅନୁକରଣ କରି ଲେଖିଲା– 'ମତେ ତମ କଥାଗୁଡ଼ାକ କିମିତି ବଡ଼ ଅତୁଆ ଅତୁଆ ଲାଗୁଚି', 'ସେ ପିଲାଟାକୁ ଇମିତି କଲବଲ କରୁଚ କିଆଁ' ଏହା ବୁଝିବାକୁ ଗଞ୍ଜାମଠାରୁ ସମ୍ବଲପୁର ପର୍ଯ୍ୟନ୍ତ, ଦାନ୍ତନଠାରୁ ବସ୍ତର ପର୍ଯ୍ୟନ୍ତ ଯଦି କାହାରି କିଛି ଅସୁବିଧା ନ ହୁଏ, ତେବେ ତାହା ଲିଖିତ ଭାଷାରେ ସ୍ଥାନ ପାଇଲେ କ୍ଷତି କ'ଣ ? ଲେଖକ ମହାଶୟଙ୍କ କହିବା ଅନୁସାରେ ଏହା ମଧ ତ ସମାଜଗତ ଛାଞ୍ଚରେ ଗଢ଼ା – ବ୍ୟକ୍ତିଗତ ଛାଞ୍ଚରେ ନୁହେଁ । ବରଂ ଏତଦ୍ୱାରା ଆହୁରି ଗୋଟିଏ ମଧ ସୁବିଧା ଅଛି । ଯେତେବେଳେ କୌଣସି ଗୋଟିଏ ଭାଷାଶିକ୍ଷାର୍ଥୀ ଜଣେ ବିଦେଶୀ ଦେଖିବେ ଯେ, ଉକ୍ତ ଭାଷାରେ ଲିଖିତ ଭାଷା ଓ କଥିତ ଭାଷା ବୋଲି ଦୁଇଟା ପୃଥକ୍ ବସ୍ତୁ ନାହିଁ, ତେତେବେଳେ ଉକ୍ତ ଭାଷାକୁ ଆୟତ୍ତ କରିବାକୁ ତାଙ୍କୁ ଅଧିକ ଆୟାସ ସ୍ୱୀକାର କରିବାକୁ ପଡ଼ିବ ନାହିଁ । ତତ୍ପରେ ଭାଷା ତ ବ୍ୟାକରଣର ଅନୁଗାମୀ ହେବାର କଥା ନୁହେଁ, ଲେଖକ ମହାଶୟଙ୍କ କଥା ଅନୁସାରେ ବାସ୍ତବିକ ବ୍ୟାକରଣର ସୂତ୍ରଗୁଡ଼ିକ କଥିତ ଭାଷାରୁ ଆବିଷ୍କୃତ । ଅବଶ୍ୟ ଏଥିପାଇଁ ଆମ୍ଭେମାନେ କହୁ ନାହୁଁ ଯେ, ବ୍ୟାକରଣକୁ ଅମାନ୍ୟ କରିବାକୁ ହେବ । ଆମ୍ଭମାନଙ୍କର କହିବାର କଥା, ବ୍ୟାକରଣ ଯେପରି ଭାଷାର ସ୍ୱଚ୍ଛନ୍ଦ ବିକାଶରେ ଅଯଥା ବାଧା ନ ଦିଏ ।

"କଥିତ ଭାଷା ହେଉ ବା ଲିଖିତ ଭାଷା ହେଉ, ବ୍ୟାକରଣ ଯୋଗୁଁ ଭାଷା ଶିକ୍ଷା ସହଜ ହୁଏ ।" ସତକଥା, ମାତ୍ର କେବଳ କେତେଜଣ ଭାଷାତତ୍ତ୍ୱାନୁସନ୍ଧିତ୍ସୁଙ୍କ ଛଡ଼ା ଆଉ କିଏ ବ୍ୟାକରଣ ଧରି ଭାଷା ଶିକ୍ଷା କରୁଥାଏ ? ସେପରି କଲେ ଶିକ୍ଷାର୍ଥୀ ପକ୍ଷରେ ପ୍ରଚଳିତ ଗ୍ରାମ୍ୟ ଭାଷା ଶିଖିବା ଅସମ୍ଭବ ହୋଇପଡ଼ିବ । ଆଉ ମଧ ବ୍ୟାକରଣ ସାହାଯ୍ୟରେ ଭାଷାଶିକ୍ଷାର ଚେଷ୍ଟା ପ୍ରାକୃତିକ ପନ୍ଥାନୁଗାମୀ ନୁହେଁ । ଲେଖକ ମହାଶୟ ଅବଶ୍ୟ ସ୍ୱୀକାର କରିବେ ଯେ, ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ବଙ୍ଗଳା ପଢ଼ିପାରନ୍ତି ଓ କହି ପାରନ୍ତି ଏବଂ କେତେକ ଲେଖି ପାରନ୍ତି ମଧ; ମାତ୍ର କହି ପାରିବେ କି, ଏଥି ମଧ୍ୟରୁ କେତେଜଣ ବଙ୍ଗଭାଷାର ବ୍ୟାକରଣ ଧରି ଭାଷା ଶିକ୍ଷା କରିଥିଲେ ? ବରଂ ଏ ସ୍ଥଳରେ ଅଭିଧାନହିଁ ଅଧିକ ଉପଯୋଗୀ । କୌଣସି ବଙ୍ଗଳା ବହି ପଢ଼ିଲାବେଳେ ଯଦି ଆମ୍ଭେମାନେ କୌଣସି ଗ୍ରାମ୍ୟ ବଙ୍ଗଳା ଶବ୍ଦ ପାଉଁ, ତେବେ କ'ଣ କରୁଁ ? ଅଭିଧାନ ସାହାଯ୍ୟରେ ତାହାର ଅର୍ଥଗ୍ରହଣ କରିବା

ଏ ସ୍ଥଳରେ ସ୍ୱାଭାବିକ, କେତେଜଣ ଏପରି ସ୍ଥଳରେ ବ୍ୟାକରଣର ପତ୍ର ଓଲଟାଇ ଉକ୍ତ ଶବ୍ଦର ବ୍ୟୁତ୍ପତ୍ତି ଓ ପ୍ରୟୋଗ ସ୍ଥିର କରନ୍ତି ବା ସେ ନିୟମ କେତେଦୂର ସୁବିଧାଜନକ ? ସୁତରାଂ ଶବ୍ଦର ଯେତେ ବିଭିନ୍ନ ରୂପ ହୋଇପାରେ, ସେ ସମସ୍ତ ଅଭିଧାନରେ ଥିବା ଅତ୍ୟନ୍ତ ଆବଶ୍ୟକ । ଏ ସ୍ଥଳରେ ଆହୁରି ଗୋଟିଏ କଥା ମଧ ସ୍ମରଣ ରଖିବାକୁ ହେବ । ଲେଖକ ମହାଶୟଙ୍କର ଗୋଟିଏ ଉଦାହରଣ ନେଇ ବୁଝାଇ ଦେଉଅଛୁଁ । କେହି ଲୋକ ଖଣ୍ଡିଏ ଓଡ଼ିଆ ବହିରେ ପଢ଼ିଲେ ବା କୌଣସିଠାରୁ ଶୁଣିଲେ 'ମନେଇ' । ତାହାର ଅର୍ଥଗ୍ରହଣ ନିମିତ୍ତ ଓଡ଼ିଆ ବ୍ୟାକରଣ ଧରି ପ୍ରଥମେ ସେ କ'ଣ ସ୍ଥିର କରିବେ 'ମନେଇ' 'ମନାଇ'ର ବିକଳ୍ପସିଦ୍ଧ ଏବଂ ତତ୍ପରେ ଅଭିଧାନରେ 'ମନାଇ' ଶବ୍ଦ ଖୋଜି 'ମନେଇ'ର ଅର୍ଥ ଗ୍ରହଣ କରିବେ ? ଏହା ସୁବିଧାଜନକ, ନା ଯଦି 'ମନାଇ' ଓ 'ମନେଇ' ଉଭୟ ପ୍ରୟୋଗ ଅଭିଧାନରୁ ମିଳେ, ତେବେ ଏକାବେଳକେ ଅଭିଧାନ ଦେଖି ଅର୍ଥ ବୁଝିବା ପନ୍ଥା ସୁବିଧାଜନକ ? ତେବେ କ'ଣ ଏହିପରି ଯୁକ୍ତି ବଳରେ ଲେଖକ ମହାଶୟ ଅଭିଧାନରୁ ବିକଳ୍ପପ୍ରୟୋଗଗୁଡ଼ିକ ଏକାବେଳକେ ଉଠାଇ ଦେବାର ପକ୍ଷପାତୀ ? କୌଣସି ଭାଷାର ଖଣ୍ଡିଏ ପୂର୍ଣ୍ଣାଙ୍ଗ ଅଭିଧାନ ଉକ୍ତ ଭାଷାର ପୂର୍ଣ୍ଣାଙ୍ଗ ଶବ୍ଦକୋଷ ହେବା ମଧ୍ୟ ବିଧେୟ ଏବଂ ତହିଁରୁ ଉକ୍ତ ଭାଷାରେ ପ୍ରଚଳିତ ସମସ୍ତ ଶବ୍ଦ ମିଳିବା ଉଚିତ ।

ଏ ସମ୍ପର୍କରେ ଆଉ ଦିଓଟି ଗୋଟିଏ କଥା ନ କହି ରହି ପାରିଲୁଁ ନାହିଁ । ଏ ବିଷୟ ନେଇ ଲେଖକ ମହାଶୟ ଅପ୍ରାସଙ୍ଗିକଭାବରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ପ୍ରତି କଟାକ୍ଷ କରିବାଟା ଆମ୍ଭେମାନେ କୌଣସିମତେ ପସନ୍ଦ କରୁନାହୁଁ ବା ତହିଁର କୌଣସି ଆବଶ୍ୟକତା ମଧ ଦେଖୁନାହୁଁ । ଅବଶ୍ୟ ଏଥିରୁ ଆମ୍ଭେମାନେ ନନ୍ଦଙ୍କର ପକ୍ଷପାତୀ ବୋଲି ଯେପରି କେହି ମନେ ନ କରନ୍ତି । ଆମ୍ଭମାନଙ୍କର କହିବାର କଥା ଏହି ଯେ, ବୃଥାରେ ଅନାବଶ୍ୟକ ଭାବରେ ଉପରେ ପଡ଼ି କଳି ଲଗାଇବା ଦରକାର କ'ଣ ?

ଲେଖକ ମହାଶୟ 'ଭାଷା-ସ୍ରୋତପାଇଁ ପ୍ରକୃତି ପଥ ପରିଷ୍କାର କରେ' ବୋଲି ସ୍ୱୀକାର କରି ମଧ କହନ୍ତି, "ପ୍ରକୃତିଯୋଗେ ଭାଷା ନୂଆ ନୂଆ ଶାଖା ମେଲିଲେ ମଧ ଯେତେଦିନ ପର୍ଯ୍ୟନ୍ତ ତାହା କ୍ଷୀଣ ଓ ସଙ୍କୀର୍ଣ୍ଣ, ତେତେଦିନ ପର୍ଯ୍ୟନ୍ତ ସେ ଶାଖାର ପ୍ରତିଷ୍ଠା ନାହିଁ ।" ମାତ୍ର ଲେଖକ ମହାଶୟ ଭାଷାର ସେହି କ୍ଷୀଣ ସଂକୀର୍ଣ୍ଣ ଅବସ୍ଥାରେ ଯଦି ତାକୁ ବ୍ୟାକରଣର ଦୃଢ଼ ବନ୍ଧନରେ ବାନ୍ଧି ପକାନ୍ତି, ତେବେ ତାହାର କ୍ରମବିକାଶ ଆଉ ସମ୍ଭବ କି ? ତାହାହେଲେ ଭାଷା କେବଳ ଗୋଟିଏ ବିକାଶହୀନ କଠିନ ପିଣ୍ଡରେ (Rigid mass) ପରିଣତ ହୋଇପଡ଼ିବ ।

"ବାସ୍ତବିକ ସାର୍ବଜନୀନ ଉଚ୍ଚାରଣ ଉପରେ ବର୍ଣ୍ଣଯୋଜନା ପ୍ରତିଷ୍ଠିତ ହେବା ଆବଶ୍ୟକ ।" ଆମ୍ଭମାନଙ୍କର ବିଶ୍ୱାସ, ଅତି ପ୍ରାଚୀନ କାଳରେ ସଂସ୍କୃତ ଭାଷାରେ ଶବ୍ଦବିନ୍ୟାସ ଆରମ୍ଭ ହେଲାବେଳେ ସେସବୁ ମଧ ତତ୍କାଳୀନ ଉଚ୍ଚାରଣ ଅନୁସାରେ ଗଠିତ ହୋଇଥିଲା ଏବଂ ବର୍ତ୍ତମାନ ସଂସ୍କୃତ ଭାଷାର ଯେ ଅବସ୍ଥା, ତହିଁରେ କେବଳ ତାହାରି ଉପରେ ନିର୍ଭର

କରି ଓଡ଼ିଆ ଭାଷାର ବନାନ ସ୍ଥିର ରଖିବାର ପକ୍ଷପାତୀ ଆମ୍ଭେମାନେ ନୋହୁଁ । ଲେଖକ ମହାଶୟ ଅବଶ୍ୟ ସ୍ୱୀକାର କରିବେ ଯେ, ବର୍ତ୍ତମାନ କେତୋଟି ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ମୁହଁରୁ ଆମ୍ଭେମାନେ ତାଲବ୍ୟ ଶର ପ୍ରକୃତ ଉଚ୍ଚାରଣ ଶୁଣିବାକୁ ପାଉଁ । ନଚେତ୍ ଅନ୍ୟ କୌଣସି ସ୍ଥଳରେ ଅନ୍ୟ କାହାରି ମୁହଁରୁ ଶ ଷ ସ ର ଉଚ୍ଚାରଣଗତ ପାର୍ଥକ୍ୟ କିଛି ଅଛି ବୋଲି ଲେଖକ ମହଶୟ କେବେ ଲକ୍ଷ୍ୟ କରିଅଛନ୍ତି କି ? ପିଲାଦିନେ ଚାଟଶାଳୀରେ ପଢ଼ିଲାବେଳେ ଅବଧାନଙ୍କଠାରୁ ଶିଖିଥିଲୁଁ - "ମଁ, ଯିଅ, ର, ଲିଅ, ବ, ଶିଅ, ଷଁ, ସୁଅ, ହ, କ୍ଷିଅ," ମାତ୍ର ସେ ଶ୍ରେଣୀର ଚାଟଶାଳୀର ଲୋପହେବା ସଙ୍ଗେ ସଙ୍ଗେ ସେ ଉଚ୍ଚାରଣ ମଧ୍ୟ ଆଉ କାନରେ ବାଜୁ ନାହିଁ ଏବଂ ଅନ୍ୟକୌଣସିଠାରେ ତହିଁର ଦୃଷ୍ଟାନ୍ତ ମଧ୍ୟ ଦେଖାଯାଉ ନାହିଁ । ବର୍ତ୍ତମାନ ଓଡ଼ିଆ ଭାଷାରେ ଅଛି ବୋଇଲେ କେବଳ ଦନ୍ତ୍ୟ ସ । ତେବେ ବର୍ତ୍ତମାନ ବୃଥାରେ ଜୋରକରି ତିନି ଗୋଟା ଶ, ଷ ଓ ସ ରଖିବାର ଆବଶ୍ୟକତା କ'ଣ ? ଭାଷା ତତ୍ତ୍ୱବିତ୍ ଆଚାର୍ଯ୍ୟ ଯୋଗେଶଚନ୍ଦ୍ରଙ୍କର ମଧ୍ୟ ଏହିମତ । ଏହିପରି ଭାବରେ ଓଡ଼ିଆ ଭାଷାରୁ ଋ, ଌ, ୡ, ଏହି ତିନିଗୋଟି ବର୍ଣ୍ଣ ମଧ୍ୟ ବର୍ତ୍ତମାନ ସ୍ୱତଃ ପ୍ରାୟ ଲୋପ ପାଇବାକୁ ବସିଲାଣି । ଶ ଓ ଷ ର ଯେ ଦିନେ ସେ ଗତି ନ ହେବ, କିଏ କହିପାରେ ? ପାର୍ଶ୍ୱବର୍ତ୍ତୀ କାୟଥୀ ଭାଷାରେ ହ୍ରସ୍ୱ ଇ କା ର, ଦୀର୍ଘ ଉକାର, ଶ ଓ ଷ ଏବଂ ସଂଯୁକ୍ତ ବର୍ଣ୍ଣନାହିଁ । ତଦ୍ୱାରା କ'ଣ ସେ ଭାଷାରେ ଭାବ ପ୍ରକାଶ କରିବାକୁ କିଛି ଅସୁବିଧା ଘଟୁଅଛି ? ଅନାବଶ୍ୟକ ଏବଂ ଅତିରିକ୍ତ ବର୍ଣ୍ଣମାଳା ପରିତ୍ୟାଗ କରିବାରେ ଆହୁରି ଗୋଟିଏ ସୁବିଧା ଓ ଆବଶ୍ୟକତା ମଧ୍ୟ ଅଛି । ଏହା ଭବିଷ୍ୟତକୁ, ସଂକ୍ଷିପ୍ତ ଲିପି (Short-hand) ପ୍ରଚଳନରେ ସାହାଯ୍ୟ କରିବ ।

ଏ ସ୍ଥଳରେ ଲେଖକ ମହାଶୟ ଇଂରାଜୀ ଭାଷାର ଯେ ଉଦାହରଣ ଦେଇଅଛନ୍ତି, ତାହା ବୋଧ ହୁଏ ଠିକ୍ ନୁହେଁ । ଟିକିଏ ଭଲକରି ଦେଖିଲେ ସହଜରେ ଜଣାଯିବ, ଇତି ମଧ୍ୟରେ ଇଂରାଜୀ ଭାଷାରେ ମଧ୍ୟ ବର୍ଣ୍ଣଯୋଜନା କ୍ରମଶଃ ବୈଜ୍ଞାନିକ ପଦ୍ଧତିରେ ଉଚ୍ଚାରଣ ଅନୁଗାମୀ ହେବାକୁ ଚାଲିଅଛି; ଯଥା Labour, favour ଇତ୍ୟାଦି ବର୍ତ୍ତମାନ Labor, favor ରୂପେ ଲେଖା ହେବାକୁ ଲାଗିଲାଣି, ଏ ବିଷୟରେ ଇଂଲଣ୍ଡ ଅପେକ୍ଷା ଆମେରିକା ଆହୁରି ଅଗ୍ରଗାମୀ । ଆମେରିକା କେବଳ ବର୍ଣ୍ଣଯୋଜନାରେ ସନ୍ତୁଷ୍ଟ ନ ହୋଇ ନୂତନ ଶବ୍ଦବିନ୍ୟାସ ବା ପୁରାତନ ଶବ୍ଦର ନୂତନ ଅର୍ଥ ପ୍ରଚଳନ କରିବାକୁ ବସିଗଲାଣି । ଗୋଟିଏ ଉଦାହରଣ ଦେଉଅଛୁଁ । ଇଂରାଜୀରେ over sight ଅର୍ଥ ଭୁଲକ୍ରମେ ଦେଖି ନ ପାରିବା, ମାତ୍ର ଆମେରିକାରେ ତାହାର ଅର୍ଥ ପରିଦର୍ଶନ (Superintendence)। କୌଣସି ଆମେରିକାନ୍ ଲେଖକଙ୍କ ଲିଖିତ ଓ ଆମେରିକାରେ ମୁଦ୍ରିତ ଖଣ୍ଡିଏ ପୁସ୍ତକ ଦେଖିଲେ ଏଥିର ବିସ୍ତର ଉଦାହରଣ ମିଳିପାରିବ । ଲେଖକ ମହାଶୟ ଏହି ଭାଷାସଂସ୍କାର ନିମିତ୍ତ ସେମାନଙ୍କୁ ନିଶ୍ଚୟ ପାଗଳ ବା ଉଦ୍ଭଟ ଅଗ୍ରଗାମୀ ବୋଲି କହିବେ ନାହିଁ ।

ଏହି ସମ୍ପର୍କରେ ସେ ବଙ୍ଗଭାଷାର କଥା ମଧ୍ୟ ଉଲ୍ଲେଖ କରିଅଛନ୍ତି । ଆମ୍ଭେମାନେ ତହିଁରୁ ମଧ୍ୟ ଦିଓଟି ଗୋଟିଏ ଉଦାହରଣ ଦେଉଅଛୁଁ । ଲେଖକ ମହାଶୟ କଣ ବଙ୍ଗଳାରେ

ରାଙ୍ଗା ବଉ ଇତ୍ୟାଦି ଶବ୍ଦର ବ୍ୟବହାର କେବେ ଦେଖି ନାହାନ୍ତି ? ଠିକ୍ ଏହି ଶବ୍ଦଟିର ସପକ୍ଷରେ ବା ବିପକ୍ଷରେ ଆମ୍ଭେମାନେ କିଛି କହୁନାହୁଁ । ଏହିପରି ନାନା ନୂତନ ଶବ୍ଦରୁ କୌଣସି ଗୋଟାଏ ଦେଖାଇବାହିଁ ଆମ୍ଭମାନଙ୍କର ଉଦ୍ଦେଶ୍ୟ । କବିବର ରବୀନ୍ଦ୍ରନାଥଙ୍କ ଗ୍ରନ୍ଥାବଳୀରୁ ମଧ୍ୟ ଏହାର ଭୂରି ଭୂରି ପ୍ରମାଣ ମିଳିବ, ସେଥିରୁ ଗୋଟିଏ ଦେଖାଉଅଛୁଁ । ଖଣ୍ଡିଏ ପୁସ୍ତକର ମଲାଟରେ ସେ ଲେଖିଅଛନ୍ତି.... ଏ ସବୁକୁ କଣ ଲେଖକ ମହାଶୟ ଭାଷା ଓ ବ୍ୟାକରଣର ଯଥେଚ୍ଛାଚାର ବା ଅପବ୍ୟବହାର କହିବେ ?

ଏ ବିଷୟରେ ବର୍ତ୍ତମାନ ଆଉ ଅଧିକ କହିବାକୁ ଇଚ୍ଛା କରୁନାହୁଁ । କେବଳ ଉପସଂହାର ସ୍ଥଳରେ ଏତିକି କହୁଅଛୁଁ ଯେ, ଭାଷାର ମଧ୍ୟ ଶୃଙ୍ଖଳା ଆବଶ୍ୟକ ଏବଂ ଭାଷାର ଲାଳିତ୍ୟ ବିକାଶ ନିମିତ୍ତ ସଂସ୍କାର ମଧ୍ୟ ଆବଶ୍ୟକ । ଏ ସମ୍ବନ୍ଧରେ ଆମ୍ଭେମାନେ ଲେଖକ ମହାଶୟଙ୍କ ସହିତ ଏକମତ, ମାତ୍ର ସେଥିପାଇଁ ଭାଷାକୁ ଅଯଥା ବନ୍ଧାବନ୍ଧି କରି ତାହାର ସହଜ ବୃଦ୍ଧି ଓ ବିକାଶରେ ବାଧା ଦେବାର ପକ୍ଷପାତୀ ଆମ୍ଭେମାନେ ନୋହୁଁ ।

ଶେଷରେ ଲେଖକ ମହାଶୟଙ୍କଠାରେ ଅନୁରୋଧ ଯେ, ଆମ୍ଭମାନଙ୍କର ଯୁକ୍ତିର ସାରାବତ୍ତା ଥରେ ହିବ୍ୟଚିତ୍ତରେ ବିଚାର କରି ଦେଖିବେ ।



## ୨୦

# ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ

## ବିନାୟକ ମିଶ୍ର

ଆର୍ଯ୍ୟମାନେ ଅତି ପୁରା କାଳରେ ବୈଦିକ ଭାଷା ବ୍ୟବହାର କରୁଥିଲେ । ଏହି ବୈଦିକ ଭାଷା କାଳକ୍ରମେ ରୂପାନ୍ତରିତ ହୋଇ ପାଳୀ-ଭାଷାର ଉତ୍ପତ୍ତି ଘଟିଲା । ଅଶୋକଙ୍କ ରାଜତ୍ୱକୁ ଉତ୍ତର ଭାରତର ଅଧିବାସୀମାନେ ଏହି ପାଳୀ ଭାଷାରେ କଥୋପକଥନ କରୁଥିଲେ । କିନ୍ତୁ ଏହି ପାଲୀ ଭାଷା ସେତେବେଳେ ଉତ୍ତର ଭାରତରେ ବିଭିନ୍ନ ପ୍ରଦେଶରେ ବିଭିନ୍ନ ପ୍ରକାରେ ଉଚ୍ଚାରିତ ହେଉଥିଲା । ଉଚ୍ଚାରଣର ଏହି ବିଚ୍ଛିନ୍ନତା କାଳକ୍ରମେ ପୁଷ୍ଟିଲାଭ କରିବାରୁ ବିଭିନ୍ନ ପ୍ରାଦେଶିକ ଭାଷାର ସୃଷ୍ଟି ଘଟିଲା ।

ଅଶୋକଙ୍କ ରାଜତ୍ୱରେ ଓଡ଼ିଶାରେ ମଧ୍ୟ ପାଲୀ ଭାଷା ବ୍ୟବହୃତ ହେଉଥିଲା । ଏହି ପାଲୀ ଭାଷାରେ ଅଶୋକଙ୍କ ଅନୁଶାସନ ଧଉଳି ଓ ଜଉଗଡ଼ଠାରେ ଶିଳାଗାତ୍ରରେ ଖୋଦିତ ହୋଇଅଛି । ଓଡ଼ିଶାର ଏହି ଦୁଇଟି ଅନୁଶାସନରେ ବ୍ୟବହୃତ ଭାଷା ସହିତ ଭାରତର ଅନ୍ୟାନ୍ୟ ପ୍ରଦେଶରେ ଅଶୋକଙ୍କ ଅନୁଶାସନରେ ବ୍ୟବହୃତ ଭାଷାକୁ ତୁଳନା କଲେ ଜଣାଯାଏ ଯେ, ଓଡ଼ିଶାରେ ସେତେବେଳେ ପାଲୀଭାଷାର ଉଚ୍ଚାରଣ କେତେକ ପରିମାଣରେ ଉତ୍ତର ଭାରତର ଉଚ୍ଚାରଣଠାରୁ ପୃଥକ ଥିଲା । ଉଦାହରଣ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, 'ସର୍ବତ୍ର'ର ରୂପାନ୍ତରିତ ଶବ୍ଦ ଓଡ଼ିଶାର ଅନୁଶାସନରେ 'ସବତ' ରୂପେ ଲେଖା ହୋଇଅଛି । କିନ୍ତୁ ଗିର୍ଣ୍ଣାର, କାଳସି ଓ ସାହାବାଦର ଅନୁଶାସନମାନଙ୍କରେ ଯଥାକ୍ରମେ ସର୍ବତ, ସବତା, ଓ ସବ୍ରତ୍ର ରୂପରେ ଲେଖା ହୋଇଅଛି । ସେହିପରି କିଞ୍ଚତର ରୂପାନ୍ତରିତ ଶବ୍ଦ ଓଡ଼ିଶାର ଅନୁଶାସନରେ 'କିଛି' ରୂପେ ଏବଂ ଗିର୍ଣ୍ଣାର ଓ ସାହାବାଦର ଅନୁଶାସନରେ ଯଥାକ୍ରମେ 'କିଞ୍ଚ' ଓ 'କିଛି' ରୂପରେ ଲେଖା ହୋଇଅଛି । ଏହିପରି ଆଲୋଚନା କଲେ ଜଣାଯାଏ ଯେ, ଅଶୋକଙ୍କ ରାଜତ୍ୱ କାଳକୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ କେତେକ ପରିମାଣରେ ଦେଖାଯାଇଥିଲା । କିନ୍ତୁ ଏହି ସ୍ୱାତନ୍ତ୍ୟ ଖାରବେଳଙ୍କ ରାଜତ୍ୱକୁ କି ପରିମାଣରେ ବିକଶିତ ହୋଇଥିଲା ତାହା ଜାଣିବାର ଉପାୟ ନାହିଁ । କାରଣ, ସେ ସମୟରେ ଅନ୍ୟାନ୍ୟ ପ୍ରଦେଶରେ ବ୍ୟବହୃତ ଭାଷାରେ କୌଣସି ଲେଖ ମିଳୁ ନଥିବାରୁ ଖାରବେଳଙ୍କ ଶିଳାଲିପିରେ ବ୍ୟବହୃତ ଭାଷାକୁ ତୁଳନା କରିବାର ଉପାୟ ନାହିଁ । ତଥାପି ଖାରବେଳଙ୍କ ଶିଳାଲିପିରୁ ଭାଷାର ସ୍ୱାତନ୍ତ୍ୟ କେତେକ ପରିମାଣରେ ଅନୁମାନ କରାଯାଇପାରେ । ଏହି ଲିପିର ଭାଷାରେ 'ଣ' ସ୍ଥାନରେ

'ସ' ଅଧିକ ପରିମାଣରେ ବ୍ୟବହୃତ ହୋଇଅଛି । ପରବର୍ତ୍ତୀ କାଳରେ ମଗଧ ଓ ବଙ୍ଗରେ ବ୍ୟବହୃତ ପାଲୀ ଭାଷା ରୂପାନ୍ତରିତ ହୋଇ ପୂର୍ବ-ମାଗଧୀ ନାମରେ ଅଭିହିତ ହୋଇଥିଲା । କିନ୍ତୁ ଉତ୍କଳରେ ବ୍ୟବହୃତ ପାଲୀଭାଷା ପରିବର୍ତ୍ତିତ ହୋଇ ଅନେକ ପରିମାଣରେ ପୃଥକ୍ ହୋଇ ପଡ଼ିଥିବାରୁ ଭରତଙ୍କ ନାଟ୍ୟ-ଶାସ୍ତ୍ରରେ ଏହା 'ଓଡ୍ର ବିଭାଷା' ନାମରେ ଅଭିହିତ ହେଲା । ସେତେବେଳେ 'ସ'ର ପ୍ରଚୁର ବ୍ୟବହାର ଅଧିକାଂଶ ପରିମାଣରେ ଏହି ଓଡ୍ର ବିଭାଷାର ସ୍ୱାତନ୍ତ୍ର୍ୟ ନିର୍ଦ୍ଦେଶ କରୁଥିଲା । ଏହା ପ୍ରାୟ ଦ୍ୱିତୀୟ ଶତାବ୍ଦୀର କଥା ।

ହୃୟେନସାଂ ଯେତେବେଳେ ଓଡ଼ିଶାକୁ ଆସିଥିଲେ ସେତେବେଳକୁ ଓଡ୍ର ବିଭାଷା ପରିବର୍ତ୍ତିତ ହୋଇ ଉତ୍ତର ଭାରତର ଭାଷାଠାରୁ ସମ୍ପୂର୍ଣ୍ଣରୂପେ ପୃଥକ ହୋଇ ପଡ଼ିଲାଣି । ଏହି ପାର୍ଥକ୍ୟର ଅର୍ଥ ସେତେବେଳେ ଉତ୍ତର ଭାରତରେ ପାଲୀ ଭାଷାର ଉଚ୍ଚାରଣ, ଶବ୍ଦରୂପ ଓ ଧାତୁରୂପ ଯେପରି ଥିଲା, ଓଡ଼ିଶାରେ ସେପରି ନ ଥିଲା ।

ଓଡ଼ିଶାରୁ ସପ୍ତମ ଶତାବ୍ଦୀର ଅନେକ ତାମ୍ର-ଶାସନ ଆବିଷ୍କୃତ ହୋଇଅଛି । ଏଗୁଡ଼ିକ ସଂସ୍କୃତ ଭାଷାରେ ଲେଖା ହେଲେ ମଧ୍ୟ ଲେଖକମାନଙ୍କର ଅଜ୍ଞାତସାରରେ ଏଥିରେ ଓଡ୍ର ପ୍ରାକୃତ ଭାଷାର ପ୍ରତିବିମ୍ବ ପଡ଼ିଅଛି । ପଣ୍ଡିତମାନେ ସଂସ୍କୃତ ଭାଷାରେ ରଚନା କରନ୍ତି । ତାହାକୁ ତାମ୍ର ଫଳକରେ ଯେଉଁମାନେ ନକଲ କରନ୍ତି, ସେମାନେ ସଂସ୍କୃତ ଭାଷାରେ ଅନଭିଜ୍ଞ ଥିବାରୁ ସଂସ୍କୃତ ଶବ୍ଦଗୁଡ଼ିକର ବନାନ ଅନେକ ସ୍ଥଳରେ ମାତୃଭାଷାର ଉଚ୍ଚାରଣ ଅନୁସାରେ ଲେଖନ୍ତି । ଏଣୁ ଏହି ତାମ୍ର-ଶାସନମାନଙ୍କରୁ ଓଡ଼ିଶାର ସେ ସମୟର କଥିତ ଭାଷା ସମ୍ବନ୍ଧରେ କେତେକ ଆଭାସ ମିଳେ ।

ସପ୍ତମ ଶତାବ୍ଦୀକୁ ଓଡ଼ିଶାର ଭାଷାରେ ଅନ୍ତତଃ 'ବ'ର ଧ୍ୱନି ଲୁପ୍ତହୋଇ କେବଳ ବର୍ଗ୍ୟ 'ବ'ର ଧ୍ୱନି ପ୍ରଚଳିତ ଥିଲା । କିନ୍ତୁ ପ୍ରାଚୀନ ବର୍ଗ୍ୟ 'ବ'ର ଧ୍ୱନିସୂଚକ ବର୍ଣ୍ଣଟି ଲୁପ୍ତ ହୋଇ ତାହା ପରିବର୍ତ୍ତରେ ଅନ୍ତଃସ୍ଥ 'ବ'-ର ଧ୍ୱନିସୂଚକ ବର୍ଣ୍ଣ ବ୍ୟବହୃତ ହେଉଥିଲା । ଅନେକ ସଂସ୍କୃତ ଶବ୍ଦର 'ନ' ସାଧାରଣତଃ 'ଣ' ରୂପେ ଉଚ୍ଚାରିତ ହେଉଥିଲା । 'ମହା' ଶବ୍ଦ 'ମାହା' ରୂପେ ଉଚ୍ଚାରିତ ହେଉଥିଲା ।

ଓଡ଼ିଆ ଭାଷାର ଧ୍ୱନି-ତତ୍ତ୍ୱ ଆଲୋଚନା କଲେ ଜଣାଯାଏ ଯେ, କୌଣସି ଶବ୍ଦରେ କ୍ରମାନ୍ୱୟେ ଦୁଇଟି ଆକାର ଥିଲେ ସେଥିମଧ୍ୟରୁ ଓଡ଼ିଆ ଭାଷାରେ ଗୋଟିଏ ଆକାର ଉଚ୍ଚାରିତ ହୁଏ । ଏହି ହେତୁରୁ କାର୍ପାସ, ଆଷାଢ଼ ପ୍ରଭୃତି ଅନେକ ସଂସ୍କୃତ ଶବ୍ଦ ଓଡ଼ିଆରେ କପା, ଆଷାଢ଼ ପ୍ରଭୃତି ରୂପରେ ପରିଣତ ହୋଇଛି କିନ୍ତୁ ବଙ୍ଗଳାରେ ସେଗୁଡ଼ିକ କାପା, ଆଷାଢ଼୍ ପ୍ରଭୃତି ରୂପରେ ପରିଣତ ହୋଇଛି । ଏଥିରୁ ଜଣାଯାଏ ଯେ ଦୁଇଟି ଆକାରରୁ ଗୋଟିଏ ଆକାରର ଧ୍ୱନି ଲୁପ୍ତ ହେବା ଓଡ଼ିଆ ଭାଷାର ପ୍ରକୃତି । ଏହି ହେତୁରୁ ବଙ୍ଗଳା ଭାଷାରେ ଯାହା କାଣ୍ଡା, ବାଣ୍ଡା, ଛାତା, ବାସା ପ୍ରଭୃତି ରୂପରେ ଉଚ୍ଚାରିତ ହୁଏ ଓଡ଼ିଆରେ ସେଗୁଡ଼ିକ ଯଥାକ୍ରମେ କଣ୍ଡା, ବଣ୍ଡା, ଛତା, ବସା ରୂପରେ ଉଚ୍ଚାରିତ ହୁଏ । ଏହି ସୂତ୍ର ଅନୁସାରେ 'ଛାପା' ପରିବର୍ତ୍ତରେ ଓଡ଼ିଆରେ 'ଛପା' ଲେଖିବା ଉଚିତ । କିନ୍ତୁ ବଙ୍ଗ ଭାଷାର ପ୍ରଭାବରେ ଅନେକ ଶିକ୍ଷିତ ଓଡ଼ିଆ 'ଛାପା' ଲେଖନ୍ତି । ସେମାନେ ନିଜ ସପକ୍ଷରେ ଉପରୋକ୍ତ ସୂତ୍ରର ବିରୋଧୀ 'ମାହା' ଶବ୍ଦ ଦର୍ଶାନ୍ତି । କିନ୍ତୁ 'ମାହା' ଶବ୍ଦର ଉଚ୍ଚାରଣ ଯେ ସ୍ୱତନ୍ତ୍ର ସୂତ୍ରର ଅନ୍ତର୍ଗତ

ଏହା ସେମାନେ ଚିନ୍ତା କରନ୍ତି ନାହିଁ । କୌଣସି ଶବ୍ଦର ମଧ୍ୟରେ ବା ଅନ୍ତ୍ୟରେ 'ହ' ଥିଲେ ଏହି 'ହ' ବର୍ଣ୍ଣର ପୂର୍ବବର୍ତ୍ତୀ ବର୍ଣ୍ଣର ଅକାର ଆକାରରେ ପରିଣତ ହେବା ଓଡ଼ିଆ ଭାଷାର ପ୍ରକୃତି । ଏହି ହେତୁରୁ 'ମହା' 'ସଖା' ପ୍ରଭୃତି ଶବ୍ଦ ଓଡ଼ିଆରେ ମାହା, ସାହା, ପ୍ରଭୃତି ରୂପରେ ଉଚ୍ଚାରିତ । ପ୍ରାକୃତ 'ଯଦ୍' ଓ 'ତଦ୍' ଶବ୍ଦ ଏହି କାରଣରୁ ମଧ୍ୟ ଓଡ଼ିଆରେ 'ଯାହା' ଓ 'ତାହା' ରୂପରେ ବ୍ୟବହୃତ ହୋଇଅଛି । ଏହି ସମସ୍ତ ଉଚ୍ଚାରଣ ସ୍ୱାତନ୍ତ୍ର୍ୟ ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ବ୍ୟବହୃତ କଥିତ ଭାଷାରେ ସମ୍ପୂର୍ଣ୍ଣରୂପେ ବିକଶିତ ହୋଇଥିଲା ।

ବଜ୍ରଯାନ-ପ୍ରଚାରକ କୃଷ୍ଣାଚାର୍ଯ୍ୟ ଓଡ଼ିଶାବାସୀ ଥିଲେ ବୋଲି ଏବେ ଅନେକ ପ୍ରତ୍ନତତ୍ତ୍ୱବିତ୍ ମାନିଲେଣି । ସୁତରାଂ କୃଷ୍ଣାଚାର୍ଯ୍ୟଙ୍କ ରଚିତ ସଙ୍ଗୀତଗୁଡ଼ିକ ଯେ ଓଡ଼ିଆ ଭାଷାରେ ରଚିତ, ଏହା ପ୍ରମାଣ କରିବାର ପ୍ରୟୋଜନ ନାହିଁ । ସପ୍ତମ ଶତାବ୍ଦୀର ଶେଷଭାଗରେ ଏହି କୃଷ୍ଣାଚାର୍ଯ୍ୟଙ୍କର ଆବିର୍ଭାବ ଘଟିଥିଲା । ସେତେବେଳେ ସେ ଓଡ଼ିଶାର କଥିତ ଭାଷାରେ ରଚନା କରି ଥିବାରୁ ତାଙ୍କ ରଚନାରୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟସୂଚକ ପ୍ରକୃତି ଅନେକ ପରିମାଣରେ ଧରାପଡ଼େ । ଏଥିରେ ଅନେକ ଶବ୍ଦର ଯୁକ୍ତ ବର୍ଣ୍ଣର ଧ୍ୱନି ଯୁକ୍ତବ୍ୟଞ୍ଜନ ବର୍ଣ୍ଣଦ୍ୱାରା ନିର୍ଦ୍ଦେଶିତ ନ ହୋଇ ପୃଥକ୍ ପୃଥକ୍ ବ୍ୟଞ୍ଜନବର୍ଣ୍ଣଦ୍ୱାରା ନିର୍ଦ୍ଦେଶିତ ହୋଇଅଛି । ଅର୍ଥାତ୍ ଦର୍ଶନ, ଚକ୍ର ପ୍ରଭୃତି ଶବ୍ଦ ଦରଶନ ଚକର ପ୍ରଭୃତି ରୂପରେ ଲେଖାଯାଇଅଛି । ଏବେ ମଧ୍ୟ ଓଡ଼ିଶାର ସାଧାରଣ ଲୋକେ ଷ୍ଟେସନ, ସ୍କୁଲ ପ୍ରଭୃତି ଇଂରେଜୀ ଶବ୍ଦଗୁଡ଼ିକୁ ଟେସନ, ଇସିକୁଲ ପ୍ରଭୃତି ରୂପରେ ଉଚ୍ଚାରଣ କରନ୍ତି । ସୁତରାଂ ଯୁକ୍ତାକ୍ଷରର ଉଚ୍ଚାରଣ ଓଡ଼ିଆ ଭାଷାର ପ୍ରକୃତି-ବିରୁଦ୍ଧ କହିଲେ ଚଳେ । ଏପରି ସ୍ଥଳେ ପ୍ରାଚୀନ ଓଡ଼ିଆ କବିମାନେ ଭରତ, ଦରହାସ ପ୍ରଭୃତି ଶବ୍ଦ ଭ୍ରତ, ଦ୍ରହାସ ପ୍ରଭୃତି ରୂପରେ ଲେଖିଥିବା ପାଠକମାନଙ୍କୁ ବିଚିତ୍ର ମନେହୁଏ । କିନ୍ତୁ ଏଥିରେ ବିଚିତ୍ରତା କିଛି ନାହିଁ । ଯେଉଁମାନେ ପଦ୍ୟରଚନା କରନ୍ତି ସେମାନେ ଛନ୍ଦର ଯତି ରକ୍ଷାକରି ପଦ୍ୟ ପାଠ କଲାବେଳେ ଯେଉଁ ଶବ୍ଦ ଯେପରି ଉଚ୍ଚାରଣ କରନ୍ତି ସେହି ଶବ୍ଦର ବନାନ ସେପରି ଲେଖିଥାନ୍ତି । ଏଣୁ ଏଥିରୁ ଓଡ଼ିଆ ଭାଷାର ପ୍ରକୃତି ଧରାପଡ଼େ ନାହିଁ ।

ଓଡ଼ିଆ ଭାଷାରେ ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ଉଚ୍ଚାରିତ ହୁଏନାହିଁ ବୋଲି ସେଥିରେ ସନ୍ଧି ନାହିଁ । ସନ୍ଧି ନ ଥିବାରୁ 'ଭିଆଣ' 'ଦିଅନ୍ତୁ' ପ୍ରଭୃତି ଶବ୍ଦ ଲେଖିବାକୁ ଆମେ ବାଧ୍ୟ । କିନ୍ତୁ ସଂସ୍କୃତ ବ୍ୟାକରଣର ନିୟମ ଅନୁଯାୟୀ ଶବ୍ଦର ମଧ୍ୟରେ ସ୍ୱରବର୍ଣ୍ଣ ରହିବା ବଡ଼ ଅସଙ୍ଗତ । ବଙ୍ଗ ଭାଷାରେ 'ୟ'ର ଧ୍ୱନି 'ଅ'ର ଧ୍ୱନିର ଅତି ନିକଟବର୍ତ୍ତୀ ବୋଲି ତହିଁରେ ସଂସ୍କୃତ ଭାଷାର ନିୟମ ରକ୍ଷା କରାଯାଉଅଛି । କିନ୍ତୁ ଓଡ଼ିଆ ଭାଷାରେ 'ୟ' ସାଧାରଣତଃ 'ଇଅ' ରୂପେ ଉଚ୍ଚାରିତ ହୁଏ ବୋଲି ସଂସ୍କୃତ ନିୟମ ରକ୍ଷା କରି 'ଶୁଅନ୍ତୁ'କୁ 'ଶୁୟନ୍ତୁ' ରୂପରେ ଲେଖାଯାଇ ନ ପାରେ । ସନ୍ଧି ନ ଥିବାରୁ ଭିଆଣ, ଦିଅନ୍ତୁ, ଶୁଅନ୍ତୁ ପ୍ରଭୃତି ଭ୍ୟାଣ, ଦ୍ୟନ୍ତୁ, ଶ୍ୱନ୍ତୁ ପ୍ରଭୃତି ରୂପରେ ନ ଲେଖି ପ୍ରାକୃତ ଭାଷାର ଅନୁରୂପେ ମଝିରେ ସ୍ୱରବର୍ଣ୍ଣ ରଖିବାକୁ ଆମେ ବାଧ୍ୟ । ଏହିପରି ଧ୍ୱନିତତ୍ତ୍ୱ ଆଲୋଚନା କରି ଓଡ଼ିଆ ଶବ୍ଦମାନଙ୍କରେ ବନାନ ନିରୂପଣ କରିବା ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ।

ଠଠଠ

# ୨୧

# ଭାଷାର ଉତ୍ପତ୍ତି ବା ମୂଳ

## କରୁଣାକର କର

ସାରା ସୃଷ୍ଟିଟା ଯାକ କାର୍ଯ୍ୟକାରଣ ଭାବରେ ପରିଚାଳିତ ହେଉଅଛି । ସୃଷ୍ଟିର ଯେକୌଣସି ବାକ୍ୟାଂଶ ଦେଖ-ସେଠାରେ ଏହି ନିୟମ ଚାଲୁଛି । ସଂସାରର ପ୍ରତ୍ୟେକ କାର୍ଯ୍ୟର କାରଣ ରହିଅଛି ଏବଂ ପ୍ରତ୍ୟେକ କାରଣର ମଧ୍ୟ କାର୍ଯ୍ୟ ରହିଅଛି । ଏହାର ଗୋଟାଏ ନିୟମ ବା ଶୃଙ୍ଖଳା ନାହିଁ କହିଲେ ଚଳିବ ନାହିଁ । ମନୁଷ୍ୟ ନିଜର ବୁଦ୍ଧି ବଳରେ ସାରାସୃଷ୍ଟିର ସେହି ନିୟମ ଅଧ୍ୟୟନରେ ସର୍ବଦା ବ୍ୟସ୍ତ-ସେ ସର୍ବଦା ପ୍ରତ୍ୟେକ କାର୍ଯ୍ୟର କାରଣ ଅନୁସନ୍ଧାନରେ ତତ୍ପର ରହିଅଛି । ସେହି ଅନୁସନ୍ଧାନ ଓ ଗବେଷଣାବଳରେ ମନୁଷ୍ୟ ନିଜର ଗୋଟାଏ ଅଖଣ୍ଡ ଜ୍ଞାନସାଗର ଆବିଷ୍କାର କରି ସମସ୍ତ ପ୍ରକୃତିଜଗତ୍‌ଟାକୁ ନିଜର ଅଧୀନରେ ଆଣୁଅଛି । ହୋଇପାରେ-ଏହିପରି ପ୍ରକୃତି ଜଗତରେ କାର୍ଯ୍ୟକାରଣ ଭାବ ଖୋଜିବାକୁ ଗଲେ ଆମ୍ଭମାନଙ୍କୁ ଶେଷରେ ଗୋଟାଏ ଅନନ୍ତ ଶକ୍ତିର ଆଶ୍ରୟ ନେବାକୁ ହେବ । ଏହି ଶକ୍ତିକୁ କେହି କେହି ଈଶ୍ୱର, ପ୍ରକୃତି ପ୍ରଭୃତି ଭିନ୍ନ ଭିନ୍ନ ନାମରେ ନାମିତ କରିଥାନ୍ତି । ସେହି ଶକ୍ତି ସୃଷ୍ଟିର ଆଦି କାରଣ ହୋଇପାରେ । ସେଥିପାଇଁ ପ୍ରତ୍ୟେକ କ୍ଷେତ୍ରରେ ସେହି ଶକ୍ତିର କାରଣତ୍ୱ ସ୍ୱୀକାର କରି, ସମସ୍ତ ଜଗତକୁ ମାୟା ଭାବି ଅନୁସନ୍ଧାନ ନ କରି ନୀରବ ଓ ନିସ୍ତବ୍ଧ ହୋଇ ବସିରହିବା ମନୁଷ୍ୟତ୍ୱର ଚିହ୍ନ ନୁହେଁ । ଏହି ଭାବନାଦ୍ୱାରା ମନୁଷ୍ୟ ନିଜେ ନିଜର କ୍ଷତି କରିଥାଏ । ସେ ପ୍ରଥମରେ ନିଜର ସ୍ୱାଭାବିକ ଶକ୍ତିର ଅପଚୟ କରେ, ଦ୍ୱିତୀୟରେ ନିଜର ଜ୍ଞାନରାଜ୍ୟକୁ ସଂକୀର୍ଣ୍ଣ, ସୀମାବଦ୍ଧ କରେ । ସେଥିଯୋଗୁଁ ମାନବ ସର୍ବଦା ଅନୁସନ୍ଧାନରେ ତତ୍ପର, ସେ କୌଣସି ଗୋଟାଏ ଅନନ୍ତ ଶକ୍ତିର ଆଶ୍ରୟ ଘେନି ସ୍ୱୀୟ ଅନୁସନ୍ଧାନରୁ ବିରତ ହୁଏ ନାହିଁ । ସମୟ ସମୟରେ ପ୍ରକୃତି ରାଜ୍ୟ ତାହାର ଶକ୍ତିର ଅତୀତ ହୋଇପଡ଼େ - ଅନେକ କ୍ଷେତ୍ରରେ ସେ କାର୍ଯ୍ୟ କାରଣଭାବ ଦେଖିବାକୁ ପାଇ ନ ଥାଏ । ତଥାପି ସେ ସ୍ଥିର ହୋଇ ରହେ ନାହିଁ; ସେ ପ୍ରକୃତିର ସେହି ଅନ୍ଧକାର କକ୍ଷରେ ସର୍ବଦା ଅଣ୍ଡାଳି ହୋଇଥାଏ... । ଏହିପରି ଅସୀମ ଚେଷ୍ଟାକରି ମନୁଷ୍ୟ ଶେଷରେ ଅକାଟ୍ୟ ତଥ୍ୟ ଆବିଷ୍କାର କରିଥାଏ । ଏହି ହେଉଛି ଆଧିଭୌତିକବାଦୀଙ୍କର ମୂଳମନ୍ତ୍ର । ସେହି ନିରୀଶ୍ୱର ବା ଆଧିଭୌତିକବାଦୀ-ମାନଙ୍କର ଚେଷ୍ଟା ଓ ଯତ୍ନରେ ଆମ୍ଭେମାନେ ଜ୍ଞାନ-ସମୁଦ୍ରର ଅନେକ ଦୂରକୁ ଯାଇଅଛୁ ।

ସଂକ୍ଷେପରେ କହିବାକୁ ଗଲେ, ଏ ସମସ୍ତ ଜ୍ଞାନର ବିସ୍ତାର ସେହି ଆଧିଭୌତିକ- ବାଦୀମାନଙ୍କ ଅକ୍ଲାନ୍ତ ଚେଷ୍ଟା ଓ ଅଖଣ୍ଡ ଅଧ୍ୟବସାୟର ଫଳ ।

ଭାଷାର ତତ୍ତ୍ୱ ଜାଣିବାକୁ ହେଲେ ସର୍ବପ୍ରଥମେ ମନକୁ ଆସିଥାଏ-ଭାଷାର ମୂଳ କ'ଣ ? ମନୁଷ୍ୟ ବା ଏହା କିପରି ପାଇଲା ? ଏହି ପ୍ରଶ୍ନର ଅତି ସହଜ ଉତ୍ତର ଦେବାକୁ ଗଲେ ମନରେ ହୁଏ - ଭାଷା ମନୁଷ୍ୟର ଈଶ୍ୱରପ୍ରଦତ୍ତ ଶକ୍ତି । ଈଶ୍ୱର ଦୟାକରି ମନୁଷ୍ୟକୁ ଭାଷା ଦାନ କରିଅଛନ୍ତି । ଏ ଉତ୍ତର ତ ସବୁ ଈଶ୍ୱରବାଦୀ ଦେଇଥାନ୍ତି; କିନ୍ତୁ ନାସ୍ତିକମାନେ ଏହା ସ୍ୱୀକାର କରନ୍ତି ନାହିଁ । ଅଧିକାଂଶ ଧର୍ମ ମଧ୍ୟ ଉକ୍ତ ଉତ୍ତରଟି ସମର୍ଥନ କରିଥାଏ; କିନ୍ତୁ "ସେହି ଐଶ୍ୱରିକ ଶକ୍ତି ଓ ତାହାର ଭାଷାରୂପରେ ପରିଣତି" ଏହି ଦୁଇ ଅବସ୍ଥାର ମଧ୍ୟସ୍ଥାନ ଅନୁସନ୍ଧାନ କରିବାକୁ ହେଲେ ଆମ୍ଭମାନଙ୍କୁ "ପରିଣାମ" (Evolution Theory) ବାଦର ଆଶ୍ରୟ ଗ୍ରହଣ କରିବାକୁ ପଡ଼େ । ସେଥିପାଇଁ ଆଜିକାଲି ଅନେକେ ଭାଷାର ଗୋଟାଏ କ୍ରମବିକାଶ ଅନୁସନ୍ଧାନ କରିବାରେ ପ୍ରବୃତ୍ତ ହୋଇଅଛନ୍ତି । ତଳେ ସେମାନଙ୍କ ମତର ଗୋଟିଏ ସାରାଂଶ ମାତ୍ର ଦିଆ ଯାଉଅଛି ।

ଭାରତର ଋଷିମାନେ ଭାଷାର ମୂଳ ବିଷୟରେ ବିଶେଷ କିଛି ଅନୁସନ୍ଧାନ କରି ନ ଥିଲେ । ସେମାନେ ଭାଷାକୁ ଈଶ୍ୱରଙ୍କର ଦାନ ବୋଲି ଗ୍ରହଣ କରିଥିଲେ । ସଂସ୍କୃତ ଭାଷାର ଜନ୍ମଦାତା ପାଣିନି ଭାଷାକୁ ଅନାଦି ଅନନ୍ତ ଭାବିଥିଲେ ଏବଂ ଶବ୍ଦକୁ ଶବ୍ଦବ୍ରହ୍ମ ବୋଲି ଈଶ୍ୱର ରୂପରେ ଗ୍ରହଣ କରିଥିଲେ । ସେଥିପାଇଁ ପାଣିନିଙ୍କ ବ୍ୟାକରଣ ଦର୍ଶନ ମଧ୍ୟରେ ଅନ୍ତର୍ଗତ ହୋଇଥାଏ ।

ପ୍ଳାଟୋ, ଆରିଷ୍ଟଟଲ୍ ପ୍ରଭୃତି ପାଶ୍ଚାତ୍ୟ ଦାର୍ଶନିକମାନେ ମଧ୍ୟ ଏ ବିଷୟରେ ହସ୍ତକ୍ଷେପ କରିଥିଲେ; କିନ୍ତୁ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ନ ଥିଲେ । ସେମାନଙ୍କ ପରେ ପରେ ପାଶ୍ଚାତ୍ୟ ଦେଶରେ ଖ୍ରୀଷ୍ଟଧର୍ମର ପ୍ରଚାର ବଢ଼ିଥିଲା- ବାଇବେଲ୍‌ରେ ଲୋକଙ୍କର ଆସ୍ଥା ବଢ଼ିଥିଲା । ବାଇବେଲ୍ ଅନୁସାରେ ଭାଷା ଈଶ୍ୱରଙ୍କର ଗୋଟିଏ ଦାନ । ସମସ୍ତେ ଈଶ୍ୱରଙ୍କ ପୁତ୍ର; ସୁତରାଂ ପ୍ରଥମରେ ସମସ୍ତ ମନୁଷ୍ୟଙ୍କର ଗୋଟିଏ ମାତ୍ର ଭାଷା ଥିଲା । ଲୋକେ ଈଶ୍ୱରଙ୍କ ଆଜ୍ଞା ଲଙ୍ଘନ କରିବାକୁ ଯାଇ, ମିଳିମିଶି ବାଇବେଲ୍‌ର ଦୁର୍ଗ ନିର୍ମାଣ କଲେ । ଏହା ଦେଖି ଈଶ୍ୱର ସେମାନଙ୍କ ଭାଷାକୁ ଭିନ୍ନ ଭିନ୍ନ କରିଦେଲେ । ସେଥିଯୋଗୁଁ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନ ଭାଷାର ସୃଷ୍ଟି ହୋଇଅଛି । ଫଳତଃ ଲୋକମାନଙ୍କ ମଧ୍ୟରୁ ଏକତା ଦୂର ହୋଇଥିଲା । ପ୍ରଥମରେ ଧର୍ମବିଶ୍ୱାସୀ ଖ୍ରୀଷ୍ଟିୟାନମାନେ ବାଇବେଲର ଏହି ଗଳ୍ପକୁ ଅକାଟ୍ୟ ସତ୍ୟପରି ଘେନିଥିଲେ । ବର୍ତ୍ତମାନ ଏ ଆଧିଭୌତିକ ଯୁଗରେ ଏଭଳି ଈଶ୍ୱରବାଦର ସ୍ଥାନ ଆଉ ନାହିଁ । ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ଲୋକଙ୍କ ମନରେ ସନ୍ଦେହ ଜାତ ହୋଇଅଛି; ସେଥିପାଇଁ ସେସବୁ ଧର୍ମଭାବ ଛାଡ଼ିଦେଇ ଭାଷାର କ୍ରମିକ ବିକାଶ ଦେଖିବାକୁ ହେବ ।

ଭାଷାର ଉତ୍ପତ୍ତି ବା ମୂଳବିଷୟରେ ତିନୋଟି ମତ ଅଛି -

ପ୍ରଥମରେ- ପ୍ରତି ଭାଷାରେ ଆମ୍ଭେମାନେ ଦେଖିବାକୁ ପାଉ ଯେ, ଅନେକ ଶବ୍ଦ

ପଶୁପକ୍ଷୀଙ୍କ ଶବ୍ଦର ଅନୁକରଣରେ ହୋଇଅଛି । ଉଦାହରଣସ୍ୱରୂପ ମିଆଉଁ, କାଉଁ କାଉଁ, ସରସର, ଋଟରଟ, ଘଡ଼ଘଡ଼ି ପ୍ରଭୃତି । ଭାଷାର ଆଦିମ ଅବସ୍ଥାରେ, ବିଶେଷତଃ ଶିକ୍ଷା ଓ ସଭ୍ୟତା ନ ଥିବାବେଳେ ଏହିପରି ଶବ୍ଦାନୁକରଣ ପଦ ବିଶେଷ ଭାବରେ ବ୍ୟବହୃତ ହୋଇଥାଏ । କହିବାକୁ ଗଲେ ଅସଭ୍ୟ ଜାତିଙ୍କର ଭାବ ଅତି କମ୍ ଥାଏ । ସେମାନଙ୍କର ଅଧିକାଂଶ ଭାବ ଆବଶ୍ୟକ ପଶୁପକ୍ଷୀ ପ୍ରଭୃତି ଜୀବଜଗତ୍‌ମଧ୍ୟରେ ଆବଦ୍ଧ ହୋଇଥାଏ । ସେମାନଙ୍କର ଭାଷା ବିଶେଷ ଉନ୍ନତି ଲାଭ କରି ନ ଥାଏ । ସେଥିପାଇଁ ସେମାନଙ୍କ ଭାଷାରେ ଶବ୍ଦାନୁକରଣ ପଦର ବହୁଳ ପ୍ରଚାର ଦେଖାଯାଏ । ସାଧାରଣତଃ କ୍ରିୟା ଏବଂ ଅନ୍ୟାନ୍ୟ କେତେକ ଶବ୍ଦ ଛାଡ଼ିଦେଲେ ଅସଭ୍ୟ ଜାତିଙ୍କର ଭାଷା କେବଳ ଏହିପରି ଶବ୍ଦାନୁକରଣ ପଦରେ ଗଢ଼ା ହୋଇଥାଏ । ଏହା ଦେଖି ଅନେକେ ଅନୁମାନ କରନ୍ତି - ମନୁଷ୍ୟ ପ୍ରଥମରେ ପଶୁପକ୍ଷୀ ପ୍ରଭୃତିଙ୍କୁ ଅନୁକରଣ କରି ନିଜର ଭାବ ପ୍ରକାଶ କରୁଥିଲା । ଏହପରି ପ୍ରାକୃତିକ ଶବ୍ଦ ଅନୁକରଣ କରୁ କରୁ ସେ ଶବ୍ଦମଧ୍ୟରୁ ଅନେକ କ୍ରିୟାର ଭାବ ମଧ୍ୟ ପ୍ରକାଶ କଲା । ଯଥା- ଛଟ୍ ଛଟ୍ ହେବା, ଖଡ଼୍ ଖଡ଼୍ ହେବା । କାଳକ୍ରମେ ଏହି ଶବ୍ଦାନୁକରଣ ପଦମାନ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରିଅଛି । ଅବଶେଷରେ ଏହି ରୀତି ଅନୁସାରେ ଭାଷା ଗଠିତ ହୋଇଅଛି । ସୁତରାଂ କହିବାକୁ ଗଲେ, ମନୁଷ୍ୟର ଭାଷା ପଶୁପକ୍ଷୀ ପ୍ରଭୃତି ଜୀବଜଗତର ଅନୁକରଣରେ ହୋଇଅଛି ।

ଏ ମତରେ ଅନେକ ପରିମାଣରେ ସତ୍ୟ ରହିଅଛି । କିନ୍ତୁ ଶବ୍ଦାନୁକରଣ ପଦକୁ କେବଳ ଭାଷାର ମୂଳ ବୋଲି ଧରିଲେ ଚଳିବ ନାହିଁ । ମନୁଷ୍ୟ ଜୀବମଧ୍ୟରେ ଶ୍ରେଷ୍ଠ ହେଲେହେଁ ପ୍ରଥମେ ତାହାର ନିଜର କୌଣସି ଶବ୍ଦ କରିବାର ଶକ୍ତି ନ ଥିଲା । ତାକୁ ପଶୁପକ୍ଷୀ ପ୍ରଭୃତି ସମସ୍ତ ଜୀବଜଗତ୍ ପ୍ରଥମେ ଶବ୍ଦ ଉଚ୍ଚାରଣ କରିବାକୁ ଶିଖାଇଲା- ସେ ଶିକ୍ଷାନୁସାରେ ତାହାର ଭାଷା ଓ ଉଚ୍ଚାରଣଶକ୍ତି ହୋଇଅଛି । ଏପରି କହିବା ଅସମ୍ଭବ ପରି ବୋଧ ହେଉଅଛି । ଯେଉଁ ମନୁଷ୍ୟ ନିଜ ବୁଦ୍ଧିବଳରେ ଆଉ ଗୋଟିଏ ନୂତନ ସୃଷ୍ଟି କରିବାରେ ତତ୍ପର, ଯାହା ଅଧିନରେ ସମସ୍ତ ଜୀବଜଗତ୍ ରହିଅଛି, ସେ ଯେ ପ୍ରଥମରେ ଶବ୍ଦ ଉଚ୍ଚାରଣ କରିପାରୁ ନ ଥିଲା, ତାହା କେବଳ ବିଡ଼ମ୍ବନା ମାତ୍ର । ସେଥିପାଇଁ ଅନେକେ ଏହି ମତକୁ ଗ୍ରହଣ କରନ୍ତି ନାହିଁ । ତଥାପି ଏ ମତରେ ଏହିମାତ୍ର ସତ୍ୟ ରହିଅଛି ଯେ, ମନୁଷ୍ୟ ଭିନ୍ନ ଭିନ୍ନ ପଶୁପକ୍ଷୀଙ୍କର ନାମ ସେମାନଙ୍କର ଶବ୍ଦାନୁସାରେ ପ୍ରଦାନ କରିଥିଲା । ଯେଉଁ ପକ୍ଷୀ ବା ପଶୁ ଯେଉଁ ଶବ୍ଦକରେ ସେହି ଶବ୍ଦାନୁସାରେ ତାହାର ନାମ ହୋଇଥିଲା । ଯେପରି କୁଆ ବା କାଉ 'କା କା' ଶବ୍ଦ କରିବାରୁ ତାହାର ନାମ ହୋଇଅଛି କୁଆ ଓ କାଉ । ଖ୍ରୀ.ପୂ. ୮ମ ଶତାବ୍ଦୀରେ ନିରୁକ୍ତକାର ଯାସ୍କ ମଧ୍ୟ କାକ ପ୍ରଭୃତି ଶବ୍ଦକୁ ଶବ୍ଦାନୁକରଣ ବୋଲି ଗ୍ରହଣ କରିଥିଲେ । ପ୍ରଥମେ ଭାଷାରେ ବେଶୀ ପଦ ବା ଶବ୍ଦ ନ ଥିଲା । ସେଥିପାଇଁ ମନୁଷ୍ୟ ପଶୁ ପକ୍ଷୀଙ୍କର ଶବ୍ଦାନୁସାରେ ସେମାନଙ୍କର ଭାବ ପ୍ରକାଶ କରୁଥିଲେ । ଏଥିପାଇଁ କୁହାଯାଇପାରେ ନାହିଁ ଯେ, ମନୁଷ୍ୟର ସେ ଅବସ୍ଥାରେ ନିଜର କୌଣସି ଶବ୍ଦ ନ ଥିଲା ଓ ସେସବୁ ଶବ୍ଦ ଜୀବଜଗତକୁ ଅନୁକରଣ କରି ଶିଖିଅଛି-ମନୁଷ୍ୟର ଭାଷା ସେମାନଙ୍କର ଅନୁକରଣରେ

ହୋଇଅଛି ।

ତେବେ ଏତିକି ମାତ୍ର କହି ହେବ - ଏହପରି ଶବ୍ଦାନୁକରଣ ପଦ ଭାଷା ସୃଷ୍ଟିରେ ଅନେକ ସହାୟତା କରିଅଛି । ସୁତରାଂ ଭାଷାସୃଷ୍ଟି କରିବାର ଯେ ସମସ୍ତ କାରଣ ରହିଅଛି, ତାହା ମଧ୍ୟରୁ ଶବ୍ଦାନୁକରଣ ଗୋଟିଏ କାରଣ ହୋଇପାରେ; କିନ୍ତୁ ଏହା ଭାଷାସୃଷ୍ଟିର ଏକମାତ୍ର କାରଣ ନୁହେଁ ।

ଦ୍ୱିତୀୟରେ- ଇଙ୍ଗିତକୁ ଅନେକେ ଭାଷା ସୃଷ୍ଟିର କାରଣ ବୋଲି ଘେନିଥାନ୍ତି । କାରଣ ଇଙ୍ଗିତ ସାହାଯ୍ୟରେ ମନୁଷ୍ୟ ସବୁ ଭାବ ପ୍ରକାଶ କରିପାରେ । ଭାଷା ନ ଥିବାବେଳେ ମନୁଷ୍ୟ ଯେ ଇଙ୍ଗିତ ବଳରେ ଭାବପ୍ରକାଶ କରୁଥିଲା, ସେଥିରେ କୌଣସି ସନ୍ଦେହ ନାହିଁ । ଆଜିକାଲି ମଧ୍ୟ ଲୋକେ ବିଦେଶକୁ ଗଲେ ସେ ସ୍ଥାନର ଭାଷା ଜାଣି ନ ଥିଲେ, ଠାରି ଠାରି ନିଜର ଭାବ ପ୍ରକାଶ କରିଥାନ୍ତି । ଜଡ଼ା ଲୋକଙ୍କର ଇଙ୍ଗିତ ହେଉଛି ଭାଷା; ଭାବ ପ୍ରକାଶ କରିବାପାଇଁ ସେମାନଙ୍କର ଠାରିବା ଭିନ୍ନ ଆଉ କିଛି ଉପାୟ ନ ଥାଏ । ଯେଉଁ ଅସଭ୍ୟ ଜାତିଙ୍କର ଭାଷା ବେଶୀ ଉନ୍ନତି ଲାଭ କରିନାହିଁ, ସେମାନେ ଠାରି ଠାରି ନିଜର ଅଧିକାଂଶ ଭାବ ପ୍ରକାଶ କରିଥାନ୍ତି । ସୁତରାଂ ଠା'ର ସବୁଠାରେ ସବୁବେଳେ ଭାଷାର କାର୍ଯ୍ୟ କରିଥାଏ । ସେଥିଯୋଗୁଁ ଅନେକେ ଅନୁମାନ କରନ୍ତି - ମନୁଷ୍ୟ ସର୍ବପ୍ରଥମେ ଠାରି ଠାରି ନିଜର ମନୋଗତ ଭାବ ବ୍ୟକ୍ତ କରୁଥିଲା । କ୍ରମେ କ୍ରମେ ଏହି ଠାର ସହିତ ଅନେକଗୁଡ଼ିଏ ସ୍ୱାଭାବିକ ଶବ୍ଦଯୋଗ ହୋଇ ଭାଷା ସୃଷ୍ଟି ହେଲା । ଉଦାହରଣସ୍ୱରୂପ ଜଣକୁ ଭାରି ତୃଷା ହେଉଛି, ସେ "ଶୋ ଶୋ" ହୋଇ ନିଜର ପାଟି ପାଖକୁ ହାତ ନେଇ ଠାରିବା ଦ୍ୱାରା ଜଣାଇଦେଲା - ତାକୁ ତୃଷା ହେଉଅଛି । ଏହି "ଶୋ ଶୋ" ଶବ୍ଦରୁ "ଶୋଷ" ହୋଇଅଛି । ସେହିପରି କେହି ପିଇବାକୁ ମାଗିଲାବେଳେ "ପୁଉ ପୁଉ" ହୋଇ ପାଣି ଦେଖାଇ ଠାରି ଥିବାରୁ ସେଥିରୁ "ପିଇବା" ହୋଇଅଛି ।

ଆଗ ମତପରି ଏଥିରେ ମଧ୍ୟ ସତ୍ୟ ନିହିତ ଅଛି । କିନ୍ତୁ କେବଳ ଇଙ୍ଗିତ ବା ଠାରକୁ ଭାଷାର ମୂଳକାରଣ ବୋଲି ଧଇଲେ ଏହା ମଧ୍ୟ ଅସମ୍ଭବ ପ୍ରାୟ ବୋଧ ହୁଏ । ଇଙ୍ଗିତ ମଧ୍ୟ ଭାଷାସୃଷ୍ଟିରେ ଅନେକ ସାହାଯ୍ୟ କରିଅଛି । ସୁତରାଂ ଭାଷାସୃଷ୍ଟିର ଏହା ଏକ କାରଣ ହୋଇପାରେ; କିନ୍ତୁ ଭାଷାର ଏହା ମଧ୍ୟ ଏକମାତ୍ର କାରଣ ନୁହେଁ ।

ତୃତୀୟରେ- ଡାରୁଇନ୍ ପ୍ରଭୃତି କେତେକ ଦାର୍ଶନିକ ଭାଷାସୃଷ୍ଟିର ଗୋଟିଏ ସ୍ୱାଭାବିକ କାରଣ ଦେଖାଇଥାନ୍ତି । ସେମାନଙ୍କ ମତରେ ପ୍ରତ୍ୟେକ ଜୀବ ସୁଖ ଦୁଃଖ ଅନୁଭବ କରିପାରେ । ସେ ସୁଖ ଦୁଃଖ ଅନୁଭବ କଲାବେଳେ ନିଜର କେତେକ ସ୍ୱାଭାବିକ ଶବ୍ଦ କରିଥାଏ । ମନୁଷ୍ୟ ମଧ୍ୟ ସୁଖ ବା ଦୁଃଖ ସମୟରେ ସେହିପରି ଶବ୍ଦ କରିଥାଏ । ସେଭଳି ଶବ୍ଦକୁ ଆମ୍ଭମାନଙ୍କ ଭାଷାରେ ବିସ୍ମୟାସୂଚକ ଅବ୍ୟୟ କହନ୍ତି ।

ମନୁଷ୍ୟକୁ ଏ ଶବ୍ଦ କାହାରିଠାରୁ ଶିଖିବାକୁ ପଡ଼େନାହିଁ । ସେ ନିଜେ ନିଜେ ଏପରି ଶବ୍ଦ କରିଥାଏ । ପିଲା ଜନ୍ମ ହେଲାକ୍ଷଣି କୁଆଁ କୁଆଁ କରି କାନ୍ଦେ, ତା'ପରେ କିଲ୍ କିଲ୍ ହୋଇ ହସେ । କିନ୍ତୁ ସେ ଏହା କାହାରିଠାରୁ ଶିଖି ନଥାଏ - ଏହା ତାହାର ସ୍ୱାଭାବିକ ଶବ୍ଦ ।

ଏହିପରି ବିସ୍ମୟହର୍ଷାଦିସୂଚକ 'ଆଃ, ଉଃ, ଏଃ, ଓଃ' ପ୍ରଭୃତି ଶବ୍ଦ ସବୁ ଭାଷାରେ ଅନେକ ପରିମାଣରେ ଦେଖାଯାଏ । ଏ ଶ୍ରେଣୀୟ ଶବ୍ଦମାଳା ସବୁ ଦେଶରେ ପ୍ରାୟ ସମାନ । ସୁତରାଂ ଭାଷା ପ୍ରଥମେ ଏହିପରି ସ୍ୱାଭାବିକ ଶବ୍ଦରେ ଗଠିତ ହୋଇଥିଲା । କ୍ରମେ କ୍ରମେ ଏହି ଶବ୍ଦମାନଙ୍କର ପରିବର୍ତ୍ତନ ପ୍ରଭୃତି ଦ୍ୱାରା ଅନେକ ନୂଆ ନୂଆ ଶବ୍ଦର ସୃଷ୍ଟି ହୋଇ ଭାଷା ଗଠିତ ହୋଇଅଛି ।

ଏହି ମତ ମଧ୍ୟ ଆଗ ଦୁଇ ମତ ପରି ଅମୂଳକ ନୁହେଁ । ଏହି ତିନି ପ୍ରତ୍ୟେକ ମତ ଯେ ଭାଷା ସୃଷ୍ଟିରେ ବିଶେଷ ସହାୟତା କରେ - ଏଥିରେ କାହାରି ମତ ଦ୍ୱୈଧ ଥାଇ ନ ପାରେ । କିନ୍ତୁ ଏ ମତମାନଙ୍କ ମଧ୍ୟରୁ ଗୋଟି ଗୋଟିକୁ ଭାଷାର ଏକମାତ୍ର କାରଣ ବୋଲି ଧଇଲେ - ସବୁଗୁଡ଼ିକ ଅସମ୍ଭବ ବୋଧହେବ । ସୁତରାଂ ଅନେକେ ଏହି ଗୋଟିଏ ଗୋଟିଏ ମତର ପୋଷଣ କରନ୍ତି ନାହିଁ । କିନ୍ତୁ ଏମାନଙ୍କର ସମଷ୍ଟିରେ ଭାଷାର ମୂଳକାରଣ ସ୍ଥିର କରିଥାନ୍ତି ।

ପୂର୍ବରେ ଭାଷା ନ ଥିଲାବେଳେ ଲୋକେ ଯେ କିପରି ଶବ୍ଦ କରିବାକୁ ଏବଂ ନିଜ ନିଜର ଭାବ ପ୍ରକାଶ କରିବାକୁ ଚେଷ୍ଟା କରୁଥିଲେ- ସେ ବିଷୟରେ କିଛି ପ୍ରମାଣ ନାହିଁ ଏବଂ ତାହା ମଧ୍ୟ କେହି ଠିକ୍ କରି କହିପାରିବ ନାହିଁ - କେବଳ ଅନୁମାନ ବଳରେ ଆମ୍ଭେମାନେ ତାହା ସ୍ଥିର କରିପାରୁ । ସାଧାରଣତଃ ଛୋଟ ପିଲା କିମ୍ବା କୌଣସି ଲୋକ ଗୋଟିଏ ଭାଷା ଶିଖିଲାବେଳେ ଶବ୍ଦ ଉଚ୍ଚାରଣ କିରବାକୁ ଏବଂ ଭାବପ୍ରକାଶ କରିବାକୁ ଯେପରି ଚେଷ୍ଟା କରିଥାଏ ସେହିପରି ଚେଷ୍ଟା ପ୍ରାୟ ପୂର୍ବରେ ଆଦିମଲୋକମାନେ ଭାଷା ନ ଥିବାବେଳେ କରିଥିବେ । ଶିଶୁ ଏ ସ୍ଥଳରେ ଆମ୍ଭମାନଙ୍କର ଆଦର୍ଶ । ସୁତରାଂ ପିଲାଏ ଯେ ପହିଲୁ କିପରି କଥା କହିବାକୁ ଚେଷ୍ଟା କରନ୍ତି ଓ ନିଜ ମନର କଥା ବ୍ୟକ୍ତ କରନ୍ତି ଏବଂ କ୍ରମେ କଥା କହି ଶିଖନ୍ତି, ତାହାହିଁ ଆମ୍ଭମାନଙ୍କୁ ବର୍ତ୍ତମାନ ଦେଖିବାକୁ ହେବ, ମଧ୍ୟ ତଦନୁସାରେ ଭାଷାର ମୂଳ କାରଣ ନିର୍ଦ୍ଦେଶ କରିବାକୁ ହେବ ।

ପିଲାଏ ପ୍ରଥମେ ବେଶୀ କିଛି ଶବ୍ଦ ଜାଣି ନ ଥାନ୍ତି - ସେମାନେ ଠାରି ଠାରି ନିଜର ମନକଥା ପ୍ରକାଶ କରୁଥାନ୍ତି । ଭଲକରି କଥା କହି ନ ଶିଖିବା ଯାଏ ସେମାନେ ବେଶୀ ଠାର ବ୍ୟବହାର କରନ୍ତି । କହିବାକୁ ଗଲେ ସେମାନଙ୍କର ଭାଷା କେବଳ ଠାରରେ ଗଢ଼ା ହୋଇଥାଏ । ଏହିଠାର ହେଉଛି- ଅସ୍ଫୁଟ ଓ ସ୍ଫୁଟଧ୍ୱନିର ମଧ୍ୟ ଅବସ୍ଥା । ଜନ୍ମିବାର କିଛିଦିନ ଯାକେ ପିଲାଏ ଅସ୍ଫୁଟ ଶବ୍ଦ କରୁଥାନ୍ତି । ଏହି ଅସ୍ଫୁଟ ଶବ୍ଦ ସେମାନଙ୍କର ସୁଖ ଦୁଃଖ ଜଣାଇଦିଏ । ଏ ହେଉଛି ସ୍ୱାଭାବିକ ଅସ୍ଫୁଟ ଧ୍ୱନି । ଏହାକୁ ବ୍ୟାକରଣରେ ବିସ୍ମୟାଦିସୂଚକ ଅବ୍ୟୟ କହିଥାନ୍ତି । କିଛିଦିନ ଗଲାପରେ ପିଲାଏ ଠାରି ଶିଖନ୍ତି - ଏହି ଠାର ଅନେକ ପରିମାଣରେ ସେମାନଙ୍କର ଭାଷାର କାର୍ଯ୍ୟକରେ ।

ଏହି ଠାର ତ ଜଡ଼ ଲୋକର ସାରା ଜୀବନଟା ଯାକର ଭାଷା । ସୁତରାଂ ସ୍ୱାଭାବିକ ଶବ୍ଦ ପିଲାଙ୍କର ଭାଷା କହି ଶିଖିବାର ପ୍ରଥମ ଅବସ୍ଥା - ଠାର ତା'ର ହେଉଛି ଦ୍ୱିତୀୟ ଅବସ୍ଥା । କିନ୍ତୁ ଏତିକିରେ ସେମାନଙ୍କର କାର୍ଯ୍ୟ ଶେଷ ହୁଏନାହିଁ, କଥା ମଧ୍ୟ କହିହୁଏ ନାହିଁ । ଏହି

ଅବସ୍ଥାରେ ସେମାନେ ପଶୁପକ୍ଷୀ ପ୍ରଭୃତିଙ୍କର ଶବ୍ଦ ଅନୁକରଣ କରିଥାନ୍ତି । ଏହା ସଙ୍ଗେ ଲୋକଙ୍କଠାରୁ ଶୁଣି ଶୁଣି ଦରୋଟିଆ କଥା ମଧ୍ୟ କହି ଶିଖନ୍ତି । ଭାବି ଦେଖ - ଗୋଟିଏ ପିଲାକୁ ବିରାଡ଼ିଟାଏ ରାମ୍ପୁଡ଼ିଦେଲା ବା ପିଲାଟିଏ ବିରାଡ଼ି ଦେଖି ଡରିଲା । ସେ ପହିଲୁ କାନ୍ଦି ନିଜର ଦୁଃଖ ବା ଭୟ ଜଣାଇଲା । କିନ୍ତୁ ତାହାଦ୍ୱାରା ବିରାଡ଼ିର ଭାବ କିଛି ପ୍ରକାଶ ପାଇଲା ନାହିଁ । ବିରାଡି ପାଖରେ ଥିଲେ ସେ ବିରାଡିକୁ ଠାରି ନିଜର ଦୁଃଖ ବା ଭୟ ଜଣାଇଦିଏ । କିନ୍ତୁ ବିରାଡ଼ି ପାଖରେ ନ ଥିଲେ - ରାମ୍ପୁଡ଼ି ଦେଇ ଚାଲି ଯାଇଥିଲେ, ପିଲା କେବଳ କାନ୍ଦି ଦେହକୁ ଠାରି ଦେଖାଏ । ତାହାଦ୍ୱାରା ରାମ୍ପୁଡ଼ିବା ଜଣାଯାଏ । ବିରାଡ଼ିକଥା ଜଣାଇବାକୁ ସେ ପରେ ମିଆଁଉ ମିଆଁଉ ଶବ୍ଦ ମଧ୍ୟ କରେ । ଏହି ଅବସ୍ଥାରେ ଶବ୍ଦାନୁକରଣ ପଦଗୁଡ଼ିକ ଭାଷାଗଠନ ବା ଶିକ୍ଷାରେ ତାହାକୁ ପୂର୍ଣ୍ଣ ସାହାଯ୍ୟକରେ । ତାହାପରେ ସେ କ୍ରମେ କ୍ରମେ ଭାଷା କହି ଶିଖେ ।

ଅତଏବ ଦେଖିବାକୁ ଗଲେ- ପିଲାଏ କଥା କହିବା ପୂର୍ବରୁ, ପ୍ରଥମେ ସ୍ୱାଭାବିକ ଶବ୍ଦ କରିଥାନ୍ତି, ତାହାପରେ ଠାରି ଶିଖନ୍ତି ଏବଂ ତା'ପରେ ପଶୁପକ୍ଷୀ ପ୍ରଭୃତିଙ୍କର ଶବ୍ଦ ଅନୁକରଣ କରି ସେମାନଙ୍କର ଭାବ ପ୍ରକାଶ କରନ୍ତି । ସୁତରାଂ ପୂର୍ବେ ଲୋକେ ସେହିପରି ଭାଷା ନ ଥିବାବେଳେ କଥା କହିବାକୁ ଚେଷ୍ଟା କରିଥିବେ ଏବଂ ସେମାନଙ୍କୁ ଏହି ତିନିଗୋଟି ଅବସ୍ଥା ଦେଇ ଭାଷା ଶିଖିବାକୁ ହୋଇଥିବ । ତତ୍ପରେ ସେମାନେ କ୍ରମେ କ୍ରମେ ଭାଷା କହିଥିବେ । (ଏଠାରେ ଶବ୍ଦାନୁକରଣ ପଦ ଅର୍ଥରେ ଆମ୍ଭମାନଙ୍କୁ କେବଳ ପଶୁପକ୍ଷୀଙ୍କର ଶବ୍ଦ ବୁଝିବାକୁ ହେବନାହିଁ । ସାରା ସଂସାରର ଶବ୍ଦ ବୁଝିବାକୁ ହେବ । ପବନର ସଁ ସଁ ଶବ୍ଦ, ସାପର ଫଁ ଫଁ ଶବ୍ଦ, ନାକର ଘୁଡ଼ ଘୁଡ଼, ମେଘର ଚଡ଼୍ ଚଡ଼୍, ଘଡ଼ ଘଡ଼ି ପ୍ରଭୃତି ସବୁ ଶବ୍ଦ ଶବ୍ଦାନୁକରଣ ପଦଦ୍ୱାରା ବୁଝିବାକୁ ହେବ ।)

ସୁତରାଂ ଏହି ତିନୋଟିଯାକ ଭାଷାଗଠନର କାରଣ ଅଟନ୍ତି - କେବଳ ଗୋଟିକୁ ଭାଷାବିକାଶର ମୂଳ ବୋଲି ଧରଲେ ଚଳିବ ନାହିଁ । ପହିଲୁ ଲୋକେ ଶବ୍ଦାନୁକରଣ ପଦ ଓ ଅବ୍ୟୟ ସାହାଯ୍ୟରେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହେଉଥିଲେ । ସେତେବେଳେ ଠାର ସେମାନଙ୍କ କ୍ରିୟାର ସ୍ଥାନ ପୂରଣ କରୁଥିଲା । ଯେପରିକି ମିଆଁଉ ମିଆଁଉ କରି ଶିଶୁ ପାତ୍ରଟାକୁ ଦେଖାଇ ଜଣାଇ ଦିଏ ଯେ, ବିରାଡ଼ି ଦୁଧ ପିଇ ଯାଉଅଛି ।

ଏ ହେଲା କଥା ବା ଭାଷାସୃଷ୍ଟିର ପ୍ରଥମ ଅବସ୍ଥା । ତାହାପରେ ଅବ୍ୟୟ ପ୍ରଭୃତି ଶବ୍ଦର ପରିବର୍ତ୍ତନ ଓ ସୂକ୍ଷ୍ମ ସୂକ୍ଷ୍ମ ଅର୍ଥର ସୃଷ୍ଟି ହୋଇଥିବ ଏବଂ କ୍ରମେ କ୍ରମେ ଭାଷାର ଅଙ୍ଗପୁଷ୍ଟି ହୋଇଥିବ । ଅତଏବ ଭାଷାର କ୍ରମବିକାଶ ଦେଖିବାକୁ ହେଲେ ଆମ୍ଭମାନଙ୍କୁ ହର୍ଷାଦିସୂଚକ ଅବ୍ୟୟ, ଇଙ୍ଗିତ ଏବଂ ଶବ୍ଦାନୁକରଣ ପଦଠାରୁ ଆରମ୍ଭ କରିବାକୁ ହେବ ।



# ୨୨

# ଭାଷା ପରିଚୟ

## ଗିରିଜାଶଙ୍କର ରାୟ

ମନୁଷ୍ୟମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ସକାଶେ ଭାଷାର ପ୍ରୟୋଜନ ହୋଇଥାଏ ଓ ଭାଷାର ବ୍ୟବହାର ଦ୍ୱାରା ମନୁଷ୍ୟ ଅନ୍ୟାନ୍ୟ ଜୀବଜନ୍ତୁଠାରୁ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଆନ୍ତି । ଏ ଅନ୍ୟାନ୍ୟ ଜୀବଜନ୍ତୁମାନଙ୍କ ମଧ୍ୟରେ ଭାଷାର ବ୍ୟବହାର ଲକ୍ଷିତ ହୁଏନାହିଁ, ସେମାନେ ନିଜର ମନୋଭାବ ଜ୍ଞାପନ କରିବା ନିମନ୍ତେ କେବଳ କେତେଗୁଡ଼ିଏ ଶବ୍ଦର ବ୍ୟବହାର କରି ପାରନ୍ତି; ମାତ୍ର ମନୁଷ୍ୟମାନେ ଯେତେ ପ୍ରକାରର ଜଟିଳ ଭାବମାନଙ୍କୁ ଯେତେ ଅଧିକ ସମୟ ପର୍ଯ୍ୟନ୍ତ ଅନ୍ୟମାନଙ୍କ ସମ୍ମୁଖରେ ପ୍ରକଟିତ କରାଇ ପାରନ୍ତି ଓ ଅନ୍ୟ ଲୋକଙ୍କୁ ନିଜ ନିଜର ମନୋଭାବ ଯେପରି ସୁସ୍ପଷ୍ଟ ଭାବରେ ଦେଖାଇଦେଇ ପାରନ୍ତି, ତାହା ଅନ୍ୟ ଜୀବମାନଙ୍କ ପକ୍ଷରେ କେବେହେଁ ସମ୍ଭବ ହୋଇ ନ ପାରେ ।

ଏହି ଭାଷା ସମ୍ପୂର୍ଣ୍ଣ ମନୁଷ୍ୟକୃତ । ଭାଷାର ବ୍ୟବହାର ଦ୍ୱାରା ନିଜର ମନୋଭାବ ଅନ୍ୟ ନିକଟରେ ପ୍ରକାଶ କରିବାର କ୍ଷମତା ଏତେ ଅଦ୍ଭୁତ ଯେ ଅନେକଙ୍କ ମତରେ ଏହା ଈଶ୍ୱରଙ୍କର ଏକ ଅଦ୍ଭୂତ ସୃଷ୍ଟି ଓ ଏଥିରେ ପରମେଶ୍ୱରଙ୍କର ସତ୍ତା ନିହିତ ଅଛି । ଆମ୍ଭମାନଙ୍କର ଉପନିଷଦରେ 'ଶବ୍ଦ ବ୍ରହ୍ମ' ଏହି ପଦର ବ୍ୟବହାର ଅଛି । ଇଂରାଜୀ ବାଇବଲ୍ ଗ୍ରନ୍ଥରେ ମଧ୍ୟ "In the beginning there was the word, the word was with God, the word was God" ଅର୍ଥାତ୍ ଆଦ୍ୟରେ ଶବ୍ଦ ଥିଲା, ଶବ୍ଦ ଭାଗବାନଙ୍କ ନିକଟରେ ଥିଲା ଓ ଶବ୍ଦହିଁ ଭଗବାନ, ଏହି ପ୍ରକାର ଲେଖା ଦେଖାଯାଏ । ବ୍ରହ୍ମକୁ ଅକ୍ଷର ସଙ୍ଗେ ତୁଳନା କରି ଓ ସେ ଦୁହିଁଙ୍କର ସତ୍ତାକୁ ଏକତ୍ର କରି ଭାରତୀୟ ମନୀଷୀମାନେ ଭାଷାର ବ୍ୟବହାର ପ୍ରତି ନିଜର ମନର ଉଚ୍ଚଧାରଣା ପ୍ରକାଶ କରିଅଛନ୍ତି । ପୃଥିବୀର ଅନ୍ୟାନ୍ୟ ପଦାର୍ଥ ପରି ଏହା ଭଗବାନଙ୍କ ଦ୍ୱାରା ସୃଷ୍ଟ ହେଲେହେଁ, ମନୁଷ୍ୟ ନିଜର ଶକ୍ତିଦ୍ୱାରା କେତେଗୁଡ଼ିଏ ଦୁର୍ବୋଧ ବା ଅବୋଧ ଶବ୍ଦକୁ ପରିମାର୍ଜିତ କରି ନିଜର ଭାବ ରାଶିକୁ ବ୍ୟକ୍ତ କରିବା ନିମନ୍ତେ ସମର୍ଥ ହୋଇଅଛି ଓ ଉକ୍ତ ଶବ୍ଦମାନଙ୍କର ଉଚ୍ଚାରଣ ଭେଦରେ ଓ ଲିଖିତ ନାନାପ୍ରକାର ରୂପରେ ନିଜର ସୃଷ୍ଟି କୌଶଳର ପରିଚୟ ଦେଇଅଛି । ଭାଷା ନ ଥିଲେ ମନୁଷ୍ୟମାନେ ଅସଭ୍ୟ ବନ୍ୟଜନ୍ତୁ ପରି ସମୟ କଟାଇବାକୁ ବାଧ ହୋଇଥାନ୍ତେ ଓ ନିଜର ଭାବକୁ ଯଥାଯଥ ଭାବରେ ଅନ୍ୟର

ସମ୍ମୁଖରେ ଉପସ୍ଥାପିତ କରିବାର କୌଣସି ଉପାୟ ନ ଥିବାରୁ ଜ୍ଞାନର ଓ ସଭ୍ୟତାର ଉନ୍ନତି କୌଣସି କ୍ରମେ ସମ୍ଭବ ହୋଇପାରନ୍ତା ନାହିଁ ।

ଭାଷାର ସୃଷ୍ଟି କେଉଁ ସମୟରେ କିପରି ଭାବରେ ସାଧିତ ହେଲା ତାହା ନିର୍ଣ୍ଣୟ କରିବା ସୁକଠିନ । ଆଜି ଯାହା ମନୁଷ୍ୟର ଏକ ଅତ୍ୟାବଶ୍ୟକ ସାମଗ୍ରୀ ବୋଲି ପରିଗଣିତ ହେଉଅଛି, ତାହା କେଉଁ ସମୟରେ କାହାର ଚେଷ୍ଟାରେ ବା କେଉଁ ମନୀଷୀର ଯତ୍ନରେ ପ୍ରଥମେ ଜନସମାଜରେ ପ୍ରଚାରିତ ଓ ଆଦୃତ ହେଲା ତାହାର କୌଣସି ଯଥାଯଥ ଇତିହାସ ନାହିଁ । ଆଜିକାଲି ଆମ୍ଭେମାନେ ଯେଉଁ ଭାଷା ବ୍ୟବହାର କରୁ, ତାହାର ଇତିହାସର ପରିଚୟ କେତେକ ସମୟ ପର୍ଯ୍ୟନ୍ତ ସ୍ପଷ୍ଟ ଭାବରେ ମିଳେ, ମାତ୍ର ଏହାର ଉତ୍ପତ୍ତି କାଳ ନିରୂପଣ କରିବା ଏକାନ୍ତ ଅସମ୍ଭବ । ତେବେ ପୃଥିବୀରେ ଯେତେ ପ୍ରକାରର ଭାଷା ବ୍ୟବହୃତ ହେଉଅଛି, ସେମାନଙ୍କୁ ସମ୍ୟକ୍ ଭାବରେ ଆଲୋଚନା କଲେ ଭାଷାର ଉତ୍ପତ୍ତି ଓ ପ୍ରସାର ସମ୍ବନ୍ଧରେ ଆମ୍ଭମାନଙ୍କର କେତେକ ଧାରଣା ଜାତ ହୋଇଥାଏ ଓ ଭାଷାର ଇତିହାସ ସମ୍ବନ୍ଧରେ ଏହି ପ୍ରକାର ଆଲୋଚନା କରିବାର ନାମ ଭାଷା ବିଜ୍ଞାନ ।

ଭାଷାବିଜ୍ଞାନ ଅନ୍ୟାନ୍ୟ ବିଜ୍ଞାନଠାରୁ ଅନେକାଂଶରେ ପୃଥକ୍ । ଅନ୍ୟାନ୍ୟ ବିଜ୍ଞାନ ଭବିଷ୍ୟତରେ ନୂତନ ନୂତନ ଆବିଷ୍କାର ନିମନ୍ତେ ଚେଷ୍ଟାକରେ, ନୂତନ ନୂତନ ଉପାୟରେ ନୂତନ ନୂତନ ପଦାର୍ଥର ସୃଷ୍ଟି କରି ମନୁଷ୍ୟର ଶ୍ରମ ଲାଘବ କରିବା ଓ ଶାନ୍ତି ସୁଖର ଉପାୟମାନ ନିର୍ଦ୍ଦେଶ କରିବାର ପ୍ରୟାସ କରେ; ମାତ୍ର ଭାଷା ବିଜ୍ଞାନ କେବଳ ଭାଷାର ଅତୀତ ରୂପ ଓ ବର୍ତ୍ତମାନ ବ୍ୟବହାରର ଆଲୋଚନାରେ ସୀମାବଦ୍ଧ ଥାଏ । ନୂତନ କୌଣସି ସୃଷ୍ଟି କରିବା ଭାଷାବିତ୍ ପକ୍ଷରେ ସମ୍ଭବ ନୁହେଁ । ମାତ୍ର ଭାଷାର ବର୍ତ୍ତମାନ ରୂପର ଅତୀତ ଇତିହାସ ବ୍ୟାଖ୍ୟା କରିବାହିଁ ତାହାର ଏକମାତ୍ର କାର୍ଯ୍ୟ । ଭାଷାବିତ୍ ପଣ୍ଡିତ ଅବଶ୍ୟ କୌଣସି କୌଣସି ସମୟରେ କୌଣସି ନୂତନ ଭାବକୁ ପ୍ରକାଶ କରିବା ନିମନ୍ତେ ନୂତନ ଶବ୍ଦର ବ୍ୟବହାର କରେ; ମାତ୍ର ଏହି ପ୍ରକାର ନୂତନ ଶବ୍ଦର ବ୍ୟବହାର କ୍ୱଚିତ୍ ଦେଖାଯାଏ । ବାସ୍ତବରେ ଭାଷାବିଜ୍ଞାନର ଅର୍ଥ ଭାଷାର ଅତୀତ ଇତିହାସର ଆଲୋଚନା ଓ ଏହି ପ୍ରକାର ଆଲୋଚନା ଦ୍ୱାରା ନିଜର ଭାଷାକୁ ପରିମାର୍ଜିତ କରିବାର ପ୍ରୟାସ । ଭାଷାର ଇତିହାସ ନ ଜାଣି ମଧ୍ୟ ଆମ୍ଭେମାନେ ଭାଷାର ସମ୍ୟକ୍ ବ୍ୟବହାର କରିପାରୁ; ମାତ୍ର ଦେଶର ଅତୀତ ସଭ୍ୟତା ଯେପରି ଆମ୍ଭମାନଙ୍କର ଆଲୋଚନାର ଯୋଗ୍ୟ, ସେହିପରି ଭାଷାର ଅତୀତ ଇତିହାସ ମଧ୍ୟ ଅତ୍ୟନ୍ତ କୌତୂହଳୋଦ୍ଦୀପକ । ବରଂ ଭାଷାଦ୍ୱାରା ମାନବ ସମାଜର ଭାବର ଆଦାନପ୍ରଦାନ ହେଉଥିବା ସ୍ଥଳେ ଭାଷାର ଇତିହାସ ମଧ୍ୟରେ ଅନେକ ପ୍ରକାରର ସାମାଜିକ ଇତିହାସର ମିଶ୍ରଣ ଆମ୍ଭେମାନେ ଦେଖିପାରୁଁ ।

ଆମ୍ଭମାନେ ଯେଉଁ ଭାଷା ବ୍ୟବହାର କରୁ, ତାହାର ଏକ ସୁସ୍ପଷ୍ଟ ଧାରଣା ଆମ୍ଭମାନଙ୍କର ହେବା ପ୍ରୟୋଜନ । ଭାଷାର ସାଧାରଣତଃ ଦୁଇ ପ୍ରକାରର ରୂପ ଆମ୍ଭେମାନେ ଦେଖୁ – ଗୋଟିଏ ତାହାର ଲିଖିତ ରୂପ ଓ ଗୋଟିଏ ତାହାର କଥିତ ରୂପ, ଅର୍ଥାତ୍ ଅନ୍ୟ

ଲୋକମାନଙ୍କୁ ଆମ୍ଭେମାନେ ନିଜର ନିଜର ଭାବ ଜଣାଇବା ନିମନ୍ତେ କେତେକ ସମୟରେ କେତେଗୁଡ଼ିଏ ଶବ୍ଦର ଯଥାଯଥ ଉଚ୍ଚାରଣ କରିଥାଉଁ ବା କେତେଗୁଡ଼ିଏ ବାକ୍ୟ ବା ଶବ୍ଦକୁ ଲେଖନୀଦ୍ୱାରା ଅନ୍ୟକୌଣସି ପଦାର୍ଥ ଉପରେ ଲେଖିଥାଉଁ । ଏହିପରି ଭାବରେ କାଷ୍ଠଖଣ୍ଡ, ତାମ୍ରଫଳକ କିମ୍ବା ଆଧୁନିକ ପ୍ରଚଳିତ କାଗଜ ଉପରେ ଆମ୍ଭେମାନେ ନିଜର ଭାଷାକୁ ରୂପଦେଇ ବ୍ୟକ୍ତ କରିପାରୁଁ । ଉଚ୍ଚାରଣ ମଧ୍ୟରେ ବିଭିନ୍ନତା ଥାଇପାରେ ଓ ନାନା ଭାଷାରେ ନାନାପ୍ରକାର ଅକ୍ଷରର ବ୍ୟବହାର ଥାଇପାରେ; ମାତ୍ର ସ୍ଥୂଳତଃ ଭାଷାର ଲିଖିତ ଓ କଥିତ ଏହି ଦୁଇଗୋଟି ରୂପ ପ୍ରତ୍ୟେକ ମାର୍ଜିତ ଭାଷାରେ ଆଜିକାଲି ଦେଖାଯାଏ । ଭାଷାର ଇତିହାସ ଆଲୋଚନା କରିବାକୁ ହେଲେ ଭାଷାର ଏହି ଦୁଇଗୋଟି ରୂପର ଇତିହାସ ଆମ୍ଭମାନଙ୍କୁ ଆଲୋଚନା କରିବାକୁ ହେବ ଓ ନାନା ସମୟରେ ନାନାପ୍ରକାର ଉଚ୍ଚାରଣ ବିଭିନ୍ନତା ଓ ଅକ୍ଷରର ଲିଖନ ପ୍ରଣାଳୀର ବିଭିନ୍ନତା ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକୃଷ୍ଟ ହେବା ପ୍ରୟୋଜନ । କଥିତ ଭାଷାର ଉପାଦାନ ଅକ୍ଷରମାନଙ୍କର ଉଚ୍ଚାରଣ ଓ ଲିଖିତ ଭାଷାର ଉପାଦାନ ଅକ୍ଷରମାନଙ୍କର ରୂପ । ଅତଏବ ଭାଷାର ମୂଳପଦାର୍ଥ ଅକ୍ଷର ଓ ଏହି ଅକ୍ଷରର ଉଚ୍ଚାରଣ ଓ ରୂପ ଭେଦରେ ଭାଷାର କଥିତ ଓ ଲିଖିତ ରୂପର ଭେଦ ସାଧିତ ହୋଇଥାଏ । ଭାଷା ବିଜ୍ଞାନର ଆଲୋଚନାରେ ଏହି କାରଣରୁ ଆମ୍ଭମାନଙ୍କର ଅକ୍ଷରମାନଙ୍କର ରୂପର ଇତିହାସ ଓ ସେମାନଙ୍କର ଉଚ୍ଚାରଣଗତ ବୈଷମ୍ୟର ଇତିହାସ ଓ ଅକ୍ଷର ସୃଷ୍ଟିର କାଳନିର୍ଦ୍ଦେଶ ପ୍ରଭୃତି ଆଲୋଚନା କରିବାକୁ ହୋଇଥାଏ ।

ଏହି ଅକ୍ଷରଗୁଡ଼ିକର ଏକତ୍ର ଅବସ୍ଥାନ ଦ୍ୱାରା ଆମ୍ଭେମାନେ ପାଉଁ ଶବ୍ଦ । ଭାଷାର ଭିତ୍ତି ଏହି ଶବ୍ଦମାନଙ୍କ ଉପରେ ସ୍ଥାପିତ ଓ ଆମ୍ଭମାନଙ୍କର ଭାବଗୁଡ଼ିକ ପ୍ରକାଶ କରିବାର ଏକମାତ୍ର ଉପାଦାନ ଶବ୍ଦ । ବିଭିନ୍ନ ଭାଷାରେ ଏକ ଅର୍ଥକୁ ବିଜ୍ଞାପନ କରିବା ପାଇଁ ବିଭିନ୍ନ ଶବ୍ଦର ବ୍ୟବହାର ହୋଇଥାଏ ଓ ଆମ୍ଭେମାନେ ଭାଷାର ବିଜ୍ଞାନ ଆଲୋଚନା କରିବା ସମୟରେ ଶବ୍ଦଗୁଡ଼ିକର ସମ୍ୟକ୍ ଆଲୋଚନା କରିଥାଉଁ । କିନ୍ତୁ ପ୍ରତ୍ୟେକ ଶବ୍ଦକୁ ବିଭିନ୍ନ ଦିଗରୁ ଆଲୋଚନା କରାଯାଇପାରେ । ଆମ୍ଭେମାନେ ଶବ୍ଦର କଥିତ ରୂପ ପ୍ରତି ଦୃଷ୍ଟିଦେଇ ଶବ୍ଦର ଉଚ୍ଚାରଣ ଆଲୋଚନା କରିପାରୁ କିମ୍ବା ତାହାର ଲିଖିତ ରୂପ ପ୍ରତି ଦୃଷ୍ଟିଦେଇ ତାହାର ବନାନର ଇତିହାସ ବିଷୟରେ ଅନୁସନ୍ଧାନ କରିପାରୁଁ । ପୁଣି ପ୍ରତ୍ୟେକ ଶବ୍ଦର ଗଠନର ଗୋଟିଏ ଇତିହାସ ଅଛି – ସେହି ଇତିହାସକୁ ଅନୁଶୀଳନ କରି ସେହି ଶବ୍ଦମାନଙ୍କର ଉତ୍ପତ୍ତି ଓ ଅନ୍ୟାନ୍ୟ ଶବ୍ଦ ସହିତ ତାହାର ଯୋଗ ବା ବିଭିନ୍ନ ସମୟରେ ତାହାର ରୂପ ବିଷୟରେ ଚିନ୍ତା କରିପାରୁଁ । ପୁଣି ପ୍ରତ୍ୟେକ ଶବ୍ଦର ବ୍ୟବହାରଗତ ନାନାପ୍ରକାର ରୂପ ଓ ତାହାର ଅର୍ଥ ବିଷୟରେ ମଧ୍ୟ ଆମ୍ଭେମାନେ ଅନୁସନ୍ଧାନ କରିପାରୁଁ । ଭାଷାର ଆଲୋଚନାର ଶେଷ ଉପାଦାନ ବାକ୍ୟବିନ୍ୟାସ ଅର୍ଥାତ୍ ଅନେକଗୁଡ଼ିଏ ଶବ୍ଦର ଏକତ୍ର ଅବସ୍ଥାନ ଦ୍ୱାରା ବାକ୍ୟର ଅର୍ଥ କିପରି ଭାବରେ ନିୟନ୍ତ୍ରିତ ହୁଏ, ତାହାର ଆଲୋଚନା କରିବା ପ୍ରୟୋଜନ । ଏହିପରି ନାନା ଦିଗରୁ ଭାଷାର ଉତ୍ପତ୍ତି, ପରିଣତି; ରୂପ ଓ ଇତିହାସ ବିଷୟରେ ଯେଉଁ ସନ୍ଧାନ, ତାହାକୁ

ଆମ୍ଭେମାନେ ଭାଷା ବିଜ୍ଞାନ ବୋଲି କହିପାରୁଁ ।

ପ୍ରଥମରେ ଆମ୍ଭମାନଙ୍କୁ ଦେଖିବାକୁ ହେବା ଯେ, ଭାଷା କଅଣ ? ଆମ୍ଭେମାନେ ଯେଉଁ ସମସ୍ତ ଉଚ୍ଚାରିତ ଓ ଲିଖିତ ଧ୍ୱନିସମଷ୍ଟି ବା ଅକ୍ଷରସମବାୟ ଦ୍ୱାରା ନିଜର ଭାବକୁ ଅନ୍ୟଲୋକ ସମକ୍ଷରେ ସୁଚାରୁ ଭାବରେ ପ୍ରକାଶିତ କରିପାରୁଁ, ତାହାହିଁ ଭାଷା । ଅବଶ୍ୟ ଅନେକ କ୍ଷେତ୍ରରେ କେବଳ କେତେଗୁଡ଼ିଏ ଅର୍ଦ୍ଧବ୍ୟକ୍ତ ଧ୍ୱନି ଦ୍ୱାରା ଆମ୍ଭେମନେ ମାନସିକ ଭାବକୁ ବ୍ୟକ୍ତ କରିପାରୁଁ । ଯେତେବେଳେ ଆମ୍ଭେମାନେ 'ବାଃ' ଏହି ଧ୍ୱନିଟି ଉଚ୍ଚାରଣ କରୁଁ, ତେତେବେଳେ ଅନ୍ୟଲୋକ ଏହି ଗୋଟିଏ ଧ୍ୱନିର ଉଚ୍ଚାରଣ ଆମ୍ଭମାନଙ୍କର ମନରେ ଯେଉଁଭାବର ଉଦୟ ହୋଇଅଛି, ତାହାର ଆଭାସ ପାଇଥାଏ ଓ ଏହି କାରଣରୁ ଉକ୍ତ ଧ୍ୱନିର ଉଚ୍ଚାରଣକୁ ଆମ୍ଭେମାନେ ଭାଷାର ଅନ୍ତର୍ଗତ ବୋଲି ଧରିପାରୁଁ । ଏହିପରି ଭାବରେ ଅନେକ ଅବ୍ୟକ୍ତ ବା ଅର୍ଦ୍ଧବ୍ୟକ୍ତ ଧ୍ୱନିରୁ କିମ୍ବା କ୍ରନ୍ଦନର ରୋଳ ବା ହାସ୍ୟର କଳରବରୁ ମଧ ଆମ୍ଭେମାନେ ଅନ୍ୟଲୋକର ମନୋଭାବର ପରିଚୟ ପାଇଥାଉଁ । ଏ ସମସ୍ତ ଧ୍ୱନି ଭାଷାର ଅନ୍ତର୍ଗତ; ମାତ୍ର ଭାଷା ଯେତେବେଳେ କ୍ରମଶଃ ମାର୍ଜିତ ହୁଏ ତେତେବେଳେ ଏହି ସମସ୍ତ ଅବ୍ୟକ୍ତ ଧ୍ୱନିଗୁଡ଼ିକ ପରିବର୍ତ୍ତରେ ସୁମିଷ୍ଟ ଓ ସୁବିନ୍ୟସ୍ତ ଧ୍ୱନିସମବାୟର ସୃଷ୍ଟି ହୋଇଥାଏ । ଏହି କାରଣରୁ ଭାଷାର ବିଭିନ୍ନ ପ୍ରକାର ଅବସ୍ଥାରେ ଧ୍ୱନିସମବାୟର ବିଭିନ୍ନ ରୂପ ଆମ୍ଭମାନଙ୍କର ନୟନଗୋଚର ହୋଇଥାଏ । 'ଉଃ' ଏହି ଧ୍ୱନିଟି "ମୋର ବିଶେଷ କଷ୍ଟ ହେଉଅଛି" 'ଆଃ' ଏହି ଧ୍ୱନିଟି "ମୋର ବର୍ତ୍ତମାନ ଟିକିଏ ଆରାମ ବା ଆନନ୍ଦ ହେଉଅଛି", 'ବାଃ' ଏହି ଧ୍ୱନିଟି "ମୁଁ ଏଥିରେ ବିଶେଷ ଆନନ୍ଦ ଲାଭ କରିଅଛି" ଏହିପ୍ରକାର ବାକ୍ୟରାଜି ଦ୍ୱାରା ବ୍ୟକ୍ତ ହୋଇଥାଏ । ଭାଷାର ପ୍ରଗତିରେ ଏହି ପ୍ରକାର ଶବ୍ଦଗୁଡ଼ିକ କ୍ରମଶଃ ରୂପାନ୍ତରିତ ହେଲେହେଁ, ଏହି ଏକାକ୍ଷର ଶବ୍ଦ ଏକାବେଳକେ ଲୋପପ୍ରାପ୍ତ ହୁଏନାହିଁ । ମାତ୍ର ଯେତେକାଳ ପର୍ଯ୍ୟନ୍ତ ଭାଷାରେ କେବଳ ଏହିପରି ଏକାକ୍ଷର ଧ୍ୱନିଗୁଡ଼ିକ ବ୍ୟବହୃତ ହୁଏ, ତେତେ କାଳ ଭାଷା ଅନୁନ୍ନତ ବୋଲି ଗଣ୍ୟ ଓ ତାହାର ସମ୍ୟକ୍ ଚର୍ଚ୍ଚା ଅସମ୍ଭବ ।

ବର୍ତ୍ତମାନ ପୃଥିବୀରେ ନାନାପ୍ରକାର ଭାଷା ବ୍ୟବହୃତ ହେଉଅଛି ଓ ଏହି ଭାଷାଗୁଡ଼ିକରେ ନାନାପ୍ରକାର ବିନ୍ୟାସ କୌଶଳ ଦୃଷ୍ଟିଗୋଚର ହୋଇଥାଏ । ପ୍ରତ୍ୟେକ ଭାଷାରେ ଅକ୍ଷର, ଶବ୍ଦର ରୂପ, ଧ୍ୱନି, ବ୍ୟାକରଣଗତ ରୂପଭେଦ, ବାକ୍ୟବିନ୍ୟାସ ପ୍ରଣାଳୀ ପ୍ରଭୃତି ନାନା ବିଷୟରେ ଅସାମଞ୍ଜସ୍ୟ ଦେଖାଯାଇଥାଏ । ପ୍ରଥମରେ ଆମ୍ଭେମାନେ ଯେଉଁ ଭାଷା ବ୍ୟବହାର କରୁଅଛୁଁ, ତାହା ବିଶ୍ଳେଷଣ କରି ଦେଖାଯାଉ । "ସେ କାଲି ଇସ୍କୁଲକୁ ଯାଇଥିଲା ।" ଏହି ବାକ୍ୟଟି ଓଡ଼ିଆ ଭାଷାରେ ଲିଖିତ ଓ ଏହି ବାକ୍ୟରେ ଚାରିଗୋଟି ଶବ୍ଦ ଅଛି । ଏହି ଶବ୍ଦମାନଙ୍କ ମଧ୍ୟରୁ ଗୋଟିଏ ଏକାକ୍ଷରୀ, ଗୋଟିକରେ ଦୁଇଗୋଟି ଅକ୍ଷର, ଗୋଟିକରେ ପ୍ରଧାନତଃ ତିନିଗୋଟି ଅକ୍ଷର; ମାତ୍ର ବ୍ୟାକରଣଗତ ପ୍ରୟୋଗବଶତଃ ସେଥିରେ 'କୁ' ଏହା ଯୁକ୍ତ ହୋଇ ତାକୁ ଚାରିଗୋଟି ଅକ୍ଷରରେ ପରିଣତ କରିଅଛି, ପୁଣି ଶେଷ ଶବ୍ଦଟିରେ ଚାରିଗୋଟି ଅକ୍ଷର । ବଙ୍ଗଳାରେ 'ଇସ୍କୁଲକୁ' ଏହି ଏହି ଶବ୍ଦଟିକୁ 'ଇସ୍କୁଲେ'

ଏହିପରି ରୂପ ଦିଆଯାଇଥାଏ । ଅତଏବ ବଙ୍ଗଳା ଭାଷାର ବ୍ୟାକରଣଗତ ରୂପ ଓଡ଼ିଆ ଭାଷା ଅପେକ୍ଷା ଟିକିଏ ଭିନ୍ନ । ସଂସ୍କୃତରେ ଏହିବାକ୍ୟର ଅର୍ଥକୁ ପ୍ରକାଶ କଲେ 'ଇସ୍କୁଲକୁ' ଏହି ଶବ୍ଦଟି ଉଠାଇ ଦେବା ନିତାନ୍ତ ପ୍ରୟୋଜନ । କାରଣ ସଂସ୍କୃତରେ "ଇସ୍କୁଲ" ଏହି ଶବ୍ଦଟି ଆଦୌ ବ୍ୟବହୃତ ହୁଏନାହିଁ । ଏହା ପରିବର୍ତ୍ତରେ "ବିଦ୍ୟାଳୟ" ଏହି ଶବ୍ଦଟି ପ୍ରଚଳିତ । ପୁଣି "ଯାଇଥିଲା" ଏହି ପଦ ପରିବର୍ତ୍ତନର "ଜଗାମ" ଏହାହିଁ ସଂସ୍କୃତ ବ୍ୟାକରଣସିଦ୍ଧ ପଦ । ଏଣୁ ଓଡ଼ିଆ ଭାଷାରେ ଏହି ବାକ୍ୟଟିର ଯାହା ରୂପ ଅଛି, ସଂସ୍କୃତରେ ତାହା ସମ୍ପୂର୍ଣ୍ଣ ରୂପେ ଭିନ୍ନ ଆକାର ଧାରଣ କଲା । ଇଂରାଜୀରେ 'ଇସ୍କୁଲ'କୁ ଏହି ପଦଟିକୁ 'to school' ଏହି ଦୁଇଗୋଟି ପଦଦ୍ୱାରା ବ୍ୟକ୍ତ କରାଯାଏ । ଏଣୁ ଇଂରାଜୀ ବ୍ୟାକରଣ ସହିତ ଓଡ଼ିଆ ବା ସଂସ୍କୃତ ବ୍ୟାକରଣ ବିଶେଷ ଭାବରେ ପୃଥକ୍ ।

ଓଡ଼ିଆରେ ଯଦି ଆମ୍ଭେମାନେ କହୁଁ "ରାମ ରାବଣକୁ ମାଇଲେ," ତେବେ ଆମ୍ଭେମାନେ ଯେଉଁ ଭାବ ପ୍ରକାଶ କରୁ "ରାବଣକୁ ରାମ ମାଇଲେ" ଏହି ବାକ୍ୟଦ୍ୱାରା ଆମ୍ଭେମାନେ ଠିକ୍ ସେହି ଭାବ ମାତ୍ର ପ୍ରକାଶ କରିଥାଉଁ; ମାତ୍ର ଇଂରାଜୀରେ 'Rama killed Ravana' ଏହାର ଅର୍ଥ ଯାହା 'Ravana killed Rama' ଏହାର ଅର୍ଥ ଏକାବେଳେ ତହିଁରୁ ଭିନ୍ନ । ଏଠାରେ Ravana ଓ Rama ଏହି ଦୁଇ ଗୋଟି ଶବ୍ଦର ସ୍ଥାନଗତ ବ୍ୟବହାର ଦ୍ୱାରା ଅର୍ଥର ପରିବର୍ତ୍ତନ ସାଧିତ ହୋଇଅଛି ଓ ଓଡ଼ିଆରେ 'ରାବଣ' ପରେ 'କୁ' ଏହି ବ୍ୟାକରଣଗତ ଶବ୍ଦାର୍ଥ ନ ଥିବାରୁ ଏଥିରେ ବାକ୍ୟର ଅର୍ଥ ଶବ୍ଦର ଅବସ୍ଥାନ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଅଛି । ଏଣୁ ବ୍ୟାକରଣଗତ ରୂପଗୁଡ଼ିକ ଇଂରାଜୀରେ ଯେପରି ଭାବରେ ଅର୍ଥ ବ୍ୟଞ୍ଜନ କରାଏ, ଓଡ଼ିଆ କିମ୍ବା ସଂସ୍କୃତରେ ତାହା କେବେହେଁ କରେନାହିଁ । ସଂସ୍କୃତରେ 'ଗୃହଂ, 'ଗୃହାତ୍', 'ଗୃହେ' ଏହି ତିନିଗୋଟି ଶବ୍ଦରେ କେବଳ କେତେକ ବ୍ୟାକରଣଗତ ମାତ୍ରାର ଯୋଗ କରାଯାଇ ଅର୍ଥର ବିଭିନ୍ନତା ପ୍ରଦର୍ଶିତ ହୋଇଥାଏ; ମାତ୍ର ଇଂରାଜୀରେ To home, From home, At home ଏହିପରି ବିଭିନ୍ନ ଶବ୍ଦଗୁଡ଼ିକ ବ୍ୟବହୃତ ଅର୍ଥାତ୍ ଇଂରାଜୀରେ ବିଭିନ୍ନ ଶବ୍ଦର ବିଭିନ୍ନ ବ୍ୟାକରଣଗତ ଅବସ୍ଥାନ ଦ୍ୱାରା ଯେପରି ଭାବରେ ଭାବର ପ୍ରକାଶ ହୋଇଥାଏ, ଓଡ଼ିଆ କିମ୍ବା ସଂସ୍କୃତରେ ବ୍ୟାକରଣଗତ ମାତ୍ରା ଯୋଗକରି ସେହିପରି ବିଭିନ୍ନ ଅର୍ଥର ପ୍ରକାଶ ସମ୍ଭବ ହୁଏ । ଇଂରାଜୀରେ ମାତ୍ରାର ବ୍ୟବହାର ଯେ ଆଦୌ ନାହିଁ ତାହା ନୁହେଁ, କାରଣ Ram's' 'Men' 'Went' ଏହିପରି ବ୍ୟାକରଣଗତ ରୂପର ବ୍ୟବହାର ଇଂରାଜୀରେ ଦେଖା ଯାଇଥାଏ । ମାତ୍ର ସଂସ୍କୃତରେ ଏହା ଯେତେ ପ୍ରଚଳିତ, ଇଂରାଜୀରେ ସେତେ ନୁହେଁ । ବସ୍ତୁତଃ ଶବ୍ଦର ଅବସ୍ଥାନଦ୍ୱାରା ବାକ୍ୟର ଅର୍ଥ ନିରୂପଣ ଓ ଏକ ବା ତତୋଽଧିକମାତ୍ରିକ ଶବ୍ଦର ବ୍ୟବହାର ଦ୍ୱାରା ମୂଳ ଶବ୍ଦର ଅର୍ଥ ବିକୃତି ଏହି ଦୁଇ କାରଣ ଯୋଗୁଁ ସଂସ୍କୃତ ମୂଳତଃ ଇଂରାଜୀ ଠାରୁ ଭିନ୍ନ । ସଂସ୍କୃତରେ 'ରାମଃ ହରିଣାଂ କାର୍ଯ୍ୟଂ ଅକାରୟତ' ଏଠାରେ ରାମ ହରିଦ୍ୱାରା କାର୍ଯ୍ୟକୁ କରାଯାଇଥିଲା । ଏହି ଚାରିଗୋଟି ମୂଳ ଭାବଦ୍ୟୋତକ ଶବ୍ଦ ବିଭିନ୍ନ ବ୍ୟାକରଣଗତ ମାତ୍ରାର ବ୍ୟବହାରଦ୍ୱାରା ନିଜର ଅନ୍ତର୍ନିହିତ

ଭାବକୁ ସୁସ୍ପଷ୍ଟ ଭାବରେ ବ୍ୟକ୍ତ କରୁଅଛି । ମାତ୍ର ଇଂରାଜୀରେ Rama had the work done by Hari- ଏଠାରେ 'Rama' ଓ 'Hari' ର ବାକ୍ୟରେ ଅବସ୍ଥାନଦ୍ୱାରା ଏବଂ 'had' 'the' 'by', ଏହି ସମସ୍ତ ମାତ୍ରିକ ଶବ୍ଦର ବ୍ୟବହାର ଦ୍ୱାରା ଅର୍ଥସଂଗତି ଘଟୁଅଛି ଏବଂ 'do' ଶବ୍ଦର 'done' ରୂପ ସଂସ୍କୃତ ବ୍ୟାକରଣଗତ ମାତ୍ରା ବ୍ୟବହାରର ସଂକେତ ମଧ୍ୟ ଦେଉଅଛି ।

ଏଥି ସକାଶେ ଇଂରାଜୀକୁ Analytic ବା ବିଶ୍ଳେଷକ ଓ ସଂସ୍କୃତକୁ Synthetic ବା ସଂଶ୍ଳେଷକ ଭାଷା ବୋଲି ଗଣନା କରାଯାଏ; କାରଣ ଇଂରାଜୀରେ ବିଭିନ୍ନ ଶବ୍ଦର ବ୍ୟବହାର ଦ୍ୱାରା ଭାବଟିକୁ ବିଶ୍ଳେଷଣ କରାଯାଏ ଓ ସଂସ୍କୃତରେ ପ୍ରତ୍ୟେକ ଶବ୍ଦ ସହିତ ମାତ୍ରାର ଯୋଗ କରାଯାଇ ଭାବଟିକୁ ପ୍ରକାଶ କରାଯାଇଥାଏ । ପୂର୍ବେ ବୋଲା ଯାଇଅଛି ଯେ ଭାଷାର ମୂଳପଦାର୍ଥ ଶବ୍ଦ । ଏହି ଶବ୍ଦ ଘେନି ବାକ୍ୟ, ଏହାରି ବ୍ୟବହାରରୁ ଅର୍ଥର ପ୍ରକାଶ ଓ ଏହାରି ବ୍ୟବହାରରେ ବ୍ୟାକରଣ ପ୍ରୟୋଗ । ଭାଷାର ଅତୀତ ଯୁଗରେ ଏହି ଶବ୍ଦଗୁଡ଼ିକ ନିଶ୍ଚୟ ପୃଥକ୍ ପୃଥକ୍ ଭାବରେ ସନ୍ନିବିଷ୍ଟ ହେଉଥିଲା । ଆମ୍ଭେମାନେ ଓଡ଼ିଆରେ ଯଦି କହୁଁ 'ତୁ ଘର ଦେଖି ଯା'ତେବେ ଏହି ବାକ୍ୟରେ ଚାରିଗୋଟି ପୃଥକ୍ ପୃଥକ୍ ଶବ୍ଦ କୌଣସି ବ୍ୟାକରଣଗତ ମାତ୍ରା ବା ଚିହ୍ନ ନ ଥାଇ ବ୍ୟବହୃତ ହେଉଅଛି ବୋଲି ଦେଖାଯିବ । ପୂର୍ବେ ଚୀନ ଦେଶୀୟ ଭାଷାରେ ଓ କେତେକାଂଶରେ ବର୍ତ୍ତମାନ ବର୍ମା ଦେଶୀୟ ଭାଷାରେ ଏପରି ବ୍ୟବହାର ହୋଇଥାଏ । ଚୀନ ଦେଶରେ ପ୍ରତ୍ୟେକ ଶବ୍ଦ ପୃଥକ୍ ଭାବରେ ମାତ୍ରା ନ ଥାଇ ବ୍ୟବହୃତ ହୁଏ ଓ ପ୍ରତ୍ୟେକ ଶବ୍ଦର ବାକ୍ୟ ମଧ୍ୟରେ ସ୍ଥାନ ଓ ଉଚ୍ଚାରଣର ପାର୍ଥକ୍ୟ ଘେନି ନାନାପ୍ରକାର ବିଭିନ୍ନ ଭାବ ପ୍ରକାଶ କରେ । ଯଥା, ଚୀନଦେଶୀୟ ଭାଷାରେ 'ତାଓ' ଏହି ଶବ୍ଦର ଅର୍ଥ ରାସ୍ତା, ପତାକା, ଶସ୍ୟ, ପ୍ରଭୃତି; 'ଲୁ' ଶବ୍ଦର ଅର୍ଥ ରାସ୍ତା, ମଣି, ଶିଶିରବିନ୍ଦୁ ପ୍ରଭୃତି 'ଏଣୁ 'ତାଓ ଲୁ' ଏହି ଦୁଇଗୋଟି ଶବ୍ଦ ଏକତ୍ରରେ ବ୍ୟବହୃତ ହେଲେ ଏହି ଦୁଇ ଶବ୍ଦର ସାଧାରଣ ଅର୍ଥ ରାସ୍ତା ଏହି ଶବ୍ଦ ବୁଝାଇବ । ପୁଣି ଓଡ଼ିଆରେ 'ଆଃ' ଏହି ଶବ୍ଦଟି ନାନାପ୍ରକାର ଉଚ୍ଚାରଣ ଦ୍ୱାରା ଯେପରି କଷ୍ଟ, ବିରକ୍ତି, ଆରାମ, କଷ୍ଟର ଶାନ୍ତି ପ୍ରଭୃତି ନାନାପ୍ରକାର ଭାବଦ୍ୟୋତନା କରିଥାଏ, ସେହିପରି ଚୀନ ଭାଷାରେ ପ୍ରତ୍ୟେକ ଶବ୍ଦର ଉଚ୍ଚାରଣର ବିଭିନ୍ନତା ଦ୍ୱାରା ତାହାର ଅର୍ଥ ମଧ୍ୟ ବଦଳିଯାଏ । ଚୀନ ଦେଶୀୟ ଭାଷାରେ 'ଜିନ୍' ଶବ୍ଦର ଅର୍ଥ ମନୁଷ୍ୟ, 'ତା' ଶବ୍ଦର ଅର୍ଥ ଭଲ ବା ବୃହତ୍ । ଏଣୁ 'ଜିନ୍ ତା' କହିଲେ ତାହାର ଅର୍ଥ ବଡ଼ଲୋକ ଓ 'ତା ଜିନ୍' କହିଲେ ତାହାର ଅର୍ଥ ଏହି ଲୋକଟି ବୃହତ୍କାୟ ଏହି ଅର୍ଥ ହେବ । ଏହି ପ୍ରକାରେ କେବଳ କେତେଗୁଡ଼ିଏ ଶବ୍ଦକୁ ଭିନ୍ନ ଭିନ୍ନ ସ୍ଥାନରେ ବ୍ୟବହାର କରିବାଦ୍ୱାରା ବିଭିନ୍ନ ଅର୍ଥ ପ୍ରକାଶ କରାଯାଏ ।

ଅନ୍ୟ ଅନେକ ଭାଷାରେ ଶବ୍ଦଗୁଡ଼ିକୁ ଏକତ୍ରିତ କରାଇ ଓ ଏହି ଏକତ୍ରୀକରଣ ପ୍ରକ୍ରିୟାରେ ଶବ୍ଦାନ୍ତର୍ଗତ କେତେକ ଧ୍ୱନିକୁ ଲୋପ କରାଯାଇ ଭାବକୁ ବ୍ୟକ୍ତ କରାଯାଇ ଥାଏ । ଓଡ଼ିଆରେ 'ମୁଁ ଦେଖୁଚି' ଏହା ବଦଳରେ ଯଦି 'ଦେଖ ମୁଁ' ଓ ତୁ ଦେଖୁଚୁ ବଦଳରେ

ଯଦି 'ଦେଖ ତୁ' ପ୍ରଭୃତି ବ୍ୟବହୃତ ହୋଇପାରନ୍ତା, ତେବେ ଏହିପରି ଶବ୍ଦସମନ୍ୱୟ ଦ୍ୱାରା ଭାବ ପ୍ରକାଶକ ଭାଷାର ଉଦାହରଣ ମିଳନ୍ତା । ଇଂରାଜୀରେ ଯେତେବେଳେ ଆମ୍ଭେମାନେ 'Truthful' ଏହି ଶବ୍ଦଟି ବ୍ୟବହାର କରୁଁ, ସେତେବେଳେ ଦୁଇଗୋଟି ବିଭିନ୍ନ ଶବ୍ଦର ସମନ୍ୱୟ କରାଯାଇଥାଏ । ଏହିପରି Uselessly ଏହି ଶବ୍ଦରେ ତିନିଗୋଟି ଶବ୍ଦର ସମନ୍ୱୟ କରାଯାଇଅଛି । କେତେକ ଦ୍ରାବିଡ଼ ଭାଷାରେ (କାନାରିଜ୍, ତାମିଲ ପ୍ରଭୃତି) ଓ ଆଫ୍ରିକାରେ ମାଲୟ ପ୍ରଭୃତି ଭାଷାରେ ଏହି ପ୍ରକାର ଶବ୍ଦସମନ୍ୱୟ ଦ୍ୱାରା ଭାବପ୍ରକାଶ ଓ ବାକ୍ୟଗଠନ ରୀତି ପ୍ରଚଳିତ ଅଛି । ଭାଷାରେ ଭାବକୁ ପ୍ରକାଶ କରିବାକୁ ହେଲେ କେବଳ ଶବ୍ଦ ଗଠନ ଭିନ୍ନ ନାନାପ୍ରକାର ବ୍ୟାକରଣଗତ ନିୟମ ଓ ମାତ୍ରା ବ୍ୟବହାର କରିବାକୁ ହୁଏ । ଏହି ପ୍ରକାର ବ୍ୟବହାର ଭିନ୍ନ ମନୁଷ୍ୟ କେବେହେଁ ନିଜନିଜର ଭାବକୁ ପ୍ରକାଶ କରିବାକୁ ସମର୍ଥ ହୋଇପାରେ ନାହିଁ; ମାତ୍ର ପ୍ରତ୍ୟେକ ଭାଷାରେ ବ୍ୟାକରଣ ନାନା ପ୍ରକାର ନିୟମ ଗଠନ କରିଥାଏ । କୌଣସି କୌଣସି ଭାଷାରେ ଶବ୍ଦ ମଧ୍ୟସ୍ଥ ଧ୍ୱନିର ବିଭିନ୍ନତା ଦ୍ୱାରା, ପୁଣି ଅନ୍ୟ କୌଣସି କୌଣସି ଭାଷାରେ ବିଭିନ୍ନ ମାତ୍ରା ଶବ୍ଦ ବ୍ୟବହାର ଦ୍ୱାରା, କେତେକ ସ୍ଥାନରେ ଶବ୍ଦର ବ୍ୟବହାର ସ୍ଥାନ ନିର୍ଦ୍ଦେଶ ଦ୍ୱାରା, ପୁଣି ଅନ୍ୟ କେତେକ ସ୍ଥାନରେ ଶବ୍ଦସମନ୍ୱୟ ଦ୍ୱାରା ନାନା ପ୍ରକାରେ ଭାବ ବିନିମୟରେ ସାହାଯ୍ୟ କରା ହୋଇଥାଏ ଓ ଏହି ପ୍ରକାର ବ୍ୟାକରଣଗତ ବିଭିନ୍ନତା ଦ୍ୱାରା ଭାଷାକୁ ନାନା ଶ୍ରେଣୀରେ ବିଭକ୍ତ ମଧ୍ୟ କରାଯାଇଥାଏ ।



## ୨୩

# ଓଡ଼ିଆ ଶବ୍ଦର ଅର୍ଥାନ୍ତର ତତ୍ତ୍ୱ


### ଗିରିଜାଶଙ୍କର ରାୟ


ଶବ୍ଦ ଆଲୋଚନା ସମୟରେ ଆମ୍ଭେମାନେ ତାହାର ରୂପ ବା ଉଚ୍ଚାରଣ ବା ବ୍ୟାକରଣଗତ ପ୍ରୟୋଗ ବିଷୟରେ ଅବହିତ ହୋଇଥାଉଁ; ମାତ୍ର ସେମାନଙ୍କର ଅର୍ଥ ପ୍ରତି ଦୃଷ୍ଟି ଦେଲେ ଅନେକ ପ୍ରକାର କୌତୂହଳୋଦ୍ଦୀପକ ବିଷୟ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୋଇଥାଏ । ଇଂରାଜୀ ଭାଷା ଅତି ସୂକ୍ଷ୍ମ ଭାବରେ ଆଲୋଚିତ ହୋଇ ଥିବାର ଓ ଏଥିରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦର ଇତିହାସ ସମ୍ୟକଭାବେ ନିର୍ଦ୍ଦିଷ୍ଟ ହୋଇଥିବାରୁ ଶବ୍ଦମାନଙ୍କର ଅର୍ଥଗତ ପ୍ରକୃତି ଅତି ସହଜରେ ଆମ୍ଭେମାନେ ବୁଝିପାରୁଁ; ମାତ୍ର ତଥାପି ଇଂରାଜୀରେ Sematology ବା ଅର୍ଥାନ୍ତର ନ୍ୟାସ ବିଷୟରେ ପ୍ରାମାଣ୍ୟ ଗ୍ରନ୍ଥ ଅଧିକ ନୁହେଁ । Oxford Dictionary ପ୍ରସାଦରୁ ଇଂରାଜୀରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦର ବିଭିନ୍ନ ଅର୍ଥ, କେଉଁ ସମୟରୁ କେଉଁ ଶବ୍ଦ କେଉଁ ରୂପରେ ଇଂରାଜୀ ଭାଷାରେ ସ୍ଥାନ ପାଇଅଛି, କେଉଁ ଲେଖକ ସେହି ଶବ୍ଦକୁ ପ୍ରଥମେ କେଉଁ ଅର୍ଥରେ ବ୍ୟବହାର କରିଥିଲେ, ପରେ କିପରି ଭାବରେ ଏହି ଶବ୍ଦଗୁଡ଼ିକର ଅର୍ଥ ଅନ୍ୟ ଲେଖକମାନଙ୍କ ହସ୍ତରେ କିପରି ଭାବରେ ରୂପାନ୍ତର ଲାଭ କରିଅଛି, ଏ ସମସ୍ତ ବିଷୟରେ ଯଥାଯଥ ଭାବରେ ବିସ୍ତୃତ ଆଲୋଚନା ହୋଇଥିବାରୁ ଇଂରାଜୀ ଭାଷାତତ୍ତ୍ୱ ଅନୁସନ୍ଧିତ୍ସୁମାନଙ୍କ ପକ୍ଷରେ ସେ ସମସ୍ତ ସହଜଲଭ୍ୟ ହୋଇଅଛି । ମାତ୍ର ଓଡ଼ିଆରେ ସେପରି କୌଣସି ପ୍ରୟାସ ହୋଇ ନ ଥିବାରୁ ଓ ଓଡ଼ିଆ ଭାଷାକୋଷରେ ସେପରି କୌଣସି ବିଷୟ ସଂଯୋଗ କରିବାର ଚେଷ୍ଟା ହୋଇ ନ ଥିବାରୁ ଏ ବିଷୟରେ ଆମ୍ଭମାନଙ୍କର ଜ୍ଞାନ ସୀମାବଦ୍ଧ ଓ ଭ୍ରମାତ୍ମକ ହେବା ସ୍ୱାଭାବିକ ।

ଭାଷାରେ ବ୍ୟବହୃତ ଶବ୍ଦମାନଙ୍କର ଅର୍ଥ ଅତୀତ ଲୋକମାନଙ୍କର ସାମାଜିକ ରୀତି, ସେମାନଙ୍କର ଆଚାର, ବ୍ୟବହାର ଓ ଧାରଣାର ଯେଉଁ ଚିତ୍ର ଦିଏ, ତାହା ଆଲୋଚନା କଲେ ବାସ୍ତବରେ ଆମ୍ଭମାନଙ୍କର ଏ ଦିଗରେ କୌତୂହଳ ହେବା ସ୍ୱାଭାବିକ । ଯେତେବେଳେ କୌଣସି ଡାକ୍ତର ଆମ୍ଭମାନଙ୍କ ଘରକୁ ରୋଗୀ ଦେଖିବାକୁ ଆସେ ସେତେବେଳେ ଆମ୍ଭେମାନେ ତାଙ୍କୁ 'fee' ଦେଇ ବିଦାୟ କରୁ । ଏହି fee ଶବ୍ଦକୁ ଆଲୋଚନା କଲେ ଆମ୍ଭେମାନେ ଦେଖୁଁ ଯେ, ଏହା Teutonic ଓ Gothic ଭାଷାର ମଧ୍ୟ ଦେଇ ଇଂରାଜୀକୁ

ଆସିଅଛି ଓ ଏହି ଶବ୍ଦ ସହିତ Latin ରେ ବ୍ୟବହୃତ 'pecus' ଶବ୍ଦର ସମତା ରହିଅଛି; ଅର୍ଥାତ୍, Latin 'pecus' ଶବ୍ଦ ଓ ଇଂରାଜୀ fee ଶବ୍ଦ ମୂଳଶବ୍ଦରୁ ଉତ୍ପନ୍ନ । ଏହି ସକାଶେ Latin pecus ଶବ୍ଦରୁ ଇଂରାଜୀରେ ବ୍ୟବହୃତ pecuniary ଶବ୍ଦ ମଧ୍ୟ ଏହି ପର୍ଯ୍ୟାୟଭୁକ୍ତ । Latin pecus ଶବ୍ଦ ଓ ସଂସ୍କୃତ 'ପଶୁ' ଶବ୍ଦ ଏକ ମୂଳ ଆର୍ଯ୍ୟ ଶବ୍ଦରୁ ଜାତ ଓ ଏକ ସମୟରେ ଲୋକମାନଙ୍କ ମଧ୍ୟରେ ପଶୁ ହିଁ ଏକମାତ୍ର ଧନ ଥିବାର ସୁସ୍ପଷ୍ଟ ଇଙ୍ଗିତ ଏଥିରୁ ମିଳେ । ପୂର୍ବେ ସମାଜରେ ଟଙ୍କା ପ୍ରଭୃତିର ପ୍ରଚଳନ ନ ଥିଲା; ଶସ୍ୟାଦି ବିଶେଷ ଭାବରେ ଉତ୍ପନ୍ନ ହେଉ ନ ଥିଲା । ଲୋକମାନେ ଗବାଦି ପଶୁଙ୍କୁ ଘରେ ରଖି ସେହି ପଶୁମାନଙ୍କୁ ନିଜର ପ୍ରୟୋଜନାନୁସାରେ ହସ୍ତାନ୍ତର କରୁଥିଲେ । ଏହି ସମାଜ ଚିତ୍ରଟି fee ଶବ୍ଦର ଅର୍ଥାନ୍ତର ନ୍ୟାସକୁ ଆଲୋଚନା କଲେ ସ୍ପଷ୍ଟ ଭାବରେ ଆମ୍ଭମାନଙ୍କର ଗୋଚରୀଭୂତ ହୁଏ । ଆଜିକାଲି Idle ଶବ୍ଦର ଅର୍ଥ ଅଳସ; ମାତ୍ର ଏହି ଶବ୍ଦଟି ସଂସ୍କୃତ 'ଇନ୍ଧ' ଧାତୁ ସଙ୍ଗେ ସମ୍ପୃକ୍ତ ଓ ଏହାର ମୂଳଅର୍ଥ ଦେଦୀପ୍ୟମାନ ବା ଜ୍ୱଳନ୍ତ ।

ଅନେକଦିନ ପୂର୍ବେ ମଧ୍ୟଯୁଗରେ ରାତ୍ରରେ ବହୁ ସମୟ ପାଠ କରିବା ଦ୍ୱାରା ପରିଶ୍ରମୀ ପାଠକମାନଙ୍କର ମୁଖ ଅତ୍ୟନ୍ତ ନୀରସ ଓ ଶୁଷ୍କ ବୋଧ ହେଉଥିଲା । ମାତ୍ର ଯେଉଁମାନେ ପାଠ କରିବାରୁ ବିରତ ଥାଇ ଅଳସ ଭାବରେ ଜୀବନଯାପନ କରୁଥିଲେ ସେମାନଙ୍କ ମୁଖ ସଦା ଉଜ୍ଜ୍ୱଳ ଓ ପ୍ରଫୁଲ୍ଲ ଭାବ ଧାରଣ କରୁଥିଲା । ଏହି କାରଣରୁ Idle ଶବ୍ଦର ଅର୍ଥ ପୂର୍ବରେ ଜ୍ୱଳନ୍ତ ଥିଲେ ହେଁ କ୍ରମଶଃ ଅଳସରେ ପର୍ଯ୍ୟବସିତ ହେଲା । ବାସ୍ତବରେ Idle ଏହି ଶବ୍ଦର ଅର୍ଥ ଇଂରାଜୀରେ ଏହିପରି ଭାବରେ ପରିବର୍ତ୍ତିତ ହୋଇନାହିଁ । କିନ୍ତୁ ଯେଉଁ ମୂଳଶବ୍ଦରୁ ଏହି ଶବ୍ଦଟି ଜାତ ହୋଇଅଛି ତାହାର ଅନ୍ୟ ଭାଷାରେ ରୂପାନ୍ତର ସଙ୍ଗେ ସଙ୍ଗେ ଅର୍ଥାନ୍ତର ମଧ୍ୟ ଘଟିଅଛି । ଇଂରାଜୀରେ 'Nice' ଏହି ଶବ୍ଦର ଅର୍ଥରେ ମଧ୍ୟ ଏକ କୌତୁକାବହ ଇତିହାସ ନିହିତ ଅଛି । ଏହି ଶବ୍ଦଟି ଯେଉଁ ଶବ୍ଦମାନଙ୍କର ସଂଯୋଗରେ ଉତ୍ପନ୍ନ, ତାହାର ମୂଳଅର୍ଥ ଅଜ୍ଞ ଓ ବାସ୍ତବରେ 'Nice' ଏହି ଶବ୍ଦର ମୂଳଅର୍ଥ ଅଜ୍ଞ ବା ନିର୍ବୋଧ । ମାତ୍ର କ୍ରମଶଃ ଏହି ଶବ୍ଦର ଅର୍ଥ ନାନା ରୂପରେ ପରିବର୍ତ୍ତିତ ହୋଇଅଛି । ଯେଉଁ ଲୋକ ବିଦ୍ୱାନ୍ ସେ ସର୍ବଦା କଳହପ୍ରିୟ ଓ ଅନ୍ୟମତ ଅସହିଷ୍ଣୁ ଥିବାରୁ ସମାଜର ଲୋକମାନଙ୍କ ସହିତ ସେମାନେ ସର୍ବଦା ସୁବିଧାନୁସାରେ ମିଳିମିଶି ଚଳିପାରନ୍ତି ନାହିଁ । ମାତ୍ର ଅଜ୍ଞ ଲୋକମାନେ ଅନ୍ୟଲୋକର ମତବାଦରେ ନିଜେ ସନ୍ତୁଷ୍ଟ ଥାଇ ସେମାନଙ୍କ ପ୍ରୀତି ଅର୍ଜ୍ଜନ କରିବାରେ ସର୍ବଦା ସଚେଷ୍ଟ ହୁଅନ୍ତି । ଏଣୁ 'Nice' ଏହି ଶବ୍ଦର 'ଅଜ୍ଞ' ଏହି ଅର୍ଥ ଲୁପ୍ତହୋଇ କ୍ରମଶଃ 'ପ୍ରୀତପ୍ରଦ' ଏହି ଅର୍ଥର ଆଗମ ହୋଇଅଛି । 'Crimson' ଏହି ଶବ୍ଦର ଅର୍ଥ ଆମ୍ଭେମାନେ ସମସ୍ତେ ଜାଣୁଁ ଓ ଏହା ଆମ୍ଭେମାନେ ସଦାସର୍ବଦା ବ୍ୟବହାର ମଧ୍ୟ କରିଥାଉଁ । ମାତ୍ର ପୂର୍ବେ ଏକପ୍ରକାର କ୍ଷୁଦ୍ର କୀଟର ରକ୍ତରୁ ଏହି ଲାଲ ରଙ୍ଗର ଉତ୍ପତ୍ତି ହେବାର ଲୋକେ ବିଶ୍ୱାସ କରୁଥିଲେ ଓ ଏହି ବିଶ୍ୱାସ ସେମାନଙ୍କ ମନରେ ବଦ୍ଧମୂଳ ଥିବାରୁ ସଂସ୍କୃତ କୃମି ଶବ୍ଦରୁ, ଆରବ ଦେଶର ଲୋକମାନଙ୍କ ମଧ୍ୟରେ ଏହି ରଙ୍ଗକୁ quirmiz ଅର୍ଥାତ୍ 'କୃମିଜ'

ଏହିପରି ଭାବରେ ପ୍ରଚଳିତ ହୋଇଥିଲା ଓ ଏହି କାରଣରୁ ଏହି ଶବ୍ଦ ବର୍ତ୍ତମାନ Crimson ଆକାରରେ ବ୍ୟବହୃତ ହେଉଅଛି । ବର୍ତ୍ତମାନ ନାଲି ରଙ୍ଗ red, lead ବା ଅନ୍ୟାନ୍ୟ ଅନେକ ପଦାର୍ଥରୁ ବିଜ୍ଞାନସମ୍ମତ ଭାବରେ ପ୍ରସ୍ତୁତ ହେଉଥିଲେ ହେଁ ଏକ ସମୟରେ ଯେ ଏହା କୀଟର ରକ୍ତରୁ ଉତ୍ପନ୍ନ ହେଉଥିଲା ଏହି ଧାରଣା ଲୋକମାନଙ୍କ ମଧ୍ୟରେ ଥିବାର ପ୍ରମାଣ ଆମ୍ଭେମାନେ ଏହାର ରୂପରୁ ସୁସ୍ପଷ୍ଟ ଭାବରେ ବୁଝିପାରୁଁ ଏବଂ ଏହି ଧାରଣା ଲୋକମାନଙ୍କ ମଧ୍ୟରେ କେତେଦୂର ବଦ୍ଧମୂଳ ତାହା ଇଂରାଜୀ Vermilion ଶବ୍ଦର ରୂପରୁ ମଧ୍ୟ ସ୍ପଷ୍ଟ ପ୍ରମାଣିତ ହୁଏ । କାରଣ, ଏହି ଶବ୍ଦର ଅର୍ଥ 'ସିନ୍ଦୁର' ବା ଲକ୍ଷଣାର୍ଥରେ ରକ୍ତବର୍ଣ୍ଣ ହେଲେହେଁ ଏହା ଇଂରାଜୀ Worm ଶବ୍ଦ ସହିତ ବିଶେଷ ଭାବରେ ସଂପୃକ୍ତ । ଏହିପରି ଭାବରେ ଅନେକ ପ୍ରାଚୀନ ତଥ୍ୟ, ଶବ୍ଦର ଅର୍ଥାନ୍ତର ତତ୍ତ୍ୱରୁ ଆମ୍ଭମାନଙ୍କ ମଧ୍ୟରେ ଦେଖାଯାଏ ଓ ଏହି ଅର୍ଥାନ୍ତର ତତ୍ତ୍ୱ ମଧ୍ୟରେ ଅନେକ ପ୍ରକାର କୌତୁକାବହ ବ୍ୟାପାର ମଧ୍ୟ ପରିଲକ୍ଷିତ ହୋଇଥାଏ ।

ଆଉ ଗୋଟିଏ ମାତ୍ର ଉଦାହରଣ ନିଆଯାଉ । ଇଂରାଜୀରେ Dunce ଶବ୍ଦର ଅର୍ଥ 'ବୋକା' ବା 'ନିର୍ବୋଧ । କିନ୍ତୁ ଏହି ଶବ୍ଦର ପ୍ରକୃତ ଅର୍ଥ ଯେଉଁମାନେ Duns Scotus ନାମକ ଅତି ପ୍ରଧାନ ଜ୍ଞାନୀର ଶିଷ୍ୟ ଅର୍ଥାତ୍, ଯେଉଁମାନେ ବାସ୍ତବିକ୍ ତାର୍କିକ ଓ ଜ୍ଞାନୀ । ମାତ୍ର ସାଧାରଣତଃ ଯେଉଁମାନେ ସବୁବେଳେ ପାଠନିରତ ଥାନ୍ତି ସେମାନଙ୍କର ସାଂସାରିକ ବୁଦ୍ଧି ପ୍ରଖର ନ ଥିବାରୁ ସାଧାରଣ ଲୋକେ ସେମାନଙ୍କୁ ସାଂସାରିକ ବିଷୟରେ ଅଜ୍ଞ ବୋଲି ବିବେଚନା କରନ୍ତି । ଏଣୁ ଯେଉଁ ଶବ୍ଦର ଅର୍ଥ ପୂର୍ବେ ଜ୍ଞାନର ଉପାସକ ଥିଲା, ତାହା କ୍ରମଶଃ ଅଜ୍ଞ ବା ନିର୍ବୋଧରେ ପର୍ଯ୍ୟବସିତ ହୋଇଅଛି । ଜ୍ଞାନର ଉପାସକଙ୍କ ସାଂସାରିକ ବୁଦ୍ଧିର ଅଭାବ ଯେ ଏହିପରି କେବଳ ଇଂରେଜମାନଙ୍କ ମଧ୍ୟରେ ପ୍ରଚଳିତ ତାହା ନୁହେଁ । କାରଣ, ବଙ୍ଗଳାରେ 'ବୁଦ୍ଧୁ' ଏହି ଶବ୍ଦର ଅର୍ଥ ବୋକା, ମାତ୍ର ଏକ ସମୟରେ ଏହାର ଅର୍ଥ ଥିଲା ଜ୍ଞାନୀ ବା ବୁଦ୍ଧିର ଉପାସକ । ଓଡ଼ିଆରେ ମଧ୍ୟ ସାଧାରଣତଃ 'ଅବଧାନୀ ବୁଦ୍ଧି' କହିଲେ ସଂସାର ଜ୍ଞାନ ଅଭାବ ସୂଚିତ ହୋଇଥାଏ ଓ ଲୋକମାନଙ୍କ ମଧ୍ୟରେ ଏହା ଅନ୍ୟକୁ ହାସ୍ୟାସ୍ପଦ କରିବାର ଏକ ପ୍ରକୃଷ୍ଟ ଉପାୟ ବୋଲି ସାଧାରଣରେ ପରିଗଣିତ ।

ଓଡ଼ିଆ ଭାଷାର ବିପୁଳ ଶବ୍ଦ ରାଶିର ଅର୍ଥ ବିଷୟରେ ଆଲୋଚନା କଲେ ଆମ୍ଭେମାନେ ଏହିପରି ନାନାପ୍ରକାର ଅର୍ଥାନ୍ତର ନ୍ୟାସର ଭୂରି ଭୂରି ଉଦାହରଣ ଦେଖିଥାଉଁ । ସଂସ୍କୃତରେ ଯାହା ରୂଢ଼ ଅର୍ଥରେ ବ୍ୟବହୃତ ହୋଇଥାଏ, ସେ ପ୍ରକାର ଅର୍ଥାନ୍ତର ନ୍ୟାସର ଉଦାହରଣ ଓଡ଼ିଆରେ ଯେ ଯଥେଷ୍ଟ ମିଳିବ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମାତ୍ର ରୂଢ଼ ଅର୍ଥ ଛାଡ଼ି ଦେଲେ ହେଁ ଓ ସଂସ୍କୃତରେ ଯେଉଁସବୁ ଅର୍ଥାନ୍ତର ଘଟିଥିଲା ସେ ସମସ୍ତ ପ୍ରତି ଦୃଷ୍ଟି ନ ଦେଲେ ହେଁ ଓଡ଼ିଆରେ ଅର୍ଥାନ୍ତର ନ୍ୟାସର ନାନା ପ୍ରକାର ଉଦାହରଣ ଆମ୍ଭେମାନେ ଦେଖିଥାଉଁ । କେବଳ ଶବ୍ଦଗୁଡ଼ିକ ବ୍ୟବହାର ସମୟରେ ଆମ୍ଭେମାନେ ସାଧାରଣ ପ୍ରଚଳିତ ଅର୍ଥପ୍ରତି ଦୃଷ୍ଟି ଦେବାଦ୍ୱାରା ପୂର୍ବ ପ୍ରଚଳିତ ଅର୍ଥ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ସ୍ୱତଃ ଆକୃଷ୍ଟ ହୁଏନାହିଁ ଓ ଆମ୍ଭେମାନେ ଏହି ଅର୍ଥାନ୍ତର ନ୍ୟାସ ବିଷୟରେ ସବିଶେଷ

ଅବହିତ ହେଉ ନାହୁଁ ।

ଓଡ଼ିଆରେ ଏପରି ଅନେକ ଶବ୍ଦ ଅଛି ଯେଉଁମାନଙ୍କର ଅର୍ଥ ସଂସ୍କୃତରେ ରୂଢ଼ ହୋଇ ନ ଥିଲେହେଁ ଅନେକ ବର୍ଷ ବ୍ୟବହାର ଫଳରେ ଓଡ଼ିଆରେ ରୂଢ଼ ଅର୍ଥରେ ବ୍ୟବହୃତ ହେଉଅଛି ଏବଂ ଏହିପରି ବ୍ୟବହାର ଦ୍ୱାରା ଶବ୍ଦଗୁଡ଼ିକର ଅର୍ଥାନ୍ତର ମଧ ସମୟ ସମୟରେ ସହଜ ହୋଇଅଛି । ଉଦାହରଣ ସ୍ୱରୂପ ମଞ୍ଜା ଶବ୍ଦଟି ଦେଖାଯାଇପାରେ । ଏହି ଶବ୍ଦଟି ସଂସ୍କୃତ ମଜ୍ଜା ଶବ୍ଦରୁ ଉଦ୍ଭୂତ । ମାତ୍ର ବର୍ତ୍ତମାନ କେବଳ କଦଳୀ ଗଛର ମଜ୍ଜା ରୂପରେ ବ୍ୟବହୃତ; କାରଣ, ଏହି ମଜ୍ଜା ଖାଦ୍ୟଦ୍ରବ୍ୟ ରୂପରେ ବହୁଳ ବ୍ୟବହୃତ ହୁଏ ଓ ଅନ୍ୟାନ୍ୟ ଗଛର ମଞ୍ଜା ଅପେକ୍ଷା ଏହା ସୁପରିଚିତ । ସମୟକ୍ରମେ ମଞ୍ଜା ଓ ମଂଜ ଏହି ଦୁଇଗୋଟି ଶବ୍ଦ, ଗୋଟିଏ ସଂସ୍କୃତ ଶବ୍ଦରୁ ଉଦ୍ଭୂତ ହୋଇ ବିଭିନ୍ନ ଅର୍ଥ ସୂଚନା କରୁଅଛି । ଏହିପରି ପୂର୍ବେ ଗୋଲାକାର ପ୍ରଶସ୍ତ ସ୍ଥାନରେ ଫସଲ ପ୍ରଭୃତି ସଞ୍ଚିତ କରି ରଖିବାର ପ୍ରଥା ପ୍ରଚଳିତ ଥିବାରୁ ବର୍ତ୍ତମାନ ଆମ୍ଭେମାନେ ଗୋଲା ଅର୍ଥରେ ଅମାର ଓ ପଣ୍ୟଦ୍ରବ୍ୟ ରଖିବାର ସ୍ଥାନ ବୁଝୁଁ ଏବଂ କୌଣସି ପଦାର୍ଥକୁ ଅପର ପଦାର୍ଥ ସହିତ ମିଶ୍ରିତ କରିବା ସମୟରେ ଉଭୟ ପଦାର୍ଥକୁ ଗୋଲାକାରରେ ବିପର୍ଯ୍ୟସ୍ତ କରିବାର ପ୍ରଥା ପ୍ରଚଳିତ ଥିବାରୁ ଏହି ଶବ୍ଦରୁ ମିଶ୍ରିତ କରିବା ରୂପ ଅର୍ଥାନ୍ତର ଜାତ ହୋଇ ବର୍ତ୍ତମାନ ଭାଷାରେ ପ୍ରଚଳିତ ହୋଇଅଛି । ଏପରି କି ଯେଉଁଠାରେ ମିଶ୍ରଣ କରିବା ଅର୍ଥ ସୁସ୍ପଷ୍ଟ ନୁହେଁ ସେଠାରେ ମଧ ଏହି ଶବ୍ଦ ବ୍ୟବହୃତ ହେଉଅଛି । ଆମ୍ଭେମାନେ ଯେତେବେଳେ ଗୋଳିଆ ପାଣି ଶବ୍ଦ ବ୍ୟବହାର କରୁ କିମ୍ବା କିଶୋର ଚନ୍ଦ୍ରାନନ୍ଦ ଚମ୍ପୁରେ କବି ଯେତେବେଳେ ଲେଖିଲେ- "ଗୋଳା ଗରଳରୁ କଟୁ ପୀୟୂଷରୁ ସ୍ୱାଦୁ ଗୁଣ ଗଲା ବଳି" ସେତେବେଳେ ଏହି ଶବ୍ଦର ବ୍ୟବହାରଗତ ଇତିହାସ ପ୍ରତି ଆମ୍ଭେମାନେ ଅବହିତ ନ ଥାଉଁ । ପୁଣି ଏହିପରି ଦୁଇ ପଦାର୍ଥକୁ ମିଶ୍ରିତ କରିବା ସମୟରେ ଯେଉଁ ବିପର୍ଯସ୍ତ ଭାବ ହୁଏ, ତାହାକୁ ଲକ୍ଷ୍ୟକରି ଆମ୍ଭେମାନେ କହିଥାଉଁ, ମୋର ମନ ଗୋଳେଇ ହେଉଛି ଏବଂ ଏହି ପ୍ରକାର ମିଶ୍ରଣ ଫଳରେ ସ୍ୱଚ୍ଛ ପଦାର୍ଥ, ଅସ୍ୱଚ୍ଛ ଓ କର୍ଦ୍ଦମମୟ ହେଉଥିବାରୁ ଆମ୍ଭେମାନେ ଏହି ଶବ୍ଦକୁ କପଟ ଅର୍ଥରେ ମଧ ବ୍ୟବହାର କରୁଁ । ଯଥା- 'ଗୋଳିଆ ନରଖି କହ ଚନ୍ଦ୍ରମୁଖି ଗହଳି ନ ଥିବା ବେଳେ ।'

ବାସ୍ତବରେ ଯେଉଁ ଶବ୍ଦ ଯେତେ ପରିଚିତ ସେହି ଶବ୍ଦର ଅର୍ଥାନ୍ତର ଘଟିବା ତେତେ ସହଜ ଓ ସାଧାରଣ ବ୍ୟବହାର ଦ୍ୱାରା ଲୋକ ସମାଜରେ ସୁପ୍ରଚଳିତ ଶବ୍ଦମାନଙ୍କର ଅର୍ଥ ଘୋର ପରିବର୍ତ୍ତନ ସାଧିତ ହୋଇଥାଏ । ପୂର୍ବେ ସର୍ବସାଧାରଣରେ ଗୁଡ଼ର ବହୁଳ ବ୍ୟବହାର ଥିବାରୁ ଯେଉଁମାନେ ମିଷ୍ଟାନ୍ନ ପ୍ରସ୍ତୁତ କରୁଥିଲେ ସେମାନଙ୍କୁ ଗୁଡ଼ିଆ କୁହାଯାଉଥିଲା । ଏବଂ ଲୋକମାନେ ମିଷ୍ଟ କନ୍ଦ ସହିତ ପରିଚିତ ଥିବାରୁ ଖଜୁରୀ ଗଛର ସୁମିଷ୍ଟ ମଧଭାଗକୁ ଖଜୁରୀ କନ୍ଦା ବୋଲି କହୁଥିଲେ । ଚିନି ବହୁ ପରେ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ହେଲା । ପୂର୍ବେ ଯେଉଁ ସମସ୍ତ ପଦାର୍ଥ ବିଦେଶରୁ ଆସୁଥିଲା ଓ ଲୋକ ସମାଜରେ ଯେ ସମସ୍ତ ପଦାର୍ଥ ବିଦେଶୀୟ ବୋଲି ପରିଚିତ ଥିଲା ସେଗୁଡ଼ିକ ଚିନ୍ ଦେଶରୁ ଆସିଥିବାର ଲୋକମାନଙ୍କ

ମନରେ ଧାରଣା ଥିବାରୁ ସେମାନେ ବିଦେଶାଗତ ଶ୍ୱେତ ଶର୍କରାକୁ ଚିନି ଆଖ୍ୟା ଦେଇଥିଲେ । ଅବଶ୍ୟ ପାର୍ସି 'ଶିନ୍ନୀ' ସହିତ ଏହି ଶବ୍ଦ ଆକୃତିଗତ ସାମଞ୍ଜସ୍ୟ ଥିବାରୁ ଏହି ଚିନି ଶବ୍ଦଟି ପାର୍ସି ଶିନ୍ନୀ ଶବ୍ଦରୁ ଆସିଛି ବୋଲି କେହି କେହି ମତ ପ୍ରକାଶ କରନ୍ତି । ଏବଂ ଶିନ୍ନୀ ଶବ୍ଦରୁ ଆଧୁନିକ ଓଡ଼ିଆର 'ସିରିଣୀ' ଶବ୍ଦ ଜାତ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଚିନି ଶବ୍ଦର ବ୍ୟବହାର ପ୍ରାୟ ଦେଖାଯାଏ ନାହିଁ । ମାତ୍ର ନୃସିଂହ ପୁରାଣରେ, "ପଇଡ଼ପାଣି ଖଜା ଖଜୁରୀ ଖଣ୍ଡ ଚିନି," ଏହି ପଦ୍ୟାଂଶର ବ୍ୟବହାର ଦେଖାଯାଏ । ଚିନ୍‌ଦେଶ ସହିତ ଭାରତର ଅତି ନିକଟ ସମ୍ପର୍କ ଚିନାମାଟି, ଚିନି ସିନ୍ଦୂର, ଚିନି ଚମ୍ପା ପ୍ରଭୃତି ଶବ୍ଦରୁ ସୂଚିତ ହେଉଅଛି ଏବଂ ଏହି ନିକଟ ସମ୍ପର୍କ ଥିବାରୁ Brazil ରୁ ପୋର୍ତ୍ତୁଗିଜମାନଙ୍କ ଦ୍ୱାରା ଆନୀତ ଚିନାବାଦାମରେ, ଆମ୍ଭେମାନେ ଚିନ୍ ଶବ୍ଦର ଅଯଥା ପ୍ରୟୋଗ କରିଥାଉଁ ।

କ୍ରମେ ଯେତେବେଳେ ବିଲାତ ସହିତ ନିକଟ ସମ୍ପର୍କ ସ୍ଥାପିତ ହେଲା ତେତେବେଳୁଁ ସମସ୍ତ ବିଦେଶୀୟ ଶବ୍ଦକୁ ଆମ୍ଭେମାନେ ବିଲାତ ଜିନିଷ ବୋଲି ଜାଣିବାକୁ ଶିଖିଲୁଁ ଏବଂ ସେହି କାରଣରୁ ଆମ୍ଭମାନଙ୍କ ମଧ୍ୟରେ ବିଲାତିଆଳୁ, ବିଲାତି ବାଇଗଣ ପ୍ରଭୃତିର ପ୍ରଚଳନ ହେଲା । ଶବ୍ଦମାନଙ୍କର ଇତିହାସ ଅନୁସରଣ କଲେ ଏହିପରି ଭାବରେ କେଉଁ ସମୟରେ ଆମ୍ଭମାନଙ୍କ ଦେଶର କିପରି ପରିସ୍ଥିତି ଥିଲା ତାହା ସ୍ପଷ୍ଟ ଜଣାଯାଏ । ଚିନି ଶବ୍ଦ ସଂସ୍କୃତରେ ଶର୍କରା ରୂପରେ ବ୍ୟବହୃତ ଓ ଏହି ଶର୍କରା ଶବ୍ଦରୁ ଆମ୍ଭମାନଙ୍କର ପରିଚିତ ସାକର ଶବ୍ଦର ଉତ୍ପତ୍ତି । ସାକର ଶବ୍ଦର ଅର୍ଥ ଅମ୍ଳ ଏବଂ ଅମ୍ଳ ସହିତ ଶର୍କରାର ସର୍ବଥା ସଂଯୋଗ କରି ଲୋକମାନେ ବ୍ୟବହାର କରୁଥିବାରୁ ଏବଂ ଅମ୍ଳ ଓ ଶର୍କରାର ବ୍ୟବହାର କରୁଥିବାରୁ ଏବଂ ଅମ୍ଳ ଓ ଶର୍କରାର ବ୍ୟବହାର ପ୍ରାୟ ସବୁ ସମୟରେ ଏକତ୍ରରେ ହେଉଥିବାରୁ, ସାକର ଶବ୍ଦର ଅର୍ଥସଂଯୁକ୍ତ ମଧୁର ରସକୁ ଉପେକ୍ଷା କରି ଶର୍କରାର ବିରୋଧୀ ଅମ୍ଳ ରସରେ ନ୍ୟସ୍ତ ହୋଇଅଛି । ଖାଦ୍ୟ ପଦାର୍ଥମାନଙ୍କ ମଧ୍ୟରେ ଖଜାର ଇତିହାସ ଅତି ଚମତ୍କାର । କୃଷ୍ଣସିଂହଙ୍କ ମହାଭାରତରେ –

"ଏହା କହି ପଣା ପଇଡ଼ ନାନା ଖଜା,
ଖୁଆଇଲେ ହରି ନେବାକୁ ତାଙ୍କ ମଜା"

ପଦ୍ୟାଂଶର ବ୍ୟବହାରରେ ଖଜା ବ୍ୟାପକ ଭାବରେ ମିଷ୍ଟାନ୍ନ ଅର୍ଥରେ ବ୍ୟବହୃତ ହୋଇଅଛି ଓ ଏହି ବ୍ୟାପକ ଅର୍ଥ ଅଦ୍ୟାବଧି ଗଞ୍ଜାମ ଜିଲ୍ଲାରେ ସୁପ୍ରଚଳିତ । ପୂର୍ବେ ଯେଉଁ ମିଷ୍ଟାନ୍ନ ପ୍ରସ୍ତୁତ ହେଉଥିଲା ତାହା ବର୍ତ୍ତମାନ ପରି ନାନା ପ୍ରକାରର ନ ଥିଲା ଓ ଅଟା ପ୍ରଭୃତିର ବର୍ତ୍ତୀ ପ୍ରସ୍ତୁତ ହୋଇ ସେଥିରେ ଗୁଡ଼ର ପାଗ ଦିଆଯାଇ ଖଜା ପ୍ରସ୍ତୁତ ହେଉଥିଲା । ଦେଖିବାକୁ ଏହି ଖଜାଗୁଡ଼ିକ ଅନେକାଂଶରେ ଖଜୁରୀ କୋଳି ପରି କଳା, ଆକୃତି ଓ ମିଷ୍ଟତାର ମଧ୍ୟ ସାମଞ୍ଜସ୍ୟ ଥିବାରୁ ଏହି ମିଷ୍ଟାନ୍ନକୁ ଲୋକେ ଖଜୁରୀ ବୋଲି କହୁଥିଲେ, କ୍ରମଶଃ ଏହି ଖଜୁରୀ ଶବ୍ଦ ଖଜାରେ ପରିଣତ ହୋଇଅଛି । ଓଡ଼ିଶାରେ ଏକ ସମୟରେ ଏହାହିଁ ସାଧାରଣ ପ୍ରଚଳିତ ମିଷ୍ଟାନ୍ନ ଥିଲା ଓ ଏହି କାରଣରୁ ଜଗନ୍ନାଥଙ୍କ ଭୋଗରେ ଆଜି ପର୍ଯ୍ୟନ୍ତ ଏହି ମିଷ୍ଟାନ୍ନର

ବ୍ୟବହାର ଅଛି । ଏହି ପ୍ରାଧାନ୍ୟ ଯୋଗେ ଲୋକେ ବକ୍ସିସ୍ ଓ ଉପରି ପଇସାକୁ ପୂର୍ବେ ଖଜାଖିଆ ବୋଲି କହୁଥିଲେ । ବର୍ତ୍ତମାନ ମିଠେଇ ଶବ୍ଦ ସୁପ୍ରଚଳିତ ଓ ବ୍ୟାପକ ଭାବେ ବ୍ୟବହୃତ ହେବାରୁ ଖଜାଖିଆ ଶବ୍ଦ ପରିବର୍ତ୍ତରେ ମିଠେଇ ଖିଆର ବ୍ୟବହାର ହେଉଅଛି ଓ ଊନବିଂଶ ଶତାବ୍ଦୀ ପୂର୍ବରେ ଏହି ମିଠେଇଖିଆ ଶବ୍ଦ ବର୍ତ୍ତମାନ ଅର୍ଥରେ ଓଡ଼ିଶାରେ ପ୍ରଚଳିତ ନ ଥିଲା । ବର୍ତ୍ତମାନ ବିଂଶ ଶତାବ୍ଦୀରେ ପାନର ଅଧିକ ପ୍ରଚଳନ ଯୋଗେ ମୂଲିଆ ଶ୍ରେଣୀର ଲୋକମାନେ ମୂଲ ଉପରେ ପାନଖିଆ ପଇସା ଦାବୀ କରୁଅଛନ୍ତି । ଏହିପରି ସମୟ ବିଶେଷରେ ବିଭିନ୍ନ ପଦାର୍ଥର ବହୁଳ ପ୍ରଚଳନ ଯୋଗୁଁ ବିଭିନ୍ନ ଶବ୍ଦ ଲୋକମୁଖରେ ଓ ସମାଜରେ ସ୍ଥାନ ପାଉଅଛି । ଖାଦ୍ୟପଦାର୍ଥ ମାନଙ୍କ ମଧ୍ୟରେ ସନ୍ଦେଶର ଇତିହାସ ଅତୀବ ଶିକ୍ଷାପ୍ରଦ । ସଂସ୍କୃତରେ ସନ୍ଦେଶର ଅର୍ଥ, ଖବର ପଠାଇବା ଓ ଏହି ଅର୍ଥ ଓଡ଼ିଆରେ ମଧ୍ୟ ପ୍ରଚଳିତ । ଯଥା-

"ମାନବ ବନ୍ଦନୀୟ କାହିଁ ସନ୍ଦେଶ ।
ଯକ୍ଷ ନ ବିଚାରିଲା ଏଥି ବିଶେଷ" ।
(ଗା-ମେଘଦୂତ)

ମାତ୍ର ପୂର୍ବେ କୌଣସି ଲୋକ ନିକଟକୁ କୁଶଳ ସମ୍ବାଦାଦି ପ୍ରେରଣ କରିବା ସମୟରେ କିମ୍ବା ଅନ୍ୟ କୌଣସି ବାର୍ତ୍ତା ପଠାଇବା କାଳରେ ମିଷ୍ଟାନ୍ନ ପଠାଇବାର ରୀତି ଥିବାରୁ ଏହି ଶବ୍ଦଟିର ଅର୍ଥ କ୍ରମଶଃ ସମ୍ବାଦ ଅର୍ଥରେ ବ୍ୟବହୃତ ନ ହୋଇ ମିଷ୍ଟାନ୍ନ ଅର୍ଥରେ ପର୍ଯ୍ୟବେସିତ ହୋଇଅଛି । ଖଜୁରୀ ସହିତ ସାମଞ୍ଜସ୍ୟ ଥିବାରୁ ଯେପରି ଆମ୍ଭେମାନେ ଖଜା ଶବ୍ଦ ପାଉଁ ସେହିପରି ଆକୃତିଗତ ସାମଞ୍ଜସ୍ୟ ଥିବାରୁ ବର୍ତ୍ତମାନ ଶିଙ୍ଗଡ଼ା ନାମକ ଖାଦ୍ୟ ପ୍ରଚଳିତ ।

ସାଧାରଣରେ ପ୍ରଚଳିତ ଅନ୍ୟ ଅନେକ ଶବ୍ଦର ମଧ୍ୟ ଅର୍ଥାନ୍ତର ଘଟିଅଛି । ଲାଲ ରଙ୍ଗର ଦୃଷ୍ଟି ଆକର୍ଷଣ କରିବାର କ୍ଷମତା ଅତ୍ୟଧିକ ଥିବାରୁ ଆମ୍ଭେମାନେ ରଙ୍ଗା କହିଲେ ଲାଲିରଙ୍ଗ ବୁଝୁ । ଅନ୍ୟ ରଙ୍ଗକୁ ବୁଝୁନାହିଁ । ପୁଣି ଲାଲିରଙ୍ଗ ମଧ୍ୟରେ ଯାହା ଅତି ଘୋର ଓ ସ୍ଥାୟୀ ତାହା ରକ୍ତପରି ଥିବାରୁ ତାହାକୁ ଆମ୍ଭେମାନେ ଖୁନିରଙ୍ଗ କହିଥାଉଁ । ଲିଆ ବା ଖଇରେ ପୂର୍ବେ ଅଠା ପ୍ରସ୍ତୁତ ହେଉଥିବାରୁ ଆମ୍ଭେମାନେ 'ଲେହି' ଶବ୍ଦ ପାଇଅଛୁଁ ଓ ବେତ ଦ୍ୱାରା ବୁଣା ବେତାଠାରୁ ବାଉଁଶ ଦ୍ୱାରା ପ୍ରସ୍ତୁତ ବାଉଁଶିଆର ପାର୍ଥକ୍ୟ ସୂଚନା କରୁଅଛୁଁ । ଏହିପରି ପଥରରେ ପ୍ରସ୍ତୁତ ସଦା ବ୍ୟବହାର ହେଉଥିବାରୁ ଶିଳର ଅର୍ଥ ରୂଢ଼ ହୋଇଅଛି ଓ ଚକି ମଧ୍ୟ ଏହି ନିୟମ ଅନୁସାରେ ଚକ୍ରର ବ୍ୟାପକ ଅର୍ଥକୁ ହରାଇ କେବଳ ଗୃହରେ ବ୍ୟବହୃତ ଶିଳାଚକ୍ର ଅର୍ଥରେ ବ୍ୟବହୃତ ହେଉଅଛି । 'ଶାଢ଼ୀ ବାନ୍ଧିବା' ଏହି କଥାଟି ଗୋଟିଏ ପୁରାତନ ସାମାଜିକ ରୀତିକୁ ଲକ୍ଷ୍ୟ କରୁଅଛି । ପୂର୍ବେ ଯେତେବେଳେ କୌଣସି ଲୋକ କୌଣସି ସମ୍ମାନର ଯୋଗ୍ୟ କାର୍ଯ୍ୟ କରୁଥିଲା ସେତେବେଳେ ସେ ରାଜାଙ୍କଠାରୁ ଟଙ୍କା ପ୍ରଭୃତି ପାଉଥିଲେହେଁ ଉଆସ ମଧ୍ୟରୁ ରାଣୀଙ୍କଠାରୁ ବିଶେଷ ଅନୁଗ୍ରହ ସୂଚକ ରାଣୀଙ୍କ ବ୍ୟବହୃତ ଲୁଗା ପ୍ରଭୃତି ପାଉଥିଲେ ଓ ଏହି ଲୁଗାକୁ ବିଶେଷ ସମ୍ମାନ ଦେଖାଇବା ନିମନ୍ତେ ସେମାନେ

ମସ୍ତକରେ ସ୍ପର୍ଶ କରୁଥିଲେ । ଏହି କାରଣରୁ ସମ୍ମାନ ଦେଖାଇବା ନିମନ୍ତେ ଏହି 'ଶାଢ଼ୀ ବାନ୍ଧିବା' କଥାର ପ୍ରଚଳନ ହୋଇଅଛି । ଅନ୍ୟାନ୍ୟ ସାମାଜିକ ରୀତିର ସୂଚନା ଆମ୍ଭେମାନେ ରାଉଟି, ଉଆସ, ରାଉଳ ପ୍ରଭୃତି ଶବ୍ଦରୁ ପାଇଥାଉଁ । ପୂର୍ବର ଓଡ଼ିଆ ରାଜାମାନେ ସମର-ଦକ୍ଷ ଥିବାରୁ ଏବଂ ଯୁଦ୍ଧ କ୍ଷେତ୍ରରେ ବହୁକାଳ ରହୁଥିବାରୁ 'ରାଜବାଟୀ' ରାଉଟିରେ ପରିଣତ ହୋଇଅଛି ଏବଂ ରାଜାଙ୍କର ଆବାସ ଗୃହରେ କେବଳ ସ୍ତ୍ରୀ, ପୁତ୍ର, କନ୍ୟାମାନେ ରହୁଥିବାରୁ ରାଜାବାସ ଅର୍ଥରେ ଅନ୍ତଃପୁର ସୂଚକ 'ଉଆସ' ଶବ୍ଦର ବ୍ୟବହାର ହେଉଅଛି । ଏହିପରି ଶକ୍ତି ମନ୍ଦିରମାନଙ୍କରେ ବ୍ରାହ୍ମଣମାନେ ପୂଜା କରୁଥିବା ସ୍ଥଳେ କ୍ଷତ୍ରୀୟମାନଙ୍କ ଦ୍ୱାରା ପଶୁବଳି ହେଉଥିବାରୁ ଏହି ବଳିଦାତାମାନଙ୍କୁ ଆମ୍ଭେମାନେ ରାଜକୁଳର ଉଦ୍‌ଭୂତ ରାଉଳ ଆଖ୍ୟା ଦେଇଅଛୁଁ । ନାଗର, ବଜାରୀ ପ୍ରଭୃତି ଶବ୍ଦ ଅନ୍ୟବିଧ ସାମାଜିକ ରୀତିର ସୂଚନା କରିଥାଏ । ଯେଉଁମାନେ ଅଧିକ ବିଳାସୀ, ସେମାନେ ସାଧାରଣତଃ ନଗରରେ ରହୁଥିବାରୁ ନାଗର ଅର୍ଥରେ ପ୍ରେମ-ବିଳାସୀ ଯୁବକ ବୁଝାଯାଏ ଓ ବଜାରରେ ସାଧାରଣତଃ ବୁଲୁଥିବା ବାଳକ ବା ଯୁବକମାନେ ଅଶ୍ଳୀଳ ଶବ୍ଦ ପ୍ରୟୋଗ କରୁଥିବାରୁ ବଜାରୀ ଶବ୍ଦ ଅସଂଯତ ଲୋକ ପ୍ରତି ବ୍ୟବହୃତ ହୁଏ । ଏହିପରି ଗାଉଁଲୀ ଓ ମଫସଲୀ ଶବ୍ଦ ସାଧାରଣତଃ ଗ୍ରାମର ଲୋକମାନଙ୍କ ସରଳ ପ୍ରକୃତି, ସାଧାରଣ ବିଷୟରେ ଅଜ୍ଞତା ସୂଚନା କରେ ଓ ସହଜରେ ପ୍ରତାରିତ ଓ ଅନଭିଜ୍ଞ ଏହି ଅର୍ଥରେ ବ୍ୟବହୃତ ହୋଇଥାଏ । ସହର ଲୋକମାନଙ୍କର ଗ୍ରାମ୍ୟ ଲୋକମାନଙ୍କ ପ୍ରତି ଏହି ମନୋଭାବ ପ୍ରାୟ ପ୍ରତ୍ୟେକ ଭାଷାରେ ଦେଖାଯାଏ ଏବଂ ସହରର ଲୋକ ଓ ଗ୍ରାମ୍ୟ ଲୋକ ଉଭୟଙ୍କର ପରସ୍ପର ପ୍ରତି ଘୃଣା ପ୍ରାୟ ସବୁ ଭାଷାରେ ସୁପରିସ୍ଫୁଟ ।

ମଫସଲ ଶବ୍ଦର ଅନ୍ୟ ଏକ ପ୍ରକାର ଅର୍ଥାନ୍ତର ମଧ୍ୟ ଦେଖା ଯାଇଥାଏ । ଆମ୍ଭେମାନେ ଲୁଗା କିଣିବା ସମୟରେ ତାହାର ସଦର ମଫସଲ ପ୍ରତି ଦୃଷ୍ଟି ଦେଇଥାଉଁ । ଲୁଗା ତହିଁର ଫୁଲ ଏକଆଡ଼େ ସୁଦୃଶ୍ୟ ଓ ସୁବିନ୍ୟସ୍ତ ଥାଏ ଓ ଅନ୍ୟଆଡ଼େ ତେତେ ମନୋହର ନ ଥାଏ । ଏହି କାରଣରୁ ଯେଉଁଟି ବାସ୍ତବରେ ଚିକ୍କଣ ଓ ମନୋହର ଓ ତେଣୁ ବାହାରକୁ ଦେଖିବାର ଯୋଗ୍ୟ ତାକୁ ଲୁଗାର ସଦର ବୋଲାଯାଏ ଓ ଅନ୍ୟଟିକୁ ମଫସଲ ବୋଲାଯାଇଥାଏ । ଏହି ପ୍ରୟୋଗରୁ ମଧ୍ୟ ସହର ଓ ମଫସଲ ଲୋକଙ୍କର ପରସ୍ପର ପ୍ରତି ମନୋଭାବ ସୁସ୍ପଷ୍ଟ ଅନୁଭୂତ ହୁଏ ।

ସାମାଜିକ ପ୍ରଥାର ଆଉ ଗୋଟିଏ ବିଷୟ ମଧ୍ୟ ଭାଷାର ଆଲୋଚନାରୁ ଦେଖାଯାଏ । ପୂର୍ବେ ପୂଜାକାରୀ ବ୍ରାହ୍ମଣମାନେ ଅତ୍ୟନ୍ତ ଶୁଚି ସ୍ୱଭାବର ଥିବାରୁ ବିଧବାମାନେ ବା ଅନ୍ୟାନ୍ୟ ଲୋକମାନେ ସ୍ୱ ପାକ ପରିବର୍ତ୍ତେ କେବଳ ସେହିପରି ପୂଜକ ବ୍ରାହ୍ମଣର ପାକରେ ତୃପ୍ତି ସହିତ ଭୋଜନ କରୁଥିଲେ । ଏଣୁ କ୍ରମଶଃ ଅର୍ଥାନ୍ତର ଘଟି ପୂଝାରୀ ଅର୍ଥରେ ରୋଷେୟା ବ୍ରାହ୍ମଣ ବୁଝାଉଅଛି ଓ ଭାଷାରେ ଦାଢ଼ିଆ ପୂଝାରୀ ରୂପ ଶବ୍ଦ ମଧ୍ୟ ପ୍ରଚଳିତ ହୋଇଅଛି । ନୀଚଶ୍ରେଣୀର ଲୋକମାନଙ୍କୁ ସମାଜରେ ଯେ ସମାଜ ସେବାର ପୁରସ୍କାର ସ୍ୱରୂପ ଉଚ୍ଚଆସନ ଦିଆଯାଉଥିଲା ତାହାର ଉଦାହରଣ ଆମ୍ଭେମାନେ ନାମ କରଣରେ ଦେଖିଥାଉଁ । ପ୍ରତ୍ୟେକ

କାରବାରୀ ଲୋକ ସାହୁ ଅର୍ଥାତ୍ ସାଧୁ, ପ୍ରତ୍ୟେକ ଧୋବା ସେଠୀ ଅର୍ଥାତ୍ ଶ୍ରେଷ୍ଠୀ, ଅଧିକାଂଶ ଅସ୍ପୃଶ୍ୟ ଲୋକ ମଳିକ ଅର୍ଥତ୍ ମାଲିକ ଓ ପ୍ରତ୍ୟେକ ଝାଡୁଦାର ମେହେନ୍ତର ଅର୍ଥାତ୍ ମହତ୍ତର ରୂପରେ ସମାଜରେ ଗଣ୍ୟ ହେଉଥିବାରୁ ଏମାନଙ୍କର ଏହି ପଦବୀଗୁଡ଼ିକ ସୃଷ୍ଟ ଓ ବହୁଳ ବ୍ୟବହୃତ ହୋଇଅଛି । ସମାଜର ଏହି ମନୋଭାବ ମୂଳରୁ ଥିଲା ଓ କେବେ ଏହି ମନୋଭାବ ଲୋପପାଇ ଏହିସବୁ ଲୋକଙ୍କ ପ୍ରତି ଘୃଣା ସମାଜର ଲୋକ ମାନଙ୍କ ମନରେ ସ୍ଥାନ ପାଇଲା ତାହା ବିଶେଷ ପ୍ରଣିଧାନଯୋଗ୍ୟ ।

ଅନେକ ସମୟରେ ବିଦେଶାଗତ ଶବ୍ଦର ଭାଷାନ୍ତର କରିବାରେ ନାନା କାରଣରୁ ଅର୍ଥାନ୍ତର ଘଟିଥାଏ । ଚାବି ଏହି ଶବ୍ଦଟି portuguese ଭାଷାରୁ ଗୃହୀତ ଓ ପ୍ରଥମେ ଏହାର ଅର୍ଥ ଥିଲା ଯାହାଦ୍ୱାରା ତାଲା ଖୋଲେ ଓ ଏହି ଅର୍ଥ ଭାଷାରେ ସୁପ୍ରଚଳିତ ହେଲା ଓ ମୋ ନିକଟରେ ଏ ବିଷୟର ଚାବି ଅଛି କହିଲେ, ଆମ୍ଭେମାନେ ଏହି ଅର୍ଥ ବୁଝିଥାଉଁ । ମାତ୍ର କ୍ରମଶଃ ଏହାର ଅର୍ଥ ପରିବର୍ତ୍ତିତ ହୋଇ ତାଲାକୁ ବୁଝାଇଲା ଓ ସେହି କାରଣରୁ ପୁଣି ଚାବିକାଠି ଶବ୍ଦ ପ୍ରଚଳିତ ହେଲା । ଏହିପରି ସଂସ୍କୃତ କ୍ଷୁଦ୍ର ଶବ୍ଦରୁ ଗୁଜରାଟରେ ଛୋଟା ମୋଟା ଲୁଗାକୁ ବୁଝାଇବା ନିମନ୍ତେ ଖାଦି ଶବ୍ଦ ପ୍ରଚଳିତ ଥିଲା ମାତ୍ର ଗୁଜରାଟର ଜଣେ ନେତା ହାତକଟା ସୂତାଦ୍ୱାରା ପ୍ରସ୍ତୁତ ତନ୍ତ ଲୁଗା ପ୍ରତି ଏହି ଶବ୍ଦଟି ପ୍ରୟୋଗ କରିବାରୁ ବର୍ତ୍ତମାନ ଖାଦିର ଅର୍ଥାନ୍ତର ଘଟିଅଛି ଓ ଏହି ଶବ୍ଦ ବର୍ତ୍ତମାନ କେବଳ ହାତକଟା ସୂତାରେ ପ୍ରସ୍ତୁତ ସକଳ ପ୍ରକାର ଲୁଗାକୁ ବୁଝାଉ ଅଛି । 'ନଜର' ଶବ୍ଦର ବାସ୍ତବ ଅର୍ଥ ଦେଖିବା ଓ ଏହି ଅର୍ଥରେ ଏହା କବିସୂର୍ଯ୍ୟ ଗ୍ରନ୍ଥାବଳୀରେ, "ଫୁଲେ ନାହିଁ କି ନଜର" ଏହି ପଦରେ ବ୍ୟବହୃତ ହୋଇ ଅଛି ମାତ୍ର ଓଡ଼ିଆରେ ଦେଖିବା ଶବ୍ଦ ପ୍ରଚଳିତ ଥିବାରୁ ଏହି ଦୁଇ ଶବ୍ଦମାନଙ୍କ ମଧ୍ୟରେ ପ୍ରଭେଦ ନିର୍ଦ୍ଦେଶ କରିବା ନିମନ୍ତେ 'ନଜର'କୁ ଏକ ଦୃଷ୍ଟିରେ ବହୁକ୍ଷଣ ଦେଖିବା ବା ନିରୀକ୍ଷଣ କରିବା ଏହି ଅର୍ଥରେ 'ନଜର ଲାଗିବା' ପ୍ରଭୃତି ଅର୍ଥାନ୍ତର ସ୍ୱାଭାବିକ ଭାବରେ ଘଟିଅଛି । ଗିଲାସ ଶବ୍ଦର ଅର୍ଥଗତ ଇତିହାସ ଆହୁରି କୌତୁକପ୍ରଦ । ଓଡ଼ିଆରେ ଏଭଳି ତାଟିଆର ବ୍ୟବହାର ନ ଥିଲା ଓ ବିଦେଶୀ ଲୋକମାନେ ପ୍ରଥମରେ କାଚର ଏହିପରି ତାଟିଆ ଏ ଦେଶରେ ପ୍ରଚଳିତ କରିବାରୁ ଏହା ଏ ଦେଶରେ କଂସା ପିତଳ ପ୍ରଭୃତିରେ ପ୍ରସ୍ତୁତ ହେଲେହେଁ ଗିଲାସ ନାମରେ ଆଖ୍ୟାତ ହେଲା ଓ ଯେଉଁ ଶବ୍ଦର ଅର୍ଥ କାଚ ଥିଲା ତାହା କ୍ରମଶଃ କାଚ ନିର୍ମିତ ତାଟିଆ, ପରେ କେବଳ ପାଣି ପିଇବା ନିମନ୍ତେ ତାଟିଆ ଏହି ଅର୍ଥରେ ବ୍ୟବହୃତ ହୋଇ ବିଦେଶାଗତ ଲୋକମାନେ ଏହିପରି ତାଟିଆରେ ମଦ ଆଦି ଖାଉଥିବାରୁ କ୍ରମଶଃ ଏହାର ଅର୍ଥ ପରିବର୍ତ୍ତିତ ହୋଇ 'ଗିଲାସ ଚାଲିଲା' ଅର୍ଥାତ୍, 'ମାଦକଦ୍ରବ୍ୟ ସେବନ ଆରମ୍ଭ ହେଲା,' ଏହି ଅର୍ଥରେ ପର୍ଯ୍ୟବସିତ ହୋଇଅଛି ଓ ହୋଟେଲ ଆଦିରେ ମଦ୍ୟପ ଲୋକମାନଙ୍କର ରୁଚି ଅନୁଯାୟୀ ମାଂସର ପ୍ରସ୍ତୁତ 'ଗିଲାସି' ଆଖ୍ୟା ଦିଆଯାଉଅଛି ।

କେବଳ ଯେ ବିଦେଶାଗତ ଶବ୍ଦମାନଙ୍କର ଏହିପରି ଅର୍ଥାନ୍ତର ଘଟିଅଛି ତାହା ନୁହେଁ । ସଂସ୍କୃତରୁ ଆସିଥିବା ଅନେକ ଶବ୍ଦମାନଙ୍କର ମଧ୍ୟ ଏହିପରି ଅର୍ଥାନ୍ତର ସ୍ୱାଭାବିକ

ଭାବରେ ଘଟିଅଛି । ପୂର୍ବେ ଧାନ୍ୟ ଅର୍ଥରେ ଧାନ ଓ ବିରି ଉଭୟ ବୁଝାଉଥିଲା ଓ ଏହି ଅର୍ଥ ଅମର, ମେଦିନୀ ପ୍ରଭୃତି ପ୍ରସିଦ୍ଧ କୋଷ ଗ୍ରନ୍ଥମାନଙ୍କରେ ମିଳେ, ମାତ୍ର କ୍ରମଶଃ ଧାନ୍ୟ ଶବ୍ଦର ଅର୍ଥାନ୍ତର ଘଟି ବର୍ତ୍ତମାନ ଓଡ଼ିଆରେ କେବଳ ଧାନ ଅର୍ଥରେ ବ୍ୟବହୃତ ହେଉଅଛି । ସଂସ୍କୃତରେ ତକ୍ ଧାତୁର ଅର୍ଥ ଥିଲା, ଶୀଘ୍ର ଗତି କରିବା । ଏହି ଧାତୁରୁ ତଗଡ଼ଗ ଚାଲିବା ଏହି ଶବ୍ଦର ଉତ୍ପତ୍ତି ହୋଇଅଛି ଓ କ୍ରମଶଃ ଚାଲିବା ଅର୍ଥ ଲୁପ୍ତହୋଇ କେବଳ ଶୀଘ୍ର ଅର୍ଥରେ ଏହି ଶବ୍ଦଟି ଭାଷାରେ, ବ୍ୟବହୃତ ହୋଇଅଛି, ଯଥା-

"ତଗ ତଗ ସେ ଶକ୍ତିରୁ ଉଠୁଛି ତପତି"

(ବ୍ରହ୍ମନିରୂପଣ ଗୀତା)

ପୁଣି ଶୀଘ୍ର ଅର୍ଥ ଲୁପ୍ତ ହୋଇ ଏହି ଧାତୁର କେବଳ ଚାଲିବା ଅର୍ଥରେ 'ଡଗର' ଶବ୍ଦଟି ଉଦ୍ଭୂତ ହୋଇଅଛି, ଯଥା- "ଚୌଦିଗେ ମୃତ୍ୟୁ ଡଗର ବୁଲୁଅଛି ନିରନ୍ତର" (ମଧୁସୂଦନ, ସଙ୍ଗୀତମାଳା) ଓ ଏହି ଚାଲିବା ଅର୍ଥର କିଞ୍ଚିତ୍ ପରିବର୍ତ୍ତନ ହୋଇ ଅରଣ୍ୟ ମଧ ଦେଇଯିବା ଆସିବାର କ୍ଷୁଦ୍ର ସଂକୀର୍ଣ୍ଣ ପଥକୁ ମଧ 'ଡଗର' ବୋଲି ଗଡ଼ଜାତମାନଙ୍କରେ ବ୍ୟବହାର କରନ୍ତି ।

"ଖରଗତି ତଦନ୍ତରେ ପଳାଇ ଗୁପତେ ।
ସେ ପଳାଶ କୁଞ୍ଜେ କୁଞ୍ଜେ ମହିଷ ଡଗରେ"

(ରାଧାନାଥ, ଉଷା)

ଏଠାରେ ଡଗରର ଏହି ଅର୍ଥରେ ବ୍ୟବହାର ଦେଖାଯାଏ । ଓଡ଼ିଆରେ ଆକ୍ଷେପ ଅର୍ଥ ଦୁଃଖପ୍ରକାଶ କରିବା ବା ବିଳାପ କରିବା, ମାତ୍ର ସଂସ୍କୃତରେ କେବଳ ନିନ୍ଦା ବା ଅଙ୍ଗବିକ୍ଷେପ ଭିନ୍ନ ଏହି ଶବ୍ଦର ଅନ୍ୟ ଅର୍ଥ ପ୍ରଚଳିତ ନୁହେଁ । କପାଳ ଶବ୍ଦର ସଂସ୍କୃତ ଅର୍ଥ ମୁଣ୍ଡର ଅସ୍ଥି, ଏହି ଅର୍ଥରୁ କ୍ରମଶଃ ଚକ୍ଷୁର ଉପର ଅସ୍ଥି ଖଣ୍ଡକୁ ଲକ୍ଷ୍ୟକରି ବର୍ତ୍ତମାନ ଭାଗ୍ୟ ଅର୍ଥରେ ଏହାର ବ୍ୟବହାର ହେଉଅଛି ମାତ୍ର ଏହି ଅର୍ଥ ସଂସ୍କୃତରେ ଆଦୌନାହିଁ । ବର୍ତ୍ତମାନ ଆମ୍ଭେମାନେ ଛବି ଅର୍ଥରେ ଚିତ୍ର ବୁଝୁ, ମାତ୍ର ଏହି ଅର୍ଥରେ ରାଧାନାଥ, "ଛବିଳ ଉକ୍ରଳେ ତୋ ଛବି ଅତୁଳ" ବ୍ୟବହାର ନ କରି ସଂସ୍କୃତରେ ପ୍ରଚଳିତ ଶୋଭା ଅର୍ଥରେ ଏହି ଶବ୍ଦଟି ବ୍ୟବହାର କରି ଅଛନ୍ତି । ସଂସ୍କୃତରେ ପ୍ରଚଳିତ ଶୋଭା ଅର୍ଥ ଛଇଳ, ଛଳ ପ୍ରଭୃତି ନାନା ଶବ୍ଦରେ ଦେଖାଯାଏ ଓ ଲାବଣ୍ୟବତୀରେ, 'ଏ ବନେ ଛଇଳ ହୋଇଲା ଛନ ଛନ' ଏହି ଅର୍ଥ ସୁପ୍ରକାଶ । ମାତ୍ର ବର୍ତ୍ତମାନ ଛବି ଅର୍ଥରେ ଆମ୍ଭେମାନେ କେବଳ ଚିତ୍ର ବୁଝୁଁ ଓ ଏହି ଅର୍ଥାନ୍ତରଟି ବଙ୍ଗଳା ଭାଷାରେ ମଧ ସୁପ୍ରଚଳିତ । ଆମ୍ଭେମାନେ ପ୍ରଶସ୍ତ ରାସ୍ତା ଦେଇ ଗତାୟାତ କରୁଁ, ମାତ୍ର ସଂସ୍କୃତରେ ଏହି ଶବ୍ଦର ଅର୍ଥ ପ୍ରଶଂସନୀୟ ବା ଶ୍ରେଷ୍ଠ । ଅନ୍ୟକୌଣସି ଲୋକ ଆମ୍ଭମାନଙ୍କ ଉପକାର କଲେ ଆମ୍ଭେମାନେ ତାହାଠାରେ ବାଧିତ ଥାଉଁ ମାତ୍ର ବାଧିତ ଶବ୍ଦର ଅର୍ଥ ସଂସ୍କୃତରେ ଏକାବେଳକେ ଭିନ୍ନ । ଆମ୍ଭମାନଙ୍କ ମଧରେ ଅନେକେ ବିଷୟୀ ଲୋକ ବୋଲି ପରିଚିତ ଓ ସେମାନଙ୍କର ବହୁତ ବିଷୟ ବାଡ଼ି ଅଛି, ମାତ୍ର ବିଷୟ ଶବ୍ଦର ଏହି

ଅର୍ଥ ସଂସ୍କୃତରେ ଅଛି କି ? ଇତିହାସ ଗ୍ରନ୍ଥରେ ମୋଗଲସେନାନୀ ଭାରତ ଆକ୍ରମଣ କରିବା ପ୍ରସଙ୍ଗ ଲିଖିତ ହୋଇଅଛି ମାତ୍ର ସଂସ୍କୃତରେ ସେନାନୀର ଅର୍ଥ ସମ୍ପୂର୍ଣ୍ଣ ଭିନ୍ନ । ଏହିପରି ନାନା ଶବ୍ଦ ଆମ୍ଭମାନଙ୍କ ଭାଷାରେ ନିଜସ୍ୱ ଅର୍ଥ ଛାଡ଼ି ଅର୍ଥାନ୍ତର ଗ୍ରହଣ କରି ବ୍ୟବହୃତ ହେଉଅଛି ଓ ଆମ୍ଭେମାନେ ଭାଷାରେ ବ୍ୟବହାର କରିବା ସମୟରେ ଏମାନଙ୍କର ବିଶେଷତ୍ୱ ପ୍ରତି ଆଦୌ ଅବହିତ ହେଉନାହିଁ । ଏହିପରି ଗୋପନରେ ପରସ୍ପର ପରିହାସ ଛଳରେ ନାନାପ୍ରକାର କଥା ପ୍ରୟୋଗ କରୁଥିବାରୁ ଆମ୍ଭେମାନେ 'ରହସ୍ୟ' ଶବ୍ଦକୁ ଭାଷାରେ ପାଇଅଛୁଁ ଓ ଏହାକୁ କେବଳ ପରିହାସ ଅର୍ଥରେ ବ୍ୟବହାର କରୁଅଛୁଁ, ଏ ଶବ୍ଦର ଅନ୍ତର୍ନିହିତ ଗୋପନ ଅର୍ଥଟି ଭାଷାରେ ସମ୍ପୂର୍ଣ୍ଣ ଭାବେ ଲୋପ ପାଇଅଛି । ଏହିପରି ପୂର୍ବେ ଲୋକେ ପରିହାସ ଛଳରେ ନାନାପ୍ରକାର ରଙ୍ଗଦ୍ୱାରା ପରସ୍ପରକୁ ରଞ୍ଜିତ କରୁଥିବାରୁ ଆଜିକାଲି 'ରଙ୍ଗ' ଶବ୍ଦର ଅର୍ଥ ପରିହାସରେ ପର୍ଯ୍ୟବସିତ ହୋଇଅଛି କିନ୍ତୁ ଏହାର ନିଜସ୍ୱ ଅର୍ଥ ମଧ୍ୟ ବ୍ୟବହୃତ ହେଉଅଛି । ଗୋଟିଏ ଶବ୍ଦର ଅର୍ଥ ସଂସ୍କୃତରୁ ଓଡ଼ିଆରେ ଏକାବେଳକେ ବିପରୀତ ଭାବ ଧାରଣ କରିଅଛି । ବୈଷ୍ଣବ ଗ୍ରନ୍ଥାବଳୀର ପଲ୍ଲୀ ପ୍ରକୃତିରେ କବି ଲେଖିଅଛନ୍ତି -

"ଦୂରଗ୍ରାମ ତୃଣରାଜି ବୃକ୍ଷ ଶୋଭା ।
ତୋଷେ ନେତ୍ରେ ଧରି ଅପରୂପ ଶୋଭା ।"

ଏଠାରେ ଅପରୂପ ଶବ୍ଦର ଅର୍ଥ ଅତ୍ୟନ୍ତ ସୁନ୍ଦର ଏବଂ ଏହି ଅର୍ଥ ହିଁ ଓଡ଼ିଆରେ ପ୍ରଚଳିତ ମାତ୍ର ସଂସ୍କୃତରେ ଅପରୂପ ଶବ୍ଦର ଅର୍ଥ କୁତ୍ସିତ, ଅସୁନ୍ଦର ବା କୁରୂପ । ଓଡ଼ିଆରେ ଏହି ଅର୍ଥ ପ୍ରଚଳିତ ନ ଥିଲେହେଁ ଓଡ଼ିଆ ଭାଷାକୋଷରେ ଏହି ଅର୍ଥଗୁଡ଼ିକ ପ୍ରଦତ୍ତ ହୋଇଅଛି ଓ ଏକ ଶବ୍ଦର ବିପରୀତ ବୋଧାର୍ଥକ ଅର୍ଥ ଦେବାଦ୍ୱାରା ସାହିତ୍ୟମୋଦିମମାନଙ୍କର ସନ୍ଦେହ ଉଦ୍ରେକ କରୁଅଛି ।

ଓଡ଼ିଆରେ ଭାଷାର ଇତିହାସ ନଥିବା ସ୍ଥଳେ ଓ କେଉଁ ସମୟରେ କେଉଁ ଶବ୍ଦ କେଉଁ ଅର୍ଥରେ ବ୍ୟବହୃତ ହେଲା ତାହାର କୌଣସି ସ୍ଥିର ନିରେଖ ନ ଥିବାରୁ ଅର୍ଥାନ୍ତରର କ୍ରମ ନିରୂପଣ କରିବା କଷ୍ଟସାଧ୍ୟ, ମାତ୍ର କେତେକ ଗୁଡ଼ିଏ ସାଧାରଣ ଶବ୍ଦରୁ ଏହି ଅର୍ଥାନ୍ତର ପ୍ରକ୍ରିୟାରେ କ୍ରମଃ ବିକାଶ ସୁସ୍ପଷ୍ଟ ଭାବରେ ବୁଝାଯାଏ । 'ବସିବା' ଏହି ଶବ୍ଦର ଅର୍ଥ ସମସ୍ତେ ଜାଣନ୍ତି, ଯେଉଁଲୋକ ସର୍ବଦା ବସିରହେ ସେ ଅଳସ ପ୍ରକୃତିର ଥିବାରୁ କ୍ରମଶଃ ବସିବା ଅର୍ଥରେ ଅଳସ ହେବା ଅର୍ଥ ଜାତହେଲା ଓ ବସି ରହିବା, ବସି ବସି ଖାଇବା ପ୍ରଭୃତି ପଦରେ ଏହି ଅର୍ଥରେ ବ୍ୟବହୃତ ହୋଇ 'ବସିବା ଠାରୁ କାଶିବା ଭଲ' ଏହି ପ୍ରବଚନରେ ମଧ୍ୟ ବ୍ୟବହୃତ ହୋଇଅଛି । ମାତ୍ର ଅଳସ ପ୍ରକୃତିର ଲୋକମାନେ ଗତିଶୀଳ ନୁହନ୍ତି ଏହି ଭାବକୁ ଲକ୍ଷ୍ୟ କରି କ୍ରମଶଃ ବସାଦହି ଓ ତଦନୁକରଣରେ କଫ ବସିଯିବା ଏହିପରି ଅର୍ଥାନ୍ତର ସୂଚକ ବ୍ୟବହାରମାନ ଭାଷାରେ ପ୍ରଚଳିତ ହୋଇଅଛି । ଯେଉଁ ଶବ୍ଦ ଭାଷାରେ ଯେତେ ଅଧିକ ପ୍ରଚଳିତ ସେଥିରେ ଅର୍ଥାନ୍ତର ହେବା ତେତେ ସ୍ୱାଭାବିକ ଏକଥା ପୂର୍ବେ ବୋଲାଯାଇଅଛି ଓ ଏହି ଅର୍ଥାନ୍ତର ଏତେ ଅଲକ୍ଷିତରେ ସାଧିତ ହୁଏ ଯେ ବ୍ୟବହାର ସମୟରେ ଆମ୍ଭେମାନେ ଏହାକୁ ଆଦୌ ବୁଝିପାରୁ ନାହିଁ । ଉତ୍କଳରେ ସୁପ୍ରଚଳିତ 'ପଡ଼ିବା' ଓ 'ଧରିବା' ଏହି

ଦୁଇଗୋଟି କ୍ରିୟା ଉଦାହରଣ ସ୍ୱରୂପ ନିଆଯାଇ ପାରେ । ଓପରୁ ତଳକୁ କୌଣସି କୌଣସି ପଦାର୍ଥର ପତନ ହେଲେ ଆମ୍ଭେମାନେ ପଡ଼ିବା କ୍ରିୟା ବ୍ୟବହାର କରିଥାଉଁ ଓ ଏହି ବ୍ୟବହାର ସଂସ୍କୃତ ଭାଷାନୁଯାୟୀ ସିଦ୍ଧ । କିନ୍ତୁ ମୋ ସାଙ୍ଗରେ ତା'ର ଭାରି ପଡୁଚି, ତା କଥାରେ ପଡ଼ି ମୋର ଏତେ ଦୁର୍ଦ୍ଦଶା, ଏ ବର୍ଷ ଗୋଟିଏ ମଠା କିଣିବାକୁ ପଡ଼ିଲା, ଗାଁରେ ଡାଟି କବାଟ ପଡ଼ିଲାଣି, ମୋ ତଣ୍ଟି ପଡ଼ିଲାଣି, ଆମ ଗାଁକୁ ପକ୍କାସଡ଼କ ପଡ଼ିଛି, କିଆରୀରେ ମାଙ୍କଡ଼ ପଡ଼ିଚନ୍ତି, ପୋଖରୀରେ ଜାଲ ପଡ଼ିଚି ପ୍ରଭୃତି ବ୍ୟବହାରରେ 'ପତନ' ଅର୍ଥ ଆଦୌ ନାହିଁ ଏହି ଅର୍ଥ-ବିକୃତି ଭାଷାରେ ଏତେ ଅଲକ୍ଷିତ ଭାବରେ ପ୍ରବେଶ କରିଅଛି ଯେ ବ୍ୟବହାର ସମୟରେ ଆମ୍ଭେମାନେ ଏହି ଶବ୍ଦର ମୂଳଅର୍ଥ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ହୋଇ କେବଳ ବ୍ୟବହାର ଗତ ଅର୍ଥପ୍ରତି ଦୃଷ୍ଟି ଦେଇଥାଉଁ । ପୂର୍ବଲିଖିତ ଅର୍ଥ ଓ ବ୍ୟବହାରଗୁଡ଼ିକ ପ୍ରହରାଜଙ୍କ 'ଭାଷାକୋଷରୁ' ଗୃହୀତ ମାତ୍ର ଭାଷାକୋଷରେ ଅନେକ ଭୁଲ ଅର୍ଥ ମଧ୍ୟ ଦିଆଯାଇଅଛି ଯଥା, ପଡ଼ିବା ଅର୍ଥରେ ନିଷ୍କ୍ରାନ୍ତ ହେବା ବା ବାହାରିବା, ମାଗଣାରେ ମିଳିବା, ବରଷିବା ପ୍ରଭୃତି ଅର୍ଥ ଦିଆଯାଇଅଛି । ଏଗୁଡ଼ିକ ସମୀଚୀନ ନୁହେଁ କାରଣ, ବର୍ଷା ପଡୁଚି, ବ୍ୟବହାରରେ କ'ଣ ପଡ଼ିବା ଅର୍ଥ ବରଷିବା ? ଏଠି କ'ଣ ସଦାବର୍ତ୍ତ ପଡ଼ିଚି ? ଏହି ବ୍ୟବହାରରେ କ'ଣ ପଡ଼ିବା ଅର୍ଥ ମାଗଣାରେ ମିଳିବା ? ବାସ୍ତବରେ ଏସବୁ ଅର୍ଥ ଧାତୁଗତ ବା ବ୍ୟବହାରଗତ ନୁହେଁ ଏ ସମସ୍ତ ପୂର୍ବବର୍ତ୍ତୀ ଅନ୍ୟ ଶବ୍ଦର ଅର୍ଥ, 'ପଡ଼ିବା'ର ଅର୍ଥ ନୁହେଁ । ଏହିପରି 'ଧରିବା'ର ଅର୍ଥ ଧାରଣ କରିବା, ମାତ୍ର ଫୁଲ ଧରିବା, ଡାକଗାଡ଼ି ଧରିବା, ମୁଣ୍ଡ ଧରିବା, ଔଷଧ ଧରିବା, ମଞ୍ଜି ଧରିବା, କ୍ଷୁର ଧରିବା, କଥା ଧରିବା ପ୍ରଭୃତି Idiomatic ବ୍ୟବହାରରେ ଶବ୍ଦର ନାନାପ୍ରକାର ଅର୍ଥ ବିକୃତି ଘଟିଅଛି ଓ ସାଧାରଣ ବ୍ୟବହାର ସମୟରେ ଆମ୍ଭେମାନେ ମୂଳଅର୍ଥ ଭୁଲିଯାଇ ଏହି ବିକୃତ ଅର୍ଥକୁ ଭାଷାରେ ବ୍ୟବହାର କରିଥାଉଁ । ଏପରିକି ଯେତେବେଳେ 'ବାଛୁରୀ ଧରାହେବା' ବାକ୍ୟ ବ୍ୟବହାର କରୁଁ ତେତେବେଳେ ଧରିବାର ଅର୍ଥ ଯେ ଏକାବେଳକେ ଭିନ୍ନ ରୂପ ପ୍ରାପ୍ତ ହୋଇ ଯାଇଅଛି ସେଥିପ୍ରତି ଆମ୍ଭମାନଙ୍କର ଆଦୌ ଦୃଷ୍ଟି ନ ଥାଏ । ଏଠାରେ ମଧ୍ୟ ପ୍ରହରାଜଙ୍କ ଭାଷା କୋଷରେ ଧରିବା ଅର୍ଥ ଇଂରାଜୀରେ to embrace ବୋଲି ଦିଆଯାଇ 'ଛାତିରେ ଧରିବା' ରୂପ ଯେଉଁ ଶିଷ୍ଟ ପ୍ରୟୋଗର ଉଦାହରଣ ଦିଆଯାଇଅଛି ତାହା ଅସମୀଚୀନ, କାରଣ ଏହି embrace ଅର୍ଥ ଧରିବାର ଅର୍ଥ ନୁହେଁ । ଏହା ପୂର୍ବବର୍ତ୍ତୀ ଅନ୍ୟ ଶବ୍ଦର ସଂଯୋଗରୁ ଉତ୍ପନ୍ନ ।

ଏହିପରି ନାନାପ୍ରକାର ଅର୍ଥବିକାର ଆମ୍ଭେମାନେ ସାହିତ୍ୟରେ ଅହରହ ଦେଖୁଁ ଓ ପ୍ରତ୍ୟେକ ଦିନ ଏହିପରି ବିକାର ଦ୍ୱାରା ଭାଷା ନାନାପ୍ରକାରରେ ପରିବର୍ତ୍ତିତ ହୋଇଅଛି ଓ ବ୍ୟବହାରରେ ମଧ୍ୟ ନାନାପ୍ରକାର ଭେଦ ଦେଖାଯାଉଅଛି । ଭାଷା, ପ୍ରତ୍ୟେକ ଦିନ ନୂତନ ନୂତନ ଭାବରେ ପରିବର୍ତ୍ତିତ ହୋଇଥାଏ ଓ ଏହି ପରିବର୍ତ୍ତନ ହିଁ ଜୀବନ୍ତ ଭାଷାର ଲକ୍ଷଣ । ପ୍ରତ୍ୟେକ କ୍ଷମତାଶାଳୀ ସାହିତ୍ୟିକ ଭାଷାକୁ ନିଜ ଇଚ୍ଛାନୁଯାୟୀ ତିଆରି କରିବାକୁ ଚେଷ୍ଟା କରନ୍ତି ଓ ଏହି ପ୍ରୟାସରୁ ଭାଷାର ଶବ୍ଦମାନ ନାନାପ୍ରକାରରେ ଅର୍ଥାନ୍ତର ଓ ରୂପାନ୍ତର ପ୍ରାପ୍ତ ହୁଅନ୍ତି । ଅନେକ ସମୟରେ ଏହି ବିକାର ଅତ୍ୟନ୍ତ କୌତୁକଜନକ ରୂପରେ ସାଧିତ ହୋଇଥାଏ ।

ତହିଁର ତିନିଗୋଟି ଉଦାହରଣ ନିମ୍ନରେ ଲିଖିତ ହେଲା । କେନ୍ଦ୍ରାପଡ଼ାରେ ବଳଦେବ ଜୀଉଙ୍କର ଶ୍ରୀପଞ୍ଚମୀ ଦିନ 'କଇଁଚି କାକୁଡ଼ି'ବେଶ ହୁଏ । ମୁଁ ସେଠାରେ ଲୋକଙ୍କୁ ଏ ବିଷୟରେ ପଚାରିବାରେ ସେମାନେ କହିଲେ- କଇଁଚିକାକୁଡ଼ି ଯେପରି ଲାଲ ସେହିପରି ଲାଲରଙ୍ଗର ପାଟ ପିନ୍ଧି ଠାକୁରଙ୍କର ବେଶ ହୁଏ ବୋଲି ଏହା କଇଁଚିକାକୁଡ଼ି ବେଶ ବୋଲାଯାଏ । ବାସ୍ତବରେ ଏହା 'କାଞ୍ଚିକାବେରୀ' ବେଶ । ମଫସଲର ଲୋକମାନେ ପୁରୁଷୋତ୍ତମ ଦେବଙ୍କର କାଞ୍ଚୀ ବିଜୟର ଇତିହାସ ଭୁଲିଯାଇ ଥିବାରୁ କାଞ୍ଚିକାବେରୀ ବେଶ ପରିବର୍ତ୍ତରେ ସେମାନଙ୍କର ସୁପରିଚିତ କଇଁଚିକାକୁଡ଼ି ବେଶ କଳ୍ପନା କରିଥାନ୍ତି ଓ ସେହି ଶବ୍ଦକୁ ଏହିପରି ଭାବରେ ବିକୃତ କରି ବ୍ୟବହାର କରିଥାନ୍ତି । ପୁରୀ ମନ୍ଦିରରେ ବାଇଶପାହାଚ ସହିତ ପ୍ରତ୍ୟେକ ହିନ୍ଦୁ ସୁପରିଚିତ, ବାସ୍ତବରେ ପାହାଚ ମୋଟରେ ୧୯ଗୋଟି, ବାଇଶ ଗୋଟି ନୁହେଁ । ଯେତେବେଳେ ମନ୍ଦିର ତିଆରି ହେଲା ତେତେବେଳେ ବାହାରର ପ୍ରାଚୀର ତିଆରି ହୋଇ ନ ଥିବା ସମସ୍ତେ ଜାଣନ୍ତି । ସେହି ସମୟରେ ମନ୍ଦିରରୁ ବାହାରକୁ ଯିବା ଆସିବା ସକାଶେ ଯେଉଁ ପାହାଚ ହୋଇଥିଲା ଏହା ବହିଶ୍ୱପାବଛରୂପେ ବ୍ୟବହୃତ ଓ ଆଖ୍ୟାତ ହେଉଥିଲା । ଏହି ବହିଶ୍ୱପାବଛ ବର୍ତ୍ତମାନ ରୂପାନ୍ତରିତ ହୋଇ ସାଧାରଣ ଲୋକଙ୍କ ମୁଖରେ 'ବାଇଶ ପାହାଚରେ' ପରିଣତ ହୋଇଅଛି ଓ ଏହି ବ୍ୟବହାର ଉତ୍କଳର ପୁରପଲ୍ଲୀରେ ସୁପ୍ରଚଳିତ । ପୁଣି ଆପଣମାନେ ପ୍ରାୟ ସମସ୍ତେ 'ଦୁତୀୟା ଓଷା' ସହିତ ପରିଚିତ । ଏହି ଦୁତୀୟା ଓଷା ବାସ୍ତବିକ ଆଶ୍ୱିନ ମାସର କୃଷ୍ଣପକ୍ଷର ଅଷ୍ଟମୀ ତିଥିରେ ପଡ଼େ ଏବଂ ଅଷ୍ଟମୀ ତିଥିରେ ପଡୁ ଥିବାରୁ ଏହାକୁ ଦୁତୀୟା ଓଷା ନାମ ଦେବା ଅସମୀଚୀନ ବୋଧହୁଏ । ବାସ୍ତବରେ ଏହି ଓଷାରେ ବା ଉପବାସ ଦିନରେ ଲୋକେ ଜୀମୂତ ବାହନଙ୍କ ଉପାଖ୍ୟାନ ଶୁଣନ୍ତି ଓ ତାଙ୍କୁ ପୂଜା କରନ୍ତି । ଲୋକେ ଜୀମୂତ ବାହନ ଶବ୍ଦ ସହିତ ପରିଚିତ ନ ଥିବାରୁ କ୍ରମଶଃ ଏହାକୁ ଦୂତୀ ବାହନ ପରେ ଦୁତୀପାବନରେ ରୂପାନ୍ତର କରି ଏହି ଉପବାସ ଦିନକୁ ଦୁତୀଆ ଓଷା ନାମ କରଣ କଲେ ଓ ଭାଷାରେ ଏହିରୂପ ସୁପ୍ରଚଳିତ । ଏହା ସହିତ ସଂଖ୍ୟାବାଚକ ଦୁତୀୟାର କୌଣସି ସମ୍ପର୍କ ନାହିଁ । ମାତ୍ର ଏହି ବିକୃତି ଭାଷାରେ ଏପରି ଭାବରେ ଆତ୍ମଗୋପନ କରିଅଛି ଯେ, ବ୍ୟବହାର ସମୟରେ ଆମ୍ଭେମାନେ ଏହାର ମୂଳଅର୍ଥ ଗ୍ରହଣ କରିବାକୁ ଆଦୌ ସମର୍ଥ ହେଉନାହିଁ ।

ଏହିପରି ଭାବରେ ଭାଷାରେ ନାନାପ୍ରକାର ଶବ୍ଦର ନାନାପ୍ରକାର ଅର୍ଥାନ୍ତର ଘଟିଅଛି ଓ ଏଗୁଡ଼ିକର ବିଶଦ ଆଲୋଚନା ଶିକ୍ଷା ଓ କୌତୁକପ୍ରଦ । ଉପରେ କେତେଗୁଡ଼ିଏ ବିଷୟର ଅବତାରଣା ମାତ୍ର କରାଗଲା । ମାତ୍ର ମୋର ବୋଧହୁଏ ଏହିପରି ଆଲୋଚନା ଦ୍ୱାରା ଶବ୍ଦର ବ୍ୟବହାର ନିୟନ୍ତ୍ରିତ ହେବ ଓ ଭାଷା ଶିକ୍ଷା ବିଷୟରେ ଲୋକମାନଙ୍କର ଅଧିକ ପ୍ରବୃତ୍ତି ହେବ ଓ ଅପପ୍ରୟୋଗ ନିବାରିତ ହେବ । ଏହି କାରଣରୁ ଏ ବିଷୟରେ ସାହିତ୍ୟ ସମାଜର ବିଶେଷ ଆଲୋଚନାହେବା ବାଞ୍ଛନୀୟ ।

□□□

# ୨୪

# ଉତ୍କଳ ଭାଷା

## କୁନ୍ତଳାକୁମାରୀ ସାବତ

ଯେ ଉତ୍କଳର ସାହିତ୍ୟ କ୍ଷେତ୍ରରେ ମନଃ ପ୍ରାଣ ଢାଳିଦେଇଛି, ସେଇ ଜାଣିଛି ଏ ଜାତିର ମୁକ୍ତିମନ୍ତ୍ର କ'ଣ ! ମୃତସଞ୍ଜୀବନୀ କି ପଦାର୍ଥ !

ସେ ହେଉଚି ଭାଷା । ଆମରି ମାତୃଭାଷା । ଆମର ଏକତ୍ୱ, ଆମର ମହତ୍ତ୍ୱ, ଆମର ଭବିଷ୍ୟତ ଉନ୍ନତି ସବୁ ନିର୍ଭର କରେ ଆମର ଭାଷାର ଉନ୍ନତିରେ । ଆମେ ଜଗତରେ ଗୋଟିଏ ଜାତି ବୋଲି ପରିଗଣିତ ହେଇଚୁ ଏଇ ଭାଷା ସକାଶେ । ଦିନେ ଆମରି ପ୍ରତିବେଶୀ ବଙ୍ଗ ଭାଇମାନେ ପ୍ରବଳ ଚେଷ୍ଟା କରିଥିଲେ ଓଡ଼ିଶାର ସ୍କୁଲ କଲେଜରୁ ଓଡ଼ିଆ ଭାଷାକୁ ତଡ଼ିଦେଇ ବଙ୍ଗ ଭାଷାକୁ ତା ସ୍ଥାନରେ ଅଧିଷ୍ଠିତ କରିବାକୁ । ଭାବି ଦେଖ କି ଦଶା ହୋଇଥାନ୍ତା । ଆମେ ନିଜ ଦେଶରେ ଦୋ'ଭାଷୀ ହୋଇଥାନ୍ତୁ – ଜାତି ହିସାବରେ ଆମେ ଆଜି କୋଉଠି ଥାଆନ୍ତୁ ? ଆମ ଅତୀତ ଗୌରବର ଜମାପୁଞ୍ଜି କେମିତି ସମ୍ଭାଳିଥାନ୍ତୁ ? ଆମ ପ୍ରତାପ, ପୁରୁଷୋତ୍ତମ, ଚୋରଗଙ୍ଗ, ଅନଙ୍ଗଭୀମ, ମୁକୁନ୍ଦ ଦେବଙ୍କୁ ଆମେ ହରାଇ ଥାଆନ୍ତୁ । ଆମ ଭଞ୍ଜ, ଜୟଦେବ, ଦୀନକୃଷ୍ଣ, ସାରଳା, ଜଗନ୍ନାଥ ଆମ ହସ୍ତଚ୍ୟୁତ ହୋଇଥାନ୍ତେ – ଆମ ପୁରୀ କୋଣାର୍କ ଭୁବନେଶ୍ୱର ବାରବାଟୀ ପରପଦଦଳିତ ହୋଇଥାନ୍ତା । ସରିଥାନ୍ତୁ ଆମେ – ମରିଥାନ୍ତୁ ଆମେ – ଆମେ ରସତଳେ ଲୁପ୍ତ ହୋଇ ଯାଇଥାନ୍ତୁ । କିନ୍ତୁ ଧନ୍ୟ ସେ ଗୌରୀଶଙ୍କର – ବିଚିତ୍ରାନନ୍ଦ – ନୀଳମଣି – ପ୍ୟାରୀମୋହନ ଆଦି – ଆମ ଭାଷାକୁ ବଞ୍ଚେଇ ଜାତିକୁ ଯେ ବଞ୍ଚେଇଥିଲେ । କଟକ ପ୍ରିଣ୍ଟିଂ କମ୍ପାନୀ ଆଉ ଉତ୍କଳ ଦୀପିକା– ପ୍ରକୃତରେ ଅତୀତ ଅନ୍ଧକାରର ଉତ୍କଳଦୀପିକା – ଆଜି ଆମେ କୃତଜ୍ଞତାର ସହିତ ଏ ପବିତ୍ର ସାରସ୍ୱତ ପୀଠରେ ଭକ୍ତିର ଅଞ୍ଜଳି ଘେନି ନତମସ୍ତକରେ ତାଙ୍କୁ ପୂଜା କରୁଚୁ !

ସତେ କ'ଣ ଉତ୍କଳରେ ବୀଣାପାଣିଙ୍କର କରୁଣା ଊଣା ? ଉତ୍କଳ ଭାଷା ତ ବୀଣାପାଣିଙ୍କରର ବୀଣାର ଝଙ୍କାର ! ଉତ୍କଳ ଭାଷାର ଯେ ମଧୁର ତରଙ୍ଗମୟ ମୂର୍ଚ୍ଛନାମୟ ସଙ୍ଗୀତମୟ ସ୍ୱରଗ୍ରାମ. ତାକୁ ମୋଭଳି ବିଦେଶରେ ଥିବା ଓଡ଼ିଆ ଭାଇମାନେ ବେଶ୍ ଉପଲବ୍ଧି କରିପାରୁଥିବେ । ଆମେ ନିଜେ ବୁଝିପାରୁ ନାହିଁ ବୈଦେଶିକ କାନରେ ଏ ଭାଷାର ଲଳିତ

ଶବ୍ଦୋଚାରଣ କେଡ଼େ ପ୍ରାଣସ୍ପର୍ଶୀ ! ହିନ୍ଦୀ, ମହାରାଷ୍ଟ୍ରୀ, ଗୁଜରାତି ଭାଷା, ଏଗୁଡ଼ିକ ରୁକ୍ଷ କଠୋର, ବଙ୍ଗ ଭାଷା ମୃଦୁ ମଧୁର ! ଏକରେ ସିଂହର ଗର୍ଜନ, ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ, ଭୀଷଣ ମରୁଭୂମିର ବିରାଟ ଶୂନ୍ୟତା – ଅନ୍ୟଟିରେ କମଳ ବନର ମଧୁର ସୌରଭ – ରସାଳ କୁଞ୍ଜରେ ପିକର ପଞ୍ଚମ । କିନ୍ତୁ କାହିଁ ସେହି ଭାଷା – ଯହିଁରେ ଏ ଦୁଇ ବିପରୀତ ଗୁଣର ପୂର୍ଣ୍ଣ ସମନ୍ୱୟ – କାହିଁ ସେ, ଭାଷା ଯାହାର ବର୍ଣ୍ଣବିନ୍ୟାସ, ଯାହାର ରଚନାଶୈଳୀ, ବିଶୁଦ୍ଧ ଗଠନ ପ୍ରଣାଳୀ, ଉଚ୍ଚାରଣର ସର୍ବାଙ୍ଗ ପୂର୍ଣ୍ଣତା ଏବଂ ମୌଳିକତା ଦେବଭାଷା ସଂସ୍କୃତ ପରେ ଭାରତୀୟ ଭାଷାକୋଷରେ ସ୍ଥାନ ପାଇପାରେ । ସେ ଭାଷା ହେଉଚି ଉତ୍କଳ ଭାଷା । ବଙ୍ଗଳା ଓ ହିନ୍ଦୀ ଉଚ୍ଚାରଣ ବେଳେ ଏକ ପ୍ରକାର କହନ୍ତି; ମାତ୍ର ଲେଖିଲାବେଳେ ଅନ୍ୟ ରକମ ଲେଖନ୍ତି– ଏକାର, ଆକାର, ଇକାର ପ୍ରତ୍ୟୟଗୁଡ଼ିକର ପ୍ରାୟଶଃ ବିକୃତ ଉଚ୍ଚାରଣ କରିଥାନ୍ତି; କିନ୍ତୁ ଓଡ଼ିଆ ଭାଷା ଯାହା ଜିହ୍ୱାରେ ତାହା ପୋଥିରେ । ଅତଏବ ଓଡ଼ିଆ ଭାଷାର, ଗୋଟିଏ ବିଶେଷ ବିଶେଷତ୍ୱ ଅଛି । ଭାରତର ଅସଂଖ୍ୟ ଭାଷାରଣ୍ୟରେ ଏ ଗୋଟାଏ ଅପୂର୍ବ ପାରିଜାତ ! ଏହାର ମହତ୍ତ୍ୱ ସଂସ୍କୃତ ଭାଷାଠାରୁ କଦାପି ଊଣା ନୁହେଁ । ଅସମ୍ଭବ ଭାବ ନାହିଁ ଭାଇ, ଭାରତର ଏକପ୍ରାନ୍ତବାସୀ ଅନାଦୃତ ପରପାଦଦଳିତ ଲାଞ୍ଛିତ ଓଡ଼ିଆ ବୋଲି ମ୍ରିୟମାଣ ହୁଅ ନାହିଁ । ତୁମ ଭାଷା ଗୋଟିଏ ଅପୂର୍ବ ଶ୍ରୀମଣ୍ଡିତ ଭାଷା, ତା'ର ଅତୀତ ବଡ଼ ଗୌରବମୟ ।

ଭାଷାର ସର୍ବବିଧ ଉନ୍ନତି ବିନା କୌଣସି ଜାତି ଜଗତରେ ପ୍ରତିଷ୍ଠା ଲାଭକରି ନାହିଁ । ଭାଷାହିଁ ମାନବର ଜନ୍ମଗତ ଅଧିକାର – ପଶୁଠାରୁ ଯେ ଆମେ ଭିନ୍ନ, ସେ କେବଳ ବାଣୀ ଯୋଗେ । ଅତଏବ ବାଣୀର ବରପୁତ୍ରଗଣ ନିଜ ଜାତିକୁ ଜଗତ୍ ପୃଷ୍ଠରେ ଉନ୍ନତ ମହତ୍ ଦେଖିବାକୁ ଚାହିଁ ତ, ଭାଷାର ସାଧନା କର । ଗାନ୍ଧୀ, ମାକ୍‌ଡ଼ୋନାଲଡ୍ ଯେ ଆଜି ଜଗତରେ ବଡ଼, ରବିଠାକୁର ଯେ ପୃଥିବୀ ପୂଜନୀୟ, ସେ କୋଉଥି ପାଇଁ ? କେବଳ ଭାଷାର ସାଧନା କରି । ଚିନ୍ତାର ଅମୂଲ୍ୟ ଧନର ବାହକ ଭାଷା ! ଯେଉଁ ଭାଷାରେ ଯେତେ ଚିନ୍ତାର ସମ୍ପତ୍ତି ରହିଛି, ସେ ଭାଷା ସେତିକି ଉନ୍ନତ, ସେ ଭାଷା ସେତିକି ନିଖିଳ ମାନବ ହୃଦୟର ଅଧିକାରୀ । ଇଂରାଜୀ ଭାଷାର ବିଶାଳତାହିଁ ତାହାର ରାଜନୈତିକ ଅଧିକାରର ପରିଚାୟକ । ଆଉ ଆମକୁ କେତୋଟି ସାନ କବିତା, କେତୋଟି କ୍ଷୁଦ୍ର ପଦ୍ୟ ବା କେତୋଟି ଦୀର୍ଘ କାବ୍ୟକୁହିଁ ଜୀବନର ସମ୍ବଳ କରି ବସି ରହିବାକୁ ହେବନାହିଁ । ଆମକୁ ସାହିତ୍ୟ-କ୍ଷେତ୍ରର ବିରାଟ ବିସ୍ତୃତି ଲାଗି ପ୍ରାଣପଣେ ଲାଗି ପଡ଼ିବାକୁ ହେବ । ଆମ ଆଖି ଆଗରେ ବଙ୍ଗ ଗୁଜୁରାଟର ଉଦାହରଣ ବିଦ୍ୟମାନ । ଯଦି ବିଦ୍ୟାସାଗରର ଜନ୍ମ ନ ହୋଇଥାନ୍ତା, ଆଜି ବଙ୍ଗ ଥାଆନ୍ତା କୋଉଠି ? ଆଜି ଯେ ଗୁଜୁରାତ ଏଡ଼େ ଉନ୍ନତ, ଗାନ୍ଧୀଭଳି ବରପୁତ୍ର ଜଗତକୁ ଦାନ କରି ପାରିଚି – ସମଗ୍ର ଭାରତରେ ରାଷ୍ଟ୍ରୀୟ ସଂଗ୍ରାମର ଧ୍ୱଜା ଧାରଣକରି ଉଚ୍ଚ ଶିରରେ ଠିଆ ହୋଇଚି – ସେ କାହାର ପ୍ରେରଣା ? ଜଣେ ସାମାନ୍ୟ ମୁସଲମାନ ପତ୍ରକାର ସେଖ୍ ହାଜି ମହମ୍ମଦ – ଗୁଜରାତର ଉଷର ସାହିତ୍ୟ ମରୁଭୂମିରେ ପ୍ରାଣ ସିଞ୍ଚନକାରୀ ଜଣେ ଅକ୍ଳାନ୍ତ ସାହିତ୍ୟସେବୀ ।

ଆଜି ଜାପାନ୍ ତୁର୍କିର ମୂଳ ଭିତ୍ତି ହେଉଚି ତାଙ୍କ ଭାଷାର ବିକାଶ । ରୁଷିଆର ନବ ଆନ୍ଦୋଳନ ମୂଳରେ ରୁଷର ବିରାଟ ସାହିତ୍ୟ । ଇଉରୋପର ସମୁଦାୟ ଅଭ୍ୟୁତ୍ଥାନ ମୂଳରେ ଇଉରୋପୀୟ ଲେଖକଙ୍କର ମସ୍ତିଷ୍କର ସମ୍ପତ୍ତି । ସେ ସାହିତ୍ୟ ବିରାଟ ସାହିତ୍ୟ । ସେଥିରେ ଦର୍ଶନ, ବିଜ୍ଞାନ, ଚିତ୍ର, ସଙ୍ଗୀତ, କଳା ଅଭିନୟ ସବୁର ସ୍ଥାନ । ପାଶ୍ଚାତ୍ୟ ସାହିତ୍ୟ କେବଳ ପଦ୍ୟର ସମଷ୍ଟି ନୁହେଁ, କେବଳ କାବ୍ୟର କେଳିକୁଞ୍ଜ ନୁହେଁ, ପାଶ୍ଚାତ୍ୟ ସାହିତ୍ୟରେ ଯେଉଁସବୁ ଅପୂର୍ବ ରତ୍ନରାଜିର ସମାବେଶ, ତାହାର କାଣିଚାଏ ସୁଦ୍ଧା କି ଉତ୍କଳଭାଷା ଦାବି କରିପାରେ ? ଦର୍ଶନ, ବିଜ୍ଞାନ, ରାଜନୀତି, ଅର୍ଥନୀତି, ସ୍ୱାସ୍ଥ୍ୟତତ୍ତ୍ୱ, ଭୂତତ୍ତ୍ୱ, ଜ୍ୟୋତିର୍ବିଜ୍ଞାନ ଆଦିର ଯେ ଅମୂଲ୍ୟ ଗ୍ରନ୍ଥସମ୍ଭାର ଆଜି ପଶ୍ଚାତ୍ୟ ସାହିତ୍ୟକୁ ସମୃଦ୍ଧ କରି ରଖିଚି, ତାହାର ଏକ ଅଷ୍ଟମାଂଶ କ'ଣ ଉତ୍କଳ ସାହିତ୍ୟରେ ମିଳିପାରେ ? ଆମର ଅତୀତ ସାହିତ୍ୟରେ ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ, ସାରଳା, ସାମନ୍ତ ସିଂହାର, ଭୀମ ଭୋଇ, ଜଗନ୍ନାଥ, ଜୟଦେବ ଆଦି ସହସ୍ର ସହସ୍ର କବି ଓ ସୁଧୀର ସ୍ଥାନ ଥିଲେ ସୁଦ୍ଧା ଆମର ସାହିତ୍ୟ ପୂର୍ଣ୍ଣାଙ୍ଗ ନୁହେଁ । ଆଧୁନିକ ଅନ୍ୟାନ୍ୟ ସାହିତ୍ୟର ଅଗ୍ରଗତି ନିକଟରେ ଆମ ସାହିତ୍ୟ ଅତି ଦରିଦ୍ର କହିଲେ କିଛି ମିଛକଥା ହେବ ନାହିଁ । ଅତୀତର 'ରସକଲ୍ଲୋଳ', 'ବୈଦେହୀଶବିଳାସ', 'ବିଦଗ୍ଧ ଚିନ୍ତାମଣି'ହିଁ ଆମର ସମୁଦାୟ ଅଭାବର ପୂରାଣ ଲାଗି ସମର୍ଥ ନୁହେଁ । ଅତୀତ ନିଶ୍ଚୟ ନିଃସନ୍ଦେହରେ ଆମର ଉଜ୍ଜ୍ୱଳ ଆଉ ଗୌରବମୟ । ଅତୀତର ଦାୟାଦ ହେବାପାଇଁ ଆଧୁନିକ ମଧ୍ୟ ନିତାନ୍ତ ହୀନ ନୁହେଁ । କିନ୍ତୁ ତଥାପି ଆଧୁନିକ ଆମର ଅପୂର୍ଣ୍ଣ, ଆଧୁନିକ ଆମର ବିକଳାଙ୍ଗ, ଆଧୁନିକ ଆମର ଅଭାବଗ୍ରସ୍ତ !

ଉତ୍କଳ ସାହିତ୍ୟର ଆଧୁନିକ ଅବସ୍ଥାହିଁ ଆମର ନିତାନ୍ତ ବିଚାରଣୀୟ; ପୃଥିବୀରେ ଏପରି ଅନେକ ସାହିତ୍ୟ, ଏପରି ଅନେକ ଭାଷା ରହିଚି, ଯାହାର ଅତୀତ ଏକ ପ୍ରକାର ନିଃସ୍ୱ କହିଲେ ଚଳେ । କିନ୍ତୁ ଆଧୁନିକ ଅତି ଗୌରବମୟ । ପ୍ରତିବେଶୀ ବଙ୍ଗ ସାହିତ୍ୟର ଅତୀତ ବା କ'ଣ ? କୃତ୍ତିବାସୀ ରାମାୟଣ, କାଶୀଦାସୀ ମହାଭାରତ, ଦାଶୁରାୟର ପାଞ୍ଚାଳୀ ଛଡ଼ା ଆଉ ଏପରି କି ବିଶିଷ୍ଟ ଗ୍ରନ୍ଥର ବା ଆମେ ସେ ସାହିତ୍ୟରେ ସନ୍ଧାନ ପାଉ ? ହିନ୍ଦୀରେ କବି ତୁଳସୀଦାସ, ଭୂଷଣ, ସୁରଦାସ ଛଡ଼ା ବା ଅନ୍ୟ ଅଧିକ ନାମଜାଦା କବି କେତେ ଜଣ ଅଛନ୍ତି ? ପୁଣି ସେମାନଙ୍କର ରଚନା ସହିତ ଅତୀତ ଓଡ଼ିଆଙ୍କର ରଚନାର ଚାତୁର୍ଯ୍ୟରେ ଉତ୍କଳଭାଷା ସମସ୍ତଙ୍କ ମଧ୍ୟରେ ଅଦ୍ୱିତୀୟ । କିନ୍ତୁ ଏହି ଭାଷାଙ୍କର ଆଧୁନିକ ଅବସ୍ଥା ସହିତ ଉତ୍କଳଭାଷାର ଓ ସାହିତ୍ୟର ତୁଳନା କଲେ ଆକାଶ ପାତାଳ ପ୍ରଭେଦ ସହଜେ ବୁଝାଯିବ ।

ଉତ୍କଳ ସାହିତ୍ୟର ଅତୀତରେ କେତୋଟି ଯୁଗ ବହି ଯାଇଚି । ଏକ ସମୟରେ ସାରଳା ଦାସ ମହାଭାରତର ଯୁଗ ଥିଲା । ସେ ଭାଷା, ସେ ଲିଖନଭଙ୍ଗୀ ସେ ଯୁଗକୁ ଶୋଭା ପାଉଥିଲା; ଆଉ କେହି ସେ ଭାଷାରେ ଲେଖି ବସିଲେ ଲୋକେ ତାକୁ ଆଦର କରି ପଢ଼ିବେ ନାହିଁ । ଆଉ ଏକ ସମୟରେ ଥିଲା ଭଞ୍ଜ ସାହିତ୍ୟର ଯୁଗ । ସେ କ୍ଲିଷ୍ଟ, କଠୋର, ବହୁଅର୍ଥବୋଧକ ବର୍ଣ୍ଣବିନ୍ୟାସ ଆଜି ଆଉ ଭଲ ଲାଗୁଛି କି ? ଏହିପରି ଆଧୁନିକ ସାହିତ୍ୟରେ

ମଧ୍ୟ କେତୋଟି ଯୁଗ ବହିଗଲାଣି । ଯଦିଚ ଆଧୁନିକ ସାହିତ୍ୟର ଜନ୍ମ ହେଇଚି ସେଦିନ ରାଧାନାଥ ମଧୁସୂଦନଙ୍କ ଲେଖାରୁ ତଥାପି ଆଜିକାଲି ଜଗତର ସଭ୍ୟତାର ଦ୍ରୁତ ଉତ୍ଥାନ ପତନ ସହିତ ସାହିତ୍ୟର ଗଭୀର ସମ୍ବନ୍ଧ; ସେଥିପାଇଁ ଅତିଶୀଘ୍ର ଗତିରେ ସାହିତ୍ୟିକ ରାଜ୍ୟରେ ବିବର୍ତ୍ତନ ଚାଲିଚି । ପଣ୍ଡିତ ବିଦ୍ୱାନ୍‌ମାନେ କେବଳ ଆଜିକାଲି ସାହିତ୍ୟର ପଣ୍ଡା ପୁରୋହିତ ନୁହନ୍ତି । ଗରିବ ଚଷା, କ୍ଷେତର ମୂଲିଆ, କଳର ମଜୁରିଆ, ଜେଲ-କଇଦୀ-ଏମାନେ ଆଜି ସାହିତ୍ୟ ସମ୍ପତ୍ତି ଲାଭ ଲାଗି ଉତ୍ସୁକ-ସାହିତ୍ୟର ସୁଧାରସ ପାନ କରିବାକୁ ଲାଳାୟିତ । ଆମେ ପ୍ରକୃତରେ ଏମାନଙ୍କ ପାଇଁ କଣ ସାହିତ୍ୟ ଲେଖୁଚୁ ? ଗରିବ ପଲ୍ଲୀବାସୀର ବୋଧୋପଯୋଗୀ କି ସାହିତ୍ୟ ଓଡ଼ିଆ ଭାଷାରେ ସୃଷ୍ଟ ହେଲାଣି ? ଚଷା, ତନ୍ତୀ, ବଢ଼େଇ, କମାର, ଅଟାରୀ, ମୋଚୀ, ବାଉରୀ, ହାଡ଼ି, ପାଣ ଲାଗି କି ସାହିତ୍ୟ ଆମ ସାହିତ୍ୟିକ ଭାଇମାନେ ଓ ଭଉଣୀମାନେ ଗଢୁଛନ୍ତି ? ସେ ପୁରୁଣା ଯୁଗର ସେ ଗଢେ ଲମ୍ବା ଚଉଡ଼ା ପଦାବଳୀ ସମନ୍ୱିତ ମହାକାବ୍ୟମାନ ତିଆରି କରି ବସିଲେ ଏ ଭାବପ୍ରବଣ ଛାୟାବାଦିର ଯୁଗକୁ ସାଜିବଟି ?

ପୂର୍ବରେ କେବଳ ସଂସ୍କୃତଜ ଶବ୍ଦକୁ ଏକାଠି ଯୋଡ଼ିଲେ ଗୁରୁଚଣ୍ଡାଳୀ ଦୋଷ ହୋଇଯାଉଥିଲା; କିନ୍ତୁ ଆଜିକାଲି ସେହି ଗୁରୁଚଣ୍ଡାଳୀ ଦୋଷ ସେହି ମଧୁର ଗ୍ରାମ୍ୟ କଥ୍ୟ ଶବ୍ଦର ଭାଷାର କବିତାହିଁ କର୍ଣ୍ଣରସାୟନ । ଲେଖକମାନଙ୍କର ପ୍ରତ୍ୟେକ ଲେଖା ଲେଖିଲାବେଳେ ଏଇ ନବ ଯୁଗର ମଧୁର ତରଳ, ଲଳିତ ମୋହନ ଭାବବ୍ୟଞ୍ଜୀ ଭାଷା ଦିଗକୁ ବିଶେଷତଃ ଗଦ୍ୟର ଭାଷାକୁ ଧ୍ୟାନ ଦେଇ ବହି ଲେଖିବା ଉଚିତ । ଅପର ଭାଷାରୁ ଶବ୍ଦାହରଣ କରିବା ମୋ ମତରେ ଅନୁଚିତ ନୁହେଁ - ସର୍ବଥା ଉଚିତ । ପୃଥିବୀର ପ୍ରତ୍ୟେକ ବିଶିଷ୍ଟ ଭାଷା ଏପରି କରିଛନ୍ତି । ଇଂରାଜୀ, ବଙ୍ଗଳା, ଫ୍ରେଞ୍ଚ, ଉର୍ଦ୍ଦୁ, ପ୍ରାୟ ସବୁ ଭାଷାରେ ଏକଥା ଚଳିଚି; ତା ବୋଲି ତାଙ୍କ ବିଶିଷ୍ଟତା ହଜିନାହିଁ । ବିଶିଷ୍ଟତା ନଷ୍ଟହୁଏ ଚୋରିକଲେ, ନକଲ କଲେ; ଭିନ୍ନ ଭିନ୍ନ ଭାଷାର ପ୍ରଚଳିତ ଶବ୍ଦ ବ୍ୟବହାର ନ କଲେ ଭାଷା ପ୍ରତିଦିନର ଅଭାବ ଅଭିଯୋଗର ପୂରଣ କରି ବଢ଼ିବ କୋଉଠୁ ? ଆମେ କଥାରେ କୋଟ, ଲଣ୍ଠନ୍, ହାରମୋନିୟମ୍, ପର୍ଦ୍ଦା, ମେଜ, ଦରାଜ, ଇସ୍ତିହାର ଆଦି କହୁଥିବୁ; କିନ୍ତୁ ଲେଖିବାବେଳକୁ ଯଦି ସମସ୍ତ ସଂସ୍କୃତ ଅନୁବାଦ କରି ଅଙ୍ଗରଖା, ଦୀପ, ବାଦ୍ୟ ଯନ୍ତ୍ର, ଆବରଣ ଆଦି ଲେଖି ବସୁ, ତେବେ କାହାର ମନୋରଞ୍ଜକ ବା ଅର୍ଥବୋଧକ ହେବ ? ନିତ୍ୟ ବ୍ୟବହାର୍ଯ୍ୟ ଶବ୍ଦ ବୈଦେଶିକ ହେଲେ ସୁଦ୍ଧା ଗଦ୍ୟ ପଦ୍ୟରେ ସ୍ଥାନ ପାଇବା ଉଚିତ । ତାକୁ ସବୁ ନିଜର କରି ନେବା ଭଲ - ମଧ୍ୟ ଏ କଥା ବୈଜ୍ଞାନିକ ଲେଖାମାନଙ୍କରେ ବେଶି ପ୍ରୟୋଜନସିଦ୍ଧ ହେବ । ଔଷଧ, ରସାୟନ, ଭୂତତ୍ତ୍ୱ ଆଦି ବିଶିଷ୍ଟ ବୈଜ୍ଞାନିକ ବିଭାଗରେ ନିତ୍ୟ ପ୍ରଚଳିତ ଶବ୍ଦଗୁଡ଼ିକର କଠିନ କ୍ଲିଷ୍ଟ ଅନୁବାଦ ନ କରି ଲୋକମୁଖ ପ୍ରଚଳିତ ଶବ୍ଦକୁ ଗ୍ରହଣ କରିନେବା ବିଜ୍ଞତା । ଇଂରାଜୀରେ ଏପରି ଆରବୀ ପାର୍ସି ଲାଟିନ୍ ସଂସ୍କୃତ ସବୁ ଭାଷାର ଲକ୍ଷ ଲକ୍ଷ ଶବ୍ଦ ସେ ଭାଷାକୁ ଏଡ଼େ ବଳଶାଳୀ କରିଚି ସିନା ! ସାଧାରଣ ଉଦାହରଣ ସ୍ୱରୂପ ସଂସ୍କୃତ ସ୍ୱେଦ (ଝାଳ) ଇଂରାଜୀ (ସ୍ୱେଟ୍), ଉର୍ଦ୍ଦୁ-ସୋଡ଼ା ଇଂରାଜୀ ମଧ୍ୟ ସୋଡ଼ା; ପ୍ରାୟ ଔଷଧାଦିର ନାମ ତ ଅଧିକାଂଶ ଯୁନାନି

ଭାଷାରୁ ଗୃହୀତ । ଆମର ମଧ୍ୟ ବର୍ତ୍ତମାନ ଆନ୍ତର୍ଜାତିକ ଶବ୍ଦଗୁଡ଼ିଏ ଆନନ୍ଦରେ ଗ୍ରହଣ କରି ନେବା ପ୍ରୟୋଜନୀୟ । ଏହାଛଡ଼ା ଭିନ୍ନ ଭିନ୍ନ ଭାରତୀୟ ଭାଷାର ଢଙ୍ଗ ଢାଞ୍ଚା ମଧ୍ୟ ଆମ ଭିତରେ ଅନେକ ପଶିଲାଣି । ହିନ୍ଦୀ, ବଙ୍ଗଳା, ଗୁଜରାତିର ନାନା ରଙ୍ଗ ଢଙ୍ଗର ଲେଖା ଆମେ ଆଜିକାଲି ନିଃସଙ୍କୋଚରେ ଗ୍ରହଣ କରୁଚୁ । ସେଥିରେ ମଧ୍ୟ କିଛି ଦୋଷ ନାହିଁ । କିନ୍ତୁ ଦୋଷ ଅଛି ଯଦି ଆମେ ବିକୃତ ବିକଳାଙ୍ଗ କରି ଯେକୌଣସି ଭାଷାର ଯେ କୌଣସି ଶବ୍ଦ ଯୋଡ଼ି ମନକାଣିଆ ରଚନା କରି ବସୁ । ଖାଇବା, ବସିବା, ଲୁଗା ପିନ୍ଧିବା ସବୁର ଗୋଟିଏ ଧରଣ ଅଛି । ରଚନାର ମଧ୍ୟ ଗୋଟିଏ ସୁଚାରୁ, ସୁସଙ୍ଗତ ଗଠନପ୍ରଣାଳୀ ଅଛି । ଆଧୁନିକ ଲେଖକମାନଙ୍କର ଲେଖା ପଢ଼ିଲେ, ତାଙ୍କ ରଚନାର କିମ୍ଭୂତ କିମାକାର ସ୍ୱରୂପ ଦେଖିଲେ କେହି ନ ହସି ରହି ପାରିବି ନାହିଁ । ଖାଣ୍ଟି ଓଡ଼ିଆ ରଚନା କରୁ କରୁ ହଠାତ୍ ଗୋଟାଏ ଇଂରାଜୀର ଦୁରୂହ ଶବ୍ଦଟିଏ ମଝିରେ ପୋପାଡ଼ି ଦେଲାଭଳି ଭର୍ତ୍ତିକରି ଦେବା, କାହିଁ ବଙ୍ଗଳା ଧରଣର କଥାବାର୍ତ୍ତାର ଅବିକଳ ଅନୁବାଦ ଆଣି ଆମ ବିଚରା ଓଡ଼ିଆ ଓଡ଼ିଆଣୀଙ୍କ ମୁହଁରେ ମଢ଼େଇବା, ଏସବୁ କଣ ଲେଖା ନା ଲେଖାର ଭୂତ ? ସେସବୁ ଲେଖା ପଢ଼ିଲେ ମନେହୁଏ, ଓଡ଼ିଆ ଜୀବନରେ ଓଡ଼ିଆ ପରିବାରରେ ଓଡ଼ିଆଙ୍କ ଘରେ ବା ଭାଷାରେ ଆମ ନବ୍ୟ ଲେଖକମାନେ ତାଙ୍କ ମନୋମତ ରୋମାନ୍ସ ପାଉନାହାନ୍ତି । ସେଥିପାଇଁ ସେହି ରୋମାନ୍ସର ଛଡ଼ାଛଡ଼ି କରିବାକୁ ଯାଇ ଦିଅଁ ଗଢୁ ଗଢୁ ମାଙ୍କଡ଼ ଗଢ଼ିଲା ଭଳି ଅଡୁଆ ତଡୁଆ କରି ଯାହା ପାରିଲେ ଗୋଟାଏ ଖେଚିଡ଼ି ତିଆରି କରି ଥୋଇ ଦେଉଚନ୍ତି । ଯେଉଁ ଭାଷାର ବିଚିତ୍ର ପଲ୍ଲୀ ସାହିତ୍ୟ ସରସତା, ସରଳତା ଓ ମଧୁରତା ଗୁଣରେ ଭାରତର ସମଗ୍ର ପଲ୍ଲୀ ସାହିତ୍ୟରେ ଶ୍ରେଷ୍ଠ, ଯାହାର ପଦେ ପଦେ କବିତାରେ ଅମୃତର ଝରଣା, ଆମ ନବ୍ୟ ଲେଖକ ପଞ୍ଚାଙ୍କୁ ସେ ଭାଷା, ସେ ଦେଶର ଚାଲି ଚଳଣରେ ଏଡ଼େ ନୀରସ ରୁକ୍ଷତା କୋଉଠୁ ଆସି ଯେ ଘେରି ବସୁଚି, କିଛି ଜଣାପଡୁ ନାହିଁ । ସାରୁ ପତ୍ରତଳେ ବେଙ୍ଗ ବସିଲା ପରି ପର ଓଳି ତଳେ ବସି ପର ଲୁଗା ପିନ୍ଧି ଯାତ୍ରାକୁ ଗଲା ଭଳି ଏ ପରବୋଲା ଢଙ୍ଗ ଆମ ଆଧୁନିକ ସାହିତ୍ୟ ବିଶେଷତଃ ଗଦ୍ୟ ସାହିତ୍ୟରୁ ଦୂର ନ ହେଲେ ଯାର ପ୍ରଭାବ ଭାଷା ଉପରେ ଶେଷକୁ ଅନିଷ୍ଟକର ହେବ । କପି କରିବାକୁ ହେଲେ କଣ ଖାଲି ଦୁନିଆ ସାକରେ ବଙ୍ଗ ସାହିତ୍ୟ ପଡ଼ି ରହିଚି ? ଭଲା ଆମ ଦେଶର ଯୁବକମାନେ ରୁଷ ସାହିତ୍ୟରୁ କପି କରନ୍ତେ- ଫ୍ରେଞ୍ଚ ଜର୍ମାନୀ ସାହିତ୍ୟର ଗଭୀର ଚିନ୍ତାସମ୍ପତ୍ତି ଭଲା ଆୟତ୍ତ କରି ଓଡ଼ିଆ ଭାଷାର ମୁଖ ଉଜ୍ଜ୍ୱଳ କରନ୍ତେ ! ମିଛେ ମିଛେ ନାଁ ସାରିବାର କଣ ଏଇ ପନ୍ଥା ? ଏ କପିଗିରି କେବଳ ନିଜର ମହତ୍ତ୍ୱ ମର୍ଯ୍ୟାଦାର ଘାତକ ଏବଂ ଭାଷାର ବହୁ ଅତୀତରୁ ସଞ୍ଚିତ ସୁଯଶରାଶିରେ ମିଛରେ କାଳିମା ବୋଳିବା କଥା । ଏ ଦିଗକୁ ଆମର ନବ୍ୟ ଲେଖକ ଲେଖିକାଙ୍କର ବିଶେଷ ଧ୍ୟାନ ଦେବା ଉଚିତ । ସେମାନଙ୍କର ଲେଖା ଜାତୀୟ ସାହିତ୍ୟର ଭବିଷ୍ୟତ । ନିଜ ହାତରେ ନିଜ ଭବିଷ୍ୟତ ମାଟିରେ ମିଶେଇବା କର୍ତ୍ତବ୍ୟ ନୁହେଁ ।

ମୋର ତାଙ୍କୁ ବିଶେଷ ଅନୁରୋଧ, ସେମାନେ ଓଡ଼ିଶାର ପୁରାତନ ଗ୍ରାମ୍ୟ ରଚନା

ଗୁଡ଼ିକୁ ମନୋଯୋଗ ସହିତ ପଢ଼ନ୍ତୁ, କେବଳ ମହା ମହା କାବ୍ୟହିଁ ଜାତୀୟ ସାହିତ୍ୟ ନୁହେଁ । ପଲ୍ଲୀର ସୁମଧୁର ପଦାବଳୀ ମଧ୍ୟରେ ଏତେ ଉଚ୍ଚଦରର ସରଳ କଥା ଭାଷା, ଗଭୀର ମନସ୍ତତ୍ତ୍ୱ, ଦୈନନ୍ଦିନ ଜୀବନର ସୌନ୍ଦର୍ଯ୍ୟ ପୂରି ରହିଚି । ଯେଉଁମାନେ ପଲ୍ଲୀର ସୁମଧୁର ସାହିତ୍ୟ ପାଠକ, ତା ସେହିମାନେ ଜାଣନ୍ତି । ମୁଁ ହିନ୍ଦୀରେ ଓଡ଼ିଆ ପଲ୍ଲୀ ରଚନା ଭଳି ରଚନା ଅତି ଅଳ୍ପ ଦେଖିଚି । ଆଉ ଆଧୁନିକ ଜୀବନର ଚିନ୍ତାଧାରା ଯଦି ଜୀବନ୍ତ ସରସ ଭାବରେ ଚିତ୍ର କରିବାକୁ ଇଚ୍ଛା, ତାହେଲେ ତା ପାଇଁ ମାନବ ଚରିତ୍ରରେ ଓ ଦେଶର ବର୍ତ୍ତମାନ ଅବସ୍ଥାର ନାନାଦିଗରେ ଗଭୀର ଅଭିଜ୍ଞତା ଅର୍ଜନ କରିବା ଶ୍ରେୟସ୍କର । ପରର ପୁସ୍ତକ ପଢ଼ି ପରର ରଚନାରୁ କାଟି ଛାଣ୍ଟି କେହି ପ୍ରକୃତ ଲେଖକହୋଇ ପାରେ ନାହିଁ, ନିଜର ରକ୍ତ ଜଳା ସାଧନା ପରମାବଶ୍ୟକ । ଆଉ ଗୋଟିଏ କଥାର ବିଶେଷ ଉଲ୍ଲେଖ ପ୍ରୟୋଜନୀୟ ଅର୍ଥାତ୍ ଆଜିକାଲିର ନବ୍ୟ ଲେଖକମାନଙ୍କର ଅନ୍ୟ ସାହିତ୍ୟର ଅନ୍ୟ କବିଙ୍କର ପଦକୁ ପଦ ଘେନି ଆସି ନିଜ କବିତା ବା ଲେଖାରେ ଯୋଡ଼ିଦେବା । 'ଚକ୍ଷେ' ଶବ୍ଦର ବଙ୍ଗଳାରେ ବିଶେଷ ବ୍ୟବହାର ହୁଏ; 'ବାଦଲ'ଶବ୍ଦ ପ୍ରକୃତରେ ହିନ୍ଦୀ ବା ଉର୍ଦ୍ଦୁ । ବଙ୍ଗାଳୀ କବିମାନେ ସେ ଶବ୍ଦଟି ଖୁବ୍ ବ୍ୟବହାର କରିଚନ୍ତି । ମୋ ମତରେ 'ଚକ୍ଷେ' ବା 'ବାଦଲ' ଓଡ଼ିଆ ଭାଷାରେ ପ୍ରୟୋଗ କଲେ ଦୋଷାବହ ନୁହେଁ; କିନ୍ତୁ ପ୍ରୟୋଗର ଢଙ୍ଗଟା ଓଡ଼ିଆ ଢଙ୍ଗ ହେଲେ ଯାଇ "ଓରମାନ, କଜିଆ, ତଲୁଆର, ହଟକ ବିଶିନୀ" ଆଦି ଶବ୍ଦର ପୁରୁଣା କବିଙ୍କର ପ୍ରୟୋଗଭଳି ସୁନ୍ଦର ହୋଇଯିବ । ତା ନ କରି ଅନ୍ୟ ଦେଶର ଅବା ନିଜ ଦେଶର ସୁଦ୍ଧା ଅନ୍ୟ ବ୍ୟକ୍ତିର ରଚନାର ପଦକୁ ପଦ ଘେନି ଆସି ନିଜ ନାଁରେ ଯୋଡ଼ିଦେବା ଭୟାନକ ଜୁଆଚୋରୀ ଛଡ଼ା ସତ୍ ସାହିତ୍ୟିକର ମର୍ଯ୍ୟାଦାଜନକ ନୁହେଁ । 'ଘନ ବରଷେ ଲୋ ବାଦଲ ରାତି' ଲେଖିଲେ କିଛି ଦୋଷ ହେବନାହିଁ; କିନ୍ତୁ ଚକ୍ଷୁ ଥାଉ ଥାଉ ଏକାରାନ୍ତ ସପ୍ତମୀ ଅଧିକରଣ 'ଚକ୍ଷେ'ଟା ଭାଷାରେ କ୍ଲିଷ୍ଟତା ଆଣିବା ଛଡ଼ା ସୁନ୍ଦରତା ବଢ଼ାଇ ପାରିବ ନାହିଁ; କାରଣ ଓଡ଼ିଆର ଶିଷ୍ଟ ପ୍ରୟୋଗ 'ଲୋଚନେ' 'ନୟନେ' 'ଆଖିରେ' ଏପରି ଗୋଟାଏ ଶବ୍ଦର ଶତ ଶତ ଉପଶବ୍ଦ ଥାଉ ଥାଉ ଆମେ ଶବ୍ଦ ଦରିଦ୍ରଙ୍କ ଭଳି ପରର ଖଞ୍ଜା ଭିତରକୁ ପଶିଯିବାରେ ପ୍ରୟୋଜନଟା କ'ଣ ? ତଥାପି ଏ କଥାସହ, ପ୍ରୟୋଗ ଭାଷାର ଢଙ୍ଗକୁ, ଗଠନ ଭଙ୍ଗୀକୁ ଚାହିଁ ବିଚାରଣୀୟ । ଆମ ଦେଶକୁ ଲାଗି ବଙ୍ଗ ଦେଶ । ପାଶ୍ଚାତ୍ୟ ସାହିତ୍ୟକୁ ନକଲ କରି ବଙ୍ଗ ସାହିତ୍ୟ ଖୁବ୍ ବଢ଼ି ଯାଇଚି । ସେଥିରେ ଜଗଦ୍‌ବିଖ୍ୟାତ କବିମାନେ ରହିଚନ୍ତି । ତାଙ୍କ କବିତା ଓ ଲେଖାର ଢଙ୍ଗକୁ ଆଣି ଓଡ଼ିଆରେ ପୂରେଇବା ମଧ ଆଧୁନିକ ଲେଖକଙ୍କ ମଧ୍ୟରେ ଗୋଟାଏ ଫେସନ ହୋଇଚି । ସେହିଟା ପାଇଁ ଯେତେ କଜିଆ କଲେ ସୁଦ୍ଧା ସେ ଘଟଣା ଯୁଗକୁ ଚାହିଁ ଘଟିଯାଏ । ସେହିପରି କତିପୟ ଲେଖକଙ୍କ ଲେଖା ଯୋଗୁଁ ଯେ ଓଡ଼ିଆ ଭାଷା ନିଜର ବୈଶିଷ୍ଟ୍ୟ ହରାଇପାରେ, ଯା ମୋର ବିଶ୍ୱାସ ନୁହେଁ; କାରଣ ଗୋଟାଏ ଜାତିର ଜୀବନ୍ତ ଭାଷା ନିଜର ଗଠନପ୍ରଣାଳୀ, ରୀତି ନୀତି, ଢଙ୍ଗଢ଼ାଙ୍ଗରେ ଅନ୍ୟ ଜାତିର ଭାଷାଠାରୁ ସହଜେ ବଡ଼ ଭିନ୍ନ । ହଁ, କେହି କହିପାରନ୍ତି, କାଳେ ବଙ୍ଗ ଭାଷାର ପ୍ରଭାବ ଓଡ଼ିଆ ଭାଷାକୁ ହୀନ କରି ପେଷି

ମାରିଦେବ । ସୌଭାଗ୍ୟକୁ ତା ମଧ ଘଟିବା ସମ୍ଭବପର ନୁହେଁ । ଗୋଟିଏ ବିଶିଷ୍ଟ ଜାତିର ବିଶିଷ୍ଟ ସାହିତ୍ୟ ଓ ଇତିହାସ ଥିବା ସତ୍ତ୍ୱେ ଅନ୍ୟ ଭାଷା କଦାପି ତା'ର ନିଜତ୍ୱ ନଷ୍ଟ କରି ପାରିବ ନାହିଁ, ଏହା ଧ୍ରୁବସତ୍ୟ । ଆଉ ମଧୁରତା ଓ ଅନ୍ୟାନ୍ୟ ଗୁଣରେ ଯଦି କେହି କହେ, ଓଡ଼ିଆଭାଷା ବଙ୍ଗ ଭାଷାଠାରୁ ହୀନ, ତେବେ ସେ ମୂର୍ଖ, ବାଚାଳ । କାରଣ ଭାଷା କେବଳ କୋମଳ ହେଲେ ମଧୁର ହୁଏନାହିଁ । ଉର୍ଦ୍ଦୁ ଭାଷାକୁ 'ଶେରକି' ଅର୍ଥାତ୍ ସିଂହର ଭାଷା କୁହାଯାଏ, କାରଣ ସୌନ୍ଦର୍ଯ୍ୟ, ମଧୁରତା ଓ ବିଶିଷ୍ଟତାରେ ଉର୍ଦ୍ଦୁ ବଙ୍ଗଳା ଓ ହିନ୍ଦୀଠାରୁ ଶ୍ରେଷ୍ଠ - ଶତ ଶତ ବର୍ଷର ଦରବାରୀ ଭାଷା । ଇଂରାଜୀ ଭାଷା ଭଳି ଉର୍ଦ୍ଦୁଭାଷା ଆଦବ କାଇଦାରେ ଅତି ଦୁରସ୍ତ ଆଉ ରାଷ୍ଟ୍ର ଭାଷା ହିନ୍ଦୀର ଭାଗ୍ୟ ମଧ ସେଇ ମିଶ୍ରଭାଷା ଯୋଗୁଁ ପଲ୍ଲବିତ । ନୋହିଲେ ସଂସ୍କୃତଜ ପୂର୍ବ ହିନ୍ଦୀ କଦାପି ଭାରତର ରାଷ୍ଟ୍ରଭାଷା ହେବା ଯୋଗ୍ୟ ନୁହେଁ । ନାଗରୀ ଲିପି ଏବଂ ହିନ୍ଦୁସ୍ତାନୀ ଭାଷା ହେଉଛି ରାଷ୍ଟ୍ରଭାଷା । ସେ ଭାଷାରେ ସଂସ୍କୃତ ଏବଂ ଦେଶ ପ୍ରଚଳିତ ଆରବୀ, ପାର୍ସି ଓ ଇଂରାଜୀର ଶବ୍ଦସବୁ ଏକାଠି କରା ହୋଇଛି । ଏହି ହିନ୍ଦୀର ପ୍ରଧାନ ପୃଷ୍ଠପୋଷକ ମହାତ୍ମାଗାନ୍ଧୀ ଓ ସ୍ୱାମୀ ଦୟାନନ୍ଦଙ୍କ ଠାରୁ ଆରମ୍ଭ କରି ସମୁଦାୟ କଂଗ୍ରେସୀଙ୍କ ଭାଷା ଏହି ହିନ୍ଦୁସ୍ତାନୀ ଭାଷା । ଉଦାହରଣ ରୂପେ - 'ସ୍ୱାଧୀନ ଭାରତ' (ସଂସ୍କୃତ ହିନ୍ଦୀ) - ଆପାଦ ହିନ୍ଦୁସ୍ତାନ (ରାଷ୍ଟ୍ରଭାଷା ହିନ୍ଦୁସ୍ତାନୀ) ଗୀତ ପରମପୂଜ୍ୟ ତ୍ରିରଙ୍ଗା ପ୍ୟାରା - ଝଣ୍ଡା (ପତାକା) ଉଞ୍ଚା ରହେ ହମାରା-ହମ୍ ବନେ ହମ ଦରଦ୍ ଏସବୁ ଉର୍ଦ୍ଦୁ ଅର୍ଥ ରାଷ୍ଟ୍ର ଭାଷାର ଶବ୍ଦ ।

ହିନ୍ଦୁସ୍ତାନୀ ଭାଷା କାହିଁକି ରାଷ୍ଟ୍ରଭାଷା ? ଅର୍ଥ ସେଥିରେ ତେଜ ଓଜଃ ବୀର୍ଯ୍ୟ ରହିଛି । କେବଳ ସେ ବଙ୍ଗଭାଷା ପରି ମୃଦୁଭାଷା ନୁହେଁ । ଅତଏବ ଓଡ଼ିଆ ଭାଷାରେ ନାରୀକଣ୍ଠର କୋମଳତା ଓ ଲଳିତ ଝଙ୍କାର ସହିତ ପୁରୁଷ କଣ୍ଠର ରୁକ୍ଷ ପୁରୁଷ ଗମ୍ଭୀର ଓଜଃବୀର୍ଯ୍ୟ ଥାଉ ଥାଉ ଯଦି କାହାରି କାନକୁ ଅସୁନ୍ଦର କଠୋର ବା ମନ୍ଦ ଶୁଭେ, ତା ହେଲେ ଆମେ ଆଉ କ'ଣ କରିପାରୁ ? ଆମ ଭାଷାରେ କେବଳ ଲଳିତ 'ଲ' ଓ 'ନ'ର ଉଚ୍ଚାରଣ ନାହିଁ - କଠୋର 'ଳ' ଓ 'ଣ' ଉଚ୍ଚାରଣ ଥାଇ ଭାଷାକୁ ପୂର୍ଣ୍ଣାଙ୍ଗ କରିଚି । ହିନ୍ଦୀର ଉଚ୍ଚାରଣ ମଧ ବଙ୍ଗଳାର ଉଚ୍ଚାରଣ ଠାରୁ ଢେର୍ ଭଲ । ବଙ୍ଗଳା ଭାଷାର ଉଚ୍ଚାରଣଗତ ଦୋଷ ଏତେ ଅଧିକ ଯେ, ଭାରତୀୟ ଅନ୍ୟାନ୍ୟ ଭାଷା ବଙ୍ଗୀୟମାନେ ସହଜେ ଉଚ୍ଚାରଣରେ ଆୟତ୍ତ କରିପାରନ୍ତି ନାହିଁ । ମୁଁ କୌଣସି ବଙ୍ଗାଳୀକୁ ପ୍ରାୟ ହିନ୍ଦୀ ଇଂରାଜୀ ଓଡ଼ିଆ ବା ତେଲଗୁରେ ଶୁଦ୍ଧ ଉଚ୍ଚାରଣ କରିବାର ଶୁଣି ନାହିଁ; ମାତ୍ର ଓଡ଼ିଆମାନେ ଅନାୟାସରେ ଅନ୍ୟଭାଷାର ଶୁଦ୍ଧ ଉଚ୍ଚାରଣ କରି ପାରନ୍ତି । କାରଣ ଆମର ବର୍ଣ୍ଣମାଳା ଉଚ୍ଚାରଣ ଦିଗରେ ବଙ୍ଗଳା ଭାଷାଠାରୁ ଅଧିକ ପୂର୍ଣ୍ଣାଙ୍ଗ । ଆମେ ବିକୃତ 'ଓ'କାରଗତ ଉଚ୍ଚାରଣ ନ କରି ଶୁଦ୍ଧ ସଂସ୍କୃତଜ 'ଅକାରରେ' ଉଚ୍ଚାରଣ କରିଥାଉ - ଅର୍ଥ 'ଅ'କୁ 'ଓ', 'କ'କୁ 'କୋ' 'ମନ'କୁ 'ମୋନ୍' 'ଘର'କୁ 'ଘଡ଼', 'ଲେଖା'କୁ 'ଲ୍ୟାଖା', 'ସ'କୁ 'ଶ' ଉଚ୍ଚାରଣ କରି ନ ଥାଉ । ପ୍ରତ୍ୟେକ ବଙ୍ଗ ଭାଷାଭିଜ୍ଞ ବଙ୍ଗ ଭାଷାର ବିକୃତ କୋମଳ ଉଚ୍ଚାରଣ ସହିତ ପରିଚିତ । ହିନ୍ଦୀର ମଧ ସେହି ଦଶା ।

ଇକାର, ଉକାରର ତ ଉଚ୍ଚାରଣ ପ୍ରାୟ ଲୁପ୍ତ । ଉଦାହରଣ ସ୍ୱରୂପ 'ବିଦେଶ'କୁ 'ବଦେଶୀ', 'ବିଲାୟତୀ'କୁ 'ବଲାୟତୀ' 'ମହୋଦଧି'କୁ 'ମହୋଦଧ୍', 'ତତ୍ତ୍ୱନିଧି'କୁ 'ତତ୍ତ୍ୱନଧ୍' ଏହିପରି ଆରବୀ ପାର୍ସିମୂଳକ ଅତି ଦୃଢ଼ ଉଚ୍ଚାରଣ ସହିତ ତୁଳନା କଲେ ଓଡ଼ିଆ ଭାଷାର ଉଚ୍ଚାରଣର ବିଶିଷ୍ଟତା ଏବଂ ସାର୍ଥକତା ସହଜେ ବୁଝାଯିବ । ଏସବୁ ସେଥିପାଇଁ କୌଣସି ଝଗଡ଼ାର କାରଣ ନୁହେଁ; ଏସବୁ ଭିନ୍ନ ଭିନ୍ନ ଭାଷାର ନିଜତ୍ୱ । ସଂସ୍କୃତ ଶବ୍ଦର ମଧ ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ରୂପେ ପ୍ରୟୋଗ ହୋଇଥାଏ । ଉଦାହରଣ ସ୍ୱରୂପ ଓଡ଼ିଆ ବଙ୍ଗଳାଠାରୁ ହିନ୍ଦୀରେ 'ଇକ୍' ପ୍ରତ୍ୟୟାନ୍ତ ଶବ୍ଦର ବହୁଳ ପ୍ରଚଳନ – ଯେପରିକି ମାର୍ମିକ, ହାର୍ଦ୍ଦିକ, ସାର୍ବଜନିକ, ପ୍ରାନ୍ତିକ । ଆଉ ଆମେ ସେଇ ଜାଗାରେ ମାର୍ମିକ ବାସନା, ହାର୍ଦ୍ଦିକ ସହାନୁଭୂତି, ସାର୍ବଜନିକ ସଂସ୍ଥା ନ ଲେଖି ଲେଖିଥାଉ ମର୍ମର ବାସନା, ହୃଦୟର ସହାନୁଭୂତି, ସାର୍ବଜନୀନ ସଂସ୍ଥା ବା ସଂଘ – ଏହିପରି ପ୍ରଦେଶ ବିଶେଷରେ ଗୋଟିଏ ଗୋଟିଏ ଶବ୍ଦର ଅଧିକ ପ୍ରୟୋଗ, ଅନ୍ୟ ଶବ୍ଦର ଅଳ୍ପ ପ୍ରୟୋଗ ଦେଖାଯାଏ । ଆଖିରବଙ୍ଗ ଦେଶରେ 'ଚୋଖ୍' ଓ 'ନୟାନ୍' ଓଡ଼ିଶାରେ 'ଲୋଚନ', ହିନ୍ଦୀରେ 'ଦୃଗ୍', ମର୍ହାଟୀରେ 'ଦୃଶ୍' ଆଦିର ବହୁଳ ପ୍ରୟୋଗ ଆମେ ସ୍ଥାନ ବିଶେଷରେ ଲେଖି ବସିଲେ କିଛି ଅସୁନ୍ଦର ହେବ ନାଇଁ; କାରଣ ଏଗୁଡ଼ିକ ଆମ ମାତୃସମ୍ପତ୍ତି ସଂସ୍କୃତ କୋଠର ଖଞ୍ଜା । ତଥାପି ପ୍ରାଦେଶିକ ବିଶେଷତ୍ୱ ରଖି ଯଦି ତା ସହିତ ଆମେ ଏଗୁଡ଼ିକର ସଦ୍‌ବ୍ୟବହାର କରିପାରୁ, ତେବେ ଯାଇ ସୁନ୍ଦର । ଇଂରାଜୀ ମଉଜା, ବ୍ଲାଉସ୍ ସହିତ ବଙ୍ଗଳା ପାଟର୍ନ, ଚୁଡ଼ି, ପାର୍ଶିଶାଢ଼ି, ହିନ୍ଦୁସ୍ଥାନୀ ଲପେଟ ଦେଶୀ ଧୋତି ଉପରେ ପାଶ୍ଚାତ୍ୟ କୋଟ୍, କଲର ଭଙ୍ଗା କମିଜ ଯେପରି ଆଜିକାଲି ଡ୍ରେସର ବିଶେଷତ୍ୱ, ସେପରି ଭାଷାର ନୂଆ ନୂଆ ଛଇ ମଧ ଆଜିକାଲିର ସାହିତ୍ୟର ବିଶେଷତ୍ୱ । ଖାଲି ପୁରୁଣା କାଳିଆ ଉପମା, ଉପମେୟ ଧରି ବସିଲେ ଚଳିବ ନାଇଁ । ମଧ ଯେତେ ଦୂର ସମ୍ଭବପର, କଥିତ ଭାଷାକୁ ଲିଖିତ ଭାଷାରୂପେ ବ୍ୟବହାର ଦ୍ୱାରା ଭାଷାର ଶକ୍ତି ଏବଂ ଲେଖକ ପାଠକ ଉଭୟର ଗ୍ରାହିକା ଶକ୍ତି ବଢ଼ିଯିବ । ଆମେ କଥାରେ କହିବୁ 'କହୁଚି'– ଲେଖିଲାବେଳକୁ ଲେଖିବୁ 'କହୁଛି' ବା କହୁଅଛି' । କଥାରେ କହିବୁ ପକେଇ, ଗଳେଇ, ଶଏ, ନାଇଁ; କିନ୍ତୁ ଲେଖିଲା ବେଳକୁ ଲେଖିବୁ ପକାଇ, ଗଳାଇ, ଶହେ, ନାହିଁ । ମୁଁ ଭାବୁଛି ଉଭୟ ପ୍ରୟୋଗ ରଖିବା ଭଲ । ସାରଳାଦାସର ଯୁଗର, କରସି, ଖାଅସି, ବା କେଶବ କୋଇଲିର 'କରେଣ' ଶଙ୍ଖଚକ୍ରଧାରୀର ପ୍ରୟୋଗ ଆଜିକାଲି ଯେପରି ଶ୍ରୁତିକଟୁ, ସେହିପରି ଆମ ପରବର୍ତ୍ତୀ ଯୁଗର ଲୋକଙ୍କୁ ଆମ ଭାଷାକ୍ଲିଷ୍ଟ ଜଣାଯିବ । ଯେ କବି ଯେ ଲେଖକ ପଚାଶ ବର୍ଷ ଆଗର ସାହିତ୍ୟ ସୃଷ୍ଟିକରେ, ସେ ପ୍ରକୃତରେ ଯୁଗ-ପ୍ରବର୍ତ୍ତକ – ତା'ର ଅନେକ ଅନୁବର୍ତ୍ତୀ ହୁଅନ୍ତି । ଏହିପରି ଯୋଗଜନ୍ମା-ଯୁଗପ୍ରବର୍ତ୍ତକ ସାହିତ୍ୟିକର ଜନ୍ମ ମଧ ଉତ୍କଳ ସାହିତ୍ୟ କରିପାରିବ । ଉତାଳାହାଲ, ଧୋବା ଭଣ୍ଡାରୀ କଳି, ବୁଢ଼ା ଚଢ଼ା, ରିଫର୍ମଲେଡ଼ି ଆଦି ପୁସ୍ତକର ବର୍ଷକୁ ଯଦି ହଜାରଟା ସଂସ୍କରଣ ହୁଏ, ତଥାପି ସେଗୁଡ଼ିକ ଆବର୍ଜନା ଛଡ଼ା ପ୍ରକୃତ ଜାତୀୟ ସାହିତ୍ୟର ଆଖ୍ୟା କଦାପି ପାଇ ନ ପାରନ୍ତି । ସବୁ ଦେଶରେ ଏପରି ସାହିତ୍ୟିକ

ଆବର୍ଜନା ରହିଚି, ମଧ୍ୟ ରହିବ । ବଙ୍ଗଳାର ବଟତଲାର ଉପାନ୍ୟାସ, ଇଂରାଜୀ ପେନିସିରିଜ୍, ହିନ୍ଦୀର ଶସ୍ତା ସାହିତ୍ୟ ମଣ୍ଡଳ, ଏସବୁର ଉଦାହରଣ । ସେଗୁଡ଼ିକ ଥିଲେ ଯେ ସାହିତ୍ୟ ଭଣ୍ଡାର ପୂରିଯିବ ଏପରି ନୁହେଁ; କେବଳ ସେହିଗୁଡ଼ିକ ଥିଲେ ତ ସାହିତ୍ୟିକ ଶରୀର ରୋଗଗ୍ରସ୍ତ ବୋଲି ଭାବିବାକୁ ହେବ । ଘାସ, ପୋକସୁଙ୍ଘା ଫୁଲହିଁ କେବଳ ବଗିଚାର ଶୋଭା ନୁହେଁ - ଉତ୍କୃଷ୍ଟ ଗୋଲାପ, ମଲ୍ଲିକାର କୁଞ୍ଜହିଁ ଉଦ୍ୟାନର ସୌନ୍ଦର୍ଯ୍ୟ ! ସାହିତ୍ୟ କ୍ଷେତ୍ରରେ ଲେଖକର ଦାୟିତ୍ୱ ଯେ କେତେ ବେଶି, ସେକଥା ଭାବିଚିନ୍ତି ଲେଖକ ହେବାର ପ୍ରୟାସୀ ହେବା ବାଞ୍ଛନୀୟ । ସହସ୍ର କୁଡ଼ିଆ ବା କୋଠା ଶିଳ୍ପର ଗୌରବ ନୁହେଁ- ଏକ କୋଣାର୍କ, ଗୋଟିଏ ତାଜ୍‌ମହଲ ପୃଥିବୀର ଦର୍ଶକ-ଚକ୍ଷୁ-ବିନୋଦକ । ଯୋଉ ଲେଖାଦ୍ୱାରା ଜାତିର ଅଭ୍ୟୁତ୍ଥାନ ହୁଏ ନାହିଁ, ଦେଶର ଅଭାବପୂରଣ ହୁଏ ନାହିଁ, ସେପରି କୋଟି କୋଟି ଲେଖା ଥାଇ ଯାହା ନ ଥାଇ ତାହା । ଏଇ ଲେଖା ଦ୍ୱାରାହିଁ ଗୋଟିଏ ଜାତିର ଉତ୍ଥାନ ବା ପତନ ନିର୍ଦ୍ଧାରିତ ହୁଏ - ମସିଯୁଦ୍ଧ ଅସି ଯୁଦ୍ଧଠାରୁ ଊଣା ଶକ୍ତିଶାଳୀ ନୁହେଁ ।

ଆଜିକାଲି ଲିପିସଂସ୍କାର ଦିଗରେ ମଧ୍ୟ କିଛି କିଛି ଚେଷ୍ଟା ହେଉଥିବାର ଜଣା ଯାଉଚି । ମୁଦ୍ରାଯନ୍ତ୍ରଲିପି ଏବଂ ହସ୍ତଲିପିରେ ସବୁ ଦେଶରେ ପ୍ରଭେଦ ରହିଚି- ଇଂରାଜୀ ଲିପି ଏଥିର ବିଶିଷ୍ଟ ଉଦାହରଣ । ବର୍ତ୍ତମାନ ପ୍ରଶ୍ନ, ଏ ଲିପିସଂସ୍କାର ପ୍ରୟୋଜନୀୟ କି ନାହିଁ । ମୋ ମତରେ ପ୍ରୟୋଜନୀୟ । ଅଧା ଯୁକ୍ତାକ୍ଷର ବର୍ଣ୍ଣ ଆଦିରୁ ତ୍ରାହି ପାଇଲେ ଆମ ଭାଷାରେ ମୁଦ୍ରାଯନ୍ତ୍ରର କାମ ଏବଂ ଟାଇପ୍ ରାଇଟିଂ ମେସିନ୍‌ର କାମ ମଧ୍ୟ ଭଲ ହୁଅନ୍ତା, ସାଧାରଣ ପାଠକ ଓ ଛାତ୍ରଙ୍କର ବିଶେଷ ସୁବିଧା ହୁଅନ୍ତା । ଇଂରାଜୀ ବର୍ଣ୍ଣମାଳାର ସଂଖ୍ୟା ଅତି ଊଣା ଥିବାରୁ ସେଥିରେ କି ପ୍ରେସ୍ କାମ, କି ଟାଇପ୍ କାମ, କି ବ୍ୟବସାୟ ଲାଗି ଜିନିଷ ପତ୍ର ଉପରେ ଛାପା କାମ ଭାରି ସୁବିଧାରେ ଚାଲିଥିବା କଥା ସମସ୍ତେ ଜାଣନ୍ତି । କେଉଁ କେଉଁ ଅକ୍ଷର ବା ବର୍ଣ୍ଣ ରଖି କାହାକୁ ବାଦ୍ ଦେବାକୁ ହେବ, ସେ ବିଷୟରେ ମୋର ଅଭିଜ୍ଞତା ଅଳ୍ପ । ଲିପିବିଶେଷଜ୍ଞମାନଙ୍କର ଏ ଦିଗକୁ ଧ୍ୟାନ ଦେବା ଭଲ । ମୁଁ ସଂସ୍କାରପ୍ରୟାସୀ, ବିନା ସଂସ୍କାରରେ ଆବର୍ଜନା ଦୂରହେବା ସମ୍ଭବପର ନୁହେଁ । ଉତ୍ସାହୀ ଯୁବକମାନଙ୍କର ଏ ଦିଗରେ କାର୍ଯ୍ୟ କରିବା ବାଞ୍ଛନୀୟ ।



## ୨୫

# ବଉଦର ଭାଷା

## ଶ୍ରୀଧର ଦାଶ

ବଉଦ ଓଡ଼ିଶାର କରଦ ରାଜ୍ୟମାନଙ୍କ ମଧ୍ୟରୁ ଗୋଟିଏ । ଏହାର ଅଧିବାସୀ ଅଧିକାଂଶ ଓଡ଼ିଆ । କେତେକ ଅନାର୍ଯ୍ୟ ଆଦିମ ଅଧିବାସୀ ମଧ୍ୟ ଅଛନ୍ତି । ମୋଗଲବନ୍ଦୀ ଅଞ୍ଚଳର କୌଣସି ଲୋକ ଏଠାକୁ ଆସିବା ମାତ୍ରେ ଅନୁଭବ କରି ପାରିବ, ଯେ ମୋଗଲ ବନ୍ଦୀର ଓଡ଼ିଆଭାଷା ସହିତ ଏଠା ଭାଷାର ଅନେକ ପାର୍ଥକ୍ୟ ରହିଅଛି । ଅବଶ୍ୟ ପୁରୀର ଭାଷା ସହିତ କଟକ ଭାଷାର ଓ କଟକର ଭାଷା ସହିତ ବାଲେଶ୍ୱର ଭାଷାର ପାର୍ଥକ୍ୟ ଅଛି; କିନ୍ତୁ ବଉଦର ଭାଷା ସହିତ ପୁରୀ, କଟକ ବା ବାଲେଶ୍ୱରର ଭାଷାକୁ ତୁଳନା କଲେ ବହୁତ ତାରତମ୍ୟ ଦେଖାଯାଏ । ଉଚ୍ଚାରଣ ଭେଦରେ ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ଜାତିର ଲୋକଙ୍କ ମୁଖରେ ଭିନ୍ନ ଭିନ୍ନ ଶୁଣାଯାଇଥାଏ । ଅନେକ ଶବ୍ଦ ଓଡ଼ିଆ ଓ ବଙ୍ଗଳା ଭାଷାରେ ଅପରିବର୍ତ୍ତିତଭାବରେ ବ୍ୟବହାର କରାଯାଇଥାଏ; କିନ୍ତୁ ଉଚ୍ଚାରଣ ଭେଦରେ ସେମାନେ ବିଭିନ୍ନ ଶବ୍ଦ ପରି ବୋଧ ହୋଇଥାନ୍ତି । ଉଦାହରଣ ସ୍ୱରୂପ 'ଧନ' ଶବ୍ଦ ଓଡ଼ିଆ ଓ ବଙ୍ଗଳା ଉଭୟ ଭାଷାରେ ବ୍ୟବହୃତ ହୋଇଥାଏ; କିନ୍ତୁ ବଙ୍ଗଳାରେ ଏହା 'ଧନ' ବୋଲି ଲେଖାଗଲେ ହେଁ 'ଧ-ଅ-ନ' ବୋଲି ଉଚ୍ଚାରିତ ହୋଇଥାଏ । ସେହିପରି ମୋଗଲ ବନ୍ଦୀରେ ବ୍ୟବହୃତ ହେଉଥିବା ଅନେକ ଶବ୍ଦ ଏଠାରେ ଟିକିଏ ବିଭିନ୍ନ ଭାବରେ ଉଚ୍ଚାରିତ ହୋଇଥାଏ । ତେଣୁ ସେଗୁଡ଼ିକ ମୋଗଲବନ୍ଦୀର ଲୋକଙ୍କୁ ଅପରିଚିତ ଶବ୍ଦପରି ବୋଧହୋଇଥାଏ ।

ଲୋକେ କଥାରେ କହିଥାନ୍ତି, 'ବୋ ସୋନପୁର, ଲୋ ଓଡ଼ିଶା, ଅତି ପରପଞ୍ଚ ବଉଦ ଭାଷା' । ମୋଗଲବନ୍ଦୀର କେତେକ ସ୍ଥାନର ଲୋକେ ବିଶେଷତଃ ସ୍ତ୍ରୀମାନେ 'ଲୋ' ବ୍ୟବହାର କରିଥାନ୍ତି । ସୋନପୁର ଅଞ୍ଚଳର ଲୋକେ ଅନେକ 'ବୋ', ବ୍ୟବହାର କରନ୍ତି । କିନ୍ତୁ ବଉଦର ଲୋକେ ଅନେକତ୍ର 'ବୋ' ବ୍ୟବହାର ସଙ୍ଗେ ସଙ୍ଗେ ଆହୁରି ଅନେକ ବିକୃତ ଓଡ଼ିଆ ଶବ୍ଦ ବ୍ୟବହାର କରନ୍ତି । ତେଣୁ ବୋଧହୁଏ ଏହି ପ୍ରବଚନର ସୃଷ୍ଟି । ମୋଗଲ ବନ୍ଦୀର ଲୋକ ବଉଦର ଭାଷାକୁ 'ପରପଞ୍ଚ' ମନେ କରିବା ସ୍ୱାଭାବିକ, କିନ୍ତୁ ସମ୍ଭବତଃ ବଉଦର ଲୋକେ ମଧ୍ୟ ମୋଗଲବନ୍ଦୀର ଭାଷାକୁ ଅତି ପରପଞ୍ଚ ମନେ କରୁଥିବେ । କାରଣ, ଲୋକେ

ନିଜ ନିଜର ବ୍ୟବହାର୍ଯ୍ୟ ମାତୃଭାଷାକୁ ସୁନ୍ଦର ମନେ କରିବା ଓ ଅଜ୍ଞାତ ବା ଦୁର୍ବୋଧ ଭାଷାକୁ କୁତ୍ସିତ ମନେ କରିବା ସ୍ୱାଭାବିକ । ବଉଦର ଭାଷା ମୋଗଲ ବନ୍ଦୀ ଲୋକଙ୍କୁ ଶ୍ରୁତିକଟୁ ବୋଧହୁଏ । ଅବଶ୍ୟ ଶିକ୍ଷା ଓ ମୋଗଲବନ୍ଦୀରୁ ଆସିଥିବା ଓଡ଼ିଆଙ୍କ ପ୍ରଭାବଦ୍ୱାରା ବଉଦ ସହରବାସୀଙ୍କର ଭାଷା କେତେକାଂଶରେ ମୋଗଲବନ୍ଦୀର ଓଡ଼ିଆପରି ହୋଇ ଯାଇଅଛି, କିନ୍ତୁ ମଫସଲରେ ନୀଚ ଶ୍ରେଣୀର ପୁରୁଷ ଓ ସ୍ତ୍ରୀମାନଙ୍କ ମଧ୍ୟରେ ଯେ ଭାଷା ବ୍ୟବହୃତ ହୁଏ, ତାହା ଅନେକ ସମୟରେ ମୋଗଲବନ୍ଦୀ ଲୋକଙ୍କ ପକ୍ଷରେ ଦୁର୍ବୋଧ ଓ ସମୟ ସମୟରେ ଏକେବାରେ ଅବୋଧ ।

ଏଠାରେ ଏପରି କେତେଗୁଡ଼ିଏ ଶବ୍ଦ ବ୍ୟବହୃତ ହୁଏ ଯାହାକି ମୋଗଲବନ୍ଦୀରେ ଆଦୌ ଶୁଣାଯାଏ ନାହିଁ ।ଯଥା ମାଖନ (ବୋଇତକଖାରୁ), କୁଳିହା (ବିଲୁଆ), ଚାଣ୍ଡି (ପିମ୍ପୁଡ଼ି) ଚାବିବା (କାମୁଡ଼ିବା) ନୁନି (ଝିଅ), ଘିଚିବା (ଟାଣିବା) ଇତ୍ୟାଦି ।

ଏଠାରେ ବ୍ୟବହୃତ ବାକ୍ୟରେ ଟିକିଏ ବିଶେଷତ୍ୱ ଦେଖାଯାଏ । ଲୋକ ସାଧାରଣ ଏପରିକି ଶିକ୍ଷିତ ଲୋକେ ମଧ୍ୟ ନିଷେଧାର୍ଥକ ବାକ୍ୟରେ ପ୍ରଧାନ କ୍ରିୟାର ପରେ 'ନାହିଁ' ଶବ୍ଦ ବ୍ୟବହାର ନ କରି ପୂର୍ବରେ ବ୍ୟବହାର କରନ୍ତି । ଯଥା ସେ ଭାତ ନାହିଁ ଖାଇ । ମୁଁ ଘରକାନେ (ଘରକୁ) ନାହିଁ ଯାଇ ଇତ୍ୟାଦି । ହିନ୍ଦିଭାଷାରେ ମଧ୍ୟ ଏହିପରି ନିଷେଧାର୍ଥକ ଶବ୍ଦ କ୍ରିୟାର ପୂର୍ବରେ ବସେ । ବୋଧହୁଏ ହିନ୍ଦିଭାଷାର ପ୍ରଭାବରେ ଏପ୍ରକାର ପରିବର୍ତ୍ତନ ଘଟିଅଛି । ସାଧାରଣତଃ ମୋଗଲବନ୍ଦୀରେ ଯେଉଁଠାରେ ଭୂଧାତୁର 'ନାହିଁ' କ୍ରିୟା ବ୍ୟବହୃତ ହୁଏ, ବଉଦର ଲୋକେ ସେଠାରେ 'ନାଇ ନ' ବ୍ୟବହାର କରନ୍ତି । ଯଥା ବାପା ଘରେ ନାଇଁନ ।

ଓଡ଼ିଆ ଭାଷାରେ ବର୍ତ୍ତମାନ କାଳର ଅନେକ କ୍ରିୟାରେ 'ଛନ୍ତି' ବ୍ୟବହୃତ ହୋଇଥାଏ । ଯଥା, ଯାଉଛନ୍ତି, ଖାଉଛନ୍ତି । କିନ୍ତୁ ବଉଦର ଲୋକେ ଏହି 'ଛନ୍ତି' ସ୍ଥଳରେ ସାଧାରଣତଃ ସନ୍ ବ୍ୟବହାର କରିଥାନ୍ତି । ଯଥା, ଯାଇସନ୍, ଖାଉସନ୍ ଇତ୍ୟାଦି ।

ସ୍ଥାନୀୟ କଥିତ ଭାଷାର ଅନେକ ସ୍ଥଳରେ ଓକାର ପରିବର୍ତ୍ତରେ ଉକାରର ବ୍ୟବହାର ଦେଖାଯାଏ । ଗୋଡ ପରିବର୍ତ୍ତରେ ଗୁଡ଼, ପୋଥି ପରିବର୍ତ୍ତରେ ପୁଥିର ବ୍ୟବହାର ବିରଳ ନୁହେଁ । ଏ ବିଷୟରେ ବାଲେଶ୍ୱରବାସୀ କେତେକ ଲୋକଙ୍କ ଭାଷା ସହିତ ଏଠା ଭାଷାର ସାମ୍ୟ ଅଛି ।

କୌଣସି କୌଣସି ଶବ୍ଦରେ ଅକ୍ଷରର ବିପର୍ଯ୍ୟୟ ଘଟିବାର ଦେଖାଯାଏ । ମୋଗଲବନ୍ଦୀରେ କୌଣସି ପଦାର୍ଥକୁ ମାଟିରେ 'ପୋତିଦେବା' କହନ୍ତି; କିନ୍ତୁ ବଉଦର ଲୋକେ 'ତୋପି ଦେବା' ବା କେହି କେହି 'ତୁପି' ଦେବା ମଧ୍ୟ କହିଥାନ୍ତି ।

କଥା କହିବା ସମୟରେ ଭିନ୍ନ ଭିନ୍ନ ସ୍ଥାନର ଲୋକେ କେତେକ ଅର୍ଥହୀନ ଶବ୍ଦ ଉଚ୍ଚାରଣ କରିଥାନ୍ତି । ସେହି ସବୁ ଶବ୍ଦର କୌଣସି ଅର୍ଥ ନ ଥିଲେ ହେଁ ସେମାନେ ବକ୍ତାକୁ

ଭାବ ସଂଶ୍ଳେଷଣ କରିବାକୁ ସମୟ ଦେଇଥାନ୍ତି । ବିହାରର ପାଟନା ଅଞ୍ଚଳରେ ଅନେକ ଲୋକେ 'ଏଥି' ଶବ୍ଦ ଏହିପରି ବ୍ୟବହାର କରିଥାନ୍ତି । ପୁରୀର କେତେକ ସ୍ଥାନର ଲୋକେ 'ଆନେ' ଓ ଖୋର୍ଦ୍ଧାର ଲୋକଙ୍କ ମଧ୍ୟରୁ କେତେକେ 'ଏତା' ବ୍ୟବହାର କରିଥାନ୍ତି; କିନ୍ତୁ ବଉଦର ଲୋକେ ଏପରି ସ୍ଥଳରେ 'ହନ୍ତା' ବ୍ୟବହାର କରନ୍ତି । ଏପରି କି କାହାରି କାହାରି ମୁଖରୁ ଗୋଟିଏ ବାକ୍ୟରେ ତିନି ଚାରି ବାର 'ହନ୍ତା' ଶବ୍ଦ ଶୁଣିବାକୁ ମିଳେ ।

ଏ ଅଞ୍ଚଳର ଲୋକେ କେଣେ ବା କେଉଁ ଠାରେ ପରିବର୍ତ୍ତରେ ସାଧାରଣତଃ 'କେନ୍' ବ୍ୟବହାର କରିଥାନ୍ତି । ସେହିପରି ଏଣେ ପରିବର୍ତ୍ତନରେ 'ଏନ୍' ମଧ୍ୟ ବ୍ୟବହୃତ ହୋଇଥାଏ । କେଣିକି, ଏଣିକି ସ୍ଥଳରେ 'କେନକି, ଏନ୍‌କି ଶୁଣିବାକୁ ମିଳେ ।

ଅନୁଜ୍ଞାସୂଚକ ଓ ପ୍ରଶ୍ନବାଚକ ବାକ୍ୟରେ 'ବୋ'ର ପ୍ରଚଳନ ବେଶୀ । କେବଳ ଯେ ବଉଦର ଲୋକେ 'ବୋ' ବ୍ୟବହାର କରିଥାନ୍ତି, ତାହା ନୁହେ, ଗଡ଼ଜାତର ସୋନପୁର, ଆଠମଲ୍ଲିକରେ ଏବଂ ଅନଗୁଳ ଜିଲ୍ଲାରେ ମଧ ଏହାର ବ୍ୟବହାର ଦେଖାଯାଏ । ବ୍ୟବହାର ଏହି ଭଦ୍ରସମାଜରେ ବିରଳ । କନ୍ଧ ଭାଷାରେ ଏହି 'ବୋ'ର ବହୁଳ ପ୍ରଚଳନ ଦେଖାଯାଏ । ବୋଧହୁଏ ଏହା କନ୍ଧଭାଷାରୁ ଆସି କ୍ରମେ କ୍ରମେ ଏଠା କଥିତ ଓଡ଼ିଆ ଭାଷାରେ ପ୍ରବେଶ କରିଅଛି ।

ଶବ୍ଦ ଗତ ପାର୍ଥକ୍ୟ ଅପେକ୍ଷା ବାକ୍ୟ ମଧ୍ୟରେ ଶବ୍ଦମାନଙ୍କର ଉଚ୍ଚାରଣଗତ ପାର୍ଥକ୍ୟ ଅନେକ ସମୟରେ ବଉଦର ଭାଷାକୁ ମୋଗଲବନ୍ଦୀର ଓଡ଼ିଆଠାରୁ ବେଶୀ ବିଭିନ୍ନ କରିଦିଏ । କେବଳ ଶବ୍ଦମାନଙ୍କର ଅର୍ଥ ଜାଣିଲେ ଭାଷା ବୁଝିବା ସହଜ ନୁହେଁ; କାରଣ ବାକ୍ୟରେ ଥିବା ବିଭିନ୍ନ ଶବ୍ଦମାନେ ଉଚ୍ଚାରଣ ସମୟରେ ମିଳିତ ହୋଇ ଅନ୍ୟ ଶବ୍ଦପରି ବୋଧ ହୋଇପାରନ୍ତି । ତେଣୁ କେତେକସ୍ଥଳରେ ବଉଦ ଭାଷାର ପ୍ରଚଳିତ ଶବ୍ଦ ଜ୍ଞାତ ଥିଲେ ହେଁ ବାକ୍ୟ ବୁଝିବା କଷ୍ଟକର ହୋଇଥାଏ । ଉଦାହରଣ ସ୍ୱରୂପ 'ତୁକେନ୍ ଗାର୍ ବୋ' (ତୁ କେଉଁ ଗାଁର ଅର୍ଥାତ୍ ତୋ ଘର କେଉଁଠାରେ) ମୋଗଲ ବନ୍ଦୀର ଲୋକଙ୍କ ପକ୍ଷରେ ଏହା ଏକପ୍ରକାର ସମ୍ପୂର୍ଣ୍ଣ ଅବୋଧ ।

ଶାସନ ହିସାବରେ ବଉଦ ଦୀର୍ଘକାଳ ହିନ୍ଦୀଭାଷା ସମ୍ପର୍କରେ ଆସିଥିବା ଦ୍ୱାରା ଏଠା ଓଡ଼ିଆଭାଷା ହିନ୍ଦୀଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଅଛି । ଆଦିମ ଅଧିବାସୀମାନେ ସେମାନଙ୍କର ନିଜ ନିଜ ଭାଷା ବ୍ୟବହାର କରନ୍ତି । କୋଷ୍ଟା, ମୋଚି ପ୍ରଭୃତି ଜାତିମାନେ ଘରେ ଲରିଆ ଭାଷା ବ୍ୟବହାର କରନ୍ତି । କନ୍ଧମାନେ ସେମାନଙ୍କର ନିଜ ଭାଷାରେ କଥାବର୍ତ୍ତା ହୋଇଥାନ୍ତି । ଏହି ଆଦିମ ଜାତିଙ୍କର ଭାଷା ଓଡ଼ିଆ ଠାରୁ ସମ୍ପୂର୍ଣ୍ଣ ପୃଥକ୍ । କିନ୍ତୁ ଏମାନେ ସ୍ଥାନୀୟ ଓଡ଼ିଆ ଭାଷା ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରି ତାହାର ଆକୃତି ପ୍ରକୃତି ପରିବର୍ତ୍ତନ କରି ଦେଇଅଛନ୍ତି । ସ୍ଥଳବିଶେଷରେ ତେଲଗୁ ସଂମିଶ୍ରଣର ସୂଚନା ମଧ ମିଳେ ।

ଉପରେ ଏଠା ଓଡ଼ିଆଭାଷାର ଯେ ବିଶେଷତ୍ୱ ଦେଖାଇ ଦିଆଯାଇଅଛି । ତାହାର

ବ୍ୟବହାର କୌଣସି ଓଡ଼ିଆ ପୁସ୍ତକରେ ଦେଖାଯାଏ ନାହିଁ । କିନ୍ତୁ ଓଡ଼ିଆ ଭାଷା ଯେ ବିଭିନ୍ନ ସ୍ଥାନରେ ପ୍ରତିବେଶିନୀ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହୋଇ କ୍ରମଶଃ କିପରି ଅଦ୍ଭୁତ ଆକାର ଧାରଣ କରିଅଛି ଓ କରୁଅଛି, ତାହା ଦେଖାଇବାହିଁ ଏ ପ୍ରବନ୍ଧର ଉଦ୍ଦେଶ୍ୟ । କେଉଁ କେଉଁ ଭାଷାର ପ୍ରଭାବରେ, କେବେ ଓ କିପରି ଏଠା ଓଡ଼ିଆଭାଷା ଏପରି ପରିବର୍ତ୍ତିତ ହୋଇଅଛି, ତାହା ଭାଷାତତ୍ତ୍ୱବିଦ୍ ମାନଙ୍କର ଗବେଷଣାର ବିଷୟ ।



୨୬

# ଉତ୍କଳୀୟ ଲିପି ସଂସ୍କାର

## ସତ୍ୟନାରାୟଣ ରାଜଗୁରୁ

ସଭାପତି ମହୋଦୟ ଓ ଭଦ୍ରମଣ୍ଡଳି !

ଆଜି ଏକ କବି-ସମ୍ମିଳନୀ ରୂପ ଗୋଟିଏ ଜୀବନ୍ତ ସରସ ଅଧିବେଶନରେ "ଉତ୍କଳୀୟ ଲିପିସଂସ୍କାର' ମୂଳକ ଏକ ଶୁଷ୍କ ନୀରସ ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଆପଣମାନଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିନିଏ; କାରଣ ଆପଣମାନଙ୍କ ମଧ୍ୟରୁ ଅନେକେ ବୋଧହୁଏ ଏହି ମଧୁର ବାସନ୍ତୀ ଅଧିବେଶନରେ ଏପରି ଗୋଟାଏ ଶୁଷ୍କ କଚ୍ଚନା ଶୁଣିବାକୁ ପ୍ରସ୍ତୁତ ନ ଥିବେ । ତଥାପି ପ୍ରଚୁର ମିଷ୍ଟ ପିଷ୍ଟକାଦି ସେବନ ବେଳେ ଦହି ଘୋଳ ମଧ ଆବଶ୍ୟକ ହୁଏ । ଏଣୁ ଆଶାକରେ, ଏହି ପ୍ରବନ୍ଧ ପଠନରେ ଆପଣମାନେ ଧୈର୍ଯ୍ୟ ହରାଇବେ ନାହିଁ ।

ଆଜିକାଲି ଓଡ଼ିଶାର କେତେକ ମୁଖ୍ୟ ସମ୍ବାଦପତ୍ରରେ ତଥା ସାହିତ୍ୟିକ ସଭାରେ "ଉତ୍କଳୀୟ ଲିପିସଂସ୍କାର" ମୂଳକ ଆଲୋଚନା ଖୁବ୍ ଗମ୍ଭୀର ଭାବରେ ଚାଲିଛି - ଏହା ବୋଧହୁଏ ଆପଣମାନେ ଅବଗତ ଥିବେ । କିଛିଦିନ ପୂର୍ବେ ସତ୍ୟବାଦୀର ବନ୍ଧୁଳବନ ଭେଦପୂର୍ବକ ଏପରି ଗୋଟିଏ ଆନ୍ଦୋଳନ ସର୍ବପ୍ରଥମେ ଅଙ୍କୁରିତ ହୋଇ ଅକାଳରେ ଶୁଷ୍କହୋଇ ପଡ଼ିଥିଲା, ତଥାପି ସେହି ଆନ୍ଦୋଳନ ଫଳରେ ଆଜିକାଲି ପ୍ରେସ୍ କମ୍ପୋଜିଟରମାନେ ଓଡ଼ିଆ ବର୍ଣ୍ଣମାଳାର ଅନୁନାସିକ ଯୁକ୍ତାକ୍ଷର ବାଛିବା ଭୀଷଣ ବ୍ୟାପାରରୁ ସମୟ ସମୟରେ ଅବ୍ୟାହତି ପାଇଁ ତତ୍ପରିବର୍ତ୍ତରେ ଅନୁସ୍ୱାର ଚିହ୍ନର ସଦ୍‌ବ୍ୟବହାର କରିଥାନ୍ତି । ଏତିକିରେ ସେହି ଆନ୍ଦୋଳନର 'ଇତିଶ୍ରୀ' ବୋଲି କହିଲେ ଯଥେଷ୍ଟ ହେବ । ବର୍ତ୍ତମାନ ସେହି ବିସ୍ମୃତପ୍ରାୟ 'ଇତିଶ୍ରୀ'କୁ "ଅଥମାରମ୍ଭ" କରିବା ପାଇଁ ବୋଧହୁଏ ସମୟ ଆସିଥିବା ଦେଖି ସେହି ପ୍ରେସ୍‌ବାଲାମାନେ ଟିକିଏ ଆଶାନ୍ୱିତ ହୋଇଥିବେ । କିନ୍ତୁ ଏହା ସେମାନଙ୍କର ଦୁରାଶା ବୋଲି ଆମ୍ଭେମାନେ କହୁ । ଏହାର ମୂଳରେ ଯେଉଁ କାରଣ ବିଦ୍ୟମାନ, ତାହା ଏହି ପ୍ରବନ୍ଧରେ କ୍ରମଶଃ ପ୍ରକଟିତ ହେବ ।

ମନୁଷ୍ୟ ସମାଜର ଇତିହାସକୁ ଗୋଟାଏ ଯୁଗାନ୍ତବ୍ୟାପୀ ସଂସ୍କାରର ଇତିହାସ ବୋଲି

କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । ଚିର ଉନ୍ନତିଶୀଳ ମନୁଷ୍ୟ ତଦୀୟ ଜ୍ଞାନ, ବୁଦ୍ଧି ଓ ବିବେକ ବଳରେ ଆବହମାନ ଯୁଗରୁ କେତେ ନୂତନତାର ଆବିଷ୍କ୍ରିୟାରେ ଅଗ୍ରସର ହୋଇ, ତା'ର ସେହି ମୌଳିକ ସଂସ୍କାରରୁ ଏତେଦୂର ବିଚ୍ଛିନ୍ନ ହୋଇପଡ଼ିଛି ଯେ, ଆଜି ସେହି ଡାର୍‌ଉଇନ୍‌ଙ୍କର ଥିଯରି (Theory) ଅନୁଯାୟୀ ନକହି ଯଦି ତାକୁ ଇଙ୍ଗିତ ଦିଏ, ତୁମ୍ଭର ସେହି ଆଦିମ ଯୁଗର ପିତୃପୁରୁଷଗଣ ଶାଖାମୃଗ ହୋଇ ତୁମ୍ଭର ପ୍ରାଥମିକ ଅବସ୍ଥାର ସୂଚନା ଦିଅନ୍ତି, ତା ହେଲେ ସେଥିରେ ସେ ଭୀଷଣ ଆପତ୍ତି ଉଠାଇବାକୁ ବୋଧହୁଏ ପରାଙ୍ମୁଖ ହେବନାହିଁ । ଏହା ମନୁଷ୍ୟର ସ୍ୱଭାବସିଦ୍ଧ କଥା । ବୋଧହୁଏ ଏ ଗୋଟାଏ ସଂସ୍କାର । ଏହି ସଂସ୍କାରବଳରେ ମନୁଷ୍ୟ ତା'ର ଦୈନନ୍ଦିନ ଜୀବନର ନିତ୍ୟ ଅନୁଭୂୟମାନ ଘଟଣାବଳୀ ସଙ୍ଗେ ଏପରି ଘନିଷ୍ଠ ଭାବରେ ଜଡ଼ିତ ରହିଛି ଯେ, ସେଥିରୁ ତା'ର ମୁକ୍ତି ହେବାର ଉପାୟ ଆଦୌ ନାହିଁ କହିଲେଚଳେ । ଏହାହିଁ ମାନବର ପ୍ରଧାନ ବିଶେଷତ୍ୱ ।

ସେ ଆଜିକୁ ପ୍ରାୟ ୬ହଜାର ବର୍ଷ ପୂର୍ବର କଥା, ଯେତେବେଳେ ସୁଦୂର ଇଜିପ୍ଟ, ମିସର, ବାବିଲୋନିଆ, ଫିନିଶୀୟ ପ୍ରଭୃତି ପାଶ୍ଚାତ୍ୟ ପ୍ରଦେଶରେ ମନୁଷ୍ୟ ତା'ର ମାନସିକ ଭାବରାଶି ଚିତ୍ର ସାହାଯ୍ୟରେ ଉତ୍କୀର୍ଣ୍ଣ କରି ରଖୁଥିଲା, ତେତେବେଳେ ଯେଉଁ ଚିତ୍ରଲିପି ପାଶ୍ଚାତ୍ୟ ପ୍ରଦେଶରେ ବ୍ୟବହୃତ ହେଉଥିଲା, ତାକୁ ପଣ୍ଡିତମାନେ 'Hieroglyphy' ବା 'Ideogram' ନାମରେ ଅଭିହିତ କରନ୍ତି । ଆଜି ସମଗ୍ର ପୃଥିବୀ ବକ୍ଷରୁ ଏପରି ଚିତ୍ରଲିପି ସମ୍ବଳିତ ପ୍ରସ୍ତର ମୋଟେ ୬ଖଣ୍ଡ ମାତ୍ର ଆବିଷ୍କୃତ ହୋଇଅଛି । ଅଳ୍ପଦିନ ତଳେ କଟକ ସନ୍ନିକଟ ନରାଜ ନାମକ ଇତିହାସପ୍ରସିଦ୍ଧ ପାହାଡ଼ର ପାଦଦେଶରୁ ଖଣ୍ଡିଏ ଚିତ୍ରଲିପି ମିଳିଥିଲା । ଏହି ଲିପି ସମ୍ବନ୍ଧରେ କେତେକ ବିଷୟ ଆଲୋଚନା କରି ସେଥିରେ ଗୋଟିଏ ପ୍ରତିକୃତି ସହ ଖଣ୍ଡିଏ ପ୍ରବନ୍ଧ ପ୍ରାୟ ଦେଢ଼ବର୍ଷ ତଳେ ପ୍ରାଚୀସମିତିରୁ ପ୍ରକାଶିତ ଇଂରାଜୀ ପତ୍ରିକାର ପ୍ରଥମ ସଂଖ୍ୟାରେ ପ୍ରକଟିତ ହୋଇଥିଲା । ବିଲାତ ପରି ଦେଶ ହୋଇଥିଲେ ଏହି ଲିପିକୁ ଅବଲମ୍ବନ କରି ଐତିହାସିକ ଗବେଷଣା-ଜଗତରେ ଗୋଟାଏ ବିପ୍ଲବ ଉଠନ୍ତାଣି । କିନ୍ତୁ ଆମ୍ଭେମାନେ ବଡ଼ ଶାନ୍ତିପ୍ରିୟ ଜାତି; ଏଣୁ ଏପରି ଗୋଟାଏ ନୀରସ ବିଷୟ ନେଇ ଅନାବଶ୍ୟକ ବିପ୍ଲବକୁ ବରଣ କରିନାହୁଁ । ଓଡ଼ିଆମାନେ ଗୀତାର ସେହି 'ସନ୍ତୁଷ୍ଟୋ ଯେନକେନଚିତ୍' ନୀତିଟି ବରାବର ନିଷ୍ଠାର ସହ ପାଳନ କରିଥାନ୍ତି ବୋଧହୁଏ । ପ୍ରକୃତରେ ଏହି ନୀତିରେହିଁ ଆଧୁନିକ ଓଡ଼ିଆର ପ୍ରାଣପ୍ରତିଷ୍ଠା ।

ଓଡ଼ିଶାରେ ଲିପି-ସଂସ୍କାର କହିଲେ କେହି କେହି ମନେ କରିପାରନ୍ତି ଯେ, ବର୍ତ୍ତମାନ ଆମ ମାତୃଭାଷାରେ ଯେଉଁ ବର୍ଣ୍ଣମାଳା ଆମେ ବ୍ୟବହାର କରୁ; ସେଥିମଧ୍ୟରୁ କେତେଗୁଡ଼ିଏ ଅକ୍ଷର ସମ୍ପୂର୍ଣ୍ଣରୂପେ ଲୁପ୍ତ କରିବା ଉଦ୍ଦେଶ୍ୟରେ ଏହି ପ୍ରବନ୍ଧର ଅବତାରଣା । କିନ୍ତୁ ସେପରି କିଛି ଉଦ୍ଦେଶ୍ୟ ନେଇ ଆମ୍ଭେମାନେ ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ ଉପସ୍ଥିତ ହୋଇନାହୁଁ । ବର୍ତ୍ତମାନ ପ୍ରାକୃତିକ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଯେଉଁ ଏକାଧିକ ଆକାର ବିଶିଷ୍ଟ ଅକ୍ଷର ପ୍ରଚଳିତ ହୋଇ ସର୍ବସାଧାରଣ ଲିଖିତ ଅକ୍ଷରର ଶୈଳୀ ହରାଇଛି ଏବଂ ଛାପା

ଅକ୍ଷର ଓ ଲେଖା ଅକ୍ଷର ମଧ୍ୟରେ ଯେଉଁ ବ୍ୟବଧାନ ସୃଷ୍ଟି କରିଛି, ସେଥିର ପ୍ରତିବିଧାନ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ନୀତିରେ ଉତ୍କଳୀୟ ବର୍ଣ୍ଣମାଳାକୁ ନିୟନ୍ତ୍ରିତ କରିବା ବିଷୟରେ କେତେକ ପ୍ରସ୍ତାବ ଏଠାରେ ଆମ୍ଭେମାନେ ଉପସ୍ଥାପିତ କରିବୁ । ବିଷୟର ଗୁରୁତା ଦୃଷ୍ଟିରେ ଆପଣମାନଙ୍କୁ ସବିଶେଷ ନିବେଦନ ଏହି ଯେ, ଧୀରସ୍ଥିରଭାବରେ ଆପଣମାନେ ଏହି ଓଡ଼ିଆ ବର୍ଣ୍ଣମାଳାର ଆକାରଗତ ସଂସ୍କାର ସମସ୍ୟା ବିଚାର କରିବେ ।

କିଛିଦିନ ତଳେ ଉତ୍କଳ-ସାହିତ୍ୟ-ସମାଜର ଗୋଟିଏ ବିଶେଷ ଅଧିବେଶନରେ ବାବୁ ଭଗବାନ ପତି "ଓଡ଼ିଆ ବର୍ଣ୍ଣମାଳା ଓ ଲିପିସଂସ୍କାର" ଶୀର୍ଷକ ଗୋଟିଏ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ପାଠ କରିଥିଲେ । ସେ କହିଥିଲେ ଯେ, ବର୍ତ୍ତମାନ ଓଡ଼ିଆ ବର୍ଣ୍ଣମାଳାରୁ କେତେ ଗୋଟି ଅକ୍ଷର ସମ୍ପୂର୍ଣ୍ଣରୂପେ ଉଠାଇଦେବା ଉଚିତ ଏବଂ ଯୁକ୍ତାକ୍ଷରଗୁଡ଼ିକ କ୍ଲିଷ୍ଟ ତଥା ଜଟିଳ ହୋଇ ପଡ଼ିଥିବାରୁ ଅନୁସ୍ୱାର ଓ ହସନ୍ତ ପ୍ରଭୃତି ଚିହ୍ନରେ ତାହା ପ୍ରତିପାଦିତ କରିବା ଆବଶ୍ୟକ । ଅବଶ୍ୟ ଦୂର ଭବିଷ୍ୟତରେ ଏପରି ସଂସ୍କାର ଯେ ନ ହେବ, ଆମ୍ଭେମାନେ କହୁନାହୁଁ । ଓଡ଼ିଆରେ ନବୋଦ୍ଭାବିତ ଟାଇପ୍ ରାଇଟାର୍‌ର ବହୁଳ ବ୍ୟବହାର ସଙ୍ଗେ ସଙ୍ଗେ ଏପରି ପରିବର୍ତ୍ତନ ସମ୍ଭବପର ହୋଇପାରେ କିମ୍ବା ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲେ, ଆଉ ଭାରତରେ ସ୍ୱରାଜ୍ୟ ପ୍ରତିଷ୍ଠିତ ହେଲେ ଆମ୍ଭମାନଙ୍କ ବର୍ଣ୍ଣମାଳା ଆପେ ଆପେ ସୁସଂସ୍କୃତ ହୋଇପଡ଼ିବ । ତେତେବେଳେ ଓଡ଼ିଆ ଭାଷାରେ 'କ୍ଷୁଦ୍ରହସ୍ତ' ଲିପି (short hand) ନିତାନ୍ତ ଦରକାର ହେବ, ଆଉ ଯଦି ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟରେ କେବେ ପରିଣତ ହୁଏ, ତେବେ ଓଡ଼ିଶାର ଜାତୀୟ ସୈନ୍ୟମାନଙ୍କର 'ପତାକା-ଶିକ୍ଷା' ନିମନ୍ତେ ଟେଲିଗ୍ରାଫିକ୍ ବର୍ଣ୍ଣମାଳାର ନିର୍ଦ୍ଦେଶ ସକାଶେ ଓଡ଼ିଆ ବର୍ଣ୍ଣମାଳାରେ ପ୍ରଚଳିତ 'ବଳା' ଓ 'ଫଳା' ମାତ୍ରାଗୁଡ଼ିକ ମଧ୍ୟ ଉଠାଇ ଦେବାକୁ ପଡ଼ିବ । ତେତେବେଳେ କଠୋର ବିଜ୍ଞାନସମ୍ମତ ଭାବରେ ଆମ୍ଭେମାନେ ସେହି ଲିପିସଂସ୍କାର କାର୍ଯ୍ୟରେ ବ୍ରତୀ ହେବା । କିନ୍ତୁ ସେହି ଯୁଗ ଅଦ୍ୟାପି ଦୂର ଚକ୍ରବାଳର ତମିସ୍ର ଅନ୍ତରାଳ ମଧ୍ୟରେ ଲୁକ୍କାୟିତ । ସୁତରାଂ ସେହି ସୁଦୂର ଯୁଗର ଆଗମନ ଆଶାରେ ଏତେବେଳୁ ଆମ୍ଭମାନଙ୍କର ପ୍ରସ୍ତୁତ ହୋଇ ଚାହିଁ ରହିଥିବା ବୋଧହୁଏ ସମୀଚୀନ ନୁହେଁ । ବର୍ତ୍ତମାନ ଆମର ଯାହା ନିତାନ୍ତ ଦରକାର, ଯାହା ଆମେ ଏବେ ଅଭାବ ବୋଲି ଅନୁଭବ କରୁଛେଁ, ସେଥିର ସଂସ୍କୃତି ବିଷୟରେ ବ୍ରତୀ ହେବା ବୁଦ୍ଧିମାନର କାର୍ଯ୍ୟ । ସୁତରାଂ ବର୍ତ୍ତମାନ ପ୍ରଚଳିତ ଅକ୍ଷର ସଂଖ୍ୟାରେ ଯେତେ ଅଛି, ତେତିକି ରହୁ, ଚିନ୍ତା ନାହିଁ; କିନ୍ତୁ ସେଗୁଡ଼ିକର ଆକାର କିଞ୍ଚିତ୍ ପରିବର୍ତ୍ତିତ ହେବା ଆବଶ୍ୟକ ବୋଲି ଆମ୍ଭେମାନେ ଉପଲବ୍ଧି କରୁଁ । ଏହି ପରିବର୍ତ୍ତନର ଆବଶ୍ୟକତା କ'ଣ, ତାହା ଆପଣମାନେ ପଚାରିପାରନ୍ତି । ସେଥିର ଉତ୍ତର ଦେବା ପୂର୍ବରୁ ବର୍ଣ୍ଣମାଳାର ମୂଳଭିତ୍ତି ଓ ଆବଶ୍ୟକତା ସମ୍ବନ୍ଧରେ ପଦେଅଧେ କହିବା ନିତାନ୍ତ ପ୍ରୟୋଜନୀୟ ।

ମନୁଷ୍ୟର ମାନସିକ ଭାବ ଅଭିବ୍ୟକ୍ତ କରିବା ନିମନ୍ତେ ଯେପରି ଭାଷାର ସୃଷ୍ଟି, ତଦ୍ରୂପ ଭାଷାକୁ ଲିପିବଦ୍ଧ କରି ରଖିବା ପାଇଁ ବର୍ଣ୍ଣମାଳାର ଉତ୍ପତ୍ତି । ବର୍ଣ୍ଣମାଳାର ପ୍ରାଥମିକ ଯୁଗରେ

ଯେତେବେଳେ ମନୁଷ୍ୟ ଚିତ୍ରଲିପି ବ୍ୟବହାର କରୁଥିଲା, ତେତେବେଳେ ସେହି ପଦ୍ଧତି କେତେଗୁଡ଼ିଏ ବିଶିଷ୍ଟ ଭାଗରେ ବିଭକ୍ତ କରାଯାଇଥିଲା । ସେହି ଭାଗମାନଙ୍କୁ ପାଶ୍ଚାତ୍ୟ ଲିପିତତ୍ତ୍ୱବିତ୍‌ମାନେ ବସ୍ତୁଚିତ୍ର, ଭାବଚିତ୍ର, ଶବ୍ଦଚିତ୍ର, ଶବ୍ଦାଂଶଚିତ୍ର ଓ ବର୍ଣ୍ଣଚିତ୍ର ବୋଲି ନାମକରଣ କରିଅଛନ୍ତି । ଏହି ଚିତ୍ରଲିପି ଅନୁଯାୟୀ ସାମାନ୍ୟ ଭାବର ଅଭିବ୍ୟକ୍ତି ନିମନ୍ତେ ପ୍ରଚୁର ସାଙ୍କେତିକ ଚିହ୍ନ ବ୍ୟବହାର କରିବାକୁ ପଡୁଥିଲା । କ୍ରମେ ମନୁଷ୍ୟ ଜ୍ଞାନର ଉନ୍ମେଷ ସଙ୍ଗେ ତଥା ଲିଖନ ବିଦ୍ୟାର ପ୍ରସାର ସଙ୍ଗେ ସଙ୍ଗେ ସେହି ଚିତ୍ରଲିପିର ଜଟିଳତା କ୍ରମେ ଅପସାରିତ ହୋଇ, ଭାଷାନ୍ତର୍ଗତ ସ୍ୱର ସାହାଯ୍ୟରେ କେତେଗୁଡ଼ିଏ ସୁନିର୍ଦ୍ଦିଷ୍ଟ ଚିହ୍ନରେ ତାହା ପରିଣତ ହେବାକୁ ଲାଗିଲା । ଏହି ଚିହ୍ନଗୁଡ଼ିକୁ ଆମ୍ଭେମାନେ ବର୍ଣ୍ଣମାଳା ବୋଲି କହୁଁ । ଚୀନ ଦେଶରେ ବର୍ତ୍ତମାନ ଯେଉଁ ଧରଣର ବର୍ଣ୍ଣମାଳା ବ୍ୟବହୃତ ହେଉଅଛି, ତାହା ଆୟତ୍ତ କରିବା ପାଇଁ ଜଣେ ଲୋକକୁ ପ୍ରାୟ ୩ବର୍ଷ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ିଥାଏ । କିନ୍ତୁ ଭାରତର ଯେକୌଣସି ବର୍ଣ୍ଣମାଳା ଶିକ୍ଷା କରିବାକୁ ହେଲେ, ୩ଦିନରୁ ବୋଧହୁଏ ବେଶି ଲାଗେ ନାହିଁ । ଚୀନଦେଶରେ ସେହି ଆଦିମ ଯୁଗର ଜଟିଳ ଚିତ୍ରାକ୍ଷର ପ୍ରଭାବ ଅଦ୍ୟାପି ପରିଲକ୍ଷିତ ହୁଏ । କିନ୍ତୁ ଭାରତବର୍ଷରେ ଆଜି ଆଉ ସେହି ଜଟିଳତା ନାହିଁ । କେବେ ମଧ୍ୟ ଯେ ସେପରି ଥିଲା, ତାହା ଅଦ୍ୟାପି ଜଣାଯାଇନାହିଁ । ଅଶୋକ ଯୁଗରେ ପ୍ରଚଳିତ ଲିପି ଭାରତବର୍ଷର ଆଦିମ ବର୍ଣ୍ଣମାଳାର ମାନଦଣ୍ଡ ରୂପେ ଆଜି ବିଦ୍ୟମାନ । ଏହି ଲିପି ଅତ୍ୟନ୍ତ ସହଜ ଓ ସରଳ ଥିଲା । ସେଥିରୁ କାଳକ୍ରମେ 'କୁଟିଳ ବ୍ରାହ୍ମି' ନାମକ ଅକ୍ଷର ଜାତ ହୋଇ ପ୍ରାଦେଶିକତା ଦୋଷରେ ଭିନ୍ନ ଭିନ୍ନ ଆକୃତି ଲାଭ କଲା । ଏହି ପ୍ରାଦେଶିକ ଲିପିମାନଙ୍କ ମଧ୍ୟରୁ ଉତ୍କଳୀୟ ବର୍ଣ୍ଣମାଳା ଗୋଟିଏ ପ୍ରଧାନ କହିଲେ ଚଳେ । ଅଶୋକ ଯୁଗର ସରଳ 'ବ୍ରାହ୍ମି' ଲିପି ଜ୍ୟାମିତିକ ଚିହ୍ନ ସଦୃଶ କେତେଗୁଡ଼ିଏ ସରଳ ଓ ବକ୍ରରେଖାରେ ପ୍ରତିପାଦିତ ହୁଏ । କ୍ରମେ ସେହି ଆଦିମ ବର୍ଣ୍ଣମାଳା ବିଭିନ୍ନ ଯୁଗରେ ଓ ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ଆକାରରେ ପ୍ରକଟିତ ହୋଇ ଆସିଅଛି । କିଏ କହିବ ଏହି ବର୍ଣ୍ଣମାଳାଗୁଡ଼ିକ ଦିନେ ପୁଣି ସେହି ମୂଳ ସ୍ଥାନକୁ ଫେରିଯିବ କି ନାହିଁ ? ଭାରତର ରାଜନୈତିକ ତଥା ସାମାଜିକ ଜୀବନର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେହି ଆକ୍ଷରିକ ପରିବର୍ତ୍ତନ ସମ୍ଭବପର ନୁହେଁ ବୋଲି କିଏ କହିବ ? ଭାରତବର୍ଷର ଅନ୍ୟାନ୍ୟ ବର୍ଣ୍ଣମାଳା ପରି ଉତ୍କଳୀୟ ବର୍ଣ୍ଣମାଳା ମଧ୍ୟ ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ ରୂପରେ ପରିବର୍ତ୍ତିତ ହୋଇଥିଲା । ସେହି ପ୍ରାଚୀନ ସ୍ୱରଗୁଡ଼ିକ ଆଲୋଚନା କଲେ ସେଥିର ଗୋଟିଏ ବିଶାଳ ଇତିହାସ ଆମ୍ଭମାନଙ୍କ ଚକ୍ଷୁ ସମ୍ମୁଖରେ ଉନ୍ମୁକ୍ତ ହୋଇପଡ଼େ । ପ୍ରାୟ ୩ବର୍ଷ ପୂର୍ବେ ସେହି ଇତିହାସର ଯତ୍‌କିଞ୍ଚିତ୍ ପରିଚୟ ଦେଇ କେତେଗୁଡ଼ିଏ ପ୍ରବନ୍ଧ ଆମ୍ଭେମାନେ 'ସହକାର'ରେ ପ୍ରକାଶ କରିଥିଲୁ, ଏଠାରେ ସେହି ଦୀର୍ଘ ଇତିହାସର ପୁନରାବୃତ୍ତି କରିବାକୁ ସମୟ ନାହିଁ । ଆପଣମାନଙ୍କୁ ମନେ ରଖିବାକୁ ହେବ ଯେ, ଓଡ଼ିଶାର ବର୍ଣ୍ଣମାଳା ଗୋଟିଏ ଯୁଗରୁ ଆଉ ଗୋଟିଏ ଯୁଗକୁ ଭିନ୍ନ ଆକାର ଓ ସଂସ୍କୃତି ନେଇ ଗଢ଼ିହୋଇ ଆସିଥିଲେ ସୁଦ୍ଧା ଆଜିଯାଏ ସେ ତା'ର ମୌଳିକ ସତ୍ତା ହରାଇ ନାହିଁ । ଏବେସୁଦ୍ଧା ଓଡ଼ିଶାର 'ଏ' 'ଠ' ପ୍ରଭୃତି କେତେକ

ଅକ୍ଷର ସଙ୍ଗେ ସେହି ଅଶୋକ ଲିପିର ଘନିଷ୍ଠ ସୌସାଦୃଶ୍ୟ ବିଦ୍ୟମାନ । ଏବେସୁଦ୍ଧା ସେହି ପ୍ରାଚୀନ ଲିଖନଗତ ସୌକର୍ଯ୍ୟ ଆମ୍ଭେମାନେ ବିସ୍ମୃତ ହୋଇନାହୁଁ । ସୁତରାଂ ଆମ୍ଭମାନଙ୍କର ସେହି ଦୀର୍ଘ ଅଢ଼େଇ ହଜାର ବର୍ଷ ପୂର୍ବର ସଂସ୍କୃତି ଓ ପଦ୍ଧତିକୁ ଆମ୍ଭେମାନେ ପରିମାର୍ଜିତ କରିବାକୁ ଯାଇ ତଦୀୟ ଆକୃତିର ପ୍ରାଧାନ୍ୟ ଓ ମୌଳିକତା ଏକାବେଳେକେ ବର୍ଜନ କରିବା କେବଳ ଯେ ଧୃଷ୍ଟତା ହେବ, ତାହା ନୁହେଁ, ଆମ୍ଭମାନଙ୍କୁ ସେହି ଦୀର୍ଘ ସଂସ୍କୃତି ମଧ୍ୟ ଚିରକାଳ ପାଇଁ ହରାଇବାକୁ ପଡ଼ିବ । ସୁତରାଂ ଆମ୍ଭମାନଙ୍କ ବର୍ଣ୍ଣମାଳାର ଆକୃତି ଯଥାସାଧ୍ୟ ସେହି ମୂଳ ଆକୃତିର ଆଦର୍ଶ ସୌକର୍ଯ୍ୟ ରକ୍ଷାକରି ଗଠନ କରିବା ନିତାନ୍ତ ପ୍ରୟୋଜନୀୟ । ଈଦୃଶ ପରିବର୍ତ୍ତନ କିପରି ଓ କି ଆକାରରେ ହେବା ଉଚିତ ଏବଂ କେଉଁ କେଉଁ ଅକ୍ଷରର ପରିବର୍ତ୍ତନ ଆବଶ୍ୟକ, ସେଥି ସମ୍ବନ୍ଧରେ କ୍ରମେ ଆଲୋଚିତ ହେବ ।

କିନ୍ତୁ ତାର ପୂର୍ବରୁ ଅକ୍ଷର ଲିଖନର ନୀତି ସମ୍ବନ୍ଧରେ କେତେକ ପ୍ରାଚୀନ ଓ ଆଧୁନିକ ପଦ୍ଧତି ଉଲ୍ଲେଖ କଲେ ବୋଧହୁଏ ଆପଣମାନେ ଆମ୍ଭମାନଙ୍କ କଥାର ତାତ୍ପର୍ଯ୍ୟ ବୁଝିପାରିବେ । ପ୍ରାଚୀନ ଅଶୋକ ଯୁଗର ଲିପି ଭାରତର ବିଭିନ୍ନ ପ୍ରଦେଶରେ ପରିବର୍ତ୍ତିତ ହୋଇ ଅଦ୍ୟତନ ଯୁଗର ଶାରଦା ବା କାଶ୍ମିରୀ, ଟାକରୀ, ଗୁରୁମୁଖୀ ବା ପଞ୍ଜାବୀ, କୈଥୀ, ବଙ୍ଗଳା, ମୈଥିଳୀ, ଗୁଜରାଟୀ, ମୋଡି ବା ମହରାଷ୍ଟ୍ରୀ, ତୈଲଙ୍ଗ, କାନାଡ଼ି, ଗ୍ରନ୍ଥ, ଟାମିଲ୍ ପ୍ରଭୃତି ପ୍ରଧାନ ଭାଷାର ବର୍ଣ୍ଣମାଳାଗୁଡ଼ିକ ଯେପରି ସ୍ୱତନ୍ତ୍ର ଆକାରରେ ଗଠିତ ହୋଇଅଛି, ତଦ୍ରୂପ ଓଡ଼ିଆ ବର୍ଣ୍ଣମାଳା ମଧ୍ୟ ଗୋଟିଏ ସ୍ୱତନ୍ତ୍ର ପଦ୍ଧତି ନେଇ ସୃଷ୍ଟ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।ପ୍ରତି ଯୁଗରେ ବର୍ଣ୍ଣମାଳାକୁ ସରଳ, ସୁନ୍ଦର ଓ ସହଜ କରି ଗଠନ କରିବା ପାଇଁ ଲେଖକମାନେ ବରାବର ଯତ୍ନ କରିଥାନ୍ତି । ଓଡ଼ିଶାରେ ଅତି ପ୍ରାଚୀନ ଯୁଗରୁ ତାଳପତ୍ରରେ ଗ୍ରନ୍ଥମାନ ଲେଖା ଯାଉଥିଲା । ଏଣୁ ବର୍ତ୍ତମାନର ଓଡ଼ିଆ ଲିପି ସୁଗୋଲ, ବର୍ତ୍ତୁଳ ଓ କୋଣହୀନଭାବରେ ଗଠିତ ହୋଇଥିଲା ବୋଲି ନିର୍ଦ୍ଦେଶ କଲେ ବୋଧହୁଏ ଅସଙ୍ଗତ ହେବନାହିଁ । ତାଳପତ୍ରରେ ଲୌହ ଲେଖନୀ ସାହାଯ୍ୟରେ ଅକ୍ଷର ଲେଖିବା ପାଇଁ ବାମହସ୍ତର ବୃଦ୍ଧାଙ୍ଗୁଳି ଏବଂ ଦକ୍ଷିଣ ହସ୍ତର ସବୁ ଅଙ୍ଗୁଳିଗୁଡ଼ିକ ବ୍ୟବହାର କରିବାକୁ ପଡ଼ିଥାଏ । ବାମ ହସ୍ତର ବୃଦ୍ଧାଙ୍ଗୁଳିକୁ ସାଧାରଣତଃ ତୀକ୍ଷ୍ଣ ଲୌହ-ଲେଖନୀମୁନର ଚାଳକ ରୂପେ ବ୍ୟବହାର କରି ତାରି ସାହାଯ୍ୟରେ ଗୋଲାକାର ଅକ୍ଷର ଲେଖିବାକୁ ମୂଳରୁ ଲେଖକମାନେ ଅଭ୍ୟାସ କରିଥାନ୍ତି । ଉତ୍କଳୀୟ ଲେଖକମାନେ ତାଳପତ୍ରରେ ଗୁଡ଼ାଏ ସମଶୀର୍ଷ ଗୋଲାକାର ଚିହ୍ନ ଲେଖି ଓଡ଼ିଆ ଅକ୍ଷରର ଶୈଳୀ ଅଭ୍ୟାସ କରିବା ରୀତି ଆଜି ପର୍ଯ୍ୟନ୍ତ କେଉଁ କେଉଁ ଅଞ୍ଚଳରେ ପ୍ରବର୍ତ୍ତିତ ହୋଇଅଛି । ସ୍ଥୂଳରେ କହିବାକୁ ଗଲେ, ଓଡ଼ିଆ ଅକ୍ଷର ଆଜି ସୁଗୋଲ ଓ ସୁନ୍ଦର ହୋଇଥିବା ମୂଳରେ ସେହି ପୋଥି-ଲେଖକମାନଙ୍କର ରୁଚି ମୁଖ୍ୟ ଭାବରେ ପ୍ରଭାବ ବିସ୍ତାର କରିଅଛି । ଯେଉଁ ସମୟରେ ତାଳପତ୍ର ପୋଥି ଲେଖିବା ନିମନ୍ତେ ବହୁ ଅର୍ଥ ଓ ସମୟ ବ୍ୟୟ କରିବାକୁ ପଡୁଥିଲା ଏବଂ ତାଳପତ୍ର ପୋଥିର ଆଦର ଓ ମୂଲ୍ୟ ଖୁବ୍‌ବେଶି ଥିଲା, ପୁଣି ଦେଶମଧ୍ୟରେ ଦଳେ ଲୋକ ବରାବର ପୋଥି ଲେଖି ଜୀବିକା ନିର୍ବାହ କରୁଥିଲେ,

ତେତେବେଳେ ଶୀଘ୍ର ଓ ସରଳ ଭାବରେ ଅକ୍ଷର ଲେଖିବା ସେମାନଙ୍କର ଆଦୌ ଆବଶ୍ୟକ ନ ଥିଲା । ସେମାନେ ଅକ୍ଷରକୁ ଯଥାସାଧ୍ୟ ସୁନ୍ଦର ଓ ପାଣ୍ଡିତ୍ୟପୂର୍ଣ୍ଣ ଭାବରେ ଲେଖିବାକୁ ବେଶି ସୁଖ ପାଉଥିଲେ । ଫଳତଃ ଓଡ଼ିଆ ଅକ୍ଷର ହିନ୍ଦି, ତେଲୁଗୁ, ବଙ୍ଗଳା ବା ଅନ୍ୟାନ୍ୟ ଅକ୍ଷର ଅପେକ୍ଷା ଦେଖିବାକୁ ବେଶି ସୁନ୍ଦର ଏବଂ ଯୁକ୍ତାକ୍ଷର ବହୁଳ ହୋଇପଡ଼ିଛି । ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀରେ ଲିଖିତ 'ମହାର୍ଣ୍ଣବ' ନାମକ ଗୋଟିଏ ପୋଥିରେ ଏପରି ପାଣ୍ଡିତ୍ୟପୂର୍ଣ୍ଣ ଯୁକ୍ତାକ୍ଷରମାନ ବହୁଳ ଭାବରେ ବ୍ୟବହୃତ ହୋଇଥିବାର ଆମ୍ଭେମାନେ ଦେଖିଅଛୁ । ତାଳପତ୍ର ଛିନ୍ନ ହେବା ଭୟରେ ସମ୍ଭବତଃ ଉତ୍କଳୀୟ ଲେଖକମାନେ ଓଡ଼ିଆ ବର୍ଣ୍ଣମାଳାରେ ଯଥାସାଧ୍ୟ କୋଣ ବା ରେଖାବହୁଳ ଅକ୍ଷର ଏକାବେଳକେ ବର୍ଜନ କରି ସେଗୁଡ଼ିକ ବର୍ତ୍ତୁଳ କରିବାକୁ ପ୍ରୟାସ ପାଇଥିଲେ । ଏହାହିଁ ମଧ୍ୟ ଯୁଗରେ ଉତ୍କଳୀୟ ବର୍ଣ୍ଣମାଳାର ପ୍ରଧାନ ସଂସ୍କାର ବୋଲି ଆମ୍ଭେମାନେ ମନେକରୁ ।

ଅଶୋକ ଲିପି ସଙ୍ଗେ ଆଧୁନିକ ପ୍ରଚଳିତ ଓଡ଼ିଆ ଲିପିକୁ ତୁଳନା କରି ପରୀକ୍ଷା କଲେ ଆମ୍ଭେମାନେ ସ୍ପଷ୍ଟ ଦେଖିପାରୁଅଛୁ ଯେ, ମୂଳ ଆକ୍ଷରିକ ସଙ୍କେତ ଯଥାସାଧ୍ୟ କ୍ଷୁଣ୍ଣ ନ କରି ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷରକୁ ପରସ୍ପରର ଆକୃତି ସଙ୍ଗେ ସାମ୍ୟରକ୍ଷା କରିବା ନିମନ୍ତେ ପ୍ରାଚୀନ ଲେଖକମାନେ ଚେଷ୍ଟା କରୁଥିଲେ । ତା' ଫଳରେ ହିନ୍ଦୀ ଓ ବଙ୍ଗଳା ବର୍ଣ୍ଣମାଳାର ଶୀର୍ଷ ଦେଶରେ ଗୋଟିଏ ସରଳ ରେଖା ଦେଖିବାକୁ ମିଳେ ଏବଂ ଓଡ଼ିଆ ବର୍ଣ୍ଣମାଳାର ଶୀର୍ଷ ଦେଶରେ ଗୋଟିଏ ବୃତ୍ତ ଦେଖାଯାଏ ।

ଆଜି ଓଡ଼ିଶାରେ ତାଳପତ୍ର ସ୍ଥଳରେ ସୁନ୍ଦର ବିଲାତି କାଗଜ ବ୍ୟବହୃତ ହେଉଅଛି; ଆଉ ଲୌହ ଲେଖନୀ ପରିବର୍ତ୍ତରେ ସୁନ୍ଦର କଲମ ଓ ଝରକଲମ ଲୋକେ ବ୍ୟବହାର କରୁଅଛନ୍ତି । ତଥାପି ସେହି ତାଳପତ୍ର ଓ ଲୌହ ଲେଖନୀରେ ବ୍ୟବହୃତ ବର୍ଣ୍ଣମାଳାର ଆକୃତି ଅପରିବର୍ତ୍ତିତ ଭାବରେ ବରାବର ସେହି ପ୍ରାଚୀନ ସଂସ୍କୃତି ନେଇ ଛାପାଖାନାମାନଙ୍କରେ ଦୃଢ଼ ଆସନ ମାଡ଼ିବସିଛି । ମସୃଣ କାଗଜ ଓ ଶୀଘ୍ର ଗତିଶୀଳ ପର କଲମରେ ଚିତ୍ର ଆଙ୍କିଲା ପରି ସୁନ୍ଦର ଗୋଲ ଗୋଲ ଅକ୍ଷର ଲେଖିବାକୁ ଯିବା ବିଡ଼ମ୍ବନା ମାତ୍ର । ଓଡ଼ିଶାରେ ଶତକଡ଼ା ନବେ ଜଣ ଲେଖକ ସେହି ବର୍ତ୍ତୁଳ ଅକ୍ଷର ମୋଡ଼ି ଭାଙ୍ଗି କିମ୍ଭୂତକିମାକାର କରି ପକାଇ ଥିବାର ଦେଖାଯାଏ । ବାସ୍ତବରେ ପ୍ରାଚୀନ ପଦ୍ଧତି ଅନୁଯାୟୀ ମୁକ୍ତାଫଳତୁଲ୍ୟ ସୁନ୍ଦର ସୁନ୍ଦର ଅକ୍ଷର ଲେଖିବା ଗୋଟିଏ ବାହାଦୁରି ହେଲେ ସୁଦ୍ଧା ଚିତ୍ତବିନୋଦନ ବେଳେ କିମ୍ବା ଛାତ୍ରମାନେ କପି ଲେଖିଲାବେଳେ ଏପରି ବର୍ତ୍ତୁଳ ଅକ୍ଷର ଲେଖା ହୋଇଥାଏ ମାତ୍ର । ସ୍ଥୂଳରେ କହିବାକୁ ଗଲେ, ତାହା ସୌଖୀନ ବର୍ଣ୍ଣମାଳାରେ ପରିଣତ ହୋଇଅଛି ଏବଂ ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ ଲିଖିତାକ୍ଷରର ସେହି ପ୍ରାଚୀନ ଶୈଳୀ ବିକୃତ ଆକାର ଧାରଣ କରିଅଛି । ଇଦୃଶ ଆକ୍ଷରିକ ପରିବର୍ତ୍ତନ ବେଳେ ସମ୍ଭବତଃ ପ୍ରାକୃତିକ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଧରଣର ଲିପି ମଧ୍ୟ ପ୍ରବର୍ତ୍ତିତ ହୋଇଅଛି । ଓଡ଼ିଶାରେ 'କରଣୀ-ଅକ୍ଷର' ନାମକ ଯେଉଁ ଲିପି ବିଦ୍ୟମାନ, ତା'ର ମୂଳରେ ଲିଖନଗତ ଶୀଘ୍ରତା ଓ ସୌକର୍ଯ୍ୟ ପ୍ରଧାନ କାରଣ ବୋଲି

ନିର୍ଣ୍ଣୀତ ହୋଇପାରେ । ପ୍ରତ୍ୟେକ ଶବ୍ଦ ଲେଖିଲାବେଳେ ଗୋଟିଏ ଅକ୍ଷର ସଙ୍ଗେ ପାର୍ଶ୍ୱସ୍ଥ ଅକ୍ଷରକୁ ମିଶାଇ ଲେଖିବା ଅପେକ୍ଷାକୃତ ସୁବିଧାଜନକ ବୋଧହୁଏ । ବାସ୍ତବରେ ପ୍ରତି ଅକ୍ଷରକୁ ପରସ୍ପରରୁ ବିଚ୍ଛିନ୍ନ କରି କାଗଜ ପୃଷ୍ଠାରୁ ବାରମ୍ବାର କଲମ ମୁନ ଉପରକୁ ଉଠାଇ ଲେଖିବା କଷ୍ଟସାଧ୍ୟ ଓ ସମୟର ଅଯଥା ଅପବ୍ୟୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଣୁ ଓଡ଼ିଶାରେ ଯେତେବେଳେ ଧୀରେ ଧୀରେ କାଗଜ ବ୍ୟବହୃତ ହେବାକୁ ଲାଗିଲା, ତେତେବେଳେ ଓଡ଼ିଶାର ଲେଖକ ସମ୍ପ୍ରଦାୟ ସେହି ପ୍ରାଚୀନ ଆକ୍ଷରିକ ଚିହ୍ନ ପରିବର୍ତ୍ତନ କରିବାକୁ ଲାଗିଲେ । ଏହି ପରିବର୍ତ୍ତନ ପ୍ରକ୍ରିୟା କ୍ରମେ ଲେଖକମାନଙ୍କ ପ୍ରଚେଷ୍ଟାରେ କ୍ଷିପ୍ରଭାବରେ ସଂସାଧିତ ହୋଇ ଲେଖାର ସରଳତାପାଇଁ ଗୋଟିଏ ସ୍ୱତନ୍ତ୍ର ଲିପିର ସୃଷ୍ଟି ହୋଇଥିଲା । ସେହି ଲିପିକୁ ଆଜି ଆମ୍ଭେମାନେ 'କରଣୀ ଅକ୍ଷର' ବୋଲି କହୁଁ । ଏହା ଯେ ବରାବର ସେହି ପ୍ରାଚୀନ ଉତ୍କଳୀୟ ବର୍ଣ୍ଣମାଳାର ଆକୃତିକୁ ଆଧାର କରି ଗଠିତ ହୋଇଅଛି, ଏକଥା ଆମ୍ଭେମାନେ କହି ନ ପାରୁ । କାରଣ ଏହି ଲିପିର କେତେକ ଅକ୍ଷର ସଙ୍ଗେ ଅଶୋକ ଯୁଗରୁ ପ୍ରଚଳିତ ବର୍ଣ୍ଣମାଳାର କୌଣସି ଶ୍ରେଣୀୟ ଅକ୍ଷରର ଆକୃତି ସମାନ ନୁହେଁ । ଏଣୁ କରଣୀ ଅକ୍ଷରର କେତେକ ବର୍ଣ୍ଣ ନିତାନ୍ତ କଳ୍ପନାମୂଳକ ହୋଇ ପଡ଼ିଛି । ଅତଏବ ଓଡ଼ିଆ ଭାଷାରେ ଲେଖା-ଅକ୍ଷରର ପରିବର୍ତ୍ତନ କରିବାକୁ ଗଲାବେଳେ ଯଥାସାଧ୍ୟ ସେହି ପ୍ରାଚୀନ ଆକ୍ଷରିକ ଚିହ୍ନକୁ ଆଦର୍ଶ କରି କେତେକ ଅକ୍ଷରର ସ୍ୱରୂପ ନିର୍ଣ୍ଣୟ କରିବା ଆବଶ୍ୟକ ।

ଏଠାରେ ପ୍ରଶ୍ନ ଉଠିପାରେ - ବର୍ତ୍ତମାନ ଲିପିସଂସ୍କାର ହେଲେ ଆମ୍ଭର କି ଉପକାର ସଂସାଧିତ ହେବ ? ଯଦି ବାସ୍ତବରେ ଆଧୁନିକ ଲିପିର ଆକୃତି ପରିବର୍ତ୍ତନ କରିବାକୁ ହୁଏ, ତାହେଲେ ପ୍ରେସ୍‌ମାନଙ୍କରୁ ଆଧୁନିକ ପ୍ରଚଳିତ ଅକ୍ଷର ହଠାତ୍ ବଦଳାଇବାକୁ ପଡ଼ିବ କି ନାହିଁ ? ଉପର୍ଯ୍ୟୁକ୍ତ ପ୍ରଥମ ପ୍ରଶ୍ନର ଉତ୍ତର ବିଷୟରେ କେତେକ କଥା ଉପରେ ଆଲୋଚିତ ହୋଇଅଛି । ସ୍ଥୂଳରେ କହିବାକୁ ଗଲେ ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଲିପି ଆଧୁନିକ ଯୁଗରେ ପ୍ରବର୍ତ୍ତିତ ଲିଖନୋପାଦାନ ପାଇଁ ଆଦୌ ଉଦ୍ଦିଷ୍ଟ ନୁହେଁ । ଯୁଗକୁ ଚାହିଁ ସଂସ୍କୃତିର ଆବଶ୍ୟକତା କେହି ଅସ୍ୱୀକାର କରିପାରିବେ ନାହିଁ । ସୁତରାଂ ଓଡ଼ିଆ ବର୍ଣ୍ଣମାଳାର ଆକୃତି ଯୁଗୋପଯୋଗୀ ରୂପେ ବଦଳାଇବା ନିତାନ୍ତ ଆବଶ୍ୟକ । ପ୍ରଥମ ପ୍ରଶ୍ନର ଉତ୍ତର ଯଦି ମନୋନୀତ ହୁଏ, ତା'ହେଲେ ଦ୍ୱିତୀୟ ପ୍ରଶ୍ନଟି ନିତାନ୍ତ ଗୌଣ ବୋଲି ଉପଲବ୍ଧ ହେବ । ବର୍ତ୍ତମାନ ଛାପାଖାନାମାନଙ୍କରୁ ପ୍ରଚଳିତ ଅକ୍ଷର ଏକାବେଳକେ ଉଠାଇ ଦେବାର ଆବଶ୍ୟକତା ନାହିଁ । କିନ୍ତୁ ଧୀରେ ଧୀରେ ପ୍ରତି ଓଡ଼ିଆ ପ୍ରେସ୍‌ରେ ସେହି ନୂତନ ଅକ୍ଷର ପ୍ରଚଳିତ କରିବାକୁ ପଡ଼ିବ । ଏଥିରେ ଅବଶ୍ୟ ପାଠକମାନେ ପ୍ରଥମେ ଅନଭ୍ୟସ୍ତତା ନିବନ୍ଧନ ବିରକ୍ତି ବୋଧକରି ପାରନ୍ତି; କିନ୍ତୁ ଯେତେବେଳେ ସେହି ପରିବର୍ତ୍ତିତ ଲିପି ଓଡ଼ିଶାରେ ପରିଚିତ ହେବ, ତେତେବେଳେ ସୁବିଧା ଦେଖି ପ୍ରେସ୍‌ମାନଙ୍କରୁ ଆଧୁନିକ ପ୍ରଚଳିତ ଲିପି କ୍ରମେ ଉଠାଇ ଦିଆଯାଇପାରେ କିମ୍ବା ଏହି ଲିପି ସଙ୍ଗେ ସଙ୍ଗେ କାଳକ୍ରମେ ଏପରି ମଧ୍ୟ ହୋଇପାରେ ଯେ, ଛାପାଅକ୍ଷର ଓ

ଲେଖାଅକ୍ଷର ଦିଓଟି ସ୍ୱତନ୍ତ୍ର ବର୍ଣ୍ଣମାଳାରେ ପରିଗଣିତ ହେବ । ତାହାହେଲେ ଆମର ସ୍କୁଲ ପିଲାମାନେ କିମ୍ବା ଆଉ କେହି ଓଡ଼ିଆ ଅକ୍ଷର ଶିକ୍ଷା କରିବାକୁ କଷ୍ଟବୋଧ କରିବେ ବୋଲି କହନା କରିବା ମଧ ଯୁକ୍ତିଯୁକ୍ତ ନୁହେଁ । ଇଂରାଜୀ ଭାଷାରେ ଏପରି ପଦ୍ଧତି ପ୍ରବର୍ତ୍ତିତ ହୋଇଥିଲେ ସୁଦ୍ଧା କେହି ତାକୁ ଅନାବଶ୍ୟକ ବୋଲି ପରିତ୍ୟାଗ କରି ନାହାନ୍ତି । ଇଂରାଜୀ ଭାଷା ବ୍ୟତୀତ ଭାରତବର୍ଷର କେତେକ ପ୍ରଧାନ ଭାଷାରେ ସୁଦ୍ଧା ଏପରି ଦିଓଟି ପ୍ରକାର ଲିପି ପ୍ରଚଳିତ ହେଉଥିବାର ଦେଖାଯାଏ । ଏଥିର ମୂଳରେ ଲିଖନଗତ ସୌକର୍ଯ୍ୟ ପ୍ରଧାନ କାରଣ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅତଏବ ଓଡ଼ିଆ ବର୍ଣ୍ଣମାଳାରେ ଦିଓଟି ଲିପିର ପ୍ରଚଳନ କାହିଁକି ଦୋଷାବହ ହେବ ? ଦୈନିକ ଖବରକାଗଜମାନଙ୍କ ସାହାଯ୍ୟରେ ଏବଂ ଏଲିମେଣ୍ଟରି ସ୍କୁଲମାନଙ୍କରେ ପ୍ରବର୍ତ୍ତିତ ବର୍ଣ୍ଣମାଳାରେ ଏହି ପରିବର୍ତ୍ତିତ ଲିପି ପ୍ରଚଳିତ ହେଲେ ଅତି ଅଳ୍ପ କାଳ ମଧ୍ୟରେ ଲୋକେ ତାହା ବ୍ୟବହାର କରିବାକୁ ସୁବିଧା ବୋଧ କରିବେ ।

ଓଡ଼ିଶାରେ ପ୍ରଚଳିତ ବର୍ଣ୍ଣମାଳାକୁ କିପରି ଭାବରେ ପରିବର୍ତ୍ତିତ କରିବା ଆବଶ୍ୟକ, ତାହା ଗବେଷଣା କରିବା ଜଣେ ଦୁଇଜଣର କାର୍ଯ୍ୟ ନୁହେଁ । ସଂଘବଦ୍ଧ ଭାବରେ କେତେଜଣ ମନସ୍ୱୀ ବ୍ୟକ୍ତି ଏହି କାର୍ଯ୍ୟରେ ଅଗ୍ରସର ହେଲେ ଓଡ଼ିଶାରେ ଲିପିସଂସ୍କାରମୂଳକ କାର୍ଯ୍ୟଟି ସୁନିୟନ୍ତ୍ରିତ ହୋଇପାରନ୍ତା । ଏଣୁ ସାହିତ୍ୟ-ସମାଜ କିମ୍ବା ଅନ୍ୟକୌଣସି ସାହିତ୍ୟିକ ଅନୁଷ୍ଠାନ ପକ୍ଷରୁ ପ୍ରଥମେ ଗୋଟିଏ ସବ୍‌କମିଟି ଗଠିତ ହୋଇ ସଂସ୍କାର ଭାର ସେହି କମିଟି ଉପରେ ନ୍ୟସ୍ତ କରାଗଲେ ସୁବିଧାରେ ଏହି ମହତ୍ କାର୍ଯ୍ୟ ସମ୍ପାଦିତ ହେବ ବୋଲି ଆଶା ହୁଏ । ଓଡ଼ିଶା ଅଚିର ଭବିଷ୍ୟତରେ ଗୋଟିଏ ନୂତନ ପ୍ରଦେଶରେ ପରିଣତ ହେବ । ଆଉ ବର୍ଷେ ଖଣ୍ଡେ ମଧ୍ୟରେ ବୋଧହୁଏ ସେ ନୂତନ କଳେବର ନେଇ ଭାରତର ସମ୍ମିଳିତ ରାଷ୍ଟ୍ରତନ୍ତ୍ରରେ ଯୋଗ ଦେଇଥିବ । ଓଡ଼ିଶା ପକ୍ଷରେ ଏହାଠାରୁ ବଳି ମାହେନ୍ଦ୍ର ଯୋଗ କେତେ ଶତାବ୍ଦୀ ଧରି ହୋଇ ନ ଥିଲା । ଏତିକିବେଳେ ଉତ୍କଳୀୟ ବର୍ଣ୍ଣମାଳାକୁ ବିଜ୍ଞାନସମ୍ମତ ଭାବରେ ତଦୀୟ ପ୍ରାଚୀନ ସଂସ୍କୃତି, ସୌକର୍ଯ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷାକରି ଗଠିତ କରିବାର ସମୟ ଆସିଛି ବୋଲି କୁହାଯାଇ ପାରେ । ଓଡ଼ିଆ ବର୍ଣ୍ଣମାଳାର ଆକୃତିଗତ ସଂସ୍କାର ବିଷୟରେ ଗଭୀର ଭାବରେ ଗବେଷଣା କରି ଶୀଘ୍ର ଗୋଟିଏ ପଦ୍ଧତି ଓ ପ୍ରଣାଳୀ ପ୍ରକଟିତ କରିବା ଆବଶ୍ୟକ । ଉତ୍କଳ-ସାହିତ୍ୟ ସମାଜର ଆଗାମୀ ବାର୍ଷିକ ଅଧିବେଶରେ ସେହି ସଂସ୍କୃତ ଲିପି ପ୍ରଥମେ ଗୃହୀତ ହୋଇ ଓଡ଼ିଶାରେ ସେଥିରେ ପ୍ରବର୍ତ୍ତନ ପାଇଁ ଯତ୍ନ କରିବା ଭାର ସେହି ଅନୁଷ୍ଠାନ ଉପରେ ନ୍ୟସ୍ତ ହେଲେ ବୋଧହୁଏ ଏହି ଗୁରୁତର କାର୍ଯ୍ୟଟି ସୁସମ୍ପାଦିତ ହୋଇପାରିବ ।

ଓଡ଼ିଆ ବର୍ଣ୍ଣମାଳାର ଆକୃତି କିପରିଭାବରେ ପରିବର୍ତ୍ତନ କରିବାକୁ ହେବ, ତାହା ଅଦ୍ୟାପି ଗୋଟିଏ ଜଟିଳ ସମସ୍ୟାରୂପେ ବିଦ୍ୟମାନ; ସୁତରାଂ ଏହି କ୍ଷୁଦ୍ର ପ୍ରବନ୍ଧରେ ସେ ସମସ୍ତ ବିଚାର କରିବା ଅସମ୍ଭବ । ବର୍ଣ୍ଣମାଳାର ଇତିହାସରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଓଡ଼ିଆ ଭାଷାରେ ପ୍ରଚଳିତ ପ୍ରାୟ ପ୍ରତ୍ୟେକ ଅକ୍ଷର ତଦୀୟ ମୌଳିକ ଚିହ୍ନ ସହ କେତେକ ଉପଚିହ୍ନର ସମ୍ମିଶ୍ରଣରେ ବର୍ତ୍ତମାନ ଆକାର ଧାରଣ କରିଅଛି । ଅତଏବ ପ୍ରତ୍ୟେକ ଉତ୍କଳୀୟ ଅକ୍ଷରକୁ

ଆମ୍ଭେମାନେ ଦିଓଟି ବିଶିଷ୍ଟ ଭାଗରେ ବିଭକ୍ତ କରିପାରୁ; ଯଥା- (୧) ମୁଖ୍ୟ ଓ ମୌଳିକ ଚିହ୍ନ ଏବଂ (୨) ଗୌଣ ଓ ବ୍ୟାବହାରିକ ଚିହ୍ନ । ପ୍ରଥମୋକ୍ତ ଚିହ୍ନଟି ଏକ ସମୟରେ ସମଗ୍ର ଭାରତବର୍ଷରେ ପ୍ରଚଳିତ ହେଉଥିଲା ଏବଂ ଦ୍ୱିତୀୟୋକ୍ତ ଚିହ୍ନ କ୍ରମେ ସେଥିରେ ସଂଯୁକ୍ତ ହୋଇ ପ୍ରାଦେଶିକ ଲିପିଗୁଡ଼ିକ ପରସ୍ପରଠାରୁ ପୃଥକ୍ କରିବାକୁ ଲାଗିଲା । ଉଦାହରଣ ସ୍ୱରୂପ ବର୍ଣ୍ଣମାଳାର ପ୍ରଥମ ଅକ୍ଷରଟି ଧରାଯାଉ । ଅଶୋକ ଲିପିରେ ଏହି ଅକ୍ଷରଟି ଦେଖିବାକୁ ଇଂରାଜୀ ଲିପିର ଓଲଟା ଅକ୍ଷର ପରି ଥିଲା । ତାହା କ୍ରମେ ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରାଦେଶିକ ଲେଖକମାନଙ୍କ ହସ୍ତରେ ପଡ଼ି ଭିନ୍ନ ଭିନ୍ନ ରୂପ ଧାରଣ କରିଅଛି ।

ସୁତରାଂ ମୌଳିକ ଚିହ୍ନଟି ବରାବର ରକ୍ଷାକରି ଆମ୍ଭମାନଙ୍କର ଅକ୍ଷରଗୁଡ଼ିକ ଯେ ଗଠିତ ହୋଇଅଛି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନ ଆପଣମାନେ ମନେକରନ୍ତୁ, ବର୍ଣ୍ଣମାଳାର ଏହି ଆଦ୍ୟ ଅକ୍ଷରଟି ପ୍ରସ୍ତାବିତ ଲିପିସଂସ୍କାର ଅନୁଯାୟୀ ଆମ୍ଭେମାନେ ଯଦି ତାକୁ ସେହି କୁଟିଳ ଲିପିର ୩ୟ ସ୍ତରକୁ ପୁଣି ଉନ୍ନୀତ କରୁ ଏବଂ ସେଥିରେ ଯଦି ଶୀଘ୍ର ଓ ସହଜରେ ତାହା ଲେଖିବାର ସୁବିଧା ବୋଧହୁଏ, ତାହେଲେ ସେପରି ପରିବର୍ତ୍ତନକୁ ଗ୍ରହଣ କରିବା ପାଇଁ କେହି ହେଲେ ଅସ୍ୱୀକୃତ ହେବେନାହିଁ । ପ୍ରଚଳିତ ଓଡ଼ିଆ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷର ଏପରି ଭାବରେ ବିଶ୍ଳେଷଣ କଲେ ଏହି ସଂସ୍କାର କାର୍ଯ୍ୟ ସୁଗମ ହୋଇ ପଡ଼ିବ ବୋଲି ଆଶା ହୁଏ । ଇ, କ, ଗ, ଘ ପ୍ରଭୃତି ଅକ୍ଷରର କ୍ରମିକ ବିକାଶକୁ ଆଧାର କରି ମଧ ଏହି ସଂସ୍କାର କାର୍ଯ୍ୟ ସୁନିୟନ୍ତିତ କରାଯାଇ ପାରିବ । 'ଇ' ଅକ୍ଷରଟି ପ୍ରଥମେ ତିନୋଟି ଗୋଲ ବା ରେଖାରେ ଚିହ୍ନିତ ହେଉଥିବ । ସେହି ଗୋଲ ଓ ରେଖାମାନଙ୍କୁ ଏକତ୍ର କରି ବର୍ତ୍ତମାନ ଓଡ଼ିଆ ବର୍ଣ୍ଣମାଳାର 'ଇ' ଅକ୍ଷରଟି ସୁଗଠିତ ହୋଇଅଛି । ଉତ୍କଳୀୟ ଲିପି ଦିଓଟି ବିଶିଷ୍ଟ ଭାଗରେ ବିଭକ୍ତ ହୋଇଥିବା କଥା ପ୍ରଥମେ ଆମ୍ଭେମାନେ କହିଅଛୁ । ତାକୁ ଆମ୍ଭେମାନେ 'ମୁଖ୍ୟ' ଓ 'ଗୌଣ' ବୋଲି ମଧ ନିର୍ଦ୍ଦେଶ କରିଅଛୁ । ଉ, ଘ, ତ ପ୍ରଭୃତି ଅକ୍ଷରର ଐତିହାସିକ ସ୍ତରମାନଙ୍କରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ । ଏହି ଅକ୍ଷରମାନଙ୍କରେ ଯେଉଁ ପୁଚ୍ଛା ଦିଆଯାଏ, ତାହା ସେହି ଦିଓଟି ଭାଗକୁ ନିର୍ଦ୍ଦେଶ କରୁଥିବାର ସ୍ପଷ୍ଟ ବୋଧହୁଏ । ପରବର୍ତ୍ତୀ ଯୁଗରେ 'ଉ' ଅକ୍ଷରଟି ମୌଳିକ ଚିହ୍ନ ଉପରେ ଗୋଟିଏ ଗୌଣଚିତ୍ର ସଂଯୁକ୍ତ ହୋଇ ତାହା ବର୍ତ୍ତମାନ ଆକାରରେ ପରିଣତ ହୋଇଅଛି । ଏହିପରି 'ଘ' ଓ 'ତ' ଅକ୍ଷର ମଧ ମୁଖ୍ୟ ଓ ଗୌଣ ଚିହ୍ନ ନେଇ ଗଠିତ ।

ପ୍ରକୃତରେ ଦେଖିବାକୁ ଗଲେ ଆକ୍ଷରିକ ସୌନ୍ଦର୍ଯ୍ୟ ଓ ସାମ୍ୟ-ଶୈଳୀ ରକ୍ଷା ନିମନ୍ତେ ଯେଉଁ ଅନାବଶ୍ୟକ ବୃତ୍ତ ଓ ଲାଙ୍ଗୁଳ ବିଶିଷ୍ଟ ଚିହ୍ନ ଓଡ଼ିଆ ବର୍ଣ୍ଣମାଳାରେ ବ୍ୟବହୃତ ହୋଇଅଛି, ତାହା ବର୍ଜନ କଲେ ଆମ୍ଭମାନଙ୍କର ବର୍ଣ୍ଣମାଳାକୁ ପୁଣି ସେହି କୁଟିଳାକ୍ଷର ଯୁଗକୁ ଫେରିଯିବାକୁ ପଡ଼ିବ ଏବଂ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ଭାଷାରେ ଲିଖନ-ସୌକର୍ଯ୍ୟ ବର୍ଦ୍ଧିତ ହେବ । ବର୍ତ୍ତମାନ ଆମ୍ଭେମାନେ ଯେଉଁ ଲିପି ସାହାଯ୍ୟରେ ବେଶି ପରିଶ୍ରମ ଓ ବହୁ ସମୟ ବ୍ୟୟ କରି ସୁଦ୍ଧା ତାକୁ ମୁକ୍ତାଫଳନିନ୍ଦୀ ସୁନ୍ଦର ବର୍ତ୍ତୁଳାକାରରେ ଲେଖିବାକୁ ଅପାରଗ ହେଉ,

ଲିପିସଂସ୍କାର ପରେ ଆମ୍ଭେମାନେ ଅକ୍ଷରର ସୌନ୍ଦର୍ଯ୍ୟ ବୃଦ୍ଧି କରିବାକୁ ଅପାରଗ ହେଲେ ସୁଦ୍ଧା ସେଥିରେ ସୌକର୍ଯ୍ୟ ବୃଦ୍ଧି କରିପାରିବୁ ବୋଲି ଆଶା ହୁଏ । ସୁତରାଂ ଏହି ସଂସ୍କାର କାର୍ଯ୍ୟରେ ସାହିତ୍ୟ-ସମାଜର ପ୍ରଥମେ ଅଗ୍ରସର ହେବା ବାଞ୍ଛନୀୟ ।

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ, ଆମେ ଦେଶରେ କୌଣସି ସଂସ୍କାରର ନାମ ଶୁଣିଲେ କେତେଲୋକ ମୁହଁ ମୋଡ଼ି ବସନ୍ତି, ଆଉ କେତେ ମଧ ସେଥିରେ ପତଙ୍ଗ ପରି ଡେଇଁପଡ଼ନ୍ତି । ଓଡ଼ିଆ ବର୍ଣ୍ଣ ମାଳାର ଆକୃତି ପରିବର୍ତ୍ତନ କରିବାକୁ ହେଲେ, ପ୍ରେସ୍‌ବାଲାମାନେ ସର୍ବପ୍ରଥମେ ଆପତ୍ତି ଉଠାଇବାର ଆଶଙ୍କା ହୁଏ । କିନ୍ତୁ ସମସ୍ତଙ୍କର ମନେରଖିବା ଉଚିତ ଯେ, ଆମ ବର୍ଣ୍ଣମାଳାର ସଂସ୍କାର ସଙ୍ଗେ ଯଦି ଆମ ଭାଷାର ଲିପିସୌଷ୍ଠବ ବର୍ଦ୍ଧିତ ହୁଏ, ତା ହେଲେ ସେପରି ସଂସ୍କାର ହେବା ବାଞ୍ଛନୀୟ ନୁହେଁ କି ଏବଂ ସେପରି ସଂସ୍କାର ନିମନ୍ତେ କ୍ଷୁଦ୍ର ବ୍ୟକ୍ତିଗତ ସ୍ୱାର୍ଥକୁ ବଳିଦେଇ ସେହି କାର୍ଯ୍ୟରେ ସହଯୋଗ କରିବା ପ୍ରତ୍ୟେକ ଦେଶ-ହିତୈଷୀର କର୍ତ୍ତବ୍ୟ ନୁହେଁ କି ? ସୁତରାଂ ପରିଶେଷରେ ଆମ୍ଭମାନଙ୍କର ସବିଶେଷ ନିବେଦନ ଏହି ଯେ, ଶୀଘ୍ର ଓଡ଼ିଶାର ମନସ୍ୱୀମାନେ ଏହି ବିଷୟରେ ଚିନ୍ତାକରି ଗୋଟିଏ କାର୍ଯ୍ୟକାରୀ ପନ୍ଥା ଗ୍ରହଣପୂର୍ବକ ଓଡ଼ିଶାର ଏହି ନବଲିପି ସଂସ୍କାରମୂଳକ ଆନ୍ଦୋଳନକୁ ଯଶସ୍ୱୀ କରନ୍ତୁ ।



# ୨୭

# ଭାଷା ବ୍ୟବଧାନ

## ସରଳା ଦେବୀ

ଦିନେ ଉତ୍କଳର ପ୍ରବୀଣ ସାହିତ୍ୟିକ ପୂର୍ଣ୍ଣଚନ୍ଦ୍ର-ଭାଷାକୋଶର ବିଶାରଦ, ଭାଷାକୌଶଳୀ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ପଚାରିଥିଲି, "ଓଡ଼ିଆ ଭାଷାର ଲୋକ ସାହିତ୍ୟ ନେଇ ଲେଖିବାକୁ ବସିଛି । ଆପଣଙ୍କୁ ଗୋଟିଏ ସମସ୍ୟାର ସମାଧାନ କରିବାକୁ ହେବ । କହନ୍ତୁ ଦେଖି, ଆମର ସାହିତ୍ୟର ଭାଷା କିପରି ହେବା ଉଚିତ ? ତା'ର Standard model କ'ଣ, ଜାଣିବାକୁ ଚାହେଁ ମୁଁ ।" ସେ କହିଲେ- "ଭାଷା ଅତି ସରଳ ଓ ସହଜବୋଧଗମ୍ୟ ହେବା ଉଚିତ- ଯେଉଁ ଭାଷାକୁ ଲକ୍ଷ କୋଟି ଓଡ଼ିଆ ବୁଝିବେ ।" ମୁଁ କହିଲି, "ଯେ ଭାଷାର ବାହନରେ ଭାବକୁ ରୂପ ଦେବ, ସେ କ'ଣ ଆପଣଙ୍କ ଦେଢ଼କୋଟି ଓଡ଼ିଆଙ୍କ ସ୍ତରକୁ ଓହ୍ଲାଇ ସେମାନଙ୍କ ମନର ଅନୁଭୂତି ସ୍ତର ପାଇଁ ଫରମାସିଦିଆ ଲେଖା ନେଇ ପରିବେଷଣ କରିବ କି ? ବରଂ ସେ ତା'ର ସୃଷ୍ଟିକୁ ଦେଶକାଳପାତ୍ର ଅତୀତ କରି ଥୋଇଦବ, କେଉଁ ଅନାଗତ ଦିନରେ ସେହି ସୃଷ୍ଟି ଲକ୍ଷକୋଟିଙ୍କ ଦ୍ୱାରା ଆଦୃତ ହେବାପାଇଁ, ସ୍ପୃହଣୀୟ ତଥା ଗ୍ରହଣୀୟ ହେବାପାଇଁ । ଯେଉଁ ଲେଖକ ବରାଦଦିଆ ଭାଷା ତିଆରି କରି ତହିଁରେ ଭାବରୂପ ଫୁଟାଇ ଦିଏ, ସେ ସାହିତ୍ୟ ଜଗତରେ ଯେତେ ବଡ଼ ହେଉ ନା କିଆଁ, ପ୍ରକୃତରେ ସେ ଦୀନ ବା କୃପାର ପାତ୍ର ଛଡ଼ା ଆଉ କ'ଣ ହୋଇପାରେ ?" ବୃଦ୍ଧ ସାହିତ୍ୟାଚାର୍ଯ୍ୟ କହିଲେ - "ହଁ, ସେଇ ସ୍ତରକୁ ହିଁ ଓହ୍ଲାଇ ଆସିବାକୁ ହେବ । ତାହା ନ ହେଲେ ଓଡ଼ିଆ ଭାଷାର ଯେ ଦୁର୍ଦ୍ଦଶା, ତାହା ଘୁଞ୍ଚିବ ନାହିଁ । ଦିନ ଥିଲା, ଯେତେବେଳେ କ୍ଲିଷ୍ଟପଦ ବହୁଳ ଛାନ୍ଦ, ଚୌପଦୀ, କାବ୍ୟ, ଚଉତିଶା ଆମ ଦେଶର ପୁରପଲ୍ଲୀର ମହିଳାମାନେ ସୁଦ୍ଧା ବୁଝିପାରୁଥିଲେ; ଅନ୍ୟାନ୍ୟ ସଙ୍ଗିନୀ, ସହଚରୀ, ଆତ୍ମୀୟାମାନଙ୍କୁ ବସାଇ ସେହିସବୁ ପୋଥି, ପୁସ୍ତକ ପ୍ରଭୃତିକୁ ଅର୍ଥ କରି ଦେଉଥିଲେ; କିନ୍ତୁ ଇଂରାଜୀ ଶିକ୍ଷାର ପ୍ରାବଲ୍ୟ ସହିତ ବଙ୍ଗ ଭାଷାର ଅନୁକରଣ ହେତୁ ଓଡ଼ିଆ ଭାଷା ଏପରି ଏକ ସନ୍ଧି ସ୍ଥଳରେ ଆସି ପହୁଞ୍ଚିଅଛି, ଯେଉଁଠାରେ କି ଆମର ହାତ ପାଉନାହିଁ - ଚାଲି ଆସିଥିବା ଆବର୍ଜ୍ଜନାକୁ ଫିଙ୍ଗିବା ଅସମ୍ଭବ ହୋଇଅଛି । ଲୋକଙ୍କୁ ସାହିତ୍ୟର ରସ ଚଖାଇବାକୁ ଯେ ଆସିବ, ତାକୁ ଲୋକଙ୍କ ସାଧାରଣ ଅନୁଭବ

କ୍ଷେତ୍ରକୁ ଚାଲି ଆସିବାକୁ ହେବ ।"

ଏହି ବିଷୟ ନେଇ ମୋର ମନ ବହୁ ସମୟରେ ଆନ୍ଦୋଳିତ ହୋଇଅଛି । ପ୍ରକୃତରେ ବୋଧହେଉଛି, ଆମର ସାହିତ୍ୟ ପୁରୁଣା ହେଉ ବା ନୂଆ ହେଉ, ଆଜି ଯେଉଁଠି ଅଛି- ସେହି କ୍ଷେତ୍ରରେ ସାଧାରଣଙ୍କର ପ୍ରବେଶ ନିଷେଧ । ଆଉ ଏହି ନିଷେଧ ହେତୁରୁ ଆଜି ଦେଶରେ ବଡ଼ ଚିନ୍ତା, ବଡ଼ ଅଭିଜ୍ଞତା, ବଡ଼ ସିଦ୍ଧାନ୍ତ, ବଡ଼ ମୀମାଂସା କିମ୍ବା ବିଶେଷ ଅନୁଭୂତିରସ ଲୋକଙ୍କର ଚିତ୍ତ ଓ ପ୍ରାଣକୁ ରସାୟିତ କରିପାରୁ ନାହିଁ । 'ପ୍ରାଚୀନ ସାହିତ୍ୟ' ପ୍ରତି ସାଧାରଣ ଲୋକଙ୍କର ଯେ ମମତା ରହି ଅଛି, ସେ ମମତା ସାହିତ୍ୟ କି ଭାଷା ପାଇଁ ନୁହେଁ- ସେ ମମତାର ମୂଳକଥା ହେଉଛି ପୁଣ୍ୟ ଲାଭ ବା ଧର୍ମଲୋଭ । 'ବିଦଗ୍ଧଚିନ୍ତାମଣି' ବହୁ ଓଡ଼ିଆ ପଢ଼ିଛନ୍ତି, ପଢ଼ନ୍ତି 'ରସକଲ୍ଲୋଳ', 'ମଥୁରାମଙ୍ଗଳ' ମଧ୍ୟ ପଢ଼ନ୍ତି; କିନ୍ତୁ ରଚୟିତାଙ୍କର ଭାଷା କିମ୍ବା ତାହାର ବର୍ଣ୍ଣନାଚାତୁରୀ ବା ଭାବଲାଳିତ୍ୟ ତ ପାଠକମାନେ (ସାଧାରଣତଃ) ଉପଲବ୍ଧି କରିବା ଉଦ୍ଦେଶ୍ୟରେ ପଢ଼ନ୍ତିନାହିଁ, ପଢ଼ନ୍ତି, ରାଧାକୃଷ୍ଣଙ୍କର ଲୀଳା ଶୁଣିବା ପାଇଁ । ଅଥବା କେହି କେହି ପଢ଼ନ୍ତି ଚଟୁଳ ପ୍ରେମ, ମାନ, ଅଭିମାନ, ବିରହ, ମିଳନର ସ୍ୱାଦ ଯେତେଟା ପାରନ୍ତି, ବୁଝିନେବା ପାଇଁ । ଏଠାରେ ସାହିତ୍ୟ ଭାଷାର ବ୍ୟବଧାନ ଜାତି ମନରେ କ୍ଷୋଭ ଜନ୍ମାଏ । ପୁରାଣ ଭାଗବତର ଭାଷା ସହଜ ସର୍ବଜନବୋଧଗମ୍ୟ ଥିବାରୁ ବର୍ତ୍ତମାନ ଦେଖିବାକୁ ପାଉଁ, ଓଡ଼ିଶାର ପ୍ରତି ଗୃହସ୍ଥ ଘରେ ଭାଗବତ ଗାଦି ଓ ପୁରାଣପାଠର ବ୍ୟବସ୍ଥା ରହିଅଛି । ତାଛଡ଼ା, ଅପେକ୍ଷାକୃତ ପୁରୁଣା ସାହିତ୍ୟରେ ଝିଅମାନଙ୍କ କାନ୍ଦ ଗୀତ, ଗୋପାଳଙ୍କ ଲାଉଡ଼ୀ ଗୀତ, ପାଟୁଆ ଗୀତ, ଚଇତି ଘୋଡ଼ା ଗୀତ, ଝାମୁ ଗୀତ, ଦୋଳି ଗୀତ, କୁଆଁରପୁନିଅ ଗୀତ, ହୋରୀ ଗୀତ, ଭଜନ, ଜଣାଣ, ସୁଆଙ୍ଗ ନାଟ ଗୀତ, ପାଲା ଗୀତ-ଏସବୁ ଯେ ରହିଅଛି, ତହିଁରେ ଭାଷା ବ୍ୟବଧାନ ନ ଥିବାରୁ ତାହା ସର୍ବଜନଗମ୍ୟ ହୋଇପାରିଅଛି । ବର୍ତ୍ତମାନ ସାହିତ୍ୟ ଓ ଭାଷାର ଯେ ଅବସ୍ଥା ତାହା ଏପରି ବିଷମତା ସୃଷ୍ଟିକରି ଅଛି ଯେ, ଏହି ବୈଷମ୍ୟ କବଳରେ ସାଧାରଣ ଓଡ଼ିଆ ଶିକ୍ଷିତ ଯୁବକଯୁବତୀ ମଧ୍ୟ ପଡ଼ି ରହିଛନ୍ତି । ଏହି ଶ୍ରେଣୀର ପାଠକପାଠିକାମାନଙ୍କ ସହିତରେ ଉତ୍କଳସାହିତ୍ୟର ଯେ ଭାଷା ବ୍ୟବଧାନ ରହିଛି, ତାହା ପ୍ରାଚୀନ ଛନ୍ଦୋବଦ୍ଧ କାବ୍ୟ ସାହିତ୍ୟକୁ ନେଇ । ଏଣେ ସେମାନେ ଭାବପ୍ରକାଶ ପାଇଁ ଯେ ଭାଷା ସୃଷ୍ଟି କରୁଛନ୍ତି ତାହାର ସୁଦୂର ବ୍ୟବଧାନ ଲୋକଚିତ୍ତକୁ ସାହିତ୍ୟରସରୁ ବଞ୍ଚିତ କରି ରଖୁଛି । ପୁରାତନ ସଂସ୍କୃତମିଶା ଭାଷା ବର୍ତ୍ତମାନ ଯେଉଁ ଅଭିଜାତ ଶ୍ରେଣୀରେ ରହିଛି, ତହିଁକି ହାତ ଛୁଆଁଇବାକୁ ପଣ୍ଡିତମାନଙ୍କ ଛଡ଼ା ଆଉ କାହାରି ହାତ ଯିବନାହିଁ । ଲୋକ-ସାହିତ୍ୟ ବା ଗଣ-ସାହିତ୍ୟ ଓଡ଼ିଶାରେ ଯେ ଗ୍ରାମ୍ୟ ଭାଷାକୁ ନେଇ ତିଆରି ହୋଇଛି ତାହା ସହିତ ଆଧୁନିକ ରୁଚିସମ୍ପନ୍ନ ଶିକ୍ଷିତ ସାହିତ୍ୟିକ ବା ପାଠକଙ୍କର ବ୍ୟବଧାନ ରହିଛି । ଏଣେ ଏହି ଲୋକ-ସାହିତ୍ୟ ଆସ୍ୱାଦନକାରୀ ଓଡ଼ିଶାର ଲକ୍ଷକୋଟିଙ୍କର ଉଚ୍ଚ ଓ ମଧ୍ୟମ ଶ୍ରେଣୀର ଭାଷା ବୁଝି ତହିଁରୁ ମର୍ମ ଗ୍ରହଣ କରିବା କାଠିକର ପାଠ କହିଲେ ବାହୁଲ୍ୟ ହେବନାହିଁ । ଏହି ଭାଷାର ବ୍ୟବଧାନ ଆମ ଭିତରେ ଗୋଟିଏ କୃଷ୍ଟିର ଅବନତି ବା

cultural degradation କୁ ଆଣି ଦେଇଛି । ଏହିଠାରେ ଓଡ଼ିଆ ଭାଷା ଓ ସାହିତ୍ୟର ଗୋଟାଏ ସ୍ୱାତନ୍ତ୍ର୍ୟ ରହିଛି, ଯାହା ଭାରତର ଆଉ କୌଣସି ପ୍ରଦେଶରେ ନ ଥିବା ହିଁ ସମ୍ଭବପର; କାରଣ ଓଡ଼ିଶାର ପ୍ରାଚୀନ ସାହିତ୍ୟସମ୍ପଦ ଭିତରେ ଓଡ଼ିଆ ସାହିତ୍ୟର ଅନ୍ତର୍ନିହିତ ଆତ୍ମା ସହିତରେ ଆଉ କୌଣସି ପ୍ରାଦେଶିକ ପ୍ରାଚୀନ ସାହିତ୍ୟ ବା ସାହିତ୍ୟର ଆତ୍ମାର ସମସାମୟିକ ସଂଯୋଗ ନ ଥିବା ପ୍ରମାଣସାପେକ୍ଷ ନୁହେଁ । ସେହି ସମୟରେ ଦେଶ ଭିତରେ ବିଦ୍ୟାର ଚର୍ଚ୍ଚା ଥିଲା; ସାହିତ୍ୟ, ଅଳଙ୍କାର, ଦର୍ଶନ, ଜ୍ୟୋତିଷ, ଆୟୁର୍ବେଦାଦି ପଢ଼ିବାକୁ ଲୋକଙ୍କ ସ୍ପୃହା ଥିଲା । ରାଜନୈତିକ ତଥା ଅର୍ଥନୈତିକ ଏବଂ ସାମାଜିକ ପରିବେଷ୍ଟନୀ ସେମାନଙ୍କର ସାହିତ୍ୟ ଚର୍ଚ୍ଚାକୁ ପୁଷ୍ଟି ଦେଉଥିଲା । ସେଥିପାଇଁ ଆଜିକାର ଅଭିଜାତ ସାହିତ୍ୟ ସେହି ସମୟରେ ଲୋକ-ସାହିତ୍ୟ ହୁଏ ତ ଥିଲା; କିନ୍ତୁ କାଳକ୍ରମେ ଦେଶର, ସମାଜର ଓ ରୁଚିର ବହୁମୁଖୀ ପରିବର୍ତ୍ତନ ସହିତରେ ପ୍ରାଚୀନ ସାହିତ୍ୟର ଆସନ ପ୍ରାଚୀନ କାଳରେ ହିଁ ରହିଯାଇଛି; କିନ୍ତୁ ତାହା ସ୍ଥଳରେ ଯେଉଁ ସାହିତ୍ୟ ଫକୀରମୋହନ, ରାଧାନାଥ, ମେହେର, ଚିନ୍ତାମଣି ପ୍ରମୁଖ ସାହିତ୍ୟ ଦିଗ୍‌ପାଳମାନେ ଥୋଇଲେ, ତାହାର ଭାଷା ସହିତରେ କ'ଣ ସାଧାରଣ ଲୋକଙ୍କର ବ୍ୟବଧାନ ଘୁଞ୍ଚିଲା କି ? ସେ ବ୍ୟବଧାନ ଠିକ୍ ଆଗପରି ରହିଲା; ଯେଉଁ ତିମିରେ, ସେହି ତିମିରେ । ଏଣେ ଯେଉଁ ଆବର୍ଜ୍ଜନାଗୁଡ଼ିକ 'ଲୋକସାହିତ୍ୟ' ହିସାବରେ ବଜାରରେ ଚଳୁଛି, ତାହା ଶିକ୍ଷିତ ସାହିତ୍ୟିକଙ୍କ ପଙ୍‌କ୍ତିରେ 'ହରିଜନ' ହୋଇ ରହିଲା । ଏହିପରି ଭାବରେ ଆମ୍ଭେମାନେ ଦେଖିବାକୁ ପାଉଁ, ଭାଷାର ବ୍ୟବଧାନ ଓଡ଼ିଶାରେ ସାହିତ୍ୟର ପ୍ରଗତି ମୂଳରେ କୁଠାର ଦେଇଅଛି । ଅବଶ୍ୟ ଏକଥା ସତ୍ୟ ଯେ, ଓଡ଼ିଆ ପାଠ ପଢ଼ିବାର ସୁବିଧା ଓ ସୁଯୋଗ ଭଲକରି ପାଆନ୍ତି ନାହିଁ ବୋଲି ସାହିତ୍ୟ ସମୃଦ୍ଧ ହୋଇନାହିଁ । ଏକଥା ଠିକ୍ । କାହିଁକି ନା, ପ୍ରତିବେଶୀ ବଙ୍ଗଳାକୁ ଚାହିଁଲେ ସେଠାରେ ଅତି ଅଳ୍ପ ଶିକ୍ଷିତ ଲୋକ - କି ନାରୀ କି ପୁରୁଷ - ସମସ୍ତେ ସେଠାର ସାହିତ୍ୟ-ରସ ଆସ୍ୱାଦନ କରିପାରନ୍ତି । ସାଧାରଣ ଲୋକଙ୍କ ଆଗରେ ଉଚ୍ଚ ଧରଣର ଭାବ ସାହିତ୍ୟିକ "ମଡ଼େଲ" ଭାଷା ହେତୁ ଏପରି ଭାବରେ ସୁପରିଚିତ ହୋଇଉଠିଛି ଯେ, ତାହାର ତୁଳନା କେଉଁ ସାହିତ୍ୟ ସହିତରେ ଦେବା ଦୁରୁହ । ବଙ୍ଗଳାର ନରନାରୀ ହେମଚନ୍ଦ୍ର, ନବୀନଚନ୍ଦ୍ର, ବଙ୍କିମ ଚନ୍ଦ୍ର, ଚଣ୍ଡିଦାସ, ଜ୍ଞାନଦାସ ବିଦ୍ୟାପତି ବୁଝିବେ- ଏପରି କି ସେ ଦେଶର ସାଧାରଣ ଶିକ୍ଷିତ ଲୋକେ ରବୀନ୍ଦ୍ରନାଥଙ୍କ କାବ୍ୟକବିତାର ରହସ୍ୟ ନିଜର ସହଜସୁଲଭ ଜ୍ଞାନ ଓ ବୁଦ୍ଧି ସାହାଯ୍ୟରେ ଉପଲବ୍ଧି କରିପାରିବେ । ଅରବିନ୍ଦଙ୍କର ଦର୍ଶନ ବୁଝିବେ । ନନ୍ଦଲାଲ ବସୁ, ଅବନୀଠାକୁରଙ୍କ କାରୁକଳାର ଅଧ୍ୟାତ୍ମତତ୍ତ୍ୱ ଉପଲବ୍ଧି କରିବେ, ଶରତ୍ ଚାଟାର୍ଜିଙ୍କର 'ଶେଷ ପ୍ରଶ୍ନ', 'ପଥେର ଦାବୀ'ର ମୂଳତତ୍ତ୍ୱ ହୃଦୟଙ୍ଗମ କରି ପାରିବେ, ଯାହା ଏଠାରେ ଲୋକେ କରିବା ସମ୍ଭବ ନୁହେଁ । ଶିକ୍ଷାର ପ୍ରଚାର ନ ହେବା ହେତୁ ସାହିତ୍ୟ ଓ ଭାଷାର ଉନ୍ନତି ସମ୍ଭବପର ନୁହେଁ ସତ୍ୟ; କିନ୍ତୁ ଯେଉଁ ସାହିତ୍ୟ ଲୋକର ପ୍ରାଣଭାଷା କହେ, ଲୋକଙ୍କ ଘର ଲୁଗା ପିନ୍ଧେ, ତାକୁ କ'ଣ ଓଡ଼ିଆ ଲୋକେ ବୁଝନ୍ତେ ନାହିଁ ? ତାହା ହୋଇପାରି ନାହିଁ ବୋଲି ଓଡ଼ିଶାରେ

ଜଗନ୍ନାଥ ଦାସ ଭାଗବତ ଭଳି, ହିନ୍ଦୀ ଦେଶରେ ତୁଳସୀ ଦାସ ରାମାୟଣ ଭଳି ଆଉ କୌଣସି ପଦ୍ୟ କି ଗଦ୍ୟ ସାହିତ୍ୟ ସେହି ସେହି ସ୍ଥାନକୁ ବ୍ୟାହତ କରି ପାରିନାହିଁ – ପୂରଣ କରିଦବା ତ ଅତି ଦୂରର କଥା । ସେଥିପାଇଁ ପ୍ରାଚୀନ ସାହିତ୍ୟ-ଭାଷା ଆଜି ଯେଉଁ ବ୍ୟବଧାନରେ ଅଛି, ନବୀନ ସାହିତ୍ୟ ମଧ୍ୟ ସେତିକି ବ୍ୟବଧାନରେ ନ ହେଉ, କିନ୍ତୁ ସେହି ଅନୁପାତରେ ବ୍ୟବଧାନ ସୃଷ୍ଟି କରି ଚାଲୁଛି, ଉତ୍କଳର ଲକ୍ଷ କୋଟିଙ୍କ ପ୍ରାଣ ଓ ଅନୁଭୂତିର ପରିସର ସହିତରେ । ଆଜି ଏହି ଭାଷାର ବ୍ୟବଧାନ ଘୁଞ୍ଚାଇବାକୁ ଉତ୍କଳର କେତୋଟି କୃତୀ ତଥା ସାହିତ୍ୟିକ ଚେଷ୍ଟା କରୁଛନ୍ତି । ଶ୍ରୀଯୁକ୍ତ ବାଳକୃଷ୍ଣ କର, ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର, ଶ୍ରୀଯୁକ୍ତ ଧନେଶ୍ୱର ଶତପଥୀ, ଶ୍ରୀଯୁକ୍ତ କାହ୍ନୁଚରଣ ମହାନ୍ତି, ଶ୍ରୀଯୁକ୍ତ କମଳାକାନ୍ତ ଦାସ, ଶ୍ରୀଯୁକ୍ତ ରାଧାଚରଣ ପଣ୍ଡା, ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ, ଶ୍ରୀମତୀ ଅପର୍ଣ୍ଣ ଦେବୀ, ଶ୍ରୀଯୁକ୍ତ ରାଧାନାଥ ରଥ, ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି, ଶ୍ରୀଯୁକ୍ତ ସୁକାନ୍ତ ରାଓ, ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଦାସ ପ୍ରମୁଖ କେତେକ ଉଲ୍ଲେଖଯୋଗ୍ୟ ସାହିତ୍ୟିକ, ଯେଉଁମାନେ ମହତ ଚିନ୍ତା, ଉନ୍ନତ ଭାବ, ଉନ୍ନତ ଜ୍ଞାନକୁ ଲୋକରଞ୍ଜନୀ ଭାଷାରେ ବ୍ୟକ୍ତ କରି ଉତ୍କଳର ଲକ୍ଷ କୋଟିଙ୍କ ସହିତରେ ଉତ୍କଳସାହିତ୍ୟର ଯେ ଭାଷା ବ୍ୟବଧାନ ରହି ଉତ୍କଳ-ଆତ୍ମାକୁ ନିରନ୍ତର ନୀରସ, କ୍ଲିଷ୍ଟ ଓ କ୍ଷୁବ୍ଧ କରି ରଖିଅଛି, ତାହାର ନିରାକୃତି ପାଇଁ ପ୍ରାଣ ଢାଳି ଦେଇଛନ୍ତି । ଏକଥା କହିବା ଅବଶ୍ୟ ଅବାନ୍ତର କଥା ହେବ ଯେ, ଲୋକସାହିତ୍ୟର ପ୍ରଥିତଯଶା ଶିଳ୍ପୀ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ମହାଶୟ ଏବଂ ଉତ୍କଳର ଅମର ବ୍ୟାସକବି, ଔପନ୍ୟାସିକ, ଗଳ୍ପରଚକ ସ୍ୱର୍ଗୀୟ ଫକୀରମୋହନ ଏହି ସାହିତ୍ୟର ବିକାଶ ପାଇଁ – ଅର୍ଥାତ୍ ଲୋକ ଚିତ୍ତରେ ସାହିତ୍ୟର ରସାନୁଭୂତି ଜାଗିବା ପଥରେ ଯେ ଭାଷାର ବ୍ୟବଧାନ ଅଛି, ତାହା ଦୂରୀଭୂତ କରିବା ପାଇଁ ଏହି ଶତାବ୍ଦୀର ପ୍ରାକ୍‌କାଳରୁ ଚେଷ୍ଟାକରି ଆସିଅଛନ୍ତି । ଶତାବ୍ଦୀର ଆରମ୍ଭ ପୂର୍ବରୁ ଓ ପରେ ମଧ୍ୟ ବ୍ରହ୍ମର୍ଷି ମଧୁସୂଦନ, ସୁକବି ନନ୍ଦକିଶୋର ବଳ, ବ୍ୟାସକବି ଫକୀରମୋହନଙ୍କର କାବ୍ୟ ସାଧନା ମଧ୍ୟ ଏହି ପ୍ରକାରରେ ଭାଷାର ବ୍ୟବଧାନକୁ ତିରୋହିତ କରିବାକୁ ଅସୀମ ପ୍ରୟାସ କରିଯାଇଅଛନ୍ତି ବୋଲି ଜାତି ଆଜି ସେମାନଙ୍କଠାରେ ଋଣୀ ।

ପୂର୍ବକାଳରୁ ଏ ଦେଶରେ ଦେବଭାଷାରେ ବିଦ୍ୟା ରହିଥିବା ହେତୁ ପଣ୍ଡିତ ଓ ସାଧାରଣଙ୍କ ଭିତରେ ଗୋଟାଏ ପାର୍ଥକ୍ୟ ରହିଆସୁଛି । ଯେଉଁମାନେ ମହାପୁରୁଷ – କି ଧର୍ମ୍ମ,କି ସମାଜ କି ରାଜନୀତି ଯେଉଁ କ୍ଷେତ୍ରରେ ହୁଅନ୍ତୁ ନା କିଆଁ – ସେମାନେ ସମସ୍ତେ ସେମାନଙ୍କର ଆତ୍ମଧର୍ମ୍ମ ପ୍ରଚାର କରିଯାଇଛନ୍ତି ସେମାନଙ୍କ ନିଜ ଭାଷାରେ – ଅର୍ଥାତ୍ ଯାହା ଚଳତି ଭାଷା, ତହିଁରେ । ପାଣ୍ଡିତ୍ୟ ଓ ପ୍ରାଚୀନ ଭାଷାର କଳାଚାତୁରୀକୁ କେହି ନିନ୍ଦୁ ନାହିଁ; କିନ୍ତୁ ଯେଉଁ ଭାଷା କେହି ବୁଝିବେ ନାହିଁ, କ୍ଲିଷ୍ଟପଦ ସମ୍ପଦ ସେହି ଭାଷାର ଆଶ୍ରୟ ନ ନେଲେ ଯେ ସେ ସାହିତ୍ୟ ହେବନାହିଁ, କି କେହି ବୁଝିବେ ନାହିଁ, ଏପରି ମନେ କରିବା ଅତି ଅବାନ୍ତର କଥା । ଯେଉଁ ଭାଷାରେ ଆମେ କଥା କହୁଁ, ଯେଉଁ ଭାବ ଓ ଭାଷାରେ ଆମେ ଦର୍ଶନ, ବିଜ୍ଞାନ, ଶିଳ୍ପ, କାରୁକଳା କଥା ଚିନ୍ତା କରୁଁ, ସେହି ଭାବ ଯଦି ଲେଖିଲାବେଳକୁ

କିମ୍ଭୂତକିମାକାର ବେଶ ପିନ୍ଧି ପ୍ରକାଶର କ୍ଷେତ୍ରକୁ ଆସୁ ନ ଥାନ୍ତା, ତେବେ କ'ଣ କ୍ଷତି ହେଉଥାନ୍ତା ? ଚଳିତ କଥାରେ କ'ଣ ଶିଳ୍ପନୈପୁଣ୍ୟ ପ୍ରଦର୍ଶିତ ହେବା ସମ୍ଭବ ନୁହେଁ ? ଯେଉଁ ବଡ଼ ବଡ଼ କଥା ନେଇ ଆମେ ଚିନ୍ତାକରୁ, ସେହି ଚିନ୍ତାର ପ୍ରକୃତ ଭାଷା ତ ଆମେ ସାହିତ୍ୟରେ ଫୁଟାଇବାକୁ କ୍ଷମ ନୋହୁଁ । ଆମେ ଭାବକୁ ଯେଉଁ ଭାଷା ପିନ୍ଧାଇ ବାହାରକୁ ପଠାଉଁ, ସେ ତ ତା'ର ଏକ ଅସ୍ୱାଭାବିକ ବେଶ । ଯେଉଁ ଭାଷାରେ ଆମେ ନିଜର ଅନ୍ତର୍ଗତ ସମସ୍ତ କାମନା, ବାସନା, ଦୁଃଖ, ଶୋକ, ହର୍ଷ ପ୍ରକାଶ କରୁଁ, ସେହି ଭାଷାକୁ ନେଇ ସାହିତ୍ୟ ରଚିଲେ ତାହା ଦୋଷାବହ ହେବ ନାହିଁ ଗ୍ରାମ୍ୟଦୋଷଦୁଷ୍ଟ ବୋଲି କେତେକ ଲୋକ ନାସିକା କୁଞ୍ଚିତ କରିବେ ସତ୍ୟ; କିନ୍ତୁ ପ୍ରଥମେ ଭାଷା ସାହିତ୍ୟସ୍ରଷ୍ଟା ହାତରେ କାଦୁଅ ମେଞ୍ଚା ହେବା ଆଗରୁ ତ ସବୁ ଦେଶର ସାହିତ୍ୟ-କ୍ଷତ୍ରୀମାନେ ଆଗେ ପଥର ଚଟାଣ ଭାଙ୍ଗିବାରେ ଗଳଦ୍‌ଘର୍ମ ହୋଇଛନ୍ତି । ଏଇକ୍ଷଣି ସେ ଯୁଗ ତ ଆମ ଆଗରେ । ଆମେ ପଶ୍ଚାତ୍‌ପଦ ହେବା ଅବିଧେୟ ହେବ ବୋଲି ମୋର ବିଶ୍ୱାସ ହୁଏ । ଯେଉଁ ଭାଷା ଆମ ଘରର, ଯେଉଁ ଭାଷା ସ୍ୱାଭାବିକ, ତହିଁରେ ଆମକୁ ସବୁକାମ କରିବାକୁ ହେବ । ଅଳଙ୍କାର ଆରୋପ କରି କୃତ୍ରିମ ଭାବରେ ଯେଉଁ ଭାଷା ତିଆରି ହୁଏ, ସେହି ଭାଷାର ପରିସର ଏତେ କ୍ଷୁଦ୍ର ଓ ତାହାର ଗତି ବେଗ ଏତେ ସଂହତ ଯେ, ତହିଁରେ ଭାବର ସମସ୍ତ ଅବୟବ ସ୍ୱାଭାବିକ ଭାବରେ ବିବୃଦ୍ଧ ହେବା ସମ୍ଭବପର ନୁହେଁ । ସେଥିପାଇଁ ଓଡ଼ିଆ ସାହିତ୍ୟ ଏ ଦିନେ, ଏ ଯୁଗରେ ସୁଦ୍ଧା ସ୍ଥାଣୁ । ତା'ର ଗତି ସାବଲୀଳ ନୁହେଁ, ଭଙ୍ଗୀ ସହଜ ସୁଠାମ ନୁହେଁ । ଗୁରୁଚଣ୍ଡାଳ ଦୋଷ ସେଇଥିପାଇଁ ଆମର ରୁଚିକି କେଉଁଠି ଆଘାତ କରେ ନାହିଁ; କାରଣ ରୁଚି ଆମର ତାହାରି ନକ୍ସାରେ ତିଆରି ହୋଇଛି ବୋଧହୁଏ ଆମମାନଙ୍କ ଜନ୍ମଦିନରୁ । ଭାଷାକୁ ଜବର କରିବାକୁ ହେବ, ଏପରି ଜବର ଯେ ତାକୁ ଧରି ଭାଙ୍ଗି ଯାହା ତିଆରିବ, ତାହା ହେବ । ଲୁହା ପରି ତରଳି ନଇଁଯିବ; ପୁଣି ଯୋଉ ଟାଣକୁ ସେଇ ଟାଣ ରହିଥିବ । ତହିଁରେ ପଥର ଚୂନା ହେବ; କିନ୍ତୁ ଦାଢ଼ ପଡ଼ିବ ନାହିଁ । ଭାଷା ଭାବର ବାହନ । ଭାଷାର ଉନ୍ନତିରେ ସାହିତ୍ୟର ଉନ୍ନତି । ଜାତୀୟ ସାହିତ୍ୟର ଉନ୍ନତି କେବଳ ଜାତିର ସଜୀବତାର ପ୍ରମାଣ ଦିଏ । ଜାତିର ପ୍ରକୃତ ସମ୍ପଦ କେବଳ ଭାଷାର ଛନ୍ଦରେ ଆବୃତ ।

ଏଇଠି ପ୍ରଶ୍ନ ଉଠେ, ଭାଷା ଗୋଟାଏ ମଡ଼େଲରେ, ଗୋଟାଏ ଛାଞ୍ଚରେ ହେବ, କି କି ପ୍ରକାର ହେବ; କାରଣ ସାହିତ୍ୟକୁ ସହଜ, ସ୍ୱାଭାବିକ, ନିରାଡ଼ମ୍ବର, ସାବଲୀଳ କରିବାକୁ ହେଲେ ଭିନ୍ନ ଭିନ୍ନ ଜିଲ୍ଲାର, ଭିନ୍ନ ଭିନ୍ନ ସ୍ଥାନର ବିଭିନ୍ନ ପ୍ରକାର ଭାଷା ବ୍ୟବହାର କରିବାକୁ ବାଧ ହେବାକୁ ପଡ଼ିବ । କେଉଁ ଭାଷା ପୁଣି ଠିକ୍ ଓ କେଉଁଠା ଭାଷା ବରଣ କରିବା ଠିକ୍ ? ଏହାର ଉତ୍ତର ହେବ ଏହି ଯେ, ଯେଉଁ ଭାଷା ସ୍ୱାଭାବିକ ଭାବରେ, ଅତି ଅଜାଣିତ ଭାବରେ, ଅନାୟାସରେ ଆମର କଲମ ଆଗକୁ ଚାଲି ଆସୁଛି, ଆମର ଚିନ୍ତାକୁ ରୂପ ଦେଉଛି, ସେହି ଭାଷା ହେଉଛି ଆମକୁ ବିଧାତାର ଦାନ । ସେହି ପ୍ରକୃତିଦତ୍ତ ଭାଷା ହେଉଛି କଟକ ଜିଲ୍ଲାର ଭାଷା (କଟକ ସହରୀ ଭାଷା ନୁହେଁ) । ତାହା ହିଁ ସାହିତ୍ୟ ସୃଷ୍ଟିର ପ୍ରାକୃତିକ ଆଧାର ।

ସେହି ଆଧାରରେ ଆମର ଭାବରାଶିକୁ ଆଧେୟ କରିବାକୁ ହିଁ ହେବ । କଟକ ଭାଷା ଲେଖିବା ଭାଷା, ଯେପରି କଲିକତା ବଙ୍ଗଳା (ପଶ୍ଚିମ ବଙ୍ଗ) ଲେଖିବା ଭାଷା ବଙ୍ଗ ଦେଶର । ଅନୁଗୁଳ ସମ୍ବଲପୁର ସବୁ ଆଡ଼ର ଲୋକେ ଭାବ ପ୍ରକାଶ କରିଥାନ୍ତି ଏହି କଟକର ସାଧାରଣ କଥାଦ୍ୱାରା ! ଲେଖାର ଭାଷା ପ୍ରକୃତିଦତ୍ତ ଭାଷା; ସେଥିରେ ବିରୋଧ ନାହିଁ । ଯେପରି ବଙ୍ଗର ବିଭିନ୍ନ ଅଞ୍ଚଳବାସୀ କଲିକତୀ ଭାଷାରେ ଲେଖନ୍ତି; କାଣ ସେ ଶୁଦ୍ଧ ବଙ୍ଗଳା, ଯେପରି ହିନ୍ଦୁସ୍ଥାନୀ ଅଞ୍ଚଳରେ ବ୍ରଜଭାଷା, ବନାରସୀଭାଷା ଶୁଦ୍ଧ ବୋଲି ସେହି ଭାଷା ସମସ୍ତେ ମାନି ନେଇଅଛନ୍ତି । ଦେଶରେ ଶିକ୍ଷା ବିସ୍ତାର ହେଲେ ବଳେ ଏହି ଜିଲ୍ଲା ବା ସହର, ଗ୍ରାମ, ସ୍ଥାନଭେଦ ଉଠିଯାଇ ଏକପ୍ରକାର ଭାଷା ଚଳିବ । କେଉଁଠା ଓଡ଼ିଆ ଖାଣ୍ଟି ଶୁଦ୍ଧ ଓଡ଼ିଆ, ସାଧୁଶବ୍ଦଭରା, କେଉଁଠା ଭାଷା ପାଞ୍ଚମିଶା ଖେଚୁଡ଼ି ଖଇଚା, ଏହା ଦେଖିବା କଥା ନୁହେଁ । ଆମର ଦେଖିବା କଥା, କେଉଁଠିକା ବୋଲି "ଷ୍ଟାଣ୍ଡାର୍ଡ଼" ହୋଇ ଉଠୁଛି । ବରାବର ଦେଖିପାରୁ ଯେ, ସ୍ୱତନ୍ତ୍ର ଉତ୍କଳ ଆମର ପ୍ରାକୃତିକ ଉତ୍କଳର ଭାଷାର ବ୍ୟବଧାନ ଅଳ୍ପଦିନେ କଟାଇଦେବେ । ଯଦି ବହିରେ ଲେଖା ଭାଷା ଓ କହିବା କଥା ଏକା ହୁଏ, ତେବେ ଚତୁର ଲୋକେ ଏହି ବହିଛାପା ଭାଷାଟାକୁ ହିଁ ନିଜ ଭାଷାର ବାହନ କରି ନେଇ ପାରିବେ । ଏଥିରେ ସ୍ଥାନ ଅଭିମାନ ଭୁଲିବାକୁ ହେବ; କାରଣ ଯହିଁରେ ବୃହତ୍ତମ କ୍ଷୁଦ୍ର ଗ୍ରାମ୍ୟ ଈର୍ଷା କି ଜିଦ୍ ଧରିବା ଦେଶ ପକ୍ଷରେ, ସାହିତ୍ୟ ପକ୍ଷରେ କ୍ଷତିକାରକ । ଭାଷା ଭାବର ବାହନ । ଆଗେ ଭାବ, ପରେ ଭାଷା । ଭାବ ନ ଥାଇ ଭାଷାର ଚାକଚକ୍ୟ ମହାକାଳ ଫଳ ତୁଲ୍ୟ । ସେଥିପାଇଁ ଭାଷା ବ୍ୟବଧାନ ସାହିତ୍ୟ କ୍ଷେତ୍ରରୁ କଟାଇବା ଯେପରି ଦରକାର, ନୂଆ ନୂଆ ଭାବର ଫସଲ କରି ସାହିତ୍ୟ କ୍ଷେତ୍ରରେ ବୈଚିତ୍ର୍ୟ ଆଣିବା ସେହିପରି ବିଧେୟ ।



## ୨୮

# ଓଡ଼ିଆ ବର୍ଣ୍ଣମାଳା ଓ ମୁଦ୍ରଣ ସମସ୍ୟା

### ହରିଶ୍ଚନ୍ଦ୍ର ବଡ଼ାଳ

ପାଠକମାତ୍ରେ ବୋଧହୁଏ ଓଡ଼ିଆ ଯୁକ୍ତାକ୍ଷର ଗୁଡ଼ିକର ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ରୂପ ଲକ୍ଷ୍ୟ କରିଥିବେ । ଛାପାର ମର୍‌ଜି ଅନୁସାରେ ଉତ୍‌ପତ୍ତି, ଉତ୍ପତ୍ତି, ଉପ୍ତତ୍ତି, ପ୍ରଭୃତି ବହୁରୂପୀ-ଲୀଳା ଦେଖାଯାଇଥାଏ । ବର୍ତ୍ତମାନ କଥା ହେଉଚି, ହେଲେ ସେଥିରେ କ୍ଷତିଟା ବା କ'ଣ ! ବରଂ ଅକ୍ଷରର ରୂପ-ବୈଚିତ୍ର୍ୟ ସମୟରେ ବର୍ଣ୍ଣନାର ବୈଚିତ୍ର୍ୟହୀନତାକୁ ମହନୀୟ କରି ଦେଇପାରେ ।କିନ୍ତୁ ବାହାରୁ ଏ ବୈଚିତ୍ର୍ୟର ଦାମ୍ ଯେତେ ଅଳ୍ପ ବୋଲି ମନେହୁଏ, ପ୍ରକୃତ ପକ୍ଷରେ ତାହା ନୁହେଁ ।

ପ୍ରଥମତଃ, ଏକ ଯୁକ୍ତାକ୍ଷରର ବିଭିନ୍ନ ମୂର୍ତ୍ତିଲାଗି ଭିନ୍ନ ଭିନ୍ନ ଟାଇପ୍ ଦରକାର, ଭିନ୍ନ ଭିନ୍ନ ଟାଇପର ଛାଞ୍ଚ ଗଢ଼ିବା ଦରକାର । ମାନେ, ଖରଚ ।

ଦ୍ୱିତୀୟତଃ, ଅକ୍ଷର ସଜାଇବା ବେଳେ ଭିନ୍ନ ଭିନ୍ନ ଅକ୍ଷରର ଅଧାର ସଂଖ୍ୟା ବେଶୀ ହୋଇପଡ଼ିବାରୁ କମ୍ପୋଜିଟର ବିଚରାର କାମ ବୃଥା ବଢ଼ିଯାଏ, ଅସୁବିଧା ମଧ୍ୟ ବଢ଼େ । ଅଥଚ ଲାଭ କିଛି ନାହିଁ ।

ତୃତୀୟତଃ, ଏତେ ବେଶୀ ରକମର ଅକ୍ଷର ରଖିବାକୁ ଅଧିକ ସଂଖ୍ୟକ ଆଧାର ଓ ବେଶୀ ବେଶୀ ସ୍ଥାନ ଦରକାର ହୋଇପଡ଼େ ।

ଚତୁର୍ଥତଃ, ବିଭିନ୍ନ ଅଞ୍ଚଳର ଓ ବିଭିନ୍ନ ପ୍ରେସର ଛାପାରେ କିଛି କିଛି ପାର୍ଥକ୍ୟ ବା ବିଶେଷତ୍ୱ ଦେଖାଯାଏ ଏବଂ ତାହା ସମୟ ସମୟରେ ସାଧାରଣ ପାଠକଙ୍କର ଅସୁବିଧା ଜନ୍ମାଏ ।

ମୋଟ ଉପରେ ଦେଖିବାକୁ ଗଲେ ଏହି ବହୁରୂପୀତ୍ୱ ସକାଶେ ପଡ଼େ ଅଧିକା ଖରଚ, ଅଧିକା କାମ, ଆଉ ଅଧିକା ଅସୁବିଧା – କି ମୁଦ୍ରାକର କି ପାଠକ ସମସ୍ତଙ୍କର । ଏତେ ସତ୍ତ୍ୱେ ଯେ ଏ ଅକ୍ଷରଗୁଡ଼ିକ କାହିଁକି ଏତେ ଦିନ ଚଳି ଆସୁଅଛି, ତାହା କହିବା ଦୁରୂହ । ଛାପାଖାନାର ପରିଚାଳକ ଓ ପାଠକସାଧାରଣଙ୍କର ଦୃଷ୍ଟି ଏ ଦିଗରେ ଆକୃଷ୍ଟ ହେଲେ ନିଶ୍ଚୟ ଏହି ବେଫାଇଦା ଖରଚ ଓ ଉପୁରି କଷ୍ଟତକର ବଞ୍ଚିଯିବାର ଗୋଟାଏ ସୁରାହା ହୋଇପାରିବ ।

ପ୍ରଥମେ ଯୁକ୍ତାକ୍ଷରଗୁଡ଼ିକର କଥା ଦେଖାଯାଉ । (୧) ବର୍ଗର ପଞ୍ଚମ ବର୍ଣ୍ଣସହିତ ସେହି ବର୍ଗର ଅନ୍ୟ ବର୍ଣ୍ଣଗୁଡ଼ିକ ମିଶି ଯେଉଁ ଯୁକ୍ତାକ୍ଷର ହୁଏ, ସେଗୁଡ଼ିକ ବିଶେଷ ଲକ୍ଷ୍ୟ କରିବାର ବିଷୟ । କାରଣ ଙ୍, ଞ ଓ ମ୍‌ର ଅନୁସ୍ୱାର ସହିତ ଉଚ୍ଚାରଣ ସାଦୃଶ୍ୟ ଥିବାରୁ ଏହି ତିନୋଟି ବର୍ଣ୍ଣସଂଘଟିତ ଯୁକ୍ତାକ୍ଷରଗୁଡ଼ିକ ଅନୁସ୍ୱାର ସାହାଯ୍ୟରେ ଯୁକ୍ତାକ୍ଷର ବିନା ଲେଖାଯାଇପାରେ ବୋଲି ଧରି ନିଆଯାଇପାରେ । ଏହି ଯୁକ୍ତି ଅନୁସାରେ ଅଙ୍କକୁ ଅଂକ ଓ ବଙ୍ଗକୁ ବଂଗ ବୋଲି ଲେଖିବା ଉଚିତ ଏବଂ ଏ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ଣ୍ଠ, ନ୍ଦ, ନ୍ଧ ଛଡ଼ା ଅନ୍ୟାନ୍ୟ ସମସ୍ତ ଗୁଡ଼ିକ ସକାଶେ ସ୍ୱତନ୍ତ୍ର ଯୁକ୍ତାକ୍ଷର ବ୍ୟବହାର କରିବାର ଆବଶ୍ୟକତା ପଡ଼ିବ ନାହିଁ ।

ଏଠାରେ ତର୍କ ଉଠିପାରେ ଯେ, ବର୍ଗର ପଞ୍ଚମ ବର୍ଣ୍ଣାଶ୍ରିତ ଯୁକ୍ତାକ୍ଷର ପରିବର୍ତ୍ତରେ ଅନୁସ୍ୱାର ବ୍ୟବହାର କରିବାହିଁ ପ୍ରସ୍ତାବ, ତେବେ ସବୁ କ୍ଷେତ୍ରରେ ଏକା ଭଳି ନିୟମ ହେବା ଉଚିତ (ଅର୍ଥାତ୍ ଣ୍ ଓ ନ୍ ପରିବର୍ତ୍ତରେ ମଧ୍ୟ ଅନୁସ୍ୱାର ବ୍ୟବହାର କରିବା ସଙ୍ଗତ); କିନ୍ତୁ ଣ୍ ଓ ନ୍ ର ଉଚ୍ଚାରଣର ଅନୁସ୍ୱାରର ଉଚ୍ଚାରଣ ସହିତ ଠିକ୍ ସେତେଟା ସାଦୃଶ୍ୟ ଅଛି ବୋଲି ବୋଧ ହୁଏ ନାହିଁ । ପାଠକ ନିଜେ ତାହା ନିମ୍ନଲିଖିତ ପଙ୍‌କ୍ତି କେତୋଟିରୁ ଦେଖି ପାରିବେ–

ଅଂଧ ରାଂଧି ଶୁଂଠାକାଂଧେ ବୀରଷଂଢ ଚାଂଡେ ବାହାରଂତେ କଂଥା ଛଂଦି ଲଂବ ହେଲେ ଦାଂତେ ।

ଯାକୁ ପଢ଼ିବାକୁ ଯଦି ପାଠକଙ୍କର କୌଣସି ଅଡୁଆ ବୋଧ ନ ହୁଏ, ତେବେ ବର୍ଗର ପଞ୍ଚମବର୍ଣ୍ଣାଶ୍ରିତ ଯାବତୀୟ ଯୁକ୍ତାକ୍ଷର ଉଠାଇଦେବାର ପ୍ରସ୍ତାବରେ କହିଛି– "ତଥାସ୍ତୁ" !

(୨) ବର୍ତ୍ତମାନ ଅନ୍ୟାନ୍ୟ ଯୁକ୍ତାକ୍ଷର ଓ 'ଫଳା' ଗୁଡ଼ିକର କଥା ଦେଖାଯାଉ ।

ଏ ସମ୍ବନ୍ଧରେ ମୂଳ ପ୍ରସ୍ତାବ ଏହି ଯେ, ହସନ୍ତର ବ୍ୟବହାର ଦ୍ୱାରା ଯୁକ୍ତାକ୍ଷର ଓ ଫଳାର ସଂଖ୍ୟା ଯଥା ସମ୍ଭବ କମ୍ କରିବା ଆବଶ୍ୟକ । ତେବେ ଏ ଦିଗରେ କେତେଟା ସହନୀୟ ହେବ (ଅନ୍ତତଃ ପ୍ରଥମ ପ୍ରଥମ) ସେ ଆଡକୁ ଦୃଷ୍ଟି ରଖି (କାରଣ 'ତସ୍‌କର', 'ଉଚ୍ ଚାରଣ' ପ୍ରଭୃତିର ଏବମ୍ବିଧମୂର୍ତ୍ତି ଦେଖି ଅନେକେ ପ୍ରଥମେ ଟିକିଏ ବିଚଳିତ ହୋଇ ପାରନ୍ତି କି ନା !) ନିମ୍ନଲିଖିତ ମତେ ପ୍ରସ୍ତାବ କରାଯାଇପାରେ–

(କ) କ୍ଷ,ଜ୍ଞ, ଞ୍ଚ, ଉ, ଦ୍ଧ, ଦ୍ବ, ଦ୍ଧ– ଏହି କେତୋଟି ସ୍ୱତନ୍ତ୍ର ଯୁକ୍ତାକ୍ଷର ରହିବା ଦରକାର ।

(ଖ) ୍ଣ, ୍ତ, ୍ଥ, ୍ଟ, ୍ଠ, ୍ଦ, ୍ଧ, ୍ନ, ୍ପ, ୍ଫ, ୍ବ, ୍ମ, ୍ୟ, ୍ର, ର୍, ୍ଲ, ୍ଳ, ୍ସ– ଏ କେତୋଟି ଫଳା ରହିବା ଉଚିତ୍ ।

(ଗ) ଅନ୍ୟାନ୍ୟ ଯାବତୀୟ ଯୁକ୍ତାକ୍ଷର ୍ଗ, ୍ଗ, ୍ଲ ଏବଂ 'ଫଳା' ସକାଶେ ହସନ୍ତର ବ୍ୟବହାର କରିବା ଉଚିତ ।

ବର୍ଜ୍ଜନୀୟ ବର୍ଣ୍ଣମାଳା–

(୩) ନିମ୍ନଲିଖିତ ରୂପର ଛାପା ସକାଶେ ସ୍ୱତନ୍ତ୍ର ଟାଇପର ବ୍ୟବହାର ଉଠାଇ ଦିଆଯାଇପାରେ ।

(କ) ସ୍ୱତନ୍ତ୍ର ଯୁକ୍ତାକ୍ଷର (-) ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ମ୍ପ, ମ୍ଫ, ନ୍ଦ, ନ୍ଧ, ଏବଂ (୨) (କ) ଓ (୩) (ଖ) ରେ ପ୍ରସ୍ତାବିତ ଫଳାଦ୍ୱାରା ସିଦ୍ଧ ଯାବତୀୟ ଯୁକ୍ତାକ୍ଷର ।

(ଖ) ଫଳା- ଖ, ଗ, ଘ, ଜ, ଝ, ଡ, ଢ, ଦ, ଧ, ବ, ଭ, ମ, ଯ, ହ.... ପ୍ରଭୃତି ।

(ଗ) ରୂପାନ୍ତର, ଯଥା-

କ୍ସ ସ୍ଥଳରେ କ୍ତ, କ୍ତ୍ର ସ୍ଥଳରେ କ୍ଏ, ତ ସ୍ଥଳରେ ତ, (ଉତ୍କଳ, ଉତ୍ପର, ଉତ୍ସବ) ବା ଯୁକ୍ତ-ତ (ଯଥା ଉତ୍ପତ୍ତି) *, ତ୍ର ସ୍ଥଳରେ ନ୍ତ୍ର, ନ୍ତ୍ର ସ୍ଥଳରେ ନ୍ତ.... ଇତ୍ୟାଦି ଇତ୍ୟାଦି ।

ସ୍ୱର ମାତ୍ରା

ବର୍ତ୍ତମାନ ସ୍ୱରମାତ୍ରା ସମ୍ବନ୍ଧରେ କିଛି ଆଲୋଚନା କରିବା ଆବଶ୍ୟକ ।

(୪) ସ୍ୱରମାତ୍ରା ବ୍ୟବହାରରେ ନିମ୍ନଲିଖିତ କେତୋଟି ରୂପ ବର୍ଜନୀୟ ବୋଲି ବିବେଚିତ ହୋଇପାରେ-

(କ) ଯୁକ୍ତ ହ୍ରସ୍ୱ ଇ କାର (ଅକ୍ଷର ଦେହରେ ବା ତଳେ), ଯଥା- କି, ଥିଲା ।

(ଖ) ସଂଯୁକ୍ତ ହ୍ରସ୍ୱ ଇ-କାର ଓ ରେଫ, ଯଥା- ଚର୍ବି ।

(ଗ) ଯୁକ୍ତ ଦୀର୍ଘ ଇ-କାର, ଯଥା- କୀଟ ।

(ଘ) ଯୁକ୍ତ ହ୍ରସ୍ୱ ଉ-କାର, ଯଥା- କୁଳ, ବୁଦା, ମୃତ୍ୟୁ... ଇତ୍ୟାଦି ଇତ୍ୟାଦି ।

ମାତ୍ର ଏ ସମ୍ବନ୍ଧରେ ଗୋଟିଏ କଥା ମନେ କରାଇ ଦେବା ଉଚିତ୍ ବୋଲି ମନେ କରେଁ । ସ୍ୱର ମାତ୍ରାଗୁଡ଼ିକର ବ୍ୟବହାର ଏତେ ଅଧିକ ଯେ, ଏ ଦିଗରେ କୌଣସି ବର୍ଜନ-ନୀତି ଅନୁସରଣ କରିବା ପୂର୍ବରୁ ବିଶେଷ ବିବେଚନା କରି ଦେଖିବା ନିତାନ୍ତ ଦରକାର । କାରଣ କି ପରିବର୍ତ୍ତରେ କି ବା କୁ ପରିବର୍ତ୍ତରେ କୁ ବ୍ୟବହାର କରିବାକୁ ଗଲେ ହୁଏତ କମ୍ପୋଜିଟରର ଅଧିକା ଖଟଣି ଖୁବ୍ ବେଶୀ ହୋଇ ପଡ଼ିପାରେ ।*

** ** ** **

ସାରସଂଗ୍ରହ

ଏହି ପ୍ରବନ୍ଧର ପ୍ରସ୍ତାବଗୁଡ଼ିକ କାର୍ଯ୍ୟରେ ପରିଣତ ହେଲେ ନିମ୍ନଲିଖିତ ମାତ୍ର ୯୭ଟି ଅକ୍ଷର ଓ ଚିହ୍ନ ସାହାଯ୍ୟରେ ଓଡ଼ିଆ ଭାଷାର ସମସ୍ତ ଛପାକାର୍ଯ୍ୟ ଚଳିପାରିବ ।

ବର୍ଣ୍ଣମାଳା-

ଅ ଆ ଇ ଈ ଉ ଊ ଋ ୠ ଌ ଏ ଐ ଓ ଔ କଖଗଘଙ ଚଛଜଝଞ ଟଠଡଢଣ ତଥଦଧନ ପଫବଭମ ଯରଳବ ଶଷସହ ଡ଼ଢ଼ୟଲ ଂ ଃ ँ - ୫୩ ସ୍ୱତନ୍ତ୍ର ଯୁକ୍ତାକ୍ଷର-

କ୍ଷ ଚ୍ଚ ଚ୍ଛ ଞ୍ଝ ଣ୍ଣ ତ୍ତ ଦ୍ଦ ଦ୍ଧ ନ୍ଦ ନ୍ଧ ଦ୍ଧ- ୧୧ ଫଳା

ଚ ଛ ଟ ଠ ୨ ୍ ୍ ୍ ପ ଫ ୍ 2 ୱ ୍ ୍ ୍ ସ ଁ - ୨୦ ମାତ୍ରା ଓ ଚିହ୍ନ-
। ି ୀ ୁ ୂ ୃ ଏ ି ୍ (ହସନ୍ତ) ଏବଂ , ; ? ! - ୧୩
ମୋଟ - ୯୭

**ଉପସଂହାର**

ଛାପାରେ ଆଜିକାଲି ଅକ୍ଷରଗୁଡ଼ିକ ଯେଉଁ ସବୁ ରୂପବୈଚିତ୍ର୍ୟ ଦେଖାଯାଏ, ସେଗୁଡ଼ିକ ଦୂରୀଭୂତ ହେଲେ ସମସ୍ତଙ୍କର ସୁବିଧା ଓ ମଙ୍ଗଳ । ଏହି 'standardisation ସାଧନ ଲାଗି ଉପରେ ଯାହା କିଛି କୁହାଗଲା, ତାର ବ୍ୟାବହାରିକ ଦିଗ (Practical side) ଟି ଓଡ଼ିଆ ଛାପାଖାନାର ମାଲିକମାନଙ୍କର ଗଭୀର ଚିନ୍ତାର ବିଷୟ, ସନ୍ଦେହ ନାହିଁ ।

ପୁଣି, କାର୍ଯ୍ୟକ୍ଷେତ୍ରରେ ଯେ ଉକ୍ତ ପ୍ରସ୍ତାବଗୁଡ଼ିକ ଗ୍ରହଣଯୋଗ୍ୟ ହୋଇପାରେ, ତାର କିଛି କିଛି ପ୍ରମାଣ ମାସିକ 'ଶିଶିର' ଖଣ୍ଡିଏ ଖୋଲିଲେ ଆଖିରେ ପଡ଼ିପାରେ । ଏ ସମ୍ବନ୍ଧରେ ବ୍ୟାବହାରିକ ଦିଗରୁ ବିସ୍ତୃତ ଆଲୋଚନା ହେବା ବାଞ୍ଛନୀୟ । ମଧ୍ୟ, ବିଶେଷଜ୍ଞମାନଙ୍କର ମତାମତ ବିଭିନ୍ନ ପତ୍ର-ପତ୍ରିକା ଓ ଖବର-କାଗଜରେ ପ୍ରକାଶିତ ହେଲେ ପାଠକସାଧାରଣ ଅବଗତିର ବିଶେଷ ସୁବିଧା ହୁଅନ୍ତା ।



## ୨୯

# ଓଡ଼ିଆଭାଷା ସମସ୍ୟାର ଗୋଟିଏ ଦିଗ

## କୃଷ୍ଣଚନ୍ଦ୍ର କର

ଗତ ପ୍ରାୟ ଦଶବର୍ଷ ମଧ୍ୟରେ ଓଡ଼ିଆ ସାହିତ୍ୟ ବା ଭାଷାଗତ କୌଣସି ଧାରାବାହିକ ଆଲୋଚନା ହୋଇନାହିଁ । ଅବଶ୍ୟ ତତ୍‌ପୂର୍ବବର୍ତ୍ତୀ ସମୟ କଥା ପ୍ରସଙ୍ଗ ବହିର୍ଭୂତ ବୋଲି ଏହି ଆଲୋଚନାର ଅଙ୍ଗୀଭୂତ ହୋଇନାହିଁ । ଏହି ଦଶ ବର୍ଷହିଁ ଓଡ଼ିଆ ସାହିତ୍ୟ ରାଜ୍ୟର ଗୋଟାଏ ସ୍ମରଣୀୟ ଯୁଗସନ୍ଧି-ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମୁଖ ବହୁମୁଖିତା ଏହି ଶଂସିତ ସମୟରେ ହିଁ ପ୍ରାରମ୍ଭିକ ବିକାଶ ପଥରେ ଗତି କରିବାକୁ ଆରମ୍ଭ କରିଅଛି । ଅଥଚ ବଡ଼ ଦୁଃଖର ବିଷୟ-ଏଭଳି ଶୁଭ ସମୟରେ ଭାଷାର ନିୟନ୍ତ୍ରଣ ପାଇଁ କୌଣସି ନିୟାମକତାର ପ୍ରଚେଷ୍ଟା ଇତି ମଧ୍ୟରେ ପରିଦୃଷ୍ଟ ହୋଇନାହିଁ । ଅବଶ୍ୟ ଗୌରବର କଥା - ଏହି ସମୟ ମଧ୍ୟରେ ବହୁ ଲେଖକ ସାହିତ୍ୟ କ୍ଷେତ୍ରରେ ଆବିର୍ଭୂତ ହୋଇ ଅଛନ୍ତି । ମାତ୍ର ଲକ୍ଷ୍ୟକଲେ ଜଣାଯିବ, ଅଧିକାଂଶ ଲେଖକଙ୍କର ଲେଖା ପ୍ରକୃତ ଓଡ଼ିଆ ଭାଷାର ପ୍ରତୀକ ନୁହେଁ-ନାନା ଭାବରେ ଦୁଷ୍ଟ୍ । ସେ ଦୋଷପାଇଁ ଉକ୍ତ ଲେଖକମାନଙ୍କୁ ପୂର୍ଣ୍ଣ ଭାବରେ ଦାୟୀ କରାଯାଇ ନ ପାରେ; କାରଣ ସେମାନେ ସାହିତ୍ୟ ଗଢ଼ିବା ପାଇଁ ଆୟାସ ବା ପ୍ରୟାସ କରିଅଛନ୍ତି - ଭାଷା ଗଢ଼ିବା ପାଇଁ ନୁହେଁ । ଓଡ଼ିଆ ଭାଷାର ସ୍ୱରୂପଗତ ବୈଶିଷ୍ଟ୍ୟ ପ୍ରଦର୍ଶନ ପାଇଁ ଯେଉଁ ଭାଷାବିଦ୍‌ଗଣ ତଥା ପତ୍ରିକା ସମ୍ପାଦକମାନେ ଆପାତତଃ ଦାୟୀ, ସେମାନେ ଯେତେବେଳେ ତତ୍‌ସମ୍ବନ୍ଧୀୟ କୌଣସି ଆଲୋଚନା କରି ଲେଖକମାନଙ୍କ ସମ୍ମୁଖରେ ଭାଷାର ଆଦର୍ଶ ସମ୍ବନ୍ଧରେ କୌଣସି ଧାରଣା ଉପସ୍ଥାପିତ କରିନାହାନ୍ତି, ଲେଖକମାନଙ୍କ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷାରେ ଶିଥିଳ ପ୍ରଯତ୍ନତା ବା ଅସତର୍କତା ଉପସ୍ଥିତ ହେବା ଅସ୍ୱାଭାବିକ ନୁହେଁ - ବରଂ ବେଶି ସ୍ୱାଭାବିକ ।

ମାତ୍ର ସୁଖ ଓ ଆଶ୍ୱାସନାର କଥା - ଅଳ୍ପ କେତେଦିନ ହେଲା ଏହି ଆଲୋଚନା ସାହିତ୍ୟକ୍ଷେତ୍ରରେ ଆତ୍ମପ୍ରକାଶ କରି ଅନେକଙ୍କର ସୁଦୃଷ୍ଟି ଆକର୍ଷଣ କରାଇ ପାରିଛି । ଓଡ଼ିଆ ଲିପି ସଂସ୍କାର, ଓଡ଼ିଆ ଭାଷା ତଥା ଶବ୍ଦ ସମ୍ବନ୍ଧୀୟ ଆଲୋଚନା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର ରଚନାଶୈଳୀର ବୈଶିଷ୍ଟ୍ୟ ବିଷୟରେ ଆଧୁନିକ ରୁଚିର ଉନ୍ନତ ଆଲୋଚନା ହେବା ନିତାନ୍ତ

ପ୍ରୟୋଜନୀୟ । ଆମ ଦେଶରେ ସେପରି କୌଣସି ଶକ୍ତିଶାଳୀ ବଳିଷ୍ଠ ସାହିତ୍ୟିକ ବର୍ତ୍ତମାନ ନାହାନ୍ତି, ଯାହାଙ୍କର ଅସାଧାରଣ ପ୍ରଭାବ ଓଡ଼ିଆ ଭାଷାର ଗତିକୁ ଅଭିନବ ଆଧୁନିକତାର ମାର୍ଗରେ ଚାଳିତ କରାଇ ପାରିବ ଏବଂ ଲେଖକମାନେ ତଦ୍ଦ୍ୱାରା ପ୍ରଭାବିତ ହୋଇ ସେହି ଆଦର୍ଶରେ ସାହିତ୍ୟ ସୃଷ୍ଟି କରିଯିବେ । ତେଣୁ ଉପସ୍ଥିତ କ୍ଷେତ୍ରରେ ସାହିତ୍ୟିକ ପତ୍ରଚାଳକମାନଙ୍କର କର୍ତ୍ତବ୍ୟ - ଏଣିକି ଏ ସମ୍ବନ୍ଧୀୟ ଆଦର୍ଶ ସେହିମାନେ ଲେଖକମାନଙ୍କ ପକ୍ଷରେ ଉପସ୍ଥାପିତ କରିବେ ବା କରାଇବେ। ସମ୍ପାଦକମାନଙ୍କ ଅପେକ୍ଷା ବଡ଼ ସାହିତ୍ୟସ୍ରଷ୍ଟା ଓ ଭାଷାସଂସ୍କାରକ ଆଉ କେହି ନୁହନ୍ତି ।

ଏଠାରେ ଗୋଟିଏ କଥା କହି ରଖିବା ଆବଶ୍ୟକ । ଯେଉଁମାନେ ଆଜିକାଲି ନୂତନ ଲେଖକ ହେଉଛନ୍ତି, ସେମାନଙ୍କ ପକ୍ଷରେ ସମୟ ସମୟରେ ବାଟ ହୁଡ଼ିବା ବଡ଼ ସ୍ୱାଭାବିକ - ସେମାନଙ୍କୁ ବାଟ ହୁଡ଼ାଇବାର ଉପାୟ ମଧ୍ୟ ଆମ ଦେଶରେ ବହୁତ । କଥାଟା ଟିକିଏ ସ୍ପଷ୍ଟ କରାଯାଉ । ତରୁଣ ଲେଖକମାନଙ୍କ ଭାଷାରେ ବୟଃସ୍ଥ ଲେଖକମାନଙ୍କର ଭାଷାଗତ ଛବିସବୁ ଦେଶରେ ସବୁ ସାହିତ୍ୟରେ ପ୍ରତିଫଳିତ ହୋଇଥାଏ । ଯଦି ବୟଃସ୍ଥ ଲେଖକମାନେ ସେମାନଙ୍କ ଲେଖାରେ ଅବାଞ୍ଛନୀୟ ଅନ୍ୟ ଭାଷାର ଶବ୍ଦାବଳି ପ୍ରୟୋଗ କରିଥାଆନ୍ତି, ତାହା ତରୁଣ ଲେଖକର ଦୃଷ୍ଟିରେ ପଡ଼ିଲେ ସେ ତାହାକୁ ନିଶ୍ଚୟ ସଙ୍ଗେ ସଙ୍ଗେ ଚୟନ କରି ନେଇ ନିଜ ଲେଖାରେ ଯୋଜନା କରିବ - ଏହା ଅତ୍ୟନ୍ତ ସ୍ୱାଭାବିକ । ଏଥିରେ ତରୁଣର ଦୋଷ ନାହିଁ - ଦୋଷ ପ୍ରବୀଣର; ତଥାପି ନବୀନ ସାହିତ୍ୟ ସେବକମାନଙ୍କ ଉପରେ ଗୋଟିଏ ଗୁରୁ ଦାୟିତ୍ୱ ଅଛି । ସେମାନେ ସାହତ୍ୟ ସୃଷ୍ଟି କରିବେ - ଭବିଷ୍ୟତର ବଂଶଧରମାନଙ୍କ ପାଇଁ ସାଇତି ରଖିଯିବେ; ତେଣୁ ଅନ୍ଧଭାବରେ ପ୍ରବୀଣ ସାହିତ୍ୟିକଙ୍କ ଭାଷାକୁ ଆଦର୍ଶ ମନେ ନ କରି ନିଜେ ଟିକିଏ ଆଲୋଚନା କରି ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଯେପରି ନଷ୍ଟ ନ ହୁଏ, ତତ୍‌ପ୍ରତି ଦୃଷ୍ଟିଦେଇ ସେମାନେ ସାହିତ୍ୟ ଗଢ଼ନ୍ତୁ । ତାହାହେଲେ ଆଉ କୌଣସି ଆଶଙ୍କାର କାରଣ ରହିବ ନାହିଁ ।

କିନ୍ତୁ ଆମ ଦେଶରେ ବର୍ତ୍ତମାନ ଆଉ ଦଳେ ଲେଖକ ଦେଖା ଦେଇଛନ୍ତି; ସଂଖ୍ୟା ସେମାନଙ୍କର ଅବଶ୍ୟ ଅଳ୍ପ - ସେମାନେ ପ୍ରତିବେଶୀ ବଙ୍ଗଳା ଭାଷା ଅନବରତ ପଢ଼ିବାରୁ ସେମାନଙ୍କର ଭାଷା ଅପ୍ରତ୍ୟାଶିତ ଭାବରେ ବଙ୍ଗଳା ଭାଷାର ଛାଞ୍ଚରେ ଢାଳି ହୋଇ ଯାଉଅଛି । ପୁଣି ସେମାନେ ନୂତନତ୍ୱ ଦେଖାଇବା ଉଦ୍ଦେଶ୍ୟରେ ଅନେକ ବଙ୍ଗଳା ଶବ୍ଦ ନିଜ ନିଜ ଲେଖାରେ ନିର୍ବିଚାରରେ ପ୍ରୟୋଗ କରି ଚାଲି ଯାଉଛନ୍ତି । ସେହି ଆହାର୍ଯ୍ୟକାରିତା ବ୍ୟାଧି ଅନ୍ୟ ଲେଖକମାନଙ୍କ ଲେଖାରେ ସଂକ୍ରାମିତ ହୋଇଯିବାକୁ ମଧ ଅଧିକ ସମୟ ଲାଗୁନାହିଁ । ଏହାହିଁ ଓଡ଼ିଆ ଭାଷା ପକ୍ଷରେ ସବୁଠାରୁ ବେଶୀ ମାରାତ୍ମକ । ଏ ଦିଗରେ ବିଶେଷ ଅବହିତ ନ ହେଲେ ରକ୍ଷା ନାହିଁ । ବନ୍ଧୁ ମାନସିଂହ ପ୍ରାୟ ତିନିବର୍ଷ ତଳେ 'ସହକାର'ରେ ଏ ସମ୍ବନ୍ଧରେ କେତେକ ଆଲୋଚନାର ଇଙ୍ଗିତ କରି ଅନେକଙ୍କୁ ସତ୍‌ପଥକୁ ଆଣିବାର ଶୁଭ ପ୍ରୟାସ

କରିଥିଲେ । ଆଜିକି ପ୍ରାୟ ଦେଢ଼ବର୍ଷ ତଳେ ଅନ୍ୟ ଜଣେ ପ୍ରବୀଣ ସାହିତ୍ୟିକ ବନ୍ଧୁ ସେହି "ସହକାର"ରେ ପ୍ରକାଶିତ ଗୋଟିଏ କ୍ଷୁଦ୍ର ଗଳ୍ପ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାହା ଜଣେ ଖ୍ୟାତିମାନ୍ ବିଶିଷ୍ଟ ସାହିତ୍ୟିକ ଓ ସମାଲୋଚକ ( ? ) ଯୁବକଙ୍କର । ଦେଖାଗଲା- କେବଳ କ୍ରିୟାଗୁଡ଼ିକୁ ବଙ୍ଗଳା କରିଦେଲେ ସମୁଦାୟ ଲେଖାଟି ବିଶୁଦ୍ଧ ବଙ୍ଗଳାରେ ପରିଣତ ହୋଇଯାଉଅଛି । ମନେ ହେଲା, ସତେ ଯେପରି ଲେଖକ ପ୍ରଥମେ ଗଳ୍ପଟିକି ବଙ୍ଗଳାରେ ଲେଖିଥିଲେ, ଏହା ତା'ର ଅନ୍ଧ ଅନୁବାଦ ମାତ୍ର । ଗଭୀର କ୍ଷୋଭର କଥା - ତହିଁରେ ଓଡ଼ିଆ ରଚନାଶୈଳୀ ପ୍ରତି ନିର୍ମମ ଔଦାସ୍ୟ ଓ ତାଚ୍ଛିଲ୍ୟ ପ୍ରଦର୍ଶିତ ହୋଇଥିଲା ।

ଗତ ବର୍ଷ ସେପ୍ଟେମ୍ବର ୨ ତାରିଖର କଥାଟି ଏଠାରେ ନ ଲେଖି ରହି ହେଉନାହିଁ । ସେଦିନ କଟକର ସାହିତ୍ୟ-ସମାଜରେ ଅଧ୍ୟାପକ ଗିରିଜାଶଙ୍କର "ଓଡ଼ିଆ ଶବ୍ଦମାନଙ୍କର ଆଲୋଚନା" ଶୀର୍ଷକ ପ୍ରବନ୍ଧପାଠ ପରେ ଯେପରି ଭାବରେ ଉପସ୍ଥିତ ସାହିତ୍ୟିକମାନଙ୍କ କର୍ତ୍ତୃକ ଆଲୋଚନା ହୋଇଥିଲା, ତହିଁରେ ବାସ୍ତବରେ ବିସ୍ମୟର ଅନେକ କାରଣ ଥିଲା । ଜଣେ ଚିନ୍ତାଶୀଳ ପ୍ରୌଢ଼ ସାହିତ୍ୟିକ ସାଧାରଣ ଭାବରେ ପ୍ରବନ୍ଧବର୍ଣ୍ଣିତ କେତୋଟି ମାତ୍ର ଶବ୍ଦ ସମ୍ବନ୍ଧରେ ନିଜର ବ୍ୟକ୍ତିଗତ ମତ ପ୍ରକାଶ କଲାପରେ ତତ୍ପରବର୍ତ୍ତୀ ପ୍ରାୟ ସମସ୍ତ ସମାଲୋଚକ କେବଳ ସେହି ଶବ୍ଦ କେତୋଟି ସମ୍ବନ୍ଧରେ ଚର୍ବିତ ଚର୍ବଣ କରିବା ଛଡ଼ା ଆଉ କିଛି କରି ନ ଥିଲେ । ଏହା ଆଧୁନିକ ସାହିତ୍ୟିକମାନଙ୍କର ଆଲୋଚନାମୂଳକ ଜ୍ଞାନର ଅଗଭୀରତାର ନିଦର୍ଶନ ଛଡ଼ା ଆଉ କଅଣ ହୋଇପାରେ ?

ମନେପଡୁଛି ଜଣେ ବିଶିଷ୍ଟ ସାହିତ୍ୟିକ କବିକଳ୍ପନାରେ ଭାସି କହୁଁ କହୁଁ ଏହି ମର୍ମରେ କହିଗଲେ- "ଆଜି 'ମନୋଯୋଗ'ର ଯୁଗ ଆଉ ନାହିଁ, ତାହା ଆସି 'ମନଯୋଗ'ରେ ପରିଣତ ହେଲାଣି । କେତେକ ଲୋକ 'ମନ୍‌ଯୋଗ' ମଧ୍ୟ କହିଲେଣି । ଆଉ କିଛିଦିନ ପରେ ଏହା 'ମଣ୍ଡୋଗ' ଆକାର ମଧ୍ୟ ଗ୍ରହଣ କରିପାରେ । ଏଥିରେ ବିଚିତ୍ରତା ଏବଂ ଏଥିପାଇଁ ରକ୍ଷଣଶୀଳ ସାହିତ୍ୟିକମାନଙ୍କର ବିଳାପ କରିବାରେ ମଧ୍ୟ କୌଣସି ଫଳନାହିଁ । ଯାହା ହୋଇଯାଉଛି ହୋଇଯାଉ, ତହିଁରେ ବାଧାଦେଲେ ହାସ୍ୟାସ୍ପଦ ହେବା ଛଡ଼ା ଆଉ କିଛି ନାହିଁ ।"

ଆଜିକାଲି ଅନେକେ ଏଭଳି ସହଜ ଅଗଭୀର ଯୁକ୍ତିର ଆଶ୍ରୟ ଗ୍ରହଣ କରିଥାଆନ୍ତି । ସେମାନେ କହନ୍ତି, "ଏତେ ବିଧିବଦ୍ଧ ଭାବରେ ଭାଷାକୁ ବ୍ୟାକରଣର ନୀରସ ଗଣ୍ଡି ମଧ୍ୟରେ ଆବଦ୍ଧ କରି ରଖିବାଦ୍ୱାରା ଭାଷା ତା'ର ସହଜ ସ୍ୱାଭାବିକ ବିକାଶରେ ସ୍ୱାଧୀନତା ହରାଏ; ତେଣୁ ଆଧୁନିକ ଯୁଗର ଭାଷାରେ ଯେପରି ପରିବର୍ତ୍ତନ ହୋଇଯିବ, ପରେ ତଦନୁଯାୟୀ ଓଡ଼ିଆ ଭାଷାର ବ୍ୟାକରଣ ରଚିତ ହେବ ।" ଏହିଠାରେ ବୁଝିବାରେ ଅନ୍ତରାୟ ଆସେ । ଯଦି ପ୍ରତିବେଶୀ କୌଣସି ଭାଷାର ବଳିଷ୍ଠ ପ୍ରଭାବରେ ପଡ଼ି ଓଡ଼ିଆ ଭାଷା ତା'ର ସ୍ୱାତନ୍ତ୍ର୍ୟ

ତଥା ବିଶିଷ୍ଟତା ହରାଇବସେ, ତାହାହେଲେ ପରେ ଓଡ଼ିଆ ଭାଷାର ବ୍ୟାକରଣ ରଚିତ ହେବ, ନା ସେହି ପ୍ରତିବେଶୀ ଭାଷାର ବିକୃତ ବ୍ୟାକରଣ ରଚିତ ହେବ ?

ସେମାନେ ଓଡ଼ିଆ ଭାଷାର ସ୍ୱାଧୀନ ବିକାଶରେ ବାଧା ଆସିବ ବୋଲି ଯେଉଁ ଆଶଙ୍କା କରନ୍ତି, ସେ ବିଷୟରେ ଆଲୋଚନା ଆବଶ୍ୟକ । କଥାଟିକି ଟିକିଏ ବିଶଦ କରିଦିଆଯାଉ । ଧରନ୍ତୁ, ଗୋଟିଏ ନବଗୁଳ୍ମ ପ୍ରକୃତିକୋଳରୁ ତା'ର ପ୍ରୟୋଜନୀୟ ଜଳବାୟୁତାପାଦି ଆହରଣ କରି ନିଜର ପୁଷ୍ଟି ଓ ବର୍ଦ୍ଧିଷ୍ଣୁତା ପାଇଁ ଚେଷ୍ଟା କରୁଅଛି । ଏପରି ଅବସ୍ଥାରେ ଯଦି ଗୋଟାଏ ପ୍ରକାଣ୍ଡ ଆବରଣ ବା ପ୍ରସ୍ତରଖଣ୍ଡ ତା ଉପରେ ମାଡ଼ିବସେ, ତା ହେଲେ ଗୁଳ୍ମଟି ଲୋଡ଼ୁଥିବା ଆଲୋକାଦି ପାଇ ନ ପାରି ଶେଷରେ ହତଶ୍ରୀ ହୋଇପଡ଼ିବ ନାହିଁ କି ? ସେତେବେଳେ ସେ ତା'ର ଆଉ ସ୍ୱାଭାବିକ ବିକାଶପଥରେ ଅଗ୍ରସର ହୋଇପାରିବ କିପରି ? ଉକ୍ତ ଆବରଣ ବା ଶିଳାଖଣ୍ଡକୁ ଆଶୁ ଅପସାରିତ କରି ନ ଦେଲେ ଗୁଳ୍ମଟିର ଜୀବନରକ୍ଷା ତଥା ସ୍ୱାଭାବିକ ବର୍ଦ୍ଧନ କିପରି ସମ୍ଭବପର ହେବ ? ଭାଷା ପକ୍ଷରେ ମଧ ଠିକ୍ ଏହି କଥା । ଆମ୍ଭମାନଙ୍କ ଆଧୁନିକ ଭାଷା ଉପରେ ଯଦି କୌଣସି ଶକ୍ତିଶାଳୀ ପ୍ରତିବେଶୀ ଭାଷାର ପ୍ରଭାବ ନିପତିତ ହୁଏ, ତାହାହେଲେ ପ୍ରଥମେ ସେହି ଅବାଞ୍ଛନୀୟ ପ୍ରଭାବଟାକୁ ଅନ୍ତର୍ହିତ କରାଇ ନ ଦେଲେ ଓଡ଼ିଆ ଭାଷା ତାହାର ସହଜ ସ୍ୱାଭାବିକ ବିକାଶ ପାଇଁ ଉପଯୁକ୍ତ କ୍ଷେତ୍ର ବା ପରିସର ପାଇବ କାହୁଁ ?

ପୁଣି ଆଉ କେତେକ କହନ୍ତି- ପ୍ରତିବେଶୀ ସାହିତ୍ୟର ଏ ଗୋଟାଏ ଅତି ସାମୟିକ ପ୍ରଭାବ – ଠିକ୍ ପରାଙ୍ଗପୁଷ୍ଟ ଲତାପରି । ତାହା ଯେପରି ଅପ୍ରତ୍ୟାଶିତ ଭାବରେ ଚାଲି ଆସିଛି, ସେହପରି ଅପ୍ରତ୍ୟାଶିତ ଭାବରେ ସ୍ୱତଃ ଚାଲିଯିବ ଏବଂ ଆମ୍ଭମାନଙ୍କ ଭାଷା ଉପରେ ତା'ର କୌଣସି ଦାଗ ଆଉ ରହିବ ନାହିଁ । କିନ୍ତୁ ବୁଝିବା ଉଚିତ ପରାଙ୍ଗପୁଷ୍ଟ ଲତା ସହଜରେ ମରେ ନାହିଁ, ପ୍ରଧାନ ତରୁର ନିର୍ଯ୍ୟାସ ଶୋଷଣ କରି ବଢ଼ିବାକୁ ଲାଗେ । ଯଦି ବା ଧରାଯାଏ ଯେ, କିଛି କାଳ ପରେ ତାହା ମରିଯିବ, ତଥାପି ଏହି 'କିଛି କାଳ' ମଧରେ ତ ଆମର ଭାଷା ଯଥେଷ୍ଟ ଜୀବନୀଶକ୍ତି ହରାଇବ; ପୁଣି ତା'ର ପରିପୂରଣ ପାଇଁ ଯେ ସମୟ ଆବଶ୍ୟକ, ତାହା ସାହିତ୍ୟ ତଥା ଜାତି ପକ୍ଷରେ କଅଣ ମାରାତ୍ମକତାର କଥା ନୁହେଁ ।

ବୋଲିବା ବାହୁଲ୍ୟ- ଯେଉଁ ଅତି ନୂତନ ପନ୍ଥିମାନେ 'ମଞ୍ଜୋଗ' ସପକ୍ଷରେ ଏପରି ଗୁଞ୍ଜନ କରନ୍ତି, ସେମାନଙ୍କ ମତର ପଶ୍ଚାତରେ କେବଳ ବଙ୍ଗଭାଷାର ଅତିରିକ୍ତ ଅନୁରକରଣପ୍ରିୟତାର ମୋହ କାର୍ଯ୍ୟ କରୁଅଛି । ବଙ୍ଗଳାରେ ସାଧାଣତଃ ଅକ୍ଷରମାନ ହସନ୍ତଯୁକ୍ତ ହୋଇ ଉଚ୍ଚାରିତ ହୋଇଥାଏ । ଆମ ଦେଶର ଆଧୁନିକ ନବ୍ୟ ଶିକ୍ଷିତମାନେ ତାହାରି ଅନୁକରଣରେ ଓଡ଼ିଆ ପଢ଼ିଲାବେଳେ ମଧ ତଦ୍ରୂପ ଉଚ୍ଚାରଣ କରିବାକୁ ଗୌରବ ମନେ କରିଥାଆନ୍ତି । କେବଳ ଏହି ସାଙ୍ଘାତିକ ଅନୁକୃତିପରତନ୍ତ୍ରତାହିଁ 'ମନୋଯୋଗ'ର 'ମଞ୍ଜୋଗ' ରୂପପ୍ରାପ୍ତି କଳ୍ପନାର ଏକମାତ୍ର କାରଣ ।

ଉପରିଲିଖିତ ଆଲୋଚନାରୁ ଅନେକେ ଆମ୍ଭମାନଙ୍କୁ ଅତି ରକ୍ଷଣଶୀଳ ବୋଲି ମନେ କରିପାରନ୍ତି । କିନ୍ତୁ ସେ ଦୃଷ୍ଟିରେ ଆଦୌ ଏ ବିଷୟର ଅବତାରଣା ନୁହେଁ । କେବଳ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ଓ ସ୍ୱାଧୀନ ମର୍ଯ୍ୟାଦା ରକ୍ଷା ଉଦ୍ଦେଶ୍ୟରେ ଏତକ ଲେଖିବାକୁ ବାଧ ହେଉଅଛୁଁ । ଏକା ପ୍ରତିବେଶୀ ଭାଷାର ସାହିତ୍ୟ କାହିଁକି, ପୃଥିବୀର ସବୁ ଭାଷାର ସାହିତ୍ୟରୁ ବହୁବିଧ ଆବଶ୍ୟକ ଜ୍ଞାନ ଚୟନ କରି ଆମ୍ଭମାନଙ୍କ ସାହିତ୍ୟରେ ସଂରକ୍ଷଣ କରିବା ଆମ୍ଭମାନଙ୍କ ପକ୍ଷରେ ଅତି ପ୍ରୟୋଜନୀୟ କର୍ତ୍ତବ୍ୟ... କିନ୍ତୁ ତା ସଙ୍ଗେ ସଙ୍ଗେ କୌଣସି ଭାଷାର ଛାୟା ଯେପରି ଆମ୍ଭମାନଙ୍କ ଭାଷା ଉପରେ ପଡ଼ି ତାର ମୌଳିକତା ବିନାଶରେ ସହାୟତା ନ କରେ, ତତ୍‌ପ୍ରତି ସତର୍କ ଦୃଷ୍ଟି ସ୍ଥାପନ ତତୋଽଧିକ କର୍ତ୍ତବ୍ୟ । କେବଳ ଓଡ଼ିଆ ଭାଷା ପ୍ରତି ନୁହେଁ, ଜଗତର ପ୍ରତ୍ୟେକ ଉନ୍ନତିଶୀଳ ଭାଷା ପ୍ରତି ଏହି ସତ୍ୟ ପ୍ରଯୋଜ୍ୟ ।

ଅନେକେ କହିବେ, କହୁଛନ୍ତି ମଧ– ଯଦି ପ୍ରତିବେଶୀ ଭାଷାର କେତେକ ଶବ୍ଦ ଓଡ଼ିଆ ଭାଷାରେ ଅନୁପ୍ରବେଶ କରିଯାଏ, ତେବେ ସେଥିପାଇଁ ବିପ୍ଳବ ଆଣିବାର ପ୍ରୟୋଜନ ନାହିଁ; କଥାଟା ଆଂଶିକ ସତ୍ୟ ବୋଲି ମନେହୁଏ । ବାସ୍ତବରେ ଯଦି ଆମ ଭାଷାରେ ଅଭାବ ଥିବା କୌଣସି ଶବ୍ଦ ଅନ୍ୟ ଭାଷାରୁ ଆସେ, କ୍ଷତି ନାହିଁ, ବରଂ ତଦ୍ଦ୍ୱାରା ଭାଷା ଆମର ପରିପୁଷ୍ଟ ହେବ । କିମ୍ବା ଅନ୍ୟକୌଣସି ସ୍ୱାଭାବିକ ସଙ୍ଗତ କାରଣରୁ ଯେବେ ବିଭାଷୀୟ ଶବ୍ଦର ଆଗମ ହୁଏ, ତାହାହେଲେ ମଧ ଆପତ୍ତି କରିବାର କାରଣ କିଛି ନାହିଁ; କିନ୍ତୁ ଯେବେ ଆମର ଦୁର୍ବଳତା, ଅପାରଗତା ବା ବିକୃତ ଅନୁକରଣ ପ୍ରଭୃତି କୌଣସି ଅସ୍ୱାଭାବିକ ଅସଙ୍ଗତ କାରଣବଶତଃ ସେପରି ହୁଏ ଅଥବା ଭାଷାଜ୍ଞାନର ଅଭାବ, ଅପାଟବ ବା ଉଚ୍ଚାରଣକ୍ଲୈବ୍ୟରୁ ଓଡ଼ିଆ ଶବ୍ଦ ପ୍ରାଦେଶିକତା ଦୋଷଯୋଗୁ ବିକୃତ ରୂପ ଧାରଣ କରେ, ଭାଷାର ସଂସ୍କାରକମାନଙ୍କର ତା ବିରୁଦ୍ଧରେ ସବଳ ଲେଖନୀଚାଳନ ସର୍ବାଦୌ ବାଞ୍ଛନୀୟ ।

ଉପର୍ଯ୍ୟୁକ୍ତ ଉକ୍ତିର ପୋଷକତା ପାଇଁ ନିମ୍ନରେ କେତୋଟି ଦୃଷ୍ଟାନ୍ତ ଦିଆଯାଉଅଛି । ଏଗୁଡ଼ିକ ଆମ୍ଭମାନଙ୍କ ଭାଷାରେ ପ୍ରାୟ ଏହି ଗତ ୧୦/୧୨ ବର୍ଷ ମଧରେ ପ୍ରବେଶ କରିଛି, କେତେକଟି ଲେଖାରେ ମଧ ବେଶ୍ ଆସନ ଜମାଇ ସାରିଲାଣି । ଯାହାହେଉ, ବର୍ତ୍ତମାନ ଦେଖିବାର କଥା– ଏଗୁଡ଼ିକ ସ୍ୱାଭାବିକ କାରଣରୁ ଆମ ଭାଷାରେ ପଶିଛି କି ଅସ୍ୱାଭାବିକ କାରଣରୁ । ଆଗରୁ ଏଠାରେ କହି ରଖିବା ଆବଶ୍ୟକ, ଏହି ସକଳ ଦୃଷ୍ଟାନ୍ତର ପ୍ରାୟ ସମସ୍ତ ବର୍ତ୍ତମାନ ଉତ୍କଳର ଜୀବିତ ବିଭିନ୍ନ ପତ୍ରପତ୍ରିକାର ବିଶିଷ୍ଟ ଲେଖକମାନଙ୍କ ଲେଖାବଳିରୁ ସଂଗୃହୀତ ହୋଇଅଛି । ତତ୍ତତ୍ ପତ୍ରିକାର ସମ୍ପାଦକଗଣ ପ୍ରାୟ ସେ ସବୁଗୁଡ଼ିକୁ ବାଧହୋଇ ବା ଅବାଧ ହୋଇ ହେଉ ଅଥବା ନିରୁପାୟ ହୋଇ ହେଉ, ପ୍ରକାଶ କରିଛନ୍ତି ।

"ମୁଁ ଆସି ବସନ୍ତଭବନରେ ଉଠିଛି ।" ଏଠାରେ 'ଉଠିଛି' ପଦଟି 'ଆସି ପହଞ୍ଚିଛି' ଏହି ଅର୍ଥରେ ବ୍ୟବହୃତ ।

"କି–ଚୁପଚି କରିଠିଆ ହୋଇ ରହିଲୁ ଯେ ?" "ସେ ଧଡପଡ କରି ଆସନରୁ

ଉଠିପଡ଼ିଲେ ।” ଏହି ବାକ୍ୟ ଦିଓଟିରେ ‘ଚୁପ୍‌ଟି କରି’ ଓ ‘ଧଡ଼ପଡ଼ କରି’ କ୍ରିୟାଦ୍ୱାରା ‘ଚୁପ୍ ହୋଇ’ ଓ ‘ଧଡ଼ଧଡ଼୍ ହୋଇ’ ହେବା ଉଚିତ ଥିଲା ।

“ଏହା କହି ଅମଳା ଛିଡ଼ା ହୋଇ ଉଠିଲା ।” ଏ ଗୋଟିଏ ବିଚିତ୍ର ବାକ୍ୟ । ଠିଆହୋଇ କିପରି ଉଠିବାକୁ ହୁଏ, ତାହା ସ୍ୱୟଂ ଲେଖକଙ୍କୁ ମଧ ଜଣା ନ ଥିବ । ‘ଉଠି ଛିଡ଼ା ହେଲା’ ଏହାର ଅର୍ଥ ଅବଶ୍ୟ ହୋଇପାରେ; କିନ୍ତୁ ‘ଛିଡ଼ା ହୋଇ ଉଠିଲା’ର ଅର୍ଥ କ’ଣ ? ଏହା କେବଳ ‘ଦାଁଡ଼ିଏ ଉଠ୍‌ଲେନ୍’ର ଅନୁକରଣ !

“ସବୁଜ କବିତା.....ମୂଲ୍ୟ ମାତ୍ର ବାର ଅଣା” ଏଠାରେ ‘ମାତ୍ର ବାର ଅଣା’ ନ ହୋଇ ‘ବାରଅଣା ମାତ୍ର’ ହେବାହିଁ ସ୍ୱାଭାବିକ ।

“ବାପା ସେତେବେଳେ କଟକରେ ଚାକିରି କରନ୍ତି । “ଭାଇ ସଙ୍ଗେ ସଙ୍ଗେ ଭାଉଜଙ୍କୁ ବାପଘରକୁ ପଠାଇଦିଅନ୍ତି ।” ଏହି ଦୁଇଟି ବାକ୍ୟରେ କ୍ରିୟା ଅତୀତ କାଳର ହେଲେହେଁ ବର୍ତ୍ତମାନକାଳ ପରି ଜଣାପଡ଼େ । ‘ଚାକିରି କରନ୍ତି’ ଓ ‘ପଠାଇ ଦିଅନ୍ତି’ ସ୍ଥଳରେ ‘ଚାକିରି କରୁଥିଲେ’ ବା ‘ଚାକିରି କରୁଥାଆନ୍ତି’ ଓ ‘ପଠାଇଦେଲେ’ ହୋଇଥିଲେ ବାକ୍ୟଯୋଡ଼ିକ ପ୍ରକୃତ ଓଡ଼ିଆ ହୋଇଥାନ୍ତା ।

“କେତେଟା ପ୍ରକୃତିର ଝୁଙ୍କିରେ, କେତେଟା ଶ୍ୟାମବାବୁଙ୍କ ଉପରେ ରାଗ କରି... ଏଠାରେ ‘କେତେଟା’ ଓ ‘ଝୁଙ୍କି’ ଶବ୍ଦଦ୍ୱୟ ଆଦୌ ଓଡ଼ିଆ ନୁହେଁ ।

“...ସୈନ୍ୟଧରି ଶୀଘ୍ର ଯାତ୍ରା କଲେ ।” ‘ସୈନ୍ୟ ଧରି’ ନ ଲେଖି ‘ସୈନ୍ୟ ଘେନି’ ବା ‘ସୈନ୍ୟ ସହ’ ଲେଖିବାରେହିଁ ଓଡ଼ିଆ ଭାଷାର ପରିଚୟ ମିଳିବ ।

“ଖିଆଲୀ କବିର ଖିଆଲହିଁ କବିତାର ପ୍ରାଣ ।” ଏଥିର ‘ଖିଆଲୀ’ ଶବ୍ଦ ଓଡ଼ିଆ ବୋଲି ଗ୍ରହଣ କରିବା ନିତାନ୍ତ କଷ୍ଟସାଧ ନୁହେଁ କି ?

“କମଳା ଖଲଖଲ ହସି ପକାଇଲା, ସଖୀ ମଧ ଖିଲିଖିଲି ହସ ତା’ର ରୋଧି ପାରିଲା ନାହିଁ ।” ଏ ଦୁଇପ୍ରକାର ହସର ସ୍ୱରୂପ ଯେ କିପରି-ଧଳା କି ନାଲି-ଜାଣିବା ଆମ୍ଭମାନଙ୍କ ପକ୍ଷରେ ଦୁରୁହ ।

“ମୁଁ ତତେ ଏହା କରିବାକୁ ଦେବି ନାହିଁ ।” “ମା ମତେ ମୋଟେ ଗୋଡ଼ରେ ଚାଲିବାକୁ ଦିଅନ୍ତି ନାହିଁ ।” ଏହି ବାକ୍ୟଦ୍ୱୟରେ ‘କରିବାକୁ ଦେବି’ ସ୍ଥାନରେ ‘କରାଇଦେବି’ ଓ ‘ଚାଲିବାକୁ ଦିଅନ୍ତି’ ସ୍ଥାନରେ ‘ଚଳେଇ ଦିଅନ୍ତି’ ପ୍ରୟୋଗ କରିବାହିଁ ବିଶୁଦ୍ଧ ।

“ବଡ଼ଜୋର୍ ସେ ପାଞ୍ଚ ଟଙ୍କାରୁ ଅଧିକ ଦେଇ ପାରିବ ନାହିଁ ।” ଏଠାରେ ‘ବଡ଼ଜୋର’ ସ୍ଥଳରେ ‘ଖୁବ୍ ବେଶୀ ହେଲେ’ ପ୍ରୟୋଗ କରିବା ଉଚିତ ।

“ମନରେ ଗଭୀର ଛାପ ରଖି ଯିବାଭଳି କୌଣସି ବସ୍ତୁ.....ଉପନ୍ୟାସମାନଙ୍କରେ ସାଧାରଣତଃ ଦୃଷ୍ଟିଗୋଚର ହୁଏନାହିଁ ।”

“ଦରଦୀର ସକରଣ ଲଘୁସ୍ପର୍ଶ....”

“ପାଦ ଟିପିଟିପି ଯିବା ଛଡ଼ା ମୋର ସେତେବେଳେ ଅନ୍ୟ ଉପାୟ ନ ଥିଲା ।”

ଏହି ତିନୋଟି ଉଦାହରଣରେ 'ଛାପ' 'ଦରଦୀ' 'ଟିପିଟିପି' ଶବ୍ଦମାନ ବିଶୁଦ୍ଧ ବଙ୍ଗଳା । ଆଉ 'ସକରୁଣ' ଶବ୍ଦ ବ୍ୟାକରଣଗତ ଆଲୋଚନାରେ ପଡ଼ିବ । ଅବଶ୍ୟ ଟାଣିଓଟାରି 'କରୁଣାଯୁକ୍ତ' ଅର୍ଥ କରିବାକୁ ବାଧ୍ୟ କଲେ କଥଞ୍ଚିତ୍ ସମର୍ଥନ ପାଇଁ ଦୟା ଆସିପାରେ ।

"....ଏ ଦେଶରୁ ଓଢ଼ଣା ଉଠିବାର ଆଶା ପର୍ଯ୍ୟନ୍ତ ଦେଖାଯାଉ ନାହିଁ ।

"......ଏଇ ମଧୁପୁର ନଈରେ କେତେ ପାଣି ହୁଏ, ତା ପର୍ଯ୍ୟନ୍ତ କଥାଭାଷା ଚାଲିଲା ।" ଏହି ଦୁଇ ବାକ୍ୟରେ 'ଆଶାପର୍ଯ୍ୟନ୍ତ' ସ୍ଥାନରେ 'ଆଶା ସୁଦ୍ଧା' ଓ 'ତା ପର୍ଯ୍ୟନ୍ତ' ସ୍ଥାନରେ 'ତାହା ମଧ୍ୟ' ଲେଖିବା ଉଚିତ ।

"ମୁଁ ତୁମର ସାହାଯ୍ୟ ଆଦୌ ଚାହେଁ (ଚାହେ) ନା ।" ଏଠାରେ 'ଚାହେଁନା' ନିଶ୍ଚୟ ଅପପ୍ରୟୋଗ । 'ଖୋଜେନା', 'ଲୋଡ଼େ ନା' ବା 'ଆବଶ୍ୟକ କରେ ନା'ରୁ କୌଣସି ଶବ୍ଦଦ୍ୱାରା ଭାବ ପ୍ରକାଶ କରିବାରେ ମୌଳିକତା' ଅଛି ।

"ଅମଳା କ୍ରମେ ପନ୍ଦର ବର୍ଷରେ ଆସି ପଡ଼ିଲା ବେଳେ ପିତା ତା'ର ଶଯ୍ୟାଗତ ହେଲେ । ଏଠାରେ 'ଆସିପଡ଼ିଲା ବେଳେ" ପ୍ରୟୋଗ ଆଦୌ ଓଡ଼ିଆ ଭାଷାର ପ୍ରତୀକ ନୁହେଁ ।

ଏତଦ୍‌ଭିନ୍ନ ଆହୁରି କେତେ ଯେ ବିଭାଷୀୟ ଶବ୍ଦ ଦେଖାଇ ଦିଆଯାଇପାରେ ତାହାର ଇୟତ୍ତା ନାହିଁ । ପାଠକମାନେ ଆଧୁନିକ ଲେଖକଙ୍କର କୌଣସି ପୁସ୍ତକ ଥରେ ପାଠ କଲେ ଏହାର ସତ୍ୟତା ନିଜେ ନିଜେ ଉପଲବ୍ଧି କରି ପାରିବେ ଏବଂ ଆମ୍ଭମାନଙ୍କ ପ୍ରଦତ୍ତ ଏହି ତାଲିକାର କଳେବର ଆହୁରି ବଢ଼ାଇ ପାରିବେ । ପୁଣି ଆଉ ଗୁଡ଼ିଏ ଶବ୍ଦର ଦୃଷ୍ଟାନ୍ତ ଦେଖନ୍ତୁ –

| | | |
|---|---|---|
| ଆଲୋଚନା କରା | ବଡ଼ ବେଶୀ | ଚୁରମାର |
| ଅଜାଣିତ | କିରକମ | ଟୁକୁରା |
| ଜୋର୍‌ସୋର୍ | ଟେର ପାଇ | ପାପିୟା |
| ଏକ୍‌ବାରେ | ହୁଲସ୍ଥୁଲ | ଗଡ଼ିଉଠିଲା |
| ନିଥର | ଘୁମୁରି | ହୈଚୈ |
| ଭଲ ବାସିବା | କେତେକଟା / ପ୍ରତ୍ୟେକଟି (କଥା) | |
| ଅନେକଟା | | ଦିନେନା ଦିନେ |
| ଅତୁଟ (ସ୍ୱାସ୍ଥ୍ୟ) | ଶିହରିବା...କରି ତୋଳିଲା | |
| ସଜାଗ | ହେଉନା କାହିଁକି | ସୁରୁ କରିବା |
| ଘୁରିବା | ଜଡ଼ ସଡ଼ | ଅଜାଗ |
| ହୁଏ ତ | ପଳେ ପଳେ | ଟିଲେଟିଲେ |
| ପାଗଲ | ହୁଜୁଗ | ଯଦିଓ (ଇତ୍ୟାଦି) |

କୌଣସି ପୁସ୍ତକ ଦୋକାନରେ ବସି ଅଧଘଣ୍ଟାଏ ପରିଶ୍ରମ କଲେ ଏହିପରି ଅସଂଖ୍ୟ ଶବ୍ଦ

ଆଖି ଆଗରେ ପଡ଼ିବ, ଏକ ଶବ୍ଦର ବାରମ୍ବାର ପ୍ରୟୋଗ ଦେଖି ଦେଖି ଭୟଙ୍କର ବିରକ୍ତ ଲାଗିବ । ବଡ଼ ଦୁଃଖ ଓ ଆକ୍ଷେପର କଥା - ଏ ସମସ୍ତ ଦୃଷ୍ଟାନ୍ତର ପ୍ରାୟ ସବୁଗୁଡ଼ିକ ପ୍ରୟୋଗ ବଙ୍ଗଳା ଭାଷାରୁ ଆମଦାନୀ ହୋଇଅଛି । ଲେଖକମାନଙ୍କର ଏଭଳି ଅଭ୍ୟାସ ଆମ୍ଭମାନଙ୍କ ଭାଷାର ସ୍ୱାସ୍ଥ୍ୟର କି ଅସ୍ୱାସ୍ଥ୍ୟର ଲକ୍ଷଣ, ତାହା ସୁଧୀବୃନ୍ଦ ବିଚାର କରନ୍ତୁ ।

ଏସବୁ ଗଲା ବଙ୍ଗ ଭାଷାଗତ ଶବ୍ଦମାନଙ୍କ କଥା । ଏମାନଙ୍କ ଛଡ଼ା ଆଉ କେତେଗୁଡ଼ିଏ ଭିନ୍ନ ପ୍ରକୃତିର ଦୃଷ୍ଟାନ୍ତ ମଧ ଏଠାରେ ଦିଆଯିବ । ଏ ଗୁଡ଼ିକ ପ୍ରକୃତରେ ଆଲୋଚନାର ବିଷୟ ବୋଲି ମନେ ହୁଏ ।

ଆଜିକାଲି ଅଧିକାଂଶ ଲେଖକଙ୍କ ଲେଖାରେ 'କରିବାକୁ ଲାଗିଲେ' 'ଖାଇବାକୁ ଲାଗିଲେ' 'ପିଇବାକୁ ଲାଗିଲେ' 'ପଢ଼ିବାକୁ ଲାଗିଲେ' ବୋଲି ଲେଖିଥାଆନ୍ତି, ଏଗୁଡ଼ିକ ଏକାବେଳେ ଭୁଲବୋଲି କୁହାଯାଉ ନାହିଁ, ମାତ୍ର ଯେଉଁ ଅର୍ଥରେ ପ୍ରୟୋଗ କରାଯାଉଅଛି, ସେଠାରେ ତାହା ଭୁଲ । ଗୋଟିଏ ଉଦାହରଣ ଦ୍ୱାରା ଏହା ସ୍ଫୁଟ କରାଯାଉ ।

"ତା ପରେ ରାମ ଖାଇବାକୁ ଲାଗିଲେ ।"

ବା

"ତା ପରେ ରାମ ଖାଇବାରେ ଲାଗିଲେ !"

ଜଣେ ଲୋକ କୌଣସି କାର୍ଯ୍ୟ ସାରିବା ପରେ ଖାଇବାକୁ ଗଲାବେଳେ ଏହି ପ୍ରୟୋଗ କରାଯାଏ । ତେଣୁ "ତାପରେ ରାମ ଖାଇ ବସିଲେ ।" ଏପରି ଲେଖିବା ସଂଗତ । ...'ବାକୁ ଲାଗିଲେ' ଏଭଳି ପ୍ରୟୋଗ ବିଦ୍ୟାସାଗରଙ୍କ ସମୟରୁ 'ଏବଂ' 'ସୁତରାଂ' 'ବିଦ୍ରୂପ' ଶବ୍ଦପରି ଆମ ଭାଷାକୁ ଡେଇଁପଡ଼ିଚି । ବଙ୍ଗଳାର 'କରତେ ଲାଗ୍‌ଲେନ୍' 'ଖେତେ ଲାଗ୍‌ଲେନ୍' ପ୍ରଭୃତି ଏହି ଶ୍ରେଣୀୟ ପ୍ରୟୋଗ ଜନକ ।

ଟିକିଏ ଅଭିନିବେଶ ସହକାରେ ଚିନ୍ତା କଲେ ସ୍ପଷ୍ଟ ଜଣାଯିବ ଯେ, 'ଖାଇବାକୁ ଲାଗିଲେ', ବା 'ଲେଖିବାରେ ଲାଗିଲେ' ଯାହା ଲେଖନ୍ତୁ, ତହିଁରୁ 'ଖାଇବା' କାର୍ଯ୍ୟର କ୍ରମବ୍ୟାପକତା ସୁସ୍ପଷ୍ଟ ପ୍ରକାଶିତ ହେଉଅଛି । ମାତ୍ର ଯେଉଁଠାରେ ତାହା ପ୍ରୟୋଗ କରାଯାଇଥାଏ, ସେଠାରେ ସେଭଳି ବ୍ୟାପକ ଉଦ୍ଦେଶ୍ୟ ନିହିତ ଥାଏ କି ?

ଏହିଠାରେ ପ୍ରଶ୍ନ ଉଠି ପାରେ :-

କିନ୍ତୁ ଯେଉଁଠାରେ ଆମ୍ଭେମାନେ ସେହି ଅର୍ଥରେ ପ୍ରୟୋଗ କରିବୁଁ, ସେଠାରେ କଅଣ ଲେଖିବୁଁ - 'ଖାଇବାକୁ ଲାଗିଲେ' ନାଁ 'ଖାଇବାରେ ଲାଗିଲେ' ? ଏହାର ଉତ୍ତର ଏଡ଼େ ସହଜରେ ଏଠାରେ ଦେବା ଅବଶ୍ୟ ସମ୍ଭବପର ନୁହେଁ - ଏହା ଚିନ୍ତାଶୀଳ ଭାଷାବିଦ୍‌ମାନଙ୍କ ବିଚାରର ବିଷୟ । ତେବେ ଏଠାରେ ଆମ୍ଭମାନଙ୍କ ମତରେ ଏତିକି କହିଲେ ଯଥେଷ୍ଟ ହେବ ଯେ, '...ବାକୁ ଲାଗିଲେ' ପ୍ରୟୋଗ ବଙ୍ଗଳାର ଅନୁକରଣ ହେବାରୁ '...ବାରେ ଲାଗିଲେ' ଲେଖିଲେ ଆମ ଭାଷାର ବିଶେଷତ୍ୱ ଟିକିଏ ରହିପାରେ ।

ଏହି ପ୍ରୟୋଗର ଟିକିଏ ଭିନ୍ନ ରୂପର ଆଉ ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ । ଅଧିକାଂଶ ଲେଖନ୍ତି- "ସେ ଯିବାକୁ ଆରମ୍ଭ କଲେ ।" ଏହା ମଧ୍ୟ ସେହି ବଙ୍ଗଳାର ଅନୁକରଣ । ତେଣୁ ଏଭଳି ଆଦୌ ନ ଲେଖି "ସେ ଯିବା ଆରମ୍ଭ କଲେ" ଲେଖିବା ସ୍ପୃହଣୀୟ - ଏପରି ମଧ୍ୟ ଅଧିକାଂଶ ଶୁଦ୍ଧ ସାହିତ୍ୟିକ ଲେଖିଥାଆନ୍ତି ।

ପୁଣି ଆଉ କେତୋଟି ବିଭିନ୍ନ ଧରଣର ବାକ୍ୟ ଦେଖନ୍ତୁ । ଏଗୁଡ଼ିକ ଅନ୍ୟ ଭାଷାର ଅନୁକରଣ କି ନୁହେଁ, ତାହା ଏଠାରେ କହିବା ଆବଶ୍ୟକ ନାହିଁ - ପାଠକ ତଥା ସମାଲୋଚକମାନେ ତାହା ନିଜେ ନିଜେ ଆଲୋଚନା କରି ପ୍ରକୃତ ସତ୍ୟ ପ୍ରକାଶ କରନ୍ତୁ ।

"ହରିଆ କାନ୍ଦିବାର ଦେଖି ଦାସେ ନିଜେ କାନ୍ଦି ପକାଇଲେ ।"

"ସେ କେବେ ହସିବାର ମୁଁ ଦେଖିନାହିଁ ।"

"ମୁଁ କି ଆଉ କ୍ଷମା ମାଗିବାକୁ ବାଟ ଅଛି ?"

"ବାଳକଟି ଯାଉଛି ଦେଖି ମୁଁ ଏହା ପଚାରିଲି ।"

"ତା ହେଲେ ତ ଆମେ ବଡ଼ବଡ଼ିଏ ତାଙ୍କୁ ଶିଖେଇ ଭଲବାଟକୁ ଆଣିବା କଥା ।"

"ବଡ଼ ପୁଅ ବିଭା ହୋଇ ବୋହୂ ଘରକୁ ଆସିଥିଲା ।"

ଏ ସବୁ ପ୍ରୟୋଗ ବ୍ୟାକରଣ-ଦୋଷରେ ଦୁଷ୍ଟ । ବ୍ୟାକରଣଗତ ଦୋଷ କଥା ବାଗାନ୍ତରରେ ଆଲୋଚନା କରିବାର ବାସନା ଥିଲେ ମଧ୍ୟ ଓଡ଼ିଆ ଭାଷା ସମ୍ପର୍କରେ ଏତକ ଏଠାରେ ପ୍ରକାଶ ନ କରି ରହି ପାରୁନାହୁଁ । ଏଗୁଡ଼ିକର ଶିଷ୍ଟ ଶୁଦ୍ଧ ପ୍ରକାଶ ଏହିପରି ହେବ -

"ହରିଆକୁ କାନ୍ଦିବାର ଦେଖି ଦାସେ ନିଜେ କାନ୍ଦି ପକାଇଲେ ।"

"ତାକୁ କେବେ ହସିବାର ମୁଁ ଦେଖିନାହିଁ ।"

"ମୋର କି ଆଉ କ୍ଷମା ମାଗିବାକୁ ବାଟ ଅଛି ।"

"ବାଳକଟିକୁ ଯାଉଥିବାର ଦେଖି ମୁଁ ଏହା ପଚାରିଲି ।"

"ତାହେଲେ ତ ଆମେ ବଡ଼ବଡ଼ିଆଙ୍କର ତାଙ୍କୁ ଶିଖେଇ ଭଲ ବାଟକୁ ଆଣିବା(ର) କଥା ।"

"ବଡ଼ ପୁଅର ବିଭାଘର ହେବା ପରେ ବୋହୂ (ତାର) ଘରକୁ ଆସିଥିଲା ।

ପୁଣି ଆଉ ଏକପ୍ରକାର ପ୍ରୟୋଗ ଦେଖନ୍ତୁ-

"ଦେଖେ ବାବୁ, ଆଜିଠାରୁ ଗାଈ ବାଛୁରୀ ଉପରେ ନଜର ରଖେ । ...ଭାଇଙ୍କ ଗୋଡ଼ତଳେ ମୁଣ୍ଡିଆ ମାରେ - ଦୋଷ କ୍ଷମା ମାଗେ ।"

"ନାଇଁ ମାଉସୀ, ଏମିତି ରାଗେ ନା... ମୋ କଥା ଶୁଣେ ।"

ଏହି ବାକ୍ୟମାନ ଯଥାକ୍ରମେ ଏହିରୂପେ ପ୍ରକାଶିତ ହେବା ଉଚିତ -

"ଦେଖ୍ ବାବୁ ! ଆଜିଠାରୁ ଗାଈବାଛୁରୀଙ୍କ ଉପରେ ନଜର ରଖ୍ ...ଭାଇଙ୍କ ଗୋଡ଼ତଳେ ମୁଣ୍ଡିଆ ମାର୍ - ଦୋଷ କ୍ଷମା ମାଗ୍ ।"

"ନାହିଁ ମାଉସୀ ! ଏମିତି ରାଗ୍ ନା... ମୋ କଥା ଶୁଣ୍ ।"

ଆଉ କେତେକଙ୍କ ଲେଖାରେ ପୁଣି ଆଜିକାଲି ଦେଖାଦେଉଛି- "ଏକ ଦିନକର" "ଗୋଟିଏ ଟୋକେଇଟିରେ" ଓ ଏହି ଜାତୀୟ ଅନେକ ପ୍ରୟୋଗ । ଏ ସବୁକୁ କି କେବେ ହେଲେ ସମର୍ଥନ କରାଯାଇ ପାରେ ? 'ଦିନକର' ବା 'ଦିନେ' ଏବଂ 'ଗୋଟିଏ ଟୋକେଇରେ' ବା 'ଟୋକେଇଟିରେ' ତ ହେବାର କଥା - ଏ ସଂସ୍କାର (କୁସଂସ୍କାର), ଏ ନୂତନତା (ମୂର୍ଖତା) ପୁଣି କାହିଁକି ?

"ସେ ମହାଜନକୁ ହରିଆ ଛଡ଼ା ଆଉ କିଏ ହତ୍ୟା କରି ନାହାନ୍ତି ।"

"ଏ ସମସ୍ୟାର ସମାଧାନ କିଏକରି ପାରିବେ ନାହିଁ ।"

ଏହି ବାକ୍ୟ ଦୁଇଟି ମଧରେ ଥିବା 'କିଏ' ସ୍ଥାନରେ ଯଦି କେହି ପ୍ରୟୋଗ କରାଯିବ, ତାହା ହେଲେ ପ୍ରକୃତ ଅର୍ଥ ପ୍ରକାଶିତ ହେବ । ଏଭଳି 'କିଏ' ପ୍ରାଦେଶିକ ପ୍ରୟୋଗ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଏହା ବୋଲି ସମଗ୍ର ଉତ୍କଳଦେଶ ପାଇଁ ଉଦ୍ଦିଷ୍ଟ ପୁସ୍ତକ ବା ପତ୍ର ପତ୍ରିକାରେ ଯଦି ଏହି ପ୍ରୟୋଗ କରାଯାଏ, ତାହାହେଲେ ଏହାକୁ ସମର୍ଥନ କରିବାପାଇଁ ଆଦୌ ବାଟ ନାହିଁ । 'କିଏ' ପ୍ରୟୋଗ ଓଡ଼ିଆ ଭାଷାରେ ଏହାଠାରୁ ଟିକିଏ ଭିନ୍ନ ଅର୍ଥରେ ହୋଇଥାଏ; ଯଥା- "କିଏ ଜାଣିଥିଲା, ଏ ବଜ୍ର ପଡ଼ିବ ବିନା ମେଘରେ ?" (ଉଷା) । ଏ ସମ୍ବନ୍ଧରେ ଅଧିକ ଆଲୋଚନା ଅନାବଶ୍ୟକ ।

ଏହି କ୍ଷୁଦ୍ର ସନ୍ଦର୍ଭଟିରେ ଯେ କେତୋଟି କଥା ଆଲୋଚନା କରାଗଲା - ଆଲୋଚନା କହିଲେ ଠିକ୍ ହେବ ନାହିଁ ଆଲୋଚନାର ଆଭାସ କେବଳ, ତାହା ଆମ୍ଭମାନଙ୍କର ବ୍ୟକ୍ତିଗତ ମତ ମାତ୍ର । ଓଡ଼ିଶାର ଖ୍ୟାତନାମା ବିଶିଷ୍ଟ ଭାଷାବିତ୍ ପଣ୍ଡିତ ଓ ଭାଷା-ସଂସ୍କାରକମାନେ ନିରପେକ୍ଷ ଆଲୋଚନା କରି ଏ ସମସ୍ତ ବିଷୟର ସମାଧାନ କଲେ ଆମ୍ଭେମାନେ, ତଥା ଦେଶର ଲେଖକଲେଖିକା ଓ ପାଠକସାଧାରଣ ବିଶେଷ ଆଲୋକପ୍ରାପ୍ତ ହେବୁଁ । ଏ ଶ୍ରେଣୀର ଆଲୋଚନା ବ୍ୟତୀତ ବ୍ୟାକରଣ ଦୋଷଯୁକ୍ତ ଅନେକ ଶବ୍ଦ ମଧ୍ୟ ଆମ୍ଭମାନଙ୍କ ଭାଷାରେ ପ୍ରଚଳିତ ହେଉଅଛି । ସେଗୁଡ଼ିକର ସଂଖ୍ୟା ବରଂ ବଢୁଛି, କମୁନାହିଁ । ଆମ୍ଭମାନଙ୍କର ବିଶେଷ ଅନୁରୋଧ - ଯେଉଁ ପତ୍ରିକା ସମ୍ପାଦକମାନେ ଏ ସମ୍ବନ୍ଧରେ ଆଲୋଚନା କରୁଛନ୍ତି ବା କରିବେ, ସେମାନେ ଅଥବା କୌଣସି ବୃହତ୍ତର ଅନୁଷ୍ଠାନ କିମ୍ବା ସୁଦୃଢ଼ 'ଉତ୍କଳ-ସାହିତ୍ୟ-ସମାଜ' ଏହି ଶ୍ରେଣୀୟ ସନ୍ଦେହସମୂହ ଖଣ୍ଡନ କରି ପ୍ରକୃତ ସତ୍ୟ ଉଦ୍‌ଘାଟିତ କରନ୍ତୁ ।

ଆଧୁନିକ ଓଡ଼ିଆ ଭାଷାର ବିକାଶପଥ ବର୍ତ୍ତମାନ ଶୈଶବାବସ୍ଥାରେ ମାତ୍ର । ଏହି ପ୍ରୟୋଜନୀୟ କାଳରେ ଏ ସମସ୍ତ ଆଲୋଚନାର ଫଳୋପଧାୟକତା ଭାଷା ପକ୍ଷରେ ଅତ୍ୟନ୍ତ ଶୁଭପ୍ରଦ, ତା ନ ହେଲେ ପ୍ରାଦେଶିକ ପ୍ରଭାବନ୍ୱିତ ଭାଷାର ଉତ୍କଟ ଆକ୍ରମଣ ଯୋଗୁ ଆମ୍ଭମାନଙ୍କ ଓଡ଼ିଆ ଭାଷା ନିଃସ୍ୱ, ସର୍ବସ୍ୱାନ୍ତ ହୋଇପଡ଼ିବା ବିଚିତ୍ର ନୁହେଁ - ବରଂ ଖୁବ୍ ସ୍ୱାଭାବିକ । ଆଜି ମନେପଡୁଛି ବଙ୍ଗଳା "ଆର୍ଯ୍ୟଦର୍ଶନ" ପତ୍ରିକାର ସମ୍ପାଦକ ଯୋଗେନ୍ଦ୍ରନାଥ

ବନ୍ଦୋପାଧ୍ୟାୟ ବିଦ୍ୟାଭୂଷଣ ଏମ୍.ଏ. ତାଙ୍କର 'ସମ୍ପାଦକୀୟ' ସ୍ତମ୍ଭରେ କେତେବର୍ଷ ପୂର୍ବେ ପ୍ରକାଶ କରିଥିଲେ - "ଆସାମୀ ଓ ଓଡ଼ିଆ ଭାଷା ସହିତ ବଂଗଳା ଭାଷାର ଅନେକ ସାଦୃଶ୍ୟ । ଗଭର୍ଣ୍ଣମେଣ୍ଟର ବିପରୀତ ଚେଷ୍ଟା ସତ୍ତ୍ୱେ ଓ ଆସାମୀ କ୍ରମେ ବଂଗଳାର କୁକ୍ଷିଗତ ହେଉଛି । ଓଡ଼ିଆ ବି ଏତେ ଦିନେ କୁକ୍ଷିଗତ ହୋଇ ଯାଆନ୍ତାନି । କିନ୍ତୁ ବର୍ଣ୍ଣମାଳାର ଆକାରଗତ ବୈଷମ୍ୟ ନିବନ୍ଧନ ଯୋଗୁ କିଞ୍ଚିତ ବିଳମ୍ବ ହେଉଛି । ବଂଗଳାର ଅତି ସରଳ ଓ ସୁନ୍ଦର ବର୍ଣ୍ଣମାଳା ଦିନେ ନା ଦିନେ ନିଶ୍ଚୟ ଜଟିଳ ଓ କଦାକାର ଓଡ଼ିଆ ବର୍ଣ୍ଣମାଳାକୁ ପର୍ଯ୍ୟୁଦସ୍ତ କରିବ ।"

କେବଳ ଯୋଗେନ୍ଦ୍ରନାଥଙ୍କର କାହିଁକି, ସେତେବେଳେ ପ୍ରାୟ ଅଧିକାଂଶ ବଙ୍ଗଭ୍ରାତାଙ୍କର ଏହି ଆଶା ଥିଲା । ମାତ୍ର ସେ ବାହୁସ୍ଫୋଟର କାଳ ଆଉ ନାହିଁ । ଏପରି ମାରାତ୍ମକ ସ୍ୱାର୍ଥାନ୍ଧତାପୂର୍ଣ୍ଣ ବିଦ୍ୱେଷବାଣୀ ପ୍ରକାଶ କରିବାକୁ କୌଣସି ବଙ୍ଗୀୟ ବର୍ତ୍ତମାନ ଦୁଃସାହସ କରି ପାରିବେ ନାହିଁ । ତଥାପି ଯେତେବେଳେ ବିଭାଷୀୟମାନଙ୍କର ଏହିପରି ଉତ୍କଟ ମନୋବୃତ୍ତି, ଉତ୍କଳୀୟମାନେ ନିଜ ନିଜ ଯତ୍ନରେ ନିଜର ଆସନ ଅଧିକାର କରି ନ ବସିଲେ, ସମୟ ସେ ଆସନ ଆଣି ଯାଚି କରି ଦେବନାହିଁ । ଓଡ଼ିଆ ଭାଷାର ବିଶାଳ ଅତୀତ ଯେପରି ଅନନ୍ତ ପ୍ରତିଭାପୂର୍ଣ୍ଣ ଓ ବିରାଟ ବିଭୂତିଶାଳୀ, ଭାରତୀୟ ଅନ୍ୟ କୌଣସି ଭାଷାର ଅତୀତ ସେପରି ନ ଥିଲା ବୋଲି ଓଡ଼ିଆ ଆଜି ଦମ୍ଭର ସହିତ ପ୍ରଚାର କରିବାକୁ ପଶ୍ଚାତ୍‌ପଦ ନୁହେଁ । ତଥାପି ଏହା ବୋଲି ନିଷ୍ଫଳ ଆସ୍ଫାଳନ ଓ ଅଯଥା ବାଗାଡ଼ମ୍ବରର ପ୍ରୟୋଜନୀୟତା ଆଦୌ ଏ ଯୁଗରେ ନାହିଁ - କେବଳ ବିରାଟ କର୍ମଠତା ଓ ବଳିଷ୍ଠ ଏକନିଷ୍ଠତା ସାହିତ୍ୟକ୍ଷେତ୍ରରେ ବର୍ତ୍ତମାନ ଆବଶ୍ୟକ ।



୩୦

# ଓଡ଼ିଆ ଭାଷା

## ସୂର୍ଯ୍ୟନାରାୟଣ ଦାଶ

ଭାଷାର ଉତ୍ପତ୍ତି ସମ୍ବନ୍ଧରେ ନାନା ମୁନିଙ୍କର ନାନା ମତ ଦେଖାଯାଏ । ଭାଷାର ଉତ୍ପତ୍ତି ଠିକ୍ କରିବା ଗୋଟିଏ ସ୍ୱତନ୍ତ୍ର ବିଜ୍ଞାନରୂପେ ବର୍ତ୍ତମାନ ଜଗତରେ ଧରାଯାଏ । ଏହି ବିଷୟରେ ଚର୍ଚ୍ଚା କରିବାପାଇଁ ଅନେକ ବଡ଼ ବଡ଼ ପଣ୍ଡିତ ବହୁତ ସମୟ ଲଗେଇଛନ୍ତି । ବର୍ତ୍ତମାନ ସୁଦ୍ଧା ଅନୁସନ୍ଧାନ ଚାଲିଛି । ଆମ ଭାରତବର୍ଷରେ ମଧ୍ୟ କେତେକ ପଣ୍ଡିତ ଏହାର ଚର୍ଚ୍ଚା କରୁଛନ୍ତି ।

କେତେ ପଣ୍ଡିତ କହନ୍ତି, ପୂର୍ବେ ପୃଥିବୀରେ ଗୋଟିଏ ଭାଷା ଥିଲା ଏବଂ ପୃଥିବୀର ପ୍ରଥମ ଅଧିବାସୀମାନେ ଏହି ଭାଷା ବ୍ୟବହାର କରୁଥିଲେ । କାଳକ୍ରମେ ପ୍ରଥମ ଅଧିବାସୀମାନେ ପୃଥିବୀର ବିଭିନ୍ନ ସ୍ଥାନକୁ ଚାଲିଯାଇ ସେଠାରେ ବସତିସ୍ଥାପନ କଲେ ଏବଂ ସେଠାରୁ ସେମାନଙ୍କର ସ୍ୱତନ୍ତ୍ର ଭାଷା ଆରମ୍ଭ ହେଲା ।

ଆଉ କେତେ ପଣ୍ଡିତ କହନ୍ତି, ପୃଥିବୀରେ କେବଳ ଗୋଟିଏ ଭାଷା ନ ଥିଲା । ଏକ ସମୟରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଭାଷା ପ୍ରଚଳିତ ଥିଲା । ଅବଶ୍ୟ ପ୍ରଥମ ଅବସ୍ଥାରେ ଖୁବ୍ ଅଳ୍ପ ଭାଷା ଥିଲା; କିନ୍ତୁ କାଳକ୍ରମେ ସେଗୁଡ଼ିକର ଶାଖା ପ୍ରଶାଖା ବାହାରି ବହୁତ ଗୁଡ଼ିଏ ଭାଷାର ସୃଷ୍ଟି ହେଲା ।

ସେ ଯାହା ହେଉ, ଆମର ଓଡ଼ିଆ ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଯାହା ଜାଣିବାର କଥା, ସେହିତକ କେବଳ ଏଠାରେ ସଂକ୍ଷିପ୍ତ ଭାବରେ ଆଲୋଚନା କରାଯିବ ।

ବହୁ ପ୍ରାଚୀନକାଳରେ ଇରେନିୟନ୍ ଓ ଭାରତୀୟମାନେ ଏକ ସ୍ଥାନରେ ରହିଥିଲେ । କାଳକ୍ରମେ ସେମାନେ ବିଭକ୍ତ ହେଲେ । ସେହି ହେତୁ ଇଣ୍ଡୋ-ଇରେନିୟନ୍ ଦଳର ଦୁଇଗୋଟି କ୍ରମବିକାଶ ଦେଖାଯାଏ - ଗୋଟିଏ ଭାରତରେ, ଓ ଅନ୍ୟଟି ପାରସ୍ୟରେ । ପାରସ୍ୟରେ ଯେଉଁ ଇରାନୀଦଳ ରହିଲେ, ସେମାନଙ୍କ ଭିତରେ ମଧ୍ୟ ପରିବର୍ତ୍ତନ ଘଟିଛି । ସେଥିରେ ଦୁଇଟି ସ୍ୱତନ୍ତ୍ର ଦଳ ଦେଖାଯାନ୍ତି - ଆଧୁନିକ ଇରାନୀ ଓ ପୁରାତନ ଇରାନୀ । ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀର ଡେରିୟସ୍ଙ୍କ ଲିପିସବୁ ପୁରାତନ ଇରାନୀ ଅନ୍ତର୍ଭୁକ୍ତ । ସମ୍ଭବତଃ ଏହି ଲେଖାଗୁଡ଼ିକ ଇଣ୍ଡୋ-ଇଉରୋପୀୟନ୍ ଦଳର ପ୍ରାଚୀନତମ ଲେଖା । ଏଥିରେ ସମୟର

ଉଲ୍ଲେଖ ଅଛି । ଏହି ପ୍ରାଚୀନ ଇରାନୀ ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରୁ ପରିବର୍ତ୍ତିତ ହୋଇ ଆସି ଖ୍ରୀଷ୍ଟପର ୩ୟ ଶତାବ୍ଦୀରେ ପହ୍ଲଭିରୂପେ ଦେଖାଦେଲା । ଏହି ପହ୍ଲଭି ପୁରାତନ ଇରାନୀଠାରୁ କିଛି ସରଳ । ଆଧୁନିକ ପାରସ୍ୟ ଭାଷା, କହିବାକୁ ଗଲେ, ଖ୍ରୀଷ୍ଟୀୟ ୯ମ ଶତାବ୍ଦୀରେ ଆରମ୍ଭ ହୋଇଛି । ମାଜଡ଼ିଆନ୍ ମାନଙ୍କର ଆଭେସ୍ତା ଏହି ଆଷ୍ଟାନିକ ପାରସ୍ୟ ଭାଷାର ଲେଖା ।

ଇରେନୀୟନ୍‌ମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଯେଉଁମାନେ ଭାରତକୁ ଆସିଲେ, ସେମାନେ ନିଜର ସ୍ୱାତନ୍ତ୍ୟ ରକ୍ଷା କରିବା ପାଇଁ ବହୁତ ଚେଷ୍ଟା କରିଛନ୍ତି । ସେମାନେ ଭାରତକୁ ଆସିବା ପରେ ସମଗ୍ର ଦେଶଟିରେ ବ୍ୟାପିବାକୁ ଲାଗିଲେ ଏବଂ ନିଜର ସ୍ୱତନ୍ତ୍ର ଭାଷା ଗଠନ କଲେ । ବେଦ ହେଉଛି ଏମାନଙ୍କର ପ୍ରାଚୀନତମ ଲେଖା । କିନ୍ତୁ ଏହି ବେଦ କେବେ ଲିଖିତ ହୋଇଥିଲା, ତାହା ଠିକ୍‌ରୂପେ ନିର୍ଣ୍ଣୟ କରିବା ସହଜ ନୁହେଁ । ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ଅଶୋକଙ୍କର ଶିଳାଲିପି ହେଉଛି ଭାରତର ପ୍ରାଚୀନ ଲେଖା, ଯେଉଁଠାରେ କି ସମୟର ଉଲ୍ଲେଖ ଅଛି । ବେଦରେ ଯେଉଁ ଭାଷା ବ୍ୟବହୃତ ହୋଇଛି, ତାହା ବଡ଼ ଉନ୍ନତ ଧରଣର । ଗୋଟିଏ ଭାଷା ସ୍ପଷ୍ଟ ମାର୍ଜିତ ରୂପ ଧାରଣ କରିବାକୁ ହେଲେ ଅନେକ ବର୍ଷ ଲାଗେ । ବେଦରେ ବ୍ୟବହୃତ ହୋଇଥିବା ଭାଷାକୁ ମାର୍ଜିତ ହେବାପାଇଁ ଅନେକ ବର୍ଷ ଲାଗିଥିବ । ସେହି ହେତୁ ବେଦର ଭାଷାକୁ ମଧ୍ୟ ପ୍ରାଚୀନତମ ଭାଷା ବୋଲି କୁହାଯାଇପାରିବ ନାହିଁ । ବେଦ ପୂର୍ବରୁ ନିଶ୍ଚୟ କୌଣସି ଗୋଟିଏ ଭାଷା ଭାରତରେ ବ୍ୟବହୃତ ହେଉଥିଲା, ଯାହା କି କାଳକ୍ରମେ ମାର୍ଜିତ ରୂପ ଧାରଣ କରି ବେଦର ଭାଷାରେ ପରିଣତ ହେଲା ।

ଏହି ବେଦ-ପୂର୍ବ ଭାଷାର ପ୍ରଥମାବସ୍ଥାଟିକୁ ଧରିବା ବଡ଼ କଷ୍ଟକର ବ୍ୟାପାର । ବେଦରେ ଯେଉଁ ଭାଷା ବ୍ୟବହୃତ ହୋଇଛି, ସେଥିରେ ମଧ୍ୟ ଭାଷାର ଐକ୍ୟ ଦେଖାଯାଏ ନାହିଁ । ଅଶୋକ ଲିପିମାନଙ୍କର ଭାଷାର ମଧ୍ୟ ସେହି ଅବସ୍ଥା । ପ୍ରାକୃତ ଭାଷାମାନଙ୍କ ପ୍ରଥମାବସ୍ଥା ମଧ୍ୟ ସେହିପରି । ଏହି ହେତୁ ଭାରତୀୟ ଆର୍ଯ୍ୟମାନଙ୍କର ଭାଷା ପ୍ରଥମ ଅବସ୍ଥାରେ କ'ଣ ଥିଲା, ତାହା ଜାଣିବା ଆଦୌ ସହଜସାଧ୍ୟ ହୋଇପାରୁ ନାହିଁ ।

ଭାରତୀୟ ଭାଷାର ଇତିହାସକୁ ସାଧାରଣତଃ ତିନୋଟି ଅବସ୍ଥାରେ ପଣ୍ଡିତମାନେ ବିଭକ୍ତ କରିଥାନ୍ତି । ଏହି ତିନିଗୋଟି ବିଭାଗ ସମୟକୁ ଧରି ନିର୍ଣ୍ଣୟ କରାଯାଇ ନାହିଁ; କେବଳ ଭାଷାର ଅବସ୍ଥାକୁ ଧରି ନିର୍ଣ୍ଣୟ କରାଯାଇଛି । ତିନିଗୋଟି ଅବସ୍ଥା ଏହିପରି - ପ୍ରାଚୀନ ବା ପ୍ରାଥମିକ, ମଧ୍ୟ ଓ ଆଧୁନିକ । ସାଧାରଣତଃ ବେଦର ଲିଖିତ ଭାଷାଠାରୁ ଅଶୋକ ଶିଳାଲିପିର ଭାଷା ପର୍ଯ୍ୟନ୍ତ ପ୍ରାଥମିକ ଅବସ୍ଥା ବୋଲି ଧରାଯାଏ । ଅଶୋକ ଲିପିଠାରୁ ଅପଭ୍ରଂଶ ପର୍ଯ୍ୟନ୍ତ ମଧ୍ୟଯୁଗ ଓ ଅପଭ୍ରଂଶଠାରୁ ଆଧୁନିକ ଯୁଗ ବୋଲି ବିବେଚିତ ହୁଏ - ଅର୍ଥାତ୍ ବେଦଯୁଗଠାରୁ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଥମିକ ଯୁଗ, ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀଠାରୁ ଖ୍ରୀଷ୍ଟପର ୧୦୦୦ ବର୍ଷ ପର୍ଯ୍ୟନ୍ତ ମଧ୍ୟଯୁଗ ଓ ଖ୍ରୀଷ୍ଟପର ୧୦୦୦ବର୍ଷଠାରୁ ଆଧୁନିକ ଯୁଗ ।

ଇଣ୍ଡୋ-ଇଉରୋପୀୟନ୍ ଭାଷାମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକ ଜୀବିତ ଅଛନ୍ତି, ସେଗୁଡ଼ିକୁ ଆଲୋଚନା କଲେ ଜଣାଯାଏ ଯେ, ସୁବିଧାରେ ସେଗୁଡ଼ିକୁ ୮ଟି ବିଭାଗରେ ବିଭକ୍ତ କରାଯାଇପାରେ ।

(୧) ଇଣ୍ଡୋ-ଇରେନିୟନ ବା ଆର୍ଯ୍ୟ - ଆର୍ଯ୍ୟଭାଷାଗୁଡ଼ିକୁ ପୁଣି ୩ଟି ଭାଗରେ ବିଭକ୍ତ କରାଯାଇପାରେ ।

(କ) ଭାରତୀୟ-ଏଥିରେ ବୈଦିକ, ସଂସ୍କୃତ, ପ୍ରାଚୀନ, ପ୍ରାକୃତ, ପାଲ୍ଲୀ, ଅପଭ୍ରଂଶ, ହିନ୍ଦୀ, ବଙ୍ଗଳା, ଓଡ଼ିଆ ପ୍ରଭୃତି ପ୍ରାଦେଶିକ ଭାଷା, ସିଂହଳୀଭାଷା ପ୍ରଭୃତି ଯାଏ ।

(ଖ) ପିଶାଚ-କାଶ୍ମୀର ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଭାଷା ।

(ଗ) ଇରାନୀ-ଏଥିରେ ଆଭେସ୍ତି ଓ ପ୍ରାଚୀନ ପାରସ୍ୟ ଭାଷା ଯାଏ ।

(୨) ଆରମେନିକ୍

(୩) ବାଲ୍‌ଟିକ-ସ୍ଲେଭିକ୍

(୪) ଆଲବେନିୟନ୍

(୫) ହେଲେନିକ୍

(୬) ଇଟାଲିକ୍

(୭) ସେଲଟିକ୍

(୮) ଜର୍ମାନୀକ୍

ଭାରତୀୟ ଆର୍ଯ୍ୟ ଭାଷାକୁ ପୁଣି ଦୁଇ ଭାଗରେ ବିଭକ୍ତ କରାଯାଏ- (କ) କଥିତ ଓ (ଖ) ଲିଖିତ । କଥିତ ଭାଷାର ଉତ୍ପତ୍ତି କେବେ, ତା'ର ଠିକ୍ ନିର୍ଦ୍ଧାରଣ ହୋଇ ନ ଥିଲେ ମଧ ଖ୍ରୀ.ପୂ. ୧୨୦୦ ଠାରୁ ଖ୍ରୀ.ପୂ. ୭୦୦ ଭିତରେ ହୋଇ ପାରିଥାଏ ବୋଲି ଅନୁମାନ କରାଯାଏ । ଏହି କଥିତ ଭାଷା ଗାନ୍ଧାର, ପଞ୍ଜାବ, ଗାଙ୍ଗେୟ ଉପତ୍ୟକାର ଉତ୍ତରାଞ୍ଚଳରେ ବ୍ୟବହୃତ ହେଉଥିଲା । କଥିତ ଭାଷାରୁ-

(କ) ଉଦୀଚ୍ୟ (ଗାନ୍ଧାର, ପଞ୍ଜାବ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ଭାଷା)

(ଖ) ପ୍ରତୀଚ୍ୟ (ଗୁଜରାଟ ଓ ଦକ୍ଷିଣ-ପଶ୍ଚିମ ଅଞ୍ଚଳର ଭାଷା-)

(ଗ) ମଧ୍ୟଦେଶୀୟ

(ଘ) ପ୍ରାଚ୍ୟକୋଶଳ

(ଙ) ଦାକ୍ଷିଣାତ୍ୟ (ରାଷ୍ଟ୍ରିକ, ମହାରାଷ୍ଟ୍ର ଇତ୍ୟାଦି ଭାଷା)

ଲିଖିତ ଭାଷା ପ୍ରଥମେ ବୈଦିକ, ପରେ ସଂସ୍କୃତ, ତା ପରେ ଗାଥା (ସଂସ୍କୃତ ଓ ପ୍ରାକୃତ ମିଶ୍ରିତ) ରୂପେ ପରିଣତ ହେଲା ।

ଓଡ଼ିଆ ଭାଷା ପ୍ରାଚ୍ୟକୋଶଳ ବିଭାଗର ଗୋଟିଏ ଅଂଶ । ପ୍ରାଚ୍ୟକୋଶଳ ଭାଷାକୁ ପ୍ରଥମେ ତିନିଭାଗ କରାଯାଇପାରେ-ମାଗଧୀ, ଅର୍ଦ୍ଧମାଗଧୀ ଓ ପୂର୍ବ ଅଶୋକୀୟ ମୌର୍ଯ୍ୟ ।

ଏହି ଭାଷାଗୁଡ଼ିକର ବିଭାଗ ନିମ୍ନଲିଖିତମତେ ଦେଖାଇ ଦିଆଯାଇପାରେ ।




ଭୋଜପୁରୀ, ମାଗହୀ, ମାଗଧୀ ବର୍ତ୍ତମାନ ବିହାର ଓ ଯୁକ୍ତପ୍ରଦେଶର କେତେକ ଅଞ୍ଚଳରେ ବ୍ୟବହୃତ ହେଉଛି । ସେଥିପାଇଁ କେତେ ପଣ୍ଡିତ ଏହି ଗୋଷ୍ଠୀକୁ ବିହାରୀ ଗୋଷ୍ଠୀ ବୋଲି କହିଥାନ୍ତି । ମାଗଧୀ ଅପଭ୍ରଂଶର ଆଉ ଗୋଟିଏ ଅଂଶ ଦୁଇ ଭାଗରେ ବିଭକ୍ତ- ଗୋଟିଏ ଭାଗ ଓଡ଼ିଆ ଏବଂ ଅନ୍ୟ ଭାଗଟି ବଙ୍ଗଳା ଓ ଆସାମୀ ।

ମୋଟରେ କହିବାକୁ ଗଲେ, ଆର୍ଯ୍ୟ ଭାଷାରୁ ଭାରତୀୟ ଆର୍ଯ୍ୟ, ସେଥିର କଥିତ ବିଭାଗରୁ ପ୍ରାଚ୍ୟ କୋଶଳ, ପ୍ରାଚ୍ୟ କୋଶଳରୁ ମାଗଧୀ, ସେଥିରୁ ମାଗଧୀ ଅପଭ୍ରଂଶ ଓ ମାଗଧୀ ଅପଭ୍ରଂଶରୁ ଓଡ଼ିଆ ଭାଷା, ଏପରି ଉତ୍ପତ୍ତି ଲାଭ କରିଛି ।

ଭାରତକୁ ଆର୍ଯ୍ୟମାନେ ଖ୍ରୀଷ୍ଟପୂର୍ବ ୧୫୦୦ରେ ଆସିଥିଲେ ବୋଲି କେତେ ପଣ୍ଡିତଙ୍କର ମତ । ଏହି ସମୟକୁ ବେଦର ରଚନା ଆରମ୍ଭ ହୋଇଥିଲା । ଏହି ଆର୍ଯ୍ୟମାନେ କେଉଁଠାରୁ ଆସିଥିଲେ, ସେ ବିଷୟ ଆଜି ପର୍ଯ୍ୟନ୍ତ ଠିକ୍ ନିରୂପିତ ହୋଇପାରି ନାହିଁ । ଭିନ୍ନ ଭିନ୍ନ ପଣ୍ଡିତମାନେ ଭିନ୍ନ ଭିନ୍ନ ସ୍ଥାନ ନିରୂପଣ କରୁଅଛନ୍ତି । ପଞ୍ଜାବ, କାଶ୍ମୀର, ମଧ୍ୟ ଏସିଆ, ଦକ୍ଷିଣ ରୁଷିଆ, ପୋଲାଣ୍ଡ, ଲିଥୁନିଆ, ହଙ୍ଗେରୀ, ଉତ୍ତର ଜର୍ମାନୀ, ସ୍କେଣ୍ଡିନେଭିଆ ପ୍ରଭୃତି ସ୍ଥାନରୁ କେହି ଗୋଟିଏ ଆଦି ସ୍ଥାନ ହୋଇପାରେ । ବର୍ତ୍ତମାନ କେତେକ ପଣ୍ଡିତ ମତ

ଦେଉଅଛନ୍ତି ଯେ, ପଞ୍ଜାବ, କାଶ୍ମୀର, ବେଲୁଚିସ୍ଥାନ ପ୍ରଭୃତି ଅଞ୍ଚଳ ଏହି ଆଦିମ ଆର୍ଯ୍ୟମାନଙ୍କ ବାସସ୍ଥାନ ଥିଲା । ଆଫ୍‌ଗାନୀସ୍ଥାନ ଆଡୁ ଆର୍ଯ୍ୟମାନେ ପ୍ରଥମେ ଭାରତରୁ ଆସିଥିଲେ ବୋଲି ଗୋଟିଏ ମତ ରହିଛି । ପ୍ରଥମେ ଆର୍ଯ୍ୟମାନେ ପଞ୍ଜାବ ଓ କାଶ୍ମୀର ଅଞ୍ଚଳରେ ପ୍ରବେଶ କରି କାଳକ୍ରମେ ସମଗ୍ର ଭାରତବର୍ଷରେ ବ୍ୟାପିବାକୁ ଲାଗିଲେ । ଯେଉଁମାନେ ଭାରତବର୍ଷକୁ ଆସିଲେ, ସେମାନଙ୍କର ଯେ ଏକ ଭାଷା ଥିଲା, ତାହା ମନେହୁଏ ନାହିଁ । ବିଭିନ୍ନ ଜାତିର ଲୋକ ଦଳବଦ୍ଧ ହୋଇ ଏ ଦେଶକୁ ଆସିଥିଲେ । ସେମାନେ କାହିଁକି ଆସିଲେ, ତାହା ଠିକ୍‌ରୂପେ କେହି କହିପାରିବେ ନାହିଁ । ତେବେ ଅନୁମାନ କରାଯାଏ ଯେ, ରହିବାପାଇଁ ନୂତନ ପ୍ରଶସ୍ତ ସ୍ଥାନ ଅନ୍ୱେଷଣ ଏହାର ଗୋଟିଏ କାରଣ ହୋଇପାରେ । ଯେଉଁ ଦେଶରେ ପ୍ରଥମେ ସେମାନେ ବାସ କରୁଥିଲେ, ସେ ସ୍ଥାନ ଅପ୍ରଶସ୍ତ ହେବାରୁ ନୂତନ ପ୍ରଶସ୍ତ ସ୍ଥାନ ଅନ୍ୱେଷଣରେ ସେମାନେ ଭାରତବର୍ଷକୁ ଆସିଥିଲେ । ଯେଉଁ ଆର୍ଯ୍ୟମାନେ ପ୍ରଥମେ ଭାରତବର୍ଷରେ ପଦାର୍ପଣ କଲେ, ସେମାନେ ହେଉଛନ୍ତି ହିନ୍ଦୁସଭ୍ୟତାର ଆଦିପୁରୁଷ ।

ଏହି ଆଦିମ ଆର୍ଯ୍ୟମାନେ ସେତେବେଳେ ବାସ କରୁଥିବା ଦେଶୀୟ ଲୋକମାନଙ୍କର ସଂସ୍ପର୍ଶରେ ଆସି ନିଜର ସଭ୍ୟତା, ଚାଲିଚଳଣ, ଭାଷା, ଆଚାର ବ୍ୟବହାର ସବୁ ନୂତନରୂପେ ଗଠନ କଲେ । ଆର୍ଯ୍ୟମାନେ ଆସିବା ପୂର୍ବରୁ ଦ୍ରାବିଡ଼ମାନେ ଏ ଦେଶରେ ନିବାସ କରୁଥିଲେ । ଏହି ଦ୍ରାବିଡ଼ମାନଙ୍କର ସଂସର୍ଗରେ ଆସି ଆର୍ଯ୍ୟମାନେ ଯେଉଁ ସଭ୍ୟତା ଗଠନ କଲେ, ତାକୁହିଁ ବର୍ତ୍ତମାନ ଆମ୍ଭେମାନେ ହିନ୍ଦୁ ସଭ୍ୟତା ବୋଲି କହୁଁ । ଏହି ହିନ୍ଦୁ ସଭ୍ୟତା କାଳକ୍ରମେ ସମଗ୍ର ଭାରତବର୍ଷକୁ ବ୍ୟାପି ଅନେକଗୁଡ଼ିଏ "ଉପସଭ୍ୟତା" ଗଢ଼ିଛି । ଏହି ଉପସଭ୍ୟତାମାନଙ୍କର ଆଲୋଚନା ଦ୍ୱାରା ପ୍ରାଦେଶିକ ଭାଷାମାନଙ୍କର ଉତ୍ପତ୍ତି ଓ କ୍ରମବିକାଶ ବହୁ ପରିମାଣରେ ଜଣାଯାଏ । ଭାରତୀୟ ଭାଷାମାନଙ୍କର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ସେମାନଙ୍କ ଭିତରୁ 'ମାଗଧୀ'କୁ ସାଧାରଣତଃ 'ବ୍ରାତ୍ୟ' ବା 'ଜାତିଚ୍ୟୁତ' ପତିତ ବୋଲି କୁହାଯାଉଥିଲା । ଏହି ମାଗଧୀରେ ଅନେକ ପ୍ରକାର ମିଶ୍ରିତ ଭାଷା ଦେଖାଯାଉଥିଲା । ଏହି ଭାଷାଗୁଡ଼ିକ ବୁଦ୍ଧଦେବଙ୍କ ଆବିର୍ଭାବ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ପୂର୍ବରୁ ଇଣ୍ଡୋ-ଇଉରୋପିୟନ ଢଙ୍ଗରୁ ବହୁତ ପରିବର୍ତ୍ତିତ ହୋଇଯାଇଥିଲା ଏବଂ ସ୍ୱତନ୍ତ୍ର ଢଙ୍ଗ ମଧ୍ୟ ସେମାନଙ୍କର ହୋଇଯାଇଥିଲା । ଲୋକେ ବୈଦିକ ଭାଷା ଓ ଅନ୍ୟ ନୂତନ ଭାଷା ମଧ୍ୟ ବ୍ୟବହାର କରୁଥିଲେ । ପ୍ରାକୃତ ଭାଷା ଖୁବ୍ ପ୍ରବଳ ଥିଲା । ପଣ୍ଡିତମାନେ ପ୍ରାକୃତ ଭାଷାର ପ୍ରସାରକୁ ଭଲପାଉ ନ ଥିଲେ । ଭାଷାର ପବିତ୍ରତା ରକ୍ଷା କରିବା ପାଇଁ ଇଚ୍ଛାକରି ପାଣିନି ବ୍ୟାକରଣ ସୂତ୍ର ରଚନା କଲେ । ସଂସ୍କୃତ ଭାଷା ଖ୍ରୀ.ପୂ. ୬୦୦ରୁ ୭୦୦ବର୍ଷ ସରିକି ରୂପ ଧାରଣ କରିସାରିଥିଲା । ଖ୍ରୀ.ପୂ. ୫୦୦ ବର୍ଷରେ ପାଣିନି ବ୍ୟାକରଣ ଲେଖି ତାକୁ ସୁଶୃଙ୍ଖଳ କଲେ ମାତ୍ର ।

ପାଣିନିଙ୍କ ସଂସ୍କୃତ ଭାଷା କେବଳ ସଂସ୍କୃତ ଭାଷାରୂପେ ସାଧାରଣତଃ ପରିଚିତ । ବ୍ରାହ୍ମଣମାନେ ଓ ସମାଜର ଉଚ୍ଚସ୍ତରର ଲୋକମାନେ ସଂସ୍କୃତକୁ ବ୍ୟବହାର କରିବାକୁ

ଲାଗିଲେ । କାବ୍ୟ ନାଟକ ପ୍ରଭୃତି ଏହି ସଂସ୍କୃତରେ ଲିଖିତ ହେବାକୁ ଲାଗିଲା । କିନ୍ତୁ ସମାଜର ସାଧାରଣ ସ୍ତରର ଲୋକମାନେ ସଂସ୍କୃତକୁ ବ୍ୟବହାର କରି ଚଳିପାରିଲେ ନାହିଁ । ସଂସ୍କୃତ ଶିକ୍ଷା କରିବା ଉଚିତ ବୋଲି ବିବେଚନା କଲେ ସୁଦ୍ଧା ସେ ପଣ୍ଡିତ ଭାଷା ହୋଇ ରହିଲା । ଲୋକେ ପ୍ରାକୃତ ବ୍ୟବହାର କଲେ । ଏହି ପ୍ରାକୃତ ଭାଷା ବୌଦ୍ଧ ଓ ଜୈନ ଯୁଗରେ ଖୁବ୍ ପ୍ରସାର ଲାଭ କଲା । ଲୋକେ ଯେଉଁ ଭାଷା ଖୁବ୍ ଭଲ ଭାବରେ ବୁଝିପାରିବେ, ସେହିପରି ଭାଷା ବ୍ୟବହାର କରିବା ପାଇଁ ବୌଦ୍ଧ ଓ ଜୈନ ପ୍ରଚାରକ ଓ ଲେଖକମାନେ ପସନ୍ଦ କଲେ । ସେହି ହେତୁ ପ୍ରାକୃତରେ ବହୁତ ଗାଥା ଲେଖା ହେଲା । ବୁଦ୍ଧଦେବ ତାଙ୍କ ଧର୍ମ ପ୍ରଚାର ପାଇଁ ମାଗଧୀ ଓ ଅର୍ଦ୍ଧମାଗଧୀ ଭାଷା ବ୍ୟବହାର କରିଥିଲେ । "ପ୍ରାଚ୍ୟ" ପ୍ରାକୃତରୁ ଏହି ଦୁଇ ଭାଷାର ଉତ୍ପତ୍ତି ।

ବୁଦ୍ଧଦେବଙ୍କ ପରେ ପ୍ରଚାରକମାନେ ଏହି ମାଗଧୀ ଓ ଅର୍ଦ୍ଧମାଗଧୀଠାରୁ ଭିନ୍ନ ଅନ୍ୟ ଏକ ଭାଷା ବ୍ୟବହାର କରିବାକୁ ଲାଗିଲେ । ଏହି ଭାଷା "ପ୍ରତୀଚ୍ୟ" ଭାଷାରୁ ଉତ୍ପନ୍ନ । ଏହାର ନାମ ପାଲୀ । ପାଲୀର ଅର୍ଥ ଗ୍ରନ୍ଥ । ଏହି ପାଲୀ ମଧ୍ୟ ମାଗଧୀ ଭାଷାରୂପେ ପରିଚିତ ହେବାକୁ ଲାଗିଲା । କାରଣ ବୁଦ୍ଧଦେବଙ୍କ ବାଣୀସବୁ ଏଥିରେ ଲିପିବଦ୍ଧ ହୋଇ ରହିଲା ଏବଂ ଏହି ମଗଧରେ ବୁଦ୍ଧଦେବ ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । କେତେକଙ୍କ ମତରେ ପ୍ରଥମେ ସିଂହଳବାସୀ ବୌଦ୍ଧମାନେ ଏହି ଭାଷାକୁ ମାଗଧୀ ବୋଲି କହୁଥିଲେ । ଖ୍ରୀ.ପୂ. ୨୦୦ଠାରୁ ଖ୍ରୀଷ୍ଟପର ୨୦୦ବର୍ଷ, ଏହି ୪୦୦ବର୍ଷ ଭିତରେ ପାଲୀ ଭାଷା ଗ୍ରନ୍ଥଭାଷା ରୂପେ ବ୍ୟବହୃତ ହୋଇଥିବାର ଜଣାଯାଏ । ମାଗଧୀ ଭାଷା ପରେ ମାଗଧୀ ଅପଭ୍ରଂଶ ଦେଖାଦେଇଛି । ମାଗଧୀ ଅପଭ୍ରଂଶକୁ ଶିକ୍ଷିତ ସମାଜ ତେତେ ପସନ୍ଦ କରୁ ନ ଥିଲେ । ସଂସ୍କୃତ ନାଟକରେ ବ୍ୟବହୃତ ପ୍ରାକୃତ ଭାଷାର ସମୟଠାରୁ ଆଧୁନିକ ପ୍ରାଦେଶିକ ଭାଷାମାନଙ୍କ ସମୟ ପର୍ଯ୍ୟନ୍ତ ଏହି ଭାଷାର ଉତ୍ପତ୍ତି ଓ ବିକାଶ କାଳ ବୋଲି ଧରାଯାଇପାରେ । ବଙ୍ଗଳା, ଓଡ଼ିଆ, ଆସାମୀ, ମାଗହୀ, ମୈଥିଳୀ ଓ ଭୋଜପୁରୀ ଏହି ଭାଷାରୁ ରୂପାନ୍ତରିତ । ବଙ୍ଗ, ଆସାମ ଓ ଓଡ଼ିଶାକୁ ପ୍ରଥମେ ଯେଉଁ ପ୍ରାକୃତ ଓ ଅପଭ୍ରଂଶ ଭାଷା ଆସିଲା, ତାହା ଅଙ୍ଗ ଓ ମିଥିଳାରୁ ଆସିଥିବା ସମ୍ଭବପର ।

ମାଗଧୀ ଭାଷାଗୁଡ଼ିକୁ ସାଧାରଣତଃ ତିନିଭାଗରେ ବିଭକ୍ତ କରାଯାଇପାରେ । (୧) ପୂର୍ବ ମାଗଧୀ-ବଙ୍ଗଳା, ଓଡ଼ିଆ, ଆସାମୀ (୨) ମଧ୍ୟ ମାଗଧୀ-ମୈଥିଳୀ, ମାଗହୀ (୩) ପଶ୍ଚିମ ମାଗଧୀ-ଭୋଜପୁରୀ ପ୍ରଭୃତି ।



୩୧

# ଓଡ଼ିଆ ବର୍ଣ୍ଣମାଳା ଓ ତାହାର ଉଚ୍ଚାରଣ ବିଧି

## କୃଷ୍ଣ ବିହାରୀ ତ୍ରିପାଠୀ

ଓଡ଼ିଆ ବର୍ଣ୍ଣମାଳା ଅର୍ଥାତ୍, ଅ, ଆ, କ, ଖ ପ୍ରଭୃତି ବର୍ଣ୍ଣ ବିଷୟରେ ଆଲୋଚନା କରିବା ପୂର୍ବରୁ ଶବ୍ଦର ସୃଷ୍ଟି ଓ ମନୁଷ୍ୟର କଥା କହିବା ଅବୟବ ବା ବାଗ୍‌ଯନ୍ତ୍ର ସମ୍ବନ୍ଧରେ କେତେକ କଥା ଜାଣିବା ଆବଶ୍ୟକ । ବାୟୁ ଜୋରରେ ଆହତ ହେଲେ ବା ସଙ୍କୀର୍ଣ୍ଣ ପଥ ଦେଇ ଜୋରରେ ପ୍ରବାହିତ ହେଲେ ଶବ୍ଦ ଜାତ ହୁଏ । ମନୁଷ୍ୟ ଶରୀରରେ ସର୍ବଦା ବାୟୁର ନିର୍ଗମନ ଏବଂ ଉଦ୍‌ଗମନ କ୍ରିୟା ଚାଲୁଅଛି । ସାଧାରଣତଃ ନାସିକାରନ୍ଧ୍ର ସାହାଯ୍ୟରେ କଣ୍ଠବିବର ଓ ଶ୍ୱାସନଳୀଦ୍ୱାରା ମନୁଷ୍ୟ ଫୁସ୍‌ଫୁସ୍‌କୁ ବାୟୁ ନିଏ ଏବଂ ଫୁସ୍‌ଫୁସ୍‌ରୁ ଠିକ୍ ସେହି ବାଟଦେଇ ନାସିକାରନ୍ଧ୍ରରେ ବାୟୁ ତ୍ୟାଗକରେ । ଏହି ପ୍ରକ୍ରିୟାକୁ ନିଃଶ୍ୱାସ ପ୍ରଶ୍ୱାସ କୁହାଯାଏ । ଶ୍ୱାସନଳୀର ଅଗ୍ରଭାଗ ଆଡ଼କୁ ଗୋଟିଏ ସ୍ଥାନରେ ଶ୍ୱାସନଳୀର ଗୋଟିଏ ଦୁଆର ଥାଏ । ଏଠାରେ ଶ୍ୱାସନଳୀର ଉଭୟପାର୍ଶ୍ୱରୁ ଦୁଇଟି ସୂକ୍ଷ୍ମ ପ୍ରସାରଣଶୀଳ ତନ୍ତ୍ରୀ ବା ପରଦା ସଂଲଗ୍ନ ହୋଇ ରହିଥାଏ । କଣ୍ଠର ବାହାରଭାଗର ଯେଉଁ ଅଂଶଟି ଉଚ୍ଚ ହୋଇଥାଏ ସେହି ଅଂଶର ଭିତରେ ଥିବା ଶ୍ୱାସନଳୀରେ ଏହି ଦ୍ୱାରଟି ରହିଥାଏ । ଶ୍ୱାସନଳୀର ଏହି ପରଦା ଦୁଇଟି ଉଭୟ ପାର୍ଶ୍ୱକୁ ସଙ୍କୁଚିତ ହୋଇଯାଇପାରେ କିମ୍ବା ଉଭୟ ପାର୍ଶ୍ୱରୁ ପରସ୍ପର ଆଡ଼କୁ ପ୍ରସାରିତ ହୋଇଥାଏ, ତେତେବେଳେ ବାୟୁର ଉଦ୍‌ଗମନପଥ ସଂକୀର୍ଣ୍ଣ ହୋଇଥାଏ । ଶ୍ୱାସନଳୀର ବାୟୁ ଏହି ସଂକୀର୍ଣ୍ଣ ପଥ ଦେଇ ବେଗରେ ବହିର୍ଗତ ହେଲାବେଳେ ଉକ୍ତ ପରଦାଦ୍ୱୟର ପ୍ରାନ୍ତଭାଗ ବାରମ୍ବାର କମ୍ପିତ ହୁଏ । ଏହି କମ୍ପନ ଫଳରେ ଯେଉଁ ଧ୍ୱନି ଜାତ ହୁଏ ତାକୁ ଧ୍ୱନୀ-ବିଜ୍ଞାନଶାସ୍ତ୍ରରେ 'ଘୋଷ' କୁହାଯାଏ ଏବଂ ଉକ୍ତ ପରଦା ବା ତନ୍ତ୍ରୀ ଦୁଇଟିକୁ ସ୍ୱରତନ୍ତ୍ରୀ କୁହାଯାଏ ଏବଂ ଶ୍ୱାସନଳୀରେ ସ୍ୱରତନ୍ତ୍ରୀଥିବା ସ୍ଥାନକୁ ଘୋଷ-ପିଟକ କୁହାଯାଏ । ଏହି ସ୍ୱରତନ୍ତ୍ରୀ ଦୁଇଟିକୁ ରଙ୍ଗମଞ୍ଚରେ ଝୁଲୁଥିବା ଦୁଇଟି ପରଦା ସହିତ ତୁଳନା କରାଯାଇପାରେ । ଯେପରି ପରଦାଦୁଇଟି ପରସ୍ପର ଆଡ଼କୁ ଓ ସଂଲଗ୍ନ ହୋଇ ରଙ୍ଗମଞ୍ଚର ଦୃଶ୍ୟକୁ ଆବୃତ କରିଦିଅନ୍ତି ଏବଂ ସଙ୍କୁଚିତ ହୋଇ ଅର୍ଥାତ୍ ବିପରୀତ ଦିଗକୁ ଅପସୃତ ହୋଇ ରଙ୍ଗମଞ୍ଚର

ଦୃଶ୍ୟକୁ ଖୋଲିଦିଅନ୍ତି ସେହିପରି ସ୍ୱରତନ୍ତ୍ରୀ ପ୍ରସାରିତ ହୋଇ ଶ୍ୱାସନଳୀକୁ (ପ୍ରାୟ) ରୁଦ୍ଧ କରିଦିଅନ୍ତି ଓ ସଙ୍କୁଚିତ ହୋଇ ଏହାକୁ ଖୋଲିଦିଅନ୍ତି । ସାଧାରଣତଃ ନିଃଶ୍ୱାସ ପ୍ରଶ୍ୱାସ ସମୟରେ ଏହି ଦୁଆରଟି ଖୋଲାଥାଏ ଏବଂ ଭାରୀ ବୋଝ ଉଠାଇବା ସମୟରେ ଏହା ବନ୍ଦ ରହିଥାଏ । ଅ, ଆ, ପ୍ରଭୃତି ସ୍ୱରଧ୍ୱନିଗୁଡ଼ିକ ଉଚ୍ଚାରଣ କଲାବେଳେ, ଏହି ଦ୍ୱାରଟି ସଂକୀର୍ଣ୍ଣ ହୋଇ ଭିତରରୁ ଆସୁଥିବା ବାୟୁପ୍ରବାହ ଦ୍ୱାରା ସ୍ୱରତନ୍ତ୍ରୀର ପ୍ରାନ୍ତଭାଗ କମ୍ପିତ ହେଉଥିବାରୁ ସବୁ ସ୍ୱରବର୍ଣ୍ଣଗୁଡ଼ିକୁ ସଘୋଷ କୁହାଯାଏ । ସେହିପରି ବର୍ଗର ତୃତୀୟ, ଚତୁର୍ଥ ବର୍ଣ୍ଣଗୁଡ଼ିକର (ଗ୍ ଘ୍ ପ୍ରଭୃତି)ର ଉଚ୍ଚାରଣରେ ଦ୍ୱାରଟି ସଂକୀର୍ଣ୍ଣ ହୋଇ ସ୍ୱରତନ୍ତ୍ରୀର ପ୍ରାନ୍ତଭାଗ କମ୍ପିତ ହେଉଥିବାରୁ ସେଗୁଡ଼ିକୁ ସଘୋଷ ବ୍ୟଞ୍ଜନବର୍ଣ୍ଣ କୁହାଯାଏ । ବର୍ଗର ପ୍ରଥମ ଦ୍ୱିତୀୟ ବର୍ଣ୍ଣଗୁଡ଼ିକର (କ୍, ଖ୍ ପ୍ରଭୃତି)ର ଉଚ୍ଚାରଣ ସମୟରେ ଦ୍ୱାରଟି ଖୋଲା ରହୁଥିବାରୁ ଏଗୁଡ଼ିକୁ ଅଘୋଷ କୁହାଯାଏ ।

ସ୍ୱରଯନ୍ତ୍ରର କିଛିଦୂର ଉପରେ ଏହାର ଢାଙ୍କୁଣୀ ରହିଥାଏ । ତାହାକୁ 'ଅଭିକାକଳ' ବା ସ୍ୱରଯନ୍ତ୍ରାବରଣ (Epiglottis) କୁହାଯାଏ । ଭୋଜନବେଳେ ବା ପିଇବା ବେଳେ ଏହା ତଳକୁ ଆସି ଶ୍ୱାସନଳୀକୁ ବନ୍ଦ କରେ । ତା'ର ଉର୍ଦ୍ଧ୍ୱରେ ଯେଉଁ ସ୍ଥାନ ଅଛି ତାହାକୁ ଗୋଟିଏ ଛକ (crossing) ବୋଲାଯାଇପାରେ । ଏହାର ନାମ 'ଗଳବିଳ' । ଏହା ଗୋଟିଏ ଖୋଲାସ୍ଥାନ ଯେଉଁଠାରୁ କି ଚାରୋଟି ପଥ ଚାରି ଦିଗକୁ ପଡ଼ିଅଛି ଯଥା- ପୂର୍ବରେ କୁହାଯାଇଥିବା ଶ୍ୱାସନଳୀ, ଖାଦ୍ୟନଳୀ, ମୁଖ ବିବର, ନାସିକା ବିବର । ଏହି ଖାଲି ସ୍ଥାନର ଉପରେ ଜିଭ ପରି ମାଂସର ଗୋଟିଏ ଛୋଟ ଭାଗ ଥାଏ । ଏହାକୁ କୌଆ ବା ଅଳିଜିଭ (ଘଟିକା) କୁହାଯାଏ । ଏହାଦ୍ୱାରା ନାସିକା ବିବରକୁ ଯିବାବାଟ ବନ୍ଦ କରାଯାଇପାରେ । ସ୍ୱର ଯନ୍ତ୍ରରୁ ସ୍ୱରତନ୍ତ୍ରୀ କମ୍ପନ ସହିତ ବହିର୍ଗତ ବାୟୁ ଏହି ଛକ ଦେଇ ଯଦି ନାସିକା ବା ନାସିକା ଓ ମୁଖ ଉଭୟ ପଥରେ ବହିର୍ଗତ ହୁଏ ତାହାହେଲେ ଆମ୍ଭେ ନାସିକ୍ୟ ବା ଅନୁନାସକ ସ୍ୱରଧ୍ୱନିର ଉଚ୍ଚାରଣ ପାଉଁ । ଯଥା- ଅଁ, ଇଁ, ଉଁ ପ୍ରଭୃତି ।

ମୁଖ ବିବରର ଉପରଭାଗ ହେଉଛି, ତାଳୁ । ଏହା କଣ୍ଠସ୍ଥାନରୁ ଦାନ୍ତ ପର୍ଯ୍ୟନ୍ତ ବିସ୍ତୃତ । ଏହାକୁ ଚାରିଭାଗରେ ବିଭକ୍ତ କରାଯାଇଥାଏ । ଯଥା- କୋମଳ ତାଳୁ, ମୂର୍ଦ୍ଧା, କଠିନ ତାଳୁ, ଦାନ୍ତର ମାଢ଼ି; କୋମଳ ତାଳୁ ଓ କଠିନ ତାଳୁ ଏ ଦୁଇ ଅଂଶର ସୀମା ମୂର୍ଦ୍ଧା ବୋଲି ପ୍ରାଚୀନ ଧ୍ୱନିବିତ୍‌ମାନଙ୍କର ମତ । ଏହି ଚାରିଅଂଶକୁ ଜିହ୍ୱା ସ୍ପର୍ଶ କରି ଶ୍ୱାସନଳୀରୁ ଆସୁଥିବା ବାୟୁକୁ କ୍ଷଣମାତ୍ର ରୋଧକରି ଛାଡ଼ିବା ଫଳରେ ମୁଖରେ ବିଭିନ୍ନ ବ୍ୟଞ୍ଜନଧ୍ୱନି ଉଚ୍ଚାରିତ ହୋଇଥାଏ ।

ମୁଖବିବରର ତଳଭାଗରେ ଜିହ୍ୱା ଥାଏ । ବାଗ୍‌ଯନ୍ତ୍ର ମଧ୍ୟରେ ଜିହ୍ୱା ସବୁଠାରୁ ପ୍ରଧାନ ଅଂଶ ଗ୍ରହଣ କରିଥାଏ । ସାଧାରଣ ଅବସ୍ଥାରେ ଜିଭ ଢିଲା ହୋଇ ମୁଖବିବରର ତଳଭାଗରେ

ଥାଏ । କଥା କହିବା ସମୟରେ ଏହା ମୁଖବିବରରେ ବିଭିନ୍ନ ପ୍ରକାରରେ ସଞ୍ଚାଳିତ ହୁଏ । ଜିହ୍ୱାକୁ ସାଧାରଣତଃ ଚାରିଭାଗରେ ବିଭକ୍ତ କରାଯାଏ । ଯଥା- (୧) ଜିହ୍ୱାର ଅଗ୍ରବିନ୍ଦୁ, (୨) ଜିହ୍ୱାର ଫଳକ ବା ଅଗ୍ରଭାଗ, (୩ ମଧ୍ୟଭାଗ, (୪) ପଶ୍ଚାଦ୍‌ଭାଗ । ଜିଭ, ଦାନ୍ତ ତଥା ତାଳୁର ବିଭିନ୍ନ ଭାଗକୁ ଛୁଇଁ ବାୟୁର ବେଗକୁ କ୍ଷଣମାତ୍ର ରୁଦ୍ଧ କରିବାଦ୍ୱାରା ବା ତାଳୁର ନିକଟବର୍ତ୍ତୀ ହୋଇ ବାୟୁର ଉଦ୍‌ଗମନ ପଥକୁ ସଂକୀର୍ଣ୍ଣ କରିବାଦ୍ୱାରା ବିଭିନ୍ନ ବ୍ୟଞ୍ଜନବର୍ଣ୍ଣ ବା ୟ, ର୍ ପ୍ରଭୃତି ଅନ୍ତଃସ୍ଥବର୍ଣ୍ଣ ଉଚ୍ଚାରିତ ହୁଏ । ମୁଖବିବରରେ ତାଳୁ ତଥା ଜିହ୍ୱାକୁ ଛାଡ଼ିଦେଲେ ଆଉ ଗୋଟିଏ ପ୍ରଧାନ ଭାଗ ଦେଉଛି ଦାନ୍ତ, ଯାହାକି କଥା କହିବାବେଳେ ଆମକୁ ସାହାଯ୍ୟ କରିଥାଏ । ଏହାକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯଥା- ଦାନ୍ତର ମୂଳଭାଗ ଓ ଅଗ୍ରଭାଗ । ତାହାପରେ ବାଗ୍‌ଯନ୍ତ୍ରର ସର୍ବାପେକ୍ଷା ବହିରଙ୍ଗ ଅଂଶ ହେଉଛି ଓଷ୍ଠଦ୍ୱୟ । ଏହା ପରସ୍ପର ମିଳିତ ହୋଇ ବା ଦାନ୍ତର ସାହାଯ୍ୟ ନେଇ କେତେକ ଧ୍ୱନି ଉତ୍ପାଦିତ କରିପାରନ୍ତି ।

ବର୍ତ୍ତମାନ ଆମେ ଜାଣିଲେ ଯେ, ଶ୍ୱାସନଳୀରୁ ସ୍ୱରତନ୍ତ୍ରୀର କମ୍ପନ ସହିତ ବହିର୍ଗତ (ଉତ୍‌ଥିତ) ବାୟୁ ନିର୍ବାଧରେ ଗଳବିବର ଓ ମୁଖବିବର ମଧ୍ୟଦେଇ ବହିର୍ଗତ ହେଲେ ଯେଉଁ ଧ୍ୱନି ଜାତ ହୁଏ ତାକୁ ସ୍ୱରବର୍ଣ୍ଣ କୁହାଯାଏ । ବ୍ୟଞ୍ଜନ ହେଉଛି ସେହି ଧ୍ୱନି ଯାହାର ଉଚ୍ଚାରଣରେ ବାୟୁ ଅବାଧରେ ମୁଖରୁ ବାହାରେ ନାହିଁ । ଅନ୍ୟ କଥାରେ କହିବାକୁ ବ୍ୟଞ୍ଜନ ଧ୍ୱନିର ଉଚ୍ଚାରଣରେ ଶ୍ୱାସନଳୀରୁ ଆସୁଥିବା ମୁଖବିବରସ୍ଥ ବାୟୁ ଜିହ୍ୱାଦ୍ୱାରା ପୂର୍ଣ୍ଣତଃ ବା ଆଂଶିକ ଭାବରେ ଅବରୁଦ୍ଧ ହୋଇ, ହଠାତ୍ ଅବରୋଧରୁ ମୁକ୍ତ ହୋଇ ବାହାରକୁ ଗତିକରେ । ସାଧାରଣତଃ ଜିହ୍ୱାଦ୍ୱାରା ମୁଖବିବର ମଧ୍ୟରେ ଏହି ଅବରୋଧ କାର୍ଯ୍ୟ ହୁଏ କିମ୍ବା ଓଷ୍ଠଦ୍ୱୟଦ୍ୱାରା ଏହି ଅବରୋଧ କାର୍ଯ୍ୟ ହୁଏ ।

ଓଡ଼ିଆ ଭାଷାରେ ଅ, ଆ, କ, ଖ ପ୍ରଭୃତି ବର୍ଣ୍ଣମାଳାକୁ ଦୁଇ ଭାଗରେ ବିଭକ୍ତ କରାଯାଏ । (୧) ସ୍ୱରବର୍ଣ୍ଣ, (୨) ବ୍ୟଞ୍ଜନବର୍ଣ୍ଣ । ଓଡ଼ିଆ ଭାଷାରେ ସ୍ୱରବର୍ଣ୍ଣଗୁଡ଼ିକ ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ । ସଂସ୍କୃତ ଭାଷାରେ ଏଗୁଡ଼ିକ ବ୍ୟତୀତ ଋ, ୠ, ଌ ସ୍ୱରବର୍ଣ୍ଣ ଥିଲା । ଏହା ଓଡ଼ିଆ ଭାଷାରେ ଠିକ୍ ଉଚ୍ଚାରିତ ହୁଏ ନାହିଁ । ସଂସ୍କୃତର ଋ, ୠ, ଌକୁ ଉଚ୍ଚାରଣ କଲାବେଳେ ଓଡ଼ିଆଭାଷୀ ଲୋକ 'ର'ରେ 'ଉ' ଯୁକ୍ତକରି ଓ 'ଲ'ରେ 'ଉ' ଯୁକ୍ତକରି ଉଚ୍ଚାରଣ କରିଥାନ୍ତି । ସ୍ୱରବର୍ଣ୍ଣ ଦ୍ୱିପ୍ରକାର, ହ୍ରସ୍ୱ ଓ ଦୀର୍ଘ । ହ୍ରସ୍ୱସ୍ୱରରେ ଗୋଟିଏ ମାତ୍ରା, ଦୀର୍ଘରେ ଦୁଇଟା ମାତ୍ରା । ଓଡ଼ିଆରେ 'ଅ'କୁ ହ୍ରସ୍ୱ ଓ ତା'ର ଅନୁରୂପ ଦୀର୍ଘସ୍ୱରକୁ 'ଆ' ବୋଲି ଧରାଯାଇଥାଏ । କିନ୍ତୁ ଏହା ଠିକ୍ ନୁହେଁ । 'ଅ'ର ଅନୁରୂପ ଦୀର୍ଘସ୍ୱର 'ଆ' ନୁହେଁ । ସଂସ୍କୃତର 'ନଦୀ' 'ବଧୂ' ପ୍ରଭୃତି ଦୀର୍ଘସ୍ୱରାନ୍ତଗୁଡ଼ିକୁ ଓଡ଼ିଆଭାଷୀ ଲୋକ ସାଧାରଣତଃ ହ୍ରସ୍ୱସ୍ୱରାନ୍ତ ଭାବରେ ଉଚ୍ଚାରଣ କରିଥାଏ । ଓଡ଼ିଆରେ, ଏ, ଓ

ସାଧାରଣତଃ ହ୍ରସ୍ୱସ୍ୱର ଭାବରେ ଉଚ୍ଚାରିତ ହୁଏ । ତୁଳନୀୟ-ଏକ, ଏଣ୍ଡୁଅ । ଓଡ଼ିଆରେ ଐ ଔ ହେଉଛନ୍ତି ସନ୍ଧ୍ୟକ୍ଷର । ଅ, ଇ ମିଶି ଐକାର ହୋଇଥାଏ ।

## ଓଡ଼ିଆ ବ୍ୟଞ୍ଜନ ବର୍ଣ୍ଣମାଳାର ଉଚ୍ଚାରଣ ସ୍ଥାନ ଓ ଉଚ୍ଚାରଣ ପ୍ରକାର

| | ଓଷ୍ଠ୍ୟ | ଦନ୍ତ୍ୟ | ବର୍ତ୍ସ୍ୟ | ମୂର୍ଦ୍ଧଣ୍ୟ | ତାଲବ୍ୟ | କଣ୍ଠ୍ୟ | କାକଲ୍ୟ |
|---|---|---|---|---|---|---|---|
| ସ୍ପର୍ଶ | ପଫବଭ | ତଥଦଧ | | ଟଠଡଢ | | କଖଗଘ | |
| ନାସିକ୍ୟ | ମ | | ନ | ଣ | | ଙ | |
| ପାର୍ଶ୍ୱିକ | | | ଲ | ଳ | | | |
| ଲୋଡ଼ିତ | | | | ର | | | |
| ଉତ୍କ୍ଷିପ୍ତ | | | | ଡ଼ଢ଼ | | | |
| ସଂଘର୍ଷୀ | | ସ | | | | | ହ |
| ସ୍ପର୍ଶ-ସଂଘର୍ଷୀ | | | | | ଚଛଜଝ | | |
| ଅର୍ଦ୍ଧସ୍ୱର | ବ | | | | ୟ | | |

ଅ, ଉ ମିଶି ଔ ହୋଇଥାଏ । ଅର୍ଥାତ୍ 'ଅ' 'ଇ'ର ଦ୍ରୁତ ଉଚ୍ଚାରଣରେ 'ଐ' ଏବଂ 'ଅ' 'ଉ'ର ଦ୍ରୁତ ଉଚ୍ଚାରଣରେ ଔ ହୋଇଥାଏ । ଐ, ଔ ବ୍ୟତୀତ କଥିତ ଓଡ଼ିଆରେ ଆଇ, ଆଉ, ଇଆ, ଇଏ, ଉଆ, ଉଇ, ଓଉ ପ୍ରଭୃତିର ଦ୍ରୁତ ଉଚ୍ଚାରଣରେ ଅଳ୍ପ କେତୋଟି ସନ୍ଧ୍ୟକ୍ଷର (diphthong) ର ବ୍ୟବହାର ଅଛି । କିନ୍ତୁ ସେଗୁଡ଼ିକର ସ୍ୱତନ୍ତ୍ର ଲିପି ନାହିଁ ।

କ ଠାରୁ ମ ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣକୁ ଓଡ଼ିଆରେ ବ୍ୟଞ୍ଜନବର୍ଣ୍ଣ କୁହାଯାଏ । ଏହାକୁ ଓଡ଼ିଆରେ ୫ଟି ବର୍ଗରେ ବିଭକ୍ତ କରାଯାଇ ପାରେ ।

| | | | | | |
|---|---|---|---|---|---|
| କ ବର୍ଗ | କ୍ | ଖ୍ | ଗ୍ | ଘ୍ | ଙ୍ |
| ଚ ବର୍ଗ | ଚ୍ | ଛ୍ | ଜ୍ | ଝ୍ | ଞ୍ |
| ଟ ବର୍ଗ | ଟ୍ | ଠ୍ | ଡ୍ | ଢ୍ | ଣ୍ |
| ତ ବର୍ଗ | ତ୍ | ଥ୍ | ଦ୍ | ଧ୍ | ନ୍ |
| ପ ବର୍ଗ | ପ୍ | ଫ୍ | ବ୍ | ଭ୍ | ମ୍ |

କ ବର୍ଗ ଉଚ୍ଚାରଣ କରିବାବେଳେ ମୁଖବିବରରେ ଜିହ୍ୱାର ପଶ୍ଚାଦ୍‌ଭାଗ ଅପସୃତ ହୋଇ କୋମଳ ତାଲୁକୁ କ୍ଷଣମାତ୍ର ସ୍ପର୍ଶ କରିବାଦ୍ୱାରା ଶ୍ୱାସନଳୀରୁ ନିର୍ଗତ ବାୟୁ ଅବରୁଦ୍ଧ ହୋଇ ମୁକ୍ତହୁଏ । ଏଗୁଡ଼ିକ କଣ୍ଠ୍ୟବର୍ଣ୍ଣ କୁହାଯାଏ ।

ଚ ବର୍ଗର ଧ୍ୱନିଗୁଡ଼ିକୁ ଉଚ୍ଚାରଣ କରିବାବେଳେ ଜିହ୍ୱାର ଅଗ୍ରଭାଗ କଠୋର ତାଳୁକୁ ସ୍ପର୍ଶ କରି, ଶ୍ୱାସନଳୀରୁ ବହିର୍ଗତ ବାୟୁକୁ ମୁଖବିବରରେ କ୍ଷଣମାତ୍ର ବାଧା ଦେଇ ଛାଡ଼ିଦିଏ । ତେଣୁ ସାଧାରଣତଃ ଏହାକୁ ତାଲବ୍ୟବର୍ଣ୍ଣ କୁହାଯାଏ ।

ଟ ବର୍ଗ ଅର୍ଥାତ୍ ଟ୍, ଠ୍, ଡ୍, ଢ୍, ଣ୍ ବର୍ଣ୍ଣର ଉଚ୍ଚାରଣରେ ଜିହ୍ୱା କଠିନତାଳୁ ଓ କୋମଳତାଲୁ ସୀମାକୁ ବା ପ୍ରାଚୀନ ବୈୟାକରଣଙ୍କ ଭାଷାରେ ମୂର୍ଦ୍ଧାକୁ ସ୍ପର୍ଶ କରିବାରୁ ଏହାକୁ ମୂର୍ଦ୍ଧନ୍ୟବର୍ଣ୍ଣ କୁହାଯାଏ ।

'ତ' ବର୍ଗ ଅର୍ଥାତ୍ ତ୍, ଥ୍, ଦ୍, ଦ୍, ଧ୍, ନ୍ - ଏହି ବ୍ୟଞ୍ଜନଗୁଡ଼ିକୁ ଓଡ଼ିଆଭାଷୀ ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ର ଅଂଶ ଦାନ୍ତମାଢ଼ିକୁ ସ୍ପର୍ଶ କରିଥାଏ । ତେଣୁ ଏହାକୁ ସାଧାରଣତଃ ଦନ୍ତ୍ୟବର୍ଣ୍ଣ କୁହାଯାଉଥିଲେ ସୁଦ୍ଧା ଏଗୁଡ଼ିକୁ ଦନ୍ତମୂଳୀୟ ବର୍ଣ୍ଣ କୁହାଯିବା ଉଚିତ ।

'ପ' ବର୍ଗ ଅର୍ଥାତ୍ ପ୍, ଫ୍, ବ୍, ଭ୍, ମ୍ କୁ ଉଚ୍ଚାରଣ କରିବାବେଳେ ଶ୍ୱାସନଳୀରୁ ବହିର୍ଗତ ବାୟୁ ଓଷ୍ଠଦ୍ୱାରା କ୍ଷଣମାତ୍ର ଅବରୁଦ୍ଧ ହୋଇ ଉନ୍ମୁକ୍ତ ହୁଏ । ତେଣୁ ଏଗୁଡ଼ିକୁ ଓଷ୍ଠ୍ୟବର୍ଣ୍ଣ କୁହାଯାଏ । ଙ୍, ନ୍, ଞ୍, ଣ୍, ମ୍ - ଏହି ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରଣ କରିବାବେଳେ ଜିହ୍ୱା ବିଭିନ୍ନ ସ୍ଥାନ ସ୍ପର୍ଶ କରିବା ବ୍ୟତୀତ ଶ୍ୱାସନଳୀରୁ ବହିର୍ଗତ ବାୟୁ ଆଂଶିକ ଭାବରେ ନାସିକା ମଧ୍ୟଦେଇ ବାହାରି ଯାଉଥିବାରୁ ଏହାକୁ ଅନୁନାସିକ ବର୍ଣ୍ଣ କୁହାଯାଏ । ଏକକ ଞ୍ ଧ୍ୱନି ଓଡ଼ିଆରେ ନାହିଁ । ଅନୁନାସିକ ବର୍ଣ୍ଣ ଉଚ୍ଚାରଣବେଳେ କୋମଳ ତାଲୁ ତଳକୁ ଓହଳି ରହେ ।

ବର୍ଗର ୧ମ ଦୁଇଟି ବର୍ଣ୍ଣକୁ ଅଳ୍ପ ପ୍ରାଣ ଓ ୨ୟ, ୪ର୍ଥ ବର୍ଣ୍ଣକୁ ମହାପ୍ରାଣ କହନ୍ତି । ଅଳ୍ପପ୍ରାଣ ଉଚ୍ଚାରଣ ଅପେକ୍ଷା ମହାପ୍ରାଣ ବର୍ଣ୍ଣ ଉଚ୍ଚାରଣରେ ମୁହଁବାଟେ ଅଧିକ ପବନ ଯାଏ ।

ସ୍ୱର ଏବଂ ବ୍ୟଞ୍ଜନବର୍ଣ୍ଣ ବ୍ୟତୀତ ଓଡ଼ିଆରେ ୟ୍, ର୍, ଲ୍, ୱ୍, ସ୍, ହ୍ ଉଚ୍ଚାରିତ ହୁଏ, ଏଗୁଡ଼ିକ ଅନ୍ତସ୍ଥ ବର୍ଣ୍ଣ । ଏକଦ୍‌ବ୍ୟତୀତ 'ଳ'ର ଉଚ୍ଚାରଣ ମଧ୍ୟ ଓଡ଼ିଆ ଭାଷାର ଗୋଟିଏ ବୈଶିଷ୍ଟ୍ୟ । ୟ, ର, ଲ ପ୍ରଭୃତିକୁ ଅନ୍ତଃସ୍ଥ ବର୍ଣ୍ଣ କହିବାର ତାତ୍ପର୍ଯ୍ୟ ହେଉଛି, ବ୍ୟଞ୍ଜନବର୍ଣ୍ଣ ଓ ସ୍ୱରବର୍ଣ୍ଣର ମଧ୍ୟବର୍ତ୍ତୀ ଏଗୁଡ଼ିକର ସ୍ଥାନ । ସ୍ୱରବର୍ଣ୍ଣ ଉଚ୍ଚାରଣରେ ବାୟୁ କୌଣସିଠାରେ ବାଧାପ୍ରାପ୍ତ ହୁଏନାହିଁ ବା ଅବରୁଦ୍ଧ ହୁଏନାହିଁ । ବ୍ୟଞ୍ଜନ ଉଚ୍ଚାରଣରେ ବାୟୁ ସ୍ପଷ୍ଟ ଭାବରେ ଅବରୁଦ୍ଧ ହୁଏ । କିନ୍ତୁ ଅନ୍ତଃସ୍ଥ ବର୍ଣ୍ଣ ଉଚ୍ଚାରଣରେ ବାୟୁର ପଥ ସଂକୀର୍ଣ୍ଣ ହୋଇଯାଏ ବା ମୁଖବିବରରେ ବାୟୁର ପଥ ଅଳ୍ପ ଅବରୁଦ୍ଧ ହୁଏ । ତେଣୁ ଏହାକୁ ସ୍ୱର ଓ ବ୍ୟଞ୍ଜନର ମଧ୍ୟବର୍ତ୍ତୀ ବର୍ଣ୍ଣ କହିବା ଭୁଲ ହେବ ନାହିଁ ।

ଅନ୍ତଃସ୍ଥ 'ୟ' ଉଚ୍ଚାରଣ କଲାବେଳେ ଜିହ୍ୱାର ସମ୍ମୁଖଭାଗ କଠୋର ତାଳୁର ଅତି

ସମୀପବର୍ତ୍ତୀ ହୁଏ । ସ୍ୱରତନ୍ତ୍ରୀଦ୍ୱୟ କମ୍ପିତ ହୁଏ । ତେଣୁ ଏହାକୁ ତାଲବ୍ୟ ଅର୍ଦ୍ଧସ୍ୱର (Semi-vowel) କୁହାଯାଇପାରେ । 'ର' ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ରଭାଗ ମୂର୍ଦ୍ଧାଆଡ଼କୁ ଗତିକରି ଓ ମୂର୍ଦ୍ଧାକୁ ସାମାନ୍ୟ ସ୍ପର୍ଶକରି କମ୍ପିତ ହେଉଥିବାରୁ ବା ହଲୁଥିବାରୁ ଏହାକୁ ମୂର୍ଦ୍ଧନ୍ୟ ଅନ୍ତଃସ୍ଥ ବର୍ଣ୍ଣ କୁହାଯାଇଥାଏ କିମ୍ବା କମ୍ପିତ 'ର' (Thrilled'r) କୁହାଯାଇଥାଏ ।

'ଲ' ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ରବିନ୍ଦୁ ତାଳୁର ଅଗ୍ରଭାଗ ବା ଦାନ୍ତର ମାଢ଼ୀକୁ ସ୍ପର୍ଶ କରିଥିବାରୁ ଏବଂ ଜିହ୍ୱାର ଉଭୟ ପାର୍ଶ୍ୱରେ ବା ଏକ ପାର୍ଶ୍ୱରେ ବାୟୁ ବହି ନିର୍ଗତ ହେଉଥିବାରୁ ଏହାକୁ ପାର୍ଶ୍ୱିକ ବର୍ଣ୍ଣ କୁହାଯାଏ । ଏଥିରେ ସ୍ୱରତନ୍ତ୍ରୀଦ୍ୱୟର କମ୍ପନ ମଧ ହୁଏ । ଓଡ଼ିଆଭାଷୀ 'ଲ' ଉଚ୍ଚାରଣ କଲାବେଳେ ତାହାର ଜିହ୍ୱା ଦାନ୍ତକୁ ସ୍ପର୍ଶ କରୁନଥିବାରୁ ଏବଂ ଦନ୍ତମୂଳକୁ ସ୍ପର୍ଶ କରୁଥିବାରୁ ଏହାକୁ ଦନ୍ତ୍ୟ ବର୍ଣ୍ଣ ନ କହି ଦନ୍ତମୂଳୀୟ କୁହାଯାଇ ପାରେ ।

ସଂସ୍କୃତର 'ୱ' ଏକକ ହୋଇ ରହିଲେ ଓଡ଼ିଆରେ ବର୍ଗୀୟ 'ବ' ଭାବରେ ଉଚ୍ଚାରିତ ହୁଏ । କିନ୍ତୁ ବ୍ୟଞ୍ଜନ ଧ୍ୱନିର ଅବ୍ୟବହିତ ପରେ ରହିଲେ ଏହା ଠିକ୍‌ଭାବେ ଉଚ୍ଚାରିତ ହୋଇଥାଏ । ଏହାର ଉଚ୍ଚାରଣରେ ଜିହ୍ୱା 'ଉ' ଉଚ୍ଚାରଣ ସ୍ଥାନରେ ରହି ଅପେକ୍ଷାକୃତ ବିବୃତ ସ୍ୱର ଉଚ୍ଚାରଣ କରିବା ସ୍ଥାନକୁ ଶୀଘ୍ର ଯାଏ । ସ୍ୱରତନ୍ତ୍ରୀ କମ୍ପିତ ହୁଏ । ଜିହ୍ୱାର ପଶ୍ଚାଦ୍‌ଭାଗ ଉତ୍ତୋଳିତ ହୁଏ । ଓଷ୍ଠ ଗୋଲାକୃତ ହୋଇ ସ୍ୱାଭାବିକ ଅବସ୍ଥା ଲାଭକରେ । 'ଳ' ଉଚ୍ଚାରଣ କରିବା ବେଳରେ ଜିହ୍ୱାର ଅଗ୍ରଭାଗ ତାଳୁର ତଳେ ବକ୍ରହୋଇ ହଠାତ୍ ମୂର୍ଦ୍ଧାକୁ ସ୍ପର୍ଶକରି ବେଗରେ ତଳକୁ ଆସି ଅବସ୍ଥାନ କରେ ବୋଲି ଏହାକୁ ମୂର୍ଦ୍ଧନ୍ୟତର ବା ତାଡ଼ିତ (Flapped) ବର୍ଣ୍ଣ ବୋଲାଯାଇପାରେ ।

ଓଡ଼ିଆଭାଷୀ ସାଧାରଣତଃ 'ଶ' 'ଷ' ଉଚ୍ଚାରଣ କରେନାହିଁ । ସଂସ୍କୃତର 'ଶ' 'ଷ'କୁ ସେ 'ସ' ଭାବରେ ଉଚ୍ଚାରଣ କରେ । ସଂସ୍କୃତର 'ସବିଶେଷ' ଏହି ସମାସ ପଦଟିରେ ତିନୋଟିଯାକ 'ଶ' 'ଷ' 'ସ' ଥିଲେ ମଧ ଓଡ଼ିଆଭାଷୀ ସେସବୁକୁ ସାଧାରଣ ଭାବରେ 'ସ' ବୋଲି ଉଚ୍ଚାରଣ କରିଥାଏ । ଏହି ଦନ୍ତ୍ୟ 'ସ' ଉଚ୍ଚାରଣ କଲାବେଳେ ଜିହ୍ୱାର ସମ୍ମୁଖଭାଗ କଠିନ ତାଳୁଆଡ଼କୁ ଉତ୍ତୋଳିତ ହୋଇଥାଏ ଏବଂ ତାଳୁ ଆଉ ଜିହ୍ୱା ମଧ୍ୟବର୍ତ୍ତୀ ସ୍ଥାନ ଏତେ ସଂକୀର୍ଣ୍ଣ ହୋଇଯାଏ ଯେ ଶ୍ୱାସନଳୀରୁ ବହିର୍ଗତ ବାୟୁ ଉକ୍ତ ସଂକୀର୍ଣ୍ଣ ସ୍ଥାନ ଦେଇ ଗତି କଲାବେଳେ ଘର୍ଷଣ ଧ୍ୱନି ଜାତ ହୁଏ । ଜିହ୍ୱାର ଅଗ୍ରବିନ୍ଦୁ ଦନ୍ତର ମୂଳକୁ ସ୍ପର୍ଶ କରୁଥିବାରୁ ଏହାକୁ ଦନ୍ତ୍ୟ 'ସ' ନ କହି ଦନ୍ତମୂଳୀୟ 'ସ' କହିବା ଉଚିତ । ଆଧୁନିକ ଧ୍ୱନିଶାସ୍ତ୍ରରେ ପୂର୍ବୋକ୍ତ ସଂଘର୍ଷ ହେତୁ ଏହାକୁ ଘୃଷ୍ଟ ବା Fricative ଧ୍ୱନି କୁହାଯାଏ ।

'ହ'ଧ୍ୱନି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀର କମ୍ପନ ସହିତ ଶ୍ୱାସନଳୀରୁ ନିର୍ଗତ ବାୟୁ ଜୋରରେ ପ୍ରବାହିତ ହେବା ଫଳରେ କଣ୍ଠବିବରରେ ସାମାନ୍ୟ ଘର୍ଷଣ ମାତ୍ର

ଶୁଣାଯାଏ । 'ଅ' ଅପେକ୍ଷା ଏଥିରେ ବହିଃସୃତ ବାୟୁର ମାତ୍ରା ଅଧିକ । କଣ୍ଠ ଭିତରେ ଘର୍ଷଣ ହେଉଥିବାରୁ ଏହାକୁ ସାଧାରଣତଃ କଣ୍ଠ୍ୟବର୍ଣ୍ଣ ବୋଲି ପ୍ରାଚୀନ ବୈୟାକରଣମାନେ କହିଛନ୍ତି ।

'କ୍ଷ'କୁ କେହି କେହି ଏକକ ବ୍ୟଞ୍ଜନ ବୋଲି ଧରନ୍ତି । କିନ୍ତୁ ପ୍ରକୃତ ପକ୍ଷେ ଏହା ଯୁକ୍ତାକ୍ଷର । 'କ୍' 'ଷ'ର ମିଶ୍ରଣରେ ଏହା ଉଚ୍ଚାରିତ ହୋଇଥାଏ । କିନ୍ତୁ ଓଡ଼ିଆରେ ଏହା ସାଧାରଣତଃ 'ଖ୍ୟ' ଭାବରେ ଉଚ୍ଚାରିତ ହୁଏ ।

ଓଡ଼ିଆର ସ୍ୱରବର୍ଣ୍ଣଗୁଡ଼ିକ ଉଚ୍ଚାରଣ କରିବାରେ କେତେକ ସ୍ଥଳରେ ଜିହ୍ୱାର ସମ୍ମୁଖଭାଗ ମୁଖବିବରରେ ଆଗକୁ ପ୍ରସାରିତ ହୋଇଥାଏ କିମ୍ବା ପଶ୍ଚାଦ୍‌ଭାଗ ପ୍ରତ୍ୟାହୃତ ହୋଇଥାଏ । ତେଣୁ ଆଧୁନିକ ଧ୍ୱନି ବିଜ୍ଞାନରେ 'ଇ' 'ଏ' ପ୍ରଭୃତିକୁ ସମ୍ମୁଖ ସ୍ୱର ଏବଂ 'ଉ' 'ଓ' ପ୍ରଭୃତିକୁ ପଶ୍ଚାତ୍ ସ୍ୱର କୁହାଯାଏ । ସ୍ୱରବର୍ଣ୍ଣଗୁଡ଼ିକ ଉଚ୍ଚାରଣରେ ଓଷ୍ଠଦ୍ୱୟ ଅଳ୍ପାଧିକ ପରିମାଣରେ ବିବୃତ ବା ସଂବୃତ ହୋଇଥାଏ । ତେଣୁ ସ୍ୱରବର୍ଣ୍ଣଗୁଡ଼ିକୁ ମୋଟାମୋଟି ବିବୃତ ସ୍ୱର ବା ସଂବୃତ ସ୍ୱର ବୋଲି ବିଭକ୍ତ କରାଯାଏ । ଏହି ପର୍ଯ୍ୟାୟରେ 'ଇ' 'ଉ'କୁ ସଂବୃତ ସ୍ୱର (Close vowel) ଏବଂ 'ଆ''କୁ ବିବୃତ ସ୍ୱର (Open vowel) କୁହାଯାଇପାରେ ।

ଚଉଦସ୍ୱର ଏ ବୋଲାନ୍ତି । ଏ ଭାବେ ଅକ୍ଷରର ଗତି ॥
କକାର ଆଦି ଚଉତିଶ । ବ୍ୟଞ୍ଜନ ଶବଦ ବିଶେଷ ॥
ସ୍ୱରମାନେ ଦୀର୍ଘ ସେ ହ୍ରସ୍ୱ । ପ୍ଳୁତ ନାମରେ ପରକାଶ ॥
ସନ୍ଧି ଅକ୍ଷର ଏ ବୋଲାଇ । ଏକାର ଆଦି ଚାରି ଯେହି ॥
ପଚିଶବର୍ଣ୍ଣେ ପଞ୍ଚ ପଞ୍ଚ । ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ॥
ଏ ଅନ୍ତେ ଅନ୍ତଃସ୍ଥ ଏ ଜାଣ । ଯ,ର,ଳ,ବ ଏ ଚାରି ବର୍ଣ୍ଣ ॥
ଶ,ଷ,ସ,ହ ଏ ଚାରି ବର୍ଣ୍ଣ । ଉଷ୍ମ ବର୍ଣ୍ଣ ବୋଲିଣ ଜାଣ ॥
ବିନ୍ଦୁ ଅନୁସ୍ୱାର ଏ ବୋଲାଇ । ସେ ବିନ୍ଦୁ ଯେବେ ଦୁଇ ହୋଇ ॥
ବିସର୍ଗ ନାମ ଯେ ବୋଲାଇ । ରାଜ ଶୁଣ୍ଢାକୃତି ସେ ହୋଇ ॥



[ ବାଗ୍‌ଯନ୍ତ୍ର ]

୧. ଓଷ ୨. ଦାନ୍ତ , ୩.ବର୍ତ୍ସ, ୪. କଠିନ ତାଲୁ, ୫. କୋମଳ ତାଲୁ, ୬. ଘଣ୍ଟିକା, ୭ ଜିହ୍ୱାଗ୍ର, ୮. ଜିହ୍ୱାଫଳକ, ୯. ଅଗ୍ରଜିହ୍ୱା, ୧୦. ପଶ୍ଚାତ୍ ଜିହ୍ୱା, ୧୧. ଗଳହଗ୍ୱର, ୧୨. ସ୍ୱରଯନ୍ତ୍ରାବରଣ, ୧୩. ସ୍ୱରତନ୍ତ୍ରୀ, ୧୪. ଶ୍ୱାସନଳୀ, ୧୫. ନାସାରନ୍ଧ୍ର ମାର୍ଗ ।




[ ଓଡ଼ିଆ ସ୍ୱରମାନଙ୍କର ସ୍ଥିତ ]

(ଓଡ଼ିଆ ସ୍ୱରମାନଙ୍କର ସ୍ଥିତି)

ଓଡ଼ିଆରେ ସାଧାରଣତଃ ଆଠଗୋଟି ସ୍ୱର ଅଛି : ଅ,ଆ,ଇ,ଉ,ଏ, ଓ.ଐ,ଔ ଏମାନଙ୍କ ମଧ୍ୟରୁ ପ୍ରଥମ ଛଟି ଶୁଦ୍ଧସ୍ୱର ଓ ଶେଷ ଦୁଇଟି ଐ,ଔ,ସଂଯୁକ୍ତ ସ୍ୱର । କେତେକ ଭାଷାବିତ୍ ଶେଷ ସଂଯୁକ୍ତ ସ୍ୱର ଦୁଇଟିକୁ ଦୁଇଟି ସ୍ୱତନ୍ତ୍ର ସ୍ୱର ବୋଲି ସ୍ୱୀକାର ନ କରି ବରଂ ସେମାନଙ୍କୁ ଅ,ଇ,ଓ ଅ,ଉର ସିକ୍ୱେନ୍ସ ବା ଅନୁକ୍ରମ ବୋଲି ବିଚାର କରିଥାନ୍ତି । ସେମାନଙ୍କୁ ଫୋନେଟିକସ୍ ଅକ୍ଷର ବା ଧ୍ୱନିଲିପିରେ ଯଥାକ୍ରମେ [ɔi] [ɔu] ଭାବରେ ସୂଚିତ କରିଥାନ୍ତି ।

□□□

# ୩୨

# ଭାଷା

## ଗୋଲୋକ ବିହାରୀ ଧଳ

"ତାର ଆଖିର ମଉନ ଭାଷା,
ପ୍ରକାଶିଲା କେତେ ଗୋପନ କାହାଣୀ
କେତେ ଯେ ଗୋପନ ଆଶା ।"

ମନୁଷ୍ୟ ସିନା ଜିଭରେ କଥା କହେ; କିନ୍ତୁ ଆଖିରେ କ'ଣ କଥା କହେ ? ଆଶା ଓ ଭାଷା ଉଭୟ ବି ଆଖିରେ ପ୍ରକାଶ କରେ । ପୁଣି ଖାଲି ଆଶା ନୁହେଁ, ଗୋପନ ଆଶା ବି ! ସମସ୍ତେ ଜାଣନ୍ତି, ଆଶାକୁ ପ୍ରକାଶ କରିବା ପାଇଁ ଭାଷା ତିଆରି । ଅବଶ୍ୟ ଭାଷା ମାନେ ମୁଖନିଃସୃତ ଭାଷା; ଯଥା– ଭ୍ରମରର ଗୁଞ୍ଜନ, ପକ୍ଷୀର କୂଜନ, ଗାଈର ହମ୍ବା ଓ ମଣିଷର ବାଗ୍‌ଯନ୍ତ୍ର-ନିୟନ୍ତ୍ରିତ ଧ୍ୱନି, ଶବ୍ଦ, ବାକ୍ୟ ଯାବତ୍ କିଛି; କିନ୍ତୁ ଭାଷାବିତ୍‌ମାନଙ୍କ ମତରେ ମନକଥା ପ୍ରକାଶ କରିବାପାଇଁ ଯେକୌଣସି ଉପାୟ ଅବଲମ୍ବନ କଲେ ତାହା ଭାଷା । ପାଟି ନ ଫିଟାଇ ପାନ ଖଣ୍ଡେ ଦେଇ ଚାଲିଗଲେ ବି ସେ ଭାଷା । ଆଉ କେତେକ କହନ୍ତି, ଯଦି ଜଣେ ଲୋକ ଅତର ଲଗାଇ ପକେଟ୍‌ରୁ ରୁମାଲ କାଢ଼ି ବୁଲେ ଓ ଅନ୍ୟ ଲୋକ ତହିଁରୁ କିଛି ସଂକେତ ପାଏ, ତେବେ ସେହି ଅତରଲଗା, ସେହି ରୁମାଲଧରା ମଧ୍ୟ ବୈଜ୍ଞାନିକ ଦୃଷ୍ଟିରୁ ଭାଷା ବୋଲି ବିଚାର କରିବାର କଥା । ବିଜ୍ଞାନ ଦୃଷ୍ଟିରୁ ଭାଷା ମାନେ ସଂକେତ, ଯାହା ମନୁଷ୍ୟକୁ କୌଣସି କାର୍ଯ୍ୟ କରିବାପାଇଁ ପ୍ରେରଣା ଦିଏ । ସହରୀ ଜୀବନରେ ସାଙ୍କେତିକ ଭାଷାର ପ୍ରଚଳନ ଖୁବ୍ ବେଶୀ । ବଡ଼ ବଡ଼ ସହରମାନଙ୍କରେ ରାସ୍ତାରେ ଯାଉ ଯାଉ ହଠାତ୍ ମନ୍ଦାରଫୁଲ ପରି ଲାଲ୍‌ବତୀ ଜଳିଉଠେ; ପୁଣି ମିନିଟିଏ ଦୁଇ ମିନିଟ୍ ପରେ କୋମଳ ନୀଳ ଆଲୋକ ଝରିପଡ଼େ । ଲାଲ ଆଲୁଅ ଦେଖି ଗାଡ଼ି ଅଟକିଯାଏ ଓ ନୀଳ ଆଲୁଅ ଦେଖି ଗାଡ଼ି ପୁଣି ଛୁଟିଯାଏ । ଲାଲବତୀର ଅର୍ଥ– 'ସମ୍ମୁଖରେ ବିପତ୍ତି ଅଛି, ରହି ଯା'; ନୀଳବତୀର ଅର୍ଥ– 'ବିପତ୍ତିର ଆଶଙ୍କା ନାହିଁ, ବର୍ତ୍ତମାନ ଆଗେଇ ଯା ।' ସ୍କୁଲରେ ଘଣ୍ଟା ବାଜିଲେ ପିଲା ସ୍କୁଲକୁ ଦୌଡ଼ନ୍ତି, କଳରେ ବଂଶୀ ବାଜିଲେ କୁଲି ମୁଜୁରିଆ ରୁଣ୍ଡ ହୁଅନ୍ତି, ପିଲା ଚିହିରି ଉଠିଲେ ମା ଦୌଡ଼ିଯାନ୍ତି । ରାସ୍ତାର ଲାଲବତୀ, ସ୍କୁଲର ଘଣ୍ଟା, କଳର ବଂଶୀ ଏ ସବୁକୁ ଭାଷା ବୋଲି ସ୍ୱୀକାର କରାଯାଏ; କିନ୍ତୁ ମନେ ରଖିବାକୁ ହେବ ବତୀ, ବଂଶୀ, ଘଣ୍ଟା ପ୍ରଭୃତିର ସାଙ୍କେତିକ ଭାଷା ମଣିଷର ମୁଖନିଃସୃତ ଶବ୍ଦ-ବାକ୍ୟସମ୍ବଳିତ ଭାଷାଠାରୁ ଅନେକ ତଫାତ୍ ।

ମଣିଷଭାଷା ଗୋଟିଏ ଭାବକୁ ନାନାଭାବରେ ପ୍ରକାଶ କରେ; ମାତ୍ର ଲାଲବତୀର ପ୍ରକାଶଭଙ୍ଗୀ ସର୍ବଦା ଏକପ୍ରକାର । ଉଦାହରଣ ସ୍ୱରୂପ ଲାଲବତୀ ସଙ୍କେତ ଦିଏ, "ସମ୍ମୁଖରେ ବିପତ୍ତି ଅଛି, ରହି ଯା ।" ଲାଲବତୀ ବିପତ୍ତି ଅଛି ବୋଲି ସଂକେତ ଦେଇପାରେ; ମାତ୍ର କି ପ୍ରକାର ବିପତ୍ତି ତା ସେ ବିଶ୍ଳେଷଣ କରିପାରେ ନା । ରାସ୍ତାରେ ମଣିଷ ଅଛନ୍ତି, ଘୋଡ଼ା ଅଛନ୍ତି ନା ହାତୀ ଅଛନ୍ତି କିମ୍ବା କାହାର ମଟର ଗାଡ଼ିଟା ଭାଙ୍ଗିପଡ଼ିଛି, ରାସ୍ତା ମାଡ଼ିବସିଛି, ଏ ପ୍ରକାର ବିଶେଷ କଥା ଲାଲବତୀ କହିପାରେ ନା । କାରଣ ଲାଲବତୀର ଅର୍ଥ ସବୁ ସମୟରେ ଏକ । ମନୁଷ୍ୟ ଭାଷା ବିଶେଷ ବିଶେଷ ଅବସ୍ଥାରେ ଯେମିତି ପରିବର୍ତ୍ତିତ ହୋଇପାରେ, ଲାଲବତୀ ଭାଷାରେ ତାହା ସମ୍ଭବ ନୁହେଁ ।

ଆମେ ଦେଖୁଛୁ ଯେ, ମଣିଷ ନିଜର ଭାବପ୍ରକାଶ ପାଇଁ ଠାର ବି ବ୍ୟବହାର କରେ । ଜଡ଼ା ଓ କାଲମାନେ ମଧ ପାଟି ନ ଫିଟାଇ କେବଳ ଠାରଦ୍ୱାରା କାମ ହାସଲ କରନ୍ତି । ସୃଷ୍ଟିର ଆରମ୍ଭରେ ଆଦାମ ଓ ଇଭ୍ ହୁଏତ ପରସ୍ପରକୁ ଠାରିଥିବେ, କି ଉଚ୍ଚାରିତ ବାକ୍ୟ ବ୍ୟବହାର କରିଥିବେ, କିଏ ଜାଣେ ? ତେବେ ଠାର ଦ୍ୱାରା ଯଦି ଲୋକେ କାମ ହାସଲ କରୁଛନ୍ତି, ଭାବପ୍ରକାଶ ପାଇଁ ଧ୍ୱନି (sound) ବ୍ୟବହାର କରିବାର ଆବଶ୍ୟକତା କ'ଣ ? ମାତ୍ର ଠାର ଅପେକ୍ଷା ଧ୍ୱନି ଅନେକ ଗୁଣରେ ଭଲ । ଅନ୍ଧାର ରାତ୍ରିରେ ଠାର ସହଜରେ ଦେଖାଯାଏନା ନାହିଁ କିମ୍ବା ଗୋଟିଏ ଘର ଭିତରେ ବସି ଠାରଦେଲେ ନିକଟସ୍ଥ ବ୍ୟକ୍ତିକୁ ମଧ ଦେଖାଯାଏନା ନାହିଁ । ତା'ଛଡ଼ା ଯେଉଁ ହାତଗୋଡ଼ ସାହାଯ୍ୟରେ ଠାର ଦେବାର କଥା, ସେମାନଙ୍କର କାମ ବହୁତ । ଜୀବନ ଉପାର୍ଜନ ପାଇଁ ପ୍ରତିମୁହୂର୍ତ୍ତ ସେମାନଙ୍କୁ ଖଟାଇବାକୁ ହୁଏ । ମାତ୍ର ଦିନରେ ଦୁଇ ତିନି ଥର ଖାଇବା ଛଡ଼ା କଣ୍ଠ, ଜିହ୍ୱା, ଦନ୍ତ, ଓଷ୍ଠ ପ୍ରଭୃତିଙ୍କର ବିଶେଷ କାମ ନାହିଁ । ସେମାନଙ୍କୁ ଇଚ୍ଛାନୁଯାୟୀ ବ୍ୟବହାର କରି ବିନା କଷ୍ଟରେ ଶୋଇକରି ମଧ ଶବ୍ଦ ସୃଷ୍ଟି କରାଯାଇପାରେ । ଭଗବାନଙ୍କ ଅସୀମ ଦୟାରୁ ମନୁଷ୍ୟ ମୁଖନିଃସୃତ ଶବ୍ଦକୁ ଭାଷାର ମାଧ୍ୟମ ରୂପେ ପାଇପାରିଛି ।

ଭାଷା କାହାକୁ କହନ୍ତି- ଏ ପ୍ରଶ୍ନ ଉଠିଲା ମାତ୍ରେ ଲୋକେ କହନ୍ତି, "ଯାହା ମନର ଭାବକୁ ପ୍ରକାଶ କରେ ।" ମାତ୍ର ଅଷ୍ଟ୍ରିଆର ପ୍ରଧାନ ମନ୍ତ୍ରୀ ମାଟର୍ନିକ୍ ଥରେ କହିଥିଲେ, "ମନର ଭାବକୁ ଲୁଚାଇବା ପାଇଁ ଭାଷାର ଜନ୍ମ ।" ଅନେକାଂଶରେ ମାଟର୍ନିକ୍‌ଙ୍କ କଥା ସତ୍ୟ । ମଣିଷ ମନରେ ଯେତେ ଭାବ, ଯେମିତି ଇତସ୍ତତଃ ଭାବରେ ଜାଗ୍ରତ ହୁଏ, ମଣିଷ ଯଦି ତାହା ପ୍ରକାଶ କରୁଥାନ୍ତା, ତାହାହେଲେ ସମାଜରେ ତାର ସ୍ଥାନ ବିପନ୍ନ ହୋଇପଡ଼ନ୍ତା । ତା'ର ଯାହା ପ୍ରକାଶ କରିବାର କଥା, ସେ ଅନେକ ଭାବିଚିନ୍ତି ତାକୁ ଏକ ରୁଚିକର ଆବରଣ ଭିତରେ ପ୍ରକାଶ କରେ । ଇଂରେଜୀ ଲୋକ ଅସୁନ୍ଦରୀ ଝିଅକୁ ugly girl ନକହି she is a good sport ବୋଲି କହନ୍ତି; ଜଣକୁ fool ବୋଲି ନ କହି he has wounderful sense of humour ବୋଲି କହନ୍ତି । ମୂର୍ଖଲୋକକୁ ବିଦ୍ରୂପ କରି ଆମେ ବି କହୁ, ସେ ଜଣେ 'ଭୁଷପଣ୍ଡିତ' । ସଭା ସମିତିରେ ମନରେ ଜାଗ୍ରତ ସମସ୍ତ ଚିନ୍ତାକୁ ଇଚ୍ଛାନୁଯାୟୀ ପ୍ରକାଶ କରିଦେଲେ ଲୋକେ କେତେ ଘୃଣା କରନ୍ତି, ତାହା ଅଳ୍ପ ବହୁତେ ସମସ୍ତେ ଜାଣନ୍ତି । ସୁତରାଂ

ଭାଷାର ପ୍ରକାଶଶକ୍ତି ସମ୍ପର୍କରେ ମାଟର୍ନିକ୍ ଯାହା କହିଥିଲେ, ତା ଅନେକାଂଶରେ ସତ୍ୟ ।

ଯେ କୌଣସି ଭାଷାର ଆମ୍ଭ ଦୁଇଟି ପାଖ ଦେଖୁ । ଏକ ପକ୍ଷରେ ଲିଖିତ ଭାଷା, ଅନ୍ୟ ପକ୍ଷରେ ଉଚ୍ଚାରିତ ଫୋନେଟିକ୍ ଭାଷା । ଓଡ଼ିଆ ଭାଷା କହିଲେ ଓଡ଼ିଆ ପୁସ୍ତକମାନଙ୍କରେ ଲିଖିତ ଭାଷା ଓ ଓଡ଼ିଆ ଲୋକେ କହୁଥିବା ଉଚ୍ଚାରିତ ଭାଷା ଉଭୟଙ୍କୁ ବୁଝାଏ । ଉଚ୍ଚାରିତ ଭାଷା ଜୀବନ୍ତ; ମାତ୍ର ଲିଖିତ ଭାଷା ନିଃଶବ୍ଦ ସଙ୍କେତମାନଙ୍କର ସମାହାର (series of dead symbols) ମାତ୍ର ଉଚ୍ଚାରଣଦ୍ୱାରା ସେମାନଙ୍କୁ ଜୀବନ୍ୟାସ ଦେଲେ ସେମାନେ ଭାଷାରେ ପରିଣତ ହୁଅନ୍ତି । ଉଚ୍ଚାରଣ କରା ନ ଯିବା ପର୍ଯ୍ୟନ୍ତ ଅକ୍ଷରକୁ କେବଳ ଭାଷା ବୋଲି କହିହେବ ନାହିଁ । ଯଦି କେହି ଅକ୍ଷରକୁ ଭାଷା କହନ୍ତି, ତେବେ ନିମ୍ନୋକ୍ତ ଦୁଇ ପଂକ୍ତି କେଉଁ ଭାଷା ବୋଲି କହିବାକୁ ହେବ, ବିଚାର କରାଯାଉ; ଯଥା -

(୧) से घरकु याउअच्छि

(୨) Se gharuku jauchhi

ପ୍ରଥମ ପଂକ୍ତି ଦେବନାଗରୀ ଅକ୍ଷରରେ ଓ ଦ୍ୱିତୀୟ ପଂକ୍ତି ଇଂରେଜୀ ଅକ୍ଷରରେ ଲେଖାହୋଇଛି । ତେଣୁ ଆମେ ଏଠି କି ଭାଷା ଲେଖିଛୁଁ ବୋଲି କହିବା ? କାଉ ମୟୂର ବେଶ ପିନ୍ଧି ମୟୂର ହେବାକୁ ଚେଷ୍ଟା କଲେ ବି ସେ କାଉ । ଚଞ୍ଚୁ ମେଲା କରିବା ମାତ୍ରେ ସେ ଧରାପଡ଼ିବ । ସେହିପରି ଦେବନାଗରୀ ଓ ଇଂରେଜୀ ପୋଷାକ ପିନ୍ଧି ଓଡ଼ିଆ ଭାଷା ଛଦ୍ମ ବେଶରେ ରହିଲେ ମଧ୍ୟ ଜୀବନ୍ୟାସ ଦେଇ ଉଚ୍ଚାରଣ କଲାମାତ୍ରେ ଓଡ଼ିଆ ବୋଲି ଚିହ୍ନାପଡ଼େ । ତେଣୁ ଉଚ୍ଚାରଣ ହିଁ ଭାଷା । ଅକ୍ଷର କେବଳ ପୋଷାକ ମାତ୍ର । ଏହି ସହଜ କଥାକୁ ବୁଝାଇବା ପାଇଁ ଭାଷାତତ୍ତ୍ୱବିତ୍‌ମାନଙ୍କୁ ୧୭୫୦ରୁ ୧୯୦୦ ମସିହା ପର୍ଯ୍ୟନ୍ତ ଦେଢ଼ଶହ ବର୍ଷ ଲାଗିଥିଲା । ତଥାପି ତ ମନୁଷ୍ୟ ନିଜକୁ ବୁଦ୍ଧିମାନ୍ ମନେକରେ ! ଉଚ୍ଚ ଦର୍ଶନ, ଉଚ୍ଚ ପଦାର୍ଥ ବିଜ୍ଞାନର ଜଟିଳତତ୍ତ୍ୱ ଯେଉଁ ମନୁଷ୍ୟ ବୁଝେ, ଭାଷାତତ୍ତ୍ୱର ଏହି ସହଜ କଥା ବୁଝିବା ପାଇଁ ସେ ରାଜି ହୁଏନାହିଁ, ଏହା ବଡ଼ ଆଶ୍ଚର୍ଯ୍ୟ କଥା । ଭାଷାତତ୍ତ୍ୱବିତ୍‌ମାନେ ଭାଷାର ଉଚ୍ଚାରଣ ନ ଜାଣି ଅର୍ଥାତ୍ ଜୀବନ୍ତ ଭାଷାକୁ ନ ଚିହ୍ନି ମୃତ ଅକ୍ଷରମାନଙ୍କୁ ଅତି ବିଶ୍ୱାସ କରି କି ପ୍ରକାର ବିପତ୍ତିରେ ପଡ଼ି ସମୁଦାୟ ଭାଷାତତ୍ତ୍ୱବିଜ୍ଞାନକୁ ବିପଥଗାମୀ କରିଥିଲେ, ତା ଭାଷାବିତ୍ ମାତ୍ରେ ଜାଣନ୍ତି । ଅକ୍ଷର ଭାଷା ଓ ଉଚ୍ଚାରଣ ଭାଷା ନେଇ ଭାଷାରେ କି ବିଭ୍ରାଟ ହୁଏ, ତା'ର ଗୋଟିଏ ଦୁଇଟି ମାତ୍ର ଉଦାହରଣ ବିଚାର କରାଯାଉ ।

| ଅକ୍ଷର ଭାଷା | ନିକଟତମ ଉଚ୍ଚାରଣ ଭାଷା | ଓଡ଼ିଆ ରୂପ |
|---|---|---|
| report | ରିପୋଟ୍ | ରିପୋର୍ଟ |
| order | ଅଡ୍ | ଅର୍ଡ଼ର |

ଇଂରେଜୀ ଭାଷାର ଏହି ଦୁଇଟି ଶବ୍ଦରେ ଥିବା r ଗୁଡ଼ିକ ଉଚ୍ଚାରିତ ହୁଅନ୍ତି ନାହିଁ । କିନ୍ତୁ ଉଚ୍ଚାରଣ ଭାଷା ନ ଜାଣିଥିବା ଲୋକେ r ଗୁଡ଼ିକୁ ମୂଲ୍ୟ ଦେଉଥିବାରୁ 'ରିପୋର୍ଟ' ଶବ୍ଦରେ ଗୋଟିଏ ରେଫ୍ ଓ 'ଅର୍ଡ଼ର'ରେ ଗୋଟିଏ ରେଫ୍ ଓ ଗୋଟିଏ ର ବ୍ୟବହାର କରନ୍ତି । ଇଂରେଜୀ ବନାନରେ r କୌଣସି ଐତିହାସିକ କାରଣରୁ ସ୍ଥାନ ପାଇ ପାରିଥାଏ;

ମାତ୍ର ଜୀବନ୍ତ ଉଚ୍ଚାରଣ ଭାଷାରେ ଯେତେବେଳେ ତା'ର କୌଣସି ଚିହ୍ନ ନାହିଁ, ତାକୁ ଆମ ଓଡ଼ିଆ ବନାନରେ ସ୍ଥାନ ଦେବାର ଆବଶ୍ୟକତା ନାହିଁ । ଅନ୍ତତଃ ଆମେ ଯଦି ଖାଲି ଇଂରଜୀ ଭାଷା ଶୁଣିଥାନ୍ତେ, କେବେହେଲେ ତାର ବନାନ ବା ମୃତ ଶବ୍ଦ ଦେଖି ନ ଥାନ୍ତେ, ତେବେ ଆମେ 'order' ଶବ୍ଦରେ କେବେ ଓଡ଼ିଆ ଲେଖିବା ପାଇଁ ର ଯୋଗ କରି ନ ଥାନ୍ତେ । ଏହି ବିପତ୍ତି କେବଳ ଆମର ନୁହେଁ, ପୃଥିବୀରେ ସବୁ ଜାତିଙ୍କର । ମାତ୍ର ଗୋଟାଏ କାଳିମା ସବୁ ଜାତିର ଅଛି ବୋଲି ତାକୁ ପୃଥିବୀର ଗୌରବ କହିବା ଅସମ୍ଭବ । ଭାଷା ରାଜ୍ୟରେ ଏହି ବିପତ୍ତିର କାରଣ ପ୍ରିଣ୍ଟିଂ ପ୍ରେସ । ୧୫୦୦ ଖ୍ରୀଷ୍ଟାବ୍ଦରୁ ଆଜିପର୍ଯ୍ୟନ୍ତ ପ୍ରିଣ୍ଟିଂ ପ୍ରେସ ଅନବରତ କାର୍ଯ୍ୟକରି ଲିଖିତ ଭାଷାକୁ ଏପରି ଦୃଢ଼ୀଭୂତ କରିଦେଇଛି ଯେ, ଭାଷା କହିଲେ ଲୋକେ ଅକ୍ଷରକୁ ଅନାନ୍ତି । କଥିତ ବା ଉଚ୍ଚାରିତ ଭାଷାର ସୁଦିନର ପ୍ରାରମ୍ଭ ମାତ୍ର ଏହି ବିଂଶ ଶତାବ୍ଦୀରେ । ଟକିଂ ପ୍ରେସ୍ ବା ରେଡ଼ିଓ ବର୍ତ୍ତମାନ ମଣିଷର ଭାଷାକୁ ନିମିଷକ ଭିତରେ ପୃଥିବୀ ଉପରେ ବିଞ୍ଛିଦିଏ । ପ୍ରିଣ୍ଟିଂ ପ୍ରେସ ବର୍ତ୍ତମାନ ଟକିଂ ପ୍ରେସର ପଛରେ । ରେଡ଼ିଓ, ଟେଲିଫୋନ୍, ବେତାର, ଟାଇପ ରାଇଟର୍, ସଟହାଣ୍ଡ୍ ସମସ୍ତେ ବର୍ତ୍ତମାନ ଏହି ଉଚ୍ଚାରିତ ଭାଷାର ପରିପୋଷକ । ଲିଖିତ ଓ ଉଚ୍ଚାରିତ ଦୁଇ ପ୍ରକାର ଭାଷା ଭିତରୁ ମଣିଷ ଅନ୍ୟର ଲିଖିତ ଭାଷାକୁ ଯେତେ ଚଞ୍ଚଳ ଆୟତ୍ତ କରିପାରେ, ଉଚ୍ଚାରିତ ଭାଷାକୁ ସେତେ ଚଞ୍ଚଳ ତାହା କରିପାରେ ନାହିଁ । ଭାରତୀୟ ଛାତ୍ରମାନେ ସୁନ୍ଦର ଇଂରେଜୀ ଲେଖିପାରନ୍ତି; ମାତ୍ର ସାହେବୀ ଭଙ୍ଗୀରେ ଇଂରେଜ ଉଚ୍ଚାରଣ କରିପାରନ୍ତି ନାହିଁ । କାରଣ ପ୍ରକୃତି ଏଡ଼େ ନିର୍ଦ୍ଦୟ ଯେ, ମନୁଷ୍ୟ ନିଜ ଭାଷା ଉଚ୍ଚାରଣ କରିବା ପାଇଁ ଯେତିକି କ୍ଷମତା ହାସଲ କରେ ଏବଂ ଉଚ୍ଚାରଣଯନ୍ତ୍ରର ମାଂସପେଶୀ ତହିଁରେ ଯେତିକି ଅଭ୍ୟସ୍ତ ହୋଇପଡ଼େ, ଅନ୍ୟ ଭାଷା ଉଚ୍ଚାରଣ ପାଇଁ ସେ ସେତିକି ଅକ୍ଷମ ହୁଏ । ଇଣ୍ଡିଆରୁ ଅଷ୍ଟ୍ରେଲିଆ ଉଡ଼ିଯିବା କେତେ ଘଣ୍ଟାର କଥା; ମାତ୍ର ଅଷ୍ଟ୍ରେଲିଆ କିମ୍ବା ଆଫ୍ରିକାର ଆଦିମ ଲୋକମାନଙ୍କର ଭାଷାର ଗୋଟିଏ ମାତ୍ର ଶବ୍ଦ ଉଚ୍ଚାରଣ କରିବା ଗୋଟାଏ ଯୁଗର କଥା । ଇଂଲଣ୍ଡର ସର୍ବପ୍ରଥମ ଫୋନେଟିସିଆନ୍ ହେନରି ସ୍ୱୀଟ୍ ପାରିସର r ଉଚ୍ଚାରଣକୁ ଆୟତ୍ତ କରିବା ପାଇଁ ଜୀବନବ୍ୟାପୀ ସାଧନା କରି ମଧ ବିଶେଷ କୃତକାର୍ଯ୍ୟ ହୋଇ ନ ଥିଲେ । ଆଜି ଦୁନିଆରେ ଲିଖିତ ଭାଷା ଅପେକ୍ଷା ଉଚ୍ଚାରିତ ଭାଷାର ଆବଶ୍ୟକତା ଅନେକ ବେଶୀ । ପୃଥିବୀ ଏଡ଼େ କ୍ଷୁଦ୍ର ହୋଇଗଲାଣି ଯେ, ଯେ କୌଣସି ମୁହୂର୍ତ୍ତରେ ଆମେ ମାଳୟଠାରୁ ମେକ୍ସିକୋ ପର୍ଯ୍ୟନ୍ତ ବିଚରଣ କରିପାରୁ । ତା'ଛଡ଼ା ରେଡ଼ିଓ ବା ଟେଲିଭିଜନ ଖୋଲିବାମାତ୍ରେ ଯାଭାରୁ ଜର୍ମାନୀ ପର୍ଯ୍ୟନ୍ତ ସବୁ ପ୍ରକାର ଭାଷା ଶୁଣୁ । ପ୍ରିଣ୍ଟିଂ ପ୍ରେସର ଦିନ ଯାଇଛି । ବର୍ତ୍ତମାନ ଟକିଂ ପ୍ରେସର ଯୁଗ ।

ମଣିଷ ଗୋଟିଏ କଥାକୁହା ଜୀବ । ମଣିଷ ବୋଲି ସେ କଥା କହେ ଏବଂ କଥା କହେ ବୋଲି ସେ ମଣିଷ । ସେଇଥିପାଇଁ ସେ ପଶୁମାନଙ୍କ ଉପରେ ଓ ଦେବତାମାନଙ୍କ ତଳେ । ମଣିଷ ଯେମିତି ସହଜରେ ନିଃଶ୍ୱାସ ପ୍ରଶ୍ୱାସ ନିଏ, ସେହିପରି କଥା ବି କହେ । ଭାଷା ବ୍ୟତିରେକ ସାମାଜିକ ଜୀବନ ସମ୍ଭବ ନୁହେଁ । ଗ୍ରୀକ୍‌ମାନଙ୍କର ନାଟକ, ରୋମାନମାନଙ୍କର ଆଇନକାନୁନ, ଫରାସୀ ବିପ୍ଳବର ରାଜନୈତିକ ଭାଷଣ ପ୍ରଭୃତି ଏହି

ସଭ୍ୟତାର ସମସ୍ତ ଦାନ ମନୁଷ୍ୟ ଭାଷା ସାହାଯ୍ୟରେ ପ୍ରକାଶ କରିପାରିଛି । ଭାଷା ବ୍ୟତିରେକେ ମନୁଷ୍ୟର ଏହି ଅସରନ୍ତି ଜ୍ଞାନଭଣ୍ଡାର ଅସମ୍ଭବ ହୋଇପଡ଼ନ୍ତା । ମନୁଷ୍ୟ ନିତି ଭାଷା ବ୍ୟବହାର କରେ ଏବଂ ଯୁଗ ଯୁଗ ଧରି ବୋଧହୁଏ ବ୍ୟବହାର କରିବ; ମାତ୍ର ଏହି ଆଶ୍ଚର୍ଯ୍ୟଜନକ ଅସ୍ତ୍ର କିଏ କେବେ ସୃଷ୍ଟିକରି ମଣିଷ ହାତରେ ଧରାଇଦେଲା, ସେ ବିଷୟରେ ସଠିକ୍ ତଥ୍ୟ କେହି ଜାଣେ ନାହିଁ । ବିଜ୍ଞାନ ଯୁଗର କୌତୂହଳୀ ମନ ଭାଷାର ଜନ୍ମ ବିଷୟରେ ବହୁ ଅନୁସନ୍ଧାନ କରି ଏପରି ହତୋତ୍ସାହ ହୋଇପଡ଼ିଛି ଯେ, ଭାଷାର ଜନ୍ମ ସମ୍ପର୍କରେ ଆଉ କେହି ବିଚାର କରିବାକୁ ରାଜି ନୁହନ୍ତି । ତଥାପି ଏପର୍ଯ୍ୟନ୍ତ ଯେଉଁସବୁ ତଥ୍ୟ ଆବିଷ୍କୃତ ହୋଇଛି, ତା'ର ଏକ ସଂକ୍ଷିପ୍ତ ବିବରଣୀ ଦେଲେ ଅବାନ୍ତର ହେବନାହିଁ ।

ଅନେକଙ୍କର ଧାରଣା, ପଶୁ ପକ୍ଷୀଙ୍କ ଧ୍ୱନିରୂପ ଶବ୍ଦରୁ ଭାଷାର ବୋଧହୁଏ ଜନ୍ମ । କାଉର କା କା, କୁକୁରର ଭୋ ଭୋ, ବିରାଡ଼ିର ମ୍ୟାଉଁ ମ୍ୟାଉଁ ପ୍ରଭୃତି ଶବ୍ଦରୁ ଭାଷାର ଉତ୍ପତ୍ତି ହୋଇଥିବା ସମ୍ଭବ; ମାତ୍ର ଏହି ତଥ୍ୟ ଅତି ପୁରାତନ ଏବଂ ଅନେକ ଦିନୁ ବୈଜ୍ଞାନିକମାନେ ଏହା ପରିତ୍ୟାଗ କଲେଣି । କାରଣ ମଣିଷ ଭାଷାରେ ଯେତେ ଶବ୍ଦ ବ୍ୟବହାର କରେ, ତା ତୁଳନାରେ ଏହି ଧ୍ୱନ୍ୟାତ୍ମକ ଶବ୍ଦ ଖୁବ୍ କମ । ତା'ଛଡ଼ା ମନୁଷ୍ୟର ଉଚ୍ଚଚିନ୍ତା ଅର୍ଥାତ୍ ଉଚ୍ଚ ଦର୍ଶନ, ଉଚ୍ଚ ଗଣିତ, ପଦାର୍ଥବିଜ୍ଞାନ ପ୍ରଭୃତି ପ୍ରକାଶ କରିବା ପାଇଁ ମନୁଷ୍ୟର ଦୈନନ୍ଦିନ, ଏପରି କି ସାହିତ୍ୟିକ ଭାଷା ମଧ୍ୟ ଯଥେଷ୍ଟ ନୁହେଁ ବୋଲି ଗଣିତ ପାଇଁ ସ୍ୱତନ୍ତ୍ର ସାଙ୍କେତିକ ଭାଷାର ସୃଷ୍ଟି । ଏପରି ସ୍ଥଳେ ପଶୁପକ୍ଷୀ କିମ୍ବା ମନୁଷ୍ୟକୃତ ଧ୍ୱନ୍ୟାତ୍ମକ ଶବ୍ଦଦ୍ୱାରା ମନୁଷ୍ୟର ଉଚ୍ଚ ଚିନ୍ତା ପ୍ରକାଶ କରିବା ଏକାନ୍ତ ଅସମ୍ଭବ ।

ପୁଣି କେତେକଙ୍କ ମତ ଯେ, ଆଦିମ ଜାତିମାନଙ୍କର ଭାଷାରେ ମନୁଷ୍ୟ ଭାଷାର ଜନ୍ମ ଅନୁସନ୍ଧାନ କରାଯାଇପାରେ; ମାତ୍ର ଏପରି ଧାରଣା ମଧ୍ୟ ଭ୍ରାନ୍ତିମୂଳକ । କାରଣ ଆଦିମ ଭାଷାମାନଙ୍କ ମଧ୍ୟରେ ଏପରି ଅନେକ ଭାଷା ଅଛି, ଯାହା ଆଧୁନିକ ଜଟିଳ ଭାଷାଠାରୁ ଜଟିଳତର, ଅଥଚ ଆଉ କେତେକ ଅଛି, ଯାହା ସରଳ ଭାଷାଠାରୁ ସରଳତର । ତେଣୁ ଯଦି ଜ୍ଞାତ ସଭ୍ୟ ଭାଷାମାନଙ୍କ ତୁଳନାଦ୍ୱାରା ଭାଷାର ଆଦି ନିର୍ଦ୍ଧାରଣ କରାଯାଇ ନ ପାରେ, ତେବେ ଆଦିମ ଭାଷା ତୁଳନାଦ୍ୱାରା ତାହା ହେବାର ସମ୍ଭାବନା ବହୁତ କମ ।

ଆହୁରି ଅନେକେ କହନ୍ତି, ଶିଶୁମାନଙ୍କ ଭାଷାରୁ ଭାଷାର ଜନ୍ମ । ଅନୁସନ୍ଧାନ କରାଯାଇପାରେ; ମାତ୍ର ଶିଶୁର ଅବସ୍ଥା ଏକା ନୁହେଁ । ଶିଶୁ ଗୋଟିଏ ସମାଜରେ ଜନ୍ମ ହୁଏ, ଯେଉଁଠି ସମସ୍ତେ ଭାଷାଦ୍ୱାରା ପରସ୍ପର ସହିତ ଭାବ ବିନିମୟ କରୁଥାନ୍ତି । ନିଜ ଚେଷ୍ଟା ଓ ଗୁରୁଜନଙ୍କ ଚେଷ୍ଟାରେ ସେ କେବଳ ସମାଜପ୍ରଚଳିତ ଭାଷାକୁ ଅନୁକରଣ କରିବାକୁ ଚେଷ୍ଟା କରେ । ମାତ୍ର ଯେଉଁ ମଣିଷ ପ୍ରଥମେ କଥା କହିଥିବେ, ତାଙ୍କ ପୂର୍ବରୁ କେଉଁଠି କେହି କଥା କହି ନ ଥିବେ । ଶବ୍ଦକୁ ଅନୁସରଣ କରି କାର୍ଯ୍ୟକାରୀ ହେବା ସେତେବେଳକୁ ମୋଟେ ଆରମ୍ଭ ହୋଇ ନ ଥିବ । ତେଣୁ ପ୍ରଥମ ମଣିଷ ଓ ଶିଶୁର ଅବସ୍ଥାରେ ବହୁ ତଫାତ୍ ଥିବାରୁ ଶିଶୁର କଥାରୁ ଭାଷାର ଜନ୍ମ ବିଚାର କରିବା ଅସମ୍ଭବ ।

ବର୍ତ୍ତମାନ ଆମେରିକାରେ ହେଲେନ୍ କେଲର ନାମକ ଏକ ବିଶ୍ୱବିଖ୍ୟାତ ନାରୀ

ଅଛନ୍ତି । ସେ କାଲୁଣୀ, ଅନ୍ଧୁଣୀ, କାଡ୍ରୀ । ସେ ଉଚ୍ଚ ଶିକ୍ଷା ଲାଭକରି ଏବେ କେତେକ ପୁସ୍ତକ ପ୍ରଣୟନ କରିଛନ୍ତି । ସେହି ମହୀୟସୀ ନାରୀଙ୍କ ସହିତ ଭାବବିନିମୟ କରିବାର ସୁଯୋଗ ଲେଖକ ଆମେରିକାରେ ପାଇଥିଲା । ପୃଥିବୀର ବହୁ ଆଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ସେ ଅନ୍ୟତମ । ତାଙ୍କର ଆଖି ନାହିଁ, କାନ ନାହିଁ, ଜିହ୍ୱା ନାହିଁ, ବସ୍ତୁତଃ ଭାଷା ପ୍ରୟୋଗର କୌଣସି ଯନ୍ତ୍ରନାହିଁ । ତଥାପି ସେ କିପରି ଭାଷା ପ୍ରୟୋଗ କରୁଛନ୍ତି, ତା କଳ୍ପନା କରିବା କଠିନ । ଅନେକ ଭାଷାତତ୍ତ୍ୱବିତ୍ ଭାବନ୍ତି, ହେଲେନ୍ କେଲର ପ୍ରଥମେ କୌଣସି ଶବ୍ଦ ଶୁଣି ନ ଥିବେ, କୌଣସି ବସ୍ତୁ ଦେଖି ନ ଥିବେ ବା ଜିହ୍ୱା ବ୍ୟବହାର କରି ଶିଖି ନ ଥିବେ; ତେଣୁ ଭାଷା ଶିକ୍ଷାପାଇଁ ସେ ଯେପରି ପରିସ୍ଥିତିର ସମ୍ମୁଖୀନ ହୋଇଥିବେ, ବୋଧହୁଏ ପ୍ରଥମ ମାନବ ସେହି ଅବସ୍ଥାର ସମ୍ମୁଖୀନ ହୋଇଥିବ; ମାତ୍ର ଏ ପ୍ରକାର ଯୁକ୍ତି ସର୍ବଦା ପ୍ରମାଦପୂର୍ଣ୍ଣ । କାରଣ ସାମାଜିକ ମନୁଷ୍ୟ ଏକ ସ୍ୱାଭାବିକ ଜୀବ । ସେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଦୁନିଆର ସମସ୍ତ ଜିନିଷ ଦେଖିଥିବ ଓ ପ୍ରକୃତିରୁ ଅନେକ ଶବ୍ଦ ଶୁଣିବାକୁ ପାଇଥିବ । ହୁଏତ ଅନ୍ୟାନ୍ୟ ଜୀବମାନେ ଭାବପ୍ରକାଶ କରିବାପାଇଁ ଯେପରି ଶାରୀରିକ ଚେଷ୍ଟା କରିଥିବେ, ମନୁଷ୍ୟ ସେହିପରି ଚେଷ୍ଟା କରିଥିବ; ମାତ୍ର ହେଲେନ୍ କେଲରଙ୍କ ଅବସ୍ଥା ବଡ଼ ଅପ୍ରାକୃତିକ । ଯେକୌଣସି ମନୁଷ୍ୟର ପ୍ରାକୃତିକ ଅବସ୍ଥାଠାରୁ ତାଙ୍କ ଅବସ୍ଥା ଭିନ୍ନ; କାରଣ ସେ ଦେଖିପାରନ୍ତି ନାହିଁ ବା ଶୁଣିପାରନ୍ତି ନାହିଁ । ତେଣୁ ଗୋଟାଏ ଅପ୍ରାକୃତିକ ଅବସ୍ଥାରୁ ପ୍ରାକୃତିକ ଅବସ୍ଥାର ଘଟଣା ସ୍ଥିର କରିବା ଯୁକ୍ତିଯୁକ୍ତ ନୁହେଁ ବୋଲି କହିଲେ ଅସମୀଚୀନ ହେବନାହିଁ ।

ଇଜିପ୍ଟ ରାଜା ସେମାଟିକ୍ସ ଭାଷାର ଜନ୍ମ ସମ୍ପର୍କରେ ଏକ ଅଭିନବ ଅନୁସନ୍ଧାନ ଚଳାଇଥିଲେ । ସେ ଭାବିଲେ ଯେ, ପ୍ରଥମ କରି କଥା କହିବା ପୂର୍ବରୁ ମଣିଷ କେବେ ମନୁଷ୍ୟ କଣ୍ଠସ୍ୱର ଶୁଣି ନ ଥିବ । ହୁଏତ ହଠାତ୍ ଦିନେ ସେ କଥା କହିବା ପାଇଁ ଚେଷ୍ଟା କରିଥିବ । ତେଣୁ ଗୋଟିଏ ମଣିଷ ପିଲାକୁ କାହା କଥା ଶୁଣିବାକୁ ନ ଦେଇ ଦେଖିବାକୁ ହେବ, ପ୍ରଥମେ ସେ କେଉଁ ଭାଷା କହୁଛି । ସେ ଯେଉଁ ଭାଷା କହିବ, ତାକୁ ପ୍ରଥମ ଭାଷା ବୋଲି ସ୍ୱୀକାର କରିବାକୁ ହେବ । ଏହିପରି ଗୋଟିଏ ଶିଶୁକୁ ଅନେକ ଦିନ ପର୍ଯ୍ୟନ୍ତ ମନୁଷ୍ୟ ଭାଷା ଶୁଣିବାକୁ ଦିଆଗଲା ନାହିଁ । ହଠାତ୍ ଦିନେ ଶିଶୁଟି ଗୋଟିଏ ଶବ୍ଦ ଉଚ୍ଚାରଣ କଲା 'ବେକସ୍', ବେକସ୍ ଶବ୍ଦର ଅର୍ଥ ଫିଜିୟାନ୍ ଭାଷାରେ 'ରୁଟି' । ତେଣୁ ରାଜା ସେମାଟିକ୍ସ ସ୍ଥିର କଲେ ଯେ, ତାଙ୍କ ଇଜିପ୍ଟ ଭାଷା ଅପେକ୍ଷା ଫିଜିୟାନ୍ ଭାଷା ଆଦିମତର; ଯେହେତୁ ମଣିଷଶିଶୁ ବିନା ଶିକ୍ଷାରେ ଫିଜିୟାନ୍ ଭାଷାର ଏକ ଶବ୍ଦ ଉଚ୍ଚାରଣ କଲା । ଏହି କୌତୂହଳପୂର୍ଣ୍ଣ ଘଟଣାକୁ ଭାଷାତତ୍ତ୍ୱବିତ୍‌ମାନେ କେତେକାଂଶରେ ବିଶ୍ୱାସ କରନ୍ତି । ଭାଷା ଏକ ସାମାଜିକ ବସ୍ତୁ । ଭାଷାର ଜନ୍ମ ସମାଜରୁ ଓ ମନୁଷ୍ୟର ସାମାଜିକ ଆଚରଣରୁ । ମନୁଷ୍ୟ ଜୀବନଧାରଣ ପାଇଁ ଏକତ୍ର କାମ କଲାବେଳେ ସମୟ କଟାଇବା ଲାଗି ହୁଏତ ଅବୋଧ ସଙ୍ଗୀତ ଗାନ କରିଥିବ; ମାତ୍ର ଏହି ଅବୋଧ ସଙ୍ଗୀତଧାରା କେବେ ଓ କିପରି ଭାବବ୍ୟଞ୍ଜନ ଶବ୍ଦ ଓ ବାକ୍ୟରେ ପରିଣତ ହେଲା, ତା'ର ସଠିକ୍ ସମ୍ବାଦ କେହି ପାଇ ନାହାନ୍ତି ।

ନୃତତ୍ତ୍ୱବିତ୍‌ମାନଙ୍କର ଧାରଣା, ମନୁଷ୍ୟର ମସ୍ତିଷ୍କବିକାଶ ବିନୁ ଭାଷାର ଜନ୍ମ । କାରଣ

ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି, ଭାଷାବିକାଶ ପାଇଁ ମନୁଷ୍ୟ ମସ୍ତିଷ୍କରେ ଗୋଟିଏ ସ୍ୱତନ୍ତ୍ର ବିଭାଗ ଅଛି । ଭାଷାର ଅଭିବୃଦ୍ଧି ସମ୍ପର୍କରେ ଅନେକଙ୍କର ଧାରଣା ଯେ, ମନୁଷ୍ୟର କାର୍ଯ୍ୟର ପରିସର ଯେତିକି ବଢ଼ିଥିବ, ତାହା ଅନ୍ୟ ନିକଟରେ ପ୍ରକାଶ କରିବା ପାଇଁ ସେତିକି ଭାଷା ଆବଶ୍ୟକ ହୋଇଥିବ । ସେଥିପାଇଁ ଭାଷାତତ୍ତ୍ୱବିତ୍‌ମାନେ କହନ୍ତି ଯେ, କଥା ଓ କାମ ମିଶି ଏହି ମଣିଷ ହୋଇପାରିଛି । (Speech and work together have made us men.)

ବୈଜ୍ଞାନିକମାନଙ୍କ ଅନୁସନ୍ଧାନ ବାହାରେ ପୁରାଣାଦିରେ ଭାଷାର ଜନ୍ମ ସମ୍ପର୍କରେ ବହୁ କୌତୂହଳପୂର୍ଣ୍ଣ ତଥ୍ୟ ଅଛି; ମାତ୍ର ସେମାନଙ୍କ ମଧ୍ୟରୁ କେହି ବିଜ୍ଞାନସମ୍ମତ ନୁହନ୍ତି । ଏପର୍ଯ୍ୟନ୍ତ ଭାଷାତତ୍ତ୍ୱବିତ୍‌ମାନେ ଯାହା ସ୍ଥିର କରିଛନ୍ତି, ତା କେବଳ ଅନ୍ଧାରରେ ବାଡ଼ି ବୁଲାଇବା କଥା । ତେଣୁ ଭାଷାର ଜନ୍ମ ବିଷୟରେ ବର୍ତ୍ତମାନ କେହି ବିଚାର କରୁନାହାନ୍ତି ।

ଭାଷା ଏକ ବିଚିତ୍ର ବସ୍ତୁ । ତହିଁରେ ସାମ୍ୟ ଓ ବୈଷମ୍ୟ ଭରି ରହିଛି । ମନ୍ତ୍ରୀ ଓ ଏମ୍.ଏଲ୍.ଏ. ଭାବ ପ୍ରକାଶ କରିବା ପାଇଁ ଯେଉଁ ଧ୍ୱନି (sound) ଓ ଯେଉଁ ବାଗ୍-ଯନ୍ତ୍ର ବ୍ୟବହାର କରନ୍ତି, ମୂଲିଆ ମଜଦୁର ମଧ ଠିକ୍ ସେହି ଧ୍ୱନି, ସେହି ବାଗ୍-ଯନ୍ତ୍ର ବ୍ୟବହାର କରନ୍ତି । ଅଥଚ ଭାଷା ଏତେ ଭାବରେ ବିଭକ୍ତ ଯେ, ଲୋକେ ସିନା କହନ୍ତି - ଦେଶକେ ବାଙ୍କ, ଭାଷା ପ୍ରକୃତରେ ଜଣ ଜଣକେ ଫାଙ୍କ । ଏକା ଘରକେ ସ୍ତ୍ରୀ ପୁରୁଷ ବିଭିନ୍ନ ସ୍ଥାନରୁ ଆସିଥିବାରୁ ଗୋଟିଏ କଥାକୁ ଦୁଇ ଭାଗରେ ପ୍ରକାଶ କରନ୍ତି । ଜଣେ ଯାହାକୁ 'ପୋଛା' କହନ୍ତି, ଆଉ ଜଣେ ତାକୁ 'ଗାମୁଛା' କହନ୍ତି । ଜଣେ ଧୁଆଇବା, କଟାଇବା, ବଟାଇବା କହିଲେ ଆଉ ଜଣେ ଧୁଆ କରାଇବା, ବଟା କରାଇବା, କଟା କରାଇବା ପ୍ରଭୃତି କହନ୍ତି । ଜଣେ କଥା କହିଲେ ଆଉ ଜଣେ ଆଶ୍ଚର୍ଯ୍ୟ ହୋଇ ହସନ୍ତି । ଅନେକ ସମୟରେ ଏହି ଭାଷା ନେଇ ଘର ଭିତରେ ଯେଉଁ ବ୍ୟଙ୍ଗ ବିଦ୍ରୂପ ହୁଏ, ଜାତି ଜାତି ମଧ୍ୟରେ, ରାଜ୍ୟ ରାଜ୍ୟ ମଧ୍ୟରେ ମଧ ସେହି ବିଦ୍ରୂପ ହୁଏ । ଲଣ୍ଡନର ରେଡ଼ିଓ ଶୁଣି ସ୍କଟଲାଣ୍ଡର ଲୋକେ ଯେତିକି ନାକ ଟେକନ୍ତି, ବାଲେଶ୍ୱରର ଖାଇଟେ, ଯାଇଟେ ଓ ସମ୍ବଲପୁରର ଯିମି, ଖାଇମି ଏସବୁ ଶୁଣି କଟକ ଲୋକେ ସେତିକି ଅସୁସ୍ଥ ବୋଧ କରନ୍ତି । ଗୋଟିଏ ଭାଷା କହୁଥିବା ଲୋକେ ପରସ୍ପରଠାରୁ ବହୁ ଦୂରରେ ରହିଲେ କାଳକ୍ରମେ ସେମାନଙ୍କ ଭାଷାରେ ବହୁ ତଫାତ୍ ଦେଖାପଡ଼େ । ଯେଉଁ ଭାଷାରେ ତଫାତ୍ ବେଶୀ ବଢ଼ିଯାଏ, ସେହି ଭାଷାକୁ ପ୍ରଧାନ ଭାଷାର ଉପଭାଷା ବା dialect ବୋଲି କହନ୍ତି । ଆମେ ଯେଉଁ ଢେଙ୍କାନାଳିଆ, ପୁରିଆ, ବାଲେଶ୍ୱରୀ, ସମ୍ବଲପୁରୀ ଭାଷା ବୋଲି କହୁ, ଏ ପ୍ରତ୍ୟେକକୁ ଓଡ଼ିଆ ଭାଷାର ଉପଭାଷା କୁହାଯାଇପାରେ ।

ଉପଭାଷା ସୃଷ୍ଟିପାଇଁ ସର୍ବଦା ଦୂରତାର ଆବଶ୍ୟକତା ନାହିଁ । ଏପରିକି, ଗୋଟିଏ ବଡ଼ ନଦୀ କିମ୍ବା ପର୍ବତ ସେପାରିର ଲୋକେ ଯଦି ରାସ୍ତାଘାଟ ଅଭାବରୁ ଏପାରିର ଲୋକଙ୍କ ସଙ୍ଗେ ନ ମିଶନ୍ତି, ତେବେ ବି କାଳକ୍ରମେ ସେମାନଙ୍କ ମଧ୍ୟରେ ଉପଭାଷା ସୃଷ୍ଟି ହୋଇପାରେ । ମାତ୍ର ପୁରାତନ ଶତାବ୍ଦୀମାନଙ୍କରେ ଉପଭାଷା ସୃଷ୍ଟି ପାଇଁ ଯେଉଁ ଅନୁକୂଳ ଅବସ୍ଥା ଥିଲା, ରେଡ଼ିଓ, ଟେଲିଭିଜନ୍ ଯୁଗରେ ସେ ଅବସ୍ଥା ନାହିଁ । ଦେଶ ଦେଶ ମଧ୍ୟରେ

ବର୍ତ୍ତମାନ ପ୍ରାଚୀର ଭାଙ୍ଗିପଡୁଛି । ନ୍ୟୁୟର୍କର ଭାଷଣ ନୂଆଦିଲ୍ଲୀ ଓ ନିଉଜ୍‌ଲାଣ୍ଡରେ ଏକା ମୁହୂର୍ତ୍ତରେ ବାଜିଉଠୁଛି । ଉପଭାଷାର ଦିନ ଯାଉଛି ଓ ସାରା ବିଶ୍ୱ ପାଇଁ ଏକ ରାଷ୍ଟ୍ରଭାଷାର ଶୁଭଦିନ ଆସୁଛି ବୋଲି ଅନେକ ଆଶା କରୁଛନ୍ତି; କିନ୍ତୁ ଏହା ସଙ୍ଗେ ସଙ୍ଗେ ଆଉ ଗୋଟିଏ କଥା ବିଚାର କରିବାର ଅଛି । ଗଣତନ୍ତ୍ର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ନୂତନ ଜାତୀୟ ଚେତନା ଉଦ୍‌ଭଟ ହୋଇଉଠୁଛି । ତେଣୁ ଉପଭାଷାଭାଷୀ ଏକ ଅଞ୍ଚଳର ଲୋକେ ସ୍ୱାଧୀନତା ନାମରେ ନିଜର ଉପଭାଷାକୁ ବଜାୟ ରଖିବାକୁ ଚେଷ୍ଟାକରି ଭାଷାସୂତ୍ରରେ ଗୋଟିଏ ଷ୍ଟେଟ୍‌କୁ ଖଣ୍ଡ ଖଣ୍ଡ କରିବା ଅସମ୍ଭବ ନୁହେଁ । ଇଂଲଣ୍ଡ ଭଳି ଛୋଟ ଦେଶଟିକୁ ସ୍କଟଲାଣ୍ଡ ଓ ୱେଲସ୍ ଲୋକେ ଖଣ୍ଡ ଖଣ୍ଡ କରି ସ୍ୱତନ୍ତ୍ର ରାଜ୍ୟ ଗଢ଼ିବାକୁ ଚାହାନ୍ତି । ଭାଷାସୂତ୍ରରେ ଝାଡ଼ଖଣ୍ଡ ସୃଷ୍ଟିର କଳ୍ପନା ଅସମ୍ଭବ ନୁହେଁ । ଦେଶର ସଂସ୍କୃତି ସମାଲୋଚନା ପାଇଁ ଏହି ଉପଭାଷାଗୁଡ଼ିକ ଭାରି ଉପାଦେୟ । ଗୋଟିଏ ଶବ୍ଦ, ଗୋଟିଏ ଢଗ, ପଦେ ଗୀତରେ ସଂସ୍କୃତିର ବହୁ ଇତିହାସ ଲୁଚିକରି ଅଛି । ଆଧୁନିକ ସଭ୍ୟତା ଆଲୋକରେ ଏହି ପୁରାତନ ସଂସ୍କୃତିସୂଚକ ଭାଷା ମିଳାଇଯିବା ପୂର୍ବରୁ ତାହା ଲିପିବଦ୍ଧ ହେବା ଉଚିତ । ଆମେରିକାରେ ବର୍ତ୍ତମାନ ଭାଷାତତ୍ତ୍ୱବିତ୍‌ମାନେ ବିଶେଷ ଭାବରେ ଏହି କାର୍ଯ୍ୟରେ ଲାଗିଛନ୍ତି; ଆମର ଆରମ୍ଭ ଏପର୍ଯ୍ୟନ୍ତ ହୋଇନାହିଁ । ଆମେରିକାର ରକ୍‌ଫେଲର ଅନୁଷ୍ଠାନ ଭାରତୀୟ ଉପଭାଷାର ଗବେଷଣା ପାଇଁ ବିଚାର କରୁଛନ୍ତି । ଗାଁଗହଳରେ ଆମେରିକାନ୍ ଫ୍ରେଣ୍ଡସ୍ ସୋସାଇଟି ଗ୍ରାମ୍ୟ ସଭ୍ୟତାକୁ ଉନ୍ନତ କରିବା ପୂର୍ବରୁ ଉପଭାଷାମାନଙ୍କର ସଠିକ୍ ବିବରଣୀ ଭାଷାବିତ୍‌ମାନଙ୍କ ହାତରେ ରହିବା ଉଚିତ । ନଚେତ୍ ପୁରାତନ ସଂସ୍କୃତିର ଅନେକ ମୂଲ୍ୟବାନ୍ ବସ୍ତୁ କାଳଗର୍ଭରେ ଲୁଚିଯିବ ।

ଆଦିମ ସମାଜମାନଙ୍କରେ ସ୍ତ୍ରୀ ପୁରୁଷ ଭାଷା ଭିତରେ ବହୁ ତଫାତ୍ ଦେଖାଯାଏ । ଆଜି ମଧ୍ୟ ଆମ ଦେଶରେ ଏହି ସ୍ତ୍ରୀ ପୁରୁଷ ଭାଷାର ତଫାତ୍ ସମ୍ପୂର୍ଣ୍ଣ ଲୋପ ପାଇନାହିଁ । ଜଣେ ଉଚ୍ଚ ଶିକ୍ଷିତ ନୟାଗଡ଼ ବନ୍ଧୁଙ୍କଠାରୁ ଶୁଣାଯାଏ ଯେ ସେମାନଙ୍କ ପରିବାରରେ ନୂଆବୋହୂମାନେ ଏକ ସମ୍ପୂର୍ଣ୍ଣ ଭିନ୍ନ ସାଙ୍କେତିକ ଭାଷା ବ୍ୟବହାର କରନ୍ତି । ଶାଶୂ ଶଶୁରଙ୍କ ଆଗେ ନୂଆବୋହୂ କଥା କହିବା କୁଳାଚାରବିରୁଦ୍ଧ । ତେଣୁ ପ୍ରଥମ ସନ୍ତାନ ଜନ୍ମ ପର୍ଯ୍ୟନ୍ତ ନୂଆବୋହୂ ସଙ୍କେତ ବ୍ୟବହାର କରିବେ । ଧାନ କୁଟିବାକୁ କହିଲେ ଗୋଡ଼କୁ କୁଟିଲାପରି ଦେଖାଇବେ ଓ ଚାଉଳ ପାଛୋଡ଼ିବାକୁ ହେଲେ କୁଲା ଦେଖାଇବେ । ସବୁପ୍ରକାର କାମ କରିବାପାଇଁ ଏହି ସାଙ୍କେତିକ ଭାଷାକୁ କେମିତି ବ୍ୟବହାର କରାଯାଏ, ତାହାର ଗବେଷଣା ହେବା ବ୍ୟବସ୍ଥା କରାଯାଇ ପାରିଲେ ମନୁଷ୍ୟମାନେ ଭାଷା ସୃଷ୍ଟିର ପୂର୍ବ ଅବସ୍ଥାରେ କେମିତି ଚଳୁଥିଲେ, ତା'ର ଏକ ଧାରଣା ସ୍ପଷ୍ଟ ହୁଅନ୍ତା । ଏହା ଛଡ଼ା ଯେଉଁ ଅଞ୍ଚଳରେ ସାଙ୍କେତିକ ଭାଷା ବ୍ୟବହାର କରା ନ ଯାଏ, ସେଠି ସ୍ତ୍ରୀମାନେ ଅନେକ ନୂତନ ଶବ୍ଦ ସୃଷ୍ଟି କରନ୍ତି । କାରଣ ସେମାନେ ଗୁରୁଜନମାନଙ୍କର ନାମ ଉଚ୍ଚାରଣ କରନ୍ତି ନାହିଁ; ଏପରିକି ଜଣଙ୍କ ନାମର ଗୋଟିଏ ଅକ୍ଷର ପର୍ଯ୍ୟନ୍ତ ଅନ୍ୟ ଯେଉଁ ଶବ୍ଦରେ ଥିବ, ତାହା ଉଚ୍ଚାରଣ କରିବା ଗର୍ହିତ । ଉଦାହରଣ ସ୍ୱରୂପ ମାନ୍ୟବ୍ୟକ୍ତିଙ୍କ ନାମ ଯଦି ଚକ୍ରଧର ହୋଇଥାଏ, ତେବେ ଚକଲେଟ

କହିବା ଅନୁଚିତ; ଗୋଲୋକ ହୋଇଥିଲେ ଗୋଲ କହିବା ଅନୁଚିତ । ଏହି ଦୃଷ୍ଟିରୁ ବିଚାର କଲେ ଆମ ଦେଶରେ ଶିକ୍ଷିତା ସ୍ତ୍ରୀ ପୁରୁଷର ନାମ ଉଚ୍ଚାରଣ କଲେ ଗାଁ ଗହଳରେ ସମାଲୋଚନା ପାଇଁ ବହୁ ଖାଦ୍ୟ ମିଳିଥାଏ ।

ଚୋର, ଡକାୟତ, ବ୍ୟବସାୟୀ, ଛାତ୍ର, ଶିକ୍ଷକ ଓ ଜୀବନର ଅନ୍ୟାନ୍ୟ ବିଭାଗରେ ବହୁ ବିଭିନ୍ନ ପ୍ରକାର ଅବୋଧ ଭାଷା ପ୍ରଚଳିତ ହୋଇଥାଏ । ଢେଙ୍କାନାଳରେ ତନ୍ତୀ ବ୍ୟବସାୟୀମାନେ କେତେକ ଠାର ଭାଷା ବ୍ୟବହାର କରନ୍ତି । ଲୁଗାପଟା କିଣାବିକାବେଳେ ସେମାନେ ଯେଉଁ ଭାଷା ବ୍ୟବହାର କରନ୍ତି, ତହିଁରୁ ମାତ୍ର କେତୋଟିର ଉଦାହରଣ ଦିଆଗଲା । ଯଥା–

| ଶବ୍ଦ | | ଅର୍ଥ |
|---|---|---|
| ରାମଚକି | - | ଦୁଇ ଟଙ୍କା |
| ପିସେରାମପାହି | - | ଦଶ ଅଣା ଦୁଇ ପଇସା |
| ପୋଛପଣ | - | ଛଅ ଅଣା |
| ନେତ୍ରପଣ | - | ତିନି ଅଣା |

କଟକର ବହୁ ପ୍ରଚଳିତ 'ବାବାରେ ଆଲୁଅ' ଏକ ବିଦ୍ରୂପାତ୍ମକ ଠାରରେ ବର୍ତ୍ତମାନ ପରିଣତ ହୋଇଛି । ସ୍କୁଲମାନଙ୍କରେ ପିଲାମାନେ ଶଶିଠାର, ମଲ୍ଲୀଠାର ପ୍ରଭୃତି ବହୁ ଅବୋଧ ଭାଷା ବ୍ୟବହାର କରିଥାନ୍ତି ।

ମନୁଷ୍ୟ ଜାତି ଏକ; ମାତ୍ର ସେମାନଙ୍କର ଭାଷା ଅନେକ । ମାଳୟରୁ ମେକ୍ସିକୋ ପର୍ଯ୍ୟନ୍ତ - ପ୍ରତି ରାଜ୍ୟର ଏକ ଭାଷା - ଉନ୍ନତ ଇଂରେଜୀଠାରୁ ଆଦିମ ଆଲୋଙ୍ଗୋଙ୍କିନ୍ ଓ ଚିନୁକ ପର୍ଯ୍ୟନ୍ତ ହଜାର ହଜାର ଭାଷା ମନୁଷ୍ୟ ବ୍ୟବହାର କରେ । ଭାଷାତତ୍ତ୍ୱବିତ୍‌ମାନେ ଜୀବଜନ୍ତୁମାନଙ୍କ ପରି ଭାଷାମାନଙ୍କର ଜାତି, ବଂଶ ଓ ଜନ୍ମ, ମୃତ୍ୟୁ ପ୍ରଭୃତି ବିଚାର କରିଥାନ୍ତି । ଗୋଟିଏ ଗୋଟିଏ ଭାଷା ମଧ୍ୟରେ ଶତାଧିକ ବିଭାଗ, ଯଥା– ଭୁଲ ଭାଷା, ଠିକ୍ ଭାଷା, ବ୍ୟାକରଣ ଭାଷା, ଅବ୍ୟାକରଣ ଭାଷା, ବଡ଼ଲୋକଙ୍କ ଭାଷା, ଛୋଟଲୋକଙ୍କ ଭାଷା, ଦୈନନ୍ଦିନ ଭାଷା, ସାହିତ୍ୟିକ ଭାଷା ପ୍ରଭୃତି ରହିଛି । ତେଣୁ ଯେ କୌଣସି ଭାଷାର ପୂର୍ଣ୍ଣାଙ୍ଗ ବିଚାର ବିଶେଷ ସାଧନାସାପେକ୍ଷ । ମାତ୍ର ଭାଷାବିତ୍‌ମାନଙ୍କର ଗୋଟିଏ ସୁବିଧା ହେଉଛି ଯେ, ସେମାନଙ୍କର ଗବେଷଣାଗାର କୌଣସି ସ୍କୁଲ କଲେଜ ବା ଅନୁଷ୍ଠାନ ଭିତରେ ଆବଦ୍ଧ ନୁହେଁ । ଯେକୌଣସି ମଣିଷ ଭାଷାତତ୍ତ୍ୱବିତ୍‌ଙ୍କର ଗବେଷଣାଗାର । ଲୋକ ପାଟି ଫିଟାଇଲାମାତ୍ରେ ଗବେଷଣା ଆରମ୍ଭ ହୁଏ । ତେଣୁ ଭାଷାତତ୍ତ୍ୱବିତ୍‌ମାନେ ଲୋକଙ୍କୁ କହନ୍ତି, "ତମେ ପାଟି ଫିଟା, ଆମେ କହିଦେବୁ ତମେ କିଏ ।" ଅନେକାଂଶରେ ସେମାନଙ୍କ କଥା ସତ ।



୩୩

# ଧ୍ୱନିବିଜ୍ଞାନର ବ୍ୟାବହାରିକ ପ୍ରୟୋଗ

## ଗୋଲୋକବିହାରୀ ଧଳ

ଧ୍ୱନିବିଜ୍ଞାନ କହିଲେ ପାଠୁଆ ଲୋକେ ଯେ ଆଜି ନ ବୁଝନ୍ତି, ଏମିତି ନୁହେଁ । କିନ୍ତୁ ଇତିହାସ, ଭୂଗୋଳ, ଫିଜିକ୍ସ, କେମିଷ୍ଟ୍ରି କହିଲେ ସାଧାରଣ ପାଠୁଆ ଯେମିତି ବୁଝନ୍ତି, ଧ୍ୱନିବିଜ୍ଞାନ କହିଲେ ସେମିତି ବୁଝନ୍ତି ନାହିଁ, ଏଥିରେ କୌଣସି ସନ୍ଦେହ ନାହିଁ । ଏବେ ବି କେତେ ଲୋକ ପଚାରନ୍ତି - ଫୋନେଟିକ୍ସରେ ପରା ଉଚ୍ଚାରଣ ବିଚାର କରାଯାଏ ? ସମସ୍ତେ ତ ଅଳ୍ପ ବହୁତେ ଭାଷା ଉଚ୍ଚାରଣ କରନ୍ତି, ତା' ହେଲେ ସେଥିରେ ବିଶେଷ ପାଠ କ'ଣ ? ଅବଶ୍ୟ ଭାରତବର୍ଷରେ ଅନେକ ସ୍ଥାନରେ ବିଶ୍ୱବିଦ୍ୟାଳୟ ସ୍ତରରେ ଏମିତି ପୁରାତନ ମନୋଭାବ ଆଉ ନାହିଁ । ରକ୍‌ଫେଲର ଫାଉଣ୍ଡେସନ ଲକ୍ଷ ଲକ୍ଷ ଟଙ୍କା ଦେଇ ପୁନା, ଡେରାଡୁନ, ମହୀଶୁର ପ୍ରଭୃତି ବିଭିନ୍ନ ସ୍ଥାନରେ ସାମୟିକ ସ୍କୁଲମାନ କରି ଏହି ପୁରୁଣା ବାତାବରଣରେ ଅନେକ ପରିବର୍ତ୍ତନ ଆଣିଛନ୍ତି । ଭାଷାତତ୍ତ୍ୱ ପାଇଁ ଏବେ ଶ୍ରୀଯୁକ୍ତ ଦେଶମୁଖ୍ ମୁକ୍ତହସ୍ତରେ ଟଙ୍କା ବାଣ୍ଟିଛନ୍ତି । ବ୍ରିଟିଶ୍ କାଉନସିଲ ଏବେ ହାଇଦ୍ରାବାଦ୍‌ରେ ଇଂରାଜୀ ଶିକ୍ଷା ସ୍କୁଲ ଖୋଲିଛନ୍ତି । ସେଠି ମଧ ଧ୍ୱନି ବିଜ୍ଞାନର ଚର୍ଚ୍ଚା ହେଉଛି । ଆଜିବି ହଜାର ହଜାର ବର୍ଷ ତଳେ ପାଣିନି, ପତଞ୍ଜଳିଙ୍କ ପରି ମହାପୁରୁଷମାନେ ଧ୍ୱନିବିଜ୍ଞାନରେ ଯେଉଁ ଅସମ୍ଭବ କାର୍ଯ୍ୟ ସବୁ କରି ଯାଇଥିଲେ, ତା'ର ପଟାନ୍ତର ଏବେ ମଧ ନାହିଁ । କିନ୍ତୁ ପ୍ରାଚୀନମୁଖୀ ଆତ୍ମସନ୍ତୋଷ ଆଳସ୍ୟ ହିଁ ଆମର ଅବନତିର କାରଣ । ଆଶ୍ଚର୍ଯ୍ୟ ଲାଗେ ପାଶ୍ଚାତ୍ୟ ଦେଶମାନେ ଆଜି ଧ୍ୱନିବିଜ୍ଞାନରେ ଅଭୂତପୂର୍ବ ଅଗ୍ରଗତି କରି ଚାଲିଛନ୍ତି । ସବୁଠୁ ଲକ୍ଷ୍ୟକରିବାର ବଡ଼ ଜିନିଷ ହେଉଛି ସେମାନଙ୍କର ମିଳିତ ଚେଷ୍ଟା, ଯେଉଁଟା ଆମ ଦେଶରେ ସବୁଠୁ ଅଭାବ । ପାଶ୍ଚାତ୍ୟ ଦେଶମାନଙ୍କରେ ଧ୍ୱନିବିଜ୍ଞାନ ଏବେ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ହତା ପାର ହୋଇ ମିଲିଟାରୀ ଓ ଇଂଜିନିଅରି ବିଭାଗମାନଙ୍କରେ ପ୍ରବେଶ କଲାଣି । ବିଗତ ଯୁଦ୍ଧରେ ଧ୍ୱନି ଇଂଜିନିଅର ମାନଙ୍କର ଆବଶ୍ୟକତା ଏତେ ବଢ଼ି ଯାଇଛି ଯେ ଧ୍ୱନି ବିଶେଷଜ୍ଞ ଧ୍ୱନିଇଂଜିନିଅର, ଫିଜିସିଷ୍ଟ ଏବଂ ମିଲିଟାରୀ ଅଫିସରମାନେ ଏକାଠି କାମ କରିବାରେ ଲାଗିଛନ୍ତି । ମଣିଷର ମନ ସହିତ ଭାଷା ବିଶେଷ ଭାବରେ ସଂଯୁକ୍ତ

ହୋଇଥିବାରୁ ମନସ୍ତତ୍ତ୍ୱବିତ୍‌ମାନେ ମଧ୍ୟ ଧ୍ୱନିବିଜ୍ଞାନୀମାନଙ୍କ ସହିତ ହାତ ମିଳାଇ କାମ କରୁଛନ୍ତି । ଏହି ଦେଶର ଶହ ଶହ ଲୋକ ବିଲାତ ଆମେରିକା ଧାଇଁ ହିନ୍ଦୀ, ବଙ୍ଗଳା, ତେଲୁଗୁ, ତାମିଲ, ସଂସ୍କୃତରେ ଡିଗ୍ରୀ ଆଣୁଛନ୍ତି ଅଥଚ ଭାଷା ଓ ଧ୍ୱନିତତ୍ତ୍ୱ ଶିକ୍ଷା ଦେବାପାଇଁ ବିଲାତ ଆମେରିକାରୁ ଲୋକ ଡକାହୋଇ ଆସୁଛନ୍ତି । ଟ୍ରେନିଂ କଲେଜରେ ଫୋନେଟିକ୍ସ ଶିକ୍ଷା ଦେବାପାଇଁ ଆଜକୁ ପାଞ୍ଚବର୍ଷ ତଳେ ଏକ ସ୍କିମ ଦିଆଯାଇଥିଲା, କର୍ତ୍ତୃପକ୍ଷ ତାହାକୁ ସାଦରେ ଗ୍ରହଣ କରିଥିବା ସତ୍ତ୍ୱେ ସେ କୁଆଡ଼େ ଗଲା । ଅଥଚ ସେହିପରି ସ୍କିମ୍ କାର୍ଯ୍ୟକାରୀ କରିବା ପାଇଁ ଭାରତ ସରକାର ଏବେ ଆମେରିକାରୁ ଲୋକ ଆଣି ଭାରତର କେତେକ ପ୍ରଦେଶରେ ମଫସଲ ହାଇସ୍କୁଲମାନଙ୍କରେ ଫୋନେଟିକ୍ସ ଶିକ୍ଷା ଦେଉଛନ୍ତି । ଅବଶ୍ୟ ସେମାନେ ଓଡ଼ିଶାକୁ ଆସି ନାହାନ୍ତି । ଏବେ କଟକରେ ଇଂରାଜୀ ଶିକ୍ଷକମାନଙ୍କର ଏକ ସେମିନାର ହେଉଥିଲା । ସେଥିରେ Structural method ଶିକ୍ଷା ଦିଆଯାଉଥିଲା । ନୂତନ ଇଂରେଜି ବ୍ୟାକରଣ ଶିକ୍ଷା ଦିଆଯାଉଥିଲା । ଅଥଚ ଫୋନେଟିକ୍ସର କୌଣସି କାର୍ଯ୍ୟକ୍ରମ ନଥିଲା । ମଜା କଥା ହେଉଛି ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନୂଆମେଥଡ୍, ନୂଆ ବ୍ୟାକରଣ ବିନା ଫୋନେଟିକ୍ସର ସୃଷ୍ଟି ହୋଇପାରୁଛି । ଇଂରାଜୀରେ ପାଞ୍ଚଟି ସ୍ୱରଧ୍ୱନି ନଥାଇ ଏକୋଇଶିଟି ଅଛି ବୋଲି ଯଦି ନୂଆ ବ୍ୟାକରଣ କହେ, ଫୋନେଟିକ୍ସ ଛଡ଼ା ସେ ଅନ୍ୟ କେଉଁ ଭିତ୍ତିରେ କହିପାରିବ କଳ୍ପନା କରିବା ମୁସ୍କିଲ ।

ଆମ ଦେଶରେ ଭାଷା ଶିକ୍ଷାରେ ଧ୍ୱନିବିଜ୍ଞାନକୁ ସ୍ଥାନ ଦେବାର ଅନ୍ୟ ଏକ କାରଣ ହେଉଛି, କୌଣସି ଭାଷାରେ ଅଧ୍ୟୟନ କହିଲା ମାତ୍ରେ ଲୋକେ କେବଳ ସେହି ଭାଷାର ସାହିତ୍ୟର ଅଧ୍ୟୟନ ମନେ କରିଥାନ୍ତି ଧ୍ୱନିକଥା ମୋଟେ ବିଚାର କରି ନ ଥାନ୍ତି । ଭାଷା ଶିକ୍ଷାରେ ଆମେମାନେ ଏବେ ବି କାବ୍ୟ କବିତାର ଭାବ ଗ୍ରହଣ ଅବସ୍ଥାରେ ଅଛୁ । ବିଜ୍ଞାନର ବୌଦ୍ଧିକ ଚିନ୍ତା ଏଠାରୁ ବହୁଦୂରରେ ଅଛି । ଧ୍ୱନିବିଜ୍ଞାନ ଆମକୁ ଭାଷା ଅଧ୍ୟୟନର ବିଭିନ୍ନ ବିଭାଗରେ କିପରି ସାହାଯ୍ୟ କରିପାରିବ ତାହାର ଏକ ସଂକ୍ଷିପ୍ତ ବିବରଣୀ ଏହି ପ୍ରବନ୍ଧରେ ପ୍ରସ୍ତୁତ କରାଯାଇଛି ।

ଆଜିକାଲି ଯୁଗରେ ଯେଉଁ ବିଜ୍ଞାନ ଦୈନନ୍ଦିନ ଜୀବନରେ ଯେତେ ସହାୟକ ହୁଏ, ଲୋକେ ତାହାଦ୍ୱାରା ସେତିକି ଆକୃଷ୍ଟ ହୁଅନ୍ତି । ସେହି ଦୃଷ୍ଟିରୁ ଶିଖାଇବାକୁ ଭାଷାରେ ଫୋନେଟିକ୍ସ ଗୋଟାଏ ବିଶିଷ୍ଟ ବ୍ୟାବହାରିକ ବିଜ୍ଞାନ । ସେଥିରେ ଆମେମାନେ ନିମ୍ନଲିଖିତ ବିଷୟମାନଙ୍କରେ ସହାୟତା ଲାଭ କରିଥାଉ ।

କ- ବିଦେଶୀ ଭାଷା ଶିକ୍ଷା

ଖ- ଧ୍ୱନିସମ୍ବନ୍ଧରେ ଯାନ୍ତ୍ରିକ ଉପଯୋଗ

ଗ- ଲିଖନ ପ୍ରଣାଳୀ

ଘ- ବ୍ୟାକରଣ ଅଧ୍ୟୟନ

ଙ- ତୁଳନାତ୍ମକ ଓ ଐତିହାସିକ ଅଧ୍ୟୟନ

ଚ- ମାତୃଭାଷା ଅଧ୍ୟୟନ ଓ ସର୍ଭେ
ଛ- ପାରସ୍ପରିକ ସହିଷ୍ଣୁତା

ଉପରୋକ୍ତ ପ୍ରତ୍ୟେକ ବିଭାଗର ଧ୍ୱନିବିଜ୍ଞାନ କିପରି ସହାୟତା କରେ କହିବା ପୂର୍ବରୁ ଧ୍ୱନିବିଜ୍ଞାନରେ ଆମେ ମୁଖତ୍ୟଃ କ'ଣ ଶିଖୁ, ସେହି କଥା କହେ ।

ଧ୍ୱନିବିଜ୍ଞାନରେ ମନୁଷ୍ୟର କଣ୍ଠଯନ୍ତ୍ରରୁ ନିର୍ଗତ ଧ୍ୱନିମାନଙ୍କର ବିଚାର କରାଯାଇଥାଏ । ଏହି ଧ୍ୱନି ଦୁଇ ପ୍ରକାର ହୋଇପାରେ-ସାର୍ଥକ ଓ ନିରର୍ଥକ । ଯେଉଁ ଧ୍ୱନିମାନ ନେଇ ଭାବପ୍ରକାଶ କରାଯାଏ ସେଗୁଡ଼ିକ ନିରର୍ଥକ କୁହାଯାଏ । ହସିବା, କାଶିବା, ଛିଙ୍କିବା, ଚୁମାଦେବା, ଟାକଳା ଫୁଟାଇବା ନିରର୍ଥକ ଶ୍ରେଣୀର ଅନ୍ତର୍ଭୁକ୍ତ । ଏଗୁଡ଼ିକ ଭାଷାରେ ବ୍ୟବହୃତ ହେଉ ନ ଥିଲେ ମଧ୍ୟ ଧ୍ୱନିବିଜ୍ଞାନୀମାନେ ଏମାନଙ୍କର ତଥ୍ୟ ବିଷୟରେ ସଜାଗ ଥାନ୍ତି । କାରଣ କେତେକ ଭାଷାରେ ଏମିତି ଧ୍ୱନି ଅଛନ୍ତି ଯାହା ଏହି ନିରର୍ଥକ ଧ୍ୱନିମାନଙ୍କର ନିକଟତମ ଅଟନ୍ତି । ଡାନିସ୍ ଭାଷାରେ, ଲଣ୍ଡନର କକ୍‌ନି ଭାଷାରେ, ମୟୂରଭଞ୍ଜର ମୁଣ୍ଡାରୀ ଭାଷାରେ ଛୋଟ ଖାସ ଭଳି ଧ୍ୱନି ଅଛନ୍ତି । ଏବଂ ଆଫ୍ରିକାର ଅନେକ ଭାଷାରେ ମାଙ୍କଡ଼ ଖିଙ୍କାରିବା, ଆମ୍ବୁଲ ଚାଟିବା, ବଳଦ ଅଡ଼ାଇଲା ବେଳେ ଟାକଳା ଫୁଟାଇବା ପରି ଧ୍ୱନି ଅଛି । ସେହି ଧ୍ୱନିମାନଙ୍କୁ ଉଚ୍ଚାରଣ କରିବାକୁ ହେଲେ କେମିତି ସେଗୁଡ଼ିକ ସୃଷ୍ଟ ହେଉଛନ୍ତି ଜାଣିବା ଉଚିତ । ଆମର ଦୁଇଟି ଜିନିଷ ଶିଖିବା ଦରକାର (କ) ପ୍ରତ୍ୟେକ ଧ୍ୱନିକୁ ଠିକ ଭାବରେ ଶୁଣିପାରିବା ଓ (ଖ) ପ୍ରତ୍ୟେକ ଧ୍ୱନିକୁ ଯଥାବିଧି ଉଚ୍ଚାରଣ କରିପାରିବା ।

**(କ) ବିଦେଶୀ ଭାଷା ଶିକ୍ଷା :**

ଧ୍ୱନିବିଜ୍ଞାନକୁ ଯଦି କେହି ସବୁଠୁ ବେଶୀ ସାହାଯ୍ୟ କରିଥାଏ, ତେବେ ତାହା ହେଉଛି, ଦ୍ୱିତୀୟ ମହାଯୁଦ୍ଧ । ଯୁଦ୍ଧ ହେଲାମାତ୍ରେ ସୈନ୍ୟମାନଙ୍କୁ ପୃଥିବୀର ବିଭିନ୍ନ ସ୍ଥାନକୁ ଯିବାକୁ ହେଲା ଓ ସେହି ସେହି ସ୍ଥାନମାନଙ୍କର ଭାଷାଶିକ୍ଷା କରିବାକୁ ପଡ଼ିଲା । ଦୁଇ ତିନିମାସ ଭିତରେ ଯେକୌଣସି ଭାଷାକୁ କିପରି ଆୟତ୍ତ କରାଯିବ ସେଥିପାଇଁ ଭାଷାବିତ୍‌ମାନେ ଉପାୟ ସ୍ଥିର କଲେ । ଧ୍ୱନିବିଜ୍ଞାନ ସମ୍ମତ ପ୍ରଣାଳୀରେ ଜାପାନୀଠାରୁ ଆରମ୍ଭ କରି ହିନ୍ଦୁସ୍ତାନୀ ପର୍ଯ୍ୟନ୍ତ ଆମେରିକାରେ ଅନେକ ଭାଷାର ପୁସ୍ତକ ତିଆରି ହୋଇଥିଲା ଓ ମିଲଟାରୀ ବିଭାଗ ସେହି ପୁସ୍ତକମାନଙ୍କୁ ବ୍ୟବହାର କରିଥିଲେ ।

ଏହି ଭାଷା ଶିକ୍ଷା ଉପରେ UNESCO ଏବେ ଖୁବ୍‌ଜୋର ଦେଇଛନ୍ତି, କାରଣ ସେଠି ବହୁ ଭାଷାର ପ୍ରତିନିଧିଙ୍କୁ କାମ କରିବାକୁ ହୁଏ । ଭାରତରେ ଦିଲ୍ଲୀ ଆଇ.ଏ.ଏସ୍.-ସ୍କୁଲରେ ଭାରତର ସମସ୍ତ ପ୍ରଧାନ ପ୍ରଧାନ ଭାଷା ପଢ଼ାଯାଏ । ଏକଭାଷୀ ଅନ୍ୟ ଏକ ଭାଷା ପଢ଼ାଇବାରେ ବିଶେଷ ଅସୁବିଧା ହେବାରୁ ସେମାନେ ଧ୍ୱନିବିଜ୍ଞାନକୁ ତାଙ୍କ ଟ୍ରେନିଂ ପ୍ରୋଗ୍ରାମ୍ ଭିତରେ ଏବେ ଗ୍ରହଣ କରିଛନ୍ତି । ଭାଷା ଶିକ୍ଷା ପାଇଁ କାହିଁକି ଧ୍ୱନି ବିଜ୍ଞାନ ଦରକାର ହୁଏ ସେଥିରୁ ଗୋଟିଏ ଦୁଇଟା କେବଳ ଉଦାହରଣ ଦିଏ-

ଗୋଟିଏ ଛୋଟ ପିଲାକୁ ଆପଣ ଇଂରାଜୀ ପଢ଼ାଉଛନ୍ତି । ବର୍ତ୍ତମାନ ନିମ୍ନଲିଖିତ

କେତେକ ଯୋଡ଼ିର ଉଚ୍ଚାରଣ ତଫାତ୍ ଆପଣଙ୍କୁ ଶିଖାଇବାକୁ ହେବ । ଫୋନେଟିକ୍ସ ବ୍ୟତୀତ ଏଥିପାଇଁ ଆଉ କୌଣସି ଉପାୟ ଅଛି କି ? ଆପଣ ଭାବନ୍ତୁ ।

So-Show

Fish-Fast

Stir-Star

Sec-She

Sign-Shine

ଗୋଟିଏ ସ୍କୁଲର ପିଲାଙ୍କୁ ପରୀକ୍ଷା କରି ଦେଖିଲେ ସାଧାରଣ ଓଡ଼ିଆ ଷ୍ଟାଇଲ ଉଚ୍ଚାରଣରେ ଉପରୋକ୍ତ ପ୍ରତି ଦୁଇଟି ମଧ୍ୟରେ ଥିବା ତଫାତ୍ ଧରିବା କଷ୍ଟ ।

ହିନ୍ଦୀ-ଓଡ଼ିଆ ଶିକ୍ଷାରୁ ଗୋଟିଏ ଉଦାହରଣ ନିଅନ୍ତୁ । ହିନ୍ଦୀ ପିଲାଙ୍କୁ ଓଡ଼ିଆ ପଢ଼ାଉଥିବା ଜଣେ ଶିକ୍ଷକ ଥରେ ମୋତେ ପଚାରିଥିଲେ ହିନ୍ଦୀ ପିଲାମାନେ 'ଳ' ଧ୍ୱନି ଉଚ୍ଚାରଣ କରିପାରୁଛନ୍ତି କିନ୍ତୁ 'ଳ' ଟା କାହିଁକି ପାରୁନାହାନ୍ତି । ଏଭଳି କ୍ଷେତ୍ରରେ ଚିତ୍ରକାଟି ବୁଝାଇବା ହିଁ ସବୁଠୁ ଶ୍ରେୟ । ଏମିତି ଅନେକ ପ୍ରଶ୍ନ ଆସେ । ଇଂରାଜୀ ଲୋକଙ୍କୁ 'କକା' ପଢ଼ାଇଲେ ସେମାନେ 'ଖକା' କହନ୍ତି କାହିଁକି ? ତେଲୁଗୁ ଏବଂ ମରାଠୀମାନଙ୍କର ଦନ୍ତ୍ୟ ଧ୍ୱନି ଆମେ ଉଚ୍ଚାରଣ କରିପାରୁ ନାହିଁ କାହିଁକି ? ଭାଷା ଶିକ୍ଷା କେବଳ ଏହିପରି ସାମାନ୍ୟ ସାମାନ୍ୟ ପ୍ରଶ୍ନରେ ଶେଷ ନ ହୋଇ ବହୁ ଜଟିଳ ସମସ୍ୟାର ସମ୍ମୁଖୀନ ହୁଏ କିନ୍ତୁ ତା'ର ସବିଶେଷ ବିବରଣ ପାଇଁ ଏଠି ସ୍ଥାନ ନାହିଁ ।

ଏହିଭଳି ଏକ ପ୍ରଶ୍ନ ଗୋଟିଏ ଶିକ୍ଷା ପତ୍ରିକାରେ ଦେଖନ୍ତୁ । ସେଥିରେ ଜଣେ ଶିକ୍ଷକ ଇଂରାଜୀ ଶିକ୍ଷା ବିଷୟରେ ଲେଖିବାକୁ ଯାଇ କହିଛନ୍ତି ଓଡ଼ିଆ କଲମ ଶବ୍ଦରେ ପ୍ରତି ଅକ୍ଷରକୁ ଯେମିତି ଉଚ୍ଚାରଣ କରାଯାଏ ଇଂରାଜୀ penର ପ୍ରତ୍ୟେକ ଅକ୍ଷରକୁ ସେମିତି ଉଚ୍ଚାରଣ କରାଯାଏ ନାହିଁ । ଧ୍ୱନିତତ୍ତ୍ୱରେ କଲମ ଭଳି ଗୋଟିଏ ତିନି ଅକ୍ଷର ବିଶିଷ୍ଟ ଶବ୍ଦକୁ pen ଭଳି ଗୋଟିଏ ଏକାକ୍ଷର (monosyllabic) ଶବ୍ଦକୁ ତୁଳନା କରାଯାଏ ନାହିଁ । ତା ଛଡ଼ା 'Pen' ଶବ୍ଦରେ P,e,n, ତିନୋଟି ଅକ୍ଷରରୁ କେଉଁ ଅକ୍ଷରର ଧ୍ୱନି ଉଚ୍ଚାରଣ କରାଯାଉଛି ବୁଝିବା ମୁସ୍କିଲ । ସୁତରାଂ ଧ୍ୱନିତତ୍ତ୍ୱ ବିଷୟରେ ଯଥେଷ୍ଟ ଜ୍ଞାନ ନ ଥିଲେ ଅନ୍ୟକୁ ଶିଖାଇବାକୁ ଯାଇ ନ ଶିଖାଇବା ସାର ହେବ । କହିବା ବାହୁଲ୍ୟ ଯେ କୌଣସି ଇତର ଭାଷା ଶିକ୍ଷାର ମୂଳମନ୍ତ୍ର ହିଁ ଧ୍ୱନିବିଜ୍ଞାନ । ଏହା ବ୍ୟତୀତ କାମ ଚାଲୁ ଶିକ୍ଷା ହୋଇପାରେ, କିନ୍ତୁ ସମସ୍ୟାର ପୂର୍ଣ୍ଣ ସମାଧାନ ହେବନାହିଁ ।

**(ଖ) ଧ୍ୱନି ସମ୍ବନ୍ଧରେ ଯାନ୍ତ୍ରିକ ଉପଯୋଗ :**

ଭାଷା ଶିକ୍ଷାକୁ ସରଳ କରିବାପାଇଁ ଏବେ ଧ୍ୱନିବିଜ୍ଞାନରେ ବହୁ ଯନ୍ତ୍ରାଦି ବ୍ୟବହାର କରାଯାଏ । ଧ୍ୱନି ବିଜ୍ଞାନର ଆକୁଷ୍ଟିକ କିମ୍ବା ଶ୍ରୌତ ବିଭାଗ ସମ୍ପୂର୍ଣ୍ଣରୂପେ ମେସିନ୍ ଉପରେ

ନିର୍ଭର କରେ । ଏବେ, ସ୍ପିଚ୍ ଷ୍ଟ୍ରେଚର, ଫର୍ମାଣ୍ଟଗ୍ରାଫିକ ମେସିନ୍, ସ୍ପେକ୍ଟୋଗ୍ରାଫ୍ ପ୍ରଭୃତି ଏତେ ନୂଆ ମେସିନ୍ ବାହାରିଲାଣି ଯେ ସେମାନଙ୍କ ନିକଟରେ ଅସିଲୋଗ୍ରାଫ୍, ପାଲେଟୋଗ୍ରାଫ୍ କାଇମୋଗ୍ରାଫ ପ୍ରଭୃତି ପୁରୁଣା ହୋଇଗଲାଣି । ଅବଶ୍ୟ ତାଙ୍କ ପୁରୁଣା ମେସିନ ମଧ୍ୟ ଆମ ଦେଶରେ ଏବେ ପର୍ଯ୍ୟନ୍ତ କାମରେ ଲାଗିନାହିଁ । ଲେଖକ ଲଣ୍ଡନ ଗବେଷଣାଗାରରେ ଓଡ଼ିଆ ଧ୍ୱନି ପରୀକ୍ଷା ସମୟରେ ଯେଉଁ କେତେକ ଚିତ୍ର ଉଠାଇଥିଲା ସେଥିରୁ ଗୋଟାଏ ଦୁଇଟିର ନମୁନା କେବଳ ଦିଆଯାଇଛି । ପାଲେଟୋଗ୍ରାଫ୍‌ରେ ପାଟିର ଉପର ପାଖରେ ଗୋଟିଏ ଧାତୁ ନିର୍ମିତ ହାଲୁକା କୃତ୍ରିମ ପାଲେଟ ଲଗାଇ ଜିଭର ଗତିବିଧି ଦେଖାଯାଏ ଏବଂ କାଇମୋଗ୍ରାଫରେ କଣ୍ଠଜାତ କମ୍ପନ ପରୀକ୍ଷା କରାଯାଏ । ଦୁଇଟି ଭାଷାର ଧ୍ୱନି ତୁଳନା କଲାବେଳେ ଏହି ପ୍ରକାର ପରୀକ୍ଷା ଦରକାର ହୁଏ । ଧ୍ୱନି ଓଡ଼ିଆରେ ଆମେ 'ଠ' କହୁଛେ ଏବଂ ଇଂରାଜୀ 'tin' କୁ ମଧ୍ୟ 'ଠିନ୍' ବୋଲି କହୁଛେ । ଏହି ଦୁଇ 'ଠ' ଭିତରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ମାତ୍ର କାନଦ୍ୱାରା ଏହି ତଫାତ୍‌କୁ ଧରିପାରିବା ସହଜ ନୁହେଁ ବୋଲି ଜିହ୍ୱାର ପରିସ୍ଥିତି ଦେଖି ଆମେ ତାହା ଶିଖି ପାରିବା ।

**(ଗ) ଲିଖନ ପ୍ରଣାଳୀ :**

ଦୁନିଆରେ ଯେତେ ଭାଷାର ଲିପିଅଛି, ସେ ସମସ୍ତ ଲିପି ଧ୍ୱନିତତ୍ତ୍ୱଦ୍ୱାରା ସ୍ଥିରୀକୃତ ହୋଇଛି । ଭାଷାର ପ୍ରାରମ୍ଭ ସମୟରେ ଧ୍ୱନି ଓ ଲିପି ମଧ୍ୟରେ ସାମଞ୍ଜସ୍ୟ ଥାଏ, କିନ୍ତୁ କାଳକ୍ରମେ ଉଚ୍ଚାରଣ ଯେତେବେଳେ ପରିବର୍ତ୍ତିତ ହୋଇ ଚାଲିଥାଏ ଅଥଚ ଲିପି ପୂର୍ବପରି ରହିଯାଏ, ସେତେବେଳେ ଲେଖିବା ପ୍ରଣାଳୀରେ ବିଭ୍ରାଟ ସୃଷ୍ଟିହୁଏ । ବନାନ ଦେଖି ଶବ୍ଦକୁ ଉଚ୍ଚାରଣ କରିବା ସହଜ ହୁଏନାହିଁ । ଏହି ଦୃଷ୍ଟିରୁ ବିଚାର କଲେ ଇଂରାଜୀ ବନାନ ସବୁଠାରୁ ଅଧିକ ବିଭ୍ରାଟ-ପୂର୍ଣ୍ଣ । ରାଣୀ ଏଲିଜାବେଥ୍‌ଙ୍କ ସମୟରେ ଏହି ବନାନ ସୁଧାରପାଇଁ ପ୍ରଥମେ ଏକ ଚେଷ୍ଟା ହୋଇଥିଲା । କିନ୍ତୁ ରାଣୀଙ୍କର ପ୍ରେମ ଗୋଳମାଳ ନେଇ ତାହା ପୁଣି ବନ୍ଦ ହୋଇଗଲା । ସେହିଦିନୁ ଇଂରାଜୀ ଜାତି ତା ବନାନ ପ୍ରଣାଳୀ ପାଇଁ ମୂଲ୍ୟ ଦେଇ ଆସୁଛି । ସ୍ପେନିସ୍ ପିଲାଏ ତାଙ୍କ ଭାଷାରେ ପାଞ୍ଚବର୍ଷରେ ଯାହା ଶିଖନ୍ତି, ଇଂରେଜ ପିଲାଏ ଦଶବର୍ଷରେ ଶିଖନ୍ତି କେବଳ ତାଙ୍କ ଖରାପ ବନାନ ପାଇଁ । ଇଂରାଜୀ କଥା ସମସ୍ତେ ଏତେ ଜାଣନ୍ତି ଯେ ସେ ବିଷୟରେ ଉଦାହରଣ ଦେବା ଅନାବଶ୍ୟକ । ଇଂରାଜୀ ବନାନରୁ କୌଣସି କଥା ସ୍ଥିର ଭାବରେ ବୁଝି ପାରିବା କେମିତି କଷ୍ଟ, ତା କଟକ ଢେଙ୍କାନାଳ ଲାଇନରେ ଗୋଟିଏ ଷ୍ଟେସନ ନାଁ ଦେଖି ଜାଣିପାରିବେ । ଶାଳଗାଁର ଇଂରାଜୀ ନାଁ ଏବଂ ତାହାର ସମ୍ଭାବ୍ୟ ଉଚ୍ଚାରଣ ଦେଖନ୍ତୁ ।

ସଲାଗାଁ

Salagan-ସାଲଗାଁ

ସଲଗାଁ

ସଲଗନ୍
ସଲଗାନ୍
ସାଲାଗାନ୍ ଇତ୍ୟାଦି ।

ସବୁଠୁ ମଜା କଥା ହେଉଛି ଯେତେ ଚେଷ୍ଟାକଲେ ସେଥିରୁ 'ଳ' ଧ୍ୱନି ବାହାରିପାରିବ ନାହିଁ, ଯାହାକିଛି ବାହାରିବ ସବୁ 'ଲ' । ବିଭିନ୍ନ ଭାଷାରୁ ଏମିତି ହଜାର ଉଦାହରଣ ଦିଆଯାଇପାରେ କିନ୍ତୁ ଏଠାରେ ଅନାବଶ୍ୟକ ।

ବନାନ ଦୃଷ୍ଟିରୁ ଭାରତୀୟ ଭାଷାମାନେ ଅଧିକାଂଶରେ ବିଜ୍ଞାନ ସମ୍ମତ । ମାତ୍ର କେହି ଶତ ପ୍ରତିଶତ ବିଜ୍ଞାନସମ୍ମତ ନୁହନ୍ତି । ହିନ୍ଦୀର ଲେଖା ଓ ଉଚ୍ଚାରଣର ଗୋଟିଏ ଦୁଇଟି ଉଦାହରଣ ଦେଖନ୍ତୁ ।

| | |
|---|---|
| ଲେଖା | ଉଚ୍ଚାରଣ |
| ଛଃ | ଛେ |
| କହନା | କେହନା (ଅଗ୍ରାଅଞ୍ଚଳର) |
| ଭାଁତି | ଭାଁତ୍ |

ଓଡ଼ିଆ ଭାଷାରେ କେତେକ ଧ୍ୱନିପାଇଁ ଅଧିକ ଅକ୍ଷର ଥିବାରୁ ବନାନ ଅଶୁଦ୍ଧି ବହୁତ ହୁଏ । ବି.ଏ. ପିଲାଙ୍କ ପରୀକ୍ଷା ଖାତାରୁ ଯେଉଁ ଭୁଲ ଦେଖିଥିଲି, ସେଥିରୁ ଅତି ସାଧାରଣ ଗୋଟାଏ ଦୁଇଟି ଉଦାହରଣ ଦିଆଯାଇଛି ।

| | |
|---|---|
| ଯିବା | ଜିବା |
| ବୀର | ବିର |
| ଅବଶ୍ୟମ୍ଭାବୀ | ଅବଶ୍ୟମ୍ଭାବି |

ଅନେକ ବର୍ଷ ତଳେ ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ମିଶ୍ର ଅନୁନାସିକ ଯୁକ୍ତବର୍ଣ୍ଣମାନଙ୍କର ପରିବର୍ତ୍ତରେ ଅନୁସ୍ୱାର ଚଳାଇଥିଲେ । ଡଃ ମାୟାଧର ମାନସିଂହ ତାଙ୍କର ଗୋଟିଏ ବହିରେ ଗୋଟିଏ ମାତ୍ର ଦନ୍ତ୍ୟ ସ ଲେଖିଥିଲେ । ଆଧୁନିକ ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ବିଚାରକଲେ ଲିଖନ ପ୍ରଣାଳୀ ଆହୁରି ସରଳ ହୋଇପାରିବ । ସେଥିପାଇଁ ବୈଜ୍ଞାନିକ ଦୃଷ୍ଟିକୋଣ ସହିତ ସହିଷ୍ଣୁତା ଦରକାର । ବର୍ତ୍ତମାନ ଗ୍ରାମମାନଙ୍କରେ ଯେଉଁ ପ୍ରୌଢ଼ଶିକ୍ଷା ଦିଆଯାଉଛି ଏବଂ ଆଦିବାସୀମାନଙ୍କୁ ସାକ୍ଷର କରାଯାଉଛି ତାହା ଯଥେଷ୍ଟ କମ ସମୟରେ କରାଯାଇ ପାରିବ । କୌଣସି ବନାନ ପଦ୍ଧତିର ଅସାମଞ୍ଜସ୍ୟ ଦେଖିବାପାଇଁ ଅଳ୍ପପାଠୁଆ ପ୍ରୌଢ଼ ତଥା ଛୋଟ ପିଲାଙ୍କର ବନାନ ପରୀକ୍ଷା ସବୁଠୁ ଅଧିକ ଉପାଦେୟ ।

ଆଜି ଯୁଗରେ ଅତି ସାମାନ୍ୟ ସାମାନ୍ୟ କଥାପାଇଁ ମଧ୍ୟ ପ୍ରବୀଣ ଲୋକମାନଙ୍କର ଆବଶ୍ୟକତା ପଡୁଛି । କଲିକତାରେ ଥିବା ଜାତୀୟ ଲାଇବ୍ରେରୀ ବର୍ତ୍ତମାନ ସବୁ ଭାଷାରେ ଲିଖିତ ପୁସ୍ତକମାନଙ୍କର କ୍ୟାଲେଣ୍ଡର ପ୍ରସ୍ତୁତ କରୁଛନ୍ତି । ହିନ୍ଦୀ, ସଂସ୍କୃତ, ଓଡ଼ିଆ, ବଙ୍ଗଳା

ପ୍ରଭୃତି ସବୁ ଭାଷାରେ ବହିକୁ ଇଂରାଜୀରେ ଲେଖିଲାବେଳେ ବିଭିନ୍ନ ଭାଷାର ଧ୍ୱନି ଜ୍ଞାନ ନ ଥିଲେ କେମିତି ଅସୁବିଧା ହୁଏ ସେଠିକା ଲାଇବ୍ରେରୀ ଚାଳକମାନଙ୍କଠାରୁ ଶୁଣିବାକୁ ପାଇଥିଲି । ଓଡ଼ିଆ 'କଳିଙ୍ଗ ବିଜୟ' ଶବ୍ଦରେ ଥିବା 'ବ' ପାଇଁ v ଲେଖିବାକୁ ହେବ କିମ୍ବା 'b' ଲେଖିବାକୁ ହେବ, ସେହି ପ୍ରଶ୍ନର ସମାଧାନ ପାଇଁ ଡକ୍ଟର ସୁନୀତି କୁମାର ଚାଟର୍ଜୀଙ୍କୁ ଡକା ଯାଇଥିଲା ବୋଲି ଶୁଣିଲି ।

**(ଘ) ବ୍ୟାକରଣ ଅଧ୍ୟୟନ :**

ବ୍ୟାକରଣ ଭାଷାର ବର୍ଣ୍ଣନାତ୍ମକ ଅଧ୍ୟୟନ । ଏହି ଅଧ୍ୟୟନରେ ପୃଥିବୀରେ ପାଣିନୀଙ୍କଠାରୁ ଅଧିକ କାର୍ଯ୍ୟ ଏପର୍ଯ୍ୟନ୍ତ କେହି କରିନାହାନ୍ତି, କିମ୍ବା ଏ ଯୁଗରେ ଜଣେ କେହି ଏତେ କରିପାରିବେ ବୋଲି ଭାଷାବିତ୍‌ମାନଙ୍କ ଆଶାନାହିଁ । କିନ୍ତୁ ଦୁର୍ଭାଗ୍ୟବଶତଃ ବ୍ୟାକରଣ ରାଜ୍ୟରେ ପୃଥିବୀରେ ଏଭଳି ପରମ୍ପରା ସୃଷ୍ଟି ହୋଇଯାଇଛି ଯେ ବର୍ତ୍ତମାନ ତାଙ୍କୁ ଭାଙ୍ଗି ନୂଆ ଗଢ଼ିବାପାଇଁ ନୂଆ ଧର୍ମ ପ୍ରଚାର କଲାପରି କାମ କରିବାକୁ ପଡୁଛି । ଇଉରୋପର ସମସ୍ତ ବ୍ୟାକରଣ ଯେମିତି ଗ୍ରୀକ୍ ପଦ୍ଧତି ଉପରେ ନିର୍ଭର କରୁଛି, ଭାରତର ସମସ୍ତ ବ୍ୟାକରଣ ସେମିତି ସଂସ୍କୃତ ଉପରେ ନିର୍ଭର କରୁଛି । କେବଳ ତ ନିର୍ଭର ନୁହେଁ ଆଧୁନିକ ଭାଷା ବିଷୟରେ ସମାଧାନ କରିବା ପାଇଁ ସଂସ୍କୃତ ବ୍ୟାକରଣକୁ ଖଟାହେଉଛି । ଏବେ ଯେମିତି ଇଂଲଣ୍ଡରେ Nesfield ବ୍ୟାକରଣକୁ ପଛରେ ପକାଇ Jesperson ବ୍ୟାକରଣ ଦେଖାଯାଉଛି, ସେମିତି ଆଧୁନିକ ଧ୍ୱନିବିଜ୍ଞାନ ରୀତିରେ ସମସ୍ତ ଭାରତୀୟ ଭାଷାର ବ୍ୟାକରଣକୁ ସଂମ୍ପୂର୍ଣ୍ଣ ନୂତନ ଢଙ୍ଗରେ ଗଢ଼ିବାକୁ ହେବ । ତାହା ସଂସ୍କୃତ ଉପରେ ନିର୍ଭର ନ କରି ଲୋକମାନଙ୍କର କଥିତ ଭାଷା ଉପରେ ନିର୍ଭର କରିବ । ଆଧୁନିକ ବ୍ୟାକରଣ ବିଷୟରେ ଗୋଟିଏ ଦୁଇଟି ଉଦାହରଣ ଦେଲେ ଯଥେଷ୍ଟ । ଅକ୍ଷରକୁ ଦେଖି ଆମେ ସାଧାରଣତଃ କହିଥାଉ ଇଂରାଜୀରେ ପାଞ୍ଚଟି ସ୍ୱର ଅଛି । ପ୍ରକୃତରେ ସେଥିରେ ୨୧ଟି ସ୍ୱର ଅଛି । ଆମେରିକାନ ଇଂରାଜୀରେ ୨୪ଟି ସ୍ୱର ଅଛି । ସ୍ୱର୍ଗୀୟ ଗୋପୀନାଥ ନନ୍ଦ ମହୋଦୟଙ୍କର ଯେଉଁ 'ଓଡ଼ିଆ ଭାଷାତତ୍ତ୍ୱ' ବହି ଏମ୍.ଏ କ୍ଲାସରେ ପଢ଼ାଯାଏ ସେଥିରେ ଅନେକ ସ୍ଥଳରେ ପରିବର୍ତ୍ତନ ନ ହେଲେ ଆଧୁନିକ ଦୃଷ୍ଟିକୋଣରୁ ତାକୁ ବୁଝିବା ସହଜ ନୁହେଁ । ଉଦାହରଣସ୍ୱରୂପ ଗୋଟିଏ ଜାଗାରେ ସେ କହିଛନ୍ତି- ଅ, ଇ, ଉ.... ଉଚ୍ଚାରଣ କଲାବେଳେ ମୁଖଯନ୍ତ୍ର ବିଦାର୍ଯ୍ୟମାଣ ପ୍ରାୟ ବିସ୍ତୃତ ହୁଏ ବୋଲି ଏଗୁଡ଼ିକ ଦୀର୍ଘ । ଏଠାରେ 'ମୁଖଯନ୍ତ୍ର' ଓ 'ବିଦାର୍ଯ୍ୟମାଣ ପ୍ରାୟ' କହିଲେ ତା'ର ସଠିକ ଅର୍ଥ ବୁଝିବା ମୁସ୍କିଲ । ତେଣୁ ଆଧୁନିକ ଛାତ୍ର ଏହା ଅଧ୍ୟୟନ କଲାବେଳେ ସାବଧାନତାର ସହିତ ଦେଖିବେ । ଆଉ ଗୋଟିଏ ସ୍ଥଳରେ 'ହ' ଅକ୍ଷର ଉଚ୍ଚାରଣରେ ଆଗ 'ହ' କି ଆଗ 'ନ' ଉଚ୍ଚାରଣ ହେବ ସେହି ବିଷୟରେ ସେ ଯେଉଁ ଯୁକ୍ତି କରିଛନ୍ତି ସେହି ଯୁକ୍ତିକୁ ଲେଖକ ଯାନ୍ତ୍ରିକ ପରୀକ୍ଷାଦ୍ୱାରା ଅନ୍ୟଥା ପ୍ରମାଣ କରିଛି ।

କେବଳ ଆମ ଏଠି ନୁହେଁ, ସାରା ଭାରତରେ ଯେତେ ସ୍ଥାନରେ ଏମ୍.ଏ.ରେ ଭାଷାତତ୍ତ୍ୱ ଅଧ୍ୟୟନ କରାଯାଏ, ସେଠି ଏହି ଧ୍ୱନିବିଚାରକୁ ସାଧାରଣତଃ ବିଚାର କରାଯାଇ ନ ଥାଏ ।

**(ଡ) ତୁଳନାତ୍ମକ ଓ ଐତିହାସିକ ଅଧ୍ୟୟନ :**

ଆଧୁନିକ ଧ୍ୱନିବିଜ୍ଞାନ ଓ ଭାଷାତତ୍ତ୍ୱ ଶିକ୍ଷା ନ ଥିବାରୁ ଭାରତବର୍ଷରେ ହିନ୍ଦୀ, ସଂସ୍କୃତ, ଓଡ଼ିଆ, ବଙ୍ଗଳା, ଇଂରାଜୀ ପ୍ରଭୃତି ବିଷୟରେ ଏମ୍.ଏ ସ୍ତରରେ ତୁଳନାତ୍ମକ ଭାଷାତତ୍ତ୍ୱ ନାମରେ ଯେଉଁ ପତ୍ରଟି ପଢ଼ାଯାଏ ତାହା କିପରି ବ୍ୟର୍ଥ ନିମ୍ନ କେତେ ପଂକ୍ତିରୁ ଦେଖନ୍ତୁ ।

It may be considered a fair apprisal of the situation to say that what little is taught under the name of comparative philology in a typical Indian University is antiquated and bears no relation to the more productive and useful aspects of the subject...

For lack of good background in General Linguistics, its value for better understanding of a particular language is also doubtful. It is out of date and lags far behind the present state of even Historical Linguistics.

The courses are out of date and show no practical utility.

ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେବ ଯେ ଆମ ବିଶ୍ୱବିଦ୍ୟାଳୟମାନଙ୍କରେ ଭାଷା ବିଷୟମାନଙ୍କରେ ଯେଉଁ ତଥାକଥିତ ଭାଷାତତ୍ତ୍ୱ ପଢ଼ାଯାଏ, ତାହା ଅକାରଣ କହିଲେ ଅତ୍ୟୁକ୍ତି ହେବନାହିଁ । ସେହି ପତ୍ରରେ ଶହେରୁ ସତୁରୀ ପାଇଥିବା ଛାତ୍ରଙ୍କୁ ଲିଙ୍ଗୁଇଷ୍ଟିକସ୍‌ର ମାନେ ପର୍ଯ୍ୟନ୍ତ ଆସେ ନାହିଁ । ଗୋଟିଏ ଭାଷାରେ ସଘୋଷ ଅଘୋଷ ଭିତରେ ତଫାତ୍ ପଚାରିଲେ କହିପାରନ୍ତି ନାହିଁ, ଅଥଚ ମାଷ୍ଟ୍ରଙ୍କ ପୁରୁଣା ନୋଟ ବହିରୁ ଗ୍ରୀମ୍‌ସ ଲ, ଭର୍ଣ୍ଣରସ୍ ଲ ବାନ୍ତି କରି ପାସ୍ କରିଥାନ୍ତି । ଉପରୋକ୍ତ ଦୁଇଟି ଲ କେବଳ ଧ୍ୱନିତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଅଥଚ ସେହି ତଥ୍ୟ ବିଷୟରେ ଅଜ୍ଞ ଥାଇ ଛାତ୍ର କଲେଜ କ୍ଲାସରେ କେଇଟା କଥା ଘୋଷିଦେଇ ପାରି ହୋଇଯାନ୍ତି । ସେଇଥିପାଇଁ ଶହ ଶହ ବର୍ଷ ଧରି ଭାଷା ପଢ଼ା ହୋଇ ଆସିଲେ ମଧ୍ୟ ଭାଷାତତ୍ତ୍ୱ ପଢ଼ା ହୋଇନି ଏବଂ ଭାଷା ଶିକ୍ଷକମାନେ ବରାବର ଭାଷାତାତ୍ତ୍ୱିକ ଶିକ୍ଷା ପ୍ରତି ବିତୃଷ୍ଣା ପ୍ରଦର୍ଶନ କରି ଆସିଛନ୍ତି ।

**(ଢ) ମାତୃଭାଷା ଅଧ୍ୟୟନ ଓ ସର୍ଭେ :**

ମାତୃଭାଷା ଅଧ୍ୟୟନ କହିଲେ ଅନେକ ଲୋକ କେବଳ ଅର୍ଥନାଶ ବୋଲି ମନେ କରନ୍ତି । କିନ୍ତୁ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ମାତୃଭାଷାରେ ଲିଖିତ ସାହିତ୍ୟର ଅଧ୍ୟୟନ ହେଉଥିଲେ ମଧ୍ୟ ମାତୃଭାଷାର ଭାଷାତାତ୍ତ୍ୱିକ ଅଂଶ ପ୍ରତି ଆଜିପର୍ଯ୍ୟନ୍ତ ବିଶେଷ ଦୃଷ୍ଟି ଦିଆଯାଇନାହିଁ । ଏବେ ଆରମ୍ଭ ମାତ୍ର ହେଉଛି । ଭାଷାତତ୍ତ୍ୱବିତ୍‌ମାନଙ୍କ ମତରେ ଜଣେ ଲୋକ ତାଙ୍କ ମାତୃଭାଷାର ତତ୍ତ୍ୱ ବିଷୟରେ ସବୁଠାରୁ ଅଧିକ ଅଜ୍ଞ । କିନ୍ତୁ ସାଧାରଣ ଲୋକେ

ଭାବନ୍ତି ତାଙ୍କ ମାତୃଭାଷା ବିଷୟରେ ସେ ଅଧିକ ଜାଣନ୍ତି । ବାହାର ସଂସାର ନ ଦେଖିଲେ ନିଜ ସଂସାରର ସ୍ଥାନ କେଉଁଠି ବୁଝିବା ଯେମିତି ଅସମ୍ଭବ, ସେମିତି ଅନ୍ୟ ଭାଷାମାନଙ୍କର ଧ୍ୱନିତତ୍ତ୍ୱ ଅଧ୍ୟୟନ ନ କଲା ପର୍ଯ୍ୟନ୍ତ ଭାଷାର ଭିତିରି ତତ୍ତ୍ୱକଥା ବିଚାର କରିବାର କଷ୍ଟକର । ଆମେ ଅନେକପ୍ରକାର ଧ୍ୱନି ଶୁଣି ଭାବୁ, ଆମ ଭାଷାରେ ଏ ଧ୍ୱନି ବୋଧହୁଏ ନାହିଁ । ଅଥଚ ଧ୍ୱନିତତ୍ତ୍ୱ ସମ୍ପର୍କରେ ଟିକିଏ ସଚେତ ହେଲେ ଦେଖାଯିବ ସେ ଧ୍ୱନି ଆମର ଅଛି । ଜର୍ମାନୀରେ ଘୋଡ଼ାକୁ ଚଲାଇଲା ବେଳେ ଏକପ୍ରକାର ଦ୍ୱୟୋଷ୍ଠ୍ୟ ସଂଘର୍ଷୀ ଧ୍ୱନି କରାଯାଇଥାଏ । ଭାଷାତତ୍ତ୍ୱ ବହିରେ ଜର୍ମାନୀ ଭାଷା କଥା ଉଲ୍ଲେଖ ଅଛି; ହୁଏତ ଆମ ଭାଷାରେ ଏ ଧ୍ୱନି ଅଛିକି ନାହିଁ ମୁଁ ଜାଣି ନ ଥିଲି । ହଠାତ୍ ଦିନେ ଚିଲିକା କୂଳସ୍ଥ ବାଲୁଗାଁରେ ବୁଲୁ ବୁଲୁ କେତେକ ଶଗଡ଼ିଆ ପଣ୍ଡା ଅଡ଼ାଇଲା ବେଳେ ସେହି ଧ୍ୱନି କରୁଥିବାର ଶୁଣିବାକୁ ପାଇ ଆଶ୍ଚର୍ଯ୍ୟ ହେଲି । ଓଡ଼ିଶାରେ ଏମିତି ଯଥେଷ୍ଟ ସ୍ଥାନ ଅଛି ଯେଉଁଠି ଏପରି ଧ୍ୱନି ବ୍ୟବହାର କରାଯାଏ। ଅନେକ ସମୟରେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ବସି, ବୀର, ବଳ, ପ୍ରଭୃତି ଶବ୍ଦରେ ଯେଉଁ ବ ଅଛି ତା' ବସିବା, ଖାଇବା ପ୍ରଭୃତି ଶବ୍ଦରେ ଥିବା ଦ୍ୱିତୀୟ 'ବ' ଠାରୁ ବହୁତ ଭଲ, ପ୍ରଥମ ପ୍ରକାର 'ବ' ଦ୍ୱୟୋଷ୍ଠ୍ୟ ସ୍ପର୍ଶ ଏବଂ ଦ୍ୱିତୀୟ ପ୍ରକାର 'ବ' ଦ୍ୱୟୋଷ୍ଠ୍ୟ ସଂଘର୍ଷୀ । ଜଣେ ଆମେରିକାନ୍ ଅଧାପକଙ୍କ ସହିତ କାମ କଲାବେଳେ ହଠାତ୍ ସେ ମୋତେ ଏହି କଥା ଚେତାଇ ଦେଇଥିଲେ ।

ଏଥିପାଇଁ ଗୋଟିଏ ଭାଷାର ସମୁଦାୟ କଥା ଜାଣିବା ପାଇଁ ସେହି ଭାଷାଭାଷୀ ଅଞ୍ଚଳର ବିଭିନ୍ନ ସ୍ଥାନର ଭାଷାତାତ୍ତ୍ୱିକ ବୈଶିଷ୍ଟ୍ୟ ସମ୍ବନ୍ଧରେ ସର୍ବେକ୍ଷଣ (ସର୍ଭେ) ହେବା ଉଚିତ । ବହୁ ଆଗରୁ ଫ୍ରାନ୍ସ, ଇଟାଲୀ ପ୍ରଭୃତି ଦେଶରେ ଏ ପ୍ରକାର ସର୍ଭେ ହୋଇଥିଲା । ଆମେରିକାର ନିଉ ଇଂଲଣ୍ଡ ଷ୍ଟେଟ୍‌ସମାନଙ୍କରେ ଏହି ଶତାବ୍ଦୀରେ ସର୍ଭେ ହୋଇଯାଇଛି । ବର୍ତ୍ତମାନ ବିଲାତର ଏଡ଼ିନବରା ଓ ଲିଡ଼୍‌ସବୁ କେନ୍ଦ୍ର କରି ସର୍ଭେ ଚାଲିଛି । ଭାଷା ସର୍ଭେ ପାଇଁ ବହୁତ ଧ୍ୱନିବିତ୍ ଦରକାର ବୋଲି ଭାରତ ସରକାର ଏବେ ମଧ୍ୟ ସ୍ଥାନୀୟ ସର୍ବେକ୍ଷଣ ଆରମ୍ଭ କରିପାରି ନାହାନ୍ତି । କିନ୍ତୁ କେତେକ ଜାଗାରେ ବିଶ୍ୱବିଦ୍ୟାଳୟମାନଙ୍କର ତତ୍ତ୍ୱାବଧାନରେ ସ୍ଥାନୀୟ ସର୍ଭେ ଦେଶରେ ଆରମ୍ଭ ହେଉଛି ।

ଆମର ଯେଉଁ ସମ୍ବଲପୁରୀ, ବାଲେଶ୍ୱରୀ, ପୁରୀ, କଟକୀ ଭାଷା ସବୁ ଅଛି ସେମାନଙ୍କ ଭିତରେ ପୁଣି କେତେ ଉପଭାଷା ଲୁକ୍‌କାୟିତ ଅଛନ୍ତି, କିଏ ଜାଣେ । ତାଛଡ଼ା ଏକ ପ୍ରଗଣାର ଭାଷା ବିଚାର କରିବାକୁ ଗଲେ ବି ଦେଖିବାକୁ ମିଳେ ପ୍ରତି ଗାଁ ଫାଙ୍କେ । କେତେ ମଣିମୁକ୍ତା ଗାଁ ଗହଳରେ ପଡ଼ିଛି, ଅଥଚ ଆମ ଛାତ୍ରମାନେ ସେଥିପ୍ରତି ଦୃଷ୍ଟି ଦେଇପାରନ୍ତି ନାହିଁ, କାରଣ ତାଙ୍କର ସେ ଦୃଷ୍ଟିକୋଣ ନାହିଁ ।

**(ଛ) ପାରସ୍ପରିକ ସହିଷ୍ଣୁତା :**

ଭାଷା ନେଇ ଭାରତବର୍ଷରେ ଯେଉଁ ଗଣ୍ଡଗୋଳ ହେଲା, ସେହି କାରଣରୁ ବୋଧହୁଏ

ଦେଶରେ ଟିକିଏ ଭାଷା ଚେତନା ଜାଗ୍ରତ ହୋଇଛି । କିନ୍ତୁ ସେ ଚେତନା ଯଥେଷ୍ଟ ହୋଇନାହିଁ । କୌଣସି ବିଷୟର ସମାଧାନ କରିବାପାଇଁ, ସେହି ବିଷୟରେ ଅଧ୍ୟୟନ ଅଧ୍ୟାପନା କରିଆରେ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରାଯାଇଥାଏ । ମାତ୍ର ଭାଷାଭଳି ଏକ ଜଟିଳ ସମସ୍ୟା ସମାଧାନ ପାଇଁ ସେହି ଦିଗରେ ଚିନ୍ତା କରିବା ପାଇଁ ଆବଶ୍ୟକୀୟ ଚିନ୍ତା ବା ଭୂମିକା ଖୁବ୍ କମ୍ ଲୋକଙ୍କର ଅଛି । ଦେଶରେ ଭାଷାତତ୍ତ୍ୱର ଯେତିକି ଅଧ୍ୟୟନ ବଢ଼ିବ, ସେହି ଦିଗପ୍ରତି ଲୋକଙ୍କର ଦୃଷ୍ଟିକୋଣ ସେତିକି ଉଦାର ଓ ଚିନ୍ତା ଶୂନ୍ୟ ହେବ ଏଥିରେ ସନ୍ଦେହ ନାହିଁ ।

ଭାଷା ସମ୍ପର୍କରେ ସମସ୍ତେ ନିଜ ନିଜ ଭାଷାକୁ ଅନ୍ୟଠାରୁ ଭଲ ମନେ କରନ୍ତି ଏବଂ କେହି ସାମାନ୍ୟ ଭୁଲ କଲେ ତାଙ୍କ କଥାକୁ ହସି ଉଡ଼ାନ୍ତି । ହିନ୍ଦୋଳ ଲୋକଙ୍କ କଥାକୁ ଢେଙ୍କାନାଳରେ ଯେମିତି ହସନ୍ତି, ଢେଙ୍କାନାଳ କଥାକୁ କଟକରେ ସେମିତି ହସନ୍ତି । କେବଳ ସେତିକି ନୁହେଁ, ଏ ଗାଁ କଥାକୁ ସେ ଗାଁରେ ହସନ୍ତି, ଏମିତିକି ଏକ ଗାଁରେ ଏକ ପରିବାରରେ ଲୋକ ଆଉ ଏକ ପରିବାରର ଭାଷାକୁ ହସନ୍ତି । ଯେତେ ଯେତେ ବ୍ୟବସାୟୀ, ପ୍ରତ୍ୟେକଙ୍କର ଭାଷା ଭିନ୍ନ । ଆମେ ଯଦି ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ବିଚାର କରିବା, ତେବେ ଦେଖିବା ଯେ ଏହି ପ୍ରକାର ସ୍ୱାତନ୍ତ୍ର୍ୟ ବହୁତ ପରିବର୍ତ୍ତନର ସମୀକୃତ ଫଳ । ଏଥିପାଇଁ କାହାକୁ ଉପହାସ କରିବାର କାରଣ ନାହିଁ । ଗୋଟିଏ ସାଧାରଣ ଉଦାହରଣ ନିଆଯାଉ, ଆମେ ଯାହାକୁ 'ଶତାୟୁ' କହୁଛୁ, ଆସାମରେ ତାକୁ 'ହତାୟୁ' କହୁଛନ୍ତି; ଆମେ ଯାହାକୁ ଶତଂ କହୁଛେ ଇଂରାଜୀରେ ତାକୁ hundred କହୁଛନ୍ତି । ଏମିତି ଦେଖିଲେ ମନେ ହେବ ଶ,ହ ଗୋଟାଏ ସାଧାରଣ କଥା । ତେଣୁ 'ସପ୍ତାହ' ଶବ୍ଦକୁକେହି 'ହପ୍ତା' ବୋଲି କହିଲେ ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ସ୍ୱାଭାବିକ ବୋଲି ଧରିନେବାକୁ ହେବ । ଆମେ ଯାହାକୁ 'ଶ୍ରମ' କହୁଛେ, ପଞ୍ଜାବୀମାନେ ତାକୁ 'ଶରମ' କହିଲେ ଆମେ ହସୁ ଅଥଚ 'ଶ୍ରୀ'କୁ ଶିରୀ କହିବା ଲୋକ ତ ପୁଣି ଆମର ଢେର ଅଛନ୍ତି । ଏହିଭଳି ବିଚାର କରିବାକୁ ଗଲେ ହିନ୍ଦୋଳରେ 'କୋଡ଼ିଏ'କୁ କୁଡ଼ିଏ କହିଲେ ଅର୍ଥାତ୍ ଓ କୁ ଉ କହିଲେ, କାହିଁକି ଏ ପରିବର୍ତ୍ତନ ହୋଇଛି ତା'ର ତଥ୍ୟ ଚିନ୍ତା କରିବା ଆମର ଉଚିତ ଏବଂ ଯଦି ଆମେ ଭାବୁଥାଉ ଯେ 'ଓ' ଟାଇ ହେବା ଠିକ୍, ତାହେଲେ 'ଉ' ଜାଗାରେ 'ଓ' କେମିତି ଶିକ୍ଷା ଦିଆଯାଇ ପାରିବ, ସେଥିପାଇଁ ଧ୍ୱନିତତ୍ତ୍ୱକୁ ଖଟାଇବା ଉଚିତ । ଧ୍ୱନିତତ୍ତ୍ୱ ଯଦି ଆଉ କିଛି ଶିଖାଇ ନ ପାରେ, ତେବେ ଅନ୍ତତଃ ପରସ୍ପର ପ୍ରତି ଭାଷାତାତ୍ତ୍ୱିକ ସହିଷ୍ଣୁତା ଶିକ୍ଷା ଦେବ ନିଶ୍ଚୟ ।



## ୩୪

# ଓଡ଼ିଆ ଭାଷା ଉପରେ ବିଭାଷାର ଛାପ

### ସିଦ୍ଧେଶ୍ୱର ହୋତା

**ଭାଷା ଓ ସମୟ -**

ଦୁନିଆର ଚାଲିଚଳଣ ଶବ୍ଦ ଓ ବାକ୍ୟମାଳାରେ ପ୍ରକାଶିତ ହୁଏ । କେତେଗୁଡ଼ିଏ ମଣିଷ ବା ପରିବାର ନିଜର ମନୋଭାବ ଅଜଣାରେ ପ୍ରକାଶ କରନ୍ତି । ଏଥିରେ ନାନା ବିଭିନ୍ନତା ଓ ତଫାତ୍ ଦେଖାଯାଏ । ପୁରୁଣା ଶବ୍ଦ ଭାଷା ଭିତରୁ ଉଭେଇ ଯାଏ ଏବଂ ନୂଆ ଶବ୍ଦର ଉପସ୍ଥିତି ଦେଖାଦିଏ । ଜଣ ଜଣଙ୍କ କଥା ସ୍ଥାନୀୟ ଚଳଣୀର ପ୍ରାଧାନ୍ୟ ଫୁଟାଏ । ପ୍ରତି ଲୋକର କାର୍ଯ୍ୟ ଓ ଶକ୍ତି ଅଲଗା ହୋଇଥିବାରୁ ଫୁଟନ୍ତା ଶବ୍ଦଗୁଡ଼ିକରେ ସ୍ପଷ୍ଟ ଭାବରେ ସେହି ମହତ୍ତ୍ୱ ବିକଶେ । ଉଚ୍ଚାରଣ ଓ ବ୍ୟବହାରର ପାର୍ଥକ୍ୟ ପ୍ରତିଶବ୍ଦରେ ଦେଖାଦିଏ । କ୍ଷୁଦ୍ର କ୍ଷେତ୍ରରେ ନିବଦ୍ଧ ଏଇ ପରିବର୍ତ୍ତନର ରୂପହିଁ ବିଭାଷା । କାଳର ଅନନ୍ତତା ଏଥିରେ ରହିଲେ ମଣିଷ ପରେ ମଣିଷ, ପରିବାର ପରେ ପରିବାର ବୃହତ୍ କ୍ଷେତ୍ର ଅଧିକାର କରନ୍ତି । ବାଣିଜ୍ୟ ବ୍ୟବସାୟ ଓ ସାଂସ୍କୃତିକ ରାଜନୈତିକ ଆଲୋଚନା ଦ୍ୱାରା ନାନାରକମ ଶବ୍ଦ ଓ ଚଳଣିର ଆଦାନ ପ୍ରଦାନ ସ୍ଥାନପାଏ । ସମାଜର ଅନନ୍ତ ଭାବ ମଣିଷ ଅନୁଭବ କରେ । ଶିକ୍ଷା ଓ ସଂସ୍କୃତିର ଅବିକଳ ରୂପ ଧାରାବାହିକ ଭାବରେ ଦେଖାଦିଏ । ପେଟ୍ରୋଲ, ଟେଲିଗ୍ରାମ୍, ଶେଯ, ତୁଳା, ଛେନା, ମାଖନ ପ୍ରଭୃତି ଶବ୍ଦ କି ଉଚ୍ଚ କି ନୀଚ ସମସ୍ତେ ବୁଝିପାରନ୍ତି । ଶିକ୍ଷିତ ଲୋକ ଯେପରି ଏହି ଶବ୍ଦ ବଳରେ କାର୍ଯ୍ୟ କରିବାରେ ଆଗେଇ ଚାଲେ, ଅଶିକ୍ଷିତ ସେପରି ପଦାର୍ଥର ରୂପ ଭାବି ଗ୍ରହଣ ପାଇଁ ହାତ ପତାଇ ଦିଏ । ଏଥିରେ ବ୍ୟଙ୍ଗ, ଲକ୍ଷଣା, ଧ୍ୱନି, ବିଦ୍ରୂପ ପ୍ରଭୃତି ନାନାବିଧ ଶବ୍ଦ ସ୍ଥାନ ପାଇଥାଏ । ବେଳ ଆସେ ବଂଶ, ଗୋଷ୍ଠୀ, ଦଳ, ସମାଜ ଓ ଜାତିର ଭାବ ପ୍ରକାଶ ପାଇଁ ସୂତ୍ର ହୁଏ । ଏଇ ଅନନ୍ତତା ଓ ପଦାର୍ଥର ରୂପ ବିଭବ ଯେଉଁଥିରେ ପ୍ରକାଶିତ, ତାହାଇଁ ଭାଷା ନାମରେ ନାମିତ ।

**ବିଭାଷାର ସ୍ୱରୂପ -**

ଭାଷା ଗୋଟିଏ ବୃହତ୍ ପରିଧିବିଶିଷ୍ଟ ବୃତ୍ତାକାର କ୍ଷେତ୍ର ଓ ବିଭାଷା ସାମାନ୍ୟ ବିନ୍ଦୁର ସଙ୍କେତ । ଭାଷାରେ ଯୁଗ ଯୁଗ ବୈଶିଷ୍ଟ୍ୟ ଓ ପରିବର୍ତ୍ତନ ଦେଖାଦିଏ, କିନ୍ତୁ ବିଭାଷାରେ

କେତୋଟି ବର୍ଷର ଅଭିଜ୍ଞତା ଫୁଟେ । ବିଭାଷାର ଶବ୍ଦ ବିଭବ ଓ ବ୍ୟାକରଣ ଭାଷାର ଅନ୍ତର୍ଗତ । ଆଲୋଚନା ସ୍ୱରୂପ ଓଡ଼ିଆ ଭାଷା ଓ ରାଢ଼ୀ ବିଭାଷା । ଓଡ଼ିଆ ଭାଷାରେ ପୁରୀ, କଟକ, ବାଲେଶ୍ୱର ପ୍ରଭୃତି ତେରଟି ଜିଲ୍ଲାର ଶିକ୍ଷିତ ଓ ଅଶିକ୍ଷିତ ଲୋକର ଚିର ପ୍ରଚଳିତ ସଂସ୍କୃତିର ଛାପ ଥାଏ । କିନ୍ତୁ ରାଢ଼ୀ ବିଭାଷାରେ କେତୋଟି ଶବ୍ଦସୂତ୍ରର ସଂଯୋଗ ଦେଖାଦିଏ । ଭାଷାର ବ୍ୟାକରଣ ଅଛି । ତାହା ସମସ୍ତେ ବୁଝିପାରିବା ଭଳି ଗୋଟିଏ ଭାଷାର ମାପକାଠି ନିର୍ଦ୍ଧାରିତ ହୋଇଥାଏ । କାର୍ଯ୍ୟକାରଣ ସମ୍ବନ୍ଧ ନେଇ ଶବ୍ଦତତ୍ତ୍ୱର କ୍ରମିକ ଆଲୋଚନା ଏବଂ ଶବ୍ଦର ବ୍ୟବହାର ବିଧି ସେଥିରେ ପୂରାପୁରି ନିର୍ଣ୍ଣିତ । ଶବ୍ଦକୋଷ ଉନ୍ନତ ଭାଷାର ଗୋଟିଏ ଅମୂଲ୍ୟ ବିଭବ । ଭାଷାର ପ୍ରାଣ ଓ ଶକ୍ତି ବଳିଷ୍ଠ ସାହିତ୍ୟର ଚିର ବୈଜ୍ଞାନିକ ପଦ୍ଧତି ଉପରେ ସ୍ଥିତ ।

**ମାନବ ପ୍ରକୃତି ଏବଂ ଭାଷା**

ଶିଶୁ, ଯୁବକ ଓ ପ୍ରୌଢ଼ ମଣିଷର ପ୍ରକୃତିଗତ ଅଭ୍ୟାସ ନିଜ ଭାଷାର ଶବ୍ଦ, ବାକ୍ୟଭଙ୍ଗୀ ଗ୍ରହଣ ନ କରି ଅନ୍ୟଭାଷାରୁ ଜଣାଶୁଣା ଶବ୍ଦ, ବାକ୍ୟାଂଶ ଓ ବାକ୍ୟ ବିଭବ ଗ୍ରହଣ କରି ନିଜର କରିନେବା । ଏଇଠି ବକ୍ତାର ସ୍ୱର ପ୍ରକ୍ରିୟାର ପ୍ରଭାବ ମୂଳ ରୂପଟିକୁ ବିକଳାଙ୍ଗ କରିଦିଏ ବା ବେଳେ ବେଳେ ଅବିକଳ ପରିଗ୍ରହଣ କରିଥାଏ । ଏ ପ୍ରସଙ୍ଗରେ "Every Speaker, and on a larger scale, every local or social group acts as an imitator and as a model as an agent in the levelling process - (Blommfield's Language P. 477)" ଉକ୍ତିଟିର ତଥ୍ୟ ବିଲ୍‌କୁଲ୍ ଖାପ ଖାଉଛି ।

**ଓଡ଼ିଆ ବିଭାଷାରେ ଗ୍ରୀୟର୍‌ସନ -**

ଭାଷାତତ୍ତ୍ୱଜ୍ଞମାନଙ୍କର ଆଦର୍ଶ ଓ ଭାଷା ବିଜ୍ଞାନର ନୀତି ଦୃଷ୍ଟିରୁ ବିଚାର କଲେ ମୁଁ ବୁଝିପାରୁ ନାହିଁ Sir George Griersonଙ୍କ ପରି ପଣ୍ଡିତ କିପରି ଏ ଅଯୌକ୍ତିକ ଉକ୍ତି ଚିରଦିନ ପାଇଁ ଲେଖିଛନ୍ତି- ଓଡ଼ିଆ ଭାଷାର ବିଭାଷା ନାହିଁ ବୋଲି । "Oriya is remarkably free from dialectic variation. The well known saying which is true all over the North of India that the language changes every ten Kos', does not hold true in Orissa" । ବିଭାଷାର ବହୁଳତାରୁ ଓଡ଼ିଆ ଭାଷା ବିଶେଷ ଭାବରେ ମୁକ୍ତ । ଭାଷା ପ୍ରତି ଦଶ କୋଶରେ ବଦଳେ ବୋଲି ଯେଉଁ ପ୍ରସିଦ୍ଧ ବଚନ ଅଛି, ତାହା ଓଡ଼ିଶା ପକ୍ଷରେ ସତ ନୁହେଁ କିନ୍ତୁ ଉତ୍ତର ଭାରତରେ ପୁରା ସତ । ଏହି ପୁରୁଣା ମନ୍ତବ୍ୟ ଅବା କେତେକାଂଶରେ ସତ୍ୟ ହୋଇପାରେ ଯେତେବେଳେ ଇଂରାଜୀ ଅମଳର ଅନ୍ଧାରୀ ଓଡ଼ିଶା ମୁଳକ କଥା ଆମେ ଭାବୁ କିନ୍ତୁ ଏହା ଖାଣ୍ଟି ମିଛ ଯେବେ ରାଜନୈତିକ, ଐତିହାସିକ ଓ ସାମାଜିକ ବୃହତ୍ତର ଓଡ଼ିଶା କଥା ଆମେ ଭାବୁ । ଏହି ବିଭାଷାର ଛାପ। ସ୍ପଷ୍ଟ ଆର୍ଯ୍ୟ ଏବଂ ଅନାର୍ଯ୍ୟମାନଙ୍କର ଭାଷା ଓ ବିଭାଷାର ଗୌରବ ଚିନ୍ତା କଲେ ।

**ଓଡ଼ିଶା ନାନାଭାଷା ଏବଂ ସଂସ୍କୃତିର ମିଳନ ଭୂମି -**

ବେଦ ଉପନିଷଦ, ରାମାୟଣ, ମହାଭାରତ, ବ୍ରାହ୍ମଣ, ଜାତକ, ପୁରାଣ ଏବଂ ପ୍ରାଚୀନ ଭାରତୀୟ ଇତିହାସରେ ଓଡ଼ିଶା ଏବଂ ଓଡ଼ିଆ ଜାତି ଓ ସଂସ୍କୃତିର କଥା ଏତେ ଜଣାଶୁଣା ଯେ ଏଠି ତା'ର ଆଲୋଚନା ଦରକାର ନାହିଁ ବୋଲି ମୋର ଧାରଣା । ତେବେ ଉତ୍କଳ, କଳିଙ୍ଗ ଶବ୍ଦ ଦୁଇଟିର ଭାଷାତତ୍ତ୍ୱ ଦୃଷ୍ଟିରୁ ବିଶେଷରେ ଜଣାଯାଏ ଯେ ଆର୍ଯ୍ୟ ଅନାର୍ଯ୍ୟ ମୁଖ୍ୟତଃ ଦ୍ରାବିଡ଼ ଜାତିର ଭାଷା, ଧର୍ମ, ସଂସ୍କୃତିର ଏକ ଅପୂର୍ବ ମିଳନ ଭୂଇଁ ଏଇ ଉତ୍କଳପୀଠ ।

**ଓଡ଼ିଆ ଭାଷାର ବିଭାଷା -**

ଭାଷାଶାସ୍ତ୍ର ଦୃଷ୍ଟିରୁ ଜଣାଯାଏ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆର ନାନା କଥିତ ରୂପ ଓ ପ୍ରୟୋଗ ଜୀବନର ସୌନ୍ଦର୍ଯ୍ୟ ଫୁଟାଇଛି । ଓଡ଼ିଶାର ବିଭାଷାକୁ ପାଞ୍ଚ ବିଭାଗରେ ବିଭକ୍ତ କରାଯାଇପାରେ । ପଶ୍ଚିମ ଓଡ଼ିଆ ବିଭାଷା, ପୂର୍ବ, ଉତ୍ତର ଓ ଦକ୍ଷିଣ ଓଡ଼ିଆ ବିଭାଷା; ଏବଂ ମଧ୍ୟ ଓଡ଼ିଆ ବିଭାଷା । ଏହାଛଡ଼ା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଯଥା- ଟିକାଲି, ମଞ୍ଜୁଷା, ଜଳନ୍ତର, ଜୟପୁର ଜମିଦାରୀର ଅର୍ଦ୍ଧାଂଶ ଷଢ଼େଇକଳା, ଖରସୁଆଁ, ସିଂହଭୂମ ଓ ମାନଭୂମ ଏବଂ ଛତିଶ ଗଡ଼ର କେତେକାଞ୍ଚଳ ଓ ବସ୍ତରର କଥିତ ଭାଷାରେ ଓଡ଼ିଆର ନାନାରୂପ ବିଭବକୁ ପ୍ରଧାନତଃ ଦକ୍ଷିଣ ଓଡ଼ିଆ ବିଭାଷା, ଉତ୍ତ୍ରବିଭାଷା, ଗଞ୍ଜାମୀ ବିଭାଷା ଇତ୍ୟାଦି ନାମ ଦିଆଯାଇପାରେ । ସେ ସବୁ ବିହାରୀ ଓଡ଼ିଆ ଭାଷାର ମିଶ୍ରଣ ରୂପ, ବଙ୍ଗଳା ଓଡ଼ିଆ ରାଢ଼ୀର ସମନ୍ୱୟ ଏବଂ ତାମିଲ ତେଲଗୁ ଓଡ଼ିଆ ଭାଷାର ଐକ୍ୟ ବୋଲି ଗ୍ରହଣ କଲେ କେତେକାଂଶରେ ଯୁକ୍ତଯୁକ୍ତ ହେବ । ଓଡ଼ିଶାର ମଧ୍ୟଭୂମି ଅନାର୍ଯ୍ୟ ଆର୍ଯ୍ୟର ବିହାରପୀଠ । ବୌଦ ଦଶପଲ୍ଲାର କନ୍ଧ, ସମ୍ବଲପୁର ବଲାଙ୍ଗିର ଓ କଳାହାଣ୍ଡିର ଲରିଆ ଏବଂ ବିଞ୍ଝାଲ, ମୟୂରଭଞ୍ଜ ବାଲେଶ୍ୱରର ସାନ୍ତାଳୀ ଏବଂ ରାଢ଼, କଟକ ପୁରୀ ଗଞ୍ଜାମର କନ୍ଧ ଏବଂ କୋରାପୁଟ ଜୟପୁରର କୁଇ, କନ୍ଧ, ବାଉରା, ପରଜା ଗଦ୍‌ବା ପ୍ରଭୃତି ଆଦିମ ଜନତାର ବସବାସ ଓଡ଼ିଆ ଭାଷାକୁ ସରସ ସୁନ୍ଦର ଜୀବନ୍ତ ଓ ବଳିଷ୍ଠ କରିଛି । ତେଣୁ ଓଡ଼ିଶା ଏହି ବିଜ୍ଞାନ ଜଗତରେ ନୃତତ୍ତ୍ୱ ଓ ଭାଷାତତ୍ତ୍ୱ ଅଧ୍ୟୟନ ପାଇଁ ଏକ ସୁନେଲି ରାଷ୍ଟ୍ର । ଏହାର ଅଧ୍ୟୟନ ସହଜ ଏବଂ ସମ୍ଭବ ସେହି ଜନତା ସଙ୍ଗେ ଦୋସ୍ତ ହୋଇ ସେମାନଙ୍କ ସହ ବସବାସ କରି ସେମାନଙ୍କର ଭାଷା ଓ ସଂସ୍କୃତି ଶିକ୍ଷା କଲେ । ଏଠି ପ୍ରସିଦ୍ଧ ନୃତତ୍ତ୍ୱଜ୍ଞ Harry Milham ଆଦିମ ଭାରତର ଏହି ନୃତତ୍ତ୍ୱ ଗବେଷଣା କରିବା ବେଳେ ଯେଉଁ ଅନୁଭୂତି ରୂପ ଦେଇଛନ୍ତି, ତାହାଇଁ ଆମ ରାଷ୍ଟ୍ର ଓ ଗବେଷକମାନଙ୍କ ପରମନୀତି ଓ ଆଦର୍ଶ ହେବା ନିତାନ୍ତ କାମ୍ୟ । ତା'ଙ୍କ ଭାଷାରେ "It was essential *that we should become a complete part of the village life, if we are to become sufficiently inconspicuous to allow us to see all* their daily life and ceremonial." ଏ ଦୃଷ୍ଟିରୁ ଆମେ ବାସ୍ତବରେ ଉଦାସୀନ । ତେଣୁ

ମାନବ ସଭ୍ୟତାର କ୍ରମିକ - ପରିଣାମ ଭାରତ ଏବଂ ଜଗତରେ କିପରି ଫୁଟିଛି ତାହାର ଆଲୋଚନା ତ୍ରୁଟିମୟ ଛଡ଼ା ଆଉ ବା କ'ଣ ହେବ ?

**ଧର୍ମ ଏବଂ ସଂସ୍କୃତି -**

ଏଠି ନମୁନା ସ୍ୱରୂପ ଅନାର୍ଯ୍ୟ ବା ଆଦିମ ଜାତିମାନଙ୍କର ନୈତିକ ଧର୍ମ ସମ୍ବନ୍ଧୀୟ, ଏବଂ ସାଂସ୍କୃତିକ ଆଦର୍ଶର ଦୀର୍ଘ ଯୋଜନା ଆର୍ଯ୍ୟମାନଙ୍କୁ ପୂରା ପ୍ରଭାବିତ କରିଛି । ତେଣୁ କନ୍ଧର ଜାକିରା ଦେଶ ଆର୍ଯ୍ୟର ଇନ୍ଦ୍ରାଣୀ, ସର୍ବାଣୀ, ରୁଦ୍ରାଣୀ, ବ୍ରହ୍ମାଣୀ, ଭବାନୀ ପ୍ରଭୃତିମାନଙ୍କର, ସ୍ୱାମୀ ଇନ୍ଦ୍ର, ସର୍ବ, ରୁଦ୍ର, ବ୍ରହ୍ମା, ଭବ ହେବାପରି ଆର୍ଯ୍ୟ ଅନାର୍ଯ୍ୟମାନେ ନିଜର ଠାକୁରାଣୀ ବୋଲି ପୂଜା କରିଛନ୍ତି କୁସୁନୀ, ମୁଣ୍ଡନୀ । ଏମାନେ କୁସୁକା, ମୁଣ୍ଡନୋ ପ୍ରଭୃତିଙ୍କର ସ୍ତ୍ରୀ, ଏହା ଇନ୍ଦ୍ରବରିର ଭବସର୍ବ ଇତ୍ୟାଦି ସୂତ୍ରଦ୍ୱାରା ପ୍ରମାଣିତ ।

**ପଶ୍ଚିମ ଓଡ଼ିଆ ବିଭାଷାର କ୍ଷେତ୍ର ଓ ସ୍ୱରୂପ -**

ପଶ୍ଚିମ ଓଡ଼ିଆ ବିଭାଷା ସମ୍ବଲପୁର, ବଲାଙ୍ଗୀର ଓ ସୋନପୁର ଅଞ୍ଚଳରେ ବ୍ୟବହୃତ । ସେମାନେ ପାହାଡ଼ିଆବାସୀ । ସେମାନେ ପ୍ରଦେଶର ଅନାର୍ଯ୍ୟ ଏବଂ ଆର୍ଯ୍ୟ ଭାଷାର ମିଳନ ରୂପର ଏକ ପୃଥକ ଛାପ ବଳରେ ଆହୁରି ଜୀବନ୍ତ । ଏହାର ବହୁଳ ପ୍ରୟୋଗ ମଧ୍ୟ ଯୁଗର ଓଡ଼ିଆ ଭାଷାରେ ଦେଖାଯାଏ । ଉଦାହରଣ ସ୍ୱରୂପ ମୁନୁଙ୍ଗା, ଖୁଡ଼ି, ତଣ୍ଡା ପ୍ରଭୃତି ଶବ୍ଦର ବହୁଳ ବ୍ୟବହାର ମଧ୍ୟଯୁଗୀୟ ଓଡ଼ିଶାର ସାଂସ୍କୃତିକ ଏବଂ ରାଜନୀତିକ ଇତିହାସର ମିଳନ ରୂପ ଦେଇଛି । ପ୍ରତି ଶବ୍ଦର "ଅ" ସ୍ୱର ଅନ୍ତ୍ୟବର୍ଣ୍ଣ ଭାବରେ ବ୍ୟବହୃତ ନ ହୋଇ ସୁପ୍ତବର୍ଣ୍ଣ ବା ଲୋପ ବର୍ଣ୍ଣ ଭାବରେ ବ୍ୟବହୃତ । ଏ ପ୍ରସଙ୍ଗରେ ଘର, ଘର୍; ଲୋକ୍, ଲୋକ; ବଗ, ବଗ୍; ମନ, ମନ୍; ପ୍ରଭୃତି ପ୍ରମାଣ ସ୍ୱରୂପ ଉଲ୍ଲେଖଯୋଗ୍ୟ । ଏପରି ପ୍ରୟୋଗର ବହୁଳତା ଦୀର୍ଘ ଓ ହ୍ରସ୍ୱ ମାତ୍ରାର ଏକ ମାତ୍ରାଛନ୍ଦ ସୃଷ୍ଟି କରିଥାଏ । ସେସବୁ ଅଞ୍ଚଳର ଗାଉଁଲୀ ଲୋକେ ଠାକୁର ଓ ଠାକୁରାଣୀ ମଧ୍ୟରେ କିଛି ପ୍ରଭେଦ ମାନନ୍ତି ନାହିଁ । ରାଧା ଯେପରି ଶ୍ରୀରାମଙ୍କ ଭାର୍ଯ୍ୟା, ସେପରି ରାଧା ରାମଙ୍କୁ ଘାଟ ମାଗିଛନ୍ତି । ରାମଙ୍କର ସ୍ତ୍ରୀ ନୀଳାବତୀ, କିନ୍ତୁ ସୀତା ବୋଲି ଧରାବନ୍ଧା ନିୟମ ନାହିଁ । ସମ୍ବଲପୁରୀ ଭାଷାର ବିଭବ ଠିକ୍ ନାନା ଅସ୍ଥିରତା, ଚଞ୍ଚଳତା ଏବଂ ଉନ୍ମାଦକତାର ମାଧୁରୀରେ ସାମିଲ କରିଛି ହ୍ରସ୍ୱ, ଦୀର୍ଘ, ଏବଂ ପ୍ଳୁତମାତ୍ରାର ନାନା ବ୍ୟବହାର ବିଭବ ଦ୍ୱାରା । ତେଣୁ ହ୍ରସ୍ୱ 'ଇ' 'ଅ', 'ଉ' ପ୍ରଭୃତି ସ୍ୱର ବର୍ଣ୍ଣର ବ୍ୟଞ୍ଜନାନ୍ତ ପ୍ରୟୋଗ ବାସ୍ତବିକ ପଶ୍ଚିମ ଓଡ଼ିଆ ବିଭାଷାର ଏକ ପ୍ରଧାନ ନମୁନା ।

**ପଶ୍ଚିମ ଓଡ଼ିଆ ବିଭାଷାର ବିଭିନ୍ନତା -**

ପଶ୍ଚିମ ଓଡ଼ିଆ ବିଭାଷାର ବହୁଳତା ଏତେ ବେଶୀ ଯେ ତାହାର ଯେପରି ଏକ ଦୀର୍ଘ ଜନସାହିତ୍ୟ କ୍ରମିକ ଭାବରେ ଜନତା ଫୁଟାଇଛି । ଏଣୁ ପଶ୍ଚିମ ଓଡ଼ିଶାର ଲୋକଗୀତି ଆମ ଓଡ଼ିଆ ଭାଷା ଏବଂ ସଂସ୍କୃତିର ଗଣ୍ଡିକୁ ସବଳ କରି ଦେଇଛି । ବିଶେଷତଃ ସଂସ୍କୃତ, ତତ୍ସମ, ତଦ୍ଭବ ଏବଂ ଅପଭ୍ରଂଶର ଶବ୍ଦ ଧନ୍ଦାରେ ତାହା ଜଟିଳ ନ ହୋଇ ଭାବରାଜିର ମୃଦୁ ଓ

ମଧୁରତାକୁ ଫୁଟାଇଛି ସରସ ଭାବରେ, ଗାଉଁଲୀ ଶବ୍ଦର ନାନାପ୍ରୟୋଗରେ । ଏହି ଲୋକଗୀତି ଯେପରି ସଙ୍ଗୀତ, ନୃତ୍ୟ ଏବଂ ଭାବ ବହୁଳ ଶବ୍ଦର ଗାଉଁଲୀ ରୂପ, ସେପରି ସରସ୍ୱତୀଙ୍କର ଉଦ୍‌ବୋଧନ, ଗଣଜୀବନର ପରିମାପକ - ସରସ୍ୱତୀ "ରସର କେଳି," "ମାଇଲା ଦଡ଼", "ଡାଲଖାଇ", "କୁରୁମା", ଚିକ୍", "ମାଛବିକା", "ହୁମ", ପ୍ରଭୃତି ନାନା ନୃତ୍ୟଗୀତରେ ମାପିଥାନ୍ତେ ବା କାଇଁକି ?

**ଲୋକଗୀତ ଏବଂ ଭାଷାର ସିଂହାବଲୋକନ -**

ଲୋକଗୀତିର ଭାଷା ଏତେ ଛନ୍ନ ଛନ୍ନ ଯେ ଏଠି ତାକୁ ନ ଦେଲେ ଓଡ଼ିଆ ଭାଷାର ସଦର ମଫସଲର ମିଳନ ରୂପେ ପ୍ରମାଣିତ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ ମାଛ ବିକା ଖେଳ । ଦଳେ ବିକିବେ ମାଛ, ଆଉ ଦଳକ କିଣିବେ । ମାଛ କିଣାବିକାରେ କବିର ଅନ୍ତର ଭାବପ୍ରବଣ ହେବାର କାରଣ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଯେ ସେଠି ମାଛ ଯେପରି ଅଳକା ନଗରୀର ଏକ ସୁନେଲି ସ୍ୱପ୍ନିଳ ଜୀବ । ଏହି ଗୀତର କେତେକାଂଶ ଏଠି ଦେଉଛି ।

"ମୋ ମଛରି ଘିନି ଗୋ ଦାଇ, ମୋ ମଛରି ଘିନି,
କି କି ଲତାର ମାଛ ଗୋ ଦାଇ କି କି ଲତାର ମାଛ;
ମାଗୁର ମାଛ ଗୋ ଦାଇ; ମାଗୁର ମାଛ;
ମାଗୁର ମାଛର ପୁଟି କଣ୍ଟା ଲେଜିକଟା ମୁଡ୍ କଟା
ଗନ୍ଧନି ମାଇଜି ହଟହଟା ସାନ ଦିଅର ତେଲ୍ଲେନ ଚଟା
ଛି ଚକା ଖେଲ ଗୋ ବାଇ, ଛି ଚକା ଖେଲ... ଇତ୍ୟାଦି"

- ପଦ୍ମପୁର

ରେଖାଙ୍କିତ ପଦଗୁଡ଼ିକର ବାସ୍ତବରୂପ ଏଠି ଆଲୋଚ୍ୟ । ମତ୍ସ୍ୟ ଓ ସମ୍ବର ଶବ୍ଦ ଦୁଇଟି କାଳକ୍ରମରେ ମଛରି ରୂପ ଲାଭ କରିଛି । ଯଥା- ମତ୍ସ୍ୟ, ମଚ୍ଚ, ମଚ୍ଛ, ମଛଲି, ମଛରି ଏବଂ ମସର, ମସରି । ଦାଇ, ଦାଇକା, ଦୟିନୀ ପ୍ରଭୃତି ଶବ୍ଦର ରୂପ ତୁଳନୀୟ । ମୁଡ଼ ଶବ୍ଦଟି ମୁଣ୍ଡ ବା ମୋଡ଼ରୁ ଆସିଛି । କିନ୍ତୁ ମୁଣ୍ଡ ଶବ୍ଦର ଅର୍ଥ ମୋଡ଼ ପ୍ରକାଶ କଲେ ମଧ ମୋଡ଼ ଶବ୍ଦର ବ୍ୟଞ୍ଜନାରୂପ ଏଠି ନିହିତ ବୋଲି ମୋର ମତ । କାରଣ ଏଠି ମୋଡ଼ ସ୍ଥାନଟି ଅତି ବଳିଷ୍ଠ ଏବଂ ଜୀବନ୍ତ ଧ୍ୱନି ଦୃଷ୍ଟିରୁ । ତେଣୁ ଯେଉଁ ନାରୀ ମୋଡ଼ ଜାଗାରେ ନ ଖସି ହୁସିଆର ହୋଇ ମୋଡ଼ (ଛକ) ସ୍ଥାନର ଗୌରବକୁ ନିଜର କରି ପାରେ ସେଇ ନାରୀ ମୁଡ଼ କଟା । ବିଶେଷଣରେ ଗୌରବାନ୍ୱିତ ଏବଂ ସେହି କେବଳ ମାଛର କଟା ମୁଣ୍ଡଟି ଖାଇ ସ୍ୱର୍ଗ ସୁଖ ଲାଭ କରିପାରେ । ଏଠି ତେଲେନ ବା ତେଲେ ଅର୍ଥାତ୍ ତେଲରେ+ନ ହୋଇ ପାରେ କି ? ଅର୍ଥର ଚମତ୍କୃତି ଦୃଷ୍ଟିରୁ ତାହା ଏବେ ବି ବିଚାର୍ଯ୍ୟ । ମାଇଜି ଶବ୍ଦଟି ହିନ୍ଦୀରେ କଥିତ ରୂପ ଜି ପ୍ରତ୍ୟୟ ଦ୍ୱାରା ଯଥା- ଖାଇ+ଜି, ବାଇ+ଜି ପ୍ରଭୃତି, ଲତାର ଅର୍ଥାତ୍ କିନ୍ତୁ ପ୍ରକାର ଭେଦ ଅର୍ଥରେ ବ୍ୟବହୃତ ।

**ବିଭାଷାରେ ଉଚ୍ଚାରଣର ଛବିଳତା –**

ଉଚ୍ଚାରଣର ବିଚିତ୍ରତା ମଧ୍ୟ ଏଠି ନିହିତ । କହିବାରେ ଶବ୍ଦର ରୂପ ସବୁଠି ସମାନ ଭାବରେ ଲେଖନୀରେ ଫୁଟିନାହିଁ । ଏଠି ବଙ୍ଗଳା ଓ ଆସାମୀ ଭାଷାର ଛାପ ବୋଲି କହିଲେ କିଛି ଅଯୌକ୍ତିକ ନୁହେଁ । ନମୁନା ସ୍ୱରୂପ ଲତାର, ରାନ୍ଧନି, ସାନ ଦିଅର, ମାଗୁର ଶବ୍ଦ ସୁପ୍ତସ୍ୱରାନ୍ତର ଉଦାହରଣ । ତେଣୁ କଥିତ ଭାଷାରେ 'ଲତାର' । 'ସାନ୍ ଦିଅର', 'ରାନ୍ଧ୍ନି', 'ମାଗୁର୍' ପ୍ରଭୃତି ।

ଭାଷାର ସବଳତାରେ ରୂପ ସୌନ୍ଦର୍ଯ୍ୟର ମଧୁରତା ବାସ୍ତବିକ କବି ଏବଂ ସମାଲୋଚକ ମନକୁ ଚମତ୍କୃତ କରେ । ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ କବି କହିଛି ମୁହଁର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାବେଳେ – "ପାଚିଲା କୁନ୍ଦୁର୍ ଦିଶେ ଲାଲ୍, ମୁଚକି ମୁଚକି ତୁମର୍ ଗାଲ୍ ଗୋ, ଝଲିଆ ଝଲ୍ !" ଏଠି ପଦ୍ମମୁଖ, ଗୋଲାପୀରଙ୍ଗ, ବିମ୍ବାଧର ପ୍ରଭୃତି ସମ୍ଭ୍ରାନ୍ତ ଶବ୍ଦର ଆଡ଼ମ୍ବର ନାହିଁ ବରଂ ମାମୁଲି କୁନ୍ଦୁରର ରଙ୍ଗ କବିକୁ କରିଛି ମତୁଆଲା । ଏଇତ ଗଣତାନ୍ତ୍ରିକତା ।

ଠିକ୍ ଏଇପରି ସମ୍ବଲପୁରୀ ଭାଷାରେ ଦଣ୍ଡନାଟ । କୃଷ୍ଣରାଧା ମଧ୍ୟରେ ଆଳାପରୀତି ପ୍ରାୟ ଓଡ଼ିଶାର ସବୁଠି । ସ୍ଥାନ ବିଶେଷରେ ବର୍ଣ୍ଣନା ଓ ଭାଷା ଭଙ୍ଗୀର ଗୌରବ ଫୁଟିଛି । ନମୁନା ସ୍ୱରୂପ –

କୃଷ୍ଣ– ପର୍ବତ ଶିଖରେ ସୁଆଲ ଭାଡ଼ି
ଧୁବ୍ ଲୁଗା ଖଣ୍ଡେ ଯାଉଛି ଉଡ଼ି
ଛହଲେ ରିଣ୍ଡା ମୁହାନ୍ କେ,
ମହୁଫେନା ପରି ଉଲେଇ ହଇଛେ
ମାଗିଲେ ନାହିନ ଦଉ କାହାକେ ।

ରାଧା– ଛିରେ ଛତିଆଟା
ପାନ ନାଇଁନ ଖୁଆ ନାଇନ
ଛୁଛା ବଟୁଆଟା ।

ଏଠି ଏଇ ଗ୍ରାମ୍ୟ ଦଣ୍ଡନାଟ ଓଡ଼ିଆ ବିଭାଷାର ନାନା ରୂପର ମଉକା । ମନର ଦୁଃଖରେ ଭାଷାର କୋହ ଉଠିଛି । ଏଠି ସ୍ୱରର ବିଭିନ୍ନତା ଏବଂ ସ୍ୱରଚିହ୍ନ, ସ୍ୱର ପ୍ରକ୍ରିୟାର ଜଟିଳତା ଗୀତ ଓ ନାଟର ମଧୁରତାରେ ବିଶେଷ ସାହାଯ୍ୟ କରେ । ଶିଖରେ, ଧୁବ୍, ସୁଆଲ୍ ପ୍ରଭୃତି ଶବ୍ଦର ଅନ୍ତ୍ୟ ବର୍ଣ୍ଣରେ ହିନ୍ଦୀର ପ୍ରଭାବ ଅନୁଭୂତ ଏବଂ ପାହାଡ଼ିଆ ଜାଗାରେ ବସତି କରିଥିବା ମଣିଷର ଦାନ୍ତ ଏବଂ ଓଠ ଅଧିକ ଶୀତ ହେତୁ ବୁଜି ହୋଇଥିବାରୁ ଉଚ୍ଚାରଣର ଏଇ ତାରତମ୍ୟ ହୋଇପାରେ । ଅନାର୍ଯ୍ୟ ଏବଂ ଦ୍ରାବିଡ଼ ଭାଷାର ସ୍ୱରାନ୍ତ ପ୍ରୟୋଗର ଅଭାବ ଭାରତୀୟ ଆର୍ଯ୍ୟଭାଷାର ଲକ୍ଷଣ । ଓଡ଼ିଆ ଭାଷାର କ୍ରିୟା ରୂପ ଯାଉଛି, ହେଇଛେ, ପାନ ନାଇଁନ, ଗୁଆ ନାଇନ୍ ଇତ୍ୟାଦି ଅତି ଶୁଦ୍ଧ ଏବଂ ସରଳ । ଅନୁନାସିକ ବର୍ଣ୍ଣର ଅଧା ଏବଂ ପୂରାମାତ୍ରାର

ବହୁଳ ବ୍ୟବହାର ଏଠି ଦେଖାଯାଏ । ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାର ନୀତି ଲିଖିତ ଫର୍ମଠାରୁ ଏହାର ଏହା ବିକୃତି ଘଟିଛି । ଏଣୁ ଯାଉଛି= ଯାଉ+ଅଛି, ହେି ବା ହଇ+ଅଛେ, ନାଇନ ବା ନାହିନ କେବଳ ନାଇ ବା ନାହିଁର ରୂପାନ୍ତର । ଏଠି ସ୍ୱରର ଦୀର୍ଘ ଉଚ୍ଚାରଣ (aspiration) ବର୍ତ୍ତମାନର ନାନା କାଳରେ ବ୍ୟବହୃତ । ଏହାହିଁ ଏଠି ବିଭିନ୍ନ ବିଭାଷାରେ କଥିତ ବା ଗ୍ରାମ୍ୟ ରୂପ । ଏହାଛଡ଼ା ନାଇଁ, ଦଉ, ମାଗଲେ ପ୍ରଭୃତିର ଅର୍ଥ "ବିନା ନ ମାଗିଲେ ଆମେ ଦବୁନାଇ ।" ଏଠି ସ୍ୱର ପ୍ରକ୍ରିୟାର ଘନ ଘନ ତରଙ୍ଗ ଏବଂ ଉଚ୍ଚାରଣ କ୍ରିୟାରେ ସ୍ୱରଯନ୍ତ୍ରର ଘାତ-ପ୍ରତିଘାତ କ୍ରିୟାର ଏପରି ଖଣ୍ଡରୂପ ସୃଷ୍ଟିକରେ । ଫଳରେ ଏଠି ବ୍ୟାକରଣ ନୀତିର ସଂଯମ ରହେନାଇଁ ଓ ଭାଷାରେ ଗ୍ରାମୀଣ, ଭାବ ଏବଂ ରୂପ ଆପେ ଆପେ ଫୁଟିଉଠେ । ଉଦାହରଣସ୍ୱରୂପ, 'ଦେବି ନାହିନ' ବା 'ଦେବି ନାହିଁ' ବା 'ଦେବିନାଇ'ର ରୂପ 'ନାଇଁ ଦଉ', 'ମାଗିଲେ'ର ରୂପ 'ମାଗଲେ' । ଏହି ଉଚ୍ଚାରଣର ନୀତି ଦୃଷ୍ଟିରୁ ବ୍ୟଞ୍ଜନ ଓ ସ୍ୱରବର୍ଣ୍ଣ ଉଚ୍ଚାରଣ କଦାପି ଠିକ୍ ରହେନାହିଁ । ସମ୍ବଲପୁରୀ ଉଚ୍ଚାରଣରେ 'ଉ, ଓ, ନ, ଣ, ଚ, ଛ, ତ, ଥ ଏବଂ ଳ, ଲ' ପ୍ରଭୃତିର ବର୍ଣ୍ଣ ନିୟମ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷା ତୁଳନାରେ ପୁରା ବ୍ୟତିକ୍ରମ ଘଟିଛି ଓ ଘଟି ଆସୁଛି ।

ଏଇ ଦୃଷ୍ଟିରୁ ନିମ୍ନ ଉଦାହରଣ ଆଲୋଚ୍ୟ –

| ସମ୍ବଲ ପୁରୀ | ଷ୍ଟାଣ୍ଡାର୍ଡ଼ ଓଡ଼ିଆ |
|---|---|
| ମହୁଫେନା | ମହୁଫେଣା |
| ଚୁଛା | ତୁଛା |
| ଧୁବ ଲୁଗା | ଧୋବ ଲୁଗା |
| ବନ୍ଧତଲେ | ବନ୍ଧ ତଳେ |

ଏହି ଶବ୍ଦ ସବୁରେ ପ୍ରୟୋଗ-

"ବଥୁଆ ଜଘ କରିମି ଚଙ୍ଗ
ବନ୍ଧତଲେ ଅଛି ଚୁଆ
ପାନି ଭିତରେ ଛୁପୁଲ୍ ଛାପୁଲ୍
ରଙ୍ଗ ମୁଣ୍ଡିଆ ଛୁଆ ।

ଏଠି ପୁଆଲ, ଛୁଆ, ଉଲେଇ ପ୍ରଭୃତି ଶବ୍ଦର ଜନନ ସ୍ଥାନ ତଥାପି ରହସ୍ୟମୟ । ଏହାର ପ୍ରୟୋଗ ଉତ୍ତର ଓଡ଼ିଆ ବିଭାଷା ଗ୍ରୁପ୍‌ରେ ଗ୍ରାହ୍ୟ । ବାଲେଶ୍ୱର, ମେଦନୀପୁର ବାରିପଦା (ମୟୂରଭଞ୍ଜ) ଅଞ୍ଚଳରେ ଏହାର ଛବିଳ ବ୍ୟବହାର ମୁଁ ବାରମ୍ବାର ଶୁଣିଛି ସଦର ମଫସଲରେ ପଢ଼ିବା ଏବଂ ଚାକିରି ଜୀବନରେ ।

ଶିଖରେ, ବଟୁଆଟା, ଛତିଆଟା ପ୍ରଭୃତି ଶବ୍ଦରେ 'ଏ' ଓ 'ଟା' ବିଶେଷ୍ୟ ପଦର ପ୍ରଥମା ବିଭକ୍ତି ଓ କର୍ତ୍ତାକାରକର ରୂପ ଏବଂ ଅର୍ଥ ଦୃଷ୍ଟିରୁ ଅଧିକରଣ ଓ କର୍ମକାରକର

ପ୍ରୟୋଗ - ସଂସ୍ଲିନ୍ ଓ ଅମ, ଷ୍ଟାଣ୍ଡାର୍ଡ଼ ଓଡ଼ିଆ 'ରେ' ଓ 'କୁ'ର ପ୍ରୟୋଗ ଅର୍ଥ ଦୃଷ୍ଟିରୁ ଏହି ଅଧିକରଣ ଓ କର୍ମକାରକର ପ୍ରୟୋଗ ରୂପ ଏହି ବିଭାଷାରେ । ସର୍ବନାମର ବିଶେଷତ୍ୱ ମଧ୍ୟ ଏହି ବିଭାଷାରେ ଅନୁଭୂତ । କିୟା ! କାହାକେ ? 'କାହାକୁ' ସ୍ଥାନରେ ବ୍ୟବହୃତ । ଏଠି କର୍ମ କାରକର ଶକ୍ତି ନିହିତ । ଏଇ ଅର୍ଥର ଗୌରବ ଏପରି ଫୁଟିଛି ଯେ ଅନ୍ୟ ଉପାୟରେ ବିଶ୍ଳେଷଣ ଏଠି ଅସମ୍ଭବ, ଏସବୁ ବିଭାଷାରେ ପୁଣି ପରିବର୍ତ୍ତନର ରୂପ । ବଙ୍ଗଳା ଭାଷାର ପ୍ରଭାବ ଏଠି ଆସି ପହଞ୍ଚିଛି । ଏୟା ବି ହୋଇପାରେ ଯେ କେତେକ ବଙ୍ଗଭାଷୀ ଲୋକଙ୍କର ବସବାସ ଆଗରୁ ଥିଲା ଅଥବା ସାନ୍ତାଳ ପ୍ରଗଣା ସୂତ୍ରରୁ ଏହା ଆସି ଓଡ଼ିଆରେ ପଶିଛି । ଦ୍ୱିତୀୟ ଯୁକ୍ତିଟି ପ୍ରଥମ ତୁଳନାରେ ଅଧିକ ଯୁକ୍ତିଯୁକ୍ତ ।

ଏହି ଆଲୋଚନା ସଂକ୍ଷେପରେ କୁହାଯାଇପାରେ ଯେ ଉଚ୍ଚାରଣ ଓ ଲେଖନ ପଦ୍ଧତି ଏକା ନୁହେଁ । ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାର ଚିର ପ୍ରଚଳିତ ଲେଖା ଓ କୁହାର ରୂପ ବ୍ୟତିକ୍ରମ ଏଠି ଅଛି । ଗ୍ରାମ୍ୟ ସଙ୍ଗୀତରେ ହିନ୍ଦୀର ପ୍ରଭାବ ପଡ଼ିଥିବାରୁ ସ୍ୱରାନ୍ତ ଶବ୍ଦ ବ୍ୟଞ୍ଜନାନ୍ତ ରୂପ ପାଇଛି । ନିଷେଧାର୍ଥକ କ୍ରିୟାର ବିକଳାଙ୍ଗ ସେହି ଅର୍ଥ ପୁରା ବୁଝାଉଛି ଅନେକ ସ୍ୱର ଓ ବ୍ୟଞ୍ଜନବର୍ଣ୍ଣର ସ୍ୱରୂପ ଉଚ୍ଚାରଣ ଦୃଷ୍ଟିରୁ ନିଖୁଣ ନାହିଁ । ବିଶେଷ୍ୟ ଓ ସର୍ବନାମର ମୌଳିକ ରୂପକୁ ବଦଳାଇ ଦେଇଛି ବିଭକ୍ତ୍ୟନ୍ତ ଚିହ୍ନଗୁଡ଼ିକ । କାରକ "ବିବକ୍ଷା ବଶାତ୍ କାରକାଣି ଭବନ୍ତି" ନୀତି ଗ୍ରହଣ କରୁଛି । କ୍ରିୟାର ନିଖୁଣ ପ୍ରୟୋଗ ଓ ନାନା ରୂପର ଯଥାର୍ଥତା ସବୁଠି ମିଳୁନାହିଁ । ଏହି ବିଭାଷାକୁ ଷ୍ଟାଣ୍ଡାର୍ଡ଼ ଓଡ଼ିଆଭାଷାଠାରୁ ଅଲଗା କରି ସ୍ୱତନ୍ତ୍ର ଷ୍ଟାଣ୍ଡାର୍ଡ଼ ସମ୍ବଲପୁରୀ ଭାଷା ବୋଲି ପ୍ରମାଣ କରିବା ପାଇଁ ଅନେକ ଭାବପ୍ରବଣ ନେତା ନେତୃତ୍ୱ ନେଇ ନୂତନ ହୀରାଖଣ୍ଡ ବା କୋଶଳର ସୁନେଲି ସ୍ୱପ୍ନ ଦେଖିଛନ୍ତି ଏବଂ ଦେଖୁଛନ୍ତି ନୂତନ ଝାଡ଼ଖଣ୍ଡର ସ୍ୱପ୍ନ ପରି । ନୂତନ ଅକ୍ଷର ବା ବର୍ଣ୍ଣ ଏହି ବିଭାଷାର ବାହକ ଭାବରେ ଗଢ଼ିବାର ଯୋଜନା ହୋଇଛି । ପ୍ରମାଣ ସ୍ୱରୂପ ଝାଡ଼ଖଣ୍ଡ ଭାଷାର ରୂପ, "It is a very nice thing to invent, but it will be sheer waste, if it is not used by the people (1)" 'ଏସବୁ ଚେଷ୍ଟା ବ୍ୟର୍ଥ ହେବ ଲୋକେ ଏହି ଯୋଜନା ଅନୁସାରେ ଉଚ୍ଚାରଣ ଓ ବ୍ୟବହାର ନ କଲେ । ଏୟାଠୁ ବଳି ବଡ଼ ବିପଦ ଦେଖାଦେଲାଣି ଓ ଦେଖା ଦେବ ଭାଷା ଜଗତରେ ହୀରାକୁଦ ବନ୍ଧ ଓ ବୁର୍ଲା ଏବଂ ପଡ଼ୋଶୀ ସହର ସମ୍ବଲପୁର । ଏଠି ଭାରତର ନାନା ଭାଷାଭାଷୀ ଲୋକର ମିଳନ ହେବ ଏବଂ ଏହାର ଗଙ୍ଗା ଯମୁନାର ମିଳନ ପରି ଭାଷା ଜଗତରେ ନାନା ଭାଷା ଏବଂ ବିଭାଷାର ଐକ୍ୟ ସମ୍ଭବ ବୋଲି ଦୁନ୍ଦୁଭି ବଜାଇବ । ଏହାର ଉପକ୍ରମ ହେଲାଣି ବୋଲି ମୋର ମତ । ଭାରତୀୟ ଅଫିସର ଭାଷା ପାଇଁ ଏହି ହୀରାକୁଦ ପ୍ରତିଶ୍ରେଣୀ ଓ ବୃଉଧାରୀ ଲୋକର ଅଭିମାନ ଏବଂ ଶ୍ରେଣୀ ସଂଘର୍ଷରେ ଆଞ୍ଚ ଆଣି ପ୍ରମାଣ କରିଦେବ "ସତ୍ୟଂ ପରଂ ଧୀମହି" ତେଣୁ ଏଇ ବିଜ୍ଞାନ ଜଗତରେ ସବୁଠୁ ବଳିଷ୍ଠ ଭାଷା କିନ୍ତୁ ନୁହେଁ ବିଜ୍ଞାନ ଏବଂ ବୈଜ୍ଞାନିକ ଆବିଷ୍କାର ।

ଏହି ପରିବର୍ତ୍ତନ ହିଁ ଆମ ଆଖ୍ୟାରେ 'Dialectic change'। ସ୍ଥାନ, ସଂସ୍କୃତି, ଶିକ୍ଷା, ଜଳବାୟୁ ଯୋଗୁ ଏହା ଆଗେଇବ ବା ପଛେଇବ । ଏହାଇଁ ଜୀବନ୍ତ ଭାଷା ଏବଂ ବିଭାଷାର ଲକ୍ଷଣ । ଏହି ବିଭାଷା ଗ୍ରୁପ୍‌ର ମହତ୍ୱ ଦୁଇଟି ଦୃଷ୍ଟିଭଙ୍ଗୀରୁ ବିଚାର୍ଯ୍ୟ । ସମ୍ବଲପୁରୀ ଭାଷାକୁ ଶବର କିରାତ, ବିଞ୍ଝାହ, କନ୍ଧ କୁଲୁତା ଇତ୍ୟାଦିଙ୍କର ପୂର୍ବ ବଂଶଧରଗଣଙ୍କର ଦାନ ବର୍ଣ୍ଣନାତୀତ । ତାହା ଓଡ଼ିଆ ଭାଷାର Proto Oriya ଏବଂ Proto Non Aryan ଯୁଗ ଏବଂ ପ୍ରସାରଣଶୀଳ ଆଧୁନିକ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାରେ ନାନା ପରିବର୍ତ୍ତନ (Dialectical change) ର ବିଶିଷ୍ଟ ଗୌରବ ।

ଏଇ ପରିବର୍ତ୍ତନ ଭୌଗଳିକ ପରିସ୍ଥିତି ଦୃଷ୍ଟିରୁ ଯେତେ ବ୍ୟାପକ କିନ୍ତୁ ଐତିହାସିକ ପରିସ୍ଥିତି ସେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏହାର ମହତ୍ୱ ଠିକ୍ United States of America, ଲଣ୍ଡନର କକ୍‌ନି, ରୁଷିଆର Russian Dialectsରେ ଯେପରି ଅନୁଭୂତ, ସେପରି ଏସିଆର ନାନା ଦେଶର ଭାଷା ଏବଂ ବିଭାଷା ବିଶେଷତଃ ଓଡ଼ିଶାର ଭାଷା ବିଭାଷାରେ ।

1. Nei Jori Lagitol- Preface P.1



## ୩୫

# ଓଡ଼ିଆ ଭାଷାର ପ୍ରାଚୀନତା

### ବଂଶୀଧର ମହାନ୍ତି

ଓଡ଼ିଆ ଭାଷାର ପ୍ରାଚୀନତା ସମ୍ବନ୍ଧରେ ଆଗରୁ ଅନେକ ଭାଷାତତ୍ତ୍ୱବିଦ୍ ଆଲୋଚନା କରି ଯାଇଅଛନ୍ତି କିନ୍ତୁ ସେସବୁ ଆଲୋଚନା ତେତେ ଧାରାବାହିକ ଓ ବିଶଦ ନୁହେଁ । ବହୁ ପ୍ରାଚୀନ କାଳରୁ ଓଡ଼ିଆ ଭାଷା ସ୍ୱରୂପର ସୂଚନା ଭରତଙ୍କ ନାଟ୍ୟଶାସ୍ତ୍ରରେ ଦେଖିବାକୁ ମିଳେ । ଆଲୋଚକମାନେ ଭରତଙ୍କ ନାଟ୍ୟଶାସ୍ତ୍ରର ସମୟ ଖ୍ରୀ. ୨ୟ ଶତକ ବୋଲି ନିରୂପଣ କରି ଅଛନ୍ତି । ଏଥିରେ କଥିତ ଅଛି ଯେ, ଶାକର, ଆଭୀର, ଚଣ୍ଡାଳ, ଶବର, ଦ୍ରାବିଡ଼, ଔଡ୍ର ଓ ବନଚରମାନଙ୍କର ଭାଷା "ବିଭାଷା" ଭାବରେ କଥିତ ।

ଯଥା- "ଶକରାଭୀର ଚାଣ୍ଡାଳ ସବର ଦ୍ରାବିଡ଼ୋଡ୍ରଜାଃ
ହୀନାବନେଚରଣାଂଚ ବିଭାଷାଃ ସପ୍ତକୀର୍ତ୍ତିତାଃ"

('ଭରତ ନାଟ୍ୟଶାସ୍ତ୍ର'-କାବ୍ୟମାଳା ସମ୍ପାଦନା)

ଅନ୍ୟାନ୍ୟ କେତେକ ଗ୍ରନ୍ଥରେ ଏହି ଶ୍ଳୋକର ବିଭିନ୍ନ ପାଠାନ୍ତର ଲକ୍ଷ୍ୟ କରାଯାଇଥାଏ । ଯଥା- 'ବିଭାଷା ନାଟକାଶ୍ରୟା' (୧) ଓ 'ସବର ଦ୍ରାବିଡ଼ୋଡ୍ରଜାଃ' ସ୍ଥାନରେ "ସଚଳ ଦ୍ରାବିଡ଼ୋଡ୍ରଜାଃ" (୨) ଇତ୍ୟାଦି । କିନ୍ତୁ ଅଧିକାଂଶ ଗ୍ରନ୍ଥରେ ଆମ୍ଭେମାନେ "ସବର ଦ୍ରାବିଡ଼ୋଡ୍ରଜାଃ" ଏହି ପାଠଟି ପାଇଥାଉଁ । ତେବେ ଯାହାହେଉ, ନାଟକରେ ବିଭିନ୍ନ ବିଭାଷା ମଧ୍ୟରେ 'ଓଡ୍ର' ବିଭାଷା ଭାବରେ କଥିତ ହେଉଥିଲା । ଓଡ଼ିଆ ଭାଷାର ପ୍ରାଚୀନତମ ସ୍ୱରୂପ 'ଔଡ୍ରୀ'ର ତତ୍କାଳୀନ 'ଶବର, ଆଭୀର, ଚଣ୍ଡାଳ ଓ ଦ୍ରାବିଡ଼' ପ୍ରଭୃତି ଆଦିବାସୀ ଭାଷା ଓ ଦ୍ରାବିଡ଼ ଭାଷା ସହିତ ସମ୍ବନ୍ଧ ଥିଲା । ଏବେ ମଧ ଭାରତୀୟ ଆର୍ଯ୍ୟ ଭାଷା ଓଡ଼ିଆରେ ଆମ୍ଭେମାନେ ବହୁଳ ଭାବରେ ଆଦିବାସୀ ଓ ଦ୍ରାବିଡ଼ ଭାଷାର ସମ୍ବନ୍ଧ ଲକ୍ଷ୍ୟ କରିଥାଉଁ ।

ପ୍ରାକୃତ ବିଭାଷା ପ୍ରସଙ୍ଗରେ ପ୍ରସିଦ୍ଧ ଭାଷାତତ୍ତ୍ୱବିଦ୍ ସାର୍ ଜର୍ଜ ଗ୍ରୀୟାରସନ 'ଓଡ୍ର' ବିଭାଷାର ଆଲୋଚନା କରିଅଛନ୍ତି । ତହିଁରୁ (୩) ଜଣାଯାଏ ଯେ, ପ୍ରାକୃତ ବୈୟାକରଣିକ ମାର୍କଣ୍ଡେୟ ପ୍ରାକୃତ ଭାଷାକୁ ୪ଶ୍ରେଣୀରେ ବିଭକ୍ତ କରିଅଛନ୍ତି; ଯଥା- ଭାଷା, ବିଭାଷା, ଅପଭ୍ରଂଶ ଓ ପୈଶାଚ । ସେ ମହାରାଷ୍ଟ୍ରୀ, ଶୌରସେନୀ, ପ୍ରାଚ୍ୟା, ଅବନ୍ତୀ ଓ ମାଗଧୀକୁ

ଭାଷା ଶ୍ରେଣୀର ଅନ୍ତର୍ଭୁକ୍ତ ଓ ଶାକରୀ, ଚାଣ୍ଡାଳୀ, ଶାବରୀ, ଆଭୀରିକୀ ଓ ଶାକ୍କୀକୁ ବିଭାଷା ବିଭାଗରେ ରଖି ଅଛନ୍ତି । ସେ ଓଡ୍ରୀ ଓ ଦ୍ରାବିଡ଼ୀକୁ ବିଭାଷା ଭିତରେ ନେଇ ନାହାନ୍ତି । ମାର୍କଣ୍ଡେୟ ୨୭ପ୍ରକାର ଅପଭ୍ରଂଶ ମଧ୍ୟରେ ଓଡ୍ର ଓ କାଳିଙ୍ଗ୍ୟର ସ୍ଥାନ ନିର୍ଦ୍ଦେଶ କରିଛନ୍ତି । ଏଥିରୁ ଜଣାଯାଏ ଯେ, ଭରତଙ୍କ ସମୟରେ 'ଓଡ୍ର ବିଭାଷା'ରେ ପ୍ରାଚୀନତମ ଓଡ଼ିଆଭାଷାର ସ୍ୱରୂପ ପ୍ରକାଶ ଲାଭ କରିଥିଲା ।

ନାଟ୍ୟ ଶାସ୍ତ୍ରରେ ବିଭିନ୍ନ ଶୈଳୀର ଉଲ୍ଲେଖ ପ୍ରସଙ୍ଗରେ ଭରତ କେତେକ ରଚନାରୀତି ବା ରଚନାଶୈଳୀର ଉଲ୍ଲେଖ କରିଛନ୍ତି । ଯଥା- ଆବନ୍ତୀ, ପଞ୍ଚାଳ ମଧ୍ୟମା, ଦାକ୍ଷିଣାତ୍ୟା ଏବଂ ଓଡ୍ରମାଗଧୀ । "ଆବନ୍ତୀ ଦାକ୍ଷିଣାତ୍ୟାଚ ତଥାଚୈବୋଡ୍ରମାଗଧୀ" (ନାଟ୍ୟଶାସ୍ତ୍ର ଅ୬) ଭରତ ଯାହାକୁ ଓଡ୍ରମାଗଧୀ ରୀତି କହିଛନ୍ତି ତାହା ଓଡ଼ିଶା ଓ ମଗଧରେ ପ୍ରଚଳିତ ସାହିତ୍ୟିକ ରଚନା ରୀତିକୁ ବୁଝାଉଛି ଓ ତାହା ପ୍ରାୟ ପରବର୍ତ୍ତୀ ସମୟର ଗୌଡ଼ୀ ରୀତି । ଭରତ ପୁଣି କହିଛନ୍ତି ଯେ, ଏହି ରୀତି ଓଡ଼ିଶା, ବଙ୍ଗ, ମଗଧ, ପ୍ରାଗ୍‌ଜ୍ୟୋତିଷ, ତାମ୍ରଲିପ୍ତ ଓ ତନ୍ନିକଟବର୍ତ୍ତୀ ଅଞ୍ଚଳରେ ପ୍ରଚଳିତ ଥିଲା । ରାଜଶେଖର କହନ୍ତି ଯେ, ଅଙ୍ଗ, ବଙ୍ଗ, ସୁହ୍ମ, ବ୍ରହ୍ମ ଓ ପୁଣ୍ଡ୍ର ପ୍ରଭୃତି ଅଞ୍ଚଳରେ ଓଡ୍ରମାଗଧୀ ରୀତି ଚଳୁଥିଲା । ମାଗଧୀ ପ୍ରାକୃତ ପ୍ରଭାବିତ ପ୍ରାଚ୍ୟ ଅଞ୍ଚଳର ଭାଷା ସମୂହର ଘନିଷ୍ଠ ସମ୍ପର୍କର 'ଓଡ୍ରମାଗଧୀ' ପ୍ରବୃତ୍ତିରୁ ଯେ ସ୍ପଷ୍ଟ ଭାବରେ ସୂଚନା ମିଳୁଛି ତାହା କହିବା ବାହୁଲ୍ୟ ମାତ୍ର ।

ଭରତଙ୍କ ପରେ ଓଡ଼ିଆ ବା ଓଡ଼ିଶାର ଭାଷାସମ୍ବନ୍ଧୀୟ କିଞ୍ଚିତ୍ ଉଲ୍ଲେଖ ଖ୍ରୀ.୭ମ ଶତାବ୍ଦୀର ବିଶିଷ୍ଟ ବୌଦ୍ଧ ପରିବ୍ରାଜକ ହୁଏନ୍‌ସାଂନ୍‌ଙ୍କର ଭାରତଭ୍ରମଣ ବୃତ୍ତାନ୍ତରୁ ଜଣାପଡ଼ିଥାଏ । ହୁଏନ୍‌ସାଂ 'ଉ-ଚ' ବା ଓଡ୍ର ଦେଶର ଲୋକଙ୍କର ବର୍ଣ୍ଣନା କରି କହିଛନ୍ତି ଯେ, ସେମାନେ ବଡ଼ ଭୀଷଣ ଓ ଉଗ୍ର ପ୍ରକୃତିର ଲୋକ । ସେମାନଙ୍କ ଶରୀରର ବର୍ଣ୍ଣ କଳା ଓ ଦେଖିବାକୁ ଖୁବ୍ ଉଚ୍ଚା । ଏମାନଙ୍କର କଥିତ ଭାଷା ମଧ୍ୟଭାରତର ଭାଷାଠାରୁ ପୃଥକ୍ । ହୁଏନ୍‌ସାଂଙ୍କର ଏହି ଉକ୍ତିରୁ ଜଣାଯାଏ ଯେ, ସେତେବେଳକୁ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ଭାବରେ ପ୍ରତିଷ୍ଠା ଲାଭକଲାଣି ଓ ତାହାର ଉଚ୍ଚାରଣ ପଦ୍ଧତି ମଧ୍ୟଭାରତ ଭାଷାର ଉଚ୍ଚାରଣ ପଦ୍ଧତିଠାରୁ ପୃଥକ୍ ହେଲାଣି । ଖ୍ରୀ. ୭-୮ ଶତାବ୍ଦୀ ଭାରତୀୟ ଆର୍ଯ୍ୟଭାଷା ଇତିହାସରେ ଅପଭ୍ରଂଶ ଭାଷା ବିକାଶର ଯୁଗ । ଏହି ସମୟ ଓ ତତ୍‌ପରବର୍ତ୍ତୀ ସମୟ ଅର୍ଥାତ୍ ଖ୍ରୀ. ୭-୧୦ଶତାବ୍ଦୀ ମଧ୍ୟରେ ଓଡ଼ିଆ ବୌଦ୍ଧ ସାହିତ୍ୟର ଯୁଗ । ଏହି ସମୟରେ ବିଶିଷ୍ଟ ସହଜିୟା ସିଦ୍ଧାଚାର୍ଯ୍ୟ କାନ୍‌ହୁପାଦ, ଲୁଇପାଦ, ଶବରୀପାଦ ପ୍ରଭୃତିଙ୍କର ଅପଭ୍ରଂଶ ସାହିତ୍ୟ ସୃଷ୍ଟି ଲାଭ କରିଛି, ଯାହାର ଭାଷାରେ ପ୍ରାଚୀନତମ ଓଡ଼ିଆ ଭାଷାର ସନ୍ଧାନ ମିଳିଥାଏ । ହୁଏନ୍‌ସାଂଙ୍କର ଓଡ଼ିଶା ଦେଶର ଭାଷା ସମ୍ବନ୍ଧୀୟ ଏହି ସଂକ୍ଷିପ୍ତ ଉକ୍ତିପରେ ଆମେ ଖ୍ରୀ ୧୦ମ ଶତକର ଏକ ପ୍ରାକୃତ ବ୍ୟାକରଣ ଗ୍ରନ୍ଥରୁ ଓଡ଼ିଆ ଭାଷାସମ୍ବନ୍ଧୀୟ ସୂଚନା ପାଉଥାଉଁ । ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀର ପ୍ରାକୃତ ବ୍ୟାକରଣ ଲେଖକ ପୁରୁଷୋତ୍ତମ ଦେବ ତାଙ୍କର

'ପ୍ରାକୃତାନୁଶାସନ' ଗ୍ରନ୍ଥରେ ମଧ ଔଡ୍ରୀ ଅପଭ୍ରଂଶର ଉଲ୍ଲେଖ କରିଅଛନ୍ତି । ଯଥା-

"ଇକାଗୌକାର ପ୍ରାୟୌଡ୍ରୀ"

ଅର୍ଥାତ୍ ଔଡ୍ରୀ ଅପଭ୍ରଂଶରେ 'ଇ' ଏବଂ 'ଓ' ପ୍ରତ୍ୟୟର ବହୁଳ ବ୍ୟବହାର ରହିଥାଏ । 'ତ୍ରିକାଣ୍ଡଶେଷ' ଓ 'ହାରାବଳୀ' ପ୍ରଭୃତି କୋଷଗ୍ରନ୍ଥର ପ୍ରଣେତା ପୁରୁଷୋତ୍ତମ ଦେବଙ୍କୁ କେହି କେହି ଓଡ଼ିଶାର ଗଜପତି ରାଜା ପୁରୁଷୋତ୍ତମ ଦେବ ବୋଲି କହିଥାନ୍ତି;(୪) କିନ୍ତୁ ଉକ୍ତ ମତ ଭୁଲ୍‌ବୋଲି ଜଣାପଡ଼େ । 'ତ୍ରିକାଣ୍ଡଶେଷ', 'ହାରାବଳୀ' ଓ 'ପ୍ରାକୃତାନୁଶାସନ' ଗ୍ରନ୍ଥର ରଚୟିତା ପୁରୁଷୋତ୍ତମ ଦେବ ଖ୍ରୀ ୧୦ମ ଶତାବ୍ଦୀର ଜନୈକ ପଣ୍ଡିତ ଥିଲେ ଓ ତାଙ୍କର ଗ୍ରନ୍ଥସମୂହ ରାଜଶେଖରଙ୍କ ପୂର୍ବରୁ (ଖ୍ରୀ. ୯୨୦-୯୫୦) ରଚିତ ହୋଇଥିବା ଜଣାଯାଏ ।(୫)

ଏହା ପରେ ଖ୍ରୀ ୧୨ଶ ଶତାବ୍ଦୀରେ ଅନିରୁଦ୍ଧ ଭଟ୍ଟଙ୍କର "ପ୍ରାକୃତ କଳ୍ପତରୁ" ଗ୍ରନ୍ଥରେ ଉଭୟ "ଉତ୍କଳୀ" ଓ "ଓଡ୍ର" ଅପଭ୍ରଂଶର ଉଲ୍ଲେଖ ରହିଛି । ଯେପରି -

"ଆଭୀରିକା ଦ୍ରାବିଡ଼ୌତ୍କଳୀଚ ବନୌକସୀ ମାଣ୍ଡୁରିକେତି ନାମ୍ନା
ଶାକର ଓଡ୍ରଦ୍ରାବିଡ଼ାଦି ବାଚୋପଭ୍ରଂଶତାମ୍"(୬)

ଏହି ସମୟର ଅନ୍ୟଜଣେ ପ୍ରାକୃତ ବ୍ୟାକରଣକାର ରାମଶର୍ମା କହନ୍ତି ଯେ, ଶାକାରିକା, ଚାଣ୍ଡାଳିକା, ଶାବରୀ, ଆଭିରିକା, ଦ୍ରାବିଡ଼ିକା, ଔଡ୍ରୀ ବା ଔତ୍କଳୀ ପ୍ରଭୃତି ଅପଭ୍ରଂଶ ଭାଷାମଧ୍ୟରୁ ଶାବରୀ, ଆଭିରିକା, ଦ୍ରାବିଡ଼ିକା, ଔଡ୍ରୀ ବା ଔତ୍କଳୀ ମାଗଧୀର ଏକ ପ୍ରକାର ଭେଦମାତ୍ର ।(୭)

ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀରେ ଓଡ଼ିଶାର ଅନ୍ୟ ଜଣେ ପ୍ରାକୃତ ବ୍ୟାକରଣ ଲେଖକ ମାର୍କଣ୍ଡେୟ ତାଙ୍କର 'ପ୍ରାକୃତ ସର୍ବସ୍ୱ'ରେ ଔଡ୍ରୀ ଅପଭ୍ରଂଶର ଉଲ୍ଲେଖ କରିଅଛନ୍ତି । ସେ କହିଛନ୍ତି ଯେ "ଓଡ୍ର ଦେଶର ଭାଷା ଯାହା ଶବରୀ ଭାଷା ସହିତ ସମ୍ବନ୍ଧାନ୍ୱିତ ତାହାର ବିଚାର ସ୍ୱତନ୍ତ୍ର ଭାବରେ ହେବା ଉଚିତ ।" ସେ ଔଡ୍ରୀ ଅପଭ୍ରଂଶର ଏହିପରି ବ୍ୟାଖ୍ୟା ଦେଇ ଅଛନ୍ତି -

"ଶାବର୍ଯାମେବୌଡ୍ରୀ ଯୋଗାତ୍ତଦେଶ୍ୟ ଶୌରସେନ୍ୟାଦେଃ"- ଅର୍ଥାତ୍ "ତଦ୍ଦେଶ୍ୟାନାମୋଡ୍ର ଦେଶ ପଦାନାଂ ଶୌରସେନ୍ୟାଦିପଦାନାଂ ଚ ଯୋଗାତ୍ ସଙ୍କରାଚ୍ଛାବର୍ଯାମେବୌଡ୍ରୀ ସିଧ୍ୟତି" ।(୮) ଏହାର ଅର୍ଥ ହେଉଛି ଯଦି ଓଡ୍ର ଦେଶର କଥିତ ଦେଶଜ ଶବ୍ଦ ଓ ଶୌରସେନୀ ପ୍ରାକୃତ ଭାଷାକୁ ଶାବରୀ ଭାଷା ସହିତ ମିଶାଇବା ତାହାହେଲେ ଆମ୍ଭେମାନେ ଔଡ୍ରୀ ଅପଭ୍ରଂଶର ସ୍ୱରୂପ ପାଇପାରିବା ।

**ଔଡ୍ରୀ ଅପଭ୍ରଂଶର ଉଦାହରଣ -**

"ଦେବ ଜସୋଆଣନ୍ଦଣ କରମଇ କରୁଣା ଲେଶ
ଏତ୍ତିକେ ଜମଉ ଅଛ(ଉ)ଇ ପିଚ୍ଛଇ ସବ୍‌ବକିଲେଶ ।"

(ଇତୌଡ୍ରୀ)

ସଂସ୍କୃତ- "ଦେବ ଯଶୋଦାନନ୍ଦନ କୁରୁମୟି କରୁଣା ଲେଶମ୍
ଇହତ୍ୟଃ ଜନ୍ମତଃ ଅସ୍ମିଇତି (?) ପୀଡ଼ୟତି ସର୍ବକ୍ଳେଶଃ"

ମାର୍କଣ୍ଡେୟ ଔଡ୍ରୀ ଅପଭ୍ରଂଶର ଯେଉଁ ଉଦାହରଣ ଦେଇଅଛନ୍ତି ମନେହୁଏ, ତାହା ଏକ କୌଣସି ପ୍ରାଚୀନ ଓଡ଼ିଆ ଅପଭ୍ରଂଶ ଗ୍ରନ୍ଥର ଗୋଟିଏ ପଦ କିନ୍ତୁ ଉଦ୍ଧୃତିଟି କେଉଁ ଗ୍ରନ୍ଥରୁ ଦିଆଯାଇଛି ସେ, ତାହା ଉଲ୍ଲେଖ କରି ନାହାନ୍ତି । ଔଡ୍ରୀ ଅପଭ୍ରଂଶର ବୈଶିଷ୍ଟ୍ୟ ଅନୁଯାୟୀ ଏଥିରେ ଶାବରୀ ଭାଷାର ଓ ଓଡ଼ିଆ ଦେଶଜ ଶବ୍ଦର ସ୍ୱରୂପ ଦେଖିବାକୁ ମିଳେନାହିଁ । ଅପଭ୍ରଂଶ ଭାଷାର ସମୟ ନିରୂପଣ ଦୃଷ୍ଟିରୁ ଏହି ପଦଟିର ସମୟ ଆନୁମାନିକ ଖ୍ରୀ ୧୦ମ ଶତାବ୍ଦୀ ହୋଇପାରେ । ଓଡ଼ିଆ ଭାଷାର ଇତିହାସରେ ଏହି ପଦଟିର ଗୁରୁତ୍ୱ ମଧ୍ୟ ବିଶେଷ ଭାବରେ ଅନୁଭୂତ ହୋଇଥାଏ ।

ମାର୍କଣ୍ଡେୟ ଔଡ୍ରୀ ଅପଭ୍ରଂଶର ସ୍ୱରୂପ ପ୍ରଦାନ କରିବା ବ୍ୟତୀତ "କାଳିଙ୍ଗ୍ୟ" ନାମକ ଅନ୍ୟ ଏକ ଅପଭ୍ରଂଶର ସୂଚନା ଦେଇଅଛନ୍ତି । କାଳିଙ୍ଗ୍ୟ ଅପଭ୍ରଂଶ କଳିଙ୍ଗ ଦେଶରେ ପ୍ରଚଳିତ ହେଉଥିଲା । ମାର୍କଣ୍ଡେୟ କହିଛନ୍ତି ଯେ "ହିଂ" ବର୍ଣ୍ଣ କାଳିଙ୍ଗ୍ୟ ଅପଭ୍ରଂଶ ଶବ୍ଦାବଳୀରେ ବିଶେଷ ଭାବରେ ପ୍ରଯୁକ୍ତ ହେଉଥିଲା ।

ଯଥା- "ହିଂ ଯୁକ୍ତା କାଳିଙ୍ଗୀ"

(ପ୍ରାକୃତସର୍ବସ୍ୱ - ପୃ ୧ ୨ ୨)

ଆଲୋଚକମାନଙ୍କ ମତରେ ଅପଭ୍ରଂଶ ଭାଷାର ପ୍ରକାରଭେଦ ଅଞ୍ଚଳ ଅନୁଯାୟୀ ହୋଇଥିଲା । ସେଥିପାଇଁ ରୁଦ୍ରଟ କହିଅଛନ୍ତି, "ଦେଶ ବିଶେଷାଦପଭ୍ରଂଶଃ" । ମାର୍କଣ୍ଡେୟ ଯେଉଁ ୨୭ ପ୍ରକାର ଅପଭ୍ରଂଶର ନାମକରଣ କରିଅଛନ୍ତି, ତାହାର ଆଞ୍ଚଳିକ କଥିତ ଭାଷା ଅନୁଯାୟୀ ନାମକରଣ ହୋଇଛି । ଯେପରି-

"ଗୌଡ଼ୌଡ୍ର ବୈଦ ପାଶ୍ଚାତ୍ୟ ପାଣ୍ଡ୍ୟ କୌନ୍ତଳ ସିଂହଳାଃ
କାଳିଙ୍ଗ୍ୟ ପ୍ରାଚ୍ୟ କର୍ଣ୍ଣାଟ କାଞ୍ଚ୍ୟ ଦ୍ରାବିଡ଼ ଗୌର୍ଜରାଃ"

(ପ୍ରାକୃତସର୍ବସ୍ୱ-ପୃ ୧ ୨ ୨)

ତେବେ ଓଡ଼ିଆ ଭାଷା କିପରି ମାଗଧୀ ପ୍ରାକୃତ, ଶୌରସେନୀ ଓ ଶାବରୀ ଭାଷାଦ୍ୱାରା ପ୍ରଭାବିତ ହୋଇଅଛି ତାହା ଅନୁସନ୍ଧାନଯୋଗ୍ୟ । ଏଠାରେ ଶବର ଭାଷା କହିଲେ କେବଳ 'ଶବର'ମାନଙ୍କର ଭାଷା ନ ହୋଇ ସମଗ୍ର ଆଦିବାସୀ ଭାଷା ବା ଅଷ୍ଟ୍ରୋଏସିଆଟିକ୍ ଗୋଷ୍ଠୀର ଭାଷାର ପ୍ରଭାବ ବୁଝିବାକୁ ହେବ । ଆଜିମଧ୍ୟ ଓଡ଼ିଶାର ସମଗ୍ର ଲୋକସଂଖ୍ୟାର ଏକତୃତୀୟାଂଶ ହେଉଛନ୍ତି ଆଦିବାସୀ ଏବଂ ଏହି ଭାଷାର ପ୍ରଭାବ ଓଡ଼ିଆ ଭାଷା ଉପରେ ପ୍ରତିଫଳିତ ହେବା ସ୍ୱାଭାବିକ ।

ସମୟଥିଲା ଯେତେବେଳେ ପ୍ରାଚୀନ ସଂସ୍କୃତନାଟକରେ ଔଡ୍ରୀ ବିଭାଷା ଅନ୍ୟାନ୍ୟ ବିଭାଷା ସହିତ ବ୍ୟବହୃତ ହେଉଥିଲା । ତାହା ହେଉ ନ ଥିଲେ ନାଟ୍ୟଶାସ୍ତ୍ରରେ ଭରତ ଏ

ପ୍ରକାର ଉକ୍ତି ଲିପିବଦ୍ଧ କରି ନ ଥାନ୍ତେ । ଔଡ୍ରୀ 'ବିଭାଷା' ଓ 'ଅପଭ୍ରଂଶ' ଭାଷା ଭାବରେ ବିଭିନ୍ନ ପ୍ରାକୃତ ବ୍ୟାକରଣ ଗ୍ରନ୍ଥରେ ସ୍ୱୀକୃତି ଲାଭ କରିଛି । 'ବିଭାଷା'ର ବ୍ୟାଖ୍ୟା ଦେବାକୁ ଯାଇ ଗ୍ରୀୟାରସନ୍ କହିଅଛନ୍ତି ଯେ, ବିଭାଷା ହେଉଛି ଏକ ବା ଏକାଧିକ ଷ୍ଟାଣ୍ଡାର୍ଡ଼ ପ୍ରାକୃତ ଭାଷାର ଅପଭ୍ରଷ୍ଟ ସ୍ୱରୂପ ଯାହା କେବଳ ନିର୍ଦ୍ଦିଷ୍ଟ ଚରିତ୍ରମାନଙ୍କଦ୍ୱାରା ନାଟକରେ ବ୍ୟବହୃତ ହେଉଥିଲା ।(୯)

ଖ୍ରୀ. ୧୫ଶତାବ୍ଦୀରେ ଗଢ଼ିଉଠେ ଓଡ଼ିଆ ଭାଷା ଓ ସାହିତ୍ୟର ଋଦ୍ଧିମନ୍ତ ସୃଷ୍ଟି ସାରଳା ମହାଭାରତ । ସେତେବେଳକୁ ଓଡ଼ିଆ ଭାଷା ଓ ସାହିତ୍ୟ ପୂର୍ଣ୍ଣ ବିକଶିତ ଅବସ୍ଥାକୁ ଆସିଗଲାଣି । ଆଦିକବି ସାରଳାଦାସ କଥିତ ଓଡ଼ିଆ ଭାଷାରେ ବିରାଟ ଗ୍ରନ୍ଥସମୂହ ପ୍ରଣୟନ କରିବା ସହିତ ବିଭିନ୍ନ ଭାରତୀୟ ଭାଷା ଓ ଲିପିର ନାମୋଲ୍ଲେଖ ସହିତ ଓଡ଼ିଆ ଭାଷା ଓ ଲିପିର ମଧ ଉଲ୍ଲେଖ କରିଅଛନ୍ତି । ଏହା ଦେଖିବାର କଥା ଯେ, ସେତେବେଳେ ଅନ୍ୟାନ୍ୟ ଭାରତୀୟ ଭାଷାର କୌଣସି ଗ୍ରନ୍ଥକାର ଏପରି ସୁନ୍ଦର ଓ ବିସ୍ତୃତ ଭାବରେ ତତ୍କାଳୀନ ପ୍ରଚଳିତ ଭାଷା ଓ ଲିପି ସମ୍ବନ୍ଧରେ ଉଲ୍ଲେଖ କରି ନାହାନ୍ତି । ସାରଳାଦାସ ପୂର୍ଣ୍ଣ ଓଡ଼ିଆତ୍ୱ ବଜାୟ ରଖି ଓଡ଼ିଶାର ଜାତୀୟତା ସହିତ ଓଡ଼ିଆ ଭାଷାର ସୂଚନା ଏହିପରି ଭାବରେ ଦେଇଛନ୍ତି । ମଧ୍ୟପର୍ବରେ ଶ୍ରୀକୃଷ୍ଣ ସାନ୍ଦିପନୀ ଋଷିଙ୍କ ଗୃହରେ ପାଠପଢ଼ା ପ୍ରସଙ୍ଗରେ କବି ଓଡ଼ିଆ ଭାଷା ସହିତ ତତ୍କାଳୀନ ପ୍ରଚଳିତ ଥିବା ଭାରତୀୟ ଭାଷା ଓ ଲିପିସମୂହ ଶିକ୍ଷା କରିଅଛନ୍ତି । ଯଥା -

"ଓଡ଼ିଆ ତେଲଙ୍ଗି ଯେ ନାଗେରୀ ଦକ୍ଷିଣୀ
କନାଉଜ ଆହରଣ ଗଉଡ଼ୀ ଆଟଡ୍ରାୟଣୀ ।
ବିରଞ୍ଚି ରାମହାଟୀ ମହାଭାଖା
ତାହାଳ ବେଲାଳ ଆଦି ଯେତେ ପଞ୍ଚମରେଖା ।
ଦଖିଣ ମନ୍ଦର କାମେରୀ ଭାରଥୀ
ଭାଖା ଉଦେସ ଯେ କଲେଜ ଶ୍ରୀପତି ।
ଯେକାଦଶ ଅକ୍ଷର ଭାଖା ଚଉଷଠି
ନବ ଦିବସେ ଲେଖନ ବିଦ୍ୟାପତ୍ର ପଟୀ ।"

କବି ପ୍ରଧାନ ଭାବରେ ଏହି ଉଦ୍ଧୃତିରେ ଓଡ଼ିଆ, ତେଲଗୁ ଓ ଦାକ୍ଷିଣାତ୍ୟର ଅନ୍ୟାନ୍ୟ ଦ୍ରାବିଡ଼ ଭାଷା (ଦଖିଣୀ), କନାଉଜୀ, ବଙ୍ଗଳା (ଗଉଡ଼ୀ) ଓ ଆସାମୀ (କାମେରୀ<କାଉଁରି) ପ୍ରଭୃତି ଭାଷା ଭାବରେ ସ୍ୱୀକୃତି ତଥା ଲୋକପ୍ରିୟତା ଲାଭ କରିଥିବା ଭାଷାଗୁଡ଼ିକର ଉଲ୍ଲେଖ କରିଛନ୍ତି । ଓଡ଼ିଆଭାଷାର ଇତିହାସରେ ଏହି ଉଦ୍ଧୃତିଟିର ମହତ୍ତ୍ୱ ଯେ ଯଥେଷ୍ଟ ବେଶି ତାହା କହିବା ଅନାବଶ୍ୟକ ।

କେବଳ ଏତିକି ନୁହେଁ, ସାରଳା ଦାସ ତାଙ୍କ ମହାଭାରତରେ ସ୍ୱତନ୍ତ୍ର ଭାବରେ 'ଓଡ଼ିଆ ଭାଷା' ଓ 'ଓଡ଼ିଆ ଲିପି'ର ଉଲ୍ଲେଖ କରିବା ସହିତ 'ଓଡ୍ରରାଷ୍ଟ୍ର, ଓଡ଼ିଶା ଓ ଓଡ଼ିଶୀ,

ଓଡ଼ଙ୍ଗ, ଓଡ଼ିଆଣୀ' (ଓଡ଼ିଆ ଶବ୍ଦର ସ୍ତ୍ରୀଲିଙ୍ଗ) ପ୍ରଭୃତି ଶବ୍ଦର ବହୁଳ ବ୍ୟବହାର କରିଅଛନ୍ତି ।

ସାରଳା ଦାସଙ୍କ ପରେ ଓଡ଼ିଆ ଭାଷାର ନାମୋଲ୍ଲେଖ ପରବର୍ତ୍ତୀ ଅନ୍ୟାନ୍ୟ କବିମାନଙ୍କର ରଚନାର କୌଣସି ସ୍ଥାନରେ ପ୍ରାୟ ଲକ୍ଷିତ ହୋଇନାହିଁ । କେବଳ ଖ୍ରୀ. ୧୬ଶ ଶତାବ୍ଦୀର କବି ଜଗନ୍ନାଥ ଦାସଙ୍କର ଭାଗବତରେ 'ଓଡ଼ିଆ ଭାଷା'କୁ 'ପ୍ରାକୃତ' ବା 'ଭାଷା' ବୋଲି ଆଖ୍ୟାତ କରିଅଛନ୍ତି । ଯେପରି -

ପ୍ରାକୃତ ବନ୍ଧେ ଭାଗବତ । କହଇ ଦାସ ଜଗନ୍ନାଥ । ୧୧ସ୍କନ୍ଧ-ଅ୧୦

ବୋଲଇ ଦାସ ଜଗନ୍ନାଥ । ପ୍ରାକୃତ ବନ୍ଧେ ଭାଗବତ । ୧୧ଶ ସ୍କନ୍ଧ ଅ ୨୩

ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ । ୧୧ଶ ସ୍କନ୍ଧ - ଅ ୨୬

ଭାଷାତତ୍ତ୍ୱବିଦ୍ ଓ ଆଳଙ୍କାରିକମାନେ ଭାଷାରାଜ୍ୟରେ 'ପ୍ରାକୃତ' ଭାଷାକୁ ଭାରତୀୟ ଆର୍ଯ୍ୟଭାଷାର କ୍ରମବିକାଶରେ ଏକ ସ୍ୱତନ୍ତ୍ର ସ୍ତର ବୋଲି ନିର୍ଦ୍ଦେଶ କରିଅଛନ୍ତି । 'ପ୍ରାକୃତ' ଭାଷା ଯେହେତୁ ଜନସାଧାରଣଙ୍କର କଥିତ ଭାଷା ଥିଲା ଓ ସଂସ୍କୃତ ସମାଜର ଉଚ୍ଚଗୋଷ୍ଠୀର ଭାଷା ବା 'ଦେବଭାଷା' ଥିଲା, ତେଣୁ ଜଗନ୍ନାଥ ଦାସ ଉଚ୍ଚବଂଶ ଉଦ୍ଭବ ହୋଇ ଓ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଥାଇ ଲୌକିକ ଭାଷାରେ ଗ୍ରନ୍ଥ ରଚନା କରିବା ହେତୁ ସେ ଏପ୍ରକାର କ୍ଷମାସୂଚକ ଉକ୍ତି ପ୍ରକାଶ କରିଛନ୍ତି । ମନେହୁଏ, ଏଇଥିପାଇଁ ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତର ଭାଷା ସାରଳା, ବଳରାମଙ୍କ ପୂରାପୂରି ଅପଭ୍ରଷ୍ଟ ଲୌକିକ ଭାଷା ଅପେକ୍ଷା ଅପେକ୍ଷାକୃତ ପରିମାର୍ଜିତ ହୋଇଛି, ସମାଜର ଉଭୟ ଉଚ୍ଚାଙ୍ଗ ଓ ନିମ୍ନତମ ଗୋଷ୍ଠୀଙ୍କର ଗ୍ରହଣଯୋଗ୍ୟ ହେବାପାଇଁ । ତେବେ ଯାହା ହେଉନା କାହିଁକି ଜଗନ୍ନାଥ ଦାସ ଓଡ଼ିଆ ଭାଷାକୁ 'ପ୍ରାକୃତ' ଓ 'ଭାଷା' ଭାବରେ ଆଖ୍ୟାତ କରି ଅଛନ୍ତି ।

ଏହି ପ୍ରାକୃତ ଭାଷା ଦିବ୍ୟ ବା ସଂସ୍କୃତ ଭାଷର ବିପରୀତ । ଅଷ୍ଟାଦଶ ଶତାବ୍ଦୀର କବି ଅଭିମନ୍ୟୁ 'ସଂସ୍କୃତ' ବା 'ତତ୍ସମ' ମୂଳକ ଭାଷାକୁ 'ଦିବ୍ୟଭାଷା' ଓ ପ୍ରାକୃତ ବା କଥିତ ଲୋକଭାଷାକୁ 'ଅଦିବ୍ୟ ଭାଷା' ବୋଲି କହି ଅଛନ୍ତି । ଅଭିମନ୍ୟୁ ଉଭୟ ସଂସ୍କୃତଜ୍ଞ ପଣ୍ଡିତ ଓ ସାଧାରଣ ଶିକ୍ଷିତ ଲୋକମାନଙ୍କ ମନକୁ ପାଇଲା ଭଳି "ଦିବ୍ୟ-ଅଦିବ୍ୟ" ଭାଷାରେ କାବ୍ୟ ରଚନା କଲେ ଏବଂ ସେ କହିଛନ୍ତି ଯେ ଏପ୍ରକାର ଧାରା ଆଗରୁ ପ୍ରଚଳିତ ଥିଲା ।

"ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି -

ଦେଖ ମହାଜନ ମାର୍ଗ ପରମ୍ପରାବିଧି ।" ବିଦଗ୍ଧଚିନ୍ତାମଣି ଛା୧

ସହାୟକ ଗ୍ରନ୍ଥ ସୂଚୀ :

୧. ପ୍ରକୃତ ସର୍ବସ୍ୱମ୍- ଭଟ୍ଟନାଥ ସ୍ୱାମୀ ସଂପାଦିତ, ଭାଇଜାଗ ୧୯୨୭, ପୃ-୨

୨. ଓଡ଼ିଆ ଭାଷା ତଥା ସାହିତ୍ୟ - ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ, ହିନ୍ଦୀ ସାହିତ୍ୟ କୋଷ, ଭାଗ-୧, ପୃ-୧୪୧

୩. ପ୍ରାକୃତ ବିଭାଷା- ସାର୍ ଜର୍ଜ,ଏ.ଗ୍ରୀୟାରସନ, ଜେ.ଆର.ଏ.ଏସ୍ ୧୯୧୮, ପୃ-୪୮୯-୫୧୭

୪. ତ୍ରିକାଣ୍ଡ ଶେଷ ଓ ପୁରୁଷୋତ୍ତମ ଦେବ - ମୃତ୍ୟୁଞ୍ଜୟ ରଥ, ମୁକୁର, ୭ମ ଭାଗ ୨ୟ ସଂଖ୍ୟା, ପୃ-୩୧-୪୪

୫. ଓଡ଼ିଶା ଇତିହାସ - ଡକ୍ଟର ମହତାବ, ପୃ-୨୬୩

୬. ପ୍ରାକୃତ ବିଭାଷା - ସାର୍ ଜର୍ଜ ଏ.ଗ୍ରୀୟାର ସନ, ଜେ.ଆର.ଏ.ଏସ୍. ୧୯୧୮, ପୃ-୪୯୬

୭. ପ୍ରାକୃତ ବିଭାଷା - ସାର୍ ଜର୍ଜ ଏ ଗ୍ରୀୟାରସନ, ଜେ.ଆର.ଏ.ଏସ୍.୧୮୧୮, ପୃ-୪୯୮




# ଉନବିଂଶ ଶତାବ୍ଦୀର ଓଡ଼ିଆ ଭାଷା ଆନ୍ଦୋଳନ

## ବଂଶୀଧର ମହାନ୍ତି

୧୮୬୯ ମସିହାର କଥା । ଆଜିକୁ ପ୍ରାୟ ଶହେବର୍ଷ ହୋଇଯିବ । ଓଡ଼ିଶା ଆଜି ଏକ ସ୍ୱତନ୍ତ୍ର ପ୍ରଦେଶ ଓ ତା'ର ଭାଷା ମଧ୍ୟ ସ୍ୱତନ୍ତ୍ର; କିନ୍ତୁ ଦିନ ଥିଲା ଯେତେବେଳେ ଓଡ଼ିଆଭାଷା ଓ ସାହିତ୍ୟର ରକ୍ଷାପାଇଁ ଦେଶରେ ଏକ ପ୍ରବଳ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ୧୮୬୬ ନଅଙ୍କ ଦୁର୍ଭିକ୍ଷର ପର ଘଟଣା । ଦୁର୍ଭିକ୍ଷରେ ଓଡ଼ିଶାରୁ ଲକ୍ଷ ଲକ୍ଷ ଲୋକ ମରିଗଲେ । ଦେଶ ଶ୍ରୀହୀନ ହୋଇଗଲା । ସେତେବେଳକାର ଇଂରେଜ ସରକାରଙ୍କର ଓଡ଼ିଶା ଉପରେ ଦୃଷ୍ଟି ପଡ଼ିଲା, ଓଡ଼ିଶାରେ କିଛି ନା କିଛି ଉନ୍ନତିମୂଳକ କାର୍ଯ୍ୟ କରିବା ପାଇଁ । ଦେଶକୁ ଦୁର୍ଭିକ୍ଷଦାଉରୁ ରକ୍ଷା କରିବା ପାଇଁ ବଡ଼ ବଡ଼ ନାଳ ଖୋଳାଗଲା । ଦେଶରୁ ମୂର୍ଖତା ଦୂର କରିବାପାଇଁ କେତେକ ସ୍ଥାନରେ ଇଂରାଜୀ ସ୍କୁଲ ବସିଲା । ଇଂରାଜୀ ତଥା ଆଧୁନିକ ପ୍ରଣାଳୀରେ ଓଡ଼ିଆଶିକ୍ଷା ସ୍କୁଲମାନଙ୍କରେ ଦିଆଯିବାର ବ୍ୟବସ୍ଥା ହେଲା ।

ସେତେବେଳକାର ବଙ୍ଗଳାରେ ଶ୍ରୀ ରାଜେନ୍ଦ୍ରଲାଲ ମିତ୍ର ପ୍ରତ୍ନତତ୍ତ୍ୱବିଦ୍ ଭାବରେ ଖ୍ୟାତି ଅର୍ଜନ କରିଥାନ୍ତି । ତାଙ୍କର ଓଡ଼ିଶାର ଇତିହାସ ଓ ପ୍ରତ୍ନତତ୍ତ୍ୱ ସମ୍ବନ୍ଧୀୟ Antiquities of Orissa (ଆଣ୍ଟିକ୍ୱିଟିସ୍ ଅଫ ଓଡ଼ିଶା) ପୁସ୍ତକ ଦୁଇଖଣ୍ଡ ବହୁ ମୂଲ୍ୟବାନ୍ ପୁସ୍ତକ ଭାବରେ ଏବେ ମଧ୍ୟ ବିବେଚିତ ହେଉଛି; କିନ୍ତୁ ସେତେବେଳେ ସେ ଓଡ଼ିଶାରେ ଓଡ଼ିଆଭାଷାର ପ୍ରଚଳନ ନିମିତ୍ତ ଓ ସ୍କୁଲମାନଙ୍କରେ ତହିଁ ମାଧ୍ୟମରେ ଶିକ୍ଷାଦେବାର ଘୋର ବିରୋଧାଚରଣ କରିଥିଲେ । ୧୮୬୮-୭୦ ମଧ୍ୟରେ ଓଡ଼ିଶାରେ ଯେଉଁ ଭାଷାଗତ ଆନ୍ଦୋଳନ ହୋଇଥିଲା, ତା'ର ସୂତ୍ରପାତ କରିଥିଲେ ରାଜେନ୍ଦ୍ରଲାଲ ମିତ୍ର । ୧୮୬୮ ମସିହା ଡିସେମ୍ବର ମାସରେ ସେ ଓଡ଼ିଶାକୁ ବୁଲିଆସି କଟକ ଡିବେଟିଂ କ୍ଲବ୍‌ରେ ଗୋଟିଏ ବକ୍ତୃତା ଦେଇଥିଲେ । ସେ ସେହି ବକ୍ତୃତାରେ କହିଥିଲେ, "ଉତ୍କଳର ଯଥାର୍ଥ ହିତାକାଙ୍କ୍ଷୀ ଯେ ହେବ, ସେ ସର୍ବାଗ୍ରେ ଉତ୍କଳଭାଷା ଉଠାଇ ଦେଇ ବଙ୍ଗଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ । କାରଣ ତାଙ୍କର ମତରେ ଯେତେକାଳ ଉତ୍କଳଭାଷା ଉଠିଯାଇ ନାହିଁ, ତେତେକାଳ ଏ ଦେଶର ଉନ୍ନତି ହେବା

ଅସମ୍ଭବ । ସେ ଆପଣା ମତର ପୋଷକତାରେ ଏହି ହେତୁ ଦର୍ଶାଇଲେ ଯେ, ଦୁର୍ଭିକ୍ଷ କମିଶନରଙ୍କ ଗଣନା ଅନୁସାରେ ଉତ୍କଳର ଲୋକସଂଖ୍ୟା କୋଡ଼ିଏ ଲକ୍ଷ ଅଟଇ ଓ ଏଥିରୁ, ସ୍ତ୍ରୀ-ବାଳକ ଇତ୍ୟାଦି ଚିହ୍ନାଇଦେଲେ କେବଳ ଦଶ ବାରଲକ୍ଷ ଲୋକ ଲେଖାପଢ଼ା ଜାଣିବାର ସମ୍ଭବ; କିନ୍ତୁ ଏତିକି ଲୋକ କି ଗୋଟିଏ ସ୍ୱତନ୍ତ୍ର ଭାଷା ରକ୍ଷା କରିପାରନ୍ତି ? ଅଳ୍ପ ଗ୍ରାହକ ଥିବାରୁ ଏଠାରେ କେହି ନୂତନ ପୁସ୍ତକାଦି ରଚନା କରି କୃତକାର୍ଯ୍ୟ ହେବାର ଅସମ୍ଭବ । ବଙ୍ଗଦେଶ ବହୁ ବିସ୍ତୃତ ଓ ସେଠାରେ ଲୋକସଂଖ୍ୟା ଅଧିକ ବୋଲି ସେଠାରେ ଭାଷାର ଏତାଦୃଶ ଉନ୍ନତି ହୋଇଅଛି । ଯେବେ ଉତ୍କଳରେ ବଙ୍ଗଭାଷା ପ୍ରଚଳ ହୁଅଇ, ତେବେ ବଙ୍ଗଦେଶର ପୁସ୍ତକମାନ ଏଠାରେ ଚଳିବ । ଏହାର ଉଦାହରଣ ସ୍ୱରୂପ ଉକ୍ତ ବାବୁ କହିଲେ ଯେ ବଙ୍ଗଦେଶରେ ଗତ ୩ମାସରେ ପ୍ରାୟ ୩୦୦ ଖଣ୍ଡ ବଙ୍ଗ ପୁସ୍ତକ ମୁଦ୍ରିତ ହେଲା; କିନ୍ତୁ ଉତ୍କଳରେ ୩/୪ଖଣ୍ଡରୁ ଅଧିକ ନହେଲା । ଏଥିରୁ ସ୍ପଷ୍ଟ ପ୍ରମାଣ ଯେ ଉତ୍କଳଭାଷା କଦାଚ ଉନ୍ନତି ହୋଇନପାରେ ।"

('ଉତ୍କଳ ଦୀପିକା', ୧୮୬୯, ମାର୍ଚ୍ଚ ୧୩ତାରିଖ, ପୃ-୪୧)

ଏହି ବକ୍ତୃତାରୁ କ୍ରମେ ଓଡ଼ିଆଭାଷା ଆନ୍ଦୋଳନର ଉତ୍ପତ୍ତି ଘଟିଲା । ସେତେବେଳେ ଦୀପିକାର ସମ୍ପାଦକ ଗୌରୀଶଙ୍କର ମତ ଦେଇଥିଲେ, "ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳଭାଷା 'ତିନିଥେଣ୍ଟିଯା କାକୁଡ଼ିବାଡ଼' ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗଭର୍ଣ୍ଣମେଣ୍ଟ ହୋଇଅଛନ୍ତି । ଏକଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ, ଏକଭାଗ ମଧ୍ୟପ୍ରଦେଶ ଗଭର୍ଣ୍ଣମେଣ୍ଟ ହସ୍ତେ ଓ ଅନ୍ୟ ଏକଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡ଼ିବାରୁ ଏହାର ସର୍ବାଙ୍ଗ ସମାନ ରୂପେ ପଠନ ହେଉନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ । ସୁତରାଂ ଉତ୍କଳଭାଷା ଦୁଇଘର କୁଣିଆ ହୋଇ ଉପବାସ ଶୋଉଅଛି ।"

('ଉତ୍କଳ ଦୀପିକା', ୧୮୬୯, ପୃ-୪୧)

କେବଳ ଏତିକି ନୁହେଁ, କଟକ "ଷ୍ଟାର" ପତ୍ରିକାରେ ଶ୍ରୀ ଉମାଚରଣ ହାଲଦାର, ଶ୍ରୀ ରାଜକୃଷ୍ଣ ବନ୍ଦୋପାଧ୍ୟାୟ ପ୍ରଭୃତି କେତେକ ବ୍ୟକ୍ତି ସେତେବେଳେ ଓଡ଼ିଆ କିମ୍ବା ବଙ୍ଗଳା ଯେଉଁ ଅକ୍ଷର ସୁନ୍ଦର, ଏ ବିଷୟରେ ବହୁ ହାସ୍ୟୋଦ୍ଦୀପକ ପ୍ରସଙ୍ଗ ଉତ୍ଥାପନ କରିଥିଲେ ଓ ଚାହିଁଥିଲେ ଯେ ଓଡ଼ିଆ ପୁସ୍ତକ ବଙ୍ଗଳା ଅକ୍ଷରରେ ଛପାଯାଉ । କଲିକତାରୁ ପ୍ରକାଶ ପାଉଥିବା ବ୍ରାହ୍ମ ସମାଜର ମୁଖପତ୍ର 'ଇଣ୍ଡିଆନ୍ ମିରର୍' ପତ୍ରିକାର ସମ୍ପାଦକ ମହୋଦୟ ମଧ୍ୟ ସେହିପ୍ରକାର ଯୁକ୍ତି ବାଢ଼ି ଓଡ଼ିଶାରେ ବଙ୍ଗଳା ଭାଷା ଚଳାଇବା ନିମିତ୍ତ ବଙ୍ଗଳା ସରକାରଙ୍କୁ ଅନୁରୋଧ କରିଥିଲେ । ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମକ ଜନୈକ ସ୍କୁଲ ଶିକ୍ଷକ "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୟ" ନାମକ ପୁସ୍ତିକା ପ୍ରକାଶ କରିଥିଲେ, ଯହିଁରେ ରାଜେନ୍ଦ୍ର ଲାଲ ମିତ୍ରଙ୍କର ଅଧିକାଂଶ ମତ ସ୍ଥାନଲାଭ କରିଥିଲା ।

ତତ୍କାଳୀନ ବଙ୍ଗର ଲେଫଟନାଣ୍ଟ ଗଭର୍ଣ୍ଣର ଏସବୁ ବିଷୟ ପ୍ରତି ଭ୍ରୂକ୍ଷେପ ନ କରି ଉତ୍କଳଭାଷାର ଉନ୍ନତି ନିମିତ୍ତ ଚେଷ୍ଟା କରିଥିଲେ । ଏହି ପ୍ରକାର ଭାଷାଗତ ସମାଲୋଚନା ସେତେବେଳେ ଓଡ଼ିଶା ବା ବଙ୍ଗଳାର ପତ୍ରପତ୍ରିକାରେ ପ୍ରକାଶ ପାଇବାରୁ ସରକାର ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠୋପଯୋଗୀ ପୁସ୍ତକ ପରୀକ୍ଷା ନିମିତ୍ତ ଗୋଟିଏ ସଭା ଡକାଇଲେ । ସଭାର ସଭାପତି ହେଲେ ଟ୍ରାନ୍ସଲେଟର ଡବ୍ଲ୍ୟୁ. ସି. ଲେସି ସାହେବ ଓ ସଭ୍ୟମାନେ ରହିଲେ ରାଜା ଭାଗିରଥୀ ମହୀନ୍ଦ୍ର ବାହାଦୂର, ଶ୍ରୀ ବିଚିତ୍ରାନନ୍ଦ ଦାସ, ଶ୍ରୀ ବନମାଳୀ ସିଂହ ଓ ଶ୍ରୀ ଦ୍ୱାରକାନାଥ ଚକ୍ରବର୍ତ୍ତୀ ।

୧୮୬୫ ମସିହାରୁ କମିଶନର ରେଭେନ୍ସା ସାହେବ ଓଡ଼ିଶା ସ୍କୁଲମାନଙ୍କରେ ଓଡ଼ିଆ ଭାଷାରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା ନିମିତ୍ତ ବଙ୍ଗଳା ସରକାରଙ୍କୁ ଜଣାଇଥିଲେ । ମଝିରେ ଘଟିଲା ଏ ପ୍ରକାର ଭାଷାଗତ ଆନ୍ଦୋଳନ । ଓଡ଼ିଶାର ବିଦ୍ୟାଳୟସମୂହର ଇନ୍ସପେକ୍ଟର, କମିଶନର ଓ ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ଏକମତ ହୋଇ ଓଡ଼ିଶାର ବିଦ୍ୟାଳୟ ସମୂହରେ ଓଡ଼ିଆ ଭାଷାରେ ଶିକ୍ଷା ଦେବାର ବ୍ୟବସ୍ଥା ନିମିତ୍ତ ବଙ୍ଗଳା ସରକାରଙ୍କୁ ଆବେଦନ ପତ୍ର ଦେଇଥିଲେ; ମାତ୍ର ଶିକ୍ଷାବିଭାଗର 'ଡାଇରେକ୍ଟର କେବଳ ବିରୋଧ ମତ ଦେଇଥିଲେ । ସରକାରଙ୍କର ବିଚାରରେ ଓଡ଼ିଆଭାଷାର ମର୍ଯ୍ୟାଦା ରକ୍ଷିତ ହୋଇଥିଲା । ଲେଫ୍ଟନାଣ୍ଟ ଗଭର୍ଣ୍ଣର ଡାଇରେକ୍ଟରଙ୍କର ଯୁକ୍ତିକୁ ଅତି ଦୁର୍ବଳ ଯୁକ୍ତି ବୋଲି ମନେକରିଥିଲେ ଓ ଓଡ଼ିଆ ଭାଷା ଯେ ଏକ ସ୍ୱତନ୍ତ୍ର ଭାଷା, ତାହା ସେ ସ୍ୱୀକାର କରିଥିଲେ । ଗଭର୍ଣ୍ଣର ସାହେବଙ୍କ ଆଦେଶ ଅନୁଯାୟୀ (କ) କଟକ ହାଇସ୍କୁଲ ଓ ଓଡ଼ିଶାର ଅନ୍ୟ ଦୁଇ ହାଇସ୍କୁଲ (ପୁରୀ ଓ ବାଲେଶ୍ୱର)ରେ ବଙ୍ଗଳା ଅଥବା ଓଡ଼ିଆଭାଷା ପାଠକରିବା ଛାତ୍ରମାନଙ୍କର ସ୍ୱେଚ୍ଛାଧୀନ ରହିଲା ବା ଦୁଇ ଭାଷା ଶିକ୍ଷା କରିବା ସ୍ୱେଚ୍ଛାଧୀନ ରହିଲା । (ଖ) ମଧଇଂରାଜୀ ଓ ଭର୍ଣ୍ଣାକ୍ୟୁଲାର ସ୍କୁଲରେ ଉତ୍କଳଭାଷାରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଗଲା, ବଙ୍ଗଳା ସ୍ୱେଚ୍ଛାଧୀନ ବିଷୟ ହୋଇ ରହିଲା । (ଗ) ନିମ୍ନଶ୍ରେଣୀଗୁଡ଼ିକରେ କେବଳ ଓଡ଼ିଆଭାଷାରେ ଶିକ୍ଷା ଦେବା ନିମିତ୍ତ ବ୍ୟବସ୍ଥା ରହିଲା । ଓଡ଼ିଆଭାଷାରେ ପାଠ୍ୟପୁସ୍ତକର ଅଭାବ ନିମିତ୍ତ ଅନୁବାଦିତ ବା ନୂଆ ଗ୍ରନ୍ଥର ଦୋଷଗୁଣ ବିଚାର କରିବା ପାଇଁ ଗୋଟିଏ କମିଟି କରାଗଲା । ସେମାନଙ୍କର କାର୍ଯ୍ୟ ହେଲା ଯେ ସେମାନେ ପାଠ୍ୟପସ୍ତକର ଦୋଷଗୁଣ ବିଚାର କରି ମୁଦ୍ରାଙ୍କନ ନିମିତ୍ତ ଉପଯୁକ୍ତ ପୁସ୍ତକଗୁଡ଼ିକୁ କଲିକତା ସ୍କୁଲ ବୁକ୍ ସୋସାଇଟିକୁ ପଠାଇବେ ଓ ତାହା ଛାପା ହେଲାପରେ ସେହି ପୁସ୍ତକସମୂହ ଓଡ଼ିଶାର ସ୍କୁଲମାନଙ୍କରେ ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହେବ ।

ବଙ୍ଗଳା ସରକାରଙ୍କର ଏ ଆଦେଶ ଫଳରେ ଏହି ଭାଷା ଆନ୍ଦୋଳନ ଏକପ୍ରକାର ବନ୍ଦ ହୋଇଗଲା; କିନ୍ତୁ ଅଳ୍ପଦିନ ପରେ ପୁଣି ଓଡ଼ିଆଭାଷା ଉଠାଇ ବଙ୍ଗଭାଷା ଚଳାଇବା ନିମିତ୍ତ କେତେକ ପୁସ୍ତକ ଓ ପ୍ରଚାରପତ୍ର ପ୍ରକାଶ ପାଇଥିଲା । ପୂର୍ବପରି ବଙ୍ଗଳାର ପତ୍ରପତ୍ରିକାରେ ଅନୁକୂଳ ମତ ମଧ୍ୟ ପ୍ରଚାର କରାଯାଇଥିଲା, ଯାହାର ଇତିହାସ ସୁଦୀର୍ଘ; କିନ୍ତୁ ସରକାର ସେସବୁ ଅଯୌକ୍ତିକ ମତ ପ୍ରତି ଦୃଷ୍ଟି ଦେଇ ନ ଥିଲେ ।

ଏହା ପରେ ପରେ ଓଡ଼ିଶାର ବହୁ ଦେଶହିତୈଷୀ କର୍ମୀ ଲାଗିପଡ଼ିଥିଲେ ବିଚ୍ଛିନ୍ନ ଓଡ଼ିଆଭାଷାର ଏକୀକରଣ ଲାଗି । ସମ୍ବଲପୁର ସେତେବେଳେ ମଧ୍ୟପ୍ରଦେଶ ଶାସନାଧୀନ ଥିଲା ଓ ଏଣେ ଗଞ୍ଜାମ ଥିଲା ମାନ୍ଦ୍ରାଜ ସରକାରଙ୍କ ଅଧୀନରେ । ଏକ ଦିଗରେ ହିନ୍ଦୀ ଓ ଅନ୍ୟ ଦିଗରେ ତେଲୁଗୁଭାଷା କବଳରୁ ଓଡ଼ିଆଭାଷାକୁ ରକ୍ଷାକରିବା ନିମିତ୍ତ ସେତେବେଳେ ଚେଷ୍ଟା ହୋଇଥିଲା । ପାଲୁର, ହୁମା, ଗଞ୍ଜା, ପୂର୍ବଖଣ୍ଡ, ଖଲିକୋଟ, ଆଠଗଡ଼, ଘୁମୁସର, ଧରାକୋଟ, ସୋରଡ଼ା, ରଣବା, କାଟିଙ୍ଗା, ଗଦାପୁର ଓ ଦକ୍ଷିଣାଞ୍ଚଳରେ ଥିବା ବରଗଡ଼, ସେରଗଡ଼, ସାନଖେମୁଣ୍ଡୀ, ବଡ଼ଖେମୁଣ୍ଡୀ, ଚିକିଟି, ମହୁରୀ, ଜରଡ଼ା, ସୁରଙ୍ଗା, ବୁଢ଼ାରସିଂହ, ଜଳନ୍ତର, ମଞ୍ଜୁଷା, ତରଳା, ପାରଳା ଓ ଟିକାଲୀ ପ୍ରଭୃତି ଗଞ୍ଜାମଜିଲ୍ଲା ଓ ନିକଟବର୍ତ୍ତୀ ଓଡ଼ିଆ ଅଞ୍ଚଳରେ ତେଲୁଗୁ କଚେରୀଭାଷା ଥିବାରୁ ଓ ସ୍କୁଲମାନଙ୍କରେ ତେଲୁଗୁ ଶିକ୍ଷାର ପ୍ରସାର କରାଯଉଥିବାରୁ ଗଭର୍ଣ୍ଣରଙ୍କ ନିକଟରେ ସେ ଅଞ୍ଚଳର ଲୋକମାନେ ଆବେଦନପତ୍ର ଦେଇଥିଲେ । ଓଡ଼ିଆଭାଷାର ସ୍ୱତ୍ୱ ଏ ଅଞ୍ଚଳରେ ଅକ୍ଷୁଣ୍ଣ ରଖିବାଲାଗି ସରକାର ତତ୍ପର ହୋଇନଥିବାରୁ ଏ ଆନ୍ଦୋଳନ ବହୁଦିନ ଧରି ଚାଲିଥିଲା ।

୧୮୭୨ ମସିହା ଅଗଷ୍ଟ ମାସ ଆଡ଼କୁ ସରକାର ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାର ଅଂଶ ବୋଲି ସ୍ଥିର କଲେ ଓ ସେଠାକାର ଅଫିସ, କଚେରୀ ସମୂହରେ ଓଡ଼ିଆଭାଷା ଚଳାଇବାକୁ ଆଦେଶ ଦେଲେ । ସମ୍ପାଦକ ଲେଖିଛନ୍ତି, "ପୂର୍ବେ ଏ ମହକୁମା ସମସ୍ତରେ ତୈଲଙ୍ଗଭାଷା ଚଳୁଥିବାରୁ ତେଲଙ୍ଗା ଲୋକେ ଏକା ଗଭର୍ଣ୍ଣମେଣ୍ଟ କାର୍ଯ୍ୟ ପାଉଥିଲେ ଓ ଗଞ୍ଜାମନିବାସୀମାନଙ୍କର କୌଣସି ଉନ୍ନତି ହେଉ ନଥିଲା । ଏ ବିଷୟରେ ଯେ ଗଞ୍ଜାମ ନିବାସୀମାନେ ଅତ୍ୟନ୍ତ ଦୁଃଖିତ ଥିଲେ, ତାହା ଆମ୍ଭେମାନେ କେତେଥର ଏ ପତ୍ରିକାରେ ଜଣାଇଅଛୁ । ଯାହାହେଉ, ଏଥର ସେମାନଙ୍କର ମନସ୍କାମନା ପୂର୍ଣ୍ଣହେଲା ଓ ତହିଁ ସଙ୍ଗେ ଓଡ଼ିଆ ଭାଷାର ଉନ୍ନତି ମଧ୍ୟ ହେବାର ବିଶେଷ ଆଶା ହେଲା ।" ('ଉତ୍କଳ ଦୀପିକା', ୧୮୭୨, ଅଗଷ୍ଟ ୩) ୧୮୭୨ ମସିହାରୁ ସମ୍ବଲପୁର ତତ୍କାଳୀନ "କଟକର ଅଧୀନର ପ୍ରସ୍ତାବ" ବା ଓଡ଼ିଶାକୁ ଆସିବା ପ୍ରଶ୍ନ ଓ ସମ୍ବଲପୁର ଆସିବା ପରେ ସେଠାକାର କଚେରିରେ ଓଡ଼ିଆଭାଷାର ପ୍ରଚଳନ ନେଇ ଆନ୍ଦୋଳନ ୧୮୯୮ ମସିହା ପର୍ଯ୍ୟନ୍ତ ଚଳିଥିଲା । ସମ୍ବଲପୁର କୋର୍ଟ-କଚେରିରେ ହିନ୍ଦୀଭାଷା ଉଠାଇ ଓଡ଼ିଆ ଚଳାଇବା ପାଇଁ ୧୮୯୬ ମସିହାରେ ଏକ ଆନ୍ଦୋଳନ ହୋଇଥିଲା । ତାହାର ନେତୃତ୍ୱ ନେଇଥିଲେ ପାଲଲହଡ଼ାର ମେନେଜର ଦାମୋଦର ପଟ୍ଟନାୟକ । ସେ ଏ ବିଷୟକୁ ଲକ୍ଷ୍ୟକରି ଗୀତ ଲେଖିଥିଲେ -

"ସମ୍ବଲପୁର ଜନନୀ ହୁଏ ଆଜି ନିର୍ବାସିନୀ
କାଲି କି ହେବ ଭବନେ ନ କର ଭାବନ
ଜନନୀ ରସନା ହିନ୍ଦୀ କାଟଇ ଜାତିକି ନିନ୍ଦି
ଉଠରେ ଉତ୍କଳ ଭାଇ ଘେନି ନିବେଦନ ।"

('ସମ୍ବଲପୁର ହିତୈଷିଣୀ', ୧୮୯୭, ପୃ ୯୯୭)

ଏ ସବୁରୁ ଲକ୍ଷ୍ୟକଲେ ଜଣାଯାଏ ଯେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ମଧ୍ୟଭାଗ କ'ଣ, ଆଜିପର୍ଯ୍ୟନ୍ତ ମଧ୍ୟ ଓଡ଼ିଆଭାଷା ଆନ୍ଦୋଳନ ଓ ଓଡ଼ିଆ ଅଞ୍ଚଳର ଏକୀକରଣ ନିମିତ୍ତ ଏକ ସୁଦୀର୍ଘ ଜାତୀୟ ପ୍ରଚେଷ୍ଟା ଓ ନିରବଚ୍ଛିନ୍ନ ଇତିହାସ ରହିଛି । ଏସବୁ ଆନ୍ଦୋଳନକୁ ଯିଏ ଯେଉଁ ଦୃଷ୍ଟିରେ ଦେଖୁନା କାହିଁକି, ତାହା ଏବେ ଦେଶର ଜାତୀୟତାର ସୁଦୃଢ଼ ଭିତ୍ତି ସ୍ଥାପନ କରିବା ସହିତ ଓଡ଼ିଆ ଦେଶ, ଓଡ଼ିଆଭାଷା ଓ ସାହିତ୍ୟର ପୁନର୍ଗଠନ ତଥା ଏକୀକରଣ କରିଛି । ଏତଦ୍‌ଭିନ୍ନ "ଉତ୍କଳ ହିତୈଷିଣୀ" ନାମରେ ଖଣ୍ଡିଏ ନୂତନ ପତ୍ରିକା "କଟକ ସୋସାଇଟି"ର ପ୍ରଚାରକତ୍ୱରେ ବିନା ମୂଲ୍ୟରେ ଏକମାସ ପର୍ଯ୍ୟନ୍ତ ବଣ୍ଟନ ହେବାର ନିୟମ ସ୍ଥିରୀକୃତ ହେବା ସଙ୍ଗେ ସଙ୍ଗେ ଖୁବ୍ ଅଳ୍ପଦିନ ବ୍ୟବଧାନରେ ଆଉ ଖଣ୍ଡିଏ ଇଂରାଜୀ ପତ୍ରିକା ପ୍ରକାଶଲାଭ କରିବା ପାଇଁ ଉଦ୍ୟମ ମଧ୍ୟ କରାଗଲା । ('ଉତ୍କଳ ଦୀପିକା', ଫେବୃଆରୀ ୨୦, ୧୮୬୯, ପୃ-୩୧) କଟକରେ ସ୍ଥାପିତ ହୋଇଥିବା ଡିବେଟିଂ କ୍ଲବର ସଭ୍ୟଗଣ ବଙ୍ଗୀୟ ସଭ୍ୟମାନଙ୍କ ଉଦ୍ୟମରେ ଉତ୍କଳ ପୁସ୍ତକ ଓ ସମ୍ବାଦପତ୍ରାଦି ବଙ୍ଗାକ୍ଷରରେ ମୁଦ୍ରିତ ହେବାର ସୁପ୍ତ ପ୍ରଚେଷ୍ଟା ବିରୁଦ୍ଧରେ ଅସି ଉତ୍ତୋଳନ କଲେ । ତଥାପି ମଧ୍ୟ ଉମାଚରଣଙ୍କ ନେତୃତ୍ୱରେ ଉତ୍କଳଭାଷାର ନିମ୍ନଲିଖିତ ପଦ୍ୟଟି ବଙ୍ଗଳା ଅକ୍ଷରରେ ପ୍ରକାଶିତ ହୋଇଥିଲା । ଉକ୍ତ ବିଷୟ ଓଡ଼ିଆମାନଙ୍କ ପକ୍ଷରେ କମ୍ ନିନ୍ଦନୀୟ ନଥିଲା । ଗୀତଟି ହେଉଛି –

ସଙ୍ଗାତ, କି ଶୁଣିଲି ଆଚମ୍ବିତ,
ନାହିଁ ଏଥୁ ବଳି ବିପରୀତରେ । ଘୋଷା ।
ଉଡ଼ିୟା ପାଇଁକି ଯାହାଙ୍କ ପଢ଼ିୟା କରମ ବାଟିୟା ହେଲା ।
ବଣା କଲା ତାଙ୍କୁ ଉଡ଼ିୟା ଅକ୍ଷର ଭାଷା ।
ଅଡୁଆ ଲାଗିଲା ରେ ॥୧॥
ଶିଖି ନାନା ଜ୍ଞାନ ବୋଲନ୍ତି ସୁଜାଣ ବୁଦ୍ଧି ହେଉଛି ନିବାଡ଼
ଏ କି ହଟହଟା ଅକ୍ଷର କେତେଟା ପଶୁଛନ୍ତି କଣ୍ଟାବାଡ଼ ରେ ॥୨॥
ଟାଣପଣେ ଜଣେ ସିହାଣପଣକୁ ଯତନେ ପିହାଣ ଫେଡ଼ି,
ବଙ୍ଗଳା ଅକ୍ଷରେ ଉଡ଼ିୟା ଲେଖିବା ବିଧିକି ଦେଇଛି ହେଡ଼ିରେ ॥୩॥
ପାଇ ଏ ବିଧାନ ବାଟ ସ୍ୱ ପ୍ରଧାନ କରୁଛନ୍ତି ଯେତେ ନାଟ,
ତା ଦେଖି ମୁଁ ଭାଳେ ପରଚନ୍ଦୁ ଦେଲେ
ଦିଶିବ କଣାକୁ ବାଟ ରେ ॥୪॥

ବଶମ୍ବଦ 'ନବଗୁଞ୍ଜର'

('ଉତ୍କଳ ଦୀପିକା'-ଜୁଲାଇ ୨୪, ୧୮୬୯-ପୃ. ୧୨୦)

ବ୍ରାହ୍ମଧର୍ମ ଉତ୍କଳରେ ପ୍ରବେଶ କରିବାର ପ୍ରାୟ କୋଡ଼ିଏ ବର୍ଷ ହୋଇଯାଇଥାଏ । ତେଣୁ ବ୍ରାହ୍ମଧର୍ମ ବିଷୟରେ ପୁସ୍ତକସମୂହ ଉତ୍କଳ ଭାଷାରେ ପ୍ରକାଶିତ ନହେଲେ ଏ ଦେଶରେ ବ୍ରାହ୍ମଧର୍ମ ଉତ୍ତମରୂପେ ପ୍ରଚାରିତ ହୋଇପାରିବ ନାହିଁ । ଆମ୍ଭମାନଙ୍କ ଦେଶରେ ଅର୍ଥବାନ୍ ଓ ବ୍ରାହ୍ମଧର୍ମାନୁରାଗୀ ବ୍ୟକ୍ତିଙ୍କର ସଂଖ୍ୟା ମୁଷ୍ଟିମେୟ ହୋଇଥିବାରୁ ତହିଁରେ ବହୁ ବ୍ୟୟସାଧ । ଏତାଦୃଶ ପ୍ରଚାରପୁସ୍ତକମାନଙ୍କର ପ୍ରକାଶନ ସମ୍ପୂର୍ଣ୍ଣ ଅସମ୍ଭବ । ପୂର୍ବତନ ମୁନ୍‌ସଫ ବାବୁ ଶ୍ରୀ ମହେଶଚନ୍ଦ୍ର ରାଏଙ୍କ ପ୍ରଚେଷ୍ଟାରେ ଏଠାରେ ବ୍ରାହ୍ମସମାଜ ସ୍ଥାପନ ହେଲା । ('ଉତ୍କଳଦୀପିକା'- ଅଗଷ୍ଟ ୬, ଡିସେମ୍ବର ୧୮, ୧୮୬୯)

ବଙ୍ଗବାସୀମାନେ "ଇଣ୍ଡିୟାନ୍ ମିରର୍" ନାମକ ଇଂରାଜୀ ସମ୍ବାଦପତ୍ରର ସମ୍ପାଦକଙ୍କ ନିକଟକୁ ଉତ୍କଳ ସହିତ ସେମାନଙ୍କର ସହୃଦୟତା ଥିବାର ଦର୍ଶାଇ, ନିକଟ ସମ୍ବନ୍ଧ ପ୍ରତୀତି କରାଇ ଓଡ଼ିଆମାନେ ବଙ୍ଗଭାଷା ଶିକ୍ଷା କରିବାକୁ ଇଚ୍ଛୁକ ଅଛନ୍ତି ବୋଲି ଜଣାଇଥିବାରୁ ସମ୍ପାଦକ ମହାଶୟ ସେଥିରେ ଏହି କାରଣମାନ ଦେଇଅଛନ୍ତି, ଯଥା-

(୧) ବଙ୍ଗଭାଷାରେ ଉତ୍କୃଷ୍ଟ ପୁସ୍ତକ ପ୍ରକାଶନ ।
(୨) ଏ ଭାଷା ସହଜବୋଧ ଓ ଆଶୁ ଶିକ୍ଷାପ୍ରଦ ।
(୩) ଏହା ଅଧିକାଂଶ ଲୋକଙ୍କର ମାତୃଭାଷା ରୂପେ ବ୍ୟବହୃତ ।
(୪) ଗଠନପ୍ରଣାଳୀ ସୁଶ୍ରୀ, ସ୍ୱର ସୁଶ୍ରାବ୍ୟ, ଉଚ୍ଚାରଣ ମଧୁର ।
(୫) ଉତ୍କଳଭାଷାଠାରୁ ଉତ୍କୃଷ୍ଟତର ।

('ଉତ୍କଳ ଦୀପିକା'-ସେପ୍ଟେମ୍ବର ୨୫, ୧୮୬୯, ପୃ-୧୫୪)

ଏହାପରେ ବିଦେଶୀୟ ଲୋକେ ଉତ୍କଳଭାଷା ଉଠାଇଦେବା ପାଇଁ ଆପ୍ରାଣ ଚେଷ୍ଟା କରୁଥିବା ସମୟରେ ବିଦ୍ୟାଳୟ ସମୂହର ଇନ୍ସପେକ୍ଟର, କମିଶନର ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସମସ୍ତ ବିଦ୍ୟାଳୟରେ ଉତ୍କଳଭାଷାରେ ଶିକ୍ଷା ଦେବାର ବିଧାନ କରିବାକୁ ଗଭର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କଲେ । ଦୟାବାନ୍ ଗଭର୍ଣ୍ଣମେଣ୍ଟ ଏ ଦେଶର ଭାଷାର ଉନ୍ନତିକଳ୍ପେ ଉପାୟ କରିବାକୁ ଅନୁକମ୍ପା ପ୍ରକାଶ କଲେ । ଅବଶ୍ୟ ତତ୍କାଳୀନ ଶିକ୍ଷାବିଭାଗର ଡାଇରେକ୍ଟର ସାହେବ ଏହାର ବିରୁଦ୍ଧମତ ପ୍ରଦାନ କରି ବଙ୍ଗଭାଷାରେ ଶିକ୍ଷା ଦେବାକୁ ଅନୁରୋଧ କରିଥିଲେ । "ମାତ୍ର କମିଶନର ମହୋଦୟ ରେଭେନ୍‌ସା ସାହେବ ଉତ୍କଳର ହିତପାଇଁ ଆପ୍ରାଣ ସହଯୋଗ କରି କୃତକାର୍ଯ୍ୟ ହେଲେ ତହିଁର ଉପଯୁକ୍ତ ଧନ୍ୟବାଦ ବ୍ୟକ୍ତ କରିବାକୁ ଅସମର୍ଥ । ଏହା ତାହାଙ୍କର କୀର୍ତ୍ତିସ୍ତମ୍ଭ ପ୍ରାୟ ରହିଲା, ସନ୍ଦେହ ନାହିଁ ।" ('ଉତ୍କଳ ଦୀପିକା'- ତା ୨୦ରିଖ ନଭେମ୍ବର ୧୮୭୯, ପୃ-୧୬୭) ଶିକ୍ଷା ସମ୍ବନ୍ଧରେ ୧୮୬୧ ମସିହାରେ ଯେଉଁ ଉନ୍ନତି ସାଧିତ ହେଲା, ତାହାର ଫଳ ହେଉଛି ହାଇସ୍କୁଲ ପରୀକ୍ଷାର ପ୍ରମାଣ । ଦୀର୍ଘଦିନରୁ ଲାଗିଥିବା ବଙ୍ଗ ଓ ଉତ୍କଳୀୟ ବିବାଦ କ୍ରମଶଃ ସାଙ୍ଗହେଲା । ଗଭର୍ଣ୍ଣମେଣ୍ଟ ସୁବିଚାର କରି ଉତ୍କଳରେ ଓଡ଼ିଆ ପୁସ୍ତକ ବିଚାର ନିମିତ୍ତ କମିଟି ନିଯୁକ୍ତ କଲେ ଓ ଓଡ଼ିଆ ପୁସ୍ତକ ବିଦ୍ୟାଳୟରେ ପଠନ

ପାଇଁ ଅନୁମତି ଦେଲେ । ଆଉ ମଧ୍ୟ ଉକ୍ତ ବର୍ଷରେ ଜଣେ ଉତ୍କଳୀୟଙ୍କୁ ଡେପୁଟୀ ଇନ୍‌ସପେକ୍ଟର ପଦରେ ନିଯୁକ୍ତି, ଗୋଟିଏ ବାଳିକା ବିଦ୍ୟାଳୟ ଓ କାଳୀପଦ ବାବୁଙ୍କ ନାଇଟସ୍କୁଲ ସ୍ଥାପନ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା । ('ଉତ୍କଳଦୀପିକା'- Vol. II ଜାନୁଆରୀ ୧୫, ୧୮୭୦, ପୃ-୧୧)

ଉଇଲିୟମ କେରି ଲେସି ସାହେବ ଉତ୍କଳୀୟମାନଙ୍କ ହୃଦୟରେ ଚିରଦିନ ଜୀବିତ ତୁଲ୍ୟ ରହିବେ । ସେ ଉତ୍କଳରେ ରହି ଉତ୍କଳଭାଷା ଶିକ୍ଷା ସୁବିଧା ଉଦ୍ଦେଶ୍ୟରେ କେତେକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ସେ ଇଂରେଜ ଥିଲେହେଁ ଉତ୍କଳୀୟମାନଙ୍କୁ ଭ୍ରାତୃତୁଲ୍ୟ ଜ୍ଞାନ କରୁଥିଲେ । ଉତ୍କଳର ଜଣେ ହିତୈଷୀ ହିସାବରେ ତାଙ୍କର ମୃତ୍ୟୁଜନିତ କ୍ଷୋଭ ଉତ୍କଳୀୟମାନଙ୍କ ହୃଦୟରୁ ଲିଭିବାର ନୁହେଁ ।

କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ତାଙ୍କର "ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷାନୟ" ପୁସ୍ତକର ପ୍ରାରମ୍ଭରେ ଲେଖିଛନ୍ତି ଯେ, "ଭାଷାତତ୍ତ୍ୱବିଦ୍‌ମାନଙ୍କ ମତରେ ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ପ୍ରଭୃତି ଦଶପ୍ରକାର ଭାଷା ଏକ ମୂଳରୁ ଉତ୍ପନ୍ନ ଅର୍ଥାତ୍ ଓଡ଼ିଆ, ବଙ୍ଗଳା ଇତ୍ୟାଦି କେହି ସ୍ୱତନ୍ତ୍ରଭାଷା ନୁହଇ । କିନ୍ତୁ ସେ ପରେ ଓଡ଼ିଆକୁ ବଙ୍ଗଳା ବୋଲି ସିଦ୍ଧାନ୍ତ କରିଅଛନ୍ତି । ଏପରି ଦ୍ୱିବିଧ ମତରୁ କେଉଁଟି ସତ୍ୟ, ତାହା ଜାଣିବା ସମ୍ପୂର୍ଣ୍ଣ କଠିନ । ତେବେ ଯାହାହେଉ, ବୋଧହୁଏ ଭାଷାତତ୍ତ୍ୱବିଦ୍ ପଣ୍ଡିତଙ୍କ କଥା ମିଥ୍ୟା ହୋଇନଥିବ । ନଚେତ୍ ଆଉ କିଛି ସ୍ୱତନ୍ତ୍ର ଓଡ଼ିଆ ଭାଷା ଥାଇପାରେ । ଭଟ୍ଟାଚାର୍ଯ୍ୟ ମହାଶୟ ସ୍ୱକୀୟ ପୂର୍ବୋକ୍ତ ଗ୍ରନ୍ଥରେ ବଙ୍ଗଭାଷା ସ୍ୱତନ୍ତ୍ର ଥିବା ପକ୍ଷରେ କିଛି ପ୍ରମାଣ ଦେଇନାହାନ୍ତି ଏବଂ ବଙ୍ଗଭାଷା ସଙ୍ଗେ ଓଡ଼ିଆଭାଷା କିୟଦଂଶ ମିଶ୍ରଣ ହେବାରୁ ବଙ୍ଗଭାଷା ତାହାର ସ୍ୱତନ୍ତ୍ରତା ହରାଇଛି ବୋଲି ମତପ୍ରଦାନ କରିଛନ୍ତି । ଯଦି ଏକ ମୂଳଭାଷା ଆର୍ଯ୍ୟଭାଷାର ସମାଗମରେ ଏକ ସ୍ଥାନରେ ହିନ୍ଦୀ ଓ ଅନ୍ୟ ସ୍ଥାନରେ ବଙ୍ଗଳାଭାଷା ସୃଷ୍ଟି ହୋଇପାରିଲା, ତେବେ ଓଡ଼ିଆଭାଷା ସୃଷ୍ଟି ହେବାରେ କି ଅସୁବିଧା ହେଲା ? ହିନ୍ଦୁସ୍ଥାନରୁ ଓଡ଼ିଶାକୁ ଲୋକ ଆସିବାର କି ବଙ୍ଗ ଭିନ୍ନ ଅନ୍ୟ ବାଟ ନଥିଲା । ଯଦି ତାଙ୍କ ମତରେ ଦୁଇ ବା ଅଧିକ ଭାଷାରେ ସାଦୃଶ୍ୟ ଥିବାରୁ ଏକଭାଷା ବୋଲି ବୋଲାଯାଇପାରେ, ତେବେ ଓଡ଼ିଶାରୁ ହିନ୍ଦୀ ଓ ବଙ୍ଗଳା ବାହାରି ଥିବାର କହିଲେ ମଧ୍ୟ ସଠିକ୍ ହେବ । ଓଡ଼ିଶାବାସୀମାନେ ଏଥିପାଇଁ ଗର୍ବ କିମ୍ବା ଅହଙ୍କାର ଭାବ ସେମାନଙ୍କର ମନରେ ପୋଷଣ କରନ୍ତି ନାହିଁ । ଅଥଚ ଗର୍ବ କରିବାର ସେମାନଙ୍କର ଯଥେଷ୍ଟ କାରଣ ଅଛି । ଓଡ଼ିଶାର କୀର୍ତ୍ତିକଳାପ ବଙ୍ଗଳାରେ ନାହିଁ । ଏକଦା ଓଡ଼ିଶାର ରାଜା ବଙ୍ଗଳାର ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିବାର ଇତିହାସ ସାକ୍ଷ୍ୟ ପ୍ରଦାନ କରେ । ମାତ୍ର ବଙ୍ଗଳାର କୌଣସି ରାଜା ଓଡ଼ିଶାକୁ ଜୟ କରିବାର ଶୁଣାଯାଏ ନାହିଁ । ଅର୍ଥାତ୍, ବଳବୀର୍ଯ୍ୟ ଓ ଉନ୍ନତ ଶିଳ୍ପକୌଶଳରେ ଓଡ଼ିଶାର ପୂର୍ବକାଳୀନ ଲୋକ ବଙ୍ଗଳାଠାରୁ ଶ୍ରେଷ୍ଠ ଥିବାରୁ ପ୍ରତ୍ୟକ୍ଷରେ ଭାଷାନିମିତ୍ତ ଅନ୍ୟଠାରେ ଋଣୀ ହୋଇଥିବା ସମ୍ଭବପର ନୁହେଁ । ବରଂ ଓଡ଼ିଶାର ଭାଷା

ବଙ୍ଗଳାର ଉଲୁବେଡ଼ିୟା ଓ ମେଦିନୀପୁରରେ ପ୍ରଚଳନ ଥିବାର ଦେଖାଯାଏ । ଏତଦ୍‌ଭିନ୍ନ ଓଡ଼ିଶାରେ ଯେତେ ପ୍ରାଚୀନ ଭାଷା ସମ୍ବଳିତ ଗ୍ରନ୍ଥ ଅଛି, ବଙ୍ଗଳାରେ ତେତେ ନାହିଁ । "ମାଗି ଆଣିବା ତିଉଣରେ କି କୁଟୁମ୍ବ ପୋଷାଯାଏ ?" ('ଉତ୍କଳ ଦୀପିକା'- ଜାନୁଆରୀ ୧୬, ୧୮୭୦-ପୃ. ୩୫)

ଉତ୍କଳ ଭାଷାର ପୁସ୍ତକ ନ ଥିବାରୁ ଉକ୍ତ ପ୍ରଦେଶର ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହେବାପାଇଁ, ତତ୍କାଳୀନ କମିଶନର ପାଠ୍ୟପୁସ୍ତକର ପ୍ରକାଶନ ନିମିତ୍ତ ପୁନଃ ପୁନଃ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଲେ । ଏହା ଫଳରେ ଶିକ୍ଷା ବିଭାଗର ଡାଇରେକ୍ଟର ଉତ୍କଳ ଭାଷାରେ ପାଠ୍ୟପୁସ୍ତକମାନ ଗଭର୍ଣ୍ଣମେଣ୍ଟ ନ୍ୟାୟରେ ପ୍ରକାଶ କରିବାକୁ ଲାଗିଲେ । ଇନ୍‌ସପେକ୍ଟର ଡେପୁଟୀ ଇନ୍‌ସପେକ୍ଟରଙ୍କ ନିକଟକୁ ପୁସ୍ତକ ତାଲିକା ଓ ଆନୁମାନିକ ବ୍ୟୟର ପରିମାଣ ଜାଣିବାପାଇଁ ଲେଖିଥିଲେ । ଦୁଃସ୍ଥ ଗ୍ରନ୍ଥକାର ଓ ଲେଖକମାନେ ଗଭର୍ଣ୍ଣମେଣ୍ଟଙ୍କ ତରଫରୁ ବ୍ୟୟ ହେବା ଶୁଣି ବିଶେଷ ଉତ୍ସାହିତ ହେଲେ । ('ଉତ୍କଳ ଦୀପିକା'- Vol. II, ୧୮୭୦ ଅକ୍ଟୋବର ୨୯, ପୃ. ୧୬୨)

ଶ୍ରୀଯୁକ୍ତ ଜେ. ଡବ୍ଲ୍ୟୁ. ଲେସି ସାହେବଙ୍କ ଦ୍ୱାରା ଇଂରାଜୀଭାଷାରୁ (ଓଡ଼ିଆରେ ପଦାର୍ଥବିଦ୍ୟା ସମ୍ବଳିତ ପୁସ୍ତକର ଅନୁବାଦ) ନିମାଇଁବଲ୍ଲଭ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ସଂକଳିତ ଓ କଟକ ପ୍ରିଣ୍ଟିଂ କମ୍ପାନୀ ଯନ୍ତ୍ରାଳୟରେ ମୁଦ୍ରିତ "ଉତ୍କଳଭାଷା ବ୍ୟାକରଣ, କୈଳାସ ଚନ୍ଦ୍ର ବର୍ମାଙ୍କ ଦ୍ୱାରା ରଚିତ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କ ଦ୍ୱାରା ଶୋଧିତ ଓ ବର୍ଦ୍ଧିତ ଏବଂ କଲିକତା ବାପ୍‌ଟିଷ୍ଟ ମିଶନ ଯନ୍ତ୍ରାଳୟରେ ମୁଦ୍ରିତ, "ଓଡ଼ିଆ ବ୍ୟାକରଣ ମଞ୍ଜରୀ"ର ପ୍ରକାଶନ ଊନବିଂଶ ଶତାବ୍ଦୀର ଅର୍ଦ୍ଧାଧିକ ଭାଗରେ ଉତ୍କଳୀୟମାନଙ୍କୁ ବିଶେଷ ସାହାଯ୍ୟପ୍ରଦ ହେଲା । ବାଲେଶ୍ୱରର ତତ୍କାଳୀନ କଲେକ୍ଟର ଜନ୍ ବୀମ୍‌ସ ସାହେବଙ୍କ ପ୍ରସ୍ତାବ ଏବଂ ଶ୍ରୀଯୁକ୍ତ କମିଶନର ସାହେବଙ୍କ ଅନୁରୋଧକ୍ରମେ ଗଭର୍ଣ୍ଣମେଣ୍ଟ ଓଡ଼ିଶାରେ ମୁଦ୍ରିତ ଓ ପ୍ରଚାରିତ ହେଉଥିବା "ବାଲେଶ୍ୱର ବୋଧଦାୟିନୀ" ଏବଂ "ଉତ୍କଳ ଦୀପିକା" ଏ ଦୁଇ ପତ୍ରିକା ନିମିତ୍ତ ବାର୍ଷିକ ଟ୧୦୦ଙ୍କା ଲେଖାଏଁ ଖର୍ଚ୍ଚ ଦେବାକୁ ସମ୍ମତ ହୋଇଥିଲେ । ('ଉତ୍କଳ ଦୀପିକା'-ଜୁନ୍ ୨୯, ୧୮୭୨)

ପ୍ରେସ୍ ପ୍ରତିଷ୍ଠା ଓ ପତ୍ରିକା ପ୍ରକାଶ ମାଧ୍ୟମରେ ଏ ଦେଶରେ ଊନବିଂଶ ଶତାବ୍ଦୀର ଜନମତର ପରିପ୍ରଚାର ଓ ଆଧୁନିକ ସାହିତ୍ୟର ଅଭିବୃଦ୍ଧି ହୋଇଥିବାର ଦେଖିବାକୁ ମିଳେ । କଟକ ପ୍ରିଣ୍ଟିଂ କୋମ୍ପାନୀ (୧୮୬୫) 'ଉତ୍କଳ ଦୀପିକା' ଓ ବାଲେଶ୍ୱରର ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ (୧୮୬୮) 'ବାଲେଶ୍ୱର ସମ୍ବାଦବାହିକା'କୁ ଜନ୍ମଦେଇ ଉତ୍କଳ ଜନନୀକୁ ଉଦ୍‌ବୁଦ୍ଧ କରିଥିଲା । ୧୮୬୦ ସାଲ ପରଠାରୁ ଆଧୁନିକ ଓଡ଼ିଆ ସାହିତ୍ୟର ମୂଳ ପତ୍ତନ ଗଠିତ ହୋଇଥିଲା । ବହୁ ବାଧାବିଘ୍ନ ମଧ୍ୟରେ ଏ ସାହିତ୍ୟ ୧୮୯୫ ସାଲ ପର୍ଯ୍ୟନ୍ତ ଗତି କରିଥିଲା । ଉକ୍ତ ୨୫ବର୍ଷ ମଧ୍ୟରେ ସେ ସମୟର ଅଧିକାଂଶ ଲେଖକ ପାଠ୍ୟପୁସ୍ତକ ରଚନା କରିଥିଲେ । ରାଧାନାଥ ଓ ମଧୁସୂଦନଙ୍କ ପରି ଅତିକମ୍ ଲେଖକ ଏ ଦିଗରେ ଅଭିନିବିଷ୍ଟ ହୋଇଥିଲେ ।

ଆଲୋଚ୍ୟ ଯୁଗରେ ରାଧାନାଥ ରାୟ ହିଁ ଥିଲେ ପ୍ରକୃତ ଶିଳ୍ପସ୍ରଷ୍ଟା ଓ ଏହି ସମୟକୁ ତାଙ୍କରି ନାମରେ ନାମିତ କରିବା ଅଧିକ ଯୁକ୍ତସଙ୍ଗତ । ମାତ୍ର ୧୮୯୩-୯୪ ସାଲର 'ଇନ୍ଦ୍ରଧନୁ ବିଜୁଳୀ' ବିବାଦ ହେତୁ କେତେକ ଲୋକ ରାଧାନାଥୀ ସାହିତ୍ୟର କେତେକ ବିଭାଗକୁ ନିନ୍ଦା କରିଥିଲେ । ତେଣୁ ଜାତି ଓ ସମାଜର ମଙ୍ଗଳ ନିମିତ୍ତ 'ଉତ୍କଳ ସାହିତ୍ୟ' ନାମକ ଏକ ପତ୍ରିକା ୧୮୯୭ ସାଲରେ ଆତ୍ମପ୍ରକାଶ କଲା । ଫଳରେ ୧୮୭୦-୯୪ ମଧ୍ୟରେ ପ୍ରକାଶିତ 'ଉତ୍କଳ ଦର୍ପଣ' (୧୮୭୩), 'ଉତ୍କଳ ଧୂପ' (୧୮୭୮), 'ପ୍ରଦୀପ' (୧୮୮୫), 'ଆଶା' (୧୮୮୯), 'ଉତ୍କଳପ୍ରଭା' (୧୮୯୧) ଇତ୍ୟାଦିର ଆଦର କ୍ରମଶଃ କମିବାକୁ ଲାଗିଲା ।

ଓଡ଼ିଆଭାଷା ଉପରୁ ରାଜେନ୍ଦ୍ରଲାଲ ମିତ୍ରଙ୍କ କୋପ ଶାନ୍ତ ହୋଇ ନଥାଏ । ସେ କଲିକତା "ବେଥୁନ୍ ସୋସାଇଟି" ସଭାର ସଭାପତି ଡକ୍ଟର ମିଲେଁଙ୍କୁ ଧନ୍ୟବାଦାର୍ପଣ କରିବା ସ୍ଥଳରେ "ଓଡ଼ିଆମାନଙ୍କ ସଂଖ୍ୟା ଲଘିଷ୍ଠ ହେତୁ ସେମାନେ ବଙ୍ଗାଳୀଙ୍କ ସହିତ ମିଶିଯିବା ଉଚିତ" ବୋଲି ବକ୍ତୃତା ଦେଇଥିଲେ । ତତ୍କାଳୀନ ଗଭର୍ଣ୍ଣମେଣ୍ଟ ଓ କମିଶନର ସାହେବ ଉତ୍କଳୀୟମାନଙ୍କ ପ୍ରତି ଶୁଭଦୃଷ୍ଟିପାତ କରୁଥିଲେ ମଧ ତାଙ୍କର ସମସ୍ତ ଚେଷ୍ଟା ବଙ୍ଗୀୟ କର୍ମଚାରୀଙ୍କ ଦ୍ୱାରା ବିଫଳୀକୃତ ହେଉଥାଏ । ('ଉତ୍କଳ ଦୀପିକା', ଅପ୍ରେଲ ୧୨ ତାରିଖ, ୧୮୭୩, ପୃ. ୫୮) ଉତ୍କଳଭାଷାର ଉନ୍ନତି ଓ ଉତ୍କଳ ପାଠ୍ୟପୁସ୍ତକାଦିରେ ସମାଲୋଚନା ଓ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ବକ୍ତୃତା ଓ ରଚନା ଶକ୍ତିର ବୃଦ୍ଧି ଆଉ ତର୍କ-ବିତର୍କ ପ୍ରଭୃତି ନିମିତ୍ତ "ଉତ୍କଳଭାଷା ଉଦ୍ଦୀପନୀ ସଭା" କଟକ ନର୍ମାଲ ସ୍କୁଲରେ ପ୍ରତି ରବିବାର ଦିନ ହେଉଥାଏ । ଓଡ଼ିଆ ଭାଷାରେ ଅନୂଦିତ "ଇଂରାଜୀ ଓଡ଼ିଆ ଅଭିଧାନ" କଟକ ମିଶନ ପ୍ରେସରେ ମୁଦ୍ରିତ ହୁଏ । ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କ ଆଜ୍ଞାନୁସାରେ କେବଳ ଦେଶୀୟ ଭାଷାରେ ଯଥା ବଙ୍ଗଳାରେ ବଙ୍ଗଳା, ଓଡ଼ିଶାରେ ଓଡ଼ିଆ ଓ ବିହାରରେ ହିନ୍ଦୀ ଏବଂ ଆସାମରେ ଆସାମୀ ଭାଷା ବିଦ୍ୟାଳୟମାନଙ୍କରେ ଶିକ୍ଷା ଦିଆଯିବା ପାଇଁ ପ୍ରଯତ୍ନ ହୁଏ । ('ଉତ୍କଳ ଦୀପିକା'- ୧୮୭୩, ଅଗଷ୍ଟ ୩୦ ତାରିଖ, ପୃ.୧୩୮)

ପୁରୀ ଜିଲ୍ଲା ସ୍କୁଲସମୂହର ଭୂତପୂର୍ବ ଡେପୁଟୀ ଇନ୍ସପେକ୍ଟର ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ 'ହିତପାଠ' ଓ କପିଳେଶ୍ୱର ବିଦ୍ୟାଭୂଷଣଙ୍କ 'ରାମବିଳାସ' କଟକ ପ୍ରିଣ୍ଟିଂ କମ୍ପାନୀରୁ ମୁଦ୍ରିତ ହୋଇ ପାଠ୍ୟପୁସ୍ତକ ରୂପେ ବିଦ୍ୟାଳୟମାନଙ୍କରେ ପଠିତ ହେବାରୁ ବିଦ୍ୟାର୍ଥୀମାନଙ୍କର ଯଥେଷ୍ଟ ସାହାଯ୍ୟରେ ଆସିଲା । ଓଡ଼ିଶାବାସୀମାନେ ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କୁ ନିମ୍ନଲିଖିତ ଦାବିମାନ ଉପସ୍ଥାପିତ କରିଥିଲେ -

୧) କଲିକତାରୁ ମେଦିନୀପୁର ଓ କୋକନଦୀ ବାଟେ ମାନ୍ଦ୍ରାଜ ପର୍ଯ୍ୟନ୍ତ ରେଳପଥ ନିର୍ମାଣ ।

୨) ବିଚ୍ଛିନ୍ନ ଗଞ୍ଜାମ ଓ ସମ୍ବଲପୁରକୁ ଓଡ଼ିଶାର ଶାସନାଧୀନ ।

୩) ପ୍ରତ୍ୟେକ ସବ୍‌ଡ଼ିଭିଜନରେ ବିଶ୍ୱବିଦ୍ୟାଳୟର ପରୀକ୍ଷାପୋଯୋଗୀ ଏକ ଗଭର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ । (ଉତ୍କଳ ଦୀପିକା- ଫେବୃୟାରୀ ୨୭ ତାରିଖ, ୧୮୫୭ ମସିହା)

ଏହି ସମୟରେ ପୁରୀରୁ 'ଭଗବତ୍‌ଭକ୍ତି ପ୍ରଦାୟିନୀ' ଓ 'ପୁରୁଷୋତ୍ତମ ଚନ୍ଦ୍ରିକା' ନାମରେ ଦୁଇଖଣ୍ଡ ମାସିକ ପତ୍ରିକା ପ୍ରକାଶଲାଭ କଲା । ଲେଫ୍ଟନାଣ୍ଟ ଗଭର୍ଣ୍ଣର ଓ କମିଶନରଙ୍କ ଅପାର ପ୍ରଚେଷ୍ଟାରୁ କଟକ କଲେଜ ଓ କଟକ ମେଡ଼ିକାଲ ସ୍କୁଲ ସ୍ଥାପିତ ହେଲା ।

A Pratical Hand Book ନାମରେ ଏକ ପୁସ୍ତକ ଓଡ଼ିଆ ଭାଷାର ପ୍ରାଧାନ୍ୟ ବୃଦ୍ଧି ନିମିତ୍ତ ଆତ୍ମପ୍ରକାଶ କଲା । ଏହାର ବିଜ୍ଞାପନ ନିମ୍ନରେ ପ୍ରଦତ୍ତ ହେଲା ।

JUST PUBLISHED
A PRACTICAL HAND BOOK
OF THE
URIYA LANGUAGE
BY. T.J. MALTBY ESQ. MADRAS

This Book is intended to illustrate the Uriya language in the order of its importance, viz. in its colloquial epistology and literary styles, and although primarily intended for foreigners learning Uriya, it is hoped that it will at the same prove of assistance to Udiyas learning English.

(WYMAN & Co. Publishers Hans Street, Calcutta)

(ନଭେମ୍ବର ୧୩, ୧୮୭୫, ଉତ୍କଳ ଦୀପିକା, ପୃ. ୧୭୭)

ମେଦିନୀପୁରର ଯାତ୍ରାବାଲାଙ୍କ ଅନୁକରଣରେ ବାଲେଶ୍ୱରର ଅଧିବାସୀମାନେ ବଙ୍ଗ ଯାତ୍ରାମାନ ଶିକ୍ଷାକରି ଆଦୃତ ହେଉଥିଲେ । କ୍ରମଶଃ ଏହିଠାରୁ ହିଁ ଓଡ଼ିଆ ଯାତ୍ରା ଓ ସୁଆଙ୍ଗର ବିକାଶ ହେଲା ।

୧୮୭୮ ମସିହାରେ ଉତ୍କଳଭାଷାର ଷାଣ୍ମାସିକ ଅଧିବେଶନ ରାଧାନାଥ ରାୟଙ୍କ ସଭାପତିତ୍ୱରେ ଆରମ୍ଭ ହୋଇଥିଲା । ଏକ ଅଧିବେଶନରେ ବଙ୍ଗୀୟ ବ୍ରାହ୍ମଣ ଶ୍ରୀଯୁକ୍ତ ପ୍ୟାରୀମୋହନ ଆଚାର୍ଯ୍ୟ ଉତ୍କଳର ମନ୍ଦିରଗାତ୍ରସ୍ଥ ଅଶ୍ଳୀଳ ସ୍ଥାପତ୍ୟ ଓ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ, ବିଶେଷତଃ 'ଲାବଣ୍ୟବତୀ'କୁ ସମାଲୋଚନାର ପ୍ରଧାନ୍ୟ ଶରବ୍ୟ କରିଥିଲେ । ଏହାପରେ ଚତୁର୍ଭୁଜ ପଟ୍ଟନାୟକ ତାହାଙ୍କୁ ପ୍ରତିବାଦ କରି ଉପେନ୍ଦ୍ରଭଞ୍ଜଙ୍କ କାବ୍ୟକୃତିର ଉତ୍କର୍ଷତା ପ୍ରଦର୍ଶାଇ ଥିଲେ । ଅନେକ ଦର୍ଶକ ମଧ୍ୟ ଏହି ଉକ୍ତିର ସାରବତ୍ତା ଗ୍ରହଣ କରି ଭଞ୍ଜଙ୍କ ପ୍ରାଚୀନ କାବ୍ୟମାନ ଆଦିରସଯୁକ୍ତ କ୍ଲିଷ୍ଟ ଶବ୍ଦ ପରିପୂର୍ଣ୍ଣ ହେଲେ ମଧ୍ୟ ତାହା ଦୂଷିତ ନୁହେଁ ବୋଲି ମତ ପ୍ରଦାନ କରିଥିଲେ । କଟକର କେତେଜଣ ସୁଶିକ୍ଷିତ, ଦେଶହିତୈଷୀ, ଉତ୍ସାହୀ ଲୋକଙ୍କ ଅଧ୍ୟବସାୟରେ 'ରାମାଭିଷେକ' ନାମକ ନାଟକ କଟକରେ ପ୍ରଥମ ହୋଇ ଅଭିନୀତ ହୋଇଥିଲା । ମହାମାରୀ ଓ ନଅଙ୍କ ଦୁର୍ଭିକ୍ଷର ପ୍ରଭାବ ଯୋଗୁଁ ଝୁଲଣଯାତ୍ରା ଓ ବିନୋଦବିହାରୀଙ୍କ ନିକଟରେ ସଙ୍ଗୀତ ସାମାନ୍ୟ ରୂପେ ଚର୍ଚ୍ଚା କରାଯାଇଥିଲା । ସଂସ୍କୃତ

ନାଟକମାନ କଲିକତାରେ ବିଶେଷ ଉପଭୋଗ୍ୟ ହେଉଥାଏ । ସାର୍ ରାଧାକାନ୍ତଦେବ ବାହାଦୁରଙ୍କ ଗୃହରେ 'ବେଣୀସଂହାର', କାଳୀପ୍ରସନ୍ନ ସିଂହଙ୍କ ଗୃହରେ 'ଶକୁନ୍ତଳା' ଓ ରାଜା ପ୍ରତାପନାରାୟଣଙ୍କ ଗୃହରେ 'ପଦ୍ମାବତୀ' ନାଟକର ଅଭିନୟ ବେଶ୍ ଚିତ୍ତାକର୍ଷକ ହୋଇଥିଲା । ଏହି ସଂସ୍କୃତ ନାଟକମାନଙ୍କର ଅନୁକରଣରେ ଉତ୍କଳୀୟ ନାଟକମାନ ଅଭିନୀତ ହେବା ଉଚିତ ବୋଲି ଶିକ୍ଷିତ ଦର୍ଶକଗୋଷ୍ଠୀ ଅଭିମତ ପ୍ରଦାନ କରିଥିଲେ । କାରଣ ନାଟକ ମଧ୍ୟ ସାହିତ୍ୟର ଅନ୍ୟତମ ଅଙ୍ଗ ଓ ସମାଜସଂସ୍କାରର ପ୍ରଧାନ ଉପାୟ । ଏହା ଦୁର୍ନୀତି ନିବାରଣର ଗୋଟିଏ ପ୍ରଧାନ ଉପାୟ । ତେଣୁ ଉତ୍କଳୀୟମାନେ ନାଟକାଭିନୟ କରି ସମାଜର ସଂସ୍କାର କରିବା ଉଚିତ । ତେଣୁ ଉତ୍କଳୀୟ ଭାଷାରେ ରଚିତ ପ୍ରଥମ ନାଟକ 'କାଞ୍ଚିକାବେରୀ' ପ୍ରଥମ ହୋଇ ଅଭିନୀତ ହୋଇଥିଲା । ଏହି ନାଟକ ସମ୍ବନ୍ଧରେ ମଧ୍ୟ ଅନେକ ସମାଲୋଚନା କରାଯାଇଥିଲା ।

ତେଣୁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଆଧୁନିକ ସାହିତ୍ୟର ପ୍ରତିଷ୍ଠା, ଜାତୀୟତାବୋଧର ସମ୍ବର୍ଦ୍ଧନା ଓ ପରିଶେଷରେ ନୂତନ ସାହିତ୍ୟିକ ଗୋଷ୍ଠୀର ସୃଷ୍ଟି – ଏ ତିନୋଟି ବିଶିଷ୍ଟ ବିଭିଗ ଦ୍ୱାରା ଭାଷା ଜାଗରଣ ସମୃଦ୍ଧ ହୋଇଥିଲା ।



## ୩୭

# ଓଡ଼ିଆ ଲିପିସଂସ୍କାରର ଏକ ଦୃଷ୍ଟିଭଙ୍ଗୀ

### ପୀତାମ୍ବର ପ୍ରଧାନ

ଜୀବନ ଓ ଜଗତ ଭାଷାପରି ଗତିଶୀଳ । ଓଡ଼ିଆ ଭାଷାରେ ବୌଦ୍ଧାଚାର୍ଯ୍ୟାର ଚର୍ଯ୍ୟାଗୀତିଠାରୁ ଆଧୁନିକ ଯୁଗାଚାର୍ଯ୍ୟମାନଙ୍କର ରୂପକଳ୍ପତା, ପ୍ରୟୋଗବାଦ ଓ ସଂକେତଧର୍ମି ମଧ୍ୟରେ ଭାଷାର ଏ ଗତିଶୀଳତା ସୁସ୍ପଷ୍ଟ । ହେଲେହେଁ ଭାଷାର ସର୍ବାଙ୍ଗୀନ ଉନ୍ନତି ପାଇଁ ଭାବଜଗତର ଏ ଗତି ଯଥେଷ୍ଟ ନୁହେଁ । ତା'ପାଇଁ ଆବଶ୍ୟକ ଭାଷାର ବିଜ୍ଞାନସମ୍ମତ ଅନୁଶୀଳନ ଓ ନୂତନ ଦୃଷ୍ଟିଭଙ୍ଗୀ । ବିଜ୍ଞାନସମ୍ମତ ଅନୁଶୀଳନ ବିଷୟ ଚିନ୍ତା କଲାବେଳେ ଆମ ଭାଷାର ଦୀର୍ଘ ବର୍ଣ୍ଣମାଳା, ରୀତିବିହୀନ ଉଚ୍ଚାରଣପ୍ରଣାଳୀ, ଜଟିଳ 'ମାତ୍ରାବଳୀ' ଓ ଯୁକ୍ତାକ୍ଷରପଦ୍ଧତି ଏକ ଏକ ତୁଙ୍ଗ ସମସ୍ୟାଭାବେ ଦଣ୍ଡାୟମାନ ହୁଅନ୍ତି । ଏଥିମଧ୍ୟରୁ ମାତ୍ରାବଳୀ ଓ ଯୁକ୍ତାକ୍ଷରପଦ୍ଧତିର ସଂସ୍କାର ପ୍ରଥମ ପ୍ରଣିଧାନର ବିଷୟ । କାରଣ ଏହାଦ୍ୱାରା ଅନ୍ୟ ଦୁଇଟି ସମସ୍ୟାର ସମାଧାନ ମଧ୍ୟ ସମ୍ଭବ ହୋଇ ପାରିବ । ବିନୋବାଜୀ ତାଙ୍କର ଉତ୍କଳଗସ୍ତ ଓ ଦିଲ୍ଲୀ-ରହଣି କାଳରେ ଏକାଧିକଥର ଏହି ସମସ୍ୟା ଉପରେ ଆଲୋକପାତ କରିଅଛନ୍ତି । ହେଲେହେଁ ତାଙ୍କ କଥା ଜାତିର ଖୁବ୍ କମ୍ ଲୋକଙ୍କ କାନକୁ ଆସିଥିବ ।

ମାତ୍ରା ବିଚାର- ଓଡ଼ିଆ ଭାଷାରେ ବ୍ୟବହୃତ ଅନେକ 'ମାତ୍ରା' ବା 'ଫଳା' ଅଧିକାଂଶ କ୍ଷେତ୍ରରେ ଯୁକ୍ତିବିହୀନ ଓ ଅବୈଜ୍ଞାନିକ । ହେଲେହେଁ ଆମ୍ଭମାନଙ୍କର ରକ୍ଷଣଶୀଳତା ଏମାନଙ୍କୁ ଅଦ୍ୟାବଧି ବଞ୍ଚାଇ ରଖିବା .ନିତାନ୍ତ ଦୁଃଖର ବିଷୟ । ଉଦାହରଣସ୍ୱରୂପ 'ପୀତାମ୍ବର' ବା 'ନୀଳାମ୍ବର' ଲେଖିଲାବେଳେ 'ମ' ତଳେ ଦେଉଥିବା 'ବ' ଫଳାଟି ବର୍ଗ୍ୟ 'ବ' ଓ 'ବିଶ୍ୱ' ବା 'ନିଃସ୍ୱ'ରେ ଥିବା 'ବ' ଫଳାଟି ଅବର୍ଗ୍ୟ 'ବ' ଭାବରେ ଉଚ୍ଚାରିତ । ଉଭୟ ପାଇଁ ଏକରକମ 'ମାତ୍ରା'ର ବ୍ୟବହାର ଆମ ଭାଷାରେ ପ୍ରଚଳିତ । ଉଭୟର ଉଚ୍ଛେଦ ସମ୍ଭବ ନ ହେଲେ ମଧ୍ୟ ବର୍ଗ୍ୟ 'ବ' ଯୁକ୍ତ 'ଅମ୍ବର' ଓ ଅମ୍ବୁଦାଦି ସ୍ଥଳେ ଅଂବର ଓ ଅଂବୁଦ ଲେଖିବା ସମୀଚୀନ । ନଚେତ୍ ଏକ 'ଂ'ଫଳା 'ବ' ଓ 'ବ' ଧ୍ୱନି ସୃଷ୍ଟି କରିବା ଯଥାର୍ଥରେ ହାସ୍ୟାସ୍ପଦ ।

ସେହିପରି 'ଅଣ୍ଡା' ଓ 'ଶଣ୍ଢା ଇତ୍ୟାଦି ଲେଖିଲାବେଳେ ଏକରକମ ଫଳା '୨'

'ଶସ୍ତା' ଠାରେ 'ତ' ଓ 'ଅଣ୍ଡା'ଠାରେ 'ଡ' ଧ୍ୱନି ସୃଷ୍ଟି କରିବା ଅତ୍ୟନ୍ତ କୌତୂହଳପ୍ରଦ । 'ହସନ୍ତ' ବ୍ୟବହାର କରି ଏ ସ୍ଥଳେ 'ଅଣ୍‌ଡ଼ା' ଓ 'ଶସ୍‌ତା' ଲେଖିଲେ କିଛି ଭୁଲ୍ ହୁଅନ୍ତା ନାହିଁ । ଅବଶ୍ୟ 'ସ୍ତାବକ ବା 'ସ୍ତର' ଭଳି କ୍ଷେତ୍ରରେ ଏ ରୀତି ପ୍ରଚଳନ ସମ୍ଭବ ନୁହେଁ । ତେଣୁ 'ତ' ଧ୍ୱନି ସୃଷ୍ଟି କରିବା ପାଇଁ ଉକ୍ତ 'ଫଳା' ବ୍ୟବହାର କରି 'ତ' ଧ୍ୱନି ସ୍ଥାନରେ ଏହା ପରିହାର କରିବା ଉଚିତ ।

'ଉତ୍କଳ' ଓ 'ଉକ୍ତ' ଭଳି ଶବ୍ଦର 'ତ' ଫଳା ସେହିପରି ଆଉ ଏକ ସଂକଟ । ଏ ସଂକଟରେ ପଡ଼ି ସ୍କୁଲ କଲେଜର ଅଧିକାଂଶ ଛାତ୍ର, 'ଉତ୍କଳ' ସ୍ଥଳେ 'ଉକ୍ତଳ' ଓ 'ଉତ୍ପଳ' ସ୍ଥଳେ 'ଉପ୍ତଳ' ଲେଖି ଥାଆନ୍ତି; ଲେଖିବା ମଧ୍ୟ ସ୍ୱାଭାବିକ । କାରଣ ଏକ 'ତ' ଧ୍ୱନି ପୂର୍ବେ ଉଚ୍ଚାରିତ ହେଲେ (ଉତ୍‌ପଳ, 'ପ' ପୂର୍ବରୁ) '' ଓ ପରେ ଉଚ୍ଚାରିତ ହେଲେ (ଉକ୍‌ତ, 'କ' ପରେ) '୍ତ' ହେବା ଭ୍ରାନ୍ତିଜନକ । ବିଶେଷତଃ 'ଉତ୍କଳ' ବା 'ଉତ୍ପନ୍ନ' ଶବ୍ଦର 'ତ', 'ମାତ୍ରା' କାଆର ଧାରଣ କରିବାର କୌଣସି କାରଣ ନାହିଁ । ମାତ୍ରାଯୁକ୍ତ ବର୍ଣ୍ଣର ଉଚ୍ଚାରଣ ନେଇ ପୂର୍ବ ବା ପ୍ରଥମ ଉଚ୍ଚାରିତ ବର୍ଣ୍ଣ, 'ଅକ୍ଷର' ରୂପେ ଲେଖା ହୋଇଥାଏ ଓ ପରେ ଉଚ୍ଚାରିତ ବର୍ଣ୍ଣ ସାଧାରଣତଃ ପୂର୍ବବର୍ଣ୍ଣର 'ଫଳା' ଉପରେ ସ୍ଥାନପାଏ । ଯଥା- 'ଶୁଷ୍କ' (ଶୁଷ୍‌କ), 'ଗୃହସ୍ଥ' (ଗୃହସ୍‌ଥ) ଓ 'ବୟସ୍କ' (ବୟସ୍‌କ) ପ୍ରଭୃତି କ୍ଷେତ୍ରରେ 'ଷ୍କ', 'ସ୍ଥ'ଓ ସ୍କରେ ଉଚ୍ଚାରଣ ପଦ୍ଧତି-ଅନୁକ୍ରମେ 'ଷ', 'ସ' ବର୍ଣ୍ଣଭାବେ ଓ 'କ' 'ଥ' ମାତ୍ରାଭାବରେ ଲିଖିତ । ହେଲେହେଁ ଏ ରୀତି, 'ଉତ୍କଳ' 'ଉତ୍ପଳ', 'ମହାତ୍ମା' ବା 'ରତ୍ନାକର' ସ୍ଥାନରେ ଅପ୍ରଚଳିତ ହେବା ନିତାନ୍ତ ଭିତ୍ତିହୀନ । ତେଣୁ ଉପରୋକ୍ତ ଶବ୍ଦମାନ, 'ଉତ୍‌କଳ', 'ଉତ୍‌ପଳ' ମହାତ୍‌ମା ଓ ରତ୍‌ନାକର ବା 'ଉତ୍କଳ', 'ଉତ୍ପଳ' ଓ 'ମହାତ୍ମା' ବୋଲି ଲେଖିବା ଯୁକ୍ତିଯୁକ୍ତ ।

ଏହା ଭିନ୍ନ ମୁଦ୍ରଣକାର୍ଯ୍ୟ ସୁସାଧ୍ୟ ଓ ଦୋଷହୀନ କରିବାକୁ ହେଲେ ଉର୍ଦ୍ଧ୍ୱାଧଃ ବ୍ୟବହୃତ 'ଫଳା'ର ମାତ୍ରା ଯଥାସମ୍ଭବ କମ୍ କରିବାକୁ ହେବ । 'ହସନ୍ତ' ବ୍ୟବହାର ଦ୍ୱାରା ଏହା ଅନେକାଂଶରେ ସୁସାଧ୍ୟ । ଯଥା- ଅର୍କ > ଅର୍‌କ, ନର୍କ > ନର୍‌କ; ଅମ୍ଳ > ଅମ୍‌ଳ; ଉଷ୍ମ > ଉଷ୍‌ମ ଇତ୍ୟାଦି ।

## ଯୁକ୍ତାକ୍ଷରପଦ୍ଧତି

ଅନ୍ୟ ଏକ ପ୍ରମାଦ ଭାବରେ ଗ୍ରହଣ କରାଯାଇପାରେ । ଯୁକ୍ତବର୍ଣ୍ଣର 'ଙ', 'ଞ', 'ଣ', 'ନ', 'ମ', ସ୍ଥାନରେ ଅନୁସ୍ୱାର ବ୍ୟବହାର ପ୍ରଣାଳୀ ବ୍ୟାକରଣରେ ଥିବା ସତ୍ତ୍ୱେ ଙ୍କ, ଙ୍ଖ, ଙ୍ଗ ଇତ୍ୟାଦି ଯୁକ୍ତାକ୍ଷରମାଳାକୁ ଓଡ଼ିଆ ଭାଷାରେ ବଞ୍ଚାଇ ରଖିବାର କୌଣସି ତାତ୍ପର୍ଯ୍ୟ ନାହିଁ । ସୁତରାଂ

| | | | |
|---|---|---|---|
| 'ଶଙ୍କା' | ସ୍ଥଳେ | ଶଂକା | (ଙ ଲୋପ) |
| ବ୍ୟଞ୍ଜନ | " | ବ୍ୟଂଜନ | (ଞ ଲୋପ) |
| କଣ୍ଡରା | " | କଂଡ଼ରା | (ଣ, ଲୋପ) |

ସନ୍ତାପ " ସଂତାପ (ନ, ଲୋପ)
ସମ୍ବାଦ " ସଂବାଦ (ମ, ଲୋପ)

ସର୍ବତ୍ର ପ୍ରୋତ୍ସାହିତ ହେବା ଆବଶ୍ୟକ । ସେହିପରି ଉଚ୍ଚାରଣ ଦୃଷ୍ଟିରୁ ଆମ ଭାଷାରେ ଋ, ୠ, ଌ, ୡ, ଓ 'ଙ' ପ୍ରାୟ ଅପ୍ରଚଳିତ । ତଥାପି ବର୍ତ୍ତମାନକାର ପରମ୍ପରା ରକ୍ଷାପାଇଁ ସେମାନଙ୍କୁ ଯଥାପୂର୍ବ 'ସ୍ୱର' ବିଭାଗରେ ସ୍ଥାନ ଦିଆହୋଇଛି । ଅଧିକନ୍ତୁ ପ୍ରଚଳିତ ପଦ୍ଧତିରେ ଲିଖିତ ଚ୍ଚ, ତ୍ତ, ମ୍ମ ଇତ୍ୟାଦିରେ ଶୁଦ୍ଧ ଉଚ୍ଚାରଣ ଓଡ଼ିଆଭାଷାରେ ସମ୍ପୂର୍ଣ୍ଣ ବିରଳ । ତେଣୁ ଉଚ୍ଚାଙ୍ଗ, ଉତ୍ତାନପାଦ ଓ 'ସମ୍ମାନ' ଭଳି ପଦକୁ ଏ ଦେଶର ସଂଖ୍ୟାଗରିଷ୍ଠ ବ୍ୟକ୍ତି ଉଚାଙ୍ଗ ଉତାନପାଦ ଓ ସମାନ ଭାବେ ଉଚ୍ଚାରଣ କରନ୍ତି । 'ହସନ୍ତ' ବ୍ୟବହାର କରି ଦ୍ୱିତୀୟ ବର୍ଣ୍ଣଗୁଡ଼ିକୁ ଭାଙ୍ଗିଦେଲେ ଉଚ୍ଚାରଣପ୍ରଣାଳୀ ଶୁଦ୍ଧ ଓ ମାର୍ଜିତ ହୋଇପାରନ୍ତା । ଯଥା-ଉଚ୍‌ଚାଙ୍ଗ, ଉତ୍‌ତାନପାଦ ଓ ସମ୍‌ମାନ ।

ସଂସ୍କୃତପଦ୍ଧତି ଅନୁସରଣରେ 'ରେଫ' ଯୋଗେ ଦିତ୍ୱ ହେବା ବିଧି ଓଡ଼ିଆଭାଷାରେ ପ୍ରଚଳିତ; କିନ୍ତୁ କର୍ତ୍ତବ୍ୟ, ଚର୍ଚ୍ଚା ଓ ମର୍ମ୍ମର ପ୍ରଭୃତି ଶବ୍ଦରେ ଉକ୍ତ ବିଧି ଅନୁସୃତ ହେଉଥିବାବେଳେ କର୍ମ, ଧର୍ମ ଓ 'ଉର୍ବଶୀ'ରେ ଏ ନୀତିର ଶିଥିଳତା ପରିଲକ୍ଷିତ ହେଲାଣି । ତେଣୁ ସମସ୍ତ 'ରେଫ୍' ଯୁକ୍ତ ଶବ୍ଦରେ ଦିତ୍ୱବିଧି ପରିହାର କଲେ କୌଣସି କ୍ଷତି ହୁଅନ୍ତା ନାହିଁ ।

ପରିଶେଷରେ ଏତିକି କହିବାର କଥା ଯେ ଏ 'ମାତ୍ରା-ଧର୍ମ-ବାହୁଲ୍ୟ' ପରିହାର ନ କଲେ ଭାଷାର ଯାନବାହନ (ମୁଦ୍ରାଯନ୍ତ୍ର ଓ ଟାଇପ୍‌ମେସିନ୍)ଗୁଡ଼ିକୁ ବେଗବାନ୍ କରିବାର ଆଶା, ଆକାଶକୁସୁମ ତୁଲ୍ୟ ଅବାସ୍ତବ ହୋଇ ରହିବ । ତେଣୁ ଓଡ଼ିଆଭାଷାର ଲିପିସଂସ୍କାର ପ୍ରୟାସୀ ଯେ କେହି ବ୍ୟକ୍ତି ବର୍ଣ୍ଣମାଳାର କ୍ଷୁଦ୍ରୀକରଣ, ମାତ୍ରାବଳୀର ହ୍ରସ୍ୱତା ଓ ଉଚ୍ଚାରଣସିଦ୍ଧ ବର୍ଣ୍ଣବିନ୍ୟାସ ପ୍ରତି ଅବିହିତ ହେବା ଉଚିତ ।



୩୮

# ଉପଭାଷା-ତତ୍ତ୍ୱ

## ଦେବୀପ୍ରସନ୍ନ ପଟ୍ଟନାୟକ

'ଭାଷା' ଓ 'ଉପଭାଷା' ଏହି ଦୁଇଟିର ସଂଜ୍ଞା ନିରୂପଣ କରିବା ବଡ଼ କଠିଣ । ପୁଣି ଆମ ଦେଶରେ ଐତିହାସିକ କାରଣରୁ ଏହି ପରିଭାଷାର ବ୍ୟବହାର ସହିତ ପାରସ୍ପରିକ ବିଦ୍ୱେଷ ଓ ତୀବ୍ର ଆଞ୍ଚଳିକ ପ୍ରତିକ୍ରିୟା ଏପରି ଘନିଷ୍ଠଭାବରେ ଜଡ଼ିତ ଯେ, କୌଣସି ବୈଜ୍ଞାନିକ ଆଲୋଚନାରେ ଏହାକୁ ବ୍ୟବହାର କଲାବେଳେ ଯଥେଷ୍ଟ ସାବଧାନତା ଅବଲମ୍ବନ ପ୍ରୟୋଜନ । ତେଣୁ ଉପଭାଷାର ଆଲୋଚନାରେ ଏକ ନିର୍ଦ୍ଦିଷ୍ଟ ସଂଜ୍ଞା ନିରୂପଣ କରିବା ପରିବର୍ତ୍ତେ ସାମାନ୍ୟ ବ୍ୟାଖ୍ୟା କରି ଏହାର ପରିସର ବୁଝାଇ ଦେବାକୁ ଚେଷ୍ଟା କରାଯିବ ।

ଯେକୌଣସି ଗୋଟିଏ ଭାଷା କହୁଥିବା ଦୁଇଟି ଲୋକଙ୍କର କଥାକୁ ତନଖି କରି ଦେଖିଲେ ସେମାନଙ୍କର କଥାରେ ପାର୍ଥକ୍ୟ ଧରିହେବ । ଶହ ଶହ ହଜାର ହଜାର ବା ଲକ୍ଷ ଲକ୍ଷ ଲୋକ ବ୍ୟବହାର କରୁଥିବା ଭାଷାରେ ଯେ ପାର୍ଥକ୍ୟ ସୃଷ୍ଟି ହେବ ଏଥିରେ ବୈଚିତ୍ର୍ୟ କ'ଣ ଅଛି ? ଟିକିଏ ଭଲକରି ତଳେଇ ଦେଖିଲେ ଏଇ ପାର୍ଥକ୍ୟ ଗୋଟିଏ ଗୋଟିଏ ଅଞ୍ଚଳକୁ ଧରି ସୃଷ୍ଟି ହେଉଥିବାର ଜଣାଯିବ । କଥା ହେଉଚି, ପାରସ୍ପରିକ ବ୍ୟବସାୟ ବାଣିଜ୍ୟ ବା ଅନ୍ୟାନ୍ୟ କାର୍ଯ୍ୟସୂତ୍ରରେ ସମ୍ବନ୍ଧିତ କୌଣସି ଏକ ଅଞ୍ଚଳରେ ଲୋକେ ବହୁ ପରିମାଣରେ ମିଳାମିଶା କରିବା ଫଳରେ ଭାଷାରେ ଏକ ପ୍ରକାର ସମତା ସୃଷ୍ଟି ହୋଇଥାଏ । କିନ୍ତୁ ନଦୀ, ପର୍ବତ ବା ଅନ୍ୟକୌଣସି ଭୌଗୋଳିକ ପ୍ରତିବନ୍ଧକ ଦ୍ୱାରା ବିଚ୍ଛିନ୍ନ ଅଞ୍ଚଳରେ ସେହି ଏକ ଭାଷା ବ୍ୟବହୃତ ହେଲେହେଁ ତହିଁରେ ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ପ୍ରକାଶ ପାଇଥାଏ । ମିଳାମିଶାର ଅଭାବ ଓ ଭାବ ଆଦାନ-ପ୍ରଦାନର ସ୍ୱଳ୍ପତା ହେତୁ ଭାଷା ବ୍ୟବହାରରେ ଯେଉଁ ଆଞ୍ଚଳିକ ଭିନ୍ନତା ପରିଦୃଷ୍ଟ ହୁଏ, ଏହିପରି ଦୁଇ ଅଞ୍ଚଳ ମଧ୍ୟରେ ଯୋଗାଯୋଗ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଲେ ତାହା ଦୁଇ ସ୍ୱତନ୍ତ୍ର ଭାଷାରୂପେ ଆତ୍ମପ୍ରକାଶ କରିବା ଦୃଷ୍ଟାନ୍ତ ବିରଳ ନୁହେଁ ।

ଭୌଗୋଳିକ ଆଞ୍ଚଳିକତା ବ୍ୟତୀତ ଉପଭାଷା ଅଧ୍ୟୟନର ଆଉ ଏକ ବିଶେଷ ଦିଗ ରହିଚି । ଜାତି କିମ୍ବା ଶ୍ରେଣୀ ବିଭାଗ ଥିବା ଯେକୌଣସି ସମାଜରେ ସାଧାରଣତଃ ଉଚ୍ଚ ଓ ନୀଚ ଜାତି ବା ଶ୍ରେଣୀର ଭାଷା ମଧ୍ୟରେ ପାର୍ଥକ୍ୟ ଥିବା କଥା ସହଜେ ଲକ୍ଷ୍ୟ

କରାଯାଇପାରେ । ସାଧାରଣତଃ ଏପରି ସମାଜ ବ୍ୟବସ୍ଥାମାନଙ୍କରେ ଉଚ୍ଚ ଜାତି ବା ଶ୍ରେଣୀର ଲୋକମାନଙ୍କର ବିଦ୍ୟାବନ୍ତ ହେବାର ସୁଯୋଗ ଅଧିକ ଥିବାରୁ ସେମାନଙ୍କ ଭାଷାରେ ପାର୍ଥକ୍ୟ ନିମ୍ନ ଜାତି ବା ଶ୍ରେଣୀର ଲୋକଙ୍କ ତୁଳନାରେ ଯଥେଷ୍ଟ କମ୍ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ଓଡ଼ିଶା କଥା ବିଚାର କଲେ ଏଠି ବିଭିନ୍ନ ଅଞ୍ଚଳରେ ଶିକ୍ଷିତ ଲୋକ (ସାଧାରଣତଃ ଉଚ୍ଚ ଜାତି କିମ୍ବା ଉଚ୍ଚ ଆର୍ଥିକ ଶ୍ରେଣୀର ଲୋକ)ମାନଙ୍କ ଭାଷାରେ ଯେତିକି ସମତା ଦେଖିବାକୁ ମିଳିବ ବିଭିନ୍ନ ଅଞ୍ଚଳର ନିମ୍ନଜାତି ବା ଶ୍ରେଣୀର ଲୋକଙ୍କ ଭିତରେ ସେତିକି ଭିନ୍ନତା ଦେଖିବାକୁ ମିଳିବ । କଟକ, ପୁରୀ, କୋରାପୁଟ ଓ ସମ୍ବଲପୁରର ଶିକ୍ଷିତ ବ୍ରାହ୍ମଣ ବା କରଣ ହୁଏତ ଏକ ପ୍ରକାର ଭାଷା ବ୍ୟବହାର କରନ୍ତି; କିନ୍ତୁ ନିମ୍ନଜାତି ବା ଗରିବ ଲୋକଙ୍କ ଭାଷାରେ ପରସ୍ପର ଆଦାନପ୍ରଦାନର ଅଭାବ ହେତୁ ଯେକୌଣସି ଗୋଟିଏ ଜିଲ୍ଲାରେ ମଧ ପାର୍ଥକ୍ୟ ପରିଲକ୍ଷିତ ହୋଇପାରେ ।

ପୂର୍ବୋକ୍ତ ବିଚାରରୁ ସ୍ପଷ୍ଟଭାବେ ଜଣାଯାଏ ଯେ, ଭାବ ଆଦାନ-ପ୍ରଦାନ ଦୃଷ୍ଟିରେ ସାନ୍ନିଧ ବା ବିଚ୍ଛିନ୍ନତା ଉପଭାଷା ସୃଷ୍ଟିରେ ପ୍ରଧାନ କାରଣ । ଏକ ପ୍ରକାର ସ୍ଥିତିଶୀଳ ସାମାଜିକ ବ୍ୟବସ୍ଥା ଥିବା ପ୍ରଶସ୍ତ ଅଞ୍ଚଳରେ ଏକ ବ୍ୟାପକ ଉପଭାଷା ପ୍ରଚଳିତ ହୋଇପାରେ । ଜାତି ବା ଶ୍ରେଣୀ ଭେଦରେ ବର୍ଗୀକୃତ ସମାଜର ଉପର ସ୍ତରରେ ମଧ ଏକ ବ୍ୟାପକ ଉପଭାଷାର ପ୍ରଚଳନ ହୋଇପାରେ । ଅନ୍ୟଥା ଭାଷା ଚଳଣୀରେ ସ୍ୱାତନ୍ତ୍ର୍ୟ ସୃଷ୍ଟି ହୋଇ ବିଭିନ୍ନ ଉପଭାଷାର ସୃଷ୍ଟି ହୋଇଥାଏ । ଏହି ଦୃଷ୍ଟିରୁ ଓଡ଼ିଆ ଭାଷାର ବିଚାର କଲେ ଏଥିରେ ଉପକୂଳ ଓଡ଼ିଆ, ସମ୍ବଲପୁରୀ ଓଡ଼ିଆ, ଗଞ୍ଜାମ ଓଡ଼ିଆ, ବାଲେଶ୍ୱରୀ ଓଡ଼ିଆ ବା କୋରାପୁଟ ଓଡ଼ିଆର ଅଧୟନ କରିବା ପାଇଁ ଯେପରି ପ୍ରଶସ୍ତ କ୍ଷେତ୍ର ରହିଚି, ସେହିପରି ବିଭିନ୍ନ ଅଞ୍ଚଳର ତେଲି, ତନ୍ତୀ, କେଉଟ ବା ହରିଜନମାନଙ୍କର ଭାଷା ଅଧୟନ ପାଇଁ ମଧ କ୍ଷେତ୍ର ଉନ୍ମୁକ୍ତ ହୋଇ ରହିଚି ।

ଉପଭାଷା-ଅଧୟନକାରୀ କେତେକ ନିର୍ଦ୍ଦିଷ୍ଟ ସୂତ୍ର ଅବଲମ୍ବନରେ ସାଧାରଣତଃ କାର୍ଯ୍ୟରେ ଅଗ୍ରସର ହୋଇଥାନ୍ତି । ଭାଷା ଚଳଣିରେ ଭିନ୍ନତା ଭିତ୍ତିରେ କେତେକ ନିର୍ଦ୍ଦିଷ୍ଟ ଶବ୍ଦର ତାଲିକା ମଧ ପ୍ରସ୍ତୁତ କରାଯାଏ । ଅନୁସନ୍ଧାନକାରୀ ସ୍ଥିରୀକୃତ ଅଞ୍ଚଳରେ ପୂର୍ବ ପ୍ରସ୍ତୁତ ତାଲିକା ଧରି କାମ ଆରମ୍ଭ କରନ୍ତି । ଏହି ତାଲିକା ପ୍ରଧାନତଃ ଦୁଇଟି ଦୃଷ୍ଟି-କୋଣରୁ ପ୍ରସ୍ତୁତ ହୋଇଥାଏ । ଉଚ୍ଚାରଣଗତ ପାର୍ଥକ୍ୟ (ଗୋଡ଼. ଗୁଡ଼; ଭୋକ, ଭୁକ ଇତ୍ୟାଦି) ଓ ଶବ୍ଦ ପ୍ରୟୋଗଗତ ପାର୍ଥକ୍ୟ (ଦୁଧ, କ୍ଷୀର, ଓଖର, ଗରା ମାଠିଆ ଇତ୍ୟାଦି) ଦୃଷ୍ଟିରୁ ମୁଖ୍ୟତଃ ଶବ୍ଦ ଓ ସ୍ଥାନ ନିର୍ବାଚନ କରାଯାଇଥାଏ । ଏହିପରି ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଉଚ୍ଚାରଣ ରୀତି ବା ପ୍ରୟୋଗଭେଦର ସୀମାରେଖା ଟାଣିଲେ ଏକାଧିକ ଭିନ୍ନତାସୂଚକ ବିଭିନ୍ନ ଅଞ୍ଚଳ କ୍ରମେ ସ୍ପଷ୍ଟରୂପେ ବାରି ହୋଇପଡ଼ିବ । ଅନ୍ୟ କଥାରେ କହିଲେ ଏକାଧିକ ସୀମାରେଖା ଦ୍ୱାରା ଚିହ୍ନିତ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଏକ 'ଉପଭାଷା ଅଞ୍ଚଳ' (dilect area) ରୂପେ ନାମିତି କରାଯାଇ ପାରିବ ।

**ଉପଭାଷାତତ୍ତ୍ୱ ଗବେଷଣାର ସଂକ୍ଷିପ୍ତ ଇତିହାସ :** ଊନବିଂଶ ଶତକ ଭାଷାସମ୍ବନ୍ଧୀ ବିଚାର ଆଲୋଚନା କ୍ଷେତ୍ରରେ ଐତିହାସିକ ଭାଷାତତ୍ତ୍ୱ ବିଚାରର କାଳ । ଏହି ଶତକରେ ହିଁ ବିଧିବଦ୍ଧଭାବରେ ଉପଭାଷାତତ୍ତ୍ୱ ବିଚାରର ବୈଜ୍ଞାନିକ ଭିତ୍ତିସ୍ଥାପିତ ହୋଇଛି । ସାଧାରଣ ଭାବରେ ଏହା ରୋମାଣ୍ଟିକ ଚିନ୍ତାଧାରାର ବ୍ୟାପ୍ତି ଯୁଗରେ ହିଁ ସୃଷ୍ଟ । ତେଣୁ ଉପଭାଷାତତ୍ତ୍ୱ ବିଚାର ଆଲୋଚନାକୁ ପ୍ରାଥମିକ କାଳରେ ଏହା ବହୁ ପରିମାଣରେ ଆଚ୍ଛନ୍ନ ଓ ବିଭ୍ରାନ୍ତ କରିଚି । ପ୍ରାରମ୍ଭିକ କାଳର ଆଲୋଚକମାନଙ୍କ ଧାରଣା ଥିଲା ଯେ 'ଉପଭାଷା' କହିଲେ ଅତୀତ ସମ୍ପର୍କିତ ଏକ ଅଦ୍ଭୁତ ରୋମାଣ୍ଟିକ କଥ୍ୟରୂପ, ଭାଷାର ଏକ ପ୍ରାଚୀନ ସ୍ତରର ନମୁନା । ପୁଣି ଅନ୍ୟ କେତେକ ଆଲୋଚକଙ୍କ ଧାରଣାରେ ଏହା ଲୋକପ୍ରବାହ (migration) ସହ ସମ୍ବନ୍ଧିତ । ସେମାନଙ୍କ ମତରେ ବିଭିନ୍ନ ଜାତିର ପ୍ରଥମ ବସତି ସ୍ଥାନରେ ଉପଭାଷା ଏ ପର୍ଯ୍ୟନ୍ତ ମଧ ଅପରିବର୍ତ୍ତିତ ରହିଚି । ଉପଭାଷା-ତତ୍ତ୍ୱ ଆଲୋଚନାରୁ ଐତିହାସିକ ସିଦ୍ଧାନ୍ତ ଗ୍ରହଣର ଯଥାର୍ଥତା ବା ଭ୍ରାନ୍ତି ଆଲୋଚନା ପରେ ଅନ୍ୟତ୍ର କରାଯିବ । ଏଠାରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ରୋମାଣ୍ଟିକ୍ ସିଂହାବଲୋକନ ଉପଭାଷାତତ୍ତ୍ୱ ଆଲୋଚନାରେ ପ୍ରଧାନ ପ୍ରେରଣା ଯୋଗାଇଛି ।

ଉପଭାଷା ତତ୍ତ୍ୱର ପ୍ରଥମ ପ୍ରୟୋଗ ଓ ଆଲୋଚନା ଜର୍ମାନୀରେ ଆରମ୍ଭ ହୋଇଥିଲା । ଜର୍ମାନୀରେ ଉପଭାଷା ତତ୍ତ୍ୱର ବୈଜ୍ଞାନିକ ରୂପାଙ୍କନ କରିବାରେ ଯେଉଁମାନେ ସାହାଯ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ୱିଣ୍ଟଲର, ଲେସକିଅନ, ୱେଙ୍କର, ରେଦେ ଓ ଫିସରଙ୍କ ନାମ ଉଲ୍ଲେଖଯୋଗ୍ୟ । ୱେଙ୍କରଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଚାଳିଶ. ବାକ୍ୟ ପ୍ରଶ୍ନାବଳୀର ଉତ୍ତର ପ୍ରାୟ ଚାଳିଶ ହଜାର ସ୍କୁଲ ଜିଲ୍ଲା ଓ ବାରହଜାର ଅନ୍ୟାନ୍ୟ ଅଞ୍ଚଳରୁ ମିଳିଥିଲା । ଏହାରି ଭିତ୍ତିରେ ସେ ତାଙ୍କର ସହଯୋଗୀମାନଙ୍କ ସହିତ ମିଶି ପ୍ରାୟ ୧୬୦୦ ମାନଚିତ୍ର ପ୍ରସ୍ତୁତ କରିଥିଲେ; କିନ୍ତୁ ଏହି ପ୍ରାଥମିକ ଅବସ୍ଥାରେ ମାନଚିତ୍ରରୁ ଅସଂଖ୍ୟ ରେଖା ମଧ୍ୟରୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଉପଭାଷା ଅଞ୍ଚଳ ସ୍ଥିର କରିବା ବଡ଼ କଠିନ ଥିଲା । ପ୍ରକୃତପକ୍ଷେ ଜର୍ମାନ ଉପଭାଷା ମାନଚିତ୍ର ସର୍ବପ୍ରଥମେ ପ୍ରସ୍ତୁତ ହୋଇଥିଲେ ମଧ ୧୯୦୬ ମସିହାରେ ପ୍ରଥମେ ପ୍ରକାଶିତ ହେଲା । ଏହି ଉପଭାଷା ଅଧ୍ୟୟନର ପ୍ରଧାନ ଦୁର୍ବଳତା ହେଉଚି ଯେ, କୌଣସି ସୁଶିକ୍ଷିତ ଭାଷାବିଜ୍ଞାନୀଙ୍କର ପ୍ରତ୍ୟକ୍ଷ କାର୍ଯ୍ୟଦ୍ୱାରା ଏହି ଉପଭାଷା ସମୂହର ନମୁନା ସଂଗ୍ରହ କରାଯାଇ ନଥିଲା । ଅନ୍ୟପକ୍ଷରେ ବ୍ୟାପକ କ୍ଷେତ୍ରରୁ ତଥ୍ୟ ସଂଗ୍ରହ କରି ତାହାର ଉପଯୋଗ କରାଯାଇ ଥିବାରୁ ଅପ୍ରତ୍ୟକ୍ଷ ସଂଗ୍ରହଜନିତ ଦୁର୍ବଳତା ବହୁପରିମାଣରେ ଦୂର ହୋଇଛି ବୋଲି କୁହାଯାଇ ପାରେ । ଜର୍ମାନ ଉପଭାଷା ମାନଚିତ୍ରର ଅନ୍ୟ ଏକ ଉଲ୍ଲେଖ୍ୟ ଦୋଷ ବା ଗୁଣ ହେଉଚି ଯେ ଏଥିରେ ସଂଗୃହୀତ ତଥ୍ୟ ଗର୍ଭିତ କରାଯାଇ ନାହିଁ । ଏହି ତଥ୍ୟ ଭିତ୍ତିରେ ଦୀର୍ଘ ବର୍ଷର ଗବେଷଣାର ଫଳ ଏହି ମାନଚିତ୍ରରେ ଦିଆଯାଇଛି ମାତ୍ର ।

ଜର୍ମାନ ଉପଭାଷା ମାନଚିତ୍ର ବ୍ୟତୀତ ଫରାସୀ, ଇଟାଲିଅନ, ନିଉ ଇଂଲଣ୍ଡ

ମାନଚିତ୍ରଗୁଡ଼ିକ ଉଲ୍ଲେଖଯୋଗ୍ୟ । ଫରାସୀ ମାନଚିତ୍ର ପ୍ରସ୍ତୁତିରେ ୬୩୯ଟି ଜାଗାରୁ ପ୍ରତ୍ୟକ୍ଷ ଭାବରେ ତଥ୍ୟ ସଂଗୃହୀତ ହୋଇଥିଲା । ଫରାସୀ ମାନଚିତ୍ରରେ ସଂଗୃହୀତ ଶବ୍ଦଗୁଡ଼ିକ ସନ୍ନିବିଷ୍ଟ ହୋଇଛି । ଏଥିରେ ବର୍ଣ୍ଣାନୁକ୍ରମେ ସଂଗୃହୀତ ତଥ୍ୟ ଦିଆଯାଇଥିବାରୁ ଅନେକ ସମୟରେ ବିକାଶରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ପାରେନାହିଁ । ଫରାସୀ ମାନଚିତ୍ର ପ୍ରସ୍ତୁତି କ୍ଷେତ୍ରରେ ଗିୟେଁରଙ୍କ ନାମ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ତାଙ୍କରି ଛାତ୍ରମାନେ ଅନ୍ୟାନ୍ୟ ଇଉରୋପୀୟ ଉପଭାଷା ମାନଚିତ୍ର ଅଙ୍କନରେ ଅଗ୍ରଣୀ ହୋଇଥିଲେ ।

ଗିୟେଁରଙ୍କ ଶିଷ୍ୟ କାର୍ଲ ଜା ବର୍ଗ ଓ ଜାକବ ଜୁଡ୍ ପ୍ରଥମେ ଉତ୍ତର ଇଟାଲୀରେ ଉପଭାଷା କାର୍ଯ୍ୟ ଆରମ୍ଭ କଲେ । ସେତେବେଳେ ବାର୍ତ୍ତୋଲି ଓ ବାର୍ତ୍ତୋନି ନାମକ ଦୁଇଜଣ ପଣ୍ଡିତ ଦକ୍ଷିଣ ଇଟାଲୀ, ସାର୍ଡ଼ିନିଆ ଓ କର୍ସିକା ଅଞ୍ଚଳରେକାମ କରୁଥିଲେ; କିନ୍ତୁ ଫାସିଷ୍ଟ ସରକାର ସମସ୍ତ ଇଟାଲୀ ପାଇଁ ଗୋଟିଏ ମାନଚିତ୍ର ପ୍ରସ୍ତୁତି ଉପରେ ଜୋର ଦେଉଥିଲେ । ଫଳରେ ବାର୍ତ୍ତୋଲି ଓ ବାର୍ତ୍ତୋନି ସମ୍ପୂର୍ଣ୍ଣ ମାନଚିତ୍ର ଅଙ୍କନ କରିବାରେ କୃତସଂକଳ୍ପ ହେଲେ । ସେମାନଙ୍କ ମତରେ କୌଣସି ଏକ ଅଞ୍ଚଳର ଭାଷା ଅନୁସନ୍ଧାନ କରିବାକୁ ହେଲେ ସେହି ଭାଷାକୁ ମାତୃଭାଷା ରୂପେ ବ୍ୟବହାର କରୁଥିବା ଲୋକ ପ୍ରୟୋଜନ । ଏହି ମତ ଉପରେ ନିର୍ଭର କରି ସେମାନେ ଜାବର୍ଗ ଓ ଜୁଡ୍‌ଙ୍କର ଜର୍ମାନ ସହଯୋଗୀଙ୍କୁ କାମରୁ ବାହାର କରି ଦେଇଥିଲେ । କିନ୍ତୁ ଜାବର୍ଗ ଓ ଜୁଡ୍ ସ୍ୱତନ୍ତ୍ରଭାବରେ ସେମାନଙ୍କ କାମରେ ଆଗେଇ ଚାଲିଲେ । ସେମାନେ ତାଙ୍କ କାର୍ଯ୍ୟକୁ ଟିକିଏ ଭିନ୍ନ ଭାବରେ ପରିଚାଳିତ କରି କେନ୍ଦ୍ର ଇଟାଲୀକୁ ତାଙ୍କ ଅନୁସନ୍ଧାନ ଅଞ୍ଚଳର ଅନ୍ତର୍ଭୁକ୍ତ କଲେ । ୧୯୨୩-୨୬ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ କାର୍ଯ୍ୟ କଲାପରେ ୧୯୨୮ରେ ସେମାନଙ୍କର ପ୍ରାରମ୍ଭିକ ଖଣ୍ଡ ଓ ୧୯୪୦ ସୁଦ୍ଧା ଆଠଖଣ୍ଡରେ ସମ୍ପୂର୍ଣ୍ଣ ମାନଚିତ୍ର ଗ୍ରନ୍ଥ ପ୍ରକାଶ ପାଇଲା । ବାର୍ତ୍ତୋଲି ଓ ବାର୍ତ୍ତୋନିଙ୍କର ଜଣେ ସହକାରୀ ଉଗୋପେଲିସ ତଥ୍ୟ ସଂଗ୍ରହ ଦିଗରେ ଭଲ କାମ କରିଥିଲେ; କିନ୍ତୁ ସେ ୧୯୪୩ରେ ମରିଗଲେ । ଏହା ପରେ ବାର୍ତ୍ତୋଲି ଓ ବାର୍ତ୍ତୋନିଙ୍କର ମଧ୍ୟ ମୃତ୍ୟୁ ହେଲା । ଜଣେ ଲୋକଦ୍ୱାରା ପ୍ରତ୍ୟକ୍ଷଭାବରେ ସମସ୍ତ କାର୍ଯ୍ୟ କରାଇବାର ଉଦ୍ୟମର ସମାଧି ହେଲା ଓ ବାର୍ତ୍ତୋଲି ଓ ବାର୍ତ୍ତୋନିଙ୍କ ସଂଗୃହୀତ ତଥ୍ୟ ତୁରିନି ବିଶ୍ୱବିଦ୍ୟାଳୟର ଫାଇଲ ମଧ୍ୟରେ ରହିଲା ।

ଗିୟେଁରଙ୍କର ଅନ୍ୟଜଣେ ଛାତ୍ର ବ୍ଲାଙ୍କର୍ଟ ଡଚ ଉପଭାଷା ମାନଚିତ୍ର ପ୍ରସ୍ତୁତି ଦିଗରେ କାର୍ଯ୍ୟ କରିଥିଲେ । ୧୯୨୫ରେ କାମ ଆରମ୍ଭ ହୋଇଥିଲେ ହେଁ ଏହାର ଛାପାକାମ ୧୯୫୨ ମସିହା ବେଳକୁ ଆରମ୍ଭ ହୋଇଥିଲା । ସେ ନିଜେ ପ୍ରତ୍ୟକ୍ଷଭାବରେ ଲୋକଙ୍କୁ ପ୍ରଶ୍ନ ପଚାରି ମାନଚିତ୍ର ପ୍ରସ୍ତୁତି ପାଇଁ କାମ କଲେ । ଧ୍ୱନିଗତ ସାମାନ୍ୟତମ ପରିବର୍ତ୍ତନ ମଧ୍ୟ ଯେପରି ଉପେକ୍ଷିତ ନ ହୁଏ ସେ ଦିଗରେ ସେ ବିଶେଷ ସଜାଗ ଥିଲେ । ସେ ପ୍ରାୟ ୧୪୦ଟି ବାକ୍ୟ ବିଭିନ୍ନ ଅଞ୍ଚଳର କହିବା କଥା ଅନୁଯାୟୀ ଲିପିବଦ୍ଧ କଲେ; କିନ୍ତୁ ଏହା ତାଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ଅସୁବିଧା ସୃଷ୍ଟିକଲା ବେଶି । ପ୍ରଥମତଃ ଡଚ ଭାଷାରେ ସନ୍ଧିର ଆଧିକ୍ୟ

ହେତୁ କେତେକ ଆବଶ୍ୟକ ସମ୍ବାଦ ବାକ୍ୟମାନଙ୍କରୁ ମିଳି ପାରିଲାନାହିଁ । ତହିଁରେ ପୁଣି ତରତର କଥା କହିଲାବେଳେ ବାକ୍ୟଗୁଡ଼ିକୁ ଖଣ୍ଡ ଖଣ୍ଡ କରି କାଟିବା ଯେପରି ଅସୁବିଧାଜନକ ସେଗୁଡ଼ିକୁ ମାନଚିତ୍ରରେ ଯଥାର୍ଥରେ ଦର୍ଶାଇବା ସେହିପରି ଅସୁବିଧାଜନକ ପ୍ରତିପନ୍ନ ହେଲା ।

ନିଉଇଂଲଣ୍ଡ ଉପଭାଷା ମାନଚିତ୍ର ପ୍ରସ୍ତୁତିରେ ହାନସକୁରାଥଙ୍କର ନାମ ଉଲ୍ଲେଖ ଯୋଗ୍ୟ । ପୂର୍ବବର୍ତ୍ତୀ ମାନଙ୍କର ଦୋଷ ଦୁର୍ବଳତା ପ୍ରତି ଅବହିତ ରହି ଏହି ନୂତନ ମାନଚିତ୍ର ପ୍ରସ୍ତୁତ ହୋଇଥିବାରୁ ଏଥିରେ ଦୁର୍ବଳତା ଅପେକ୍ଷାକୃତ କମ୍ । ଅନୁସନ୍ଧାନ କରାଯାଉଥିବା ପ୍ରତ୍ୟେକ ଗୋଷ୍ଠୀରୁ ତିନିଜଣ ଲେଖାଏଁ ଲୋକଙ୍କ ଠାରୁ ତଥ୍ୟ ସଂଗ୍ରହ କରାଯାଇଛି । ଜଣେ ବୟସ୍କ, ଜଣେ ମଧ୍ୟମ ବୟସ ପୁରୁଷ ବା ସ୍ତ୍ରୀ ଓ ଜଣେ ଶିକ୍ଷିତ ଲୋକ ଏହିପରି ଭାବରେ ପ୍ରତ୍ୟେକ ଗୋଷ୍ଠୀରୁ ବଛା ଯାଇଥିବାରୁ ତଥ୍ୟ ଅଧିକ ବିଶ୍ୱାସ୍ୟ ଓ ପ୍ରତିନିଧିମୂଳକ ହୋଇ ପାରିଛି । ଫରାସୀ ଓ ଇଟାଲିଆନ୍ ମାନଚିତ୍ରପରି ଏଥିରେ ମଧ୍ୟ ସଂଗୃହୀତ ତଥ୍ୟ ପରିବେଷଣ କରାଯାଇଛି ।

**ବିଭିନ୍ନ ପ୍ରକାର ଉପଭାଷା ଅଞ୍ଚଳ :** ଏହି ସମସ୍ତ ଗବେଷଣା ଫଳରେ ବହୁ ମୂଲ୍ୟବାନ୍ ନୂତନ ତଥ୍ୟ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ କାର୍ଯ୍ୟ ପଦ୍ଧତିରେ ମଧ୍ୟ ବହୁ ଉନ୍ନତି ଘଟିଛି । ୧୮୭୬ରେ ସିଭ୍ରସଙ୍କର ଉଚ୍ଚାରଣମୂଳକ ଧ୍ୱନିତତ୍ତ୍ୱ ଆଲୋଚନା ପ୍ରକାଶିତ ହେବା ଦିନଠାରୁ ଧ୍ୱନିବିଜ୍ଞାନରେ ସାଧାରଣ ନିୟମ ଆବିଷ୍କାର କରିବା ଦିଗରେ କାର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଉପଭାଷାତତ୍ତ୍ୱ ବିଚାରରେ ମଧ୍ୟ ଯଥେଷ୍ଟ ଉନ୍ନତି ଘଟିଛି । ଉଚ୍ଚାରଣ ମୂଳକ ଧ୍ୱନିତତ୍ତ୍ୱର ମୂଳ ସୂତ୍ରକୁ ମାନିନେଇ କାମ ଆରମ୍ଭ କରାଯାଇ ଥିଲେ ସୁଦ୍ଧା ଉପଭାଷାତତ୍ତ୍ୱ ଅନୁସନ୍ଧାନକାରୀମାନେ ଦେଖିଲେ ଯେ ବିଶେଷ କ୍ଷେତ୍ରରେ ଏହା କାର୍ଯ୍ୟକାରୀ ହେଉନାହିଁ । କେତେକ ପ୍ରଶ୍ନ କଲେ, ଏହି ଉଚ୍ଚାରଣ ବୈଭିନ୍ନ୍ୟ କୌଣସି ଏକ ଅଞ୍ଚଳର କେନ୍ଦ୍ରସ୍ଥଳରେ ଦେଖା ନଯାଇ ଉପାନ୍ତ ଅଞ୍ଚଳରେ ବା ସୀମାରେ ଦେଖାଯାଉଚି କାହିଁକି ? ଏହି ପ୍ରକାର ପ୍ରଶ୍ନର ଉତ୍ତରରେ ଉପଭାଷାତତ୍ତ୍ୱ ବିଚାରରେ ଏକ ନୂତନ ସିଦ୍ଧାନ୍ତ (hypothesis)ର ସୃଷ୍ଟି ହେଲା । ତାହା ହେଉଛି, ଭାଷାରେ ଧ୍ୱନିପରିବର୍ତ୍ତନ କୌଣସି ଗୋଟିଏ ସ୍ଥାନରୁ ସୃଷ୍ଟି ହୋଇ କ୍ରମେ ଚାରିଆଡ଼କୁ ବ୍ୟାପେ । କ୍ରମେ ପରିବର୍ତ୍ତିତ ଶବ୍ଦର ଅନୁକରଣରେ ନୂତନ ସୃଷ୍ଟ ହୋଇ ପରିବର୍ତ୍ତିତ ଅଞ୍ଚଳଟିକୁ ଏକ ସ୍ୱତନ୍ତ୍ର ଅଞ୍ଚଳରୂପେ ଚିହ୍ନିତ କରେ । ସାଧାରଣତଃ ଗୋଟିଏ ସହର ଗୋଟିଏ ଗୋଟିଏ ଅଞ୍ଚଳର ସାଂସ୍କୃତିକ କେନ୍ଦ୍ରରୂପେ ଗଢ଼ିଉଠେ ଓ ଏହି ସ୍ଥାନରୁ ପରିବର୍ତ୍ତନ ବା ନୂତନ ସୃଷ୍ଟିମାନ ଚାରିଆଡ଼କୁ ବିକୀର୍ଣ୍ଣ ହୁଏ । ଯେଉଁ ଅଞ୍ଚଳରୁ ଏ ପ୍ରକାର ବିକିରଣ ଆରମ୍ଭ ହୁଏ ତାକୁ focal area କୁହାଯାଏ । ପରିବର୍ତ୍ତନର ବ୍ୟାପ୍ତି ଏକ ବିଶେଷ ଅଞ୍ଚଳକୁ ଗର୍ଭିତ କରିପାରେ, କିନ୍ତୁ ସେହି ଅଞ୍ଚଳର କୌଣସି ଅଂଶରେ ଯଦି ପ୍ରାଚୀନ ଉଚ୍ଚାରଣ ପଦ୍ଧତିରେ ପରିବର୍ତ୍ତନ ନ ଘଟି ତାହା ପୂର୍ବପରି ଚଳେ ତେବେ ପ୍ରାଚୀନ ରୀତିରେ ଉଚ୍ଚାରିତ ଶବ୍ଦଟିକୁ Relic form ଓ ତାହା ଚଳୁଥିବା ଅଞ୍ଚଳଟିକୁ Relic area କୁହାଯାଏ ।

ପରିବର୍ତ୍ତନ ଗୋଟିଏ ସ୍ଥାନରୁ ଆରମ୍ଭ ହୋଇ ବ୍ୟାପିବା ଭାବନାରୁ Isogloss ଧାରଣା ଏକ ନିର୍ଦ୍ଦିଷ୍ଟ ରୂପ ନେଲା । ଯେକୌଣସି ଭାଷାଗତ ପ୍ରୟୋଗର ବହିଃସୀମାକୁ ଗୋଟିଏ Isogloss ରୂପେ କଳ୍ପନା କରି ତାହାରି ଭିତ୍ତିରେ ଉପଭାଷା ଅଞ୍ଚଳ ନିର୍ଦ୍ଧାରଣ କରିବା ସୁବିଧାଜନକ ହେଲା । ସବୁବେଳେ ବିଭିନ୍ନ ପରିବର୍ତ୍ତନ ଏକ ରୈଖିକ ଗତିରେ ଚାଲେ ନାହିଁ । ବିଭିନ୍ନ ପରିବର୍ତ୍ତନ କେନ୍ଦ୍ର (Focal area)ର ସୀମାରେଖାର ମିଳନ ଅଞ୍ଚଳକୁ ଅନ୍ତର୍ବର୍ତ୍ତୀ ଅଞ୍ଚଳ (Graded area ବା transition area) ରୂପେ ନାମିତ କରାଯାଇଥାଏ । ଗୋଟିଏ ଚିତ୍ର ସାହାଯ୍ୟରେ ଏହି ଅଞ୍ଚଳଗୁଡ଼ିକ ଦେଖାଇଦେଲେ କଥାଟି ଆଉ ଟିକିଏ ପରିଷ୍କାର ହେବ ।




ଯଦି ଏକଥା ଦର୍ଶାଯାଇ ପାରିବ ଯେ ଏକ ସମୟରେ କ ଓ ଖ ଅଞ୍ଚଳ ସମେତ ସମସ୍ତ ସ୍ଥାନରେ ଏକପ୍ରକାର ଭାଷାଗତ ଅବସ୍ଥା ଥିଲା ଓ ପରେ ନୂତନ ପରିବର୍ତ୍ତନ କ ଓ ଖ ଅଞ୍ଚଳ ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳକୁ ଗର୍ଭିତ କଲା, ତେବେ କ ଓ ଖ ଅଞ୍ଚଳକୁ Relic area କୁହାଯିବ । ତାହା ନୋହିଲେ କ ଓ ଖ ଅଞ୍ଚଳରେ ନୂତନ ପରିବର୍ତ୍ତନ ସୃଷ୍ଟିହୋଇ ତାହା ଅନ୍ୟାନ୍ୟ ଅଞ୍ଚଳରୁ ବିଛିନ୍ନ ଓ ସ୍ୱତନ୍ତ୍ର ହେଲେ ତାହାକୁ aera କହିବାର କୌଣସି କାରଣ ନାହିଁ ।

ଏହି ଅଞ୍ଚଳଗୁଡ଼ିକୁ ଧ୍ୱନି-ପରିବର୍ତ୍ତନ ଓ ତାହାର ବ୍ୟାପ୍ତି ଦୃଷ୍ଟିରୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯେଉଁ ଅଞ୍ଚଳରୁ ବିଭିନ୍ନ ନୂତନ ଭାଷାଗତ ବିଭାଗର ବିକିରଣ ହୁଏ ସେହି ଅଞ୍ଚଳକୁ Active area କୁହାଯାଏ । ଅନ୍ୟପକ୍ଷରେ ଯେଉଁ ଅଞ୍ଚଳ ପରିବର୍ତ୍ତନ ବା ନୂତନ ପ୍ରୟୋଗ ଗ୍ରହଣର ସମ୍ପୂର୍ଣ୍ଣ ବୀତସ୍ପୃହ, ସେହି ଅଞ୍ଚଳକୁ Passive area କୁହାଯାଇ ପାରେ । ଗୋଟିଏ ଦୃଷ୍ଟିରୁ ଦେଖିଲେ ଏଇ Passive area ହେଉଛି relic area, କିନ୍ତୁ ମନେ ରଖିବାକୁ ହେବ ଯେ ଏ ଦୁଇପ୍ରକାର ବିଭାଗୀକରଣର ଆଭିମୁଖ୍ୟ ଭିନ୍ନ ।

**ଉପଭାଷା-ମାନଚିତ୍ର ଅଙ୍କନ :** ପୂର୍ବେ ସୂଚନାରେ କୁହାଯାଇଛି ଯେ ଫରାସୀ, ଇଟାଲୀ ଓ ନିଉଇଂଲଣ୍ଡର ଉପଭାଷା-ମାନଚିତ୍ରରେ ସଂଗୃହୀତ ତଥ୍ୟ ସନ୍ନିବିଷ୍ଟ କରାଯାଇଛି । ସଂଗ୍ରାହକ ଇଚ୍ଛା କରିଥିଲେ ଏଗୁଡ଼ିକ ସ୍ୱତନ୍ତ୍ର ତାଲିକା ଆକାରରେ ଦେଇ ପାରିଥାନ୍ତେ । ଏହି ପ୍ରକାର ମାନଚିତ୍ରରୁ ଅନୁସନ୍ଧାନକାରୀକୁ ଆପଣାର ମାନଚିତ୍ର ପ୍ରୟୋଜନମତେ ଆଙ୍କିବାକୁ ପଡ଼ିବ । ଜର୍ମାନ ମାନଚିତ୍ରରେ ବିଭିନ୍ନ ଭାଷାଗତ ପ୍ରୟୋଗର ପାରସ୍ପରିକ ସମ୍ପର୍କର ଏକ Visual representation ଦିଆଯାଇଛି । ମନେ କରାଯାଉ ଯେ 'କ' 'ଣ' କଥାଟିର ତିନିପ୍ରକାର ଉଚ୍ଚାରଣ ଅଛି । ଆମେ ଏଠାରେ କ୍ ଓ ଣ୍ ମଝିରେ ଥିବା ସ୍ୱରବର୍ଣ୍ଣ ସହିତ ସମ୍ପୃକ୍ତ ବୋଲି ଧରି ନିଆଯାଉ । ତାହାହେଲେ [ଅ], [ଅ ଅ] ୦, ଓ [ଅ ଆ] ୦ ରୂପେ ଗ୍ରହଣ କଲେ ତଳଲିଖିତ ପ୍ରକାରର ମାନଚିତ୍ର କରାଯାଇ ପାରିବ ।



ଏହି ପ୍ରକାର ମାନଚିତ୍ରକୁ ମୁକ୍ତ ମାନଚିତ୍ର (Open map) କୁହାଯାଇପାରେ । ଏହା ଅତ୍ୟନ୍ତ ପ୍ରୟୋଜନ, କିନ୍ତୁ ଏଥିରେ ଅସୁବିଧା ହେଉଛି ଯେ ଏକକାଳୀନ ଦୁଇଟି ବା

ତତୋଽଧିକ ପରିବର୍ତ୍ତନ ଏଥିରେ ଦେଖାଯାଇ ପାରିବ ନାହିଁ ।x ଯଦିକୌଣସି ଗୋଟିଏ ଶବ୍ଦରେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ଉଭୟ ସ୍ଥାନରେ ପରିବର୍ତ୍ତନ ଘଟିଥାଏ, ତେବେ ତାହା ଏ ପ୍ରକାର ମାନଚିତ୍ରରେ ଦେଖାଇବା ସମ୍ଭବ ହେବ ନାହିଁ; କିନ୍ତୁ ବର୍ତ୍ତମାନ ଭାଷାବିଜ୍ଞାନୀମାନଙ୍କର ଯେଉଁ ମାନଚିତ୍ରରେ ପରିବର୍ତ୍ତନର କେବଳ ଗୋଟିଏ ଲେଖାଏଁ ବିଭାଗ ଦେଖାଇ ଦିଆଯାଇଥାଏ ତାହାହିଁ ଶ୍ରେଷ୍ଠ ମାନଚିତ୍ର ।

ଉପଭାଷା ଅଞ୍ଚଳ ଦେଖାଇବା ପାଇଁ ଆଉ ଏକ ପ୍ରକାର ମାନଚିତ୍ର ଅଙ୍କନ କରାଯାଇ ପାରେ ଯାହାକୁ କି ସାଧାରଣତଃ ଆବଦ୍ଧ ମାନଚିତ୍ର (Close map) ରୂପେ ଅଭିହିତ କରାଯାଏ । ଯଦି କୌଣସି ଅଞ୍ଚଳରେ ଅଗ୍ରସ୍ୱର ଓ ପଶ୍ଚସ୍ୱରର ବ୍ୟାପ୍ତି ଦେଖାଯାଏ ତେବେ ହୁଏ ତ ତଳଲିଖିତ ରୂପେ ଏକ ଚିତ୍ର ଅଙ୍କନ କରାଯାଇ ପାରିବ ।




ଏ ପ୍ରକାର ମାନଚିତ୍ର କେତେକ ଦୃଷ୍ଟିରୁ ପ୍ରୟୋଜନ ହୋଇପାରେ; କିନ୍ତୁ ବହୁ ସମୟରେ ଏଥିରେ ଆବଶ୍ୟକ ତଥ୍ୟ ପରିସ୍ଫୁଟ ଭାବରେ ପ୍ରକାଶ ପାଏ ନାହିଁ । X ଗ୍ରାମରେ ପଶ୍ଚସ୍ୱରର ଚଳଣି ଥାଇ ପାରେ; କିନ୍ତୁ ଉକ୍ତ ଗ୍ରାମରେ ହୁଏତ ଆଲୋଚିତ ଶବ୍ଦଟି ଆଦୌ ବ୍ୟବହୃତ ହୁଏନାହିଁ । ତାହାହେଲେ ଏପରି ମାନଚିତ୍ରରୁ ସ୍ପଷ୍ଟ ଚିତ୍ର ଅଙ୍କନ କରିବାରେ ଅସୁବିଧା ଯେ ରହିଚି ଏକଥା ସ୍ୱୀକାର କରିବାକୁ ହେବ ।

**ଉପଭାଷା ଭୂଗୋଳ ଓ ତୁଳନାତ୍ମକ ଭାଷାବିଜ୍ଞାନପଦ୍ଧତି :** ଭାଷାବିଜ୍ଞାନରେ ତୁଳନାତ୍ମକ ପଦ୍ଧତି କେତେକ ମୂଳସୂତ୍ର ଗ୍ରହଣ କରି ଆଲୋଚନାରେ ଅଗ୍ରସର ହୋଇଥାଏ । ଏହି ସୂତ୍ର ଗୁଡ଼ିକର କାର୍ଯ୍ୟକାରୀ ପ୍ରୟୋଜନ ଥିଲେ ସୁଦ୍ଧା ପ୍ରତ୍ୟେକଟି ଆଂଶିକ ସତ୍ୟ । ପ୍ରଥମତଃ ଗ୍ରହଣ କରି ନିଆଯାଏ ଯେ ପୁନର୍ଗଠିତ ଆଦି ଭାଷାର ସ୍ୱରୂପ ଏକକ ଓ ଭିନ୍ନତା ବର୍ଜିତ କିନ୍ତୁ ପୃଥିବୀରେ କୌଣସି ଭାଷା ଭିନ୍ନତା ବର୍ଜିତ ନୁହେଁ । ଯେଉଁମାନେ ଭାରତ-ଇଉରୋପୀୟ ଆର୍ଯ୍ୟଭାଷା ଆଲୋଚନା କରନ୍ତି, ସେମାନେ ଜାଣନ୍ତି ଯେ କେଣ୍ଟୁମ୍ ଓ ଶତମ୍

ଭେଦରେ ମୂଳ ଭାରତୀୟ ଆର୍ଯ୍ୟଭାଷାର ବିଭାଗ, ଭାଷାରେ ଉପଭାଷା ବିଭାଗ ସ୍ୱୀକାର ବ୍ୟତୀତ ଅନ୍ୟ କିଛିନୁହେଁ । ଯେ କୌଣସି ସାମ୍ପ୍ରତିକ ଭାଷା ଆଲୋଚନା କଲେ ମଧ୍ୟ ସେଇ ଏକ କଥା ଦେଖିବାକୁ ମିଳିବ । ଓଡ଼ିଆଭାଷା କହିଲେ ବିଭିନ୍ନ ଉପଭାଷା ଅଞ୍ଚଳକୁ ବାଦ୍‌ଦେଇ କୌଣସି ଏକ ନିଷ୍କଳ ଅପରିବର୍ତ୍ତନୀୟ ଭାଷାଭାଷୀଙ୍କୁ ବୁଝିବା ଅସମ୍ଭବ ।

ତୁଳନାତ୍ମକ ଭାଷା-ବିଜ୍ଞାନର ଅନ୍ୟ ଏକ ଗୃହୀତ ସୂତ୍ର ହେଉଛି ଭାଷାରେ ହଠାତ୍ ସ୍ୱତନ୍ତ୍ରତା ସୃଷ୍ଟି । ଭାଷାକୁ ଗଭୀରଭାବରେ ଅଧ୍ୟୟନ କଲେ ଦେଖାଯିବ ଯେ ଭାଷା ବିକାଶରେ ବିଭିନ୍ନତା ସୃଷ୍ଟି ଏକ କ୍ରମିକ ପ୍ରକ୍ରିୟା । ଯେଉଁମାନେ ପରସ୍ପର ନିରପେକ୍ଷ ଏକ ଭାଷା ପରିବାରଭୁକ୍ତ ଭାଷାମାନଙ୍କର କଳ୍ପନା କରନ୍ତି ସେମାନେ ନିତାନ୍ତ ଅବାସ୍ତବ ପରିକଳ୍ପନା କରନ୍ତି, ଏଥିରେ ସନ୍ଦେହ ନାହିଁ । ତଳେ ଦିଆଯାଇଥିବା ଚିତ୍ରରୁ ସହଜେ ଜାଣି ହେବ ଯେ ଖ ଓ ଗ ଭାଷା ପରସ୍ପର ସହିତ ଯେପରି ଘନିଷ୍ଠ ଭାବରେ ସମ୍ପୃକ୍ତ ଉଭୟଙ୍କ ମଧ୍ୟରୁ କେହି କ ଭାଷା ସହିତ ସେପରି ଘନିଷ୍ଠ ଭାବରେ ସମ୍ପୃକ୍ତ ନୁହନ୍ତି । ଐତିହାସିକ ପ୍ରମାଣ ବ୍ୟତିରେକେ ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେବା କିଛି ଆଶ୍ଚର୍ଯ୍ୟ ନୁହେଁ । ମନେ ରଖିବାକୁ ହେବ ଯେ ଘନିଷ୍ଠ ଭାବରେ ସମ୍ପର୍କିତ ଦୁଇଟି ଉପଭାଷାର ସମ୍ପର୍କ ନିର୍ଣ୍ଣୟ ଓ ପ୍ରଦର୍ଶନ କରିବାରେ ତୁଳନାତ୍ମକ ପଦ୍ଧତି ସବୁଠାରୁ ଶ୍ରେଷ୍ଠ ପନ୍ଥା ନୁହେଁ । ଉପଭାଷା ଭୂଗୋଳ-ସୂତ୍ରରେ ମାନଚିତ୍ର ଅଙ୍କନ କରି ଏହି ସମ୍ପର୍କକୁ ଅଧିକ ପରିସ୍ଫୁଟ ଓ ଅର୍ଥବନ୍ତଭାବରେ ପ୍ରକାଶ କରାଯାଇପାରେ ।




ଉପଭାଷାତତ୍ତ୍ୱ ଅଧ୍ୟୟନରୁ କେତେକ ପଣ୍ଡିତ ନାନାପ୍ରକାର ଐତିହାସିକ ସିଦ୍ଧାନ୍ତରେ ପହଞ୍ଚିବାକୁ ଚେଷ୍ଟା କରିଛନ୍ତି । ନୃତତ୍ତ୍ୱବିଦ୍‌ମାନେ ଲୋକ ପ୍ରବାଦ (Migration) ଦୃଷ୍ଟିରୁ

Age area hypothesis ନାମକ ଏକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଭାଷାବିଜ୍ଞାନରେ ଏହାର ସମାନ୍ତର ଚିନ୍ତାଧାରା ହେଉଚି ଆଞ୍ଚଳିକ ଭାଷାବିଜ୍ଞାନ (area linguistics) । ଇଟାଲିଆନ ଉପଭାଷା ମାନଚିତ୍ରର ପ୍ରମୁଖ ସ୍ରଷ୍ଟା ପଣ୍ଡିତ ବାର୍ତୋଲି ପ୍ରଥମେ ଏହି ପରିଭାଷା ବ୍ୟବହାର କରିଥିଲେ । ଯେଉଁ ଅଞ୍ଚଳରେ କୌଣସି ଭାଷାଭାଷୀମାନେ ବହୁ ଅଞ୍ଚଳବ୍ୟାପୀ ବସତି ସ୍ଥାପନ କରିଛନ୍ତି ସେମାନଙ୍କୁ ଅପେକ୍ଷାକୃତ ପରବର୍ତ୍ତୀ କାଳର ଅଧିବାସୀ ବୋଲି ଏହି ନିୟମ ଅନୁସାରେ ଗ୍ରହଣ କରିବାକୁ ହେବ । ପୁଣି ଯଦି ଦୂରରେ ବିଚ୍ଛିନ୍ନଭାବରେ ସେହି ଭାଷାଭାଷୀମାନେ କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଥାଆନ୍ତି, ତେବେ ତାହାକୁ ପ୍ରାଚୀନ ବସତି ଓ ଲୋକପ୍ରବାହର ଗତି ସେହି ସ୍ଥାନରୁ ବହୁଳ ବସତି ଅଞ୍ଚଳକୁ ହୋଇଥିବାର ଧରି ନିଆଯାଏ । ଉଦାହରଣସ୍ୱରୂପ ଭାରତବର୍ଷରେ ଦ୍ରାବିଡ଼ଭାଷୀ ଅଞ୍ଚଳକୁ ଗ୍ରହଣ କରାଯାଇପାରେ । ମୁଖ୍ୟତଃ ଦକ୍ଷିଣ ଭାରତରେ ଦ୍ରାବିଡ଼ଭାଷୀମାନେ ବାସ କରନ୍ତି, କିନ୍ତୁ ଭାରତର ଉତ୍ତରାଞ୍ଚଳରେ ବ୍ରାହୁଇଭାଷୀ ଦ୍ରାବିଡ଼ମାନଙ୍କର ସ୍ଥିତି ସମ୍ବନ୍ଧରେ ଅବହିତ ହେବାପରେ ଉତ୍ତର-ଭାରତରେ ଦ୍ରାବିଡ଼ମାନଙ୍କର ଅବସ୍ଥିତି ଓ ଉତ୍ତରାଞ୍ଚଳରୁ ଦକ୍ଷିଣ ଆଡ଼କୁ



ଦ୍ରାବିଡ଼ଭାଷୀ ଲୋକମାନଙ୍କର ଆଗମନ ସମ୍ବନ୍ଧରେ ଭାଷାଭିତ୍ତିରେ ନିଶ୍ଚିତ ସିଦ୍ଧାନ୍ତ କରିବା ସମ୍ଭବପର ହୋଇଛି । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଅପେକ୍ଷାକୃତ ବିସ୍ତୃତ ଓ ଘନଭାବରେ ଏକଭାଷାଭାଷୀ ଅଞ୍ଚଳ ଅପେକ୍ଷା ଦୂରସ୍ଥ ଅଞ୍ଚଳରେ ଭାଷାମାନଙ୍କ ମଧ୍ୟରେ ସାଧାରଣତଃ ଅଧିକ ପାର୍ଥକ୍ୟ ଦେଖାଯାଏ । ଏହି ପାର୍ଥକ୍ୟ ହିଁ ଲୋକପ୍ରବାହର ସୂଚକ । କେତେକ ଉଦାହରଣ ଦେଲେ କଥାଟି ଆଉ ଟିକିଏ ପରିସ୍ଫୁଟ ହେବ । ଉତ୍ତର ଆମେରିକାର ମାନଚିତ୍ରଟି ବିଚାର କରାଯାଉ ।

୧ ଓ ୨ ନମ୍ବର ଭାଷା ଖ ଅଞ୍ଚଳର ଭାଷାମାନଙ୍କ ସହ ସମ୍ପୃକ୍ତ । ଖ ଅଞ୍ଚଳରେ ଏକାଧିକ ଭାଷା ଅଛି; କିନ୍ତୁ ସେଗୁଡ଼ିକ ପରସ୍ପର ସହ ଯେତେ ଘନିଷ୍ଠଭାବେ ସମ୍ପୃକ୍ତ ୧ ଓ ୨ ପରସ୍ପର ସହ ତେତେ ଘନିଷ୍ଠଭାବେ ସମ୍ପୃକ୍ତ ନୁହନ୍ତି । ଏଥିରୁ ସିଦ୍ଧାନ୍ତ କରାଯାଇ ପାରେ ଯେ ଖ ଅଞ୍ଚଳରେ ଅପେକ୍ଷାକୃତ ପରବର୍ତ୍ତୀ କାଳରେ ଲୋକ ପ୍ରବାହଫଳରେ ବସତି ସ୍ଥାପିତ ହୋଇଛି । ଏହା ଅନ୍ୟାନ୍ୟ ତଥ୍ୟଦ୍ୱାରା ମଧ୍ୟ ସମର୍ଥିତ ।

ଉତ୍ତର-ପଶ୍ଚିମ ଇଣ୍ଡୋଇରାନୀ ଭାଷାଗୁଡ଼ିକ ଭାରତର ଉତ୍ତରାଞ୍ଚଳର ଭାଷା କିମ୍ବା ଇରାନ୍‌ର ପଶ୍ଚିମାଞ୍ଚଳରୁ ଭାଷା ତୁଳନାରେ ପରସ୍ପର ସହିତ ଖୁବ୍ ଶିଥିଳ ଭାବରେ ଭାବରେ ସମ୍ପର୍କିତ । ଉତ୍ତର-ପଶ୍ଚିମାଞ୍ଚଳର ଲୋକପ୍ରବାହର ସୂଚନାସ୍ୱରୂପ ଏହି ପ୍ରମାଣକୁ ଗ୍ରହଣ କରାଯାଇ ପାରେ । ସେହିପରି ଭାବରେ ଆଫ୍ରିକାର ବାଣ୍ଟୁ ଅଞ୍ଚଳକୁ ଅପେକ୍ଷାକୃତ ପରବର୍ତ୍ତୀ କାଳର ଲୋକବସତି ରୂପେ ଉପଭାଷା ଭୂଗୋଳ ମାନଚିତ୍ର ସାହାଯ୍ୟରେ ମଧ୍ୟ ଦେଖାଇ ଦିଆଯାଇପାରେ ।

ଆଲୋଚନାର ପରିସମାପ୍ତି ପୂର୍ବରୁ ଗୋଟିଏ ଦୁଇଟି ବିଷୟରେ ଆଲୋଚକଙ୍କର ଦୃଷ୍ଟି ଆକର୍ଷଣ କରିବା ପ୍ରୟୋଜନ । ଏକ କାଳରେ ପଣ୍ଡିତମାନେ ଉପଭାଷା ଆଲୋଚନାକୁ ଅଶ୍ରଦ୍ଧା ଦୃଷ୍ଟିରେ ଦେଖୁଥିଲେ । ବର୍ତ୍ତମାନ ନାନା କାରଣରୁ (ଏବଂ ଏହା ମଧ୍ୟରେ ରାଜନୈତିକ କାରଣ ଏକ ବିଶେଷ ସ୍ଥାନ ଅଧିକାର କରିଛି) ଉପଭାଷା ଅଧ୍ୟୟନ ପ୍ରତି ଆଗ୍ରହ ଅତି ମାତ୍ରାରେ ବଢ଼ି ଯାଇଛି । ଫଳରେ ଉପଭାଷାମାନଙ୍କର ବ୍ୟାକରଣଗତ ସାମ୍ୟ ପ୍ରତି ଦୃଷ୍ଟି ନରଖି ପଣ୍ଡିତମାନେ ସାମାନ୍ୟତମ ପାର୍ଥକ୍ୟ ଭିତ୍ତିରେ ବିଭିନ୍ନ ଉପଭାଷା ଆଲୋଚନାରେ ବ୍ୟସ୍ତ । ଏତିକି କହିଲେ ପର୍ଯ୍ୟାପ୍ତ ହେବ ଯେ ଯେଉଁମାନେ ଜଙ୍ଗଲକୁ କେବଳ ଗଛ ବୋଲି ବିଚାରନ୍ତି ସେମାନେ ଯେତିକି ପରିମାଣରେ ଭ୍ରାନ୍ତ ଯେଉଁମାନେ ଗଛଟିଏ ଦେଖିଲେ ଜଙ୍ଗଲ ଭ୍ରମ କରନ୍ତି ସେମାନେ ମଧ୍ୟ ସେତିକି ପରିମାଣରେ ଭ୍ରାନ୍ତ ।



୩୯

# ଭାଷା, ସମାଜ ଓ ସଂସ୍କୃତି

## ଦେବୀପ୍ରସନ୍ନ ପଟ୍ଟନାୟକ

ଭାଷା ଓ ସଂସ୍କୃତି ଉଭୟର ପ୍ରକୃତି ଓ ପ୍ରୟୋଗ ବିଷୟରେ ପଣ୍ଡିତମାନେ ବହୁଦିନୁ ବିଚାର ମନ୍ଥନ କରୁଛନ୍ତି । କିନ୍ତୁ ଭାଷା କିମ୍ବା ସଂସ୍କୃତି କାହାରି ଏକ ସର୍ବମାନ୍ୟ ସଂଜ୍ଞା ଏ ପର୍ଯ୍ୟନ୍ତ ସୁଦ୍ଧା ସ୍ଥିର ହୋଇ ପାରିନାହିଁ । ଭାଷା ଓ ସଂସ୍କୃତି ପରସ୍ପର ସହିତ ଘନିଷ୍ଠ ଭାବରେ ସଂବଦ୍ଧ । ଯଦି ବ୍ୟାପକ ଦୃଷ୍ଟିରୁ ପଶୁ ଜଗତଠାରୁ ମଣିଷ ସମାଜରେ ପାର୍ଥକ୍ୟ ଦେଖାଯାଉଥିବା ମାନବ ସମାଜର ସାର୍ବଜନୀନ ବିଭବବିଶେଷକୁ ସଂସ୍କୃତି ରୂପେ ଗ୍ରହଣ କରାଯାଏ, ତେବେ ଭାଷା ବ୍ୟତୀତ ଏଇ ସଂସ୍କୃତିର କଳ୍ପନା କରିବା ଅସମ୍ଭବ । ପଶୁବ୍ୟବହାର ବିଶେଷଜ୍ଞମାନେ ମତ ପ୍ରକାଶ କରିଛନ୍ତି ଯେ, କୌଣସି ପଶୁକୁ ମାନବସୁଲଭ ଦକ୍ଷତା ସ୍ତର ପର୍ଯ୍ୟନ୍ତ କେତେ କୌଶଳ ଶିଖାଇବା ହୁଏତ ସମ୍ଭବ । କିନ୍ତୁ ସେଇ ପଶୁ ତା'ର ପିଲାମାନଙ୍କୁ ଏଇ ଦକ୍ଷତା ଶିଖାଇ ପାରିବ ନାହିଁ । ପିଲାମାନେ ପୁଣି ମୂଳରୁ ଆରମ୍ଭ କରି ଏହି ସମସ୍ତ କୌଶଳ ଶିଖିବେ । ମଣିଷ ସମାଜରେ ଜ୍ଞାନ ଭଣ୍ଡାରର ଚାବି ପରମ୍ପରା କ୍ରମେ ଗୋଟିଏ ପୀଢ଼ିରୁ ଅନ୍ୟ ପୀଢ଼ିକୁ ଯେ ହସ୍ତାନ୍ତରିତ କରାଯାଇ ପାରୁଚି, ତାହା ଯେ କେବଳ ଭାଷା ଯୋଗୁ ସମ୍ଭବ ହୋଇଚି ଏକଥା ଅସ୍ୱୀକାର କରାଯାଇପାରିବ ନାହିଁ ।

ଭାଷା ଓ ସଂସ୍କୃତି ଉଭୟ ବିଷୟରେ ଲୋକ ମନରେ ଅନେକ ଭୁଲ୍ ଧାରଣା ରହିଚି । ଅନେକଙ୍କର ଧାରଣା ଯେ ଯେଉଁ କଥିତ ଭାବ ବିନିମୟ ମାଧମର-ଲିପି ନାହିଁ ତାହା ଭାଷା ନୁହେଁ, ବିଭାଷା ବା ଉପଭାଷା । ପୁଣି କେତେକଙ୍କ ଧାରଣା ଯେ, କଥିତ ଭାଷା ଓ ଲିଖିତ ଭାଷା ଦୁଇଟି ସ୍ୱତନ୍ତ୍ର ଭାଷା । ଅନ୍ୟ କେତେକ ଭାବନ୍ତି ଯେ ଯଦି ଦୁଇଟି କଥିତ ଭାଷାଭାଷୀ ଲୋକେ ପରସ୍ପରକୁ ବୁଝନ୍ତି ତେବେ ସେ ଦୁଇଟି ଗୋଟିଏ ଭାଷାର ଉପଭାଷା; କିନ୍ତୁ ଯଦି ସେମାନେ ପରସ୍ପରକୁ ନ ବୁଝନ୍ତି ତେବେ ସେମାନେ ଦୁଇଟି ସ୍ୱତନ୍ତ୍ର ଭାଷା । ସଓରା ଭାଷା ବ୍ୟାକରଣ ଆଲୋଚନା କରିଥିବା ଜଣେ ପାଶ୍ଚାତ୍ୟ ପଣ୍ଡିତଙ୍କ ମତରେ, ସେହି ଭାଷାରେ ମାତ୍ର ୭୦୦ଟି ଶବ୍ଦ ଅଛି; ତେଣୁ ତାହା ସମ୍ପୂର୍ଣ୍ଣ ଭାଷା ପଦବାଚ୍ୟ ନୁହେଁ । ଭାଷା ବିଷୟରେ ଯେପରି ସଂସ୍କୃତି ବିଷୟରେ ମଧ ସେହିପରି ନାନା ଭ୍ରାନ୍ତ ଧାରଣା ଲୋକ ମନରେ ରହିଛି । ଅନେକଙ୍କର ଧାରଣା ଯେ ସଂସ୍କୃତି ହେଉଛି ଏକ ଦୁର୍ମୂଲ୍ୟ ଓ ଦୁଷ୍ପ୍ରାପ୍ୟ ବସ୍ତୁ । ଯେଉଁ

ଭାଗ୍ୟବାନ ବ୍ୟକ୍ତି ଏହାର ଅଧିକାରୀ ହୁଅନ୍ତି ସେମାନେ ସମାଜରେ ସମ୍ମାନ, ଅର୍ଥ ଓ ପ୍ରତିପତ୍ତି ଏ ସବୁର ଅଧିକାରୀ ହୁଅନ୍ତି । ଏହି ମତକୁ ଧରି ଆଉ ଟିକିଏ ଆଗେଇଲେ ଦେଖାଯିବ ଯେ ସଂସ୍କୃତି ସର୍ବସାଧାରଣ ଅଧିଗମ୍ୟ ନୁହେଁ । ଏହା ସମାଜରେ ପ୍ରତିପତ୍ତିଶାଳୀ ଏକ କ୍ଷୁଦ୍ର ପରିସରର ଏକଚାଟିଆ ସମ୍ପତ୍ତି । ତେଣୁ ସମାଜରେ ଅବହେଳିତ ବା ବର୍ଣ୍ଣାଶ୍ରମ ସମାଜ ବହିର୍ଭୂତ ଲୋକଙ୍କର ଯେ ସଂସ୍କୃତି ଅଛି ଏକଥା ସ୍ୱୀକାର କରିବାକୁ ମଧ୍ୟ ଅନେକ କୁଣ୍ଠା ପ୍ରକାଶ କରନ୍ତି ।

ଭାଷା ଓ ସଂସ୍କୃତି ମଧ୍ୟରେ ଅନ୍ତରଙ୍ଗତାର ଏକ ମୂଳ କାରଣ ହେଉଛି ଅର୍ଥ ବିଷୟରେ ଉଭୟର ଆଗ୍ରହ । ଭାଷାର ଯେପରି ସଂସ୍କୃତିର ମଧ୍ୟ ସେପରି ବହିରଙ୍ଗ ରୂପ ଓ ଅନ୍ତର୍ନିହିତ ଅର୍ଥ ଅର୍ଦ୍ଧ ନାରୀଶ୍ୱର ପରି ସମ୍ପର୍କବଦ୍ଧ । ତେବେ ସଂସ୍କୃତି ବିଚାରରେ ଭାଷାର ସ୍ୱତନ୍ତ୍ର ସ୍ଥାନ ବିଚାରି ଦେଖିବାର ଅଛି । ଭାଷା ସଂସ୍କୃତିର ଅଙ୍ଗ, ପୁଣି ସଂସ୍କୃତିର ବାହକ । ସଂସ୍କୃତିର ବିଭିନ୍ନ ବିଭବ ପରି ଭାଷା ମଧ୍ୟ ପରମ୍ପରାରେ ଗୋଟିଏ ପୁରୁଷରୁ ଅନ୍ୟ ପୁରୁଷକୁ ଆସେ । ପୁଣି ସଂସ୍କୃତିର ବିଭିନ୍ନ ବିଭାବ ଭାଷା ମାଧ୍ୟମରେ ହିଁ ଗୋଟିଏ ପୁରୁଷରୁ ଅନ୍ୟ ପୁରୁଷକୁ ଆସେ । ଏଇ ଦୃଷ୍ଟିରୁ ବିଚାରିଲେ ଉଭୟ ନୃତତ୍ତ୍ୱ କିମ୍ବା ସମାଜତତ୍ତ୍ୱ ଓ ସଞ୍ଚାର ବିଜ୍ଞାନ ସହିତ ଭାଷାର ଏକକାଳୀନ ସମ୍ବନ୍ଧ । ଭାଷା ଓ ସଂସ୍କୃତିର ସମ୍ବନ୍ଧ ବିଚାରରେ ଅନ୍ୟ ଏକ ସମାନ୍ତରତା ଦ୍ରଷ୍ଟବ୍ୟ । ଯେପରି ମାନବ ସଂସ୍କୃତି, ବିଶ୍ୱ ସଂସ୍କୃତି, ଭାରତୀୟ ସଂସ୍କୃତି, ଓଡ଼ିଆ ସଂସ୍କୃତି ଓ ଆଦିବାସୀ ସଂସ୍କୃତି ପ୍ରସଙ୍ଗରେ 'ସଂସ୍କୃତି' ଶବ୍ଦର ପ୍ରୟୋଗ ସମ୍ଭବ, ସେହିପରି ପୃଥିବୀର ଭାଷା, ଭାରତୀୟ ଭାଷା, ଓଡ଼ିଆ ଭାଷା, ଦେଶିଆ ବା ସମ୍ବଲପୁରୀ ଭାଷା ପୁଣି ଆଦିବାସୀ ଭାଷା ପ୍ରସଙ୍ଗରେ 'ଭାଷା' ଶବ୍ଦର ମଧ୍ୟ ପ୍ରୟୋଗ ସମ୍ଭବ । ତେଣୁ ସଂସ୍କୃତି ଓ ଭାଷା କିମ୍ବା ସଂସ୍କୃତିରେ ଭାଷା ଯେକୌଣସି ବିଚାର ପ୍ରସଙ୍ଗରେ ଉଭୟର ଅନ୍ତରଙ୍ଗ ସମ୍ବନ୍ଧକୁ ସବୁବେଳେ ଆଖି ଆଗରେ ରଖିବା ପ୍ରୟୋଜନ ।

ସମାଜବିଜ୍ଞାନର ଛାତ୍ର ଭାଷାଜ୍ଞାନ ବ୍ୟତୀତ କୌଣସି ଏକ ସାମାଜିକ ଗୋଷ୍ଠୀର ବର୍ଣ୍ଣନାତ୍ମକ ବିବରଣ ଲେଖିବାକୁ ସ୍ପର୍ଦ୍ଧା କରିବା ଅସମ୍ଭବ । ପୁଣି କୋରାପୁଟର ବା ବସ୍ତର ଅଞ୍ଚଳର କୌଣସି ଆଦିବାସୀ ଅଞ୍ଚଳକୁ ଅଧ୍ୟୟନ କରିବା ପାଇଁ ଆଗ୍ରହୀ କୌଣସି ନୃତତ୍ତ୍ୱବିଦ୍ ପାଖରେ ଭାଷାଜ୍ଞାନ ବ୍ୟତୀତ ମାନ୍ୟତା ପ୍ରାପ୍ତ କାମ କରିବା ଅସମ୍ଭବ କହିଲେ ଚଳେ । ଅପର ଲୋକଙ୍କ ଲେଖା ଓ ବିଚାର ଉପରେ ନିର୍ଭର କରି ଯେଉଁ କାମ କରାଯାଏ, ତାହାର ମୌଳିକ ମୂଲ୍ୟ ତ ନାହିଁ, କୌଣସି ପ୍ରକାର ମୂଲ୍ୟ ଅଛି କି ନାହିଁ ସନ୍ଦେହ । ଯେଉଁ ଲୋକ ଚୀନ କିମ୍ବା ଭାରତୀୟ ସମାଜ ବିଷୟରେ ଗବେଷଣା କରିବାରେ ଆଗ୍ରହୀ, ତାଙ୍କ ପକ୍ଷରେ ଚୀନ ଓ ଭାରତର ପ୍ରାଚୀନ ତଥା ଆଧୁନିକ ଭାଷା ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ କରିବା ଆବଶ୍ୟକ । ସାମାଜିକ ଇତିହାସ ଗବେଷଣା କରୁଥିବା ପ୍ରତ୍ୟେକ ଜାଣନ୍ତି ଯେ ସମୟ କ୍ରମେ ପ୍ରତି ସମାଜରେ ଚଳଣିରେ ପରିବର୍ତ୍ତନ ଘଟେ । ଏହି ପରିବର୍ତ୍ତନକୁ ପ୍ରତ୍ୟକ୍ଷ ଭାବରେ ହୁଏତ ପ୍ରାଚୀନ କାଳ ସମ୍ବନ୍ଧରେ ଲିଖିତ ବିବରଣୀରୁ ଅଧ୍ୟୟନ କରାଯାଇପାରେ କିମ୍ବା ଏଇ ଚଳଣି

ଅନୁଭବ କରିଥିବା ପ୍ରାଚୀନ ଲୋକଙ୍କ ମୁହଁରୁ ସଂଗୃହୀତ ବିବରଣୀରୁ ଅଧ୍ୟୟନ କରାଯାଇପାରେ । ଗୋଟିଏ ଅପରର ପରିପୂରକ । ଲିଖିତ ବା କଥିତ ଯେ କୌଣସି ସୂତ୍ରରୁ ଆହରଣ କରାଯାଉନା କାହିଁକି ଭାଷାଜ୍ଞାନ ବ୍ୟତୀତ ସାମାଜିକ ଚଳଣିର ବିଚାର ଅସମ୍ଭବ ।

ଅର୍ଥନୀତି, ପଦମର୍ଯ୍ୟାଦା, ଲିଙ୍ଗ, ବୟସ ଆଦି ଭେଦରେ ସାମାଜିକ ଗୋଷ୍ଠୀର ଅଧ୍ୟୟନ ପରି ଭାଷାଭିତ୍ତିକ ସାମାଜିକ ଗୋଷ୍ଠୀର ଅଧ୍ୟୟନ ଏକ ସଂଗତ ଓ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ପ୍ରକୃତ ପକ୍ଷରେ ସମାଜ ବୈଜ୍ଞାନିକ-ଭାଷା-ବିଜ୍ଞାନୀ ଭାଷାଭିତ୍ତିକ ସାମାଜିକ ଗୋଷ୍ଠୀ ଓ ଭାଷା ବ୍ୟତିରିକ୍ତ ଅନ୍ୟାନ୍ୟ ବିଚାର ଉପରେ ପ୍ରତିଷ୍ଠିତ ଗୋଷ୍ଠୀ ମଧ୍ୟରେ ଥିବା ଯୋଗସୂତ୍ର ଅନୁସନ୍ଧାନ କରିଥାନ୍ତି । ଏହା ଫଳରେ ଯେ କେବଳ ଭାଷା ଓ ସଂସ୍କୃତିର ପରସ୍ପର ନିର୍ଭରତା ସ୍ପଷ୍ଟ ହୁଏ, ତାହା ନୁହେଁ, ଯେଉଁସବୁ ସାମାଜିକ ସ୍ତରଭେଦ ଓ ସଞ୍ଚାର ପ୍ରଭାବକୁ ପ୍ରଭାବିତ କରୁଥିବା ଶକ୍ତି ସହଜରେ ଦୃଶ୍ୟ ହୁଏ ନାହିଁ ତାହା ମଧ୍ୟ ସ୍ପଷ୍ଟ ହୋଇ ଦିଶେ । ଉଦାହରଣ ସ୍ୱରୂପ ପଦମର୍ଯ୍ୟାଦା ହେତୁ ସ୍ୱତନ୍ତ୍ର ବିଶେଷ୍ୟ, ବିଶେଷଣ ଓ କ୍ରିୟାପଦ ବ୍ୟବହୃତ ହେଉଥିବା ଗୋଷ୍ଠୀ କଥା ବିଚାର କରାଯାଉ । ଜାପାନୀ ଭାଷାରେ ଏହାର ଉଦାହରଣ ଦେଖିବାକୁ ମିଳେ । ଭାରତରେ ମଧ୍ୟ ପୁରୁଣା ଗଡ଼ଜାତ ଅଞ୍ଚଳରେ ରଜା ଏବଂ ତାଙ୍କ ଭାଇ ବିରାଦରମାନଙ୍କ ସ୍ୱତନ୍ତ୍ର ମର୍ଯ୍ୟାଦା ଦୃଷ୍ଟିରୁ ଏପରି ସ୍ୱତନ୍ତ୍ର ଭାଷା ପ୍ରୟୋଗର ଉଦାହରଣ ବିରଳ ନୁହେଁ । ମହୀଶୂରରେ ମହାରାଜା ଓ ଅର୍ଥ (ଯେଉଁ ଗୋଷ୍ଠୀ ସହ ମହାରାଜାଙ୍କର ବୈବାହିକ ସମ୍ବନ୍ଧ ସମ୍ଭବ) ପରିବାରକୁ ସାଧାରଣ ଲୋକ "ବୁର୍ଜ" କହି ସମ୍ବୋଧନ କରିଥାନ୍ତି । ଓଡ଼ିଶାରେ ରଜାଘରମାନଙ୍କରେ ଦାନ୍ତ ଘସିବାକୁ ଦାନ୍ତୁଆଣି କରିବା, କାଠିଲାଗି ହେବା, ଗାଧୋଇବାକୁ ମାଜଣା ହେବା, ଖାଇବାକୁ ମଣୋହିକି ବିଜେ ହେବା, ଠା'ରେ ବସିବା, ଶୋଇବାକୁ ପହୁଡ଼ିବା, ବସିବାକୁ ବିଜେହେବା ଆଦି ପରି ପ୍ରୟୋଗକୁ ଏ ସମ୍ବନ୍ଧରେ ବିଚାର କରାଯାଇପାରେ । ଓଡ଼ିଶାରେ ପୁଣି ରଜା ଓ ଠାକୁର ଉଭୟଙ୍କ ପ୍ରତି ଏ ପ୍ରକାର ବ୍ୟବହାର ପ୍ରଯୋଜ୍ୟ । ଓଡ଼ିଆ ସମାଜରେ ରାଜା ଓ ଠାକୁରଙ୍କ ସ୍ଥାନ ଗବେଷଣାରେ ଏହି ଭାଷା ପ୍ରୟୋଗର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି ।

ଭାଷା ବ୍ୟବହାରରୁ ସାମାଜିକ ମର୍ଯ୍ୟାଦା କିପରି ବାରି ହୋଇ ଦିଶେ ଏ ସମ୍ବନ୍ଧରେ ଶ୍ରୀ ସତ୍ୟସାଇ ବାବା ଗୋଟିଏ ସୁନ୍ଦର ଉଦାହରଣ ଦେଇଛନ୍ତି- "ଥରେ ଜଣେ ମହାରାଜା ଶୀକାର କରିବାକୁ ଯାଇ ବାଟବଣା ହୋଇ ଆପଣା ଲୋକଙ୍କ ଠାରୁ ଅଲଗା ହୋଇଗଲେ । ସେ ଜଙ୍ଗଲିଆ ରାସ୍ତା କଡ଼ରେ ଗୋଟିଏ ଅନ୍ଧକୁ ବସିଥିବାର ଦେଖିଲେ । ସେ ତାକୁ କହିଲେ, 'ହେ ମୋର ପ୍ରିୟ ପ୍ରଜା ! ଏ ରାସ୍ତାରେ କାହାକୁ ଯିବାର ତୁମେ ଦେଖିଛ କି ?' ଅନ୍ଧ କହିଲା 'ନାହିଁ', କିଛି ସମୟ ପରେ ମନ୍ତ୍ରୀ ସେଇ ବାଟଦେଇ ଆସିଲେ ପଚାରିଲେ, 'ହେ ଭାଇ, ଏ ରାସ୍ତାରେ କାହାକୁ ଯିବାର ଦେଖିଚ ?' ଅନ୍ଧ ପୂର୍ବପରି ନାହିଁକଲା । କିଛି ସମୟ ପରେ ସେନାପତି ଆସି ଅନ୍ଧକୁ ପଚାରିଲେ 'ହେ ବୋକା ଅନ୍ଧ ! ଏହି ବାଟେ କାହାକୁ ଯିବାର ଦେଖିଚୁ ?' ପରେ ପରେ ଜଣେ ସୈନ୍ୟ ଆସି ତାକୁ ପାଟିକରି ପଚାରିଲା, 'ଆବେ ଶଳା

ଅନ୍ଧ, ତୋ ପୋଚରା ପାଟି ମେଲେଇ ମତେ କହିଲୁ ଏ ବାଟେ କାହାକୁ ଯିବାର ତୁ ଦେଖିଚୁ କି ନାଇଁ ?' ସଭାଶେଷରେ ଯେତେବେଳେ ରାଜଗୁରୁ ଆସି ପଚାରିଲେ, 'ହଇଏ ଭାଇ, ଏ ରାସ୍ତାରେ କିଏ ଯାଇଛନ୍ତି କି ନାହିଁ ଅନୁଗ୍ରହ କରି କହ ?' ସେତେବେଳେ ଅନ୍ଧ ଉତ୍ତରଦେଲା ଯେ "ଜଣେ ରାଜା, ଜଣେ ମନ୍ତ୍ରୀ, ଜଣେ ସେନାପତି ଓ ଜଣେ ସୈନ୍ୟ ତାଙ୍କ ଆଗରୁ ସେଇ ବାଟ ଦେଇ ଯାଇଛନ୍ତି ଓ ତାକୁ ସେଇ ଏକ ପ୍ରଶ୍ନ ପଚାରିଛନ୍ତି । ସେମାନଙ୍କର କଥା କହିବା ଢଙ୍ଗରୁ ସେ ତାଙ୍କର ପଦମର୍ଯ୍ୟାଦା ଓ ଚାରିତ୍ରିକ ବୈଶିଷ୍ଟ୍ୟ ଜାଣିପାରିଛି ।"

ଶବ୍ଦ ପ୍ରୟୋଗରୁ ଅନେକ ସମୟରେ ଜାତିଗତ ବୈଶିଷ୍ଟ୍ୟ ଜଣାପଡ଼େ । ତାମିଲ ଭାଷାରେ ସୋରୁ : ସଦାମ୍ 'ଖାଇବା'ରୁ ଅବ୍ରାହ୍ମଣ, ବ୍ରାହ୍ମଣ, ଭେଦ ଜଣାପଡ଼େ । ଓଡ଼ିଆରେ ସାଗ, ସନ୍ତୁଳାକୁ ଅନେକ ବ୍ରାହ୍ମଣ ଶାସନରେ 'ଶ୍ୟାଗ', ଶ୍ୟନ୍ତୋଳା ରୂପେ ଉଚ୍ଚାରଣ କରାଯାଇଥାଏ । ପୁଣି ଚାଉଳ, ନେଉଳ, ଦେଉଳ ପରି ଶବ୍ଦରେ 'ର' ବା 'ଡ଼'କୁ 'ଳ' ସ୍ଥାନରେ ବ୍ୟବହାର କରିବାକୁ ମଧ୍ୟ ସମାଜରେ ଶିକ୍ଷା ଓ ମର୍ଯ୍ୟାଦାର ନ୍ୟୂନତା ପ୍ରକାଶ ପାଇଥାଏ । ଭୌଗୋଳିକ ପାର୍ଥକ୍ୟ ଦୃଷ୍ଟିରୁ ମଧ୍ୟ ବିଭିନ୍ନ ସାମାଜିକ ଗୋଷ୍ଠୀର କଳ୍ପନା କରାଯାଇପାରେ । 'ବର୍ତ୍ତିତେ : ବରୁତେ' କ୍ରିୟାପଦର ବ୍ୟବହାର ଧାରଓ୍ୱାଡ଼ ଓ ମହୀଶୂର, କନ୍ନଡ଼ ମଧ୍ୟରେ ପାର୍ଥକ୍ୟ ସୂଚାଇଲା ପରି 'ଯାଇଛନ୍ତି' ଓ 'ଯାଇଚନି', କଟକ ଓ ବାରିପଦାର ଓଡ଼ିଆ ମଧ୍ୟରେ ପାର୍ଥକ୍ୟ ସୂଚିତ କରେ । ଭୌଗୋଳିକ ଭିତ୍ତିରେ ଗୋଷ୍ଠୀଗଠନ ସମ୍ବନ୍ଧରେ ଓଡ଼ିଆ ପ୍ରବାଦ 'ମ ଗଡ଼ଜାତ ବ ଓଡ଼ିଶା, ପୋଡ଼ିଯାଉ ତୋ ବଉଦ ଭାଷା' ଏ ସମ୍ବନ୍ଧରେ ବିଚାର୍ଯ୍ୟ । 'ଗୋଡ଼' 'ଗୁଡ଼'ପରି ଶବ୍ଦରେ ଧ୍ୱନିଗତ ପରିବର୍ତ୍ତନ କିମ୍ବା ଅଣ୍ଡା, ଗରା, ଘଷି, ଛେନା ପରି ଏକା ଅର୍ଥ ପାଇଁ ବିଭିନ୍ନ ଶବ୍ଦର ପ୍ରୟୋଗ, କିମ୍ବା 'କରୁଚି : କରସେ' ପରି କ୍ରିୟା ପଦରେ ବିଭିନ୍ନତା ଆଦିକୁ ଧରି ଏଇ ଭୌଗୋଳିକ ଭିନ୍ନତା ଦୃଷ୍ଟିରୁ ସାମାଜିକ ଗୋଷ୍ଠୀର ବିଚାର କରାଯାଇପାରେ । ଭାଷାକୁ ଧରି ସାମାଜିକ ଗୋଷ୍ଠୀଗଠନ ବିଚାରର ଅନ୍ୟ ଏକ ଦିଗ ହେଉଛି ଲିଙ୍ଗଭେଦ ପ୍ରୟୋଗ, ଯେଉଁଠି ଶବ୍ଦର ଲିଙ୍ଗଭେଦ ସୂଚାଇବା ଏକାନ୍ତ ପ୍ରୟୋଜନ । ଋଷ୍ ଭାଷାରେ ସ୍ତ୍ରୀ କିମ୍ବା ପୁରୁଷ ନ ସୂଚାଇ ମୂଲିଆ ବା ମଜୁରିଆ ପରି ଶବ୍ଦ କରିବା ଅସମ୍ଭବ । ଭାରତବର୍ଷରେ ଓଡ଼ିଆ ବଙ୍ଗାଳୀ ଓ ଆସାମୀ ପରି ପୂର୍ବାଞ୍ଚଳ ମାନଙ୍କରେ ବ୍ୟାକରଣିକ ଲିଙ୍ଗଭେଦ ଅନେକ କାଳରୁ ଲୋପପାଇଛି । କିନ୍ତୁ ହିନ୍ଦୀ, ମରାଠୀ ପରି ଭାଷାମାନଙ୍କରେ ବ୍ୟାକରଣିକ ଲିଙ୍ଗଭେଦ ଓ ତହିଁ ସହିତ କର୍ତ୍ତା, କର୍ମ ଓ କ୍ରିୟାର ଲିଙ୍ଗଗତ ସମନ୍ୱୟ ଏବେ ବି ଚାଲୁଚି । ଅନେକ ଏହାକୁ ହିନ୍ଦୀ ଶିକ୍ଷାର ଅନ୍ୟତମ କଠିନତା ରୂପେ ଦର୍ଶାଇଥାନ୍ତି । ତାହାର ବିଚାରସ୍ଥଳ ଅନ୍ୟତ୍ର । ଏଠି ଏତିକି କହିଲେ ଯଥେଷ୍ଟ ହେବ ଯେ ଛୋଟ ଛୁଆରୁ ଆରମ୍ଭ କରି ସ୍କୁଲ ଶିକ୍ଷା ପର୍ଯ୍ୟନ୍ତ ବିଭିନ୍ନ ବୟସର ଶବ୍ଦଗଣନା ଓ ଶିକ୍ଷିତ ଅଶିକ୍ଷିତଙ୍କର ଭାଷା ସମ୍ପଦ ଅଧ୍ୟୟନରୁ ବିଭିନ୍ନ ଗୋଷ୍ଠୀର ବିଚାର କରାଯାଇପାରେ । ଏହି ବିଚାର ଆଞ୍ଚଳିକତା, ପଦମର୍ଯ୍ୟାଦା ଆଦି ଭେଦରେ ଭାଷାଭିତ୍ତିକ, ଗୋଷ୍ଠୀ ସ୍ତରଭେଦ ଓ ଏହାକୁ ଧରି ଅର୍ଥନୀତିକ ଓ ଅନ୍ୟାନ୍ୟ ସାମାଜିକ ଭେଦର ବିଚାରରେ ସହାୟକ ।

ବୈଚିତ୍ର୍ୟ ଓ ବୈଭିନ୍ନ୍ୟ, ସମନ୍ୱୟ ଓ ଐକ୍ୟ ମଣିଷ ସଂସ୍କୃତିର ଏକ ମୂଳତତ୍ତ୍ୱ । ମଣିଷ ସାଧାରଣ ଚାରିପ୍ରକାର ସମୟ ସୀମା ମଧ୍ୟରେ ଆପଣା ସାମାଜିକ ସାଂସ୍କୃତିକ ଜୀବନର ବିକାଶ ଘଟାଇଥାଏ । ପ୍ରଥମତଃ ହେଉଛି ଜୀବତାତ୍ତ୍ୱିକ ସମୟ (biological time), ଯାହା ମଣିଷର ଦିନଚର୍ଯ୍ୟା ଓ ଦୈନନ୍ଦିନ ଘଟଣାସ୍ପନ୍ଦ ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ଦ୍ୱିତୀୟରେ ହେଉଛି ସାମାଜିକ ସମୟ (social time), ଯାହା ସାମାଜିକ ପଦମର୍ଯ୍ୟାଦା, ଚଳଣି ଓ ତା' ଉପରେ ନିର୍ଭରଶୀଳ ପରିବର୍ତ୍ତନର ଆବଶ୍ୟକତା, ଅନାବଶ୍ୟକତା, ଖରତା ବା ମନ୍ଥରତା ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ତୃତୀୟରେ ହେଉଛି ଐତିହାସିକ ସମୟ (historical time), ଏହା ସମସ୍ତ ବିଶ୍ଳିଷ୍ଟତାକୁ ଏକ ସୂତ୍ରରେ ଗୁନ୍ଥି ସେମାନଙ୍କ ମଧ୍ୟରେ ସଂଶ୍ଳେଷ ଓ ପ୍ରବାହମାନତାର ବୋଧ ସୃଷ୍ଟି କରି ତା' ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ଚତୁର୍ଥରେ ଭୂବୈଜ୍ଞାନିକ ସମୟ (geological time) । ଏହା ପୃଥିବୀର ମୌଳିକ ଉପାଦାନର କ୍ଷୟ ଓ ତା'ର ପରିମାପ ମଧ୍ୟରେ ଆପଣାକୁ ପ୍ରକାଶ କରିଥାଏ । ମଣିଷର ପ୍ରତ୍ୟେକ ମୁହୂର୍ତ୍ତ ଏଇ ଚାରି ସମୟ ଦ୍ୱାରା ଆକ୍ରାନ୍ତ । ଏକାଧାରାରେ ପରମ୍ପରା ଓ ପରିବର୍ତ୍ତନ ବୋଧ ଦେଇ ଏଇ ବିଭିନ୍ନ ସମୟ ଚେତନା ମଣିଷକୁ ଓ ତା'ର ସଂସ୍କୃତିକୁ ବିଚିତ୍ର ରଙ୍ଗରେ ରଞ୍ଜିତ କରିଥାଏ ସମୟଚେତନା ପରି ସ୍ଥାନଚେତନାର ବିଭିନ୍ନ ସ୍ତର ମଧ୍ୟ ମଣିଷ ସଂସ୍କୃତିର ବୈଶିଷ୍ଟ୍ୟ । ସୀମିତ ସ୍ଥାନ ମଧ୍ୟରେ ପଶୁଗୋଷ୍ଠୀର ଯାତାୟତ । ବେବୁନ ଗୋଷ୍ଠୀର ବ୍ୟବହାର ଅଧ୍ୟୟନ କରି ବିଶେଷଜ୍ଞମାନେ ମତ ଦେଇଛନ୍ତି ଯେ, ଯଦି କୌଣସି ଗୋଷ୍ଠୀକୁ ତା'ର ବାସସ୍ଥାନରୁ ତଡ଼ି ନିଆଯାଏତେବେ ସେମାନେ ଅପାଣ ଜଣା ଅଞ୍ଚଳର ସୀମାକୁ ଆସି ପୁଣି ତାଙ୍କ ବାସସ୍ଥାନକୁ ଫେରିଆସିବେ । ପୁଣି ପଣ୍ଡିତମାନଙ୍କ ମତରେ ମଣିଷ ବ୍ୟତିରିକ୍ତ 'ପ୍ରାଇମେଟ୍' ବା ନରବାନର ଗୋଷ୍ଠୀର ଚଳାଚଳ ସୀମା ହେଉଛି ୨୪ବର୍ଗ କିଲୋମିଟର । ମଣିଷ ସମାଜ ବ୍ୟବସ୍ଥା ବିକାଶର ଆଦିକାଳରୁ ଶୀକାର ଓ ଆହରଣକାରୀ ମଣିଷ ମଧ୍ୟ ଶହ ଶହ ବର୍ଗ କିଲୋମିଟର ସହ ପରିଚିତ ଥିଲା । ପଶୁ ଓ ମଣିଷର ସମୟ ଓ ସୀମା ଭେଦରେ କେବଳ ପରିମାଣଗତ ନୁହେଁ, ଗୁଣଗତ ପ୍ରଭେଦ ରହିଛି । ପଶୁର ସହଜ ବୃତ୍ତି ଓ ମଣିଷର ଚେତନାଶୀଳତାର ପାର୍ଥକ୍ୟର ପ୍ରକାଶ ଏଇ ସମୟ ଓ ସ୍ଥାନ ବୋଧ ଭେଦରେ ହିଁ ଖୋଜିବାକୁ ହେବ ।

ଭାଷା ସଞ୍ଚାର କ୍ଷେତ୍ରରେ ମଧ୍ୟ ବ୍ୟକ୍ତିଗତ ଓ ସାମାଜିକ ବିଭିନ୍ନତା ହେଉଛି ନିୟମ । କୌଣସି ମଣିଷର କଥ୍ୟ ଭାଷା ଅପରର ଅବିକଳ ପ୍ରତିରୂପ ନୁହେଁ । ପୁଣି କୌଣସି ଲୋକ ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଓ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ସହିତ ଗୋଟିଏ ଭାଷାରେ କଥା କହିଲେ ସୁଦ୍ଧା ତହିଁରେ ରୂପଗତ ପାର୍ଥକ୍ୟ ଲକ୍ଷ୍ୟ କରିବାର କଥା । ଉଦାହରଣ ସ୍ୱରୂପ, ସେ ସାମାଜିକ ମର୍ଯ୍ୟାଦା ଦୃଷ୍ଟିରୁ ଉପରହାକିମ, ଚାକର, ବାପା କିମ୍ବା ପୁଅ ସହିତ କଥାବାର୍ତ୍ତା କଲାବେଳେ ଓ ସାଙ୍ଗଙ୍କ ସହିତ ଘରୋଇ କଥାବାର୍ତ୍ତାରେ ଭାଷାରୂପରେ ବିଭିନ୍ନତାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜଣେ ମଣିଷ ବିଭିନ୍ନ ସମୟରେ ବିଭିନ୍ନ ଭାଷାର ମଧ୍ୟ ପ୍ରୟୋଗ

କରିପାରେ । ଘରେ ମାତୃଭାଷାର ବ୍ୟବହାର, ବଜାରରେ ଭଙ୍ଗା ହିନ୍ଦୀ, ସ୍କୁଲରେ ଇଂରାଜୀ, ଗବେଷଣାରେ ଫରାସୀ ବା ଜର୍ମାନୀ, ପ୍ରାର୍ଥନାରେ ସଂସ୍କୃତ ବା ଆରବୀ ଓ ମନୋରଞ୍ଜନ ପାଇଁ ଉପନ୍ୟାସ ପଢ଼ାରେ ବଙ୍ଗଳା ଭାଷା ବ୍ୟବହାର କରୁଥିବା ଲୋକ ଆଧୁନିକ ସମାଜରେ ପ୍ରତୁଳ ।

ଭାଷା ପ୍ରୟୋଗ କ୍ଷେତ୍ରରେ ଏହି ବିଭିନ୍ନତାକୁ ଅନ୍ୟ ଏକଦିଗରୁ ବିଚାର କରାଯାଇପାରେ । ଜଣେ ଶିକ୍ଷିତ ତାମିଲ ଭାଷାଭାଷୀକୁ ଆଜି ଏକାଧାରାରେ ନିମ୍ନଲିଖିତ ସମସ୍ତ ପ୍ରକାଶଭଙ୍ଗୀର ସାମ୍ନା କରିବାକୁ ପଡ଼େ । 'ସେ ନିଜକୁ ମାରିଲା' ଅର୍ଥରେ 'ଆଡ଼ିଭୁବୋଣ୍ଡନନ୍' (ପ୍ରାଚୀନ ଲିଖିତ ତାମିଲ), 'ଆଡ଼ିଭୁକୋଣ୍ଡାନ୍' (ଆଧୁନିକ ଲିଖିତ ତାମିଲ), 'ଆଡ଼ିକୁକ୍କିଙ୍ଗାଁ' (ମାନ୍ୟ କଥ୍ୟ ତାମିଲ), 'ଆଡ଼ିଚୁଣ୍ଡାଁ' (କଥ୍ୟ ବ୍ରାହ୍ମଣ ତାମିଲ), 'ଆଡ଼ିଚୁକିନା' (ମାନ୍ଦ୍ରାଜ ଆଞ୍ଚଳିକ କଥ୍ୟ ତାମିଲ) ଆଦି । ଏହା ସାଙ୍ଗରେ ଶୈଳୀଗତ ପାର୍ଥକ୍ୟ ବୁଝିବା ପାଇଁ ଗୋଟିଏ ହିନ୍ଦୀ ବାକ୍ୟରେ ବିଭିନ୍ନ ରୂପରେ ଦେଖାଯାଉ ।

୧. ଉସନେ ସୀତାକେ ଲିୟେ ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଖରୀଦୀ
୨. ସୀତାକେ ଲିୟେ ଉସନେ ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଖରୀଦୀ
୩. ସୀତାକେ ଲିୟେ ପାଞ୍ଚ ରୁପୟେ ମେଁ ଉସନେ ତୀନ କିତାବେଁ ଖରୀଦୀ
୪. ସୀତାକେ ଲିୟେ ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଉସନେ ଖରୀଦୀ
୫. ସୀତାକେ ଲିୟେ ଉସନେ ତୀନ କିତାବେଁ ଖରୀଦୀ ପାଞ୍ଚ ରୁପୟେ ମେଁ
୬. ଉସନେ ତୀନ କିତାବେଁ ଖରୀଦୀ ପାଞ୍ଚ ରୁପୟେ ମେଁ ସୀତାକେ ଲିୟେ
୭. ଉସନେ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ ପାଞ୍ଚ ରୁପୟେ ମେଁ
୮. ତୀନ କିତାବେଁ ଖରୀଦୀ ଉସନେ ସୀତାକେ ଲିୟେ ପାଞ୍ଚ ରୁପୟେ ମେଁ
୯. ଉସନେ ସୀତାକେ ଲିୟେ ତୀନ କିତାବେଁ ଖରୀଦୀ ପାଞ୍ଚ ରୁପୟେ ମେଁ
୧୦. ଉସନେ ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ
୧୧. ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଖରୀଦୀ ଉସନେ ସୀତାକେ ଲିୟେ
୧୨. ପାଞ୍ଚ ରୁପୟେ ମେଁ ତୀନ କିତାବେଁ ଖରୀଦୀ ସୀତାକେ ଲିୟେ ଉସନେ

ଏହି ବାକ୍ୟଗୁଡ଼ିକରୁ କେତେକ ଶୈଳୀ ଦୃଷ୍ଟିରୁ ଗ୍ରାହ୍ୟ, ଅନ୍ୟ କେତେକ ବ୍ୟାକରଣସିଦ୍ଧ ହେଲେହେଁ ମାନ୍ୟ ହିନ୍ଦୀ ରଚନାରେ ବ୍ୟବହୃତ ହେବା ସନ୍ଦେହଜନକ । ପ୍ରସଙ୍ଗକ୍ରମେ ଏଠି ପୁଣି ବିଷୟାନୁସାରୀ ଭାଷାପ୍ରୟୋଗ ବିଚାରି ଦେଖିବାର ଅଛି । ସାହିତ୍ୟ ଭାଷା, ଓ ବିଜ୍ଞାନର ଭାଷା ମଧ୍ୟରେ ଯେ ପାର୍ଥକ୍ୟ ତାହାର ଯଥୋଚିତ ଅଧ୍ୟୟନ ନୋହିଥିଲେ ମଧ୍ୟ ଏହାକୁ ଉପେକ୍ଷା କରାଯାଇ ପାରିବ ନାହିଁ । ସମୟ, ସ୍ଥାନ, ପରିସ୍ଥିତି ଆଦି ଭେଦରେ ଭାଷା ପ୍ରୟୋଗର ଏଇ ବୈଚିତ୍ର୍ୟ ପ୍ରତି ମୁହୂର୍ତ୍ତରେ ମଣିଷର ସଙ୍ଗୀ । ତେବେ ଅଧିକାଂଶ ସମୟରେ ମଣିଷ ଏଥିପ୍ରତି ସଚେତନ ନୁହେଁ । ମଲିଏରଙ୍କ 'ବର୍ଜୁଆ ଜଣ୍ଟିଲମ'ର ନାୟକ ତା ଜୀବନର ୩୦ବର୍ଷ କାଳ ଗଦ୍ୟରେ କଥାବାର୍ତ୍ତା କରୁଥିବାର ସଚେତନତାରେ ଚମକି ପଡ଼ିଲା ପରି ସାଧାରଣ ମଣିଷ

ହୁଏତ ଭାଷାର ବିଭିନ୍ନତାର ବୋଧରେ ଚମକି ଉଠିବ । କିନ୍ତୁ ଏଇ ବିଭିନ୍ନତା ସତ୍ତ୍ୱେ ବ୍ୟକ୍ତିଗତ ସଞ୍ଚାରର ସମ୍ଭାବତା ଓ ବାସ୍ତବତାର ଅଧ୍ୟୟନ ଗବେଷକ ପ୍ରତି ଯେ ଏକ ଆହ୍ୱାନ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏ ପର୍ଯ୍ୟନ୍ତ ଭାଷା ଓ ସଂସ୍କୃତିର ବୈଚିତ୍ର୍ୟ ବିଷୟରେ ଆଲୋଚନା କରାଗଲା । ବର୍ତ୍ତମାନ ଐକ୍ୟ ବିଷୟରେ ସମ୍ୟକ୍ ଆଲୋଚନା ପ୍ରୟୋଜନ । ପୂର୍ବେ କୁହାଯାଇଛି ଯେ ସଂସ୍କୃତିର ବହୁବିଧ ପ୍ରକାଶ ସତ୍ତ୍ୱେ ଭାରତୀୟ ସଂସ୍କୃତି, ବିଶ୍ୱସଂସ୍କୃତି ପରି ଭାବନାସମ୍ଭବ । ତା ନୋହିଥିଲେ 'ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ', 'ଯତ୍ର ବିଶ୍ୱ ଭବତ୍ୟେକ ନୀଡ଼ଂ' କିମ୍ବା ବସୁଧୈବ କୁଟୁମ୍ବକଂ' ପରି ଚିନ୍ତା ସମ୍ଭବ ହୁଅନ୍ତା ନାହିଁ । ପୁଣି ଆଧୁନିକ କାଳରେ ଜାତି-ରାଜ୍ୟର ଜନ୍ମ ପଛରେ ଏଇ ସାଂସ୍କୃତିକ ଐକ୍ୟ ଭାବନା ଯେ ବହୁ ପରିମାଣରେ କାମ କରିଚି ସନ୍ଦେହ ନାହିଁ । ବିଶ୍ୱ ସରକାର ଗଠନ ଆନ୍ଦୋଳନ ପଛରେ ମାନବିକ ସଂସ୍କୃତି ଭାବନା ରହିଚି । ଭାଷା କ୍ଷେତ୍ରକୁ ଚାହିଁଲେ ଦେଖାଯିବ ଯେ ତିନିପୁରୁଷ ମଧ୍ୟରେ ଭାଷା ପ୍ରୟୋଗରେ ସ୍ୱାତନ୍ତ୍ର୍ୟ ଥିଲେ ମଧ୍ୟ ଜେଜେବାପାଙ୍କର ନାତି ଅଣନାତିଙ୍କ ସହ କଥାବାର୍ତ୍ତା କରିବାରେ କୌଣସି ଅସୁବିଧା ନାହିଁ । ସାରଳାଦାସଙ୍କ ଠାରୁ ଗୋପୀନାଥ ମହାନ୍ତିଙ୍କ ଯାଏ ଓଡ଼ିଆ ଭାଷାକୁ ପଢ଼ି ବୁଝିବା ଆଜିର ଓଡ଼ିଆ ପକ୍ଷରେ ଅସମ୍ଭବ ନୁହେଁ । ଭାଷାର ବିଭିନ୍ନ ସ୍ତର ମଧ୍ୟରେ ସାମ୍ୟ ଯେପରି ଭାଷା ମଧ୍ୟରେ ଐକ୍ୟ ସୃଷ୍ଟି କରେ, ଭାଷା ଭାଷା ମଧ୍ୟରେ ସାମ୍ୟ ସେହିପରି ଭାଷା ପରିବାର ପ୍ରତିଷ୍ଠାରେ ସାହାଯ୍ୟ କରେ । ସଂସ୍କୃତ, ଗ୍ରୀକ୍, ଲାଟିନ୍, ସ୍ଲାଭିକ୍, କେଲ୍‌ଟିକ୍, ଆଦି ଭାଷା ମଧ୍ୟରେ ଥିବା ସାମ୍ୟ ଭିତ୍ତିରେ ୟୁରୋପୀୟ ଭାଷା ପରିବାର ଗଢ଼ିଉଠିଲାପରି ବିଭିନ୍ନ ଭାଷା ମଧ୍ୟରେ କୁଟୁମ୍ବିତା ଦୃଷ୍ଟିରୁ ଦ୍ରାବିଡ଼ ଭାଷା ପରିବାର, ଅଷ୍ଟ୍ରୋଏସିଆଟିକ୍ ବା ମୁଣ୍ଡା ଭାଷା ପରିବାର, ତିବ୍‌ବତୋଚାଇନିଜ୍ ଭାଷା ପରିବାର ଆଦି ବିଭିନ୍ନ ଭାଷା ପରିବାର ମଧ୍ୟ ଗଢ଼ିଉଠିଛି । ଭାଷା ବିକାଶର କ୍ରମିକତା ଓ ବିଭିନ୍ନ ସ୍ତରୀୟ ଭାଷା ମଧ୍ୟରେ ଯୋଗ ଏବଂ ଅନ୍ୟଦିଗରେ ସଞ୍ଚାର ଘନିଷ୍ଠତା ହେତୁ ଭାଷା ଭାଷା ମଧ୍ୟରେ କୁଟୁମ୍ବିତା ସ୍ଥାପନ ଏଇ ଉଭୟ ବିଭିନ୍ନ ଭାଷା ମଧ୍ୟରେ ଐକ୍ୟ ସୃଷ୍ଟି ପାଇଁ ଦାୟୀ ।

ଭାରତବର୍ଷରେ ୧୯୭୧ ଜନସୁମାରୀ ରିପୋର୍ଟ ଅନୁସାରେ ୧୬୫୨ ମାତୃଭାଷା ଚାରୋଟି ଭାଷା ପରିବାର ପ୍ରତିନିଧି । ଏଇ ବିଭିନ୍ନତା ସତ୍ତ୍ୱେ ଗତ ୩୦୦୦ ବର୍ଷର ସାଂସ୍କୃତିକ ବିନିମୟ ଏପରି ଏକ ପରିବେଶ ସୃଷ୍ଟି କରିଛି ଯେ ପଣ୍ଡିତମାନେ ଭାରତକୁ ଗୋଟିଏ ଭାଷା ଅଞ୍ଚଳ ରୂପେ ଗ୍ରହଣ କରିଛନ୍ତି । ଭାରତୀୟ ଆର୍ଯ୍ୟ ଓ ଦ୍ରାବିଡ ଭାଷା ପରିବାରର ପାରସ୍ପରିକ ସଂପର୍କ ଆଲୋଚନା କରି ଋଷ୍ ଭାଷା ବୈଜ୍ଞାନିକ ଆନ୍ଦୋନୋଭ ମତ ଦେଇଛନ୍ତି ଯେ, ଯଦି ଗୋଟିଏ ଆଧୁନିକ ଭାରତୀୟ ଆର୍ଯ୍ୟ ଓ ଗୋଟିଏ ଆଧୁନିକ ଦ୍ରାବିଡ ଭାଷାକୁ ତୁଳନା କରାଯାଏ ତେବେ ଦେଖାଯିବ ଯେ ଏମାନେ ଆପଣା ଆପଣା ପ୍ରତ୍ନଭାଷା ଅପେକ୍ଷା ପରସ୍ପରର ଅଧିକ ନିକଟବର୍ତ୍ତୀ । ଆନ୍ଦୋନୋଭ ପୁଣି କହିଛନ୍ତି ଯେ, ଯଦି ଭାଷା ବିକାଶକୁ ତାର ସ୍ୱାଭାବିକ ଗତିପଥରେ ଯିବାକୁ ଦିଆଯାଏ ତେବେ ଆଉ ୫୦-

୧୦୦ ବର୍ଷ ପରେ ତୁଳନାତ୍ମକ ଭାଷାବିଜ୍ଞାନୀମାନଙ୍କୁ ଏକ ତୃତୀୟ ପ୍ରତ୍ନ-ଭାଷା ପରିବାର ପୁର୍ନଗଠନ କରିବାକୁ ହେବ । ଏମେନୋ ମୁର୍ଦ୍ଧଣ୍ୟ ବର୍ଣ୍ଣର ବିସ୍ତାର, ଦ୍ୱିବଚନ ଲୋପ, ମଧ୍ୟସର୍ଗ (infix) ଲୋପ ବିଭିନ୍ନ ଭାଷା ମଧ୍ୟରେ ଶବ୍ଦର ଆହରଣ ଓ ବାକ୍ୟରୀତିର ସାର୍ବଜନୀନତା ଆଦି ଭିତ୍ତିରେ ଭାରତକୁ ଏକ ଭାଷାଞ୍ଚଳ ବୋଲି ଯାହା କହିଥିଲେ, ଆନ୍ଦାନଭ ତାହାର ସମର୍ଥନ ଓ ପୁଷ୍ଟି କରିଛନ୍ତି ।

ସାଂସ୍କୃତିକ ଐକ୍ୟ ବିଚାର ପ୍ରସଂଗରେ ମଧ ଭାରତୀୟ ସଂସ୍କୃତିର ବିଚାର କରାଯାଇପାରେ । ନିଗ୍ରୋ, ମୁଣ୍ଡା, ଦ୍ରାବିଡ, ଆର୍ଯ୍ୟ ଆଦି ବିଭିନ୍ନ ଜାତି; ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଶିଖ, ବୌଦ୍ଧ, ଜୈନ ଆଦି ବିଭିନ୍ନ ଧର୍ମମତ; ନାସ୍ତିକ ଭେଦରେ ୧୨ ଦର୍ଶନ ଓ ବହୁବିଧ ଭାଷା ଦ୍ୱାରା ପୁଷ୍ଟ ହୋଇଥିବା ସଂସ୍କୃତି ମଧ୍ୟରେ ଥିବା ଐକ୍ୟ ସୂତ୍ର ଦେଖିବା ପାଇଁ ପରଶୁରାମ ଗଳ୍ପଟି ବିଚାର କରାଯାଇପାରେ । ରାମାୟଣ ବା ମହାଭାରତ ବିଭିନ୍ନ ଜନମାନସକୁ ସମୃଦ୍ଧ କରିଥିଲେ ହେଁ ବିଭିନ୍ନ ଅଞ୍ଚଳରେ ଏହାର ବିଭିନ୍ନ ରୂପାନ୍ତର ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ପରଶୁରାମ ବାପାଙ୍କ ଆଦେଶରେ ମା'ଙ୍କ ମୁଣ୍ଡ କାଟି ପୁଣି ବାପାଙ୍କ ସନ୍ତୋଷରୁ ମା'ଙ୍କୁ ଜୀବନ୍ୟାସ ଦେଇଥିବା ଗପ ବହୁବିଦିତ । କିନ୍ତୁ ତାମିଲ ଲୋକ ମନରେ ଏହାର ରୂପାନ୍ତର ଦେଖିବାର ଅଛି । ପରଶୁରାମ ଯେତେବେଳେ ତାଙ୍କ ମା'ଙ୍କୁ ହାଣିବାକୁ ବାହାରିଲେ ସେତେବେଳେ ଗୋଟିଏ ପାରିଆ (ନୀଚ କୁଳର) ସ୍ତ୍ରୀ ତାଙ୍କୁ ଆଗୋଳି ରଖିବାକୁ ଚେଷ୍ଟା କଲା । ପରଶୁରାମ ଏକା ଚୋଟକେ ଦି'ଜଣଙ୍କ ମୁଣ୍ଡ ଉଡେଇ ଦେଲେ । ଯେତେବେଳେ ସେ ବାପାଙ୍କଠାରୁ ମୃତସଂଜିବନୀ ପାଣି ଧରି ଆସିଲେ ସେତେବେଳେ ଘୋର ମାନସିକ ଉଦ୍‌ବେଗ ହେତୁ ସେ ପାରିଆ ସ୍ତ୍ରୀ ବେକଟି ଆପଣା ମା ବେକରେ ଓ ଆପଣା ମା ମୁଣ୍ଡଟି ପାରିଆ ସ୍ତ୍ରୀ ବେକରେ ଲଗାଇ ଉଭୟଙ୍କୁ ଜୀବନ୍ୟାସ ଦେଲେ । ସେଇଦିନୁ ସେ ଦୁହେଁ ମରିମ୍ମା ଓ ଓ୍ୱେନ୍ନିମ୍ମା ନାଁରେ ଲୋକଦେବୀ ହିସାବରେ ପୂଜା ପାଉଛନ୍ତି । ଏଇ କଥାଟିର ସାର ମର୍ମ ହେଉଚି ସେ ଗତ ହଜାର ହଜାର ବର୍ଷର ଭାବ ବିନିମୟ ଫଳରେ ଆମେ ଏପରି ଏକ ସଂସ୍କୃତି ଗଢ଼ିଚୁ ଯେଉଁଠି ଆର୍ଯ୍ୟ ଦ୍ରାବିଡ ଏପରି ଭାବରେ ମିଶି ଯାଇଚନ୍ତି । ଉଭୟଙ୍କୁ ନ ମାରି ସେମାନଙ୍କୁ ଅଲଗା କରିବା ଅସମ୍ଭବ । ଏଇ ଦୃଷ୍ଟିରୁ ଯେଉଁମାନେ ଆଜି ତାମିଲ ଭାଷାରୁ ସଂସ୍କୃତ ଶବ୍ଦକୁ ଫୋପାଡ଼ି ଦେବାକୁ ଚେଷ୍ଟା କରୁଛନ୍ତି, କିମ୍ବା ପରିବାରର ଭିନ୍ନତା ଦର୍ଶାଇ ଭାଷା ଭାଷା ମଧ୍ୟରେ ଗୋଷ୍ଠୀ ମଧ୍ୟରେ ଶତ୍ରୁତା ସୃଷ୍ଟି କରିବାକୁ ଚେଷ୍ଟା କରୁଛନ୍ତି, ହୁଏତ ସେମାନେ ଭାଷା ବିକାଶ ଧାରା ସମ୍ବନ୍ଧରେ ଅଜ୍ଞ କିମ୍ବା ସେମାନେ ଦେଶର ଶତ୍ରୁ । ବହୁ ଭାଷାଭାଷୀ ଓ ବହୁ ସଂସ୍କୃତିର ମିଳନ ଦ୍ୱାରା ଗଠିତ ମନୋଭୂମି ସହନଶୀଳତା ଉପରେ ହିଁ ଆଧାରିତ ହୋଇପାରେ । ଅସହନଶୀଳ ମନୋବୃତ୍ତି ନେଇ ଏହାକୁ ଦେଖିଲେ ଏହାର ବିଖଣ୍ଡିତ ରୂପ ହିଁ ବଡ଼ ହୋଇ ଦେଖାଯିବ । ସାମଗ୍ରିକ ଚିତ୍ରର ପରିଚୟ ମିଳିବ ନାହିଁ ।

ଭାରତୀୟ ସଂସ୍କୃତିର ଚାବି ଭାରତୀୟ ଭାଷାମାନଙ୍କ ମଧ୍ୟରେ ଖୋଜିବାକୁ ହେବ । ପ୍ରାଚୀନ ଭାରତରେ ସଂସ୍କୃତ ଭାଷା ହିଁ ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ଭାଷା ଥିଲା । କିନ୍ତୁ

ଭାରତୀୟ ଆର୍ଯ୍ୟ ଓ ଇରାନୀମାନଙ୍କର ପୂର୍ବଜମାନେ ଯେଉଁ ଭାଷା ସଙ୍କେତ ରଖି ଯାଇଛନ୍ତି ତାହାର ସ୍ୱରୂପ ଋକ୍‌ବେଦର ଭାଷା ମଧ୍ୟରେ ହିଁ ସୁରକ୍ଷିତ । ବୈଦିକ ସାହିତ୍ୟ କହିଲେ କେବଳ ଚାରୋଟି ବେଦ ନୁହେଁ, ବ୍ରାହ୍ମଣକୁ ମଧ୍ୟ ବୁଝାଏ । ଏହି ବେଦିକ ସଂପଦର ସୁରକ୍ଷା ଗୁରୁ ଶିଷ୍ୟ ପରମ୍ପରା କ୍ରମେ ମୌଖିକ ସୂତ୍ରରେ ହିଁ ହେଉଥିଲା । ତେଣୁ ଉଚ୍ଚାରଣରେ ପରିଚ୍ଛନ୍ନତା ଉପରେ ସେ କାଳରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଉଥିଲା । ବୀଜ ଅକ୍ଷର ଧାରଣ କରିଥିବା ମଂତ୍ର, ସ୍ୱତନ୍ତ୍ର ଶକ୍ତି ନିହିତ ଥିବା ଶବ୍ଦ ଓ ବାକ୍ୟର ଉଚ୍ଚାରଣ ଅଭୀପ୍‌ସିତ ଫଳ ପ୍ରାପ୍ତି ନିମିତ୍ତ ଏକାନ୍ତ ଆବଶ୍ୟକ ରୂପେ ଗ୍ରହଣ କରାଯାଉଥିଲା । ଯଥାର୍ଥ ଭାବରେ ଉଚ୍ଚାରିତ ମଂତ୍ର ଦେବତାଙ୍କର ଶକ୍ତିକୁ ମଧ୍ୟ ବାନ୍ଧି ଆଣି ପାରୁଥିଲା । ଏହା ଉଭୟ ଉପକାର ଓ ଅପକାର କରିବାରେ ସମର୍ଥ । କୌଣସି ଏକ ଯଜ୍ଞରେ 'ଇନ୍ଦ୍ରଶତ୍ରୁ' ଶବ୍ଦ ଯଥାର୍ଥ ଭାବରେ ଉଚ୍ଚାରିତ ହୋଇ ନ ଥିବାରୁ ଯଜ୍ଞଫଳ ଇନ୍ଦ୍ରଙ୍କ ପରିବର୍ତ୍ତେ ଇନ୍ଦ୍ରଶତ୍ରୁଙ୍କୁ ପ୍ରାପ୍ତ ହୋଇଥିବା ଗଳ୍ପ ସର୍ବବିଦିତ ।

ଜ୍ଞାନର ଏପରି କୌଣସି ବିଭାଗ ନାହିଁ, ଜୀବନରେ ଏପରି କୌଣସି ବିଭାବ ନାହିଁ, ଯାହା ବିଷୟରେ ସଂସ୍କୃତରେ ବହିଲେଖା ହୋଇ ନାହିଁ । ଆଧୁନିକ କାଳ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ସଂସ୍କୃତରେ ସାହିତ୍ୟ ରଚନା ହୋଇଥିଲେ ସୁଦ୍ଧା ବୈଦିକ କାଳରୁ ଆରମ୍ଭ କରି ଆଧୁନିକ ଭାରତୀୟ ଭାଷାମାନଙ୍କର ବିକାଶ ପର୍ଯ୍ୟନ୍ତ ସାମାଜିକ ପରିବର୍ତ୍ତନର ଗତି ଓ ସଂସ୍କୃତିର ରୂପାନ୍ତର ଭାରତୀୟ ସଂସ୍କୃତିର ଅବବୋଧ ପାଇଁ ଏକାନ୍ତ ପ୍ରୟୋଜନ । ସଂସ୍କୃତି ପ୍ରବାହର ପ୍ରତୀକ ଋକ୍‌ବେଦରେ 'ମହୋ ଅର୍ଣ୍ଣବ ସରସ୍ୱତୀ' ବହୁ ବର୍ଣ୍ଣାଢ଼୍ୟ କନ୍ନଡ଼ ଶିଳାଲେଖ ବର୍ଣ୍ଣିତ 'ବହୁଭାଷା ସରସ୍ୱତୀ' ରୂପେ କିପରି ଆଧୁନିକ କାଳରେ ଆତ୍ମପ୍ରକାଶ କରେ ତାହାର ଗତିରେଖା ଅତ୍ୟନ୍ତ ଚିତ୍ତାକର୍ଷକ । ବିକାଶର ପରିଣାମରେ ଋକ୍ ବେଦର ବନ୍ୟା କିପରି ଭାରତୀୟ ସଂସ୍କୃତିର ପ୍ରତୀକ ଗଙ୍ଗା ନଦୀରେ ରୂପାନ୍ତରିତ ହେଲେ ଓ ଭାରତର ବିଭିନ୍ନ ନଦୀ କିପରି ତାହାର କନ୍ୟା କିମ୍ୱା ସମକକ୍ଷ (କୁଳୌ ଚିତ୍ରୋତ୍ପଳା ଗଙ୍ଗା) ରୂପେ ବିବେଚିତ ହେଲେ, ପ୍ରତ୍ୟେକ ଜଳାଧାର କିପରି ମାନସ ସରୋବରର ସାରୂପ୍ୟ ଲାଭ କଲା ଏହାର ଅଧ୍ୟୟନ ବିଚିତ୍ର ଓ ବର୍ଣ୍ଣାଢ଼୍ୟ । ଭାରତର ଏକ ହଜାରରୁ ଉର୍ଦ୍ଧ୍ୱ ମାତୃଭାଷା କିପରି ସଂସ୍କୃତ ପୁଷ୍ଟ ହୋଇ ସଂସ୍କୃତ ପ୍ରତି ସ୍ପର୍ଦ୍ଧାରେ ଆପଣାକୁ ଗଢ଼ିବାକୁ ପ୍ରୟାସ କଲେ ଓ ତହିଁରେ ସଫଳତା ଲାଭ କଲେ ତାହାର ଇତିହାସ ମଧ୍ୟ ମନୋରଞ୍ଜକ ।

ଯେକୌଣସି ଭାଷାର ଜୀବନ କାଳ ମଧ୍ୟରେ ପ୍ରାଚୀନ ବ୍ୟାକରଣିକ କୋଟୀର ଲୋପ ଓ ନୂତନ କୋଟୀର ଉଦ୍ଭବ, ଅନିୟମିତତାର ଲୋପ ଓ ନିୟମିତତାର ଉଦ୍ଭବ ସାଧାରଣ କଥା । କିନ୍ତୁ ଥରେ ବ୍ୟାକରଣକାର ପ୍ରୟୋଗକୁ ନିୟମରେ ବାନ୍ଧି ରଖିଲେ, ନୂତନ ପ୍ରୟୋଗବାରଣ କଲେ ଏବଂ ସମସାମୟିକ ଭାଷାର ବିଶ୍ଳେଷଣ କରି ତାହାର ଏକ ସର୍ବମାନ୍ୟ ରୂପ ବ୍ୟାକରଣରେ ଧରି ରଖିଲେ ଏହା ସମାଜରେ ମାନ୍ୟତା ପାଏ । ବୈଦିକ ଭାଷା ଓ ସମସାମୟିକ କଥିତ ଭାଷାର ଏପରି ବ୍ୟାକରଣ ସିଦ୍ଧ ରୂପର ନାମ ହେଲା ସଂସ୍କୃତ ।

ରାମାୟଣରେ ହିଁ ଭାଷାର ଏହି ନାମ ଦେଖିବାକୁ ମିଳେ । ଯାସ୍କ, ପାଣିନୀ ଓ କାତ୍ୟାୟନ ସଂସ୍କୃତରେ ଆଞ୍ଚଳିକ ଭେଦ ଲକ୍ଷ୍ୟ କରିଛନ୍ତି । କିନ୍ତୁ ପାଣିନୀ ବ୍ୟାକରଣ ସୂତ୍ର ଦ୍ୱାରା ଆଖ୍ୟାତ ଭାଷା ହିଁ ସର୍ବମାନ୍ୟ ଏ କଥା ପରବର୍ତ୍ତୀ ସମସ୍ତେ ସ୍ୱୀକାର କରିଛନ୍ତି । ଭାଷା ବୈଜ୍ଞାନିକ ମାତ୍ରେ ପାଣିନୀଙ୍କୁ ସ୍ୱୀକାର କରିବାକୁ ବାଧ୍ୟ । ତାଙ୍କର ଭାଷା ବିଶ୍ଳେଷଣ, ସୂତ୍ରାତ୍ମକ ନିୟମ ପ୍ରଣୟନ ଏବେ ବି ଭାଷା ବିଜ୍ଞାନୀଙ୍କର ବିସ୍ମୟର ବିଷୟ । ଭାଷାକୁ ସମ୍ପୂର୍ଣ୍ଣ କଳ୍ପନା ଜଳ୍ପନା ସ୍ତରରୁ ନିୟମ ବଦ୍ଧ ବ୍ୟବହାର ସ୍ତରକୁ ଆଣିବା ପାଇଁ ପାଣିନୀ ହେଉଛନ୍ତି ଦାୟୀ । ପାଣିନୀ ତାଙ୍କ ପୂର୍ବର ସମସ୍ତ ବ୍ୟାକରଣିକ ଚିନ୍ତାକୁ ସୂତ୍ରବଦ୍ଧ କରି ଏପରି ନିୟମ ଉପସ୍ଥାପନ କଲେ, ଯାହା ବ୍ୟକ୍ତି ଓ ଗୋଷ୍ଠୀଗତ ପାର୍ଥକ୍ୟ ସତ୍ତ୍ୱେ ସାଧାରଣ ଭାବରେ 'ସଂସ୍କୃତ' ପ୍ରତି ପ୍ରଯୋଜ୍ୟ ।

ବହୁ ପ୍ରାଚୀନ କାଳରୁ ଭାରତବର୍ଷରେ ଏକ ପ୍ରକାର ଦ୍ୱିଭାଷିକ ସ୍ଥିତି ଚଳି ଆସୁଚି । ଭାଷାର ସାହିତ୍ୟିକ ଓ ଚଳିତ ରୂପ ମଧ୍ୟରେ ପାର୍ଥକ୍ୟ ବହୁ ପ୍ରାଚୀନ । ପତଞ୍ଜଳି ତାଙ୍କର 'ମହାଭାଷ୍ୟ' (ଖ୍ରୀ.ପୂ. ୧୫୦)ରେ ଲେଖିଛନ୍ତି ଯେ, "ଏକ ସମୟରେ ଏପରି ଅନେକ ଜ୍ଞାନୀ ଋଷି ଥିଲେ, ଯେଉଁମାନ ସାଧାରଣ ଗଳିତ କଥାରେ 'ଯଦ୍ ବା ନସ୍ ତଦ୍ ବା ନଃ' ସ୍ଥାନରେ ଯର୍ ବା ଣସ୍ ତର୍ ବା ଣଃ' ବ୍ୟବହାର କରୁଥିଲେ । କିନ୍ତୁ ଯଜ୍ଞ ସମୟରେ ସମ୍ପୂର୍ଣ୍ଣ ନିର୍ଭୁଲ ଥିଲେ ।" ଋକ୍‌ବେଦ ସମୟରେ ଉଚ୍ଚାରଣ ଭ୍ରମଜନିତ ଦୋଷ ଦୂର କରିବା ପାଇଁ ସରସ୍ୱତୀ ଯଜ୍ଞର ବିଧାନ ଥିଲା । ସେ କାଳରୁ ପତଞ୍ଜଳିଙ୍କ କାଳ ପର୍ଯ୍ୟନ୍ତ ଦୂରତା ସହଜେ ଲକ୍ଷ୍ୟ । ପତଞ୍ଜଳି ପୁଣି କହିଛନ୍ତି ଯେ, ସମାଜରେ କଥିତ ଭାଷା ମଧ୍ୟରେ ଅନ୍ତର ସୃଷ୍ଟି ହେଲେ ଆଦର୍ଶ ରୂପେ ଶିଷ୍ଟମାନଙ୍କର ଭାଷାକୁ ହିଁ ଗ୍ରହଣ କରିବାକୁ ହେବ । ତାଙ୍କ ମତରେ ଯେଉଁମାନେ ଶିକ୍ଷା ବ୍ୟତୀତ ନିର୍ଭୁଲ ସଂସ୍କୃତ କହନ୍ତି ସେଇମାନେ ହେଉଛନ୍ତି ଶିଷ୍ଟ । ଅନ୍ୟ ଯେଉଁମାନେ ଶଶ ସ୍ଥାନରେ ଷଷ, କୃଷି ସ୍ଥାନରେ କଷ, ଗୌ ସ୍ଥାନରେ ଗାଭୀ, ଗୋଣୀ, ଗୋଟା, ଗୋପତଳିକା ଆଦି ବ୍ୟବହାର କରନ୍ତି, ସେମାନେ ଶିଷ୍ଟଙ୍କଠାରୁ ଭାଷା ଶିକ୍ଷା କରିବା ଉଚିତ ।

ପାଣିନୀ ସେ କାଳର ଚଳିତ ଭାଷାକୁ ଏପରି ଏକ ମାନ୍ୟରୂପ ଦେଲେ ଯେ, ତାହା କ୍ରମେ ଆଦର୍ଶ ରୂପେ ଗୃହୀତ ହୋଇଗଲା । ଋକ୍‌ବେଦର ଛନ୍ଦ ନିୟମ ସହିତ ପାଣିନୀୟ ଭାଷାକୁ ମିଳେଇ ଦେଖିଲେ ଉଭୟ ମଧ୍ୟରେ ପାର୍ଥକ୍ୟ ସହଜେ ବାରିହୋଇ ପଡ଼ିବ । ପାଣିନୀୟ ସନ୍ଧିନିୟମ ଋଗ୍‌ବେଦର ଇୟ, ଉୱ ପରିବର୍ତ୍ତେ ଯ, ୱ ପ୍ରୟୋଗକୁ ସିଦ୍ଧ କଲା, 'ର' ପରିବର୍ତ୍ତେ 'ଲ'ର ବ୍ୟବହାର ଓ ମୂର୍ଦ୍ଧଣ୍ୟବର୍ଣ୍ଣମାନଙ୍କର ବ୍ୟବହାରରେ ମଧ ଉଭୟର ବ୍ୟବଧାନକୁ ମପାଯାଇପାରେ । ସେହିପରି ରୂପତତ୍ତ୍ୱ ବିଚାରରେ ମଧ ପ୍ରାଚୀନ ପ୍ରୟୋଗର ଲୋପ (ଆ, ଏନ ପରି ଯୋଡ଼ା ପ୍ରୟୋଗର ଲୋପ, ଅସସ୍ ଆସ ଇତ୍ୟାଦି) ଓ ନୂତନ ପ୍ରୟୋଗର ଉଦ୍ଭବ ଦେଖିବାର ଅଛି । ପୁଣି ବ୍ରାହ୍ମଣ ଓ ପୁରାଣର ଭାଷା ବିଚାର କଲେ ଦେଖାଯିବ ଯେ, ବିଭିନ୍ନ କାଳରେ କଥିତ ସଂସ୍କୃତ ଓ ଲିଖିତ ସଂସ୍କୃତ ମଧ୍ୟରେ ଏହି ଦ୍ୱିଭାଷିକ ସ୍ଥିତି ସୁଶୋଭିତ ରୂପେ ପ୍ରକାଶ ପାଇଛି । ପାଲି ଭାଷାକୁ ବୌଦ୍ଧିଧର୍ମଗ୍ରନ୍ଥ ଲେଖନ ପାଇଁ

ଚଳିତ ପ୍ରାକୃତ ଭାଷାମାନଙ୍କର ଏକ ନିୟମବଦ୍ଧ ମାନ୍ୟରୂପ ଭାବରେ ଗ୍ରହଣ କରାଯାଇପାରେ । ବୌଦ୍ଧଶାସ୍ତ୍ରମାନଙ୍କରୁ ଦେଖିବାକୁ ମିଳେ ଯେ, 'ଲୋକପଂକ୍ତି' ବା 'ଲୋକଶିକ୍ଷା' ବ୍ରାହ୍ମଣର କର୍ତ୍ତବ୍ୟର ଅଙ୍ଗୀଭୂତ ଥିଲା । ଜାତକ କଥାରୁ ଦେଖିବାକୁ ମିଳେ କିପରି ସବୁ ଜାତିର ଲୋକେ ଆପଣା ପିଲାମାନଙ୍କୁ ଶିକ୍ଷା ପାଇଁ ଉତ୍ତର ଦେଶୀୟ ବ୍ରାହ୍ମଣମାନଙ୍କ ନିକଟକୁ ପଠାଉଥିଲେ । ଅଶ୍ୱଘୋଷଙ୍କ ସମୟରେ ମଞ୍ଚରେ ସଂସ୍କୃତ ବ୍ୟବହାର ସପକ୍ଷରେ ଏପରି ଦୃଢ଼ ମତ ଥିଲା ଯେ, ବୌଦ୍ଧଗନ୍ଥ ପାଇଁ ମଧ୍ୟ ସଂସ୍କୃତ ବ୍ୟବହାର କରିବାକୁ ସେ କୁଣ୍ଠିତ ନ ଥିଲେ । ଏହି ସମ୍ପର୍କରେ ବୁଦ୍ଧ ଆପଣା ବଚନ ପାଇଁ ସଂସ୍କୃତ ବ୍ୟବହାରକୁ ନାପସନ୍ଦ କରିବାର କଥା (ଚୁଲ୍ଲବଗ୍ଗ-୩୩୧) ମଧ୍ୟ ଦେଖାଯାଇପାରେ ।

ଲୋକ ବ୍ୟବହାରରେ ଭାଷା ଆଞ୍ଚଳିକ ଓ ସାମାଜିକ ଭେଦରେ କିପରି ପ୍ରାକୃତ, ଅପଭ୍ରଂଶ ଦେଇ ଆଧୁନିକ ଭାରତୀୟ ଭାଷାମାନଙ୍କରେ ରୂପାନ୍ତରିତ ହେଲା, ଦେଖିବାକୁ ଅଛି । ପଦମର୍ଯ୍ୟାଦା ଓ ଲିଙ୍ଗଭେଦରେ ମଧ୍ୟ ଭାଷା ବ୍ୟବହାରର ଭିନ୍ନତା ସଂସ୍କୃତ ନାଟକରେ ଭାଷା ବ୍ୟବହାରରୁ ଦେଖାଯାଇପାରେ । 'କୁମାରସମ୍ଭବ'ରେ ସରସ୍ୱତୀ ଶିବଙ୍କୁ ସଂସ୍କୃତରେ ଓ ପାର୍ବତୀଙ୍କୁ ପ୍ରାକୃତରେ ସମ୍ବୋଧନ କରିଛନ୍ତି । ପୁଣି ଅନ୍ୟାନ୍ୟ ସଂସ୍କୃତ ନାଟକମାନଙ୍କରେ ଲିଙ୍ଗ, ପଦମର୍ଯ୍ୟାଦା ଓ ବାସ୍ତବ କାର୍ଯ୍ୟଭିତ୍ତିରେ କେବଳ ସଂସ୍କୃତ ଓ ପ୍ରାକୃତ ନୁହେଁ, ବିଭିନ୍ନ ପ୍ରାକୃତ ବ୍ୟବହାର ପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ସଂସ୍କୃତି ଓ ଭାଷା ଉଭୟର ଅଧ୍ୟୟନ ଆଗ୍ରହୀ ବ୍ୟକ୍ତି ପକ୍ଷରେ ଗୋଟିଏ କଥା ସର୍ବାଦୌ ମନେରଖିବା ପ୍ରୟୋଜନ, ତାହା ହେଉଛି ସଂସ୍କୃତି ଓ ଭାଷାର ବହୁତା । ବ୍ୟକ୍ତି ତଥା ଗୋଷ୍ଠୀର ବହୁମୁଖୀ ପ୍ରକାଶର ସମ୍ଭାବନା ଓ ବାସ୍ତବତା ମଧ୍ୟରେ ବିଭିନ୍ନ ସାଂସ୍କୃତିକ ଗୋଷ୍ଠୀ ଯେପରି ମାନବିକ ସଞ୍ଚାର ବ୍ୟବସ୍ଥାରେ ଧ୍ୱନି ଓ ଅର୍ଥର ଅସୀମ ସମ୍ଭାବନା ଓ ବିଭିନ୍ନ ମାତୃଭାଷା ମଧ୍ୟରେ ତାହାର ବିଚିତ୍ର ପରିପ୍ରକାଶ ସେହିପରି ଗୋଟିଏ ଗୋଟିଏ ବିନ୍ଦୁ ! ଏକଦେଶଦର୍ଶୀ ବିଚାରକ, ଭାଷା ଓ ସଂସ୍କୃତିର ବିଚିତ୍ର, ବହୁବିଧ ପ୍ରକାଶର ସାମଗ୍ରିକ ଦୃଷ୍ଟି ହରାଇଲେ ଆପଣା ସଂସ୍କୃତିର ମାନଦଣ୍ଡରେ ଇତର ସଂସ୍କୃତିକୁ ମାପିବାକୁ ଯାଇ ଯେପରି ଭ୍ରମରେ ପଡ଼ିଥାନ୍ତି, ଆପଣା ଭାଷାର କୋଟୀକୁ ମାନ୍ୟବିଚାରି ଅନ୍ୟଭାଷାର ସମୃଦ୍ଧି, ପ୍ରୟୋଗକୁଶଳତା ଆଦି ସମ୍ବନ୍ଧରେ ମତ ଦେବାକୁ ଯାଇ ଠିକ୍‌ସେହିପରି ଭ୍ରମରେ ପଡ଼ିଥାନ୍ତି ।

ସଂସ୍କୃତି ଓ ଭାଷା ଉଭୟ କ୍ଷେତ୍ରରେ ଅଭିବ୍ୟକ୍ତିକୁ ଧରି ସାମର୍ଥ୍ୟ' ବିଚାର କରାଯାଇଥାଏ । ନୃତତ୍ତ୍ୱର ଛାତ୍ର ସ୍ୱତନ୍ତ୍ର ସ୍ୱତନ୍ତ୍ର ସମାଜର ଚଳଣିକୁ ଧରି 'ସମାଜ'ର ବୈଜ୍ଞାନିକ ବିଶ୍ଳେଷଣ କଲାପରି ଭାଷାବିଜ୍ଞାନର ଛାତ୍ର ଏକ ପକ୍ଷରେ ବିଭିନ୍ନ ବୟକ୍ତିକ ଭାଷାକୁ ଧରି କୌଣସି ଏକ ଭାଷାର ଗଢ଼ଣ ଏବଂ ଅନ୍ୟପକ୍ଷରେ ବିଭିନ୍ନ ଭାଷାର ଗଢ଼ଣକୁ ଧରି 'ଭାଷା'ର ସାର୍ବଜନୀନ ବିଭବ ଅନୁସନ୍ଧାନ କରିଥାଏ । ଭାଷା ଯେପରି ମଣିଷର ବୈଶିଷ୍ଟ୍ୟ, ସୀମାହୀନ ସାମର୍ଥ୍ୟର ବିଚିତ୍ର ଓ ବିଭିନ୍ନ ପରିପ୍ରକାଶ ସେହିପରି ମଣିଷର ଅନ୍ୟ ଏକ ବୈଶିଷ୍ଟ୍ୟ ।

ଓଓଓ

## ୪୦

# ଓଡ଼ିଆ ଭାଷାରେ ପର୍ତ୍ତୁଗୀଜ ପ୍ରଭାବ

### ଖଗେଶ୍ୱର ମହାପାତ୍ର

ଭାସ୍କୋଡ଼ା ଗାମା ଖ୍ରୀ. ୧୪୯୮ରେ ଭାରତକୁ ଜଳପଥ ଆବିଷ୍କାର କରିବାପରେ ପର୍ତ୍ତୁଗୀଜ ବଣିକଦଳ ବାଣିଜ୍ୟ ପ୍ରସାର ନିମିତ୍ତ ଭାରତ ଅଭିମୁଖରେ ଅଭିଯାନ ଆରମ୍ଭ କରିଦେଲେ । ପୂର୍ବ ଉପକୂଳରେ ତାଙ୍କର ପ୍ରଥମ ବାଣିଜ୍ୟକେନ୍ଦ୍ର ଖ୍ରୀ.୧୫୧୪ରେ ସୁବର୍ଣ୍ଣରେଖା – ମୁହାଣରେ ପିପିଲିଠାରେ ପ୍ରତିଷ୍ଠିତ ହେଲା । ଓଡ଼ିଶାର ଶାସକ ସେତେବେଳେ ଗଜପତି ସମ୍ରାଟ୍ ପ୍ରତାପରୁଦ୍ରଦେବ । ଅଳ୍ପକାଳ ମଧ୍ୟରେ ସେଠାରେ ସେମାନଙ୍କର ଆସ୍ଥାନ ଗଢ଼ି ଉଠିବାପରେ ସେମାନେ କ୍ରମେ ବାଣିଜ୍ୟ-ବିସ୍ତାର ପାଇଁ ବଙ୍ଗଦେଶରେ ହିଜିଳି, ହୁଗୁଳି, ଚଟ୍ଟଗ୍ରାମ ପ୍ରଭୃତି ପେଣ୍ଠସ୍ଥାନ ମାନଙ୍କରେ କାରବାର ଆରମ୍ଭ କଲେ । ବଙ୍ଗଦେଶରେ ସେତେବେଳେ ଶାସନଶୃଙ୍ଖଳା ଖୁବ୍ ଶିଥିଳ, ପ୍ରାୟ ଅରାଜକତା ସୃଷ୍ଟି ହୋଇଥାଏ । ଖ୍ରୀ. ୧୫୧୯ରେ ସୁଲତାନ ଆଲ୍ଲାଉଦ୍ଦୀନ ହୋସେନ ସାହାଙ୍କ ରାଜତ୍ୱର ଅବସାନ ହେବାପରେ, ତାଙ୍କର ପୁତ୍ର ନାସିରୁଦ୍ଦୀନ ନସରତ୍‌ଶାହା ଓ ଗିୟାସୁଦ୍ଦୀନଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହେଲା ଏବଂ ଶେଷରେ ଗିୟାସୁଦ୍ଦୀନ ଭ୍ରାତୃଷ୍ପୁତ୍ରଙ୍କୁ ହତ୍ୟାକରି ରାଜତ୍ୱଲାଭ କଲେ । ଏହି ସମୟରେ ଗୃହବିବାଦର ସୁଯୋଗ ନେଇ ଶେରଖାଁ (ବିଖ୍ୟାତ ଶେରସାହା) ବଙ୍ଗ ଆକ୍ରମଣ କଲେ । ପର୍ତ୍ତୁଗୀଜ୍ ବଣିକଦଳ ସେହି ଯୁଦ୍ଧରେ ଗିୟାସୁଦ୍ଦୀନଙ୍କୁ ସାହାଯ୍ୟ ପ୍ରଦାନ କରି ତାଙ୍କର ପ୍ରୀତିଭାଜନ ହୋଇ ପଡ଼ିଲେ ଓ ଅଚିରେ ବଙ୍ଗଦେଶରେ ପ୍ରଭାବ ବିସ୍ତାର କଲେ । ଏହିପରି ଭାବରେ ବଙ୍ଗଦେଶର ଆଭ୍ୟନ୍ତରୀଣ ରାଜନୈତିକ ସମସ୍ୟାମାନଙ୍କରେ ସମ୍ପୃକ୍ତ ହୋଇ, ପର୍ତ୍ତୁଗୀଜ୍ ବଣିକଦଳ ପିପିଲି ଅପେକ୍ଷା ଚଟ୍ଟଗ୍ରାମ (ତାଙ୍କ ଭାଷାରେ, 'Porto Grando') ଓ ହୁଗୁଳି ('Port Pequeno') ସ୍ଥିତ ତାଙ୍କର ବାଣିଜ୍ୟକେନ୍ଦ୍ର ଦୁଇଟିକୁ ସମୃଦ୍ଧ କରିବାରେ ଲାଗିଲେ । ଓଡ଼ିଶାର ଶୃଙ୍ଖଳିତ ଶାସନ ବ୍ୟବସ୍ଥା ମଧ୍ୟରେ ଭବିଷ୍ୟତ୍ ସାମ୍ରାଜ୍ୟ ବିସ୍ତାରର ସମ୍ଭାବନା ଓ ଦୁର୍ନୀତି-ପ୍ରଣୋଦିତ ବାଣିଜ୍ୟ ବ୍ୟବସାୟର ସମ୍ପ୍ରସାରଣପାଇଁ ଅନୁକୂଳ ପରିବେଶ ନ ଦେଖି, ବଙ୍ଗଦେଶପ୍ରତି ସେମାନଙ୍କର ଆକର୍ଷଣ ସ୍ୱଭାବତଃ ବୃଦ୍ଧି ପାଇଥିଲା । ତଥାପି ସେମାନେ ପିପିଲିର ବାଣିଜ୍ୟକେନ୍ଦ୍ରକୁ ସମ୍ପୂର୍ଣ୍ଣରୂପେ ଅବହେଳା କରିନଥିଲେ । Joannes Det Lt ୧୬୩୧ ରେ, Bruton ୧୬୮୩ରେ ଓ Bishop Laines ୧୭୨୩ରେ

ପ୍ରଦତ୍ତ ବିବରଣୀ ମଧ୍ୟରେ ପିପିଲିଠାରେ ପର୍ତ୍ତୁଗୀଜ୍ ବାଣିଜ୍ୟକେନ୍ଦ୍ରର ଉଲ୍ଲେଖ କରିଛନ୍ତି । ସେଠାରେ ଜଣେ ସ୍ଥାନାଧିପତି ରାଜ-ପ୍ରତିନିଧି (resident) ଅବସ୍ଥାନ କରୁଥିଲେ ଓ Our Lady of Rosary ନାମରେ ଉତ୍ସର୍ଗୀକୃତ ଏକ ଗୀର୍ଜା ପ୍ରତିଷ୍ଠିତ ହୋଇଥିଲା । ଇତ୍ୟବସରରେ ବାଲେଶ୍ୱରଠାରେ ମଧ୍ୟ ତାଙ୍କର ଏକ କ୍ଷୁଦ୍ର ବସତି ଗଢ଼ି ଉଠିଥିଲା । (ଦ୍ରଷ୍ଟବ୍ୟ-ଫକୀରମୋହନଙ୍କ "ବାଲେଶ୍ୱର-ବନ୍ଦରରେ ଓଲନ୍ଦାଜ ଜାତି") । ଖ୍ରୀ. ୧୬୩୩ରେ ହରିଶପୁରଠାରେ ଇଂରେଜ ବଣିକଦଳ ସହିତ ତାଙ୍କର କଳହ ସମଗ୍ର ଓଡ଼ିଶା ଉପକୂଳରେ ପର୍ତ୍ତୁଗୀଜମାନଙ୍କର ପଦସଞ୍ଚାର ପ୍ରମାଣିତ କରେ । ଷୋଡ଼ଶ ସପ୍ତଦଶ ଶତାବ୍ଦୀରେ ଯଥାର୍ଥରେ ବଙ୍ଗୋପସାଗରରେ ପର୍ତ୍ତୁଗୀଜ୍‌ମାନେ ହିଁ ରାଜତ୍ୱ କରୁଥିଲେ । (ଦ୍ରଷ୍ଟବ୍ୟ - Campos ପୃ.୧୧୨- "The Portuguese ships commanded the whole sea-board from Orissa to Chitagong from about 1567, when they had founded their settlements on both the arms of the Bay of Bengal") ଷୋଡ଼ଶ ଶତାବ୍ଦୀରେ ଲିଖିତ କବିକଙ୍କଣ ମୁକୁନ୍ଦରାମଙ୍କ 'ଚଣ୍ଡୀକାବ୍ୟ'ରେ ଏହାର ସୂଚନା ମିଳେ । ଏଣେ ଦକ୍ଷିଣପ୍ରାନ୍ତରେ ବିଜୟନଗରରେ ମଧ୍ୟ ସେମାନଙ୍କର ଗୋଟିଏ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ପୁଣି ଖ୍ରୀ.୧୬୩୨ରେ ହୁଗୁଳିରୁ ଏବଂ ଖ୍ରୀ. ୧୬୬୮ରେ ଚଟ୍ଟଗ୍ରାମରୁ ବିତାଡ଼ିତ ହେବା ସମୟରେ ପର୍ତ୍ତୁଗୀଜ୍‌ମାନେ ପିପିଲିକୁ ସାମୟିକଭାବେ ପ୍ରଧାନ କେନ୍ଦ୍ରରୂପେ ବ୍ୟବହାର କରିଥିବାର ପ୍ରମାଣ ମିଳେ । ଅତଏବ ଏହି ସମସ୍ତ ବିବରଣୀ ଭିତ୍ତିରେ ଦୀର୍ଘକାଳ ପର୍ଯ୍ୟନ୍ତ ଓଡ଼ିଶା ସହିତ ପର୍ତ୍ତୁଗୀଜ୍‌ମାନଙ୍କର ସୁସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା ବୋଲି ଅନୁମିତ ହୁଏ ।

ଓଡ଼ିଶା ଉପକୂଳରେ ପର୍ତ୍ତୁଗୀଜ୍ ମାନଙ୍କର ପଦସଞ୍ଚାର ଏବଂ ପିପିଲି ଓ ବାଲେଶ୍ୱରଠାରେ ବାଣିଜ୍ୟକେନ୍ଦ୍ର ସ୍ଥାପନ ଦୀର୍ଘକାଳ ସ୍ଥାୟୀ ହୋଇଥିବା ଯୋଗୁଁ ପର୍ତ୍ତୁଗୀଜ ବଣିକଦଳ ଓ ଦେଶୀୟ ଲୋକମାନଙ୍କର ଭାବର ଆଦାନ-ପ୍ରଦାନପାଇଁ କ୍ଷେତ୍ର ପ୍ରସ୍ତୁତ ହେବା ସ୍ୱାଭାବିକ । ପ୍ରଥମେ ବ୍ୟବସାୟ ବ୍ୟପଦେଶରେ ପର୍ତ୍ତୁଗୀଜ୍ ଭାଷା, ସଭ୍ୟତା ଓ ସଂସ୍କୃତି ସହିତ ଯେଉଁ ପରିଚୟର ସୂତ୍ରପାତ ହୋଇଥିଲା ପରବର୍ତ୍ତୀକାଳରେ ଧର୍ମପ୍ରଚାରକ ପାଦ୍ରୀମାନଙ୍କଦ୍ୱାରା ତାହା ବିସ୍ତାରିତ ହୋଇଥିଲା । କେରି, ମାର୍ଶମାନ ପ୍ରଭୃତି ଇଂରେଜ ପ୍ରଚାରକମାନଙ୍କର ପଥପ୍ରଦର୍ଶକ ଥିଲେ ପର୍ତ୍ତୁଗୀଜ୍ ପାଦ୍ରୀ ଡ୍ୱୋମିନିକ୍ ଦା ସୁଜା, ଫ୍ରାନ୍ସିସ୍କୋ ଫେରନାଣ୍ଡେସ ପ୍ରଭୃତି । ଇଂରେଜ, ଡଚ, ଫରାସୀ-ବଣିକଦଳ ଓ ଧର୍ମପ୍ରଚାରକଗଣ ଊନବିଂଶ ଶତାବ୍ଦୀର ତୃତୀୟଦଶକ ପର୍ଯ୍ୟନ୍ତ ପର୍ତ୍ତୁଗୀଜ୍ ଭାଷାକୁ ପ୍ରଧାନ ମାଧ୍ୟମରୂପେ ଗ୍ରହଣ କରିଥିବା ଜଣାଯାଏ । ମାର୍ଶମାନଙ୍କ ପ୍ରଦତ୍ତ ବିବରଣୀ ଅନୁସାରେ (History of Sri Rampur Mission. vol-I page 21:22) ଖ୍ରୀ.୧୮୨୮ରେ ଶ୍ରୀରାମପୁରସ୍ଥିତ ଜଣେ ନରଉଏଜୀୟ ସେନାପତି ତାଙ୍କର ଭାରତୀୟ ଅଧସ୍ତନ କର୍ମଚାରୀଙ୍କ ଠାରୁ ପର୍ତ୍ତୁଗୀଜ୍ ଭାଷାରେ ଦୈନିକ ବିବରଣୀ ଗ୍ରହଣ କରୁଥିଲେ । ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ ପୂର୍ବ-ଭାରତରେ କାରବାର କରୁଥିବା

ୟୁରୋପୀୟ ବଣିକମାନଙ୍କର lingua franca ଥିଲା ଯଥାର୍ଥରେ ପର୍ତ୍ତୁଗୀଜ୍ । Campos ଲେଖିଛନ୍ତି ଯେ – "In Calcutta, Hooghly, Balasore and other settlements the East India Company employees made themselves understood only in Portuguese; even their servants spoke no other language but Portuguese" (Page-204) ସୁତରାଂ କେବଳ ପର୍ତ୍ତୁଗୀଜ୍ ନୁହେଁ ଅନ୍ୟାନ୍ୟ ୟୁରୋପୀୟ ବଣିକମାନଙ୍କଦ୍ୱାରା ବଙ୍ଗଳା ଓ ଓଡ଼ିଶା ଉପକୂଳରେ ପର୍ତ୍ତୁଗୀଜ୍ ଭାଷାର ବହୁଳ ପ୍ରଚାର ହୋଇଥିଲା ଏବଂ ପରିଣାମତଃ ସେମାନଙ୍କ ସହିତ ସମ୍ପୃକ୍ତ ଦେଶୀୟ ଲୋକମାନଙ୍କର ଭାଷାରେ ତା'ର ପ୍ରଭାବ ଅନିବାର୍ଯ୍ୟ ହୋଇପଡ଼ିଥିଲା । ବିଶେଷତଃ ଦେଶୀୟ ଖ୍ରୀଷ୍ଟାନଗଣ ପର୍ତ୍ତୁଗୀଜ୍‌ଭାଷା, ସଭ୍ୟତା ଓ ସଂସ୍କୃତିର ପ୍ରଧାନ ବାହକରୂପେ ଦେଖା ଦେଇଥିଲେ । ତେଣୁ ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ପର୍ତ୍ତୁଗୀଜ୍ ପ୍ରଭାବ ଅଳ୍ପ-ବହୁତଭାବରେ ପ୍ରାୟ ପରିଲକ୍ଷିତ ହୁଏ ।

ଭାରତୀୟ ଭାଷାମାନଙ୍କ ମଧ୍ୟରେ କୋଙ୍କଣୀ, ତାମିଲ, ହିନ୍ଦୀ, ବଙ୍ଗଳା ପ୍ରଭୃତି ଭାଷାରେ ପର୍ତ୍ତୁଗୀଜ୍ ପ୍ରଭାବ ଅଧିକ ପରିମାଣରେ ପରିଦୃଷ୍ଟ ହୁଏ । ତା'ର କାରଣ, ଏହି ଭାଷାଭାଷୀ ଅଞ୍ଚଳ ସହିତ ପର୍ତ୍ତୁଗୀଜ୍ ସମ୍ପର୍କ ସୁପ୍ରତିଷ୍ଠିତ ହୋଇଥିଲା । ପୂର୍ବ-ଉପକୂଳରେ ଓଡ଼ିଶାରେ ପ୍ରଥମେ ପର୍ତ୍ତୁଗୀଜ୍‌ମାନେ ପାଦ ଦେଇଥିଲେ ମଧ୍ୟ ବଙ୍ଗଦେଶ ତୁଳନାରେ ଓଡ଼ିଶା ସହିତ ସେମାନଙ୍କର ଯୋଗାଯୋଗ ବିଶେଷଭାବରେ ଘଟି ନ ଥିବାରୁ ସେହି ଅନୁପାତରେ ଓଡ଼ିଆ ଭାଷାରେ ପର୍ତ୍ତୁଗୀଜ୍ ପ୍ରଭାବ ସ୍ୱଳ୍ପ । ବିଶେଷତଃ ପର୍ତ୍ତୁଗୀଜ୍ ପାଦ୍ରୀମାନଙ୍କର ପ୍ରଚାର କାର୍ଯ୍ୟ ଓଡ଼ିଶାରେ ପ୍ରାୟ ହୋଇ ନ ଥିଲା । ସୁତରାଂ କେବଳ ବଣିକ ଓ ଜଳଦସ୍ୟୁମାନଙ୍କ ସମ୍ପର୍କରୁ ହୁଏତ କେତେକ ଶବ୍ଦ ସିଧାସଳଖ ଭାବରେ ଓଡ଼ିଆ ଭାଷାରେ ପ୍ରବେଶ ଲାଭ କରିଥିବ । କିନ୍ତୁ ପରବର୍ତ୍ତୀ କାଳରେ ଇଂରେଜମାନଙ୍କ ମାଧ୍ୟମରେ ବହୁ ଶବ୍ଦ ଓଡ଼ିଶାରେ ପରିଚୟ ଲାଭ କରି କ୍ରମେ ଓଡ଼ିଆ ଭାଷାରେ ସ୍ଥାନ ଲାଭ କରିଛି ଏବଂ ବଙ୍ଗ ଓ ଓଡ଼ିଶା ମଧ୍ୟରେ ଶାସନଗତ ସମ୍ପର୍କ ପ୍ରତିଷ୍ଠିତ ହେବାପରେ ବଙ୍ଗଳା ମାଧ୍ୟମରେ ବି କେତେକ ଶବ୍ଦ ଗୃହୀତ ହୋଇଛି । ସେଥିପାଇଁ Dalgado କହିଛନ୍ତି ଯେ - "The Portuguese influence on Oriya is chiefly mediate, through the intervention of Telgu in the south and Bengali in the north, though in former times there was commercial intercourse between the Portuguese and Orissa" (IPVAL-LXVI) କିନ୍ତୁ ପ୍ରତ୍ୟକ୍ଷଭାବେ ହେଉ କିମ୍ବା ପରୋକ୍ଷଭାବେ ହେଉ, ଓଡ଼ିଆ ଭାଷା ଉପରେ ପର୍ତ୍ତୁଗୀଜ୍ ପ୍ରଭାବ ଏକାନ୍ତ ଲକ୍ଷଣୀୟ ।

ଓଡ଼ିଆ ଉପରେ ପର୍ତ୍ତୁଗୀଜ୍ ପ୍ରଭାବର ପରିମାଣ ସଠିକ୍‌ଭାବରେ ନିରୂପିତ ହୋଇପାରି ନାହିଁ । Dalgado (୧୯୧୩) ମାତ୍ର ୩୦ଟି ଓ Campos (୧୯୧୯) ମାତ୍ର ୩୪ଟି ଶବ୍ଦର ତାଲିକା ପ୍ରଦାନ କରିଛନ୍ତି । ପୁଣି ଏହି ତାଲିକାରୁ ୩/୪ଟି ଶବ୍ଦର ପ୍ରକୃତରେ ଓଡ଼ିଶାରେ ପ୍ରଚଳନ ନାହିଁ । ଓଡ଼ିଆ ଅଭିଧାନ ସଂକଳକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଗୋପାଳଚନ୍ଦ୍ର

ପ୍ରହରାଜ ଅଧିକାଂଶ ପର୍ତ୍ତୁଗୀଜ୍ ଶବ୍ଦକୁ ଯାବନିକ ଓ ଇଂରାଜୀ ଶବ୍ଦଭାବରେ କିମ୍ବା ତଦ୍ଭବ ଓ ଦେଶୀ ଶବ୍ଦଭାବରେ ଗ୍ରହଣ କରିବାଦ୍ୱାରା ମାତ୍ର ଅଳ୍ପସଂଖ୍ୟକ ପର୍ତ୍ତୁଗୀଜ୍ ଶବ୍ଦ ନିରୂପଣ କରିଯାଇଛନ୍ତି । ଗୋପୀନାଥ ନନ୍ଦଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ରେ ପର୍ତ୍ତୁଗୀଜ୍ ଶବ୍ଦମାନଙ୍କର ପରିଚୟ କ୍ୱଚିତ୍ ମିଳିପାରେ । 'ପ୍ରମୋଦ ଅଭିଧାନ'ରେ ମଧ ସେହି ଅବସ୍ଥା । ଆଧୁନିକ ସମୟରେ ପ୍ରକାଶ ପାଉଥିବା ସଂକ୍ଷିପ୍ତ ଅଭିଧାନମାନଙ୍କରେ ବରଂ କେତେକ ଶବ୍ଦ ପରିଦୃଷ୍ଟ ହୁଏ । ଅନ୍ୟ ପକ୍ଷରେ, ଓଡ଼ିଆ ଭାଷାର ଆଲୋଚକମାନେ ମଧ ପର୍ତ୍ତୁଗୀଜ୍ ପ୍ରଭାବସମ୍ପର୍କରେ ନୀରବ । ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱରେ ବିଦେଶୀ ପ୍ରଭାବ ବିଚାରପ୍ରସଙ୍ଗରେ କେବଳ ଦ୍ରାବିଡ଼ପ୍ରଭାବ ଆଲୋଚିତ ହୋଇଛି । ବିନାୟକ ମିଶ୍ରଙ୍କ 'ଓଡ଼ିଆ ଭାଷା ଇତିହାସ'ରେ କେବଳ ଯାବନିକ ଓ ଇଂରାଜୀ ପ୍ରଭାବ ଦର୍ଶିତ ହୋଇଛି । ସୁଖର କଥା, ୧୯୨୧ରେ ପ୍ରକାଶିତ ମୃତ୍ୟୁଞ୍ଜୟ ରଥଙ୍କ 'ଓଡ଼ିଆ ରଚନା ଓ ଅନୁବାଦ' ପୁସ୍ତକରେ, ପନ୍ଦରଟି ପର୍ତ୍ତୁଗୀଜ୍ ଶବ୍ଦର ତାଲିକା ପ୍ରଦତ୍ତ ହୋଇଛି । ଫକୀରମୋହନଙ୍କ ରଚନାରେ ବହୁ ପର୍ତ୍ତୁଗୀଜ୍ ଶବ୍ଦ ବ୍ୟବହୃତ ହୋଇଥିଲେ ମଧ, ଅଧାପକ ସିଦ୍ଧେଶ୍ୱର ହୋତା ଫକୀରମୋହନଙ୍କ ଭାଷାବିଭବ ଆଲୋଚନାରେ ('ଫକୀରମୋହନ ପରିକ୍ରମା') ମାତ୍ର ଚାରୋଟି ଶବ୍ଦର ଉଲ୍ଲେଖ କରିଛନ୍ତି; କିନ୍ତୁ ବାସ୍ତବିକ ଓଡ଼ିଆ ଭାଷାରେ ଶତାଧିକ ପର୍ତ୍ତୁଗୀଜ୍ ଶବ୍ଦ ଗୃହୀତ ହୋଇଛି ।

ଓଡ଼ିଆରେ ପ୍ରଚଳିତ ଖାଣ୍ଟି ପର୍ତ୍ତୁଗୀଜ୍ ଶବ୍ଦମାନଙ୍କୁ ଚିହ୍ନିବା କଷ୍ଟସାଧ ବ୍ୟାପାର ନୁହେଁ । କାରଣ ମୂଳଶବ୍ଦ ପ୍ରାୟ ଅବିକୃତଭାବେ ଗୃହୀତ ହୋଇଥିବାର ଦେଖାଯାଏ । ସ୍ଥଳବିଶେଷରେ ଅବଶ୍ୟ ଆଞ୍ଚଳିକ ଧ୍ୱନିତତ୍ତ୍ୱରେ ତାରତମ୍ୟ ହେତୁ ଏବଂ ଲୋକନିରୁକ୍ତି (folk entymology) ହେତୁ ସାମାନ୍ୟ ପରିବର୍ତ୍ତନ ଲକ୍ଷଣୀୟ । ଯଥା- Igreja-ଗୀର୍ଜା, Prego-ପିରିକ, Cintra-ସନ୍ତରା । ଇଂରାଜୀ ଭାଷାପରି ଆମ ଭାଷାର ରୂପତତ୍ତ୍ୱ (morphology) ଉପରେ ଏହାର ପ୍ରଭାବ କିଛି ନାହିଁ । ପର୍ତ୍ତୁଗୀଜ୍‌ମାନଙ୍କର ଆଗମନ ସଙ୍ଗେ ସଙ୍ଗେ ଯେଉଁ କେତେକ ନୂତନ ବ୍ୟବହାର୍ଯ୍ୟ ପଦାର୍ଥ, ଖାଦ୍ୟପେୟ, ବେଶଭୂଷା ବୃକ୍ଷଲତା ଓ ଆଚାର-ଅନୁଷ୍ଠାନ ବିଶେଷର ଆବିର୍ଭାବ ହେଲା ସେସବୁର ନାମ ମୁଖ୍ୟତଃ ଓଡ଼ିଆ ଶବ୍ଦ ଭଣ୍ଡାରରେ ସଞ୍ଚିତ ହୋଇଛି । ଏତଦ୍‌ବ୍ୟତୀତ ଆଉ କେତେକ ଜାହାଜାଦି ଶବ୍ଦ (nautical) ଗୃହୀତ ହୋଇଛି । ତଥାପି ଅନେକ ସମୟରେ ପର୍ତ୍ତୁଗୀଜ ଶବ୍ଦ ନିରୂପଣ କରିବାରେ ପ୍ରତିବନ୍ଧକ ପରିଦୃଷ୍ଟ ହୋଇଥାଏ; ତା'ର ପ୍ରଥମ କାରଣ କେତେକ ଶବ୍ଦ ମୂଳତଃ ପର୍ତ୍ତୁଗୀଜ୍ ହେଲେ ମଧ ତାହା ଇଂରାଜୀ ବା ଯାବନିକ ଭାଷା ମାଧମରେ ଗୃହୀତ ଏବଂ ଅପରକାରଣ କେତେକ ଶବ୍ଦ ମୂଳତଃ ପର୍ତ୍ତୁଗୀଜ୍ ନ ହେଲେ ମଧ ଏହି ଭାଷା ମାଧମରେ ସୁପ୍ରଚାରିତ । ଏଠାରେ ଦୃଷ୍ଟାନ୍ତ ଦେଇ ଏପରି କେତେକ ସମସ୍ୟାର ଚିତ୍ରଣ କରାଯାଉଛି । ପର୍ତ୍ତୁଗୀଜ୍ ଶବ୍ଦ calafate ଓ pato ଓଡ଼ିଆରେ କଳାପାତି ଓ ପାତିହଂସ ଭାବରେ ଗୃହୀତ ବୋଲି Dalgado ତଥା Campos ଉଲ୍ଲେଖ କରିଛନ୍ତି; କିନ୍ତୁ କଳାପାତି କୃଷ୍ଣପତ୍ରୀ ଶବ୍ଦଜ ଏବଂ Colfatae ଜାହାଜରେ ଫାଟ ବନ୍ଦ କରିବାପାଇଁ ପୁଟ ଦେବା ଅର୍ଥରେ ବ୍ୟବହୃତ ହେଉଥିବାରୁ ଉଭୟ

ଶବ୍ଦ ମଧ୍ୟରେ ଧ୍ୱନିଗତ ସାଦୃଶ୍ୟ ଥିଲେ ମଧ୍ୟ ଅର୍ଥ ସାଦୃଶ୍ୟ ନାହିଁ । ସେପରି Pato ର ପ୍ରତିଶବ୍ଦ ପାତିହଂସର-ପାତି ଅଂଶଟି କ୍ଷୁଦ୍ରାର୍ଥକ ଦେଶୀ ଶବ୍ଦ । ଏହାର ବ୍ୟବହାର ପାତିମାଙ୍କଡ଼, ପାତିଶିଆଳୀ, ପାତିମୁହିଁ ଇତ୍ୟାଦି ଶବ୍ଦ ରୂପରେ ମିଳେ । Botelha, capitao, loalha, bomba କିମ୍ବା bottle, captain, towel, bomb ଯଥାକ୍ରମେ ବୋତଲ, କାପ୍ତାନ, ତଉଲିଆ ଓ ବୋମା ଶବ୍ଦର ମୂଳ, ତାହା ନିରୂପଣ କରିବାରେ ସଂଶୟ ଜାତ ହୁଏ । ସେପରି ଜୁଲାପ, ମୋଜା, ମସ୍ତୁର, ମାଲ ଆଦି ଶବ୍ଦର ମୂଳ ଫରାସୀ, ଆରବୀ କିମ୍ବା ପର୍ତ୍ତୁଗୀଜ୍ ଓ କେଉଁ ଭାଷା ମାଧ୍ୟମରେ ଏହି ଶବ୍ଦଗୁଡ଼ିକ ଓଡ଼ିଶାରେ ପ୍ରସାର ଲାଭକଲା ତାହା ଠିକ୍‌ଭାବେ ନିରୂପିତ ହୋଇପାରେ ନାହିଁ । ପୁଣି ଚା, କଫି, ତମାଖୁ ଭାରତରେ ପ୍ରଥମେ କେଉଁମାନଙ୍କ ଦ୍ୱାରା ପରିଚିତ ହେଲା ତାହା ଏବେ ସୁଦ୍ଧା ସିଦ୍ଧାନ୍ତ ହୋଇପାରି ନାହିଁ । ଏହି ସମସ୍ତ ପ୍ରତିବନ୍ଧକସତ୍ତ୍ୱେ ଯେଉଁ କେତେକ ଶବ୍ଦ ପର୍ତ୍ତୁଗୀଜ୍-ମୌଳିକ ଭାବରେ ଭାଷାବିଦ୍‌ମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି ଏବଂ ଏ ଦିଗରେ ଓଡ଼ିଆରେ ପ୍ରଚଳିତ ଅଛି ସେହିପରି ଶବ୍ଦଗୁଡ଼ିକର ସାମାନ୍ୟ ପରିଚୟ ପ୍ରଦାନ କରାଗଲା ।

**ଶବ୍ଦ-ସୂଚୀ -**

ଟିପ୍ପଣୀ : ଶବ୍ଦ ସଂଗ୍ରହ ପାଇଁ ସହାୟକ ଗ୍ରନ୍ଥ- (୧) 'Influence of Portuguse Vocables in Asiatic Languages'-monsignor Sebastia Rodolfo Dalgada, Translated, by A. X. Soares, Oriental Institute, Baroda, 1963 ସଂକ୍ଷିପ୍ତନାମ IPVAL, (୨) 'History of the Portuguese in Bengal'-J.J.A Campos, Calcutta, 1919 (୩) 'ବଙ୍ଗେ ପର୍ତ୍ତୁଗୀଜ୍ ପ୍ରଭାବ ଓ ବଙ୍ଗଭାଷାୟ ପର୍ତ୍ତୁଗୀଜ-ପଦାଙ୍କ'-ଅବିନାଶ-ଚନ୍ଦ୍ର ଘୋଷ, ବଙ୍ଗୀୟ ସାହିତ୍ୟ ପରିଷଦ୍ ପତ୍ରିକା, ସ୍ନ ୧୩୧୮, ୧ମ ସଂଖ୍ୟା (୪) 'Origin and Development of the Bengali Language'-Dr. S.K. Chatterji part I Calcutta University Press, 1962 (୫) 'ଭାଷାର ଇତିବୃତ୍ତ' - ସୁକୁମାର ସେନ, ବର୍ଦ୍ଧମାନ ସାହିତ୍ୟ ସଭା, ୧୯୫୦ (୬) 'ହିନ୍ଦୀ ଭାଷାକା ଇତିହାସ'-ଧୀରେନ୍ଦ୍ର ବର୍ମା, ହିନ୍ଦୁସ୍ଥାନ ଏକାଡ଼େମୀ ୧୯୫୩ (୭) 'Bengali Grammar-Manoel Da Assumpcam', Translated by Dr. S.K. Chatterji & P.R.Sen, Calcatta University Press, 1931 (୮) 'ଫକୀରମୋହନ ଗ୍ରନ୍ଥାବଳୀ', କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୫୭ (୯) 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'- ସଂକ୍ଷିପ୍ତ ନାମ-ଭା:କୋ: (୧୦) 'A Portuguese English Dictionary'-James L. Taylor' Stanford University Press, 1958.

ଓଡ଼ିଆରେ ଭାଷାକୋଷ ଏକ ମାନ୍ୟ ଅଭିଧାନ ଗ୍ରନ୍ଥ, ତେଣୁ ଶବ୍ଦ ସୂଚୀରେ ଭାଷାକୋଷକାରଙ୍କ ମନ୍ତବ୍ୟମାନ ଆବଶ୍ୟକ ସ୍ଥଳରେ ଉଦ୍ଧାର କରାଯାଇଛି । ପର୍ତ୍ତୁଗୀଜ୍ ଶବ୍ଦର ଇଂରାଜୀ ଅର୍ଥ ପ୍ରଧାନତଃ IPVAL ରୁ ଗୃହୀତ; କିନ୍ତୁ ସଂଶୟାତ୍ମକ ସ୍ଥଳରେ Taylor ଙ୍କ ଅଭିଧାନରୁ ଉଦ୍ଧୃତି ଦିଆଯାଇଛି ।

ଅକ୍ଷରାନୁକ୍ରମରେ ଓଡ଼ିଆ ଶବ୍ଦ ସଜ୍ଜିତ ଏବଂ ପାର୍ଶ୍ୱରେ ଇଂରାଜୀ ବଡ଼ ଅକ୍ଷରରେ ପର୍ତ୍ତୁଗୀଜ୍ ଶବ୍ଦ ଓ ବନ୍ଧନୀ ମଧ୍ୟରେ ଇଂରାଜୀ ଅର୍ଥ ପ୍ରଦତ୍ତ ହୋଇଛି ।

୧) ଆଚାର- ACHAR (Pickles) ସମ୍ଭବତଃ ମୂଳ ଶବ୍ଦଟି ଫରାସୀ; କିନ୍ତୁ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଗୃହୀତ ଓ ପ୍ରଚାରିତ । ସ୍ମରଣୀୟ, ଏମାନେ ଅତ୍ୟନ୍ତ ଆଚାରପ୍ରିୟ ଓ ନାନାପ୍ରକାରର ଆଚାର ପ୍ରସ୍ତୁତ କରିବାରେ ଦକ୍ଷ ଥିଲେ । ଭା.କୋ. ସଂ. ଆଚାମ ମୂଳଶବ୍ଦ ।

୨) ଆତ- ATA (Custard apple) ଅନେକ ମତରେ ଆତ ଏକ ଭାରତୀୟ ଫଳ ଏବଂ ସଂସ୍କୃତ ନାମ-ଆତ୍ରପ୍ୟ; କିନ୍ତୁ ଏହା ସ୍ୱୀକାର୍ଯ୍ୟ ଯେ ଅନେକ ଅଭାରତୀୟ ପଦାର୍ଥ ନିମିତ୍ତ ପରବର୍ତ୍ତୀକାଳରେ ସଂସ୍କୃତ ନାମ ସୃଷ୍ଟ ହୋଇଥିଲା । ଉଦ୍ୟାନପ୍ରିୟ ପର୍ତ୍ତୁଗୀଜ୍ ଜାତି ଅନେକ ନୂତନ ଫଳ ଓ ପୁଷ୍ପ ବୃକ୍ଷପରି ଆତ ଏ ଦେଶକୁ ଆଣିଥିବା ଅସମ୍ଭବ ନୁହେଁ ।

୩) ଅନାରସ- ANANAS (Pineapple) ଆମେରିକାରୁ ଆନୀତ, ବ୍ରାଜିଲରେ ଏହାର ନାମ ନାନା ।

୩ କ) ଆବୋଉ- AVO (grandmother) କେବଳ ଖ୍ରୀଷ୍ଟାନ୍ ସମାଜରେ ଚଳେ । ଭା.କୋ., ବାଲେଶ୍ୱର ଓ ବାକୀ ଅଞ୍ଚଳର କରଣଙ୍କ ଗୋଷ୍ଠୀରେ ପ୍ରଚଳିତ । ଖୁଡ଼ି, ଦେଠେଇ ଅର୍ଥରେ ପ୍ରୟୋଗ ହୁଏ ।

୪) ଆୟା- AIA (dry-nurse) ଫାରସୀ ଆରବୀ 'ଦାୟା' ତୁଳନୀୟ । ଭା.କୋ. ଦେଶଜ ଶବ୍ଦ ଏବଂ ଇଂରାଜୀରେ ଏବେ ଗୃହୀତ ।

୫) ଆଲକାତରା- ALCATRAI (tar) ଶବ୍ଦଟି ଆରବୀ; କିନ୍ତୁ ପର୍ତ୍ତୁଗୀଜ୍ ଦ୍ୱାରା ଏ ଦେଶରେ ପ୍ରଚାରିତ ।

୬) ଆଲପିନ୍- ALFINETE (Pin) ଭା. କୋ. ଆରବୀ ପିନ୍ ଓ ଇଂରାଜୀ wall pin ର ସମନ୍ୱୟ, କିନ୍ତୁ ଶବ୍ଦଟି ପ୍ରକୃତରେ ପର୍ତ୍ତୁଗୀଜ୍ ।

୭) ଆଲମାରି- ARMARIO (cupboard)

୮) ଇସ୍ତ୍ରି- ESTIRAS/ESTICAR (Ironing) ପର୍ତ୍ତୁଗୀଜ୍ ଶବ୍ଦଟିର ସାଧାରଣ ଅର୍ଥ ପ୍ରସାରଣ ବା ବିସ୍ତାର କରିବା । ଏହା ଇସ୍ତ୍ରି ଶବ୍ଦର ମୂଳ ବୋଲି ଅନୁମିତ ହୁଏ ।

୯) ଇସ୍ପାତ- ESPADA (sword) ପର୍ତ୍ତୁଗୀଜ୍ ଖଣ୍ଡାର ସୁନାମ ଅନୁସାରେ ଶକ୍ତଲୁହା ଅର୍ଥରେ ଇସ୍ପାତ ଶବ୍ଦର ପ୍ରଚଳନ ହୋଇଛି ।

୧୦) ଇଂରେଜ- INGRES (English)

୧୧) ଏରିଆ- ARREAR (to ease off a rope) ଜାହାଜାତି ଶବ୍ଦ, ସାଧାରଣତଃ ଅନୁଜ୍ଞାରେ ବ୍ୟବହୃତ । ମାଝି ବା କାପ୍ତାନ ନଙ୍ଗର ଉଠାଇବାପାଇଁ ଏହି ଶବ୍ଦ ଉଚ୍ଚାରଣ କରି ନିର୍ଦ୍ଦେଶ ଦିଅନ୍ତି । ଦ୍ରଷ୍ଟବ୍ୟ- ଫକୀରମୋହନଙ୍କ "କମଳାପ୍ରସାଦ ଗୋରାପ ।"

୧୨) ଓଲନ୍ଦାଜ- HALLANDEZ (Dutch)

୧୩) କଡ଼ାବିନ୍- CARABINA (Carabine) ପର୍ତ୍ତୁଗୀଜ୍ ଜଳଦସ୍ୟୁମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ଏକପ୍ରକାର କ୍ଷୁଦ୍ର ବନ୍ଧୁକ ।
ଦ୍ରଷ୍ଟବ୍ୟ- ଫକୀରମୋହନଙ୍କ "କାଳିପ୍ରସାଦ ଗୋରାପ ।" ଭା.- କୋ. ତୁର୍କୀ ଶବ୍ଦ- କରାବିନ୍ ।

୧୪) କଫି- CAFE (coffe) ଶବ୍ଦଟି ଭାରତକୁ କିପରି ଆସିଲା କହିବା ଖୁବ୍ ଶକ୍ତ । ଅନେକ ମନେକରନ୍ତି ଆରବୀ-କହ୍‌ୱା (ମଦ) ମୂଳ । ଭା.କୋ. ତୁର୍କୀ ଶବ୍ଦର ଇଂରାଜୀ ରୂପ ।

୧୫) କଳାପାତି- CALAFATE (caulker) ଆଖିର କଜଳପାଇଁ ବ୍ୟବହୃତ ପାତ୍ରୀ ଅର୍ଥରେ କଳାପାତି ଶବ୍ଦ ଚଳେ, ମାତ୍ର ତାହା ତଦ୍ଭବ ଶବ୍ଦ । ଜାହାଜର ଫାଟ ବନ୍ଦ କରିବାପାଇଁ ପିଚ୍, ପୁଟିନ୍, ତରଳ ଝୁଣା ଢାଳିବା ଅର୍ଥରେ ଯେଉଁ କଳାପିଠିଆ ଶବ୍ଦର ବ୍ୟବହାର ଫକୀରମୋହନ କରିଛନ୍ତି (ବାଲେଶ୍ୱରୀ ପଙ୍ଗାଲୁଣ) ତା'ର ମୂଳ ପର୍ତ୍ତୁଗୀଜ୍ । ଭା. କୋ. ଏହି ବିଶିଷ୍ଟ ଅର୍ଥଟି ମଧ୍ୟ ଗୃହୀତ ।

୧୬) କାକତୁଆ- CATATUA (Parrot) ମାଲୟ ଭାଷାରେ କାକତୁଆ । ଭା. କୋ. କାକା ଯୁକ୍ତ ଫାରସୀ ତୋତା ଶବ୍ଦଟିର ମୂଳ ।

୧୭) କାଜ- CASA (button-hole) ଦରଜୀମାନଙ୍କ ଦ୍ୱାରା କେବଳ ବ୍ୟବହୃତ । ଭା. କୋ. ଫାରସୀ ।

୧୮) କାଜୁ- CAJU (Casheed-nut) ଦେଶୀଭାଷାରେ ଲଙ୍କାଆମ୍ବ, ବାଜାଆମ୍ବ, ହିଜିଲୀ ବାଦାମ ନାମରେ ପରିଚିତ ।

୧୯) କାନେସ୍ତରା- CANASTRA (Canister) ଭା. କୋ. ମୂଳ ଶବ୍ଦ ଇଂରାଜୀ ।

୨୦) କାପ୍ତାନ- CAPITAO (coptain) ସାମରିକ ଶବ୍ଦଟିର ମୂଳ ଇଂରାଜୀ ହୋଇପାରେ; କିନ୍ତୁ ଜାହାଜାତି ଶବ୍ଦଟିର ମୂଳ ପର୍ତ୍ତୁଗୀଜ୍ ।

୨୧) କାଫ୍‌ଲା- ACAFELAR (to Plaster) ଶବ୍ଦଟିର ଭାରତୀୟ ପର୍ତ୍ତୁଗୀଜ୍ ରୂପ କାଫଲା । ଶବ୍ଦଟି ଓଡ଼ିଆରେ ଅପ୍ରଚଳିତ । କଟକର କାଫଲା ବଜାର ମୂଳତଃ ଏକ ରାଜମିସ୍ତ୍ରୀ ବସ୍ତି ଅଥବା ତୀର୍ଥଯାତ୍ରୀଙ୍କ ଆଶ୍ରୟସ୍ଥଳ (ଆରବୀ କାଫିଲା-ତୀର୍ଥଯାତ୍ରୀ ଦଳ) ଥିଲା । ଜଣା ନ ଗଲେ ଶବ୍ଦଟି ପର୍ତ୍ତୁଗୀଜ୍ କି ଆରବୀ ସ୍ଥିର କରିବା ସଂଶୟପୂର୍ଣ୍ଣ ।

୨୨) କାବାର- ACABAR (to finish) ଶବ୍ଦଟିର ଭାରତୀୟ-ପର୍ତ୍ତୁଗୀଜ୍ ରୂପ କାବାର । ବିଶେଷତଃ ତାସ ଖେଳରେ ଏବଂ ମାସକ ବାର ଇତ୍ୟାଦି ବ୍ୟବହାରରେ ଶବ୍ଦଟି ପରିଦୃଷ୍ଟ ହୁଏ ଭା: କୋ: ଆରବୀ ।

୨୩) କାମରା- CAMARA (Room)

୨୪) କାମିଜ- Camisa (shirt)

୨୫) କିରାଣୀ- CARRANE (clerk) ମୂଳଅର୍ଥ ସମୁଦ୍ରଯାତ୍ରା ସମୟରେ ଜାହାଜର ମାଲପତ୍ର ଓ ବ୍ୟବସାୟ କାରବାର ଦାୟିତ୍ୱରେ ଥିବା ବ୍ୟକ୍ତି । ଶବ୍ଦଟିର ଇଂରାଜୀ ଭାରତୀୟ ରୂପ Cranny, ଅର୍ଥ ଇଂରାଜୀ ଜ୍ଞାନ ସମ୍ପନ୍ନ ଭାରତୀୟ ଲେଖନକାର । ପୂର୍ବେ ଫିରିଙ୍ଗି ବା ୟୁରୋପୀୟ ଅର୍ଥରେ ମଧ ଶବ୍ଦଟି ବ୍ୟବହୃତ ହେଉଥିଲା । ତେଣୁ ଶବ୍ଦଟିର ମୂଳ - Christian- ବୋଲି ଅନୁମାନ କରାଯାଇଥାଏ । ଲେଖନକାର ଅର୍ଥରେ ଭାରତୀୟ କରଣ-ଶବ୍ଦରୁ କିରାଣୀ ଆସିଥିବାର ସମ୍ଭାବନା ଅଛି । ଇଂରେଜମାନେ ଇଂରାଜୀ ଭାଷାଭିଜ୍ଞ ଦେଶୀ ଖ୍ରୀଷ୍ଟାନ୍ ସମାଜରୁ ଲେଖନକାର ରଖୁଥିଲେ, କାରଣ ହିନ୍ଦୁମାନେ ଇଂରାଜୀ ଶିକ୍ଷା କରୁ ନ ଥିଲେ କିମ୍ବା ଇଂରେଜମାନଙ୍କ ଅଧୀନରେ ଭୃତ୍ୟ ହେବାକୁ ଧର୍ମଭୟରେ କୁଣ୍ଠିତ ହେଉଥିଲେ । ତେଣୁ ହିନ୍ଦୁମାନେ ସେହି ଲେଖନକାରମାନଙ୍କୁ 'କରଣ' ନ କହି ତୁଚ୍ଛାର୍ଥରେ କିରାଣୀରୂପେ ଅଖ୍ୟାତ କରୁଥିଲେ । ଶବ୍ଦଟି କ୍ରମେ ଅର୍ଥ-ସମ୍ପ୍ରସାରଣ ବଳରେ ଖ୍ରୀଷ୍ଟିଆନ୍ ଅର୍ଥରେ ଓ ପରେ ସମସ୍ତ ୟୁରୋପୀୟ ଅର୍ଥରେ ପ୍ରଯୁକ୍ତ ହୋଇଥିଲା । ଅନ୍ୟ ପକ୍ଷରେ ଶବ୍ଦଟି ପର୍ତ୍ତୁଗୀଜ୍ ବୋଲି ଯୁକ୍ତି କରାଯାଏ । ଭାଷାତତ୍ତ୍ୱବିଦ୍ ଅଧ୍ୟାପକ ଡା. ଶିବାନାଥଙ୍କ ଆଲୋଚନା ଏ ସ୍ଥଳରେ ଉଲ୍ଲେଖନୀୟ - ପର୍ତ୍ତୁଗୀଜ୍ ଭାଷାରେ ESCRIVAO ର ଅର୍ଥ କ୍ଲର୍କ । ଏହି ଶବ୍ଦରେ ଲଘୁତାବୋଧକ- ENTE- ପ୍ରତ୍ୟୟ ସଂଯୁକ୍ତ କରି ESCREVENTE ଶବ୍ଦର ପ୍ରୟୋଗ ପରିଦୃଷ୍ଟ ହୁଏ । କିରାଣୀ ଶବ୍ଦଟି ଏଥିରୁ ହିଁ ନିଷ୍ପନ୍ନ । (ନାଗରୀପ୍ରଚାରିଣୀ ପତ୍ରିକା, ବର୍ଷ-୬୬), ଅଙ୍କ-୨-୪, ପୃଷ୍ଠା-୩, ୬,) ଭା. କୋ. ଏସ୍କ୍ରୋଭେନ୍ତୀ ମୂଳ ।

୨୬) କିରିଚ- CRIS (bayonet) ଶବ୍ଦଟିର ମୂଳ ମାଳୟ - KR.S । ବଙ୍କାଛୁରୀ, ସଙ୍ଗୀନ୍ ଅର୍ଥରେ ପ୍ରୟୋଗ ହୁଏ ।

୨୭) କେଦାରା- CADEIRA (chair) ଓଡ଼ିଶାରେ ବ୍ୟାପକ ବ୍ୟବହାର ନାହିଁ, କେବଳ ବଙ୍ଗୀୟ ସମାଜରେ ଚଳେ ।

୨୮) କୋବି- COUVE (Cabbage)

୨୯) କ୍ରୁଶ- CRUZ (cross) ଭା.କୋ. ଇଂରାଜୀ ମୂଳ, କିନ୍ତୁ ଧ୍ୱନି ବିଚାରରୁ ଏବଂ ପର୍ତ୍ତୁଗୀଜ୍ ପାଦ୍ରୀମାନେ ପ୍ରଥମ ପ୍ରଚାରକ ହେତୁରୁ ପର୍ତ୍ତୁଗୀଜ୍-ମୂଳ ସମ୍ଭାବ୍ୟ ।

୩୦) ଗରନାଳ- GRANADA (grenade) ଭା.କୋ. ଦେଶୀ ।

୩୧) ଗାମଲା- GAMELA (wooden bowl, porringer) ଓଡ଼ିଶାରେ ଏକ ବିଶେଷ ଆକୃତିର ତମ୍ବାପାତ୍ର ଅର୍ଥରେ ବ୍ୟବହୃତ । ବିକଳ୍ପରେ ଗାଗୁଲା, ଗଙ୍ଗାଳ ।

୩୨) ଗାରଦ- GRADE (grating, railing) ଭା.କୋ. ଇଂରାଜୀ ଗାର୍ଡ଼ ଶବ୍ଦ ମୂଳ ।

୩୩) ଗୀର୍ଜା- IGREJA (church)

୩୪) ଗୁଦୁଡ଼ି- ଭା.କୋ., ପର୍ତ୍ତୁଗୀଜ୍ ଗୋଦରୀସ୍ ମୂଳ । କନ୍ଥା ଅର୍ଥରେ ଏହାର ବ୍ୟବହାର ବାଲେଶ୍ୱର ଅଞ୍ଚଳରେ ପ୍ରଚଳିତ ।

୩୫) ଗୋଦାମ- GUDANO (Ware-house) ଏହା ଭାରତୀୟ ପର୍ତ୍ତୁଗୀଜ୍ ଶବ୍ଦ । ଭା.କୋ ଇଂରାଜୀ ଗୋଡ଼ାଉନ୍ ମୂଳ । Taylor ଙ୍କ ଅଭିଧାନରେ ଶବ୍ଦଟି ନାହିଁ ।

୩୬) ଗୋରାପ- GAROPO (a kind of Sailing Vessel from Malasia-IPVAL) ଭା.କୋ. ଦେଶୀ ।

୩୭) ଚା CHA (tea) ଶବ୍ଦଟି ଚୀନ୍ ଦେଶୀୟ ପର୍ତ୍ତୁଗୀଜ୍‌ମାନେ ଶବ୍ଦଟିର ପ୍ରଚଳନ ଭାରତରେ ଆରମ୍ଭ କରିଥିବା ସମ୍ଭବ ।

IPVAL ରେ ପ୍ରଦତ୍ତ ବିସ୍ତୃତ ଆଲୋଚନାରୁ ଏହାର ସୂଚନା ମିଳେ ।

୩୮) ଚାବି- CHAVE, key

୩୯) ଚୂଆ- COA (liquid that is strained) ଭା.କୋ., ସଂସ୍କୃତ ଚ୍ୟୁ = କ୍ଷରିତ ହେବା ମୂଳ, ଭାରତରେ ଚୁଆର ବ୍ୟବହାର ପ୍ରାଚୀନ କାଳରୁ ଅଛି ତେଣୁ ପର୍ତ୍ତୁଗୀଜ୍ ମୂଳ ସଂଶୟାତ୍ମକ ।

୪୦) ଛାପା- CHAP (Seal, impression, Print etc, ଛାପା ଶବ୍ଦଟି ଭାରତୀୟ, କିନ୍ତୁ ମୁଦ୍ରଣ ଅର୍ଥରେ ଏହାର ପ୍ରୟୋଗ ପର୍ତ୍ତୁଗୀଜ୍ ଶବ୍ଦଟି ସହ ସମ୍ପର୍କାନ୍ୱିତ କରେ । ପର୍ତ୍ତୁଗୀଜ୍‌ମାନେ ପ୍ରଥମେ ଛାପା କାର୍ଯ୍ୟ ଏ ଦେଶରେ ଆରମ୍ଭ କରିଥିଲେ ଖ୍ରୀ. ୧୫୭୭ରେ ପାଦ୍ରୀ Joannes Gonsalves ତାମିଲ ଅକ୍ଷରରେ ପ୍ରଥମେ ଛାପା ଆରମ୍ଭ କରିଥିଲେ । Linguistic Survey of India-vol-IV, Page-301) ଶ୍ରୀରାମପୁରରେ ଛାପାଖାନା ବସିବା ପୂର୍ବରୁ ଖ୍ରୀ. ୧୭୭୮ରେ Nathaniel Brassey Halhed ହୁଗୁଳିଠାରେ ଛାପା କାର୍ଯ୍ୟ ଆରମ୍ଭ କରିଥିଲେ । ତେଣୁ ମନେହୁଏ ଏହି ବିଶେଷ ଅର୍ଥରେ ଛାପା ଶବ୍ଦଟି ପର୍ତ୍ତୁଗୀଜ୍ ।

୪୧) ଜନା- ZEAMAYS (maize) ମକ୍‌କା । ଆଦିବାସୀ ଓ କୋରାପୁଟ ଭାଷାରେ ଜନା । ଚର୍ଯାଗୀତିରେ ଶବରୀପାଦ ଜହ୍ନା ଶବ୍ଦର ପ୍ରୟୋଗ କରିଛନ୍ତି । ସୁତରାଂ Campos ଙ୍କର ମନ୍ତବ୍ୟ- "9+10 probable That this important Plant was introduced in India by the Portuguese" (ପୃ.-୨୫୮) ଭିତ୍ତିହୀନ । ଏହା ଏକ ଦେଶୀ ଶବ୍ଦ ବା ସଂସ୍କୃତ ଜାବନାଳ ଶବ୍ଦ ।

୪୨) ଜାନଲା- JANELA (window)

୪୩) ଜାଫ୍ରାନ୍- A.CAFRAO (saffron) ଭାରତୀୟ-ପର୍ତ୍ତୁଗୀଜ୍ ରୂପ ସାଫ୍ରାନ୍ । ଏହା ଦକ୍ଷିଣ ଇଉରୋପରୁ ଏ ଦେଶକୁ ଆନୀତ । ଭା.କୋ. ଆରବୀ ଜାଫରାନ୍ ମୂଳ ।

୪୪) ଜୁଆ- JOGAR (game of chance gambling) ମୂଳ ସଂସ୍କୃତ-ଦ୍ୟୁତ ଓ ପ୍ରାକୃତ ଜୂଅ । ତାସ ପଟରେ ଜୁଆଖେଳର ପ୍ରଚଳତା ପର୍ତ୍ତୁଗୀଜ୍‌ମାନଙ୍କର ଆଗମନ

ପରେ ଦେଖାଯାଇଥିଲା । ତେଣୁ ଶବ୍ଦଟି ପର୍ତ୍ତୁଗୀଜ୍-ମୂଳ ବୋଲି ଅନୁମାନ କରାଯାଏ ।

୪୫) ଜୁଲାପ- JALAP (Purgative) ମେକ୍ସିକୋର Xalapa ନଗରୀ ନାମାନୁସାରେ ବୃକ୍ଷର ନାମ ପର୍ତ୍ତୁଗୀଜ୍‌ମାନେ ପ୍ରଦାନ କରିଛନ୍ତି । ଭା.କୋ. ଆରବୀ ଫରାସୀ ଶବ୍ଦ, ଗୁଲାବ ଶବ୍ଦ ମୂଳ, କିନ୍ତୁ ବିରେଚକ ଅର୍ଥରେ ଓଡ଼ିଆରେ ଜୁଲାପର ପ୍ରୟୋଗ ପର୍ତ୍ତୁଗୀଜ୍-ମୌଳିକ ।

୪୬) ଟାଙ୍କି- TANQUE (Gistern, reservoir) ଭା.କୋ. ଇଂରାଜୀ ଟାଙ୍କ୍ ମୂଳ ।

୪୭) ଡିଙ୍ଗା- ALFANDEGA (Custom house) ୟୁରୋପୀୟ ବଣିକ ବସତିମାନ ଡିଙ୍ଗା ନାମରେ ପରିଚିତ । ଯଥା- ଫରାସୀ ଡିଙ୍ଗା, ଓଲନ୍ଦାଜ ଡିଙ୍ଗା ଇତ୍ୟାଦି । ଭା.କୋ. ଶବ୍ଦଟିର ମୂଳ ସମ୍ପର୍କରେ ସୂଚନା ନାହିଁ ।

୪୮) ତଉଲିଆ- TOALHA (Towel) ଅନେକ ପଦାର୍ଥ ଠିକ୍ ଇଂରେଜ ବା ପର୍ତ୍ତୁଗୀଜ୍ କିଏ ପ୍ରଥମେ ଏ ଦେଶରେ ପ୍ରଚଳନ କଲେ ନିର୍ଣ୍ଣୟ କରିବା କଷ୍ଟକର । ସୁନୀତି କୁମାର ଚାଟର୍ଜୀ ପ୍ରମୁଖ ଭାଷାବିଦ୍‌ଗଣ ଏ ସ୍ଥଳେ ପର୍ତ୍ତୁଗୀଜ୍ ଶବ୍ଦକୁ ମୂଳରୂପେ ଗ୍ରହଣ କରିଛନ୍ତି । O.D.B.L.S. 371, page-681)

୪୯) ତମାଖୁ- TABACO (Tobacco) ମେକ୍ସିକୋ ଦେଶରୁ ଏହା ପ୍ରଥମେ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଆମଦାନୀ ହୋଇଥିଲା । ଧୂଆଁ ପତ୍ର ନାମରେ ଆମ ଦେଶରେ ବୋଧହୁଏ ପୂର୍ବରୁ ଥିଲା । କାରଣ ପର୍ତ୍ତୁଗୀଜ୍ ଭାଷାଦ୍ୱାରା ବହୁ ପରିମାଣରେ ପ୍ରଭାବିତ କୋଙ୍କଣୀ ଭାଷାରେ ଏହିପରି ନାମରେ ତମାଖୁ ପରିଚିତ । ସଂସ୍କୃତ ତାମ୍ରକୂଟ ଶବ୍ଦ କିନ୍ତୁ ଅର୍ବାଚୀନ ।

୫୦) ତସଲା- TIGELA (Shallow earthen pot to boil rice, small bowl) ବଙ୍ଗଳାରେ ତିଜେଲ । ଭା.କୋ. ଫରାସୀ ତସ୍ତ ଯୁକ୍ତ ଉର୍ଦ୍ଦୁ-ଲା, ଶବ୍ଦଟି ଉର୍ଦ୍ଦୁ ।

୫୧) ତୁରୁଙ୍ଗ- TRONCO (Prison, gowl) ଭା.କୋ. ମୂଳ ଶବ୍ଦ ଇଂରାଜୀ ଟ୍ରଙ୍କ୍, ଅର୍ଥ-ଅପରାଧୀର ଗୋଡ଼ହାତକୁ କାଠ ମଧ୍ୟସ୍ଥ ଛିଦ୍ରରେ ଠୁଙ୍କି ବନ୍ଦକରି ରଖିବା ଯନ୍ତ୍ରବିଶେଷ । ମରାଠୀ, ଗୁଜୁରାଟୀରେ ତୁରୁଙ୍ଗ ପ୍ରଚଳିତ ।

୫୨) ତୁରୁପ- TURUFO (trump) ତାସଖେଳ ବିଷୟକ ବହୁ ଶବ୍ଦ ଓଲନ୍ଦାଜ ଭାଷାରୁ ଗୃହୀତ ହୋଇଥିଲେ ମଧ୍ୟ କାବାର, ତୁରୁପ ଆଦି ଶବ୍ଦ ପର୍ତ୍ତୁଗୀଜ୍‌ରୁ ଆନୀତ । ତାସଖେଳବିଷୟକ ଆଉ କେତେକ ଶବ୍ଦ ବଙ୍ଗଳାରେ ମିଳେ, ଯଥା- କୋରେଣ୍ଡା ପ୍ରମାରା ।

୫୩- ତେଲାଣି- TALHA (large earthen ware jug or pot) ବଙ୍ଗଳାରେ ତୋଲୋ (ହାଣ୍ଡି); ତଲୁୟା (ଜଳ, ତୈଳ ରଖିବା ବୃହତ୍ ମାଟି ପାତ୍ର) ପର୍ତ୍ତୁଗୀଜ୍ ଶବ୍ଦ ଭାବରେ ସ୍ୱୀକୃତ । ଓଡ଼ିଆ ଶବ୍ଦ ତେଲାଣି, ତେଲାଉଣି, ତଲୁଆଣି ଦେଶୀ

ଶବ୍ଦଭାବରେ ଗୃହୀତ ହେଲେ ମଧ୍ୟ ଏ ସ୍ଥଳରେ ବିଚାର୍ଯ୍ୟ ।

୫୪) ନୀଳ- Anil (Indigo) ସଂସ୍କୃତ ନୀଳ ଶବ୍ଦ ମୂଳ । Campos ଲେମ୍ବୁ, ଜନାପରି ଏ ଶବ୍ଦଟି ପର୍ତ୍ତୁଗୀଜ୍ ପ୍ରଦତ୍ତ ବୋଲି କହିଛନ୍ତି । Watt ତାଙ୍କର The Dictionary of the Economical Products of India ଗ୍ରନ୍ଥରେ ଲେଖିଛନ୍ତି ଯେ- "It nowhere exists in a wild state in Indial and was probably introduced during the period of Portuguese ascendacy in the western and Southern Presidencies."

୫୫) ନିଲାମ- LEILAO (auction sale) ଭା.କୋ. ଆରବୀ ମୂଳ, କିନ୍ତୁ ପ୍ରକୃତରେ ପର୍ତ୍ତୁଗୀଜ୍‌ମାନଙ୍କର ଆଗମନ ପରେ ଯେଉଁ କେତେକ ନୂତନ ଅନୁଷ୍ଠାନ ଓ ରୀତି ପରିଦୃଷ୍ଟ ହେଲା, ନିଲାମଦ୍ୱାରା ବିକ୍ରୟ କରିବା ତହିଁରେ ଅନ୍ୟତମ । ସେମାନେ ପ୍ରାୟ ତାଙ୍କର ବାଣିଜ୍ୟକେନ୍ଦ୍ରମାନଙ୍କରେ ନିଲାମ ଡାକୁଥିଲେ ଓ ଲଟେରୀ କରୁଥିଲେ (ଦ୍ରଷ୍ଟବ୍ୟ- ଅବିନାଶଚନ୍ଦ୍ର ଘୋଷ ବ. ସା. ପ. ପତ୍ରିକା)

୫୬) ନେଉଆ- ANONA (bullock's heart, Taylor-sugar apple) ବଙ୍ଗଳାରେ ନୋନା, ଆତର ସଗୋତ୍ରୀୟ ଏହି ଫଳ ଉଦ୍ୟାନପ୍ରିୟ ପର୍ତ୍ତୁଗୀଜ୍‌ମାନଙ୍କ ମାଧ୍ୟମରେ ଏ ଦେଶରେ ପରିଚିତ ।

୫୭) ପପେୟା- PAPAIA (papaw) ଏହି ଆମେରିକାନ୍ ଫଳ ପର୍ତ୍ତୁଗୀଜ୍‌ମାନେ ପ୍ରଥମେ ଏସିଆ ଓ ଆଫ୍ରିକା ମହାଦେଶକୁ ଆଣିଲେ । ଓଡ଼ିଶାର ଅମୃତଭଣ୍ଡା ନାମ ବିଶେଷ ପ୍ରଚଳିତ ।

୫୮) ପରାତ- PRATO (PLATE) ଧାତୁନିର୍ମିତ ବଡ଼ଥାଳୀ । ବଙ୍ଗଳା, ହିନ୍ଦୀ, ମରାଠୀ, କୋଙ୍କଣୀରେ ମଧ୍ୟ ପ୍ରଚଳିତ ।

୫୯) ପାଉଁରୁଟି- PAO (bread, loaf)

୬୦) ପାତିହଂସ- PATO (goose) ଭା.କୋ. ପାତି ଦେଶଜ ଓ କ୍ଷୁଦ୍ରାର୍ଥକ ପ୍ରତ୍ୟୟ । ଏହାର ମୂଳ ସଂସ୍କୃତ - ପତ୍ରୀ ବା ପତ୍ରକ । କେହି ମନେକରନ୍ତି ଆରବୀ bat ମୂଳ ଯାହା କ୍ଷୁଦ୍ରାର୍ଥରେ - ବତକ ହୁଏ । ଛୋଟ ହଂସ ଅର୍ଥରେ ପାତି ହଂସର ପ୍ରୟୋଗ ସମ୍ଭବତଃ ପର୍ତ୍ତୁଗୀଜ୍ ପ୍ରଭାବିତ ।

୬୧) ପାଦ୍ରୀ- PADRE (priest) ଏ ଦେଶରେ ଖ୍ରୀଷ୍ଟଧର୍ମର ଭିତ୍ତିସ୍ଥାପନ ପର୍ତ୍ତୁଗୀଜ୍ ପ୍ରଚାରକମାନେ କରିଥିବାରୁ ସେ ସମ୍ବନ୍ଧୀୟ ଅନେକ ପର୍ତ୍ତୁଗୀଜ୍ ଶବ୍ଦ ପରବର୍ତ୍ତୀ କାଳରେ ଆଉ ପରିତ୍ୟକ୍ତ ହୋଇ ପାରିନାହିଁ ।

୬୨) ପିମ୍ପ- PIPA (barrel, cal)

୬୩) ପିରକ୍- PREGO (NAIL) ଭା.କୋ. ଇଂରାଜୀ ପ୍ରିକ୍‌ମୂଳ ।

୬୪) ପିରିଚ- PIRES [saucer] ଛୋଟ ଥାଳିଆ । ହିନ୍ଦୀ-ପିରିଚ, ଆସାମୀ-ପିରିସ,

ବଙ୍ଗଳା-ପିରିଜ ତୁଳନୀୟ ।

୬୫) ପିସ୍ତଲ- PISTOLA (pistol) ଇଂରାଜୀ ବ୍ୟତୀତ ଡଚ୍ pistool ମଧ୍ୟ ମୂଳ ବୋଲି ଅନୁମାନ କରାଯାଏ । ପର୍ତ୍ତୁଗୀଜ୍ ବଣିକ ଦଳ ଅଗ୍ରଦୂତ ଥିବାରୁ ସେମାନଙ୍କଠାରୁ ଶବ୍ଦଟି ଗୃହୀତ ହୋଇଥିବା ଅସମ୍ଭବ ନୁହେଁ ।

୬୬) ପେଡ଼ା- PERA (guava) ବିକଳ୍ପରେ ପେଏଡ଼ା, ପେରା, ପିଜୁଳି । ଏହା ଏକ ଆମେରିକାନ୍ ଫଳ ଏବଂ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଆନୀତ ଓ ନାମିତ । ଭା.କୋ. ସଂସ୍କୃତ - ପାରେବତ । ଏହି ଶବ୍ଦଟି ନିଶ୍ଚୟ-ପରବର୍ତ୍ତୀକାଳୀନ ସୃଷ୍ଟି, ମୂଳଶବ୍ଦ ପେଡ଼ ।

୬୭) ପେରୁ- PERU (turkey) ଏକଜାତୀୟ କୁକୁଡ଼ାର ନାମ । ଓଡ଼ିଆରେ ଶବ୍ଦଟି ବର୍ତ୍ତମାନ ପ୍ରାୟ ଅପ୍ରଚଳିତ, କିନ୍ତୁ IPVAL, ଭା.କୋ ଓ Campos ଙ୍କ ବହିରୁ ଏହା ଓଡ଼ିଆରେ ପ୍ରଚଳିତ ଥିବା ଜଣାଯାଏ ।

୬୮) ଫଟକା- FOQUETE (cracker, firecrackers) ଭା.କୋ. ଦେଶୀ ଶବ୍ଦ, ଫଟ୍‌ଧ୍ୱନି ଅନୁସରଣରେ ନିଷ୍ପନ୍ନ । ଶବ୍ଦଟି କିନ୍ତୁ ଆସାମୀ, ହିନ୍ଦୀ, ତାମିଲ, ମାଲୟାଲାମ ଓ ତେଲୁଗୁରେ ମିଳେ । ତେଣୁ ପର୍ତ୍ତୁଗୀଜ୍ - ମୂଳ ସମ୍ଭାବ୍ୟ ।

୬୯) ଫର୍ମା- FORMA (form) Taylor-mould, appearance.

୭୦) ଫରାସୀ- FRANGES (French) ଅନ୍ୟାନ୍ୟ ବିଦେଶୀ ବଣିକମାନଙ୍କର ପରିଚୟ ପର୍ତ୍ତୁଗୀଜ୍‌ମାନଙ୍କଠାରୁ ଲାଭ କରିଥିବା ସମ୍ଭବ ।

୭୧) ଫିତା- FITA (ribbon)

୭୨) ଫୁଲୁରି- FUNIL (funnel) ସ୍ଥାନ-ବିଶେଷରେ ଫୁନ୍ଦଲ କୁହାଯାଏ ।

୭୩) ବଇଁଆ- BOIAO (a large mouthed jar-Taylor) ବମ୍, ବୟାମ ବୈକଳ୍ପିକ ନାମ । ଭା.କୋ ସଂ-ବହ୍ ଧାତୁ ନିଷ୍ପନ୍ନ ।

୭୪) ବଙ୍କଶାଳ- BANGACAL (warehouse, customs house) ଦ୍ରଷ୍ଟବ୍ୟ- ଫକୀର ମୋହନଙ୍କ "ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି" ଓ ଆତ୍ମଜୀବନୀ : ଅଙ୍ଗାଲ ସିଲାଇ ଓ ନିମକ-ମାହାଲ ।

୭୫) ବଟ- BATAO (difference in exchange) ବିକଳ୍ପରେ ବଟି । ଭା.କୋ. ସଂସ୍କୃତ 'ବାର୍ତ୍ତା' ମୂଳ । ବ୍ୟବସାୟ କାରବାରରେ ଶବ୍ଦଟି ବିଶେଷ ବ୍ୟବହୃତ ହେଉଥିବାରୁ ପର୍ତ୍ତୁଗୀଜ୍-ମୂଳ ହୋଇପାରେ IPVL-ହିନ୍ଦୁସ୍ଥାନୀ ବଟ୍ଟା ମୂଳ ।

୭୬) ବିତାଳି- BATEL (IIFE-BOAT) ଦ୍ରଷ୍ଟବ୍ୟ ଫକୀର ମୋହନଙ୍କ "କମଳା ପ୍ରସାଦ ଘୋରାପ ।"

୭୭) ବମ୍ବା- BOMBA (water-pump) ଭା.କୋ. ବମ୍ବର, ମୂଳ ସଂସ୍କୃତ ବିବର । ଶବ୍ଦଟି ଗଭୀର ଗର୍ତ୍ତ ଅର୍ଥରେ ବ୍ୟବହୃତ ହୁଏ ।

୭୮) ବୟାଁ- BOIA (BUOY)

୭୯) ବରଗା- VERGA (ROD, RAFTER) ଭା.କୋ. ସଂସ୍କୃତ 'ବର୍ଗ' ଓ ପର୍ତ୍ତୁଗୀଜ୍ 'ଭର୍ଗା' ଉଭୟ ନିର୍ଦ୍ଦେଶିତ ।

୮୦) ବଳଙ୍ଗ- BALAO (a species of rowing vessel) ବାଲେଶ୍ୱର ନିକଟରେ ପ୍ରବାହିତ ନଦୀର ନାମ ମୂଳରେ ଏ ଶବ୍ଦଟି ଅଛିକି ?

୮୧) ବାଇ- BAILADEIRA (dancing girl) ଭାରତୀୟ-ଇଂରାଜୀ ରୂପ- bayadere ଅନ୍ୟ ଏକ ପର୍ତ୍ତୁଗୀଜ୍ ଶବ୍ଦ Bailar (to dance) ଶବ୍ଦଟିର ମୂଳ । ଏହା ପର୍ତ୍ତୁଗୀଜ୍‌ରୁ ଗୃହୀତ କି ନୁହେଁ, କହିବା କଷ୍ଟକର । ଭା.କୋ. ବାଇ ଶବ୍ଦଟି ବୈଦେଶିକ ।

୮୨) ବାମ୍ଫ- BAFO (vapour) ଭା.କୋ.ସଂ. ବାଷ୍ପମୂଳ ।

୮୩) ବାରଣ୍ଡା- VARANDA (verandah) IPVAL ରେ ଶବ୍ଦଟି ସମ୍ପର୍କରେ ବିସ୍ତାରିତ ଆଲୋଚନା କରାଯାଇଛି ଓ ସଂସ୍କୃତ ବରଣ୍ଡ-ମୂଳ ଅସ୍ୱୀକୃତ ହୋଇଛି । ଭା.କୋ. ସଂ-ବରଣ୍ଡ, ବାରୁଣ୍ଡୀ, ମୂଳ ।

୮୪) ବାଲ୍‌ତି- BALDE (bucket)

୮୫) ବାସନ- BACIA (Plate, Taylor-basin, wash bowl) ଶବ୍ଦଟିର ମୂଳ ସଂସ୍କୃତ ବାସ+ଅନ କିମ୍ବା ଭାଜନ ବୋଲି ଅନୁମାନ କରାଯାଏ । IPVAL ରେ ଓ Campos ଙ୍କ ତାଲିକାରେ ଏହି ଶବ୍ଦଟି ପର୍ତ୍ତୁଗୀଜ୍‌ରୁ ଓଡ଼ିଆରେ ଗୃହୀତ ବୋଲି ଉଲ୍ଲେଖ ହୋଇଛି ।

୮୬) ବିନ୍ତି- VINITE (twenty) ତୁଳନୀୟ ସଂସ୍କୃତ-ବଂଶତି, ସ୍ପେନୀୟ-ବିନ୍ତେ । ବିନ୍ତିନାମକ ତାସ ଖେଳରେ ଏକପକ୍ଷ ବିନ୍ତି ଦେଖାଇଲେ ଅପରପକ୍ଷକୁ କୋଡ଼ିଏ ପୁଣ୍ଟା ଅଧିକ ଦେଖାଇବାକୁ ପଡ଼େ । ଖେଳର ନାମ 'ବିନ୍ତି' ଏହି ଦୃଷ୍ଟିରୁ ଦିଆଯାଇଛି ଖେଳଟି ପର୍ତ୍ତୁଗୀଜ୍‌ମାନେ ପ୍ରଚାର କରିଥିବା ସମ୍ଭବ ।

୮୭) ବିସ୍କୁଟ- Biscoito (biscuit) ଇଂରାଜୀ-ମୂଳ ହେବା ଅସମ୍ଭବ ନୁହେଁ । ତଥାପି ଭାଷାତତ୍ତ୍ୱବିଦ୍‌ଗଣ ପର୍ତ୍ତୁଗୀଜ୍ ଶବ୍ଦକୁ ମୂଳ ବୋଲି ଗ୍ରହଣ କରିଛନ୍ତି ।

୮୮) ବେହେଲା- VIOLA (violin) ପର୍ତ୍ତୁଗୀଜ୍‌ମାନେ ବେହେଲା ବାଦକ ଭାବରେ ଖୁବ୍ ବିଖ୍ୟାତ । ଆମଦେଶରେ ବେହେଲାର ପ୍ରଚଳନ ସେମାନେ କରିଥିଲେ । ଭା.କେ. ସଂ-ବଲ୍ଲକୀ ।

୮୯) ବୋତଲ- BOTELHA (bottle) ଭା.କୋ. ଇଂରାଜୀ ମୂଳ ।

୯୦) ବୋତାମ- BOTAO (button) ଭା.କୋ. ଇଂରାଜୀ ମୂଳ ।

୯୧) ବୋମା- BOMB (bomb) ଓଡ଼ିଶାରେ 'ବୋମ୍ବୋ' ମଧ୍ୟ କୁହାଯାଏ ।

୯୨) ବୋମ୍ବାଟିଆ- BOMBARDEIRO (Pirate) ଭା.କୋ. ଇଂରାଜୀ ବମ୍ବାର୍ଡ଼ିଆର

ମୂଳ ।

୯୩) ଭତା- BATA (ration) ସଂସ୍କୃତ ଭୃତି ମୂଳ; କିନ୍ତୁ allowance ଅର୍ଥରେ ଏହାର ପ୍ରୟୋଗ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା କରାଯାଇଥିଲା ଏବଂ ସେହି ଅର୍ଥରେ କେବଳ ଶବ୍ଦଟି ବର୍ତ୍ତମାନ ପ୍ରୟୋଗ ହେଉଛି ।

୯୪) ମଲାଇ- MALAO (Sauce, graxy) ମାଳୟ ଦେଶର ବିଶିଷ୍ଟ ଖାଦ୍ୟ ହେତୁ ଏପରି ନାମିତ, ସୁଖାଦ୍ୟ ପ୍ରିୟ ପର୍ତ୍ତୁଗୀଜ୍‌ମାନେ ଏହାର ବ୍ୟାପକ ପ୍ରଚାର କରିଥିବା ଅନୁମେୟ । ଭା.କୋ. ଫାରସୀ-ବଲାଇ ମୂଳ ।

୯୫) ମସ୍ତୁର- MOSTRA (Sample, pattern) ବିକଳ୍ପରେ ମୁସ୍ତର । ଭା.କୋ. ଦେଶଜ ।

୯୬) ମାର୍କା- MARCA (mark) ଭା.କୋ. ଇଂରାଜୀ ମୂଳ । ସୁକୁମାର ସେନପ୍ରମୁଖ ପର୍ତ୍ତୁଗୀଜ୍-ମୂଳ ସ୍ୱୀକାର କରିଛନ୍ତି ।

୯୭) ମାର୍ତେଲ- MARTELO (hammer) ବଡ଼ ହାତୁଡ଼ି ।

୯୮) ମାସ୍ତୁଲ- MASTRO (MAST)

୯୯) ମିସ୍ତୀ- MESTRE (master, expert) ଭା.କୋ. ଇଂରାଜୀ ମିଷ୍ଟର, ମାଷ୍ଟର ମୂଳ ।

୧୦୦) ମୁଡା- MURA (a measure-735 litres) ମାଲୟୀ-ମୁଡା । ଗୁଡ଼, ଆଖୁରସ ମାପରେ ଏହା ଏବେ ମଧ୍ୟ ବାଲେଶ୍ୱର ଜିଲ୍ଲାରେ ପ୍ରଚଳିତ । ଭା.କୋ. ସାନଢ଼ାଳ, ନୌଡା ଅର୍ଥରେ ଗଞ୍ଜାମ ଅଞ୍ଚଳରେ ଚଳେ । ଶବ୍ଦଟି ପ୍ରକୃତରେ ପର୍ତ୍ତୁଗୀଜ୍ କି ନୁହେଁ ନିର୍ଣ୍ଣୟ କରିବା କଷ୍ଟକର ।

୧୦୧) ମେଜ- MESA (table) ଭା.କୋ. ! ଫାରସୀ ।

୧୦୨) ମୋଜା- MFIA/MEIAS (sock) ତୁଳନୀୟ ତେଲୁଗୁ ମେଜୋଡ୍ଡୁ । ଭା.କୋ. ଫାରସୀ ।

୧୦୩) ଯୀଶୁ- JESU (Jesus) ଭା.କୋ. ଇଂରାଜୀ ମୂଳ ।

୧୦୪) ରସିଦ୍- REGIBO (receipt) ଫାରସୀରେ ପହଞ୍ଚିଛି ଅର୍ଥରେ ରସିଦ ଶବ୍ଦ ମିଳେ; କିନ୍ତୁ ବର୍ତ୍ତମାନ ପ୍ରଚଳିତ ଅର୍ଥରେ ରସିଦ ଶବ୍ଦର ମୂଳ ଇଂରାଜୀ କି ପର୍ତ୍ତୁଗୀଜ୍ ଠିକ୍ ନିର୍ଣ୍ଣୟ କରି ହେବନାହିଁ ।

୧୦୫) ରାମେଶ୍ୱ- ARMADA (a fleet of war vessel) ଆରମଦ, ହରମାଦ ଶବ୍ଦ ବଙ୍ଗଳାରେ ମିଳେ । ଦସ୍ୟୁ ଜାହାଜର ସୈନ୍ୟମାନଙ୍କୁ ଆରମାରି-ସିପାହୀ କୁହାଯାଉଥିଲା । ରାମେଶ୍ୱ ଏହି ଶବ୍ଦର ସଂକୋଚିତ ଓ ସଂଶ୍ଳିଷ୍ଟ ଧ୍ୱନି-ରୂପ ।

୧୦୬) ଲଡା- LATA (tin) ଲୁହା ଲଡା ଶବ୍ଦ ମଧ୍ୟରେ ଲଡା ସମ୍ଭବତଃ ଟିଣ ଅର୍ଥରେ ପ୍ରଯୁକ୍ତ ।

୧୦୭) ଶଙ୍ଖିଅ- ARSENICO (arsenic) ଏକ ପ୍ରକାର ବିଷ । ଭା.କୋ. ମୂଳ ସଂସ୍କୃତ-ଶଙ୍ଖବିଷ । ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱ ବୋଧରେ ସାରଳା ମହାଭାରତରେ ଶବ୍ଦଟିର ଉଲ୍ଲେଖ ଦର୍ଶାଇ ଦିଆଯାଇଛି । ଅନ୍ୟପକ୍ଷରେ ଏହି ଅର୍ଥରେ ବଙ୍ଗଳାରେ ପ୍ରଚଳିତ ସେଁକୋ ଶବ୍ଦର ମୂଳ ପର୍ତ୍ତୁଗୀଜ୍ ଶବ୍ଦଟି ବୋଲି ପ୍ରମାଣିତ । (O.D.B.L 355, PAGE-622)

୧୦୮) ସନ୍ତରା- CINTRA (orange, a type of) ପର୍ତ୍ତୁଗୀଜ୍ ସହର Santara ମୂଳ କି ଭୁଟନାର ପାହାଡ଼ିଆ ଗ୍ରାମ ସାନ୍ତାବାଡ଼ି ମୂଳ ଏ ସମ୍ପର୍କରେ ମତ ବିରୋଧ ଦେଖାଯାଏ । ଓଡ଼ିଆରେ ସନ୍ତରା ଅପେକ୍ଷଶ ସିଲେଟ୍ କମଳା ନାମଟି ସୁପରିଚିତ ।

୧୦୯) ସପେଟା- ZAPOTA (sapote) ଏହା ମେକ୍ସିକୋ ଦେଶୀୟ ଫଳଗଛ । ପର୍ତ୍ତୁଗୀଜ୍‌ମାନେ ଭାରତରେ ପ୍ରଚାର କରିଥିଲେ । ଭା.କୋ. ! ଇଂରାଜୀ ମୂଳ ।

୧୧୦) ସାଗୁ- SAGU (Sagu flour) ମାଲୟରୁ ପର୍ତ୍ତୁଗୀଜ୍‌ମାନେ ଗ୍ରହଣ କରି ପରେ ଭାରତରେ ପ୍ରଚାର କରିଥିଲେ ।

୧୧୧) ସାଙ୍ଗଡ଼- JANGADA (a raft two boats lashed together) Taylor- "a raft, esp, a very seaworthy kind of Catamaran used by fisherman off the coast of north eastern Brazil (The typical jangada consist of 5 extraordinarily light tibuourbou logs lashed together)" ତାମିଲ, କଙ୍କଣୀ, ମରାଠୀରେ ଶବ୍ଦଟି ପ୍ରଚଳିତ । ଫକୀରମୋହନ "କାଳିପ୍ରସାଦ ଗୋରାପ"ରେ ଏହା ପ୍ରୟୋଗ କରିଛନ୍ତି ଏହାର ମୂଳ ସଂସ୍କୃତ-ସଂଗ୍ରହ ବୋଲି କେହି କେହି ସ୍ଥିର କରନ୍ତି । ଭା.କୋ. ସଂ-ସଂଘାଟ ମୂଳ । ପ୍ରକୃତରେ ଶବ୍ଦଟି ଓଡ଼ିଆରେ ଅନ୍ୟ ଅର୍ଥରେ ମଧ୍ୟ ଚଳେ - ହଳ ବଳଦ ସଙ୍ଗାଡ଼ିବା । ତେବେ ଜାହାଜାଦି ଅର୍ଥରେ ଶବ୍ଦଟି ପର୍ତ୍ତୁଗୀଜ୍‌ମାନଙ୍କଠାରୁ ଗୃହୀତ ହୋଇଥାଇ ପାରେ ।

୧୧୨) ସାବୁନ- SABAO (soap)

୧୧୩) ସାୟା- SAIA (petticoat, skirt)

୧୧୪) ସାଲସା- SALSA (sauce, salsaparilla) Taylor-Commen Parsley : Condiment.

୧୧୫) ସୁରତି- SORTE (lottery Coupon) *Taylor-fate, destiny* - ଲଟରୀ ଅର୍ଥରେ ଏହି ଶବ୍ଦଟି ପୂର୍ବରୁ ଚଳୁଥିଲା ଏବଂ ପର୍ତ୍ତୁଗୀଜ୍‌ମାନେ ଏପ୍ରକାର ଅନୁଷ୍ଠାନର ସ୍ରଷ୍ଟା ଥିଲେ ।

୧୧୬) ସୁଲୁପ- CHALUPA (sloop) ବିକଳ୍ପରେ ଶ୍ଳୋପା (ଫକୀରମୋହନ-ବାଲେଶ୍ୱର ପଙ୍ଗାଲୁଣ) ଭା.କୋ. ଇଂରେଜୀ ମୂଳ ।

ଶବ୍ଦ-ସୂଚୀରେ ଉଲ୍ଲିଖିତ ୧୧୭ ଶବ୍ଦ ମଧ୍ୟରୁ ପ୍ରାୟ ୮୦ଶବ୍ଦ ନିଃସନ୍ଦେହରେ

ପର୍ତ୍ତୁଗୀଜ୍ ଭାଷାରୁ ଗୃହୀତ; ଅବଶିଷ୍ଟ ଶବ୍ଦ ସମୂହର ମୂଳ ସଂଶୟାତ୍ମକ । ଏହି ତାଲିକା ଆଦୌ ସମ୍ପୂର୍ଣ୍ଣ ନୁହେଁ । ପୁଣି ନୂତନ ଉପାଦାନ ବଳରେ ଅଧିକ ଶବ୍ଦ ସଂଗୃହୀତ ହେବାର ସମସ୍ତ ସମ୍ଭାବନା ରହିଛି ବିଶେଷତଃ ପର୍ତ୍ତୁଗୀଜ୍‌ମାନେ ବିଚକ୍ଷଣ ପାଚକ ଓ ଅତ୍ୟନ୍ତ ଉଦ୍ୟାନପ୍ରିୟ ଥିବାରୁ ଏତଦ୍‌ସମ୍ପର୍କୀୟ ଅଧିକ ଶବ୍ଦ ମିଳିପାରେ । ଅବିନାଶ ଚନ୍ଦ୍ର ଘୋଷ..... ଲେଖିଛନ୍ତି ଯେ ସୂର୍ଯ୍ୟମୁଖୀ, ରଜନୀଗନ୍ଧା, ଗେଣ୍ଡୁ, ପୀତ କରବୀ, ଚିଳ.... ତୁଳସୀ, ନାନାପ୍ରକାରର ଆମ୍ବ ଓ ଲେମ୍ବୁ ପର୍ତ୍ତୁଗୀଜ୍‌ମାନେ ପାଶ୍ଚାତ୍ୟଦେଶରୁ ଆଣି ଆମ ଦେଶରେ ଉଦ୍ୟାନ ବାଟିକାସବୁ ସମୃଦ୍ଧ ଓ ସୁନ୍ଦର କରିଥିଲେ । ପର୍ତ୍ତୁଗୀଜ୍ ରାନ୍ଧଣାର ବୈଶିଷ୍ଟ୍ୟ ରକମାରି ଖାଦ୍ୟର ନାମ ପ୍ରସ୍ତୁତ ଶବ୍ଦ-ସୂଚୀରେ ଆଦୌ ନାହିଁ । ତେଣୁ ଏପରି ଶବ୍ଦ ମିଳିବା ଏକାନ୍ତ ସମ୍ଭବ । ସେପରି ଆଉ କିଛି ଜାହାଜାତି ଶବ୍ଦ ମିଳିବାର ଆଶା ରହିଛି । ଫକୀରମୋହନ ଲେଖିଯାଇଛନ୍ତି– "ପର୍ତ୍ତୁଗୀଜ୍ ବଣିକ୍‌ଦଳ ବିଲୟପ୍ରାପ୍ତି ଆମ୍ଭମାନଙ୍କର ସୌଭାଗ୍ୟର ବିଷୟ ବୋଲିବାକୁ ହେବ । ଏପରି ଅସଚ୍ଚରିତ୍ର ଜାତି ସହିତ ଦୀର୍ଘକାଳ ସଂସର୍ଗରେ ଯେ ନିତାନ୍ତ ଅଶୁଭ ଫଳ ଲାଭ ହୋଇଥାନ୍ତା, ଏକଥାର ପ୍ରମାଣ ନିମନ୍ତେ ବାକ୍ୟବ୍ୟୟ ଅନାବଶ୍ୟକ ।" ('ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି') ଧର୍ମ ଓ ସମାଜଭିତ୍ତିକ ଆଲୋଚନାରେ ଏପରି ମନ୍ତବ୍ୟ ସ୍ପୃହଣୀୟ ହୋଇପାରେ, ମାତ୍ର ଭାଷା ବିଚାରରେ ଏହାର କୌଣସି ସମୀଚୀନତା ନାହିଁ । ବିଦେଶରେ ବାଣିଜ୍ୟ କରି ଦେଶର ସମ୍ପତ୍ତି ପରିବର୍ଦ୍ଧନ କରିବାପରି ବିଦେଶୀ ଭାଷାରୁ ଆହରଣ କରିବା ବଡ଼ ଲାଭଜନକ । ଓଡ଼ିଆ ଶବ୍ଦ ଭଣ୍ଡାରର ସମୃଦ୍ଧି ନିମିତ୍ତ ପର୍ତ୍ତୁଗୀଜ୍‌ମାନଙ୍କର ଅବଦାନ ଚିରସ୍ମରଣୀୟ ।



৪১

# ଭାଷା-କ୍ଷମତାର ବିଶ୍ଳେଷଣ

## ଚୌଧୁରୀ ହେମକାନ୍ତ ମିଶ୍ର

ଭାଷା କ୍ଷମତା ବିଷୟରେ ଏବେ ପୃଥିବୀସାରା ବିଜ୍ଞ ମହଲରେ ଆଲୋଡ଼ନ ଦେଖିବାକୁ ମିଳୁଛି । ଭାଷାତତ୍ତ୍ୱବିଦ୍, ମନୋବିଜ୍ଞାନୀ, ଶିକ୍ଷାବିତ୍ ଆଜି ବିଭିନ୍ନ ଭାବରେ ଭାଷା କ୍ଷମତାର ସଂଜ୍ଞା ନିରୂପଣ କରିଛନ୍ତି । ତାତ୍ତ୍ୱିକ ଦୃଷ୍ଟିରୁ ଭାଷାଗତ କ୍ଷମତା ଏବଂ ଭାଷାଗତ ଆଚରଣ ଏ ଦୁଇଟିକୁ ଅଲଗା କରି ଦେଖାଯାଉଛି । ଏଠାରେ ସେସବୁ ବିଷୟ ଆଲୋଚନା କରିବା ଆମର ଉଦ୍ଦେଶ୍ୟ ନୁହେଁ । କେତେକ ମୌଳିକ ବିଶ୍ଳେଷଣର ସୂଚନା ଏଠାରେ ଦିଆହେବ ଯେହେତୁ ପରୀକ୍ଷଣ ସମ୍ପର୍କରେ ତାହା ଗୁରୁତ୍ୱପୂର୍ଣ୍ଣ ।

ସାଧାରଣ ଜ୍ଞାନ ଭିତ୍ତିରେ କହିବାକୁ ଗଲେ ଭାଷାର ଦୁଇଟି ପ୍ରକାର ଅସ୍ତିତ୍ୱ ଦୃଷ୍ଟିଗୋଚର ହୁଏ - କଥିତ ଏବଂ ଲିଖିତ । ଏହି ସାମାନ୍ୟ ପାର୍ଥକ୍ୟଟିର ତାତ୍ପର୍ଯ୍ୟ ଶିକ୍ଷା ଓ ଶିକ୍ଷଣରେ ଅନେକ ବେଶି । ଆଗେ ଶିକ୍ଷଣ କାର୍ଯ୍ୟକ୍ରମରେ କଥିତ ଭାଷା ପ୍ରତି ଏତେଟା ଦୃଷ୍ଟି ଦିଆଯାଉ ନ ଥିଲା । ଛାତ୍ର ଆପେ ଆପେ ଯେତିକି ପାରୁଥିଲା କଥିତ ଭାଷା ଶିକ୍ଷା କରୁଥିଲା । ଭାଷା ଶିକ୍ଷଣର ସାମ୍ପ୍ରତିକ ଅବସ୍ଥାରେ କିନ୍ତୁ କଥିତ ଭାଷା ମଧ୍ୟ ଲିଖିତ ଭାଷା ପରି ଭାଷାଶିକ୍ଷାର ସୀମା ଭିତରକୁ ଆସିଯାଇଛି । ଆଧୁନିକ ଭାଷାତତ୍ତ୍ୱବିଦ କହନ୍ତି ଯେ, କଥିତ ଭାଷା ଉପରେ ଅଭିଆର ନ ରହିଲେ ଭାଷାଶିକ୍ଷଣ ଅସମ୍ପୂର୍ଣ୍ଣ ଏବଂ ଅନୁପଯୋଗୀ ରହିଯିବ । ଏହି ମତ ଏତେ ସହଜବୋଧ ଏବଂ ତ୍ରୁଟିହୀନ ଯେ କାହାରିକୁ ଏହା ବୁଝାଇ କହିବା ଦରକାର ନାହିଁ; ଅଥଚ କ୍ଷୋଭର ବିଷୟ ଏହି ଯେ ସାଧାରଣ ଭାଷାଶିକ୍ଷଣର ପାଠ୍ୟଲିପି (ସିଲାବସ୍) ମଧ୍ୟରେ ଏହାର ଏତେଟା ପ୍ରୟୋଗ ଦେଖିବାକୁ ମିଳେନାହିଁ ।

**ବନ୍ଧନ ଓ ମୋକ୍ଷଣ ପ୍ରକ୍ରିୟା :**

କଥିତ ଓ ଲିଖିତ ଉଭୟ ଭାଷାରୂପରେ ଦୁଇଟି ଭାଷାତାତ୍ତ୍ୱିକ ବିଭାବ ନିହିତ ରହିଛି- (୧) ବନ୍ଧନ ଓ (୨) ମୋକ୍ଷଣ ପ୍ରକ୍ରିୟା । ଏହି ଦୁଇ ପ୍ରକ୍ରିୟା ପରସ୍ପର ପରିପୂରକ ଏବଂ ସମାନ୍ତର । କହିବା ଓ ଲେଖିବା ଦ୍ୱାରା ଆମ୍ଭେମାନେ ନିଜର ମନୋଭାବକୁ ବ୍ୟକ୍ତ କରିବାକୁ ଯାଇ କୌଣସି ନା କୌଣସି ଭାଷା ଦ୍ୱାରା ତାକୁ ବାନ୍ଧିଦେଉ ଏବଂ ଶୁଣିବା ବା ପଢ଼ିବା ଦ୍ୱାରା ସେହି ଭାଷାକୁ "ବୁଝିବା" ସକାଶେ ତାହାର ସଙ୍କେତକୁ "ମୁକ୍ତ" କରୁ । ଉଦାହରଣସ୍ୱରୂପ,

ଜଣେ ନିଜର ବକ୍ତବ୍ୟକୁ 'ଶଣିଠାର' ଦ୍ୱାରା ପ୍ରକାଶ କରିପାରେ । ଏହା ବନ୍ଧନ ପ୍ରକ୍ରିୟା । ଯେ ଶୁଣୁଛି ବା ପଢୁଛି ସେ ଏହି ଠାରକୁ ପ୍ରଥମେ "ଫିଟାଇ" ସାଧାରଣ ଭାଷାରେ ପରିଣତ କରିବା ଦରକାର ହେବ । ଅର୍ଥାତ୍ ଏହିଠାରୁ ମୋକ୍ଷଣ ପ୍ରକ୍ରିୟା ଆରମ୍ଭ ହେବ । ବନ୍ଧନ ଏବଂ ମୋକ୍ଷଣ ପ୍ରକ୍ରିୟାଦ୍ୱାରା ଭାଷା ଏକ "ସମ୍ବାଦ" ବା "ସୃଜନୀ"ର ବାହକ ହୋଇପାରୁଛି ।

ଏହି ଦୃଷ୍ଟିରୁ ଭାଷା ମଧ୍ୟରେ ଚାରିଟି ମୁଖ୍ୟ କ୍ଷମତା କାର୍ଯ୍ୟ କରୁଛି ବୋଲି କୁହାଯାଇପାରେ, ଯଥା- ଶୁଣିବା, କହିବା, ପଢ଼ିବା ଓ ଲେଖିବା । ଲକ୍ଷ୍ୟ କରିବାର କଥା ଏହି ଯେ, ଠିକ୍ ଏହି କ୍ରମରେ ଭାଷାର ବିକାଶ ହେଉଥାଏ ଏବଂ ଶିକ୍ଷଣ ମଧ୍ୟ ସମ୍ଭବ ହୋଇଥାଏ । ସ୍ପଷ୍ଟତଃ ଏହି କ୍ଷମତାମାନ ମାତୃଭାଷା କ୍ଷେତ୍ରରେ ଏବଂ ଅନ୍ୟ ଭାଷା କ୍ଷେତ୍ରରେ ସମାନ ଭାବରେ କାର୍ଯ୍ୟକାରୀ ହୋଇଥାନ୍ତି । ଶିଶୁର ଭାଷା ବିକାଶ ଅନୁଧ୍ୟାନ କଲେ ଏହି ପରି କ୍ରମିକତା ସହଜରେ ଜଣାପଡ଼େ ।

**ଭାଷା କ୍ଷମତାର ମୌଳିକ ଆଧାର :**

ଉପର୍ଯ୍ୟୁକ୍ତ ଚାରିଟି ଭାଷାକ୍ଷମତା ମଧ୍ୟରେ ଅନ୍ତର୍ନିହିତ ଦୁଇଟି ମୁଖ୍ୟ ମୌଳିକ ଆଧାର ଦେଖିବାକୁ ମିଳିବ । ଏ ଦୁଇଟି ହେଲେ (କ) ଶବ୍ଦଭଣ୍ଡାର ଓ (ଖ) ବ୍ୟାକରଣ ବା ବ୍ୟାକରଣିକ ଗଠନ । ଏ ଦୁଇଟି ବ୍ୟତୀତ ଶୁଣିକରି ବୁଝିବା ଏବଂ କଥିତ ଭାଷା କହିବାର କ୍ଷମତାମାନ ନିର୍ଦ୍ଦିଷ୍ଟ ଭାଷାର ଧ୍ୱନି ସମୁଦାୟ (Phonology) ଉପରେ ନିର୍ଭରଶୀଳ । କେହି ଓଡ଼ିଆ ଶୁଣି ବୁଝିପାରିବ କି ନା, ତାହା ଓଡ଼ିଆର ଶବ୍ଦଭଣ୍ଡାର ଓ ବ୍ୟାକରଣ ଜ୍ଞାନ ଯେତିକି ଲୋଡ଼େ ଓଡ଼ିଆର ଧ୍ୱନି-ସମୁଦାୟ ଉପରେ ଦଖଲ ସେତିକି ଲୋଡ଼େ । ସେହିପରି ଲିଖିତ ଭାଷା କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଭାଷାର ଲିପିକତତ୍ତ୍ୱ (Orthography) ମଧ୍ୟ ଆପେ ଆସିଯାଏ । ଏହି କାରଣରୁ ଧ୍ୱନି ସମୁଦାୟ ଏବଂ ଲିପିକତତ୍ତ୍ୱକୁ ମଧ୍ୟ ମୌଳିକ ଆଧାର ରୂପେ ସ୍ୱୀକାର କରାଯିବ । ଏହି ଦୁଇ ଆଧାର ପରସ୍ପରର ପରିପୂରକ ଏବଂ ସମାନ୍ତର । ସର୍ବୋପରି, ଉପଯୁକ୍ତ ଭାଷାକ୍ଷମତାମାନଙ୍କର ଗତିବେଗ ବୋଧକୁ ମଧ୍ୟ ଆଧାରରୂପେ ଗ୍ରହଣ କରିବାକୁ ହେବ । ଗତିବେଗ ଭାଷାକ୍ଷେତ୍ରରେ ଅତି ଗୁରୁତ୍ୱପୂର୍ଣ୍ଣ । ଉଦାହରଣ ସ୍ୱରୂପ, ଜଣେ ଅଣଓଡ଼ିଆ ହୁଏତ ସାଧାରଣ ଓଡ଼ିଆକୁ ବୁଝିପାରିବ ନାହିଁ, ଅଥଚ ଖୁବ୍ ଧୀର ଗତିରେ କହିଲେ ବୁଝି ପାରୁଥିବ । ଏଣେ ସେ ନିଜେ ସାଧାରଣ ଗତିରେ ଓଡ଼ିଆ କହିପାରିବ ନାହିଁ, ଥଙ୍ଗେଇ ଥଙ୍ଗେଇ କହୁଥିବ । ଏପରି ଅବସ୍ଥାରେ ଜଣେ ଓଡ଼ିଆଭାଷୀ ସଙ୍ଗରେ କଥାବାର୍ତ୍ତା କରିବା ତା ପକ୍ଷରେ ଅତି ଦୁଷ୍କର ହୋଇପଡ଼ିବ । ସେହିପରି ଯେବେ ତା'ର ପଠନର ଗତିବେଗ କମ୍ ହୋଇଥାଏ, ସେ ନିଜର ଓଡ଼ିଆ ଜ୍ଞାନକୁ କାମରେ ଲଗାଇବା ପୂର୍ଣ୍ଣ ରୂପେ ସମ୍ଭବ ହେବନାହିଁ । ଛାତ୍ର ହୋଇଥିଲେ ବିଦ୍ୟାଳୟର ଦାବୀ ପୂରଣ କରିବା ତା ପକ୍ଷରେ ସମ୍ଭବ ହେବନାହିଁ । ସେହିପରି ଲେଖିବାର ଗତିବେଗ କମ୍ ହୋଇଥିଲେ ଓଡ଼ିଆ ଭାଷାକୁ ଲିଖିତ ଭାବରେ କାମରେ ଲଗାଇବା ତା ପକ୍ଷରେ କଠିନ ହେବ । ଏହିସବୁ ଉଦାହରଣରୁ ଆଧାର ଭାବରେ ଗତିବେଗର ଗୁରୁତ୍ୱ ବେଶ୍ ବୁଝିହେବ । ଗତିବେଗ ସଙ୍ଗେ ଅଙ୍ଗାଙ୍ଗି ଭାବରେ ଜଡ଼ିତ

ଥାଏ ଭାଷାର ପ୍ରବାହ । "ପ୍ରବାହ ବ୍ୟତିରେକେ ଗତିବେଗ ଅପୂର୍ଣ୍ଣ । ଆମର ବିଶ୍ଳେଷଣରେ ତେଣୁ ଏ ଦୁଇଟିକୁ ଏକତ୍ର ରଖାଯାଇଛି । (ନକ୍ସା ଦ୍ରଷ୍ଟବ୍ୟ)

ଭାଷା-କ୍ଷମତା ଓ ଆଧାରମାନଙ୍କର ନକ୍ସା

ଭାଷା-କ୍ଷମତା

| ଆଧାର | ଶୁଣିବା | କହିବା | ପଢ଼ିବା | ଲେଖିବା |
|---|---|---|---|---|
| ଧ୍ୱନି ସମୁଦାୟ ଓ ଲିପିକ ତତ୍ତ୍ୱ | | | | |
| ବ୍ୟାକରଣ ଗଠନ | | | | |
| ଶବ୍ଦଭଣ୍ଡାର | | | | |
| ଗତିବେଗ ଓ ପ୍ରବାହ | | | | |

ଉପର୍ଯ୍ୟୁକ୍ତ ବିଶ୍ଳେଷଣ Carollଙ୍କ ତତ୍ତ୍ୱ ଉପରେ ଭିତ୍ତିକରି Harris (୧୯୬୯) ରଚନା କରିଛନ୍ତି । ତାଙ୍କ କହିବାମତେ ଏହି ତାଲିକାର ବିବର୍ଦ୍ଧନ ଓ ପରିମାର୍ଜନ ସମ୍ଭବ, ଏବଂ କେବଳ ପ୍ରାରମ୍ଭିକ ହେଲେ ହେଁ ଭାଷା ପରୀକ୍ଷଣର ଯୋଜନାଲାଗି ପଥପ୍ରଦର୍ଶକ ହେବ ଏହି ଆଶାରେ ଏଠାରେ ପ୍ରଦତ୍ତ ହୋଇଛି । ପ୍ରଦର୍ଶିତ ନକ୍ସାକୁ ଭଲରୂପେ ପରୀକ୍ଷା କରି ଦେଖିଲେ ଜଣାଯିବ ଯେ ପ୍ରତ୍ୟେକ ଭାଷା କ୍ଷମତାର ବିଭିନ୍ନ ଆଧାର ଲାଗି ଭିନ୍ନ ଭିନ୍ନ ପରୀକ୍ଷଣ ପଦ୍ଧତି ଦରକାର । ବୋଲିବା ବାହୁଲ୍ୟ, ଏହିରୂପେ ଏକ ଉତ୍ତମ ଭାଷା ପରୀକ୍ଷଣ ସବୁତକ ଅଂଶ ବହନ କରିଥିଲେ ଯାଇ ପୂର୍ଣ୍ଣାଙ୍ଗ ହୋଇପାରିବ । ପୂର୍ଣ୍ଣାଙ୍ଗ ପରୀକ୍ଷଣ ଲାଗି ସର୍ବପ୍ରଥମେ ଭାଷା ଓ ନିହିତ କ୍ଷମତାଗୁଡ଼ିକର ବିଶଦ ବିଶ୍ଳେଷଣ ଦରକାର । ଏହି ବିଶ୍ଳେଷଣ ଅନୁସାରେ ପରୀକ୍ଷଣର ସୀମା ଓ ପଦ୍ଧତି ନିର୍ଦ୍ଧାରିତ ହେବା ପ୍ରୟୋଜନ । ଠିକ୍ ଏହି ରୀତିରେ ବିଶ୍ଳେଷଣ ଏକ ଉତ୍ତମ ଶିକ୍ଷଣ-କାର୍ଯ୍ୟକ୍ରମ ଲାଗି ମଧ୍ୟ ସ୍ପଷ୍ଟତଃ ପ୍ରୟୋଜନ ।

□□□

৪২

# ସାନ୍ତାଳୀ ଭାଷା ଓ ସଂସ୍କୃତି

## ସୀତାକାନ୍ତ ମହାପାତ୍ର

ସଂସ୍କୃତିର ସଂଜ୍ଞା, ସ୍ୱରୂପ ଓ ଗୁଣ-ନିର୍ଣ୍ଣୟରେ ଭାଷା ଓ ସାହିତ୍ୟର ଅବଦାନ ଅନସ୍ୱୀକାର୍ଯ୍ୟ । ବସ୍ତୁତଃ ଭାଷାର ସାମର୍ଥ୍ୟ, ଶକ୍ତି ଓ ସ୍ଥିତିସ୍ଥାପକତା ଦ୍ୱାରା ସାହିତ୍ୟର କୋଟି ବା ସ୍ତର ନିରୂପିତ, ନିୟନ୍ତ୍ରିତ ହୋଇଥାଏ ଏବଂ ସାହିତ୍ୟ ସଂସ୍କୃତିର ସର୍ବଶ୍ରେଷ୍ଠ-ବାହକ ଓ ପ୍ରତୀକ ହିସାବରେ ସଂସ୍କୃତିର ମୌଳିକ ଗୁଣାବଳୀକୁ ପ୍ରକାଶିତ ଓ ବିକଶିତ କରିଥାଏ ।

ଭାରତବର୍ଷରେ ବିଭିନ୍ନ ସଂଖ୍ୟାଲଘୁ ସଂସ୍କୃତିର ପୁନଃ ମୂଲ୍ୟାୟନ ସମାଜତାତ୍ତ୍ୱିକ ଓ ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ଏଯାବତ୍ ସୂଚାରୁ ରୂପେ ଆରମ୍ଭ ହୋଇପାରି ନାହିଁ । ବୃହତ୍ ଓ ଗୁରୁ ପରମ୍ପରା (Great Tradition) ଓ ଲଘୁ ବା କ୍ଷୁଦ୍ର ପରମ୍ପରା (Little Tradition) ନାମରେ ଚିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ଯେଉଁ ଥିଓରି ଦେଇଗଲେ, ଆମ ଦେଶର ସଂଖ୍ୟାଲଘୁ ସଂସ୍କୃତିର ବିଶ୍ଳେଷଣ ପାଇଁ ତାହା କେତେଦୂର ପ୍ରଯୁଜ୍ୟ, ସେ ସମ୍ପର୍କରେ ବିଶଦ ଆଲୋଚନାର ଆବଶ୍ୟକତା ରହିଛି । ହିନ୍ଦୁ ସଂସ୍କୃତି ଓ ଅଣହିନ୍ଦୁ ସାମାଜିକ ସଂସ୍କୃତିର ପାରସ୍ପରିକ କ୍ରିୟା-ପ୍ରତିକ୍ରିୟା ଏବଂ ହିନ୍ଦୁସମାଜ ମଧ୍ୟରେ ବିବର୍ତ୍ତିତ ହେଉଥିବା ବିବିଧ ସଂଖ୍ୟାଲଘୁ ସଂସ୍କୃତିର ମୂଳ ହିନ୍ଦୁ ସଂସ୍କୃତି ସହିତ ସମ୍ପର୍କ ଓ କ୍ରିୟା-ପ୍ରତିକ୍ରିୟା ଉପରେ ମଧ୍ୟ ବିଶେଷ କାମ ହୋଇପାରି ନାହିଁ । ଫଳତଃ ଗୁରୁତ୍ୱପୂର୍ଣ୍ଣ ଆଦିବାସୀ ସମାଜ ଓ ତା'ର ସଂସ୍କୃତି (ଯେମିତି ସାନ୍ତାଳ-ସଂସ୍କୃତି) ସହିତ ବୃହତ୍ତର ହିନ୍ଦୁ ସଂସ୍କୃତିର ସମ୍ପର୍କ ବିଷୟରେ ଆମେ ସମ୍ୟକ୍ ଅବିହିତ ନୋହୁଁ ।

ସାନ୍ତାଳୀ ସମାଜର ଲୋକସଂଖ୍ୟା ବର୍ତ୍ତମାନ ସମଗ୍ର ଭାରତରେ ପ୍ରାୟ ୪୫ ଲକ୍ଷ । ଗଣ୍ଡ ଓ ଭିଲ୍ ଆଦିବାସୀ ସମ୍ପ୍ରଦାୟ ସହିତ ଏହା ଅନ୍ୟତମ ବୃହତ୍ତର ଆଦିବାସୀ ସମ୍ପ୍ରଦାୟ । କିନ୍ତୁ ଗଣ୍ଡ ଓ ଭିଲ୍ ଏକ ପ୍ରାଚୀନ ବୃହତ୍ ପରମ୍ପରା ସମ୍ପର୍କରେ ଉଦାସୀନ ଓ ନୀରବ ଥିବାବେଳେ ସାନ୍ତାଳୀ ସମାଜ ଏତାଦୃଶ ସଂସ୍କୃତି ସମ୍ପର୍କରେ ଗଭୀର ଭାବେ ସଚେତନ । ଏ ଚେତନା ଯେ କେବଳ ସାନ୍ତାଳୀ ସମାଜର "ଏଲିଟ୍"ମାନଙ୍କ ଭିତରେ ସୀମାବଦ୍ଧ, ତା' ନୁହେଁ, ପରନ୍ତୁ ଏହା ସାମଗ୍ରିକ ଭାବରେ ସମାଜର ପ୍ରାୟ ପ୍ରତ୍ୟେକ ସ୍ତରରେ ଉପସ୍ଥିତ ।

ଐତିହାସିକ ମୂଲ୍ୟାୟନରେ ଏ ପ୍ରକାର "ବିଶ୍ୱାସ"ର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ସତ-ମିଛ କଥା ପରେ ଉଠେ । ସମାଜର ଦୃଢ଼ୀଭୂତ ବିଶ୍ୱାସ ନେଇ ତା'ର ମୂଲ୍ୟବୋଧ, ଅନ୍ୟ ସମାଜ ସହିତ ସମ୍ପର୍କ ନିୟନ୍ତ୍ରିତ ହୁଏ । ସାନ୍ତାଳୀ-ଭାଷା ସାନ୍ତାଳମାନଙ୍କର ପ୍ରାଚୀନ ଭାଷା । ସାନ୍ତାଳମାନେ ମୁଖ୍ୟତଃ ଉତ୍ତର-ଓଡ଼ିଶା (ବିଶେଷ କରି ମୟୂରଭଞ୍ଜ), ଦକ୍ଷିଣ ବିହାରର ଛୋଟନାଗପୁର ମାଳାଞ୍ଚଳ ଓ ପଶ୍ଚିମବଙ୍ଗର ପଶ୍ଚିମାଂଶରେ ବାସ କରନ୍ତି । ଭୌଗୋଳିକ ଦୃଷ୍ଟିକୋଣରୁ ଏ ଅଞ୍ଚଳ ଏକ ସାମଗ୍ରିକ ଅଞ୍ଚଳ; ମାତ୍ର ତିନୋଟି ପ୍ରଦେଶରେ ଅବସ୍ଥିତ ଓ ସେଇ ସମ୍ପୃକ୍ତ ଅଞ୍ଚଳର ସାନ୍ତାଳମାନେ ସେଇ ପ୍ରଦେଶର ଭାଷା ସାମାଜିକ ସମ୍ପର୍କରେ ବ୍ୟବହାର କରିବାକୁ ବାଧ ହୁଅନ୍ତି । ଅର୍ଥାତ୍ ଘରେ ସାନ୍ତାଳୀ-ଭାଷା ବାହାରେ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ଭାଷା । ତା'ସହିତ ବିଦ୍ୟାଳୟ ସ୍ତରରେ ସ୍ଥାନୀୟ ଲିପିରେ ପାଠପଢ଼ା ହେଉଥିବାରୁ ସାନ୍ତାଳୀ-ଭାଷାକୁ ମଧ ସେମାନେ ଓଡ଼ିଆ, ବଙ୍ଗଳା ଓ ଦେବନାଗରୀ ଲିପିରେ ଲେଖିଆଅନ୍ତି । ଏ ତିନୋଟି ବ୍ୟବହୃତ ଲିପି ସହ ଆଉ ଗୋଟିଏ ଲିପି ଯଥା ରୋମାନ୍ ଲିପି ମଧ ବ୍ୟବହୃତ ହୁଏ । ଜର୍ମାନ ଇଭାଞ୍ଜେଲିକାଲ ଲୁଥେରାନ୍ ଚର୍ଚ୍ଚର ପ୍ରଭାବରେ ଦକ୍ଷିଣ-ବିହାରରେ କେତେକ ସାନ୍ତାଳୀ-ଭାଷାଭାଷୀ ରୋମାନ୍ ଲିପି ମଧ ବ୍ୟବହାର କରନ୍ତି ।

ଏତାଦୃଶ ପରିସ୍ଥିତିରେ ଏକ ସାଧାରଣ ଭାବେ ଗୃହୀତ ଲିପିର ଆବଶ୍ୟକତା ଅନୁଭବ କରି ଶ୍ରୀ ରଘୁନାଥ ମୁର୍ମୁ ୧୯୩୫-୩୬ ବେଳକୁ ଗୋଟିଏ ଲିପି ଅଲ୍ ଚିକି ପ୍ରସ୍ତୁତ କରିଥିଲେ । ମୁର୍ମୁ ରାଇରଙ୍ଗପୁରର ଡାଣ୍ଡବୋସ୍ ଗାଁରେ ୧୯୦୫ ମସିହାରେ ଜନ୍ମଗ୍ରହଣ କରିଥିଲେ । କାର୍ପେଟ ତିଆରି, ବୁଣାବୁଣି କାମ, ଯନ୍ତ୍ରପାତି ମରାମତି, ଏ ସବୁଥିରେ ତାଙ୍କର ପାରଦର୍ଶିତା ଦେଖି ମୟୂରଭଞ୍ଜ ଷ୍ଟେଟ୍‌ର ଚିଫ୍ ଇଞ୍ଜିନିୟର ମିଃ. ୱେଲ୍ସ ଓ ଦେୱାନ ଡକ୍ଟର ପି.କେ. ସେନ୍ ତାଙ୍କୁ ଉତ୍ସାହିତ କରି କଲିକତାରେ ଟ୍ରେନିଂ ଦିଆଇଲେ । ତା' ପରେ ପରେ ସେ ପୂର୍ଣ୍ଣଚନ୍ଦ୍ର ଇଣ୍ଡଷ୍ଟ୍ରିଆଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଓ ବାଦାମତଳିଆ ମଡ଼େଲ୍ ସ୍କୁଲରେ ହେଡ୍‌ମାଷ୍ଟର ନିଯୁକ୍ତ ହେଲେ । ଏଇ ଶିକ୍ଷକତା ସମୟରେ ବହୁ ବନ୍ଧୁ, ହିତାକାଂକ୍ଷୀ ଓ ବିଶେଷକରି ସହନା ମୁର୍ମୁ ଏମାନଙ୍କ ସାହାଯ୍ୟ ନେଇ ସେ ଲିପିଟିଏ ପ୍ରସ୍ତୁତ କଲେ । ୧୯୩୯ରେ ମୟୂରଭଞ୍ଜ ପ୍ରଦର୍ଶନୀରେ ସେ ଏଇଟିକୁ ଦେଖାଇଲେ ଓ ପରେ ରାଜା ଶ୍ରୀ ପି.ସି. ଭଞ୍ଜଦେଓ ଯାକୁ ଦେଖି ଖୁବ୍ ଖୁସି ହୋଇ, ମୟୂରଭଞ୍ଜରେ ଏ ଲିପିର ପ୍ରଚଳନ ପାଇଁ ଅନୁମତି ଦେଲେ ।

ଏଇଠି କହି ରଖିବା ଉଚିତ ହେବ ଯେ, ଏ ବ୍ୟତୀତ ଘାଟଶିଳାର ରାମଦାସ ଟୁଡୁ ଓ ସିଲ୍‌ଦାର ରାମଚନ୍ଦ୍ର ମୁର୍ମୁ ମଧ ଆଉ ଦୁଇଟି ଲିପି ସାନ୍ତାଳୀ ଭାଷା ପାଇଁ ପ୍ରସ୍ତାବ କରିଥିଲେ । ତିନୋଟିଯାକ ଲିପି ବିଷୟରେ ସାନ୍ତାଳୀ ସମାଜରେ ବିଶଦ ଆଲୋଚନା ହୋଇ ମୁର୍ମୁଙ୍କ ଲିପି ହିଁ ଗୃହୀତ ହେଲା ।

ଏ ତିନିଜଣଯାକ ଲିପିଟି ଈଶ୍ୱରଦତ୍ତ ଓ ସେଥିରେ ନିଜର କିଛି ବିଶେଷ ଅବଦାନ ନାହିଁ ବୋଲି କହି ରଖିଛନ୍ତି । କିନ୍ତୁ ମୁର୍ମୁଙ୍କ ଭାଷାରେ, "ଭାଷାର ଶବ୍ଦ-ମୂଲ୍ୟ (Phonetic value)କୁ ରୂପ ଦେବାପାଇଁ ମୁଁ ଆମ ସଂସ୍କୃତି ଓ ସାମାଜିକ ପରମ୍ପରାରୁ ଲିପିର ରୂପ ଓ

ଆକାର ପ୍ରସ୍ତୁତ କଲି । ସାନ୍ତାଳ ସମାଜରେ ଦେହରେ ସ୍ତ୍ରୀ ଲୋକମାନେ ଚିତା କୁଟାନ୍ତି (ଖୋଦା) । ଗୋରୁଗାଈ ବଣରେ ହଜି ନ ଯିବେ ବୋଲି ଓ କାହାର କୋଉ ଗୋରୁ ଚିହ୍ନୋଟ କରିବା ପାଇଁ ସେମାନଙ୍କ ଦେହରେ ଚିହ୍ନ ଦେଇଥାନ୍ତି (ଶିଖା) । ଏହାଛଡ଼ା ପ୍ରାଚୀନ କାଳରେ ସାନ୍ତାଳମାନେ ଘନ ଜଙ୍ଗଲରେ ବାସ କରୁଥିବାବେଳେ ପଥର ମୁଣ୍ଡିଆ ଓ ଗଛ ଦେହରେ ବିଭିନ୍ନ ଉଦ୍ଦେଶ୍ୟରେ ବିଭିନ୍ନ ଚିତ୍ର ଓ ପ୍ରତୀକ ଆଙ୍କୁଥିଲେ, ଯଥା- "ଏଠୁ ଚାଲିଯାଅ, ବିପଦ ଆସୁଛି", "ଅମୁକ ଦିନ ଆମେ ଏକତ୍ରିତ ହେବା", "ଅମୁକ ଜାଗାରେ ପହୁଞ୍ଚ" ଇତ୍ୟାଦି । ଏଇ ଗୁପ୍ତ କୋଡ୍ ସାନ୍ତାଳୀ ସମାଜର ବିଶେଷ ପରମ୍ପରାର ଅଙ୍ଗ । ଏହାଛଡ଼ା ବିଗୁଲ୍‌ରେ ବିଭିନ୍ନ ଶବ୍ଦ ଦ୍ୱାରା ବିଭିନ୍ନ ସାଙ୍କେତିକ ବାର୍ତ୍ତା ପ୍ରେରଣ ମଧ୍ୟ ବହୁ ଯୁଗରୁ ପ୍ରଚଳିତ । ମୁଁ ଏଇ ଚାରିପ୍ରକାର ଜିନିଷରୁ ମୋର ଲିପିଟି ତିଆରି କରଇଛି ।" (ମୁର୍ମୁଙ୍କ ସହ ସାକ୍ଷାତ୍‌କାର ମୋ'ଦ୍ୱାରା) ତା'ଛଡ଼ା ମୁର୍ମୁ ନିଜକୁ ତିନୋଟି ପ୍ରଶ୍ନ ପଚାରିଥିଲେ :

(କ) ଗୋଟିଏ ଲିପିରେ ସର୍ବନିମ୍ନ କେତୋଟି ଅକ୍ଷର ହେବା ଉଚିତ୍ ।

(ଖ) ଏ ଲିପିର ଡିଜାଇନ୍ କିପରି ହେବା ଉଚିତ୍, ଯାହା ଫଳରେ ଛାପା ଓ ହାତଲେଖା ଅକ୍ଷର ଭିତରେ ସର୍ବନିମ୍ନ ପାର୍ଥକ୍ୟ ରହିବ ।

(ଗ) ମୁଣ୍ଡାରୀ ଭାଷା (ଯେଉଁ ଗୋଷ୍ଠୀରେ ସାନ୍ତାଳୀ ଅନ୍ତର୍ଭୁକ୍ତ) ଶବ୍ଦ-ତତ୍ତ୍ୱ ଦୃଷ୍ଟିରୁ ପଡ଼ୋଶୀ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ଭାଷାଠାରୁ କିପରି ଭିନ୍ନ ଓ ସେଇସବୁ ଲିପି କାହିଁକି ସାନ୍ତାଳୀ ଭାଷା ପାଇଁ ଉପଯୁକ୍ତ ନୁହେଁ ।

ଏସବୁ ପ୍ରଶ୍ନକୁ ବିଶଦ ଭାବରେ ଆଲୋଚନା କରି ସେ ଅଲ୍ ଚିକି ଲିପିଟି ପ୍ରଚଳନ କଲେ । ଭାଷାତତ୍ତ୍ୱବିଦ୍‌ମାନଙ୍କ ମତରେ ଏ ଲିପିଟି ମୋଟାମୋଟି ବିଜ୍ଞାନସମ୍ମତ । ଏଇ ଲିପିରେ ଶ୍ରୀଯୁକ୍ତ ମୁର୍ମୁ ଅନେକ ବହି ଲେଖିଛନ୍ତି । ପିଲାମାନଙ୍କ ପାଠ ବହି ହିସାବରେ ସେ ପ୍ରାଥମିକ ଶିକ୍ଷାପାଇଁ କେତେଗୁଡ଼ିଏ ବହି ରଚନା କଲେ ଏଇ ଲିପିରେ । ସେଗୁଡ଼ିକ ହେଲା :

୧) ଅଲ୍ ଚେମେତ୍

୨) ପାର୍ସି ପୋହା

୩) ଏଲ୍‌ଖା ପାଟବ ଓ

୪) ପାର୍ସି ଇତୁନ୍ ।

ଶେଷୋକ୍ତ ବହିଟି ଶିକ୍ଷକମାନଙ୍କ ପାଇଁ ଶିକ୍ଷାଦାନର ଗାଇଡ୍ । ବିଭିନ୍ନ ପ୍ରଦେଶର ପ୍ରାଥମିକ ସ୍କୁଲରେ ସ୍କୁଲ ସମୟ ପରେ ଅଲ୍ ଚିକି ଲିପିରେ ଶିକ୍ଷାଦାନ ବ୍ୟବସ୍ଥା ଆଦିବାସୀ ସାଂସ୍କୃତିକ ସମିତି ରାଇରଙ୍ଗପୁର, ତାକୁଳିଆ ତରଫରୁ ବ୍ୟବସ୍ଥା ହୋଇଥିଲା । ଏ ଅନୁଷ୍ଠାନକୁ ଇତୁନ୍ ଆସ୍ରା କୁହାଯାଉଥିଲା ଓ ଏଠି ଅଲ୍ ଚିକି ବ୍ୟବହାରରେ ଶିକ୍ଷା ପାଇଲା ପରେ ସମିତିଗୁଡ଼ିକ ତରଫରୁ ସାର୍ଟିଫିକେଟ୍ ମଧ୍ୟ ଦିଆଯାଉଥିଲା । ମାତ୍ର ଯେକୌଣସି ଲିପି ବ୍ୟବହାର ବ୍ୟତିରେକେ ଅର୍ଥହୀନ ଓ ଖୁବ୍ ଶୀଘ୍ର ଭୁଲିଯାଇ ହୁଏ । ଅଲ୍‌ଚିକିର ସେଇ ଦଶା ହୋଇଛି । ସାଧାରଣ ବ୍ୟବହାରରେ, ସାମାଜିକ ସଂଯୋଗରେ ଏହାର ବ୍ୟବହାର ବର୍ତ୍ତମାନ

ନଗଣ୍ୟ ।

ଏ ତିନୋଟି ସାଂସ୍କୃତିକ ସମିତି ରାଇରଙ୍ଗପୁର (ଓଡ଼ିଆ) ଚକୁଳିଆ (ବିହାର) ଓ ପଶ୍ଚିମବଙ୍ଗର ଏକ ସ୍ଥାନରୁ ଅଲ୍‌ଚିକିରେ ତିନୋଟି ପତ୍ରିକା ମଧ୍ୟ ପ୍ରକାଶିତ ହେଉଛି । ସେଗୁଡ଼ିକ ହେଲା- 'ସାଗେନ୍ ସାକାମ୍' 'ସେମ୍‌ଲେତ୍ ସାକ୍‌ୱା' ଏବଂ 'ଯୁଗ୍ ଜର୍ ପା' । ଏ ପତ୍ରିକାଗୁଡ଼ିକ ବିଶେଷ ନିୟମିତ ନୁହନ୍ତି ।

ସାନ୍ତାଳୀ ଭାଷା ଓ ସଂସ୍କୃତି ମୟୂରଭଞ୍ଜର ଅଣ-ଆଦିବାସୀ ଭାଷା (ଅର୍ଥାତ୍ ଓଡ଼ିଆ ଭାଷା) ଓ ସଂସ୍କୃତି ସହ ଗଭୀର ଭାବରେ ସମ୍ପୃକ୍ତ । ଏହାର କାରଣ, ଐତିହାସିକ ପଟ୍ଟଭୂମିରେ ମୟୂରଭଞ୍ଜ ମହାରାଜା ସାନ୍ତାଳୀ ଭାଷା ଓ ସଂସ୍କୃତି ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ ଥିଲେ । ଐତିହାସିକ ତଥ୍ୟ ଅନୁଯାୟୀ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ମହାରାଜା ଯଦୁନାଥ ସିଂଦେଓ ବାମନଘାଟୀ ଅଞ୍ଚଳରେ ଧଗୁଆ ଜମିଦାରମାନଙ୍କୁ ଦମନ କରି ସେମାନଙ୍କୁ ରାଜ୍ୟର ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଆଣିବାକୁ ଚେଷ୍ଟା କରିଥିଲେ, ସେତେବେଳେ ତେଲ୍‌ପୋସି ଓ ରାଇରଙ୍ଗପୁରଠାରେ ଭୀଷଣ ସଂଘର୍ଷ ହୋଇଥିଲା, ଯେଉଁଥିରେ 'ସାନ୍ତାଳ ଓ କୋହ୍ଲମାନଙ୍କ ସାହାଯ୍ୟ ବ୍ୟତୀତ ମହାରାଜାଙ୍କର ପରାଜୟ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ସେହିଦିନଠାରୁ ମହାରାଜ ସାନ୍ତାଳ ସମ୍ପ୍ରଦାୟ ପ୍ରତି ଗଭୀରଭାବେ ଅନୁରକ୍ତ ହୋଇଥିଲେ । ୧୮୬୬ ଏବଂ ୧୯୧୭ ସାନ୍ତାଳ ବିଦ୍ରୋହକୁ ଛାଡ଼ିଦେଲେ ମୟୂରଭଞ୍ଜ ଓଡ଼ିଶାରେ ମିଶିବା ପର୍ଯ୍ୟନ୍ତ ଏ ସମ୍ପର୍କ ସନ୍ତୋଷଜନକ ଥିଲା । ବାରିପଦାର ରଥଯାତ୍ରାରେ ସାନ୍ତାଳମାନେ ଯେପରି ବହୁ ସଂଖ୍ୟାରେ ଯୋଗ ଦିଅନ୍ତି ଓ ଏପରିକି ରଥ ମଧ୍ୟ ଟାଣନ୍ତି ସେଥିପାଇଁ ମହାରାଜା କେବଳ ଉତ୍ସାହ ନୁହେଁ, ପରନ୍ତୁ ବିଶେଷ ବ୍ୟବସ୍ଥା ମଧ୍ୟ କରୁଥିଲେ । ତା'ଛଡ଼ା ଦଶହରା ଓ ଶିବରାତ୍ରି ଉତ୍ସବରେ ହିନ୍ଦୁ ପର୍ବର ବିଭିନ୍ନ ପାରମ୍ପରିକ ବ୍ୟବସ୍ଥା ସହ ସାନ୍ତାଳୀ ନୃତ୍ୟଗୀତର ମଧ୍ୟ ବ୍ୟବସ୍ଥା ହେଉଥିଲା । ଉଦଳା ଓ କରଞ୍ଜିଆର ଗ୍ରାମାଞ୍ଚଳରେ ଅନେକ ଶିବମନ୍ଦିର ଓ ଠାକୁରାଣୀ ମନ୍ଦିର ପ୍ରତିଷ୍ଠାରେ ସାନ୍ତାଳ ଗାଁଆ ଓ ସମାଜର ପ୍ରତ୍ୟକ୍ଷ ଅବଦାନ ରହିଛି । ଏହା ଇତିହାସର କଥାବସ୍ତୁ ।

ଏହାଛଡ଼ା ମୟୂରଭଞ୍ଜର ପ୍ରସିଦ୍ଧ ଛଉନାଚ ସାନ୍ତାଳୀ-ମୁଣ୍ଡାରୀ ନୃତ୍ୟପରମ୍ପରା ଦ୍ୱାରା ଅନେକାଂଶରେ ପ୍ରଭାବିତ । କେବଳ ନୃତ୍ୟର ବିଭିନ୍ନ ପର୍ଯ୍ୟାୟ, ସଙ୍ଗୀତ ବା ଛନ୍ଦ ନୁହେଁ, ନୃତ୍ୟର ପ୍ରାରମ୍ଭିକ ପର୍ଯ୍ୟାୟରେ ଯେଉଁ ସୁପ୍ରସିଦ୍ଧ ଭୋକ୍ତା ପୂଜା ସେଥିରେ ସାନ୍ତାଳୀ ସଂସ୍କୃତିର ପ୍ରଭାବ ସୁସ୍ପଷ୍ଟ । ଭୋକ୍ତାମାନେ ଉପାସ କରି, ଶିବପୂଜା କରି ଛଉନୃତ୍ୟର ମଞ୍ଚକୁ ଯାତ୍ରାଘଟ ଓ ନିଶାଘଟ ନେଇ ଆସିବାର ଯୋଉ ପଦ୍ଧତି ଏବେ ବି ପ୍ରଚଳିତ, ତାହା ସାନ୍ତାଳୀ ବାହାପର୍ବ ସହିତ ସଂଶ୍ଳିଷ୍ଟ ଓ ଏକ ସମୟରେ ଅନୁଷ୍ଠିତ ହେଉଥିବା ନିଆଁପାଟ (ନିଆଁରେ ଚାଲିବା) କଣ୍ଟାପାଟ (କଣ୍ଟାରେ ଚାଲିବା) ଉଗ୍ରତପା ବା ଝୁଲାପାଟ, ଭାଷାପାଟ ଏବଂ ସେଗୁଡ଼ିକର ପ୍ରାରମ୍ଭିକ ପର୍ଯ୍ୟାୟର ପୂଜା ଉପାସନା ସହିତ ଗଭୀର ଭାବେ ସଂଶ୍ଳିଷ୍ଟ । ବସନ୍ତ ଆଗମନରେ ମୟୂରଭଞ୍ଜର ବନାଞ୍ଚଳରେ ଗଛଲତାର ଶୋଭା, ପଳାଶ, କୁସୁମ, ଶିମିଳି ଇତ୍ୟାଦିର ବର୍ଣ୍ଣାଢ଼୍ୟ

ବିଭୂତି ଏ ସବୁକୁ ନେଇ ଛଉନୃତ୍ୟର ଯେଉଁ ପରମ୍ପରା ତାହା ଅନେକାଂଶରେ ମୁଣ୍ଡାରୀ-ସାନ୍ତାଳୀ ନୃତ୍ୟ ପରମ୍ପରାର ।

ଛଉନୃତ୍ୟର ମୌଳିକ ଛନ୍ଦ ବା Rhythm ଯେ ପାରମ୍ପରିକ ଆଦିବାସୀ ଛନ୍ଦ ଦ୍ୱାରା ପ୍ରଭାବିତ, ଏହା ଆଜି ମୋଟା-ମୋଟି ଭାବରେ ସ୍ୱୀକୃତ । ସାନ୍ତାଳମାନଙ୍କର ଲାଗ୍‌ଣେ, ବାହା ଓ ଡାନ୍‌ଠା ନାଚଗୁଡ଼ିକର ଛନ୍ଦ, ହସ୍ତପଦ ଚାଳନା ଓ ସଙ୍ଗୀତ-ଶୈଳୀ ଅନେକାଂଶରେ ଛଉନୃତ୍ୟକୁ ପ୍ରଭାବିତ କରିଛି । ତା'ଛଡ଼ା ଛଉର ରଙ୍ଗବାଜା ଓ ବିଶେଷ କରି ମୟୂରୀର ସୁମଧୁର କାରୁଣ୍ୟ ଓ ବୀରରସର ସମ୍ମିଶ୍ରଣ ଏକାନ୍ତ ଭାବରେ ସାନ୍ତାଳୀ ସ୍ୱର ଲହର ପରି ।

ଓଡ଼ିଆ ସଂସ୍କୃତିର ଅନ୍ୟତମ ବୈଶିଷ୍ଟ୍ୟ ଓ ଶକ୍ତି ହେଉଛି ଏହି ଯେ ଆମ ସଂସ୍କୃତି ଗୋଟିଏ ଲୋକ-ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ନିରବଚ୍ଛିନ୍ନତା folk-tribal continuum ଉପରେ ପ୍ରତିଷ୍ଠିତ । ଭାରତବର୍ଷର ଅନ୍ୟ ଖୁବ୍ କମ୍ ଅଞ୍ଚଳରେ ଲୋକ-ସଂସ୍କୃତି ଏତେ ନିପୁଣ ଓ ନିରାପଦ ଭାବରେ ଏଯାବତ୍ ବଞ୍ଚି ରହିଛି ଓ ଅନ୍ୟ ପକ୍ଷରେ ସ୍ଥାନୀୟ ଆଦିବାସୀ ସଂସ୍କୃତି ଦ୍ୱାରା ପ୍ରଭାବିତ ଓ ଅନୁପ୍ରାଣିତ ହୋଇଛି । ଏଥିରେ ଓଡ଼ିଆ ଓ ସାନ୍ତାଳୀ ଭାଷାଭାଷୀ କେହି ମନଗଣା କରିବାର କିଛି ନାହିଁ; କାରଣ ସଂସ୍କୃତିର ପାରସ୍ପରିକ ପ୍ରଭାବ ଅବଶ୍ୟମ୍ଭାବୀ ଓ ଏହା ଦ୍ୱାରା ଉଭୟ ସଂସ୍କୃତିର ମଙ୍ଗଳ ସାଧିତ ହୋଇଥାଏ ।

ସାନ୍ତାଳୀମାନେ ଏକ ପ୍ରାଚୀନ ସଂସ୍କୃତିର ଦାୟାଦ ବୋଲି ନିଜକୁ ବିଚାରିଥାନ୍ତି । ନୃତତ୍ତ୍ୱବିଦ୍ ମାର୍ଟିନ୍ ଓରାନ୍ ଏ ସମ୍ପ୍ରଦାୟକୁ A Tribe in search of a Great Tradition ବୋଲି ଅଭିହିତ କରିଛନ୍ତି ।

ବାହାଘର ବେଳେ ୩/୪ଜଣ ବୋଲାଳି ଏକତ୍ର ବୋଲୁଥିବା ଗୀତ "ବିନ୍‌ତି"ରେ ସାନ୍ତାଳ-ସମାଜର ପ୍ରାଚୀନ ପରମ୍ପରା, କେଉଁ ଐତିହାସିକ କାଳରେ କାଳ୍ପନିକ ରାଜ୍ୟ ଚାଇଗାଲ୍, ଚାମ୍ପାଗାଲ୍ ଇତ୍ୟାଦିରେ ଯେ ସେମାନଙ୍କର ପ୍ରଥମ ବସତି ଥିଲା, ଏବଂ ସେଠାରୁ ସେମାନେ ବହୁ ଦେଶ ଭ୍ରମି ଭ୍ରମି ଅବଶେଷରେ ସିଂଭୂମ, ମୟୂରଭଞ୍ଜ ଇତ୍ୟାଦିରେ ବାସକଲେ, ଏସବୁ କଥା କୁହାଯାଇଥାଏ । ଅଧୁନାତନ କାଳରେ ଅଣଆଦିବାସୀଙ୍କ ଶୋଷଣ ଓ ସାନ୍ତାଳୀମାନଙ୍କର ସରଳତାର ସୁଯୋଗ ନେଇ ନାନାଦି ଦୁଷ୍କର୍ମ ଘଟୁଥିବାରୁ ମଝିରେ ମଝିରେ ସାଂସ୍କୃତିକ ଦୃଷ୍ଟିକୋଣରୁ ବିରୋଧୀ ମନୋଭାବ ଦେଖା ଯାଇଥାଏ । ଅପରପକ୍ଷରେ ଅଣ-ଆଦିବାସୀ ପଡ଼ୋଶୀ ସଂସ୍କୃତିଠାରୁ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ ପାଇଁ ଦୀର୍ଘ ଐତିହାସିକ ପରମ୍ପରା କଥା ଅବତାରଣା କରାଯାଇଥାଏ । ଯେମିତି ସୁନାରାମ ସୋରେନ୍‌ଙ୍କ ଦ୍ୱାରା ସମ୍ପାଦିତ "ଯାତ୍ରା ପାତା ଏବେ ଗିରା" ପୁସ୍ତିକା - ଯାହାର ଅର୍ଥ ଯାତ୍ରା ଇତ୍ୟାଦିରେ ନ ନାଚିବା ପାଇଁ ଏକ ଆହ୍ୱାନ - ବହିର ମୁଖବନ୍ଧରେ ଶ୍ରୀଯୁକ୍ତ ସୋରେନ୍ କହିଛନ୍ତି : "ଚାଇଗାଲ୍, ଚାମ୍ପାଗାଲ୍, ବାହାଗାଲ୍ ଆଦି ରାଜ୍ୟ ଛାଡ଼ି ଆସିଲା ବେଳେ ଘରମାନଙ୍କର କାନ୍ଥରେ ସେଇ ଯେଉଁ ଅପୂର୍ବ ଚିତା ଆଜି ବି ସେସବୁ ମନେପଡ଼ିଲେ ଦୁଃଖ ଆସୁଛି । ଆମ ପୂର୍ବପୁରୁଷମାନେ ଜନ୍ମରୁ ମୃତ୍ୟୁଯାଏ ଆଉ ବିଭିନ୍ନ ପର୍ବପାଇଁ ଗୀତ ବାନ୍ଧିଦେଇ ଯାଇଛନ୍ତି । ଜନ୍ମଗୀତ, ବା'

ଘର ଗୀତ, ମୃତ୍ୟୁ ଗୀତ, ବାହାପର୍ବ ଗୀତ, ମାଃ ମଣେ, ଡାହାର ଗୀତ, କରମ୍, ସୋହରାଇ, ଡାଣ୍ଟା, ଦାସାଇଁ ଗୀତ ଇତ୍ୟାଦି । କିନ୍ତୁ ସେମାନେ ଅଣ-ସାନ୍ତାଳୀ ନାଚଗୀତମାନଙ୍କରେ ଅଂଶ ଗ୍ରହଣ କରିବାପାଇଁ କେବେହେଁ ଚାହୁଁ ନ ଥିଲେ । ସେଇସବୁ ଅଣଆଦିବାସୀ ନାଚ-ଗୀତରେ ଯୋଗଦେଇ ସାନ୍ତାଳମାନେ ନାନା ହଟହଟା ହେଉଛନ୍ତି । ତେଣୁ ଆମର ନିଜ ସଂସ୍କୃତିକୁ ଆମେ ବଞ୍ଚେଇ ରଖିବା ଉଚିତ ଓ ଅଣ-ଆଦିବାସୀଙ୍କ ପର୍ବପର୍ବାଣୀରେ ନ ନାଚିବା ଉଚିତ ।"

ପ୍ରାଚୀନ ପରମ୍ପରା (ତାହା ଐତିହାସିକ ଦୃଷ୍ଟିକୋଣରୁ ପ୍ରତିପାଦିତ ବା ସତ୍ୟବଦ୍ଧ ହେଉ କି ନହେଉ) ପ୍ରତି ଦୃଷ୍ଟି ଫେରାଇଥିବା ସବୁ ସଂସ୍କୃତିର ସଙ୍କଟକାଳୀନ ଅବସ୍ଥାର ପ୍ରତିକ୍ରିୟା । ତାହାଫଳରେ ସଂସ୍କୃତିର ଏକକତ୍ୱ ଓ ଶକ୍ତି ବୃଦ୍ଧି ପାଇଥାଏ ।

ଶ୍ରୀଯୁକ୍ତ ମୁର୍ମୁଙ୍କୁ ସାନ୍ତାଳ-ସମାଜ ସବୁଠୁଁ ବଡ଼ ଗୁରୁ (ଗୁରୁ ଗମ୍‌କେ) ହିସାବରେ ମାନି ନେଇଛି । ସାନ୍ତାଳୀ, ମୁଣ୍ଡାରୀ ଭାଷା-ସଂସ୍କୃତିର ପୁନଃ-ମୂଲ୍ୟାୟନ ଓ ଶକ୍ତି-ଆହରଣ ପ୍ରକ୍ରିୟାରେ ତାଙ୍କର ଅବଦାନ ନିଃସନ୍ଦେହ ଭାବରେ ସର୍ବୋଚ୍ଚ । ବିର୍ସାମୁଣ୍ଡାଙ୍କ ପରି ସେ ବିଦ୍ରୋହୀ ନେତା ବା ଭବିଷ୍ୟତ ବକ୍ତା ନୁହନ୍ତି । କିନ୍ତୁ ନିଜ ରଚନାବଳୀ ଭିତର ଦେଇ ସେ ସଂସ୍କୃତିର ନୂଆ ବିଶ୍ଳେଷଣ କରିଛନ୍ତି ଓ ପରମ୍ପରାର ପୁନଃପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି । ତାଙ୍କର ପ୍ରଧାନ ବହିଗୁଡ଼ିକ ହେଲା :

୧) ନାଟକ ବିଦୁଚନ୍ଦନ (ଓଡ଼ିଆ ଲିପି ସଂସ୍କରଣ, ୧୯୪୨, ବଙ୍ଗଳା ଲିପି ସଂସ୍କରଣ, ୧୯୪୮)

୨) ନାଟକ ଖେରୱାର ବୀର (ଉଡ଼ିଆ ଲିପି ସଂସ୍କରଣ, ୧୯୪୪, ବଙ୍ଗଳା ଲିପି ସଂସ୍କରଣ, ୧୯୫୨)

୩) ବାଖେଣ୍ (“ଅଲ୍ ଚିକି’ରେ ସାନ୍ତାଳୀ ଦେବଦେବୀଙ୍କ ପ୍ରାର୍ଥନା-ଗୀତିମାନଙ୍କର ସଙ୍କଳନ)

୪) ନାଟକ ଦାଲେଗେ ଧାନ୍ (‘ଅଲ୍ ଚିକି’ରେ)

୫) ହିତଲ୍ (ଅଲ୍ ଚିକିରେ ଅପ୍ରକାଶିତ ପାଣ୍ଡୁଲିପି)

ଶେଷୋକ୍ତ ପୁସ୍ତିକାଟି ମୋ’ ମତରେ ଶୈଳୀ ଓ ଭାବ ଦୃଷ୍ଟିରୁ ତାଙ୍କ ସର୍ବୋତ୍କୃଷ୍ଟ ରଚନା । ମୋ’ ସହିତ ଅନେକଥର ତାଙ୍କର ଆଲୋଚନା ହୋଇଛି । ସାନ୍ତାଳୀ ଭାଷା, ସାହିତ୍ୟ, ସଂସ୍କୃତି – ସେଗୁଡ଼ିକର ପରମ୍ପରା ଓ ବର୍ତ୍ତମାନ, ପଡ଼ୋଶୀ ଅନ୍ୟ ଆଦିବାସୀ ଓଡ଼ିଆ ସାହିତ୍ୟ-ସଂସ୍କୃତି ସହ ସଦ୍ଭାବ ଓ ସମ୍ପର୍କ ଏସବୁ ବିଷୟରେ ଦୀର୍ଘ ଆଲୋଚନା ହୋଇଛି । ଶେଷଥର ପାଇଁ (ତାଙ୍କ ମୃତ୍ୟୁ ପୂର୍ବରୁ) ତାଙ୍କ ସହିତ ଯେଉଁ ଦୁଇଘଣ୍ଟାବ୍ୟାପୀ ଆଲୋଚନା, ତା’ର ସମଗ୍ର ବିବରଣୀ ମୁଁ ଟେପ୍‌ରେ ଲିପିବଦ୍ଧ କରିଛି । ରାଜନୈତିକ ପରିପ୍ରେକ୍ଷୀରେ ସଂସ୍କୃତିର ଅବକ୍ଷୟ । ସାନ୍ତାଳୀ ନିଜେ ନିଜ ଗୋଡ଼ରେ ଛିଡ଼ା ନ ହୋଇ ପରମୁଖାପେକ୍ଷୀ ହେବା, ନିଜ ସଂସ୍କୃତିକୁ ନିଜେ ନ ଚିହ୍ନିବା – ଏ ସମ୍ପର୍କରେ ସେ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ ବୋଲି ବାରମ୍ବାର କହିଛନ୍ତି । ବିଦୁଚନ୍ଦନ ନାଟକରେ ‘ବିଦୁ’ ଚରିତ୍ର ଜରିଆରେ ସେ ସାନ୍ତାଳୀ

ଚରିତ୍ର କ'ଣ ହେବା ଉଚିତ, ତାହା ପ୍ରତିପାଦିତ କରିବାକୁ ଚେଷ୍ଟା କରିଛନ୍ତି । ସମୂହ ପାଇଁ ନିଜର ସ୍ୱାର୍ଥ ଜଳାଞ୍ଜଳି ଦେବା ଏବଂ ସଂଯତ, ନିରାଡ଼ମ୍ବର ଜୀବନଯାପନ କରିବା ଏକଥା ସେଇ ଚରିତ୍ରରେ ତଥା 'ଖେରୱାଲ ବୀର' ନାଟକର 'ମାନ୍‌ମି' ଓ 'ଦାନ୍‌ମି'ମାନଙ୍କ ଭିତରେ ସଂଘର୍ଷ ଓ ଅବଶେଷରେ ମନୁଷ୍ୟତ୍ୱର ବିଜୟ - ଏ ସବୁଥିରୁ ସ୍ପଷ୍ଟ ଯେ ସେ ଏକ ମାନବବାଦୀ, ପରମ୍ପରାବଦ୍ଧ ସଂସ୍କୃତି ପ୍ରତି ସାନ୍ତାଳ ସମାଜର ଦୃଷ୍ଟି ଆକର୍ଷଣ କରୁଥିଲେ । ହାଣ୍ଡିଆ ଯେ ଦେବ-ଦେବୀଙ୍କୁ ପୂଜାରେ ଅର୍ପଣ କରିବା ପରେ ପର୍ବବେଳେ ହିଁ ପିଆଯିବା କଥା, ଏ ବିଷୟ ସେ ଦୃଢ଼ଭାବରେ ପ୍ରତିପାଦିତ କରି 'ହିତଲ୍' କାବ୍ୟରେ ତା'ର ପାରମ୍ପରିକ କାରଣ ଉଲ୍ଲେଖ କରିଛନ୍ତି । କହିବା ନିଷ୍ପ୍ରୟୋଜନ, ସାନ୍ତାଳ ସମାଜର ଓ ସଂସ୍କୃତିର ଏଇ ଚେରଖୋଜା, ଏଇ ପୁନଃ ମୂଲ୍ୟାୟନ ଓ ପରମ୍ପରା ଅଭିମୁଖୀ ସାହିତ୍ୟ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିପ୍ରେକ୍ଷୀରେ ସର୍ବାଦୌ ଗ୍ରହଣୀୟ ଓ ସ୍ୱାଗତଯୋଗ୍ୟ । ଅନ୍ୟପକ୍ଷରେ ସାନ୍ତାଳମାନଙ୍କ ଗୃହ ନିର୍ମାଣ ପ୍ରଣାଳୀ - କାନ୍ଥରେ ବିବିଧ ଚିତ୍ରାଙ୍କନ (ଲତା ଫୁଲ, ଜ୍ୟାମିତିକ ଚିତ୍ର), ସୁନ୍ଦର ପ୍ରାକୃତିକ ରଙ୍ଗର ବ୍ୟବହାର (ଧଳା, ଗେରୁଆ, ବନମାଟି ଓ ଛଣପୋଡ଼ି ତା' ସହିତ ଅଠା ମିଶାଇ ପ୍ରଲେପ ଦେବା) ଏବଂ କାନ୍ଥ କିପରି ସୁନ୍ଦର ଚିକ୍ ଚିକ୍ ହୋଇପାରେ - ଏସବୁ ଓଡ଼ିଆ ଭାଷାଭାଷୀଙ୍କୁ ଅନ୍ତତଃ ମୟୂରଭଞ୍ଜ ଅଞ୍ଚଳରେ ପ୍ରଭାବିତ କରିଛି । ବାହା, ମକର ସଂକ୍ରାନ୍ତି, ମାଃ ମଣେ, ଲାଗ୍‌ଣେ ଇତ୍ୟାଦି ବିଭିନ୍ନ ସଙ୍ଗୀତ ନୃତ୍ୟର ଲହର ଓ ଛାନ୍ଦ ସ୍ଥାନୀୟ ସଙ୍ଗୀତନୃତ୍ୟକୁ ନିଃସନ୍ଦେହ ଭାବରେ ପ୍ରଭାବିତ କରିଛି । ସାନ୍ତାଳୀ ଓଝାମାନଙ୍କର ମନ୍ତ୍ରପାଠ, ଝଡ଼ାଫୁଙ୍କା ସମ୍ପର୍କରେ ବିଶଦ ଜ୍ଞାନ ଅନେକ ଓଡ଼ିଆ ଗୁଣିଗାରିଡ଼ିଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି । ଅନ୍ୟ ପକ୍ଷରେ ହିନ୍ଦୁ ସଂସ୍କୃତିର ଦେବାଦେବୀ, ପୂଜାପଦ୍ଧତି, ରୀତିନୀତିରୁ ସାନ୍ତାଳମାନେ ଅନେକ ବସ୍ତୁ ଗ୍ରହଣ କରିଛନ୍ତି ନିଜର କରିଛନ୍ତି, ଭାଷା ଓ ସଂସ୍କୃତିରେ ମିଶେଇ ନେଇ ସାରିଛନ୍ତି ।



## ୪୩

# ଓଡ଼ିଆ ଭାଷାର ଇତିହାସ

## ବିଜୟ ପ୍ରସାଦ ମହାପାତ୍ର

କୌଣସି ଭାଷାର ଇତିହାସ କହିଲେ ଭାଷାର ପରିବର୍ତ୍ତନକୁ ହିଁ ବୁଝାଏ । ସମୟାନୁଶ୍ରୟୀ ବିବର୍ତ୍ତନ ଧାରାରେ ଭାଷାର ବିଭିନ୍ନ ପର୍ଯ୍ୟାୟ ସଂକ୍ରାମିତ ହୋଇପାରେ – ହୁଏତ ଶବ୍ଦାବଳୀରେ ପରିବର୍ତ୍ତନ ଆସେ, ଉଚ୍ଚାରଣ ପଦ୍ଧତିରେ ବିଶୃଙ୍ଖଳା ଦେଖାଦିଏ ବା ଭାଷାର ପ୍ରତିଷ୍ଠିତ ସୂତ୍ରଗୁଡ଼ିକ ବିପର୍ଯ୍ୟସ୍ତ ହୋଇ ପୁଣି ନୂତନ ସୂତ୍ରର ସୂତ୍ରପାତ ହୁଏ । ଫଳରେ ପରବର୍ତ୍ତୀ ସମୟର ଭାଷା ପ୍ରଚଳିତ ଭାଷାଠାରୁ ପୃଥକ ମନେହୁଏ । ଏହି ପାର୍ଥକ୍ୟକୁ କେନ୍ଦ୍ରକରି କ୍ରମେ ଭାଷାର ବିଭିନ୍ନ ଐତିହାସିକ ସ୍ତର ଚିହ୍ନିତ ହୁଏ ଓ ଏହି ସ୍ତରଗୁଡ଼ିକୁ ଅବଲମ୍ବନ କରି କୁହାଯାଏ – ପ୍ରାଚୀନ ଓଡ଼ିଆ, ମଧ୍ୟଯୁଗୀୟ ଓଡ଼ିଆ ବା ଆଧୁନିକ ଓଡ଼ିଆ । କିନ୍ତୁ ଏହି ସ୍ତରଗୁଡ଼ିକୁ ଉପଯୁକ୍ତ ଭାବେ ପ୍ରତିଷ୍ଠିତ କରିବାକୁ ହେଲେ ପ୍ରଥମେ ପ୍ରତିଟି ସ୍ତରରେ ଭାଷାର ତତ୍କାଳୀନ ଗଠନ-ବୈଶିଷ୍ଟ୍ୟଗୁଡ଼ିକ ପ୍ରତି ଧ୍ୟାନ ଦେବାକୁ ପଡ଼େ । ଭାଷାର ଗଠନ କହିଲେ ଭାଷାର ରାଶି ବା ଏକକଗୁଡ଼ିକର ବିଭିନ୍ନ ସମାହାରର ପ୍ରଣାଳୀକୁ ହିଁ ବୁଝାଏ । ଏହି ଏକକଗୁଡ଼ିକ ଧ୍ୱନିଗତ ହୋଇପାରନ୍ତି, ଯଥା- ଅ, ଆ, ଇ, କ, ଚ, ଟ ଇତ୍ୟାଦି ବା ଶବ୍ଦଗତ, ଯଥା- ଘର, ହାତ, ସୁନା, ଖାଇବା, ବସିବା, ମୁଁ, ଏବଂ, କିନ୍ତୁ ଇତ୍ୟାଦି । ଏହି ଧ୍ୱନିଗୁଡ଼ିକୁ ଖଞ୍ଜି ଶବ୍ଦ ଓ ଶବ୍ଦଗୁଡ଼ିକୁ ଖଞ୍ଜି ବାକ୍ୟ ପ୍ରଣୟନ କରିବାକୁ ଭାଷାର ଗଠନ କୁହାଯାଏ । ଏହି ଏକକଗୁଡ଼ିକୁ ମନଇଚ୍ଛା ଯୋଗ କରାଯାଇ ପାରୁଥିଲେ ଭାଷାର ଗଠନ ବୋଲି କିଛି ନଥାନ୍ତା; ଯାହା ମନକୁ ଯାହା ଆସିଲା ସେ କହିପାରୁଥାଆନ୍ତା । କିନ୍ତୁ ପ୍ରକୃତପକ୍ଷେ ଏକକଗୁଡ଼ିକୁ ସମାହାର କରିବାର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ପ୍ରଣାଳୀ ରହିଛି – ଯେଉଁ ପ୍ରଣାଳୀ ଅନୁସୃତ ହେଲେ ବାକ୍ୟ ସିଦ୍ଧ ହୁଏ ଓ ଅନୁସୃତ ନ ହେଲେ ଅସିଦ୍ଧ ହୁଏ । ଯେପରି ରାମ, ପିଲା, ଭଲ ତିନୋଟି ଶବ୍ଦକୁ ଯୋଡ଼ି ଆମେ କହିପାରୁଛେ – ରାମ ଭଲ ପିଲା । ଏ ବାକ୍ୟଟି ଓଡ଼ିଆରେ ସିଦ୍ଧ; କିନ୍ତୁ 'ଭଲ ରାମ ପିଲା' ଅସିଦ୍ଧ । ଅର୍ଥାତ୍ ଏହାକୁ ଓଡ଼ିଆ ବାକ୍ୟ କୁହାଯାଇ ପାରିବ ନାହିଁ । ପ୍ରତ୍ୟେକଟି ସିଦ୍ଧ ପ୍ରଣାଳୀର ନାମ ହେଉଛି ସୂତ୍ର । ପ୍ରତ୍ୟେକ ଭାଷାରେ ଏକକଗୁଡ଼ିକର ସଂଖ୍ୟା ଯେପରି ସୀମିତ, ସେହିପରି ଏହି ଏକକଗୁଡ଼ିକୁ ସମାହାର କରିବାର ସୂତ୍ରର ସଂଖ୍ୟା ମଧ୍ୟ ସୀମିତ । ଉଦାହରଣ ସ୍ୱରୂପ ଓଡ଼ିଆରେ ଧ୍ୱନିର ଯେଉଁ ମୌଳିକ ଏକକଗୁଡ଼ିକ ଅଛନ୍ତି, ତା

ଭିତରୁ ଛ'ଟି ହେଉଛନ୍ତି ସ୍ୱରବର୍ଣ୍ଣ – ଅ, ଆ, ଇ, ଉ, ଏ, ଓ ଏବଂ ଅନ୍ୟଗୁଡ଼ିକ ବ୍ୟଞ୍ଜନ ବା ଅନୁପ୍ରଦାନ । ଏହି ଛ'ଟି ମୌଳିକ ସ୍ୱରବର୍ଣ୍ଣକୁ ଯୋଗ କରି କେତେଗୁଡ଼ିଏ ଦ୍ୱୈରାଶିକ ଶବ୍ଦ ତିଆରି କରାଯାଇପାରେ । ଆ' ସହିତ ଇ'କୁ ଯେତେବେଳେ ସୂତ୍ରଗୁଡ଼ିକର ବ୍ୟାପକତା ନଥାଏ, ସେତେବେଳେ ସୂତ୍ରଗୁଡ଼ିକ ଅର୍ବାଚୀନ ହେବାର ସମ୍ଭାବନା ରହିଛି । ଏ ପ୍ରୟୋଗ ଭାଷାର ଇତିହାସ ନିର୍ଣ୍ଣୟ କରିବାର ଏକ ନୂତନ ପଦ୍ଧତି ।

ଏହି ଶତକର ପ୍ରାରମ୍ଭରେ ଯେଉଁ ପଣ୍ଡିତମାନେ ଭାରତୀୟ ଆର୍ଯ୍ୟ ଭାଷାଗୁଡ଼ିକର ଇତିହାସ ଚର୍ଚ୍ଚା କରିଛନ୍ତି, ସେମାନେ ସାଧାରଣତଃ ସଂସ୍କୃତ, ପ୍ରାକୃତ ବା ଅପଭ୍ରଂଶ ଇତ୍ୟାଦିକୁ ମୂଳ ଧରି ତହିଁରୁ ବ୍ୟୁତ୍ପନ୍ନ ଆଧୁନିକ ଭାଷାଗୁଡ଼ିକର ଇତିହାସ ସ୍ଥିର କରିବାର ପ୍ରୟାସ କରିଛନ୍ତି । ଡଃ ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ Origin and Development of Bengali Language ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଅନ୍ୟ ଧାରାଟି ହେଉଛି, ପ୍ରଚଳିତ ଭାଷାଗୁଡ଼ିକର ତୁଳନାତ୍ମକମୂଳକ ପୁର୍ନଗଠନ, ଯାହା ପ୍ରାକ୍‌ଭାଷାର ଇତିହାସର ସୂଚନା ଦେବା ସଙ୍ଗେ ସଙ୍ଗେ ପ୍ରତିଟି ଭାଷାର ପ୍ରାଚୀନତା ବା ଅର୍ବାଚୀନତାକୁ ପ୍ରତିଷ୍ଠିତ କରେ । ଏ ଧାରାର ଐତିହାସିକ ପୁନରୁଦ୍ଧାର ମୁଖ୍ୟତଃ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ A Controlled Historical Reconstruction of Oriya, Assamese, Bengali and Hindiରେ ବିଶେଷଭାବେ ଆଲୋଚିତ ହୋଇଛି । ଆମର ବିଶ୍ୱାସ, ଓଡ଼ିଆ ଓ ଅନ୍ୟାନ୍ୟ ସଗୋତ୍ର ଭାଷାଗୁଡ଼ିକର ପ୍ରକୃତ ଇତିହାସକୁ ପ୍ରତିଷ୍ଠିତ କରିବା ଦିଗରେ ପରବର୍ତ୍ତୀ ପ୍ରଣାଳୀର ଉପାଦେୟତା ଯଥେଷ୍ଟ ବେଶୀ ।

ସେ ଯାହାହେଉ, ଓଡ଼ିଆର ସଗୋତ୍ର ଭାଷାଗୁଡ଼ିକ ମଧ୍ୟରୁ ବଙ୍ଗଳା ଓ ଅସମୀୟା ଅଗ୍ରଗଣ୍ୟ, କାରଣ ଏ ତିନୋଟି ଭାଷା ମଧ୍ୟରେ ଗଠନଗତ ଓ ଶବ୍ଦଗତ ସାମଞ୍ଜସ୍ୟ ଏତେ ବେଶୀ ଯେ, ସାମାନ୍ୟ କେତେକ ସୌତ୍ରିକ ହେରଫେର କଲେ ଗୋଟିଏ ଭାଷାକୁ ଅନ୍ୟ ଭାଷାରେ ପରିଣତ କରିବା ଆଦୌ କଷ୍ଟସାଧ୍ୟ ନୁହେଁ । ତେବେ, ଭୌଗୋଳିକ କାରଣରୁ ଯେପରି ଏକ ପକ୍ଷରେ ଓଡ଼ିଆ-ବଙ୍ଗଳା ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଥିବାର କାରଣ ଅଛି, ଅନ୍ୟ ପକ୍ଷରେ ବଙ୍ଗଳା-ଅସମୀୟା ଭିତରେ ମଧ୍ୟ ସେହି ପରିମାଣରେ ସାମଞ୍ଜସ୍ୟ ଥିବାର କାରଣ ଅଛି । ବଙ୍ଗଳା ଭାଷାର ସୀମା ଯେପରି ଏକ ପାର୍ଶ୍ୱରେ ଓଡ଼ିଆ ସହିତ ସଂଲଗ୍ନ ଅନ୍ୟ ପାର୍ଶ୍ୱରେ ଅସମୀୟା ସହିତ ସଂଲଗ୍ନ, ଆଉ ପ୍ରାକୃତିକ ପ୍ରତିବନ୍ଧକ ନଥିଲେ ଦୁଇଟି ଭାଷା ଭିତରେ ଆଦାନପ୍ରଦାନର ନିରବଚ୍ଛିନ୍ନତା ଯଥେଷ୍ଟ ବେଶୀ । ଏହି କାରଣରୁ ଓଡ଼ିଆ ବଙ୍ଗଳା ଭିତରେ ତୁଲ୍ୟତା ରହିବା ସ୍ୱାଭାବିକ । ସେହିପରି, ବଙ୍ଗଳା ଓ ଅସମୀୟ ଭିତରେ । ସେହି ଏକ କାରଣରୁ ଓଡ଼ିଆ ଓ ଅସମୀୟା ମଧ୍ୟରେ ଦୂରତ୍ୱ ମଧ୍ୟ ସର୍ବାଧିକ ହେବା ସ୍ୱାଭାବିକ । ଏହି ଦୁଇଟି ଭାଷା ଭିତରେ କୌଣସି ଭୌଗୋଳିକ ଯୋଗସୂତ୍ର ନାହିଁ । ତେଣୁ, ଯୋଗାଯୋଗ ରକ୍ଷା କରିବାର ସମ୍ଭାବନା ପ୍ରାୟ ନାହିଁ କହିଲେ ଚଳେ । ଏ ପରିସ୍ଥିତିରେ ଓଡ଼ିଆ ଓ ଅସମୀୟ

ମଧ୍ୟରେ ଯଦି ସାମଞ୍ଜସ୍ୟ ଥାଏ, ଆପେ ଆପେ ବଙ୍ଗଳାରେ ବି ସେଗୁଡ଼ିକ ରକ୍ଷିତ ହୋଇଥିବ, କାରଣ ମଝି ଅଂଶଟିକୁ ବାଦ୍ ଦେଇ ତ ଭାଷା ପ୍ରବାହିତ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ, ନିମ୍ନଲିଖିତ ଶବ୍ଦଗୁଡ଼ିକ ଓଡ଼ିଆ ଓ ଅସମୀୟାରେ ପ୍ରାୟ ଏକ, ଯଥା - (ଏଠାରେ ଅସମୀୟା ଶବ୍ଦଗୁଡ଼ିକ ବନାନ ଅନୁସାରେ ଦିଆଯାଇଛି, ଉଚ୍ଚାରଣ ନୁହେଁ ।)

| ଅସମୀୟା | ଓଡ଼ିଆ | ଅସମୀୟା | ଓଡ଼ିଆ |
|---|---|---|---|
| କାଁନ୍ଧ | କାନ୍ଧ | ନାକ | ନାକ |
| କାନ | କାନ | ହାତ | ହାତ |
| ଦାଁତ | ଦାନ୍ତ | ଘର | ଘର, ଇତ୍ୟାଦି । |

ଏ ଶବ୍ଦଗୁଡ଼ିକ ଓଡ଼ିଆ ଅସମୀୟାରେ ଥିଲେ ବଙ୍ଗଳାରେ ଥିବା ମଧ୍ୟ ସ୍ୱାଭାବିକ ଓ ପ୍ରକୃତ ପକ୍ଷେ ଉଲ୍ଲିଖିତ ଶବ୍ଦଗୁଡ଼ିକ ବଙ୍ଗଳାରେ ମଧ୍ୟ ପ୍ରଚଳିତ । ଏଥିରେ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ଯଦି ଏପରି କିଛି ଶବ୍ଦ ଯାହା ଓଡ଼ିଆ ଅସମୀୟାରେ ଥିବା ସତ୍ତ୍ୱେ ସେଗୁଡ଼ିକର ଅସ୍ତିତ୍ୱ ବଙ୍ଗଳାରେ ନାହିଁ, ତାହାହେଲେ ଧରି ନେବାକୁ ହେବ ଯେ ସେଗୁଡ଼ିକ ପ୍ରାକ୍-ଭାଷାର ଶବ୍ଦ ଓ ବଙ୍ଗଳାରେ ସେଗୁଡ଼ିକ ଥିବା ନଥିବା ଅତ୍ୟନ୍ତ ଗୌଣ । ଭାଷାଗୁଡ଼ିକର ତୁଳନାତ୍ମକ ଅଧ୍ୟୟନ ଏହି କାରଣରୁ ଅତ୍ୟନ୍ତ ପ୍ରୟୋଜନୀୟ । ଏହି ଅଧ୍ୟୟନ ଖାଲି ଯେ ଓଡ଼ିଆଭାଷାର ଇତିହାସକୁ ପ୍ରମାଣିତ କରେ ସେତିକି ନୁହେଁ - ଏହା ପ୍ରାକ୍ ଭାଷାର ବିବର୍ତ୍ତନ ଧାରା ଉପରେ ଆଲୋକପାତ କରେ । ଏହିପରି କେତେଗୁଡ଼ିଏ ଶବ୍ଦ ହେଉଛନ୍ତି -

| ଅସମୀୟା | ଓଡ଼ିଆ | ଅସମୀୟା | ଓଡ଼ିଆ |
|---|---|---|---|
| ଆଓଜା | ଆଉଜିବା | ଥିୟ | ଠିଆ |
| ଆଓଟା | ଆଉଟିବା | ଧଲ | ଧଳା |
| ଆଁଓଟା | ଆଞ୍ଜୋଇବା | ପାଗୁଲି | ପାଗୁଳିବା |
| ଏଲାଁଧୁ | ଅଳନ୍ଧୁ | ପିଚ | ପିଚା |
| କଲ | କଳ (ପାଟିର) | ପିଁଧି | ପିନ୍ଧିବା |
| ଖରଲା | ଖରଡ଼ିବା | ପେଙ୍ଗା | ପେଙ୍ଗାଇବା |
| ଚେଁଇ | ଛୁଇଁ (ଗଛର) | ବର୍ହିୟା | ବଢ଼ିଆ |
| ଜଁପରା | ଝାମ୍ପୁରା | ବାଁଟି | ବାଟି |
| ଜୋନ | ଜହ୍ନ | ଭେଲେକି | ଭେଲିକି |
| ଟାନ | ଟାଣ | ମଲଖୁ | ମଳଖୁ (ହଳଦୀର) |
| ଟେଁଟୁ | ତଣ୍ଟି | ଲେଧା | ନେଧା/ଲେଧା |
| ଖେକାର | ଖଁକାର | ସିଟା | ସିଠା |
| ଖେପ | ଖେପା | ସେଙ୍ଗୁନ | ଶିଙ୍ଗାଣି |

ଯୋଗ କଲେ ଆଇ ହୁଏ, ବା ଉ ସହିତ ଆ-କୁ ଯୋଗ କଲେ ଉଆ ହୁଏ । ଏଗୁଡ଼ିକ

ଓଡ଼ିଆରେ ସାର୍ଥକ ଶବ୍ଦ, ତେଣୁ ଏହି ଯୋଗ ସିଦ୍ଧ । ଏହି ଛ'ଟି ସ୍ୱରବର୍ଣ୍ଣକୁ ନେଇ ଯଦି ଦ୍ୱୈରାଶିକ ଯୋଗ କରାଯାଏ (ସମରାଶିକ ଆଆ, ଇଇ ଇତ୍ୟାଦିକୁ ବାଦ ଦେଇ) ତାହାହେଲେ ସର୍ବୋଚ୍ଚ ତିରିଶଟି ଯୌଗିକ ସ୍ୱର ହେବା ସମ୍ଭବ । ସାମାନ୍ୟ ଧ୍ୟାନଦେଲେ ବୁଝିହେବ ଯେ ଓଡ଼ିଆ ଭାଷାରେ ଏହି ତିରିଶଟି ଯୌଗିକ ସ୍ୱର ସମ୍ଭବ ହେଲେ ମଧ୍ୟ ମାତ୍ର କେଇଟି ଯୌଗିକ ସ୍ୱର ଓଡ଼ିଆରେ ପ୍ରଚଳିତ ଓ ଅନ୍ୟଗୁଡ଼ିକ ନୁହନ୍ତି । ଏହି ଅପ୍ରଚଳିତ ଯୋଗଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ – କେତେଗୁଡ଼ିଏ ଓଡ଼ିଆ ଧ୍ୱନି ସୂତ୍ରର ସମ୍ପୂର୍ଣ୍ଣ ବିରୁଦ୍ଧ ତେଣୁ ଅସିଦ୍ଧ । ସେଗୁଡ଼ିକର ପ୍ରଚଳନ ଓଡ଼ିଆରେ ନିଷିଦ୍ଧ କହିଲେ ଚଳେ, କାରଣ ସେଗୁଡ଼ିକ ଭାଷାର ମୌଳିକ ସୌତ୍ରିକ-ଶୃଙ୍ଖଳାରେ ବିପର୍ଯ୍ୟୟ ସୃଷ୍ଟି କରିବାର ସମ୍ଭାବନା ରହିଛି । କିନ୍ତୁ ଅନ୍ୟକିଛି ଯୋଗ ଏପର୍ଯ୍ୟନ୍ତ ଓଡ଼ିଆରେ ପ୍ରଚଳିତ ହୋଇପାରି ନାହାନ୍ତି ବା ଠାଏ ଠାଏ ହୋଇଛନ୍ତି । ସେମାନେ ଅସିଦ୍ଧ ନହେଲେ ବି ଆକସ୍ମିକ ଭାବେ ବାଦ ପଡ଼ିଯାଇଛନ୍ତି । ପରେ ହୁଏତ ସେମାନେ ଭାଷାରେ ପ୍ରବେଶ କରିପାରନ୍ତି ଏବଂ ତାହାଦ୍ୱାରା ଭାଷାର ଗଠନ ଶୃଙ୍ଖଳା ନଷ୍ଟ ହେବାର ସମ୍ଭାବନା କମ୍ । ବର୍ତ୍ତମାନ ଦ୍ୱୈରାଶିକ ଯୋଗଗୁଡ଼ିକୁ ପରୀକ୍ଷା କରାଯାଉ ।

| | |
|---|---|
| ଅଆ | ଇଅ- ଖିଅ, ଝିଅ, ଖିଅର |
| ଅଇ- ଯଥା- ଅଇ, ଖଇ, ପଇଟା | ଇଆ- ଲିଆ, ଖିଆ, ଶିଆଳ |
| ଅଉ- ଜଉ, ବଉଳ, ତଉଲିଆ | ଇଉ- ପିଉ, ଶିଉଳୀ |
| ଅଏ | ଇଏ- ପିଏ, ନିଏ |
| ଅଓ | ଇଓ |
| ଆଅ- ଖାଅ, ଯାଅ | ଉଅ- ପୁଅ, ଶୁଅ |
| ଆଇ- ଆଇ, ଧାଇ, ମାଇପ | ଉଆ- ଉଆ, ଦୁଆର, ଜୁଆର |
| ଆଉ- ଆଉ, ଖାଉ, ବାଉରି | ଉଇ- ଉଇ, ଦୁଇ |
| ଆଏ- ଖାଏ, ପାଏ | ଉଏ- ଶୁଏ, ଧୂଏ |
| ଆଓ | ଉଓ |
| ଏଅ | ଓଅ |
| ଏଆ | ଓଆ |
| ଏଇ- ଦେଇ, ନେଇ | ଓଇ- ପୋଇ, ଥୋଇବା |
| ଏଉ- ନେଉ, ଦେଉଳ, କେଉଟ | ଓଉ- ଓଉ, ଧୋଉ |
| ଏଓ | ଓଏ |

ଏହି ତିରିଶି ଯୌଗିକ ସ୍ୱର ତାଲିକାରୁ ସ୍ପଷ୍ଟ ଯେ ପ୍ରାୟ ବାରୋଟି ପର୍ଯ୍ୟନ୍ତ ଯୌଗିକ ସ୍ୱର ଓଡ଼ିଆରେ ପ୍ରଚଳିତ ନୁହନ୍ତି । ସେଥିରୁ କେତେଗୁଡ଼ିଏ ଅସିଦ୍ଧ ଓ କେତେଗୁଡ଼ିଏ ଆକସ୍ମିକ, କେତେଗୁଡ଼ିଏ ପୁଣି ମାତ୍ର କଦବା ସମ୍ଭବ । ଉଦାହରଣ ସ୍ୱରୂପ କୌଣସି ଯୌଗିକ ସ୍ୱରରେ

ଓ-ସ୍ୱର ଦ୍ୱିତୀୟ ବର୍ଣ୍ଣ ହୋଇ ଆସି ପାରିବ ନାହିଁ, ଅର୍ଥାତ୍ ଓଡ଼ିଆରେ ଅଓ, ଆଓ, ଇଓ, ଉଓ, ଏଓ ସମ୍ପୂର୍ଣ୍ଣ ଅସିଦ୍ଧ । ସେହିପରି ଏଆ, ଓଆ ମଧ୍ୟ ଅସିଦ୍ଧ । କାରଣ ଓଡ଼ିଆରେ ଏ, ଓ ରେ ଆ ଯୋଗ ହେଲେ ଏ, ଓ ଯଥାକ୍ରମେ ଇ, ଉ-ରେ ପରିଣତ ହୁଅନ୍ତି । ତେଣୁ ଦେ, ନେ ପରି ଧାତୁ ଆ-ଯୋଗ ହେଲେ ଦେଆ, ନେଆ ନରହି ଦିଆ, ନିଆ ରେ ପରିଣତ ହୁଅନ୍ତି । ସେହିପରି ଧୋ, ଶୋ ପରି ଧାତୁ ଆ-ଯୋଗ ହେଲେ ଧୋଆ, ଶୋଆ ନରହି ଧୁଆ, ଶୁଆ ରେ ପଣିତତ ହୁଅନ୍ତି । ଧ୍ୱନିମାନଙ୍କର ଏତଦ୍‌ବ୍ୟବହାରରୁ ସୂତ୍ରର ପ୍ରଗାଢ଼ତା ବୁଝାଯାଏ । ଏହି ସୂତ୍ରଗୁଡ଼ିକ ପ୍ରତ୍ୟେକ ଭାଷାର ନିଜସ୍ୱ ଏବଂ ଏହି ସୌତ୍ରିକ ଶୃଙ୍ଖଳା ଅନୁଯାୟୀ ପ୍ରତ୍ୟେକ ଭାଷାର ଗଠନ ବୈଶିଷ୍ଟ୍ୟ ପ୍ରତିଷ୍ଠିତ ହୁଏ । ଏପରିକି ଅତ୍ୟନ୍ତ ଘନିଷ୍ଠ ସଗୋତ୍ର ଭାଷା କ୍ଷେତ୍ରରେ ମଧ୍ୟ ଏହି ସୂତ୍ରଗୁଡ଼ିକର ପ୍ରଯୁକ୍ତିର କ୍ୱଚିତ୍ ସମ୍ଭାବନା ଥାଏ । ଉଦାହରଣ ସ୍ୱରୂପ ଓଡ଼ିଆର ଏ, ଓ+ଆ ଯଥାକ୍ରମେ ଇ, ଉ+ଆ ସୂତ୍ରଟି ବଙ୍ଗଳା ଭାଷା କ୍ଷେତ୍ରରେ ଆଦୌ ଲାଗୁ ନୁହେଁ, କାରଣ ବଙ୍ଗଳାରେ କ୍ରିୟାଗୁଡ଼ିକର ଉଚ୍ଚାରଣ ଦେଆ, ନେଆ, ଧୋଆ, ଶୋଆ ହୋଇ ରହେ । କିନ୍ତୁ ଯେତେବେଳେ ଗୋଟିଏ ଭାଷାର ସୂତ୍ର ଅନ୍ୟ ସଗୋତ୍ର ଭାଷା କ୍ଷେତ୍ରରେ ମଧ୍ୟ ଏକାଧାରାରେ ପ୍ରଯୁଜ୍ୟ, ସେତେବେଳେ ଐତିହାସିକ ଦୃଷ୍ଟିକୋଣରୁ ଉକ୍ତ ସୂତ୍ରଟିକୁ ପ୍ରାକ୍-ଭାଷାର ଅନ୍ତର୍ଗତ ବୋଲି ଧରିବାକୁ ହେବ । ଉଦାହରଣ ସ୍ୱରୂପ ଓଡ଼ିଆରେ ବିଶେଷ୍ୟର ବହୁବଚନ 'ମାନେ' ଓ 'ଗୁଡ଼ି' ଯୋଗଦ୍ୱାରା ନିଷ୍ପନ୍ନ ହୁଏ । ବଙ୍ଗଳାରେ ହୁଏ 'ରା' ଓ 'ଗୁଲି' ଦ୍ୱାରା । ଓଡ଼ିଆର ଗୁଡ଼ି ଓ ବଙ୍ଗଳାର ଗୁଲିକୁ ଏକାତ୍ମ ବୋଲି ଧରିଲେ, ଏହି ବହୁବଚନଟିକୁ ପ୍ରାକ୍-ଓଡ଼ିଆ-ବଙ୍ଗଳା ସ୍ତରକୁ ଉତ୍ତୀର୍ଣ୍ଣ କରିବାକୁ ହେବ, ଅର୍ଥାତ୍ ଯେଉଁ ପ୍ରାକ୍-ଅବସ୍ଥାରୁ ଓଡ଼ିଆ ଓ ବଙ୍ଗଳାର ଜନ୍ମ, ସେ ଭାଷାରେ ମଧ୍ୟ 'ଗୁଡ଼ି'ର ପ୍ରଚଳନ ଥିଲା, ତା'ନୋହିଲେ ଦୁଇଟିଯାକ ଭାଷାରେ ଏହି ବହୁବଚନଟିର ସମ୍ୟକ୍ ବ୍ୟବହାର ଅସମ୍ଭବ ନହେଲେ ବି କଠିନ ହୋଇଥାଆନ୍ତା । ବଙ୍ଗଳାର ରା-ବହୁବଚନର ବି ଓଡ଼ିଆରେ ପରମ୍ପରା ରହିଛି । ଢେଙ୍କାନାଳ, ଅନୁଗୁଳ ଅଞ୍ଚଳର ଓଡ଼ିଆରେ ରା-ବହୁବଚନ ବି ମିଳେ । କିନ୍ତୁ ଓଡ଼ିଆ 'ମାନେ' ବହୁବଚନ ଓଡ଼ିଆ ଭାଷାର ବିଶେଷତ୍ୱ, ଯାହା ହୁଏତ ଦକ୍ଷିଣ-ପଶ୍ଚିମ ଅଞ୍ଚଳର ଛତିଶଗଡ଼ ଓ ହାଲବୀ ଭାଷାଞ୍ଚଳରେ ପ୍ରଭାବ ବିସ୍ତାର କରିଥିଲା । ସେ ଯାହାହେଉ, ଯେକୌଣସି ଭାଷାର ପ୍ରକୃତ ଇତିହାସକୁ ପ୍ରତିଷ୍ଠିତ କରିବାକୁ ହେଲେ, ଏହାର ମୌଳିକ ସୂତ୍ରଗୁଡ଼ିକର ପ୍ରାଚୀନତା ବା ଅର୍ବାଚୀନତା ଦିଗ ପ୍ରତି ବିଶେଷ ଲକ୍ଷ୍ୟ ଦେବାକୁ ପଡ଼େ । ଭାଷାର ସୂତ୍ରଗୁଡ଼ିକ ଯେତେବେଳେ ସଗୋତ୍ର ଭାଷା କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ ବୋଲି ପ୍ରମାଣିତ ହୁଏ, ସେତେବେଳେ ଏହି ସୂତ୍ରଗୁଡ଼ିକର ପ୍ରାଚୀନତା ପ୍ରତିଷ୍ଠିତତ ହୁଏ ।........

| | | | |
|---|---|---|---|
| ଗୋଚ | ଗୋଛି (ଗୋଡ଼ର) | ସେତା | ସେତା/ଛେତା |
| ଗୋର | ଗୋଡ଼ | ହେଁକଟି | ହେକୁଟି |
| ଟାଁଟି | ଟାଙ୍ଗିବା | ହେନ୍ଦୋଲା | ହାନ୍ଦୋଲା |

| | | | |
|---|---|---|---|
| ଢୋକା | ଢୋକିବା | ସେମେକା | ସେମେଟା |

ଏହି ଶବ୍ଦଗୁଡ଼ିକ ବଙ୍ଗଳାରେ ମିଳୁ ନଥିଲେ ମଧ୍ୟ ଏଗୁଡ଼ିକର ପ୍ରାଚୀନତା ଆଦୌ କ୍ଷୁର୍ଣ୍ଣ ହେଉନାହିଁ । ଏଗୁଡ଼ିକ ପୁଣି ସଂସ୍କୃତ, ପ୍ରାକୃତ, ଅପଭ୍ରଂଶରେ ଥାଆନ୍ତୁ ବା ନଥାଆନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ଖାଲି ଓଡ଼ିଆ ଭାଷାର ଇତିହାସରେ ନୁହେଁ, ଏ ଶାଖାର ସମସ୍ତ ସଗୋତ୍ର ଭାଷାଗୁଡ଼ିକର ଇତିହାସରେ ଏ ଶବ୍ଦଗୁଡ଼ିକର ଯଥେଷ୍ଟ ଗୁରୁତ୍ୱ ରହିଛି ।

ଏହି ଏକା ପ୍ରଣାଳୀରେ ବର୍ତ୍ତମାନ ଓଡ଼ିଆର କେତୋଟି ଧ୍ୱନିସୂତ୍ରକୁ ମଧ୍ୟ ପରୀକ୍ଷା କରାଯାଇ ପାରେ । ସୂତ୍ରଟି ହେଲା ଓଡ଼ିଆରେ ଦୁଇ ବା ତତୋଽଧିକ ଅକ୍ଷର ଥିବା ପଦରେ ଦୁଇଟି ଆ-ସ୍ୱର କ୍ରମାନ୍ୱୟଭାବେ ଉଚ୍ଚାରିତ ହୁଅନ୍ତି ନାହିଁ । ଅନ୍ୟ କଥାରେ, ବ୍ୟଞ୍ଜନ+ଆ ସ୍ୱର+ବ୍ୟଞ୍ଜନ+ଆ ସ୍ୱର ଗଠନ ଥିବା ଶବ୍ଦ ଓଡ଼ିଆରେ ଆଂଶିକଭାବେ ଅସିଦ୍ଧ । ଏହି ସୂତ୍ରର ସତ୍ୟତା ଓଡ଼ିଆର କ୍ରିୟାପଦ ଗୁଡ଼ିକରେ ସ୍ପଷ୍ଟଭାବେ ଦେଖିବାକୁ ମିଳେ । ଅର୍ଥାତ୍, କ୍ରିୟାର ଧାତୁ ଯଦି ଆ-ମୂଳକ ହୋଇଥାଏ, ସେହି ଧାତୁରେ ଅନ୍ୟ ଆ ଯୋଗ ହେଲେ, ଧାତୁସ୍ଥ ଆ, ଅ-ରେ ପରିଣତ ହୁଏ । ଯଥା -

ମାଗ୍ + ଆ = 'ମାଗା' ନହୋଇ ମଗା ହୁଏ ।
ଚାଟ୍ + ଆ = 'ଚାଟା' ନହୋଇ ଚଟା ହୁଏ ।
ହାଣ୍ + ଆ = 'ହାଣା' ନହୋଇ ହଣା ହୁଏ ।

ସେହିପରି ଭାସ୍, ଢଳ୍, ଜାଳ୍, ଆଣ୍, କାଟ୍, ବାଟ୍ ଇତ୍ୟାଦି ଓଡ଼ିଆରେ ଯେକୌଣସି ଆ-ମୂଳକ ଧାତୁ ଏହି ସୂତ୍ରର ଅଧୀନ । କ୍ରିୟାଗୁଡ଼ିକ ଛଡ଼ା ବିଶେଷ୍ୟ, ବିଶେଷଣ ଶବ୍ଦ ମଧ୍ୟ ଏହି ସୂତ୍ରର ଅଧୀନ । ତେବେ କେତେକ ବିଶେଷ କ୍ଷେତ୍ରରେ ଏହାର ବ୍ୟତିକ୍ରମ ମଧ୍ୟ ଦେଖାଯାଇଥାଏ । ଅର୍ଥାତ୍ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଶବ୍ଦରେ ଆ-ଆ କ୍ରମ ଓଡ଼ିଆରେ ଦେଖିବାକୁ ମିଳେ ଓ ସେଗୁଡ଼ିକୁ ଅସିଦ୍ଧ ନ କହି କ୍ଷେତ୍ର-ଭେଦରେ ଗ୍ରହଣ କରିବାର ଯୌକ୍ତିକତା ଅଛି । ଏହି ବିଶେଷ କ୍ଷେତ୍ରଗୁଡ଼ିକ ହେଲେ -

୧) କ୍ରିୟାପଦର ଧାତୁ ଯଦି ଆ-ମୂଳକ ବିଶେଷ୍ୟ ହୋଇଥାଏ ସେ କ୍ଷେତ୍ରରେ ଆ-ଆ କ୍ରମ ରକ୍ଷିତ ହୁଏ ଯଥା -

| ବିଶେଷ୍ୟ | କ୍ରିୟା | ବିଶେଷ୍ୟ | କ୍ରିୟା |
|---|---|---|---|
| ବାଡ଼ି | ବାଡ଼ା (ଇବା) | କାନ୍ଧ | କାନ୍ଧା |
| କାନ | କାନା | ଆଣ୍ଠୁ | ଆଣ୍ଠା |
| ଗାର | ଗାରା | ଲାଳ | ଲାଳା ଇତ୍ୟାଦି । |

୨) ଦୁଇଟି ସ୍ୱରବର୍ଣ୍ଣର ମଧ୍ୟବର୍ତ୍ତୀ ବର୍ଣ୍ଣ ଯଦି ହ ହୋଇଥାଏ, ତାହାହେଲେ ଆ-ଆ କ୍ରମ ଓଡ଼ିଆରେ ସ୍ୱାଭାବିକ ଭାବେ ରକ୍ଷିତ ହୁଏ । ଯଥା- ଆହା, ବାହା, ଡାହାଣ, ଡାହାଳ, କାହାଳୀ, ଯାହା, ତାହା, ପାହାଚ, ପାହାଡ଼, ଜାହାଜ, ନାହା, ବାହାର, ପାହାନ୍ତିଆ,

ମାହାର, ପାହାର, ମାହାଳିଆ, ନାହାନ୍ତି, ବାହାଡ଼ା ଇତ୍ୟାଦି ।

୩) ପାରିବାରିକ ସମ୍ପର୍କସୂଚକ କେତେଗୁଡ଼ିଏ ସମ୍ବୋଧନ ପଦ ଓ ବହୁ ଧ୍ୱନ୍ୟନୁକୃତ ଶବ୍ଦ କ୍ଷେତ୍ରରେ ଆ-ଆ କ୍ରମ ମଧ୍ୟ ଓଡ଼ିଆରେ ସ୍ୱାଭାବିକ । ଯଥା- କାକା, ମାମା, ବାପା, ବାବା, ଦାଦା, ନାନା, ବା ହାହା, ଖାଁ ଖାଁ, ଭାଁ ଭାଁ, ହାଁ ହାଁ ଇତ୍ୟାଦି ।

୪) କେତେଗୁଡ଼ିଏ ଶବ୍ଦର ଦୁଇଟି ରୂପ ଦେଖାଯାଏ, ଗୋଟିଏ ସ୍ୱାଭାବିକ ଅ-ଆ କ୍ରମରେ ଓ ଅନ୍ୟଟି ଆ-ଆ କ୍ରମରେ । ଉଚ୍ଚାରଣରେ ଦୁଇଟିଯାକ ବ୍ୟବହାର ଚଳେ । ଯଥା -

| | |
|---|---|
| ରାଜା-ରାଜା | ଚଣ୍ଡାଳ-ଚାଣ୍ଡାଳ |
| ତରା-ତାରା | ମର୍ଯ୍ୟଦା-ମର୍ଯ୍ୟାଦା |
| ଛପା-ଛାପା | କକା-କାକା ଇତ୍ୟାଦି । |

୫) ନିମ୍ନଲିଖିତ ଆ-ଆ କ୍ରମ ଶବ୍ଦଗୁଡ଼ିକ ଓଡ଼ିଆରେ ବେଶ୍ ପ୍ରଚଳିତ । ଏଥିଭିତରୁ ବେଶୀ ଭାଗ ଶବ୍ଦ ଅନ୍ୟ ଭାଷାରୁ ଆଦୃତ ହୋଇ ଆସିଥିବା ସମ୍ଭବ ଏବଂ ସେଗୁଡ଼ିକର ଆ-ଆ କ୍ରମ କ୍ରମଶଃ ଓଡ଼ିଆରେ ସହଜ ହୋଇଉଠିଛି । ଶବ୍ଦଗୁଡ଼ିକ ହେଲେ- ଥାନା, ଦାତା, ଦାନା, ନାଗା, ବାଦାମ, ମାତାଲ, ମାୟା, ଛାୟା, ରାସ୍ତା, ଖ୍ୟାତା, ମାନ୍ଦା, ହାଣ୍ଡା, ଆଚ୍ଛା, ତାଜା, ଚାରା, ଭାଷା, ସାମ୍ନା, ଯାଗା, ଆଚାର, ଜାମ୍ମା, ବାଜା, ବାନା, ପାରା, ସାଧ, ଧାରା, ତାଲା, ପାଲା, କାଲା, ଭାରା, ଝାଡ଼ା, ଟାଣ୍ଡା ଇତ୍ୟାଦି ।

ବର୍ତ୍ତମାନ ସଗୋତ୍ର ବଙ୍ଗଳା ଭାଷାରେ ଏହି ସ୍ୱରକ୍ରମ ସୂତ୍ରଟିକୁ ପରୀକ୍ଷା କରି ଦେଖାଯାଇପାରେ । ପ୍ରଥମତଃ ବଙ୍ଗଳାରେ ଆ-ଆ କ୍ରମ ଅତ୍ୟନ୍ତ ସ୍ୱାଭାବିକ । ବଙ୍ଗଳାରେ ଆ ମୂଳକ ଧାତୁ ଯଦି ଆ ଯୁକ୍ତ ହୁଏ, ମୂଳ ସ୍ୱରରେ କୌଣସି ପରିବର୍ତ୍ତନ ହୁଏନାହିଁ । ଯଥା- ଆନା, ଟାନା, କାଟା, ଜାନା, ଡାକା, ଚାଲା, ଭାଙ୍ଗା ଇତ୍ୟାଦି । ବର୍ତ୍ତମାନ କେତେଗୁଡ଼ିଏ ବୈଦେଶିକ ଶବ୍ଦ, ଯେଉଁଗୁଡ଼ିକ ଏକାଧାରରେ ଓଡ଼ିଆ ଓ ବଙ୍ଗଳା ଭାଷାରେ ଆଦୃତ ହୋଇଛନ୍ତି, ସେ ଶବ୍ଦଗୁଡ଼ିକୁ ନେଇ ପରୀକ୍ଷା କଲେ ଦୁଇଟିଯାକ ଭାଷାର ସ୍ୱରକ୍ରମ ସ୍ପଷ୍ଟତର ହୁଏ । ଯଥା-

| ଓଡ଼ିଆ | ବଙ୍ଗଳା | ଓଡ଼ିଆ | ବଙ୍ଗଳା |
|---|---|---|---|
| ଖରାପ | ଖାରାପ | ପଠାଣ | ପାଠାନ |
| ହଜାର | ହାଜାର | କମାଣ | କାମାନ |
| ଖଲାସ | ଖାଲାସ | ଖଲାସି | ଖାଲାସି |
| ଚଲାକ | ଚାଲାକ | ଦଲାଲ | ଦାଲାଲ |
| ବଜାର | ବାଜାର | ଲଗାମ | ଲାଗାମ ଇତ୍ୟାଦି । |

ତାହାହେଲେ ଏଇ ଦୁଇ ଭାଷାର ସ୍ୱରକ୍ରମ-ଜନିତ ସମ୍ବନ୍ଧ ହେଲା -

ଓଡ଼ିଆ-ବ୍ୟଞ୍ଜନ+ଅ ସ୍ୱର+ବ୍ୟଞ୍ଜନ+ଆ ସ୍ୱର

ବଙ୍ଗଳା-ବ୍ୟଞ୍ଜନ+ଆ ସ୍ୱର+ବ୍ୟଞ୍ଜନ+ଆ ସ୍ୱର

ଏ ସମ୍ବନ୍ଧ ଅଧିକାଂଶ କ୍ଷେତ୍ରରେ ରକ୍ଷିତ ହୋଇଅଛି, ଯଥା -

| ଓଡ଼ିଆ | ବଙ୍ଗଳା | ଓଡ଼ିଆ | ବଙ୍ଗଳା |
|---|---|---|---|
| ଅଙ୍କା | ଆଙ୍କା | ଅଧା | ଆଧା |
| ଅଣା | ଆନା | ଅନ୍ଧାର | ଆଁଧାର |
| କଣା | କାନା | କହ୍ନାଇ | କାନାଇ |
| କମାର | କାମାର | ଗଧା | ଗାଧା |
| ଚମ୍ପା | ଚାଁପା | ଚକା | ଚାକା |
| ଟଙ୍କା | ଟାକା | ଟଭା | ଟାବା |
| ଥଙ୍ଗା | ଠାଙ୍ଗା | ପଡ଼ା | ପାଡ଼ା |
| ବଙ୍ଗାଳି | ବାଙ୍ଗାଲି | ବତାସ | ବାତାସ |
| ବସା | ବାସା | ଛତା | ଛାତା |
| ମଥା | ମାଥା | ଛତା | ଛାତା |
| ଅଟା | ଆଟା | ଅଠା | ଆଠା |
| ଅଠାଇଶ | ଆଟାଶ | ମରାଠି | ମାରାଠି |
| ଚମାର | ଚାମାର | କଣ୍ଟା | କାଁଟା |
| ତମ୍ବା | ତାମା | ଅଦା | ଆଦା ଇତ୍ୟାଦି । |

ଏହି ଦୁଇଟି ସ୍ୱରକ୍ରମ ସୂତ୍ର ଚାରିତ୍ରିକ ଭାବେ ଓଡ଼ିଆ ଓ ବଙ୍ଗଳାରେ ପ୍ରତିଫଳିତ । ଓଡ଼ିଆରେ ଯେପରି ଆ-ଆ କ୍ରମର କିଛି ଶବ୍ଦ ଅଛି, ବଙ୍ଗଳାରେ ମଧ୍ୟ ଅ-ଆ କ୍ରମର ଅତ୍ୟଳ୍ପ ଶବ୍ଦ ଦେଖିବାକୁ ମିଳେ । ପ୍ରତିଟି ଭାଷାରେ ଆନୁଷଙ୍ଗିକ ସୂତ୍ରଗୁଡ଼ିକ ଏତେ ପ୍ରଗାଢ଼ ଯେ, କେଉଁଟି ପ୍ରାକ୍-ଓଡ଼ିଆ-ବଙ୍ଗଳା ଭାଷାର ମୂଳ ପରମ୍ପରା, ନିର୍ଦ୍ଦିଷ୍ଟ କରି କହିବା ସହଜ ନୁହେଁ । ତେଣୁ ଏ କ୍ଷେତ୍ରରେ ଅନ୍ୟ ସଗୋତ୍ର ଭାଷା ଅସମୀୟାର ଚରିତ୍ରକୁ ଅନୁଶୀଳନ କରିବାକୁ ପଡ଼ିବ । ତାହାହେଲେ କେଉଁଟି ପ୍ରାଚୀନ ଧାରା ଓ କେଉଁଟି ଅର୍ବାଚୀନ ଧାରା, ସେ ବିଷୟରେ ଯଥେଷ୍ଟ ଆଲୋକପାତ କରାଯାଇପାରିବ ।

ପ୍ରଥମେ, ଓଡ଼ିଆ ଓ ବଙ୍ଗଳା ପରି ଅସମୀୟା ଭାଷାରେ ମଧ୍ୟ କିଛି କିଛି ଅ-ଆ କ୍ରମ ଶବ୍ଦ ଓ ଆ-ଆ କ୍ରମ ଶବ୍ଦ ଦେଖିବାକୁ ମିଳେ । କିନ୍ତୁ, ଶବ୍ଦଗୁଡ଼ିକୁ ସୌତ୍ରିକ ଶୃଙ୍ଖଳା ଦିଗରୁ ବିଚାରକଲେ, ଅସମୀୟାର ସ୍ୱର-କ୍ରମ ହେଉଛି ଅ-ଆ; ଯାହା ଓଡ଼ିଆ ସହିତ ସମ୍ପୂର୍ଣ୍ଣ ତୁଳନୀୟ । ଅସମୀୟାର ପ୍ରଥମ ସ୍ୱରକ୍ରମ ସୂତ୍ରଟି ହେଉଛି-ଯଦି ଆ-ମୂଳକ ଧାତୁ ଆ-ଯୋଗ ହୁଏ, ଧାତୁସ୍ଥ ଆ, ଅ ରେ ପରିଣତ ହୁଏ । ଉଦାହରଣ ସ୍ୱରୂପ -

ଆଁ+ଆ = 'ଆଁକା' ନହୋଇ ଅଁକା ହୁଏ । (ଓଡ଼ିଆ-ଆଙ୍କିବା)

କାଟ୍+ଆ = 'କାଟା' ନହୋଇ କଟା ହୁଏ । (ଓଡ଼ିଆ-କାଟିବା)
ଜାନ୍+ଆ = 'ଜାନା' ନହୋଇ ଜନା ହୁଏ । (ଓଡ଼ିଆ-ଜାଣିବା)

ଅସମୀୟାର ସବୁ ଆ-ମୂଳକ ଧାତୁ-ଜାଚ (ଯାଚିବା), ଜାଲ (ଜାଳିବା), ଟାନ (ଟାଣିବା), ଢାକ (ଢାଙ୍କିବା), ବାଁଟ (ବାଣ୍ଟିବା), ବାଜ (ବାଜିବା), ଭାଁଗ (ଭାଙ୍ଗିବା), ମାଜ (ମାଜିବା), ମାଗ (ମାଗିବା), କାଁଦ (କାନ୍ଦିବା) ଆଦି ଏହି ସୂତ୍ରର ଅଧୀନ । ବସ୍ତୁତଃ, ଏ ସ୍ୱର-ଅସଙ୍ଗତି ବିଶେଷ୍ୟ, ବିଶେଷଣ ଇତ୍ୟାଦି କ୍ଷେତ୍ରରେ ମଧ ଏକାଧାରରେ ପ୍ରଯୁଜ୍ୟ ।

| ଅସମୀୟା | ବଙ୍ଗଳା | ଓଡ଼ିଆ |
|---|---|---|
| କମାର | କାମାର | କମାର |
| କନାଇ | କାନାଇ | କହ୍ନାଇ |
| ଟକା | ଟାକା | ଟଙ୍କା |
| ଗାଧ | ଗାଧା | ଗଧ / ଗଧା |
| ଚମାର | ଚାମାର | ଚମାର |
| ଚକା | ଚାକା | ଚକା |
| ତରା | ତାରା | ତରା |
| ତମା | ତାମା | ତମ୍ବା |
| ବଙ୍ଗାଲି | ବାଙ୍ଗାଲି | ବଙ୍ଗାଳି |
| ବଜାର | ବାଜାର | ବଜାର |
| ମଲା | ମାଲା | ମାଳ |
| ରଜା | ରାଜା | ରଜା, ଇତ୍ୟାଦି । |

ଅସମୀୟାରେ ଏହି ସୂତ୍ରର ଅନ୍ୟ କେତେଗୁଡ଼ିଏ ଉଦାହରଣ ହେଉଛନ୍ତି-

ଦାଁତ+ଆ = ଦଁତା (ଓଡ଼ିଆରେ ଦନ୍ତାହାତୀ)
ନାକ+ଆ = ନକା

ବସ୍ତୁତଃ, ଅସମୀୟାରେ ଏ ସ୍ୱର-ଅସଙ୍ଗତି ଏତେ ଦୃଢ଼ ଯେ, ସଂକ୍ରାମିତ ସ୍ୱର ବହୁକ୍ଷେତ୍ରରେ ଅ-ରୁ ଯାଇ ଏ-ରେ ପରିଣତ ହୋଇଛି ଯଥା -

| ଅସମୀୟା | ବଙ୍ଗଳା | ଓଡ଼ିଆ |
|---|---|---|
| ଏଁଠା | ଆଠା | ଅଠା |
| ଅସମୀୟା | ବଙ୍ଗଳା | ଓଡ଼ିଆ |
| ଏଁଟା | ଆଟା | ଅଟା |
| ଏଦା | ଆଦା | ଅଦା |
| ଏଁଧାର | ଆଁଧାର | ଅନ୍ଧାର |

| | | |
|---|---|---|
| ଏଁଗାର | ଆଁଗାର | ଅଙ୍ଗାର |
| ଜେମା | ଜାମା | ଯାମା |
| ବେଁକା | ବାଁକା | ବଙ୍କା |
| ହେଜାର | ହାଜାର | ହଜାର ଇତ୍ୟାଦି । |

ଏହି ତୁଳନାତ୍ମକ ଅଧ୍ୟୟନରୁ ସ୍ପଷ୍ଟ ଯେ ପ୍ରାକ୍-ଭାଷାରେ ସ୍ୱର-ଅସଂଗତି ସୂତ୍ରଟି ଯଥେଷ୍ଟ ପ୍ରଭାବଶାଳୀ ଥିଲା, ଯାହାର ଦାୟାଦ ସ୍ୱରୂପ ଓଡ଼ିଆ ଓ ଅସମୀୟା ସେହି ପରମ୍ପରାକୁ ବଜାୟ ରଖିଛନ୍ତି । କିନ୍ତୁ ପରେ ହୁଏତ ବଙ୍ଗଳାରେ ଏହା ସ୍ୱର-ସଙ୍ଗତିରେ ପରିଣତ ହେଲା । ଏହି ତିନୋଟିଯାକ ଭାଷାର ଇତିହାସ ସ୍ଥାପନ ଦିଗରେ ଏହି ଭାଷାତାତ୍ତ୍ୱିକ ଘଟଣାଗୁଡ଼ିକର ଯଥେଷ୍ଟ ଉପାଦେୟତା ରହିଛି । ଏଗୁଡ଼ିକର ଯଥାଯଥ ଅଧ୍ୟୟନ ଓଡ଼ିଆ ଭାଷା ଇତିହାସର ହେବ ପ୍ରାରମ୍ଭିକ ଭିତ୍ତିପତନ ।



# ୪୪

# ଓଡ଼ିଆ ଭାଷା ବିକାଶରେ ଅନ୍ତରାୟ

## ବିଜୟପ୍ରସାଦ ମହାପାତ୍ର

ଭାଷାର ବିକାଶର କ'ଣ କ'ଣ ଅନ୍ତରାୟ ଦେଖାଦେଇପାରେ, ସେ କଥା ହୃଦୟଙ୍ଗମ କରିବାକୁ ହେଲେ ପ୍ରଥମେ ଗୋଟିଏ ବିକଶିତ ଭାଷା କହିଲେ କ'ଣ ବୁଝାଯାଏ, ସେ ବିଷୟରେ ସ୍ପଷ୍ଟ ଧାରଣା ଥିବା ଉଚିତ୍ । ଅଧିକାଂଶଙ୍କର ଧାରଣା ଯେଉଁ ଭାଷାରେ ଉନ୍ନତ ଧରଣର ସାହିତ୍ୟ ଲେଖା ହୋଇଛି, ତାହା ଗୋଟିଏ ଉନ୍ନତ ଭାଷା । ଇଂରାଜୀ ଗୋଟିଏ ଉନ୍ନତ ଭାଷା; କାରଣ ଏହି ଭାଷାରେ ସେକ୍ସପିଅର୍, ଶେଲି, ବାଇରନ୍ ଆଦି ସାହିତ୍ୟ ରଚନା କରିଥିଲେ । ସେହି ଦୃଷ୍ଟିରୁ ଓଡ଼ିଆ ବି ଗୋଟିଏ ଉନ୍ନତ ଭାଷା; କାରଣ ଓଡ଼ିଆରେ ସାରଳା ଦାସ, ଉପେନ୍ଦ୍ରଭଞ୍ଜ ଓ ଫକୀରମୋହନ ଅମର ସାହିତ୍ୟ ରଚନା କରିଯାଇଛନ୍ତି । କିନ୍ତୁ ଏ କଥାଟି ଆଂଶିକଭାବେ ସତ୍ୟ । କେବଳ ଉନ୍ନତ ସାହିତ୍ୟ ରଚନା ଦ୍ୱାରା ଗୋଟିଏ ଭାଷାର ସର୍ବାଙ୍ଗୀଣ ଉନ୍ନତି ସାଧିତ ହୋଇ ନ ଥାଏ । ଗୋଟିଏ ଆଧୁନିକ ସମାଜର ପ୍ରୟୋଜନ ଦୃଷ୍ଟିରୁ ଏହା ପର୍ଯ୍ୟାପ୍ତ ନୁହେଁ । ସେଥିପାଇଁ ଏହାର ଅନ୍ୟାନ୍ୟ ଦିଗଗୁଡ଼ିକ ମଧ୍ୟ ଏକାଧାରରେ ଉନ୍ନତ ହୋଇଥିବା ଉଚିତ । ଉଦାହରଣ ସ୍ୱରୂପ, ସଂସ୍କୃତ ଭାଷାରେ ବହୁ ଉନ୍ନତ ସାହିତ୍ୟ ରଚିତ ହୋଇଥିଲା, ତଥାପି ବର୍ତ୍ତମାନ ଏହା ଗୋଟିଏ ମୃତ ଭାଷା । ତେଣୁ ଜୀବନୀଶକ୍ତି ଦୃଷ୍ଟିରୁ ସଂସ୍କୃତକୁ ଓଡ଼ିଆ, ବଙ୍ଗଳା, ତାମିଲ, ହିନ୍ଦୀ ବା ମରାଠୀର ସମକକ୍ଷ ଭାବେ ଧରାଯାଇ ପାରିବ ନାହିଁ । ଓଡ଼ିଆ, ବଙ୍ଗଳା ଇତ୍ୟାଦି ଗୋଟିଏ ଗୋଟିଏ ଜୀବନ୍ତ ସମାଜର ଭାଷା ଓ କୋଟି କୋଟି ଲୋକଙ୍କର ମାତୃଭାଷା, ଯେଉଁ ଭାଷାକୁ ସେମାନେ ଏକ ନିର୍ଦ୍ଦିଷ୍ଟ ସମାଜରୁ ଶିଖିଛନ୍ତି । ଏହା ସେମାନଙ୍କ ପାଇଁ ଏକ ସାମାଜିକ ଅବଦାନ, ଯାହା ମାଧ୍ୟମରେ ସେମାନଙ୍କର ବ୍ୟକ୍ତିତ୍ୱ, ବିବେକ ଓ ଚିନ୍ତାଧାରା ଗଠିତ ହୋଇଛି । ସେମାନଙ୍କୁ ଦେଇଛି ଆତ୍ମ-ପରିଚୟ ଓ ଜାତୀୟତା । ସେମାନଙ୍କ ପାଇଁ ସମଗ୍ର ପୃଥିବୀକୁ ଦୁଇ ଭାଗରେ ବିଭକ୍ତ କରିଛି- 'ଓଡ଼ିଆ'-ଯାହା ସେ ନିଜେ ଓ 'ଅଣ ଓଡ଼ିଆ'-ଯାହା ସେ ନିଜେ ନୁହେଁ । ଯେତେବେଳେ ଜଣେ ବ୍ୟକ୍ତି ନିଜର ପରିଚୟ ଦେଉଛି 'ଓଡ଼ିଆ' ବୋଲି, ସେ ଏକାଧାରାରେ ନିଜର ସମାଜ, ଭାଷା, ଜାତୀୟତା, କଳା, ସଂସ୍କୃତି, ସାହିତ୍ୟ, ଐତିହ୍ୟ ପ୍ରତୀକ ଓ ଦାୟାଦ । ସେ ହେଉଛି

'ଆମେ', ଓ ଅନ୍ୟ ସମସ୍ତେ 'ସେମାନେ' । ଏହି ମୌଳିକ ବିରୋଧର ଅଭାବରେ ସଂସ୍କୃତକୁ ଏକ ନିର୍ଦ୍ଦିଷ୍ଟ ସମାଜର ଭାଷା ବୋଲି କୁହାଯାଇ ପାରିବ ନାହିଁ । ଏହି ଭାଷାର ବକ୍ତା ଥାଇପାରନ୍ତି, କିନ୍ତୁ ସମାଜ ନାହିଁ । ତେଣୁ କେବଳ ଉନ୍ନତ ସାହିତ୍ୟର ଦୁହାଇ ଦେଇ ଗୋଟିଏ ଭାଷାର ବିକାଶକୁ ସାମ୍ପ୍ରତିକ ଦୃଷ୍ଟିରୁ ବିଚାର କରାଯାଇ ପାରିବ ନାହିଁ ।

ଗୋଟିଏ ଭାଷାର ବିକାଶକୁ ପ୍ରତ୍ୟକ୍ଷ କରିବାକୁ ହେଲେ ମୁଖ୍ୟତଃ ଚାରୋଟି ଦିଗରୁ ଆମକୁ ବିଚାର କରିବାକୁ ପଡ଼ିଥାଏ । ସେ ଦିଗଗୁଡ଼ିକ ହେଲେ- ଏହାର ଜନସାଂଖ୍ୟିକ (demographic) ବଳ, ଏହାର ଭାଷାତାତ୍ତ୍ୱିକ (linguistic) ଗଠନ, ଏହାର ସମାଜତାତ୍ତ୍ୱିକ (sociological) ପ୍ରୟୋଗ ଓ ଏହାର ପ୍ରତିଷ୍ଠାଗତ (juridical) ବ୍ୟବସ୍ଥା । ଭାଷାର ବିକାଶ ପାଇଁ ଏ ପ୍ରତ୍ୟେକଟି ଅଙ୍ଗର ଯଥେଷ୍ଟ ଗୁରୁତ୍ୱ ଅଛି ।

ପ୍ରଥମେ ଜନସାଂଖ୍ୟିକ ଦିଗଟିକୁ ନିଆଯାଉ, ଅର୍ଥାତ୍ କେତେ ସଂଖ୍ୟକ ଲୋକଙ୍କର ଏହା ମାତୃଭାଷା ଓ ଏହା ଏକ ବର୍ଦ୍ଧିଷ୍ଣୁ ଭାଷା କି ନୁହେଁ । ଏହି ଦୁଇଟି ବିଷୟ ଆମକୁ ଗୋଟିଏ ଭାଷାର ଜୀବନୀଶକ୍ତିର ସୂଚନା ଦେଇଥାଏ । ଯେଉଁ ଭାଷାକୁ ଲୋକେ ମାତୃଭାଷା ରୂପେ ବ୍ୟବହାର କରନ୍ତି ନାହିଁ, ଯଥା- ସଂସ୍କୃତ, ତାହା ଗୋଟିଏ ମୃତ ଭାଷା । ସେହିପରି ଯେଉଁ ଭାଷାର ଭାଷାଭାଷୀଙ୍କ ସଂଖ୍ୟା ଜନସଂଖ୍ୟାର ବୃଦ୍ଧି ସଙ୍ଗେ ସଙ୍ଗେ କ୍ରମବର୍ଦ୍ଧିଷ୍ଣୁ ନୁହେଁ ବା ହ୍ରାସ ପାଉଥିବାର ଦେଖାଯାଏ, ତାହା ଏକ କ୍ଷୟିଷ୍ଣୁ ଭାଷା । ଭାରତର ଜନସଂଖ୍ୟା ଯଦିଓ ଦ୍ରୁତ ଗତିରେ ବଢ଼ିବାରେ ଲାଗିଛି ଭାଷାଗୁଡ଼ିକ ମଧ୍ୟ ସେହି ଅନୁପାତରେ ବଢ଼ିବାର କଥା, କିନ୍ତୁ ସବୁ ଭାଷା ସେହି ଅନୁପାତରେ ବଢୁନାହାନ୍ତି ବା କ୍ରମଶଃ ହ୍ରାସ ପାଇବାରେ ଲାଗିଛନ୍ତି । ଭାରତରେ ଏହି କ୍ଷୟିଷ୍ଣୁ ଭାଷାର ଅଭାବ ନାହିଁ ଏପରିକି ଓଡ଼ିଶାରେ ବି ନାହିଁ । ଓଡ଼ିଶାର ଅନେକଗୁଡ଼ିଏ ଛୋଟ ଛୋଟ ଭାଷା ଅଛନ୍ତି, ଯେଉଁଗୁଡ଼ିକରେ କ୍ରମାଗତ ଭାବେ ଭାଷାଭାଷୀଙ୍କର ସଂଖ୍ୟା ହ୍ରାସ ପାଇବାରେ ଲାଗିଛି । ଏପରିକି ଏମାନଙ୍କର ଭାଷାଭାଷୀ ସଂଖ୍ୟା ମାତ୍ର ଦୁଇ ବା ତିନି ହଜାରରେ ଆସି ପହଞ୍ଚି ସାରିଛି । ଏହି ଅବକ୍ଷୟ ଆଉ କିଛି ବର୍ଷ ଏହିପରି ଭାବେ ଚାଲିଲେ, ଏହି ଭାଷାଗୁଡ଼ିକ ସମ୍ପୂର୍ଣ୍ଣ ଲୋପ ପାଇଯିବାର ଯଥେଷ୍ଟ ସମ୍ଭାବନା ଅଛି । ଭାରତବର୍ଷ ପରି ଗୋଟିଏ ଦେଶରେ, ଯେଉଁଠି ଦୁଇଶତାଧିକ ଛୋଟ ବଡ଼ ଭାଷା ବ୍ୟବହୃତ ହୋଇଥାନ୍ତି, ସ୍ୱାଧୀନତା ପ୍ରାପ୍ତି ପରେ ସେମାନଙ୍କର ସ୍ୱଚ୍ଛନ୍ଦ ଜୀବନରେ ବିରାଟ ପରିବର୍ତ୍ତନ ଦେଖାଦେଇଛି । ପ୍ରକୃତିର କୋଳରେ ସବୁ ଜୀବଜନ୍ତୁଙ୍କର ବଞ୍ଚିବା ପାଇଁ ଯେପରି ନିର୍ଦ୍ଦିଷ୍ଟ ପରିବେଶ ରହିଛି, ଆଉ ସେହି ପରିବେଶରେ ଯଦି ବିଭ୍ରାଟ ଦେଖାଦିଏ, ତାହାହେଲେ କିଛି ଜୀବଜନ୍ତୁଙ୍କର ଲୋପ ପାଇଯିବାର ଯେପରି ଆଶଙ୍କା ଦେଖାଦେଇଥାଏ, ସେହିପରି ଭାଷା ପାଇଁ ମଧ୍ୟ ଏକ ପରିବେଶ ରହିଛି । ପ୍ରକୃତିରେ ଯେପରି ଗୋଟିଏ ବଡ଼ ହିଂସ୍ର ଜନ୍ତୁ, ଯଥା- ମନୁଷ୍ୟ ଅନ୍ୟାନ୍ୟ ସମସ୍ତ ଜୀବଜନ୍ତୁଙ୍କର ଧ୍ୱଂସର କାରଣ ହୋଇପାରେ, ସେହିପରି ଗୋଟିଏ ଭାଷା ଯଦି ରାଜନୈତିକ ବା ଅନ୍ୟାନ୍ୟ କାରଣରୁ ହଠାତ୍ ଆଶାତୀତ ପରାକ୍ରମ ସଂଗ୍ରହ କରେ, ଏହା ଅନ୍ୟାନ୍ୟ ଭାଷାଗୁଡ଼ିକୁ ସ୍ଥାନଚ୍ୟୁତ କରିପାରେ, ଯାହା ଫଳରେର ସେମାନେ ବିପନ୍ନ

ହୋଇଥାନ୍ତି । ଏଇ ବିଗତ କେଇ ବର୍ଷ ଭିତରେ ହିନ୍ଦୀଭାଷା ହଠାତ୍ ରାଜନୈତିକ ପୃଷ୍ଠପୋଷକତା ସଂଗ୍ରହ କରି ଭାରତର ମାନଚିତ୍ରରୁ ବହୁ ଭାଷାକୁ ସ୍ଥାନଚ୍ୟୁତ କରିଛି । ୧୯୬୧ ମସିହାର ଜନଗଣନା ଅନୁସାରେ ଏହା ଯଦିଓ ମୁଖ୍ୟତଃ ଯୋଡ଼ିଏ ବା ତିନୋଟି ପ୍ରଦେଶର ଭାଷା ଥିଲା, ଯଥା– ଉତ୍ତର ପ୍ରଦେଶ, ମଧ୍ୟ ପ୍ରଦେଶ ଓ ଦିଲ୍ଲୀ, ଏବଂ ଭାରତ ଜନସଂଖ୍ୟାର ମାତ୍ର ଶତକଡ଼ା ପଚିଶ ଭାଗ ଲୋକଙ୍କର ଭାଷା ଥିଲା, ୧୯୮୧ ଜନଗଣନା ସୁଦ୍ଧା, ଅର୍ଥାତ୍ ମାତ୍ର କୋଡ଼ିଏ ବର୍ଷ ଭିତରେ ଏହା ଭାରତର ପ୍ରାୟ ଚାଳିଶ ପ୍ରତିଶତ ଲୋକଙ୍କର ଭାଷାରେ ପରିଣତ ହୋଇଛି । ସଂଖ୍ୟାରେ, ଏହା ମାତ୍ର ୧୨କୋଟି ଲୋକଙ୍କ ଭାଷାରୁ ୧୯୮୧ରେ ପ୍ରାୟ ୧୮ କୋଟି ଲୋକଙ୍କ ଭାଷା ହୋଇଛି । ସେହି ସମୟ ଭିତରେ, ଅର୍ଥାତ୍ ୧୯୬୧ରୁ ୮୧ ଭିତରେ ଓଡ଼ିଆ ଭାଷାର ବୃଦ୍ଧି ହେଉଛି ଦେଢ଼ କୋଟିରୁ ଦୁଇକୋଟି ପଚିଶ ଲକ୍ଷ ମାତ୍ର । ହିନ୍ଦୀର ଏହି ଆଶାତୀତ ଜନସାଂଖ୍ୟିକ ବୃଦ୍ଧି ପ୍ରାକୃତିକ କାରଣରୁ ହୋଇନାହିଁ, କାରଣ ଭାଷାର ସ୍ୱାଭାବିକ ବୃଦ୍ଧି ଅତ୍ୟନ୍ତ ମନ୍ଥର, ଯାହା ଓଡ଼ିଆ ଓ ଭାରତର ଅନ୍ୟାନ୍ୟ ମୁଖ୍ୟଭାଷାଗୁଡ଼ିକର ବୃଦ୍ଧିର ହାରରୁ କଳନା କରାଯାଇପାରେ । ସେ କ୍ଷେତ୍ରରେ, ହିନ୍ଦୀର ଏହି ଅସ୍ୱାଭାବିକ ବୃଦ୍ଧି ଭାଷାତାତ୍ତ୍ୱିକ ପ୍ରପଞ୍ଚତା ବଳରେ ଖାଲି ସମ୍ଭବ ହୋଇନାହିଁ, ସଫଳ ହୋଇଛି ମଧ୍ୟ । ବର୍ତ୍ତମାନ ହିନ୍ଦୀ ଖାଲି ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ଓ ଦିଲ୍ଲୀର ଭାଷା ନୁହେଁ – ଏହା ବିହାର, ରାଜସ୍ଥାନ, ହରିୟାନା ଓ ହିମାଚଳ ପ୍ରଦେଶକୁ ମଧ୍ୟ କବଳିତ କରିଛି ଓ ସମଗ୍ର ଦେଶର ବିଭିନ୍ନ ପ୍ରଦେଶରୁ ସ୍ଥାନୀୟ ମାତୃଭାଷାଗୁଡ଼ିକୁ, ଯଥା– ବିହାରର ମୈଥିଳୀ, ଭୋଜପୁରୀ ଆଦି, ରାଜସ୍ଥାନର ମାରୱାଡ଼ୀ, ମେୱାଡ଼ୀ ଆଦି, ହରିୟାନାର ବାଙ୍ଗରୁ, ହିମାଚଳ ପ୍ରଦେଶର ଚମ୍ବେଆଲୀ, ପାହାଡ଼ୀ ଆଦି, ଉତ୍ତର ପ୍ରଦେଶର ଗଡ଼ୱାଲୀ, କୁମାଓ୍ୱନୀ ଆଦି, ଆନ୍ଧ୍ର ପ୍ରଦେଶର ବନ୍‌ଜାରୀ, ସୁଗାଲି ଆଦି, ଏପରିକି ଓଡ଼ିଆର ଲରିଆକୁ ମଧ୍ୟ ଆତ୍ମସାତ୍ କରିଛି । ଏହି ମାରାତ୍ମକ ଭାଷାତାତ୍ତ୍ୱିକ ପଦ୍ଧତିକୁ ଅନୁସରଣ କରି ହିନ୍ଦୀ ଅନ୍ୟାନ୍ୟ ଭାଷାଭାଷୀଙ୍କ ମନରେ ଯେଉଁ ଆତଙ୍କ ସୃଷ୍ଟି କରିଛି, ତା'ର ଏକ ଜ୍ୱଳନ୍ତ ଉଦାହରଣ ଗୁଜରାଟୀର ବରେଣ୍ୟ ଲେଖକ ସୁରେଶ ଜୋଷୀ ଓ ସଲ୍‌ମାନ୍ ରୁଶଦୀଙ୍କ ଭିତରେ ଏକ କଥାବାର୍ତ୍ତାରେ ପ୍ରକାଶ ପାଇଛି । ରୁଶଦୀ ଲେଖିଛନ୍ତି ଯେ, ସୁରେଶ ଜୋଷୀଙ୍କୁ ସେ ଯେତେବେଳେ ଭେଟନ୍ତି, ସେ ତାଙ୍କୁ କହିଥିଲେ– ହିନ୍ଦୀରେ ଲେଖିପାରିବାର ଶକ୍ତି ଯଦିଓ ତାଙ୍କର ଅଛି, ତଥାପି ହିନ୍ଦୀରେ ନଲେଖି ଗୁଜରାଟୀରେ ଲେଖିବାକୁ ସେ ତାଙ୍କର କର୍ତ୍ତବ୍ୟ ବୋଲି ମନେ କରନ୍ତି, କାରଣ ଗୁଜରାଟୀ ଭାଷା ଆଜି ବିପନ୍ନ । ଗୁଜରାଟୀ ପ୍ରତି ଏ ବିପଦ ଇଂରାଜୀ ଭାଷା ବା ପାଶ୍ଚାତ୍ୟ ସଭ୍ୟତାରୁ ଆସୁନାହିଁ, ଗୁଜରାଟୀ ପାଇଁ ଏ ବିପଦ ହେଉଛି ହିନ୍ଦୀ, ଯାହା ଚାପରେ ବର୍ଷ କେଇଟା ଭିତରେ ଗୁଜରାଟୀ ମରିଯାଇପାରେ । ଆଧୁନିକ ସଭ୍ୟତାରେ ଭାଷା ମରିବାର ଅର୍ଥ ନୁହେଁ ଯେ, ଏହା ସମ୍ପୂର୍ଣ୍ଣ ଭାବେ ଲୋକମୁଖରୁ ଲୋପ ପାଇଯିବ । ସେ ଦୃଷ୍ଟିରୁ ସଂସ୍କୃତ ବି ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଲୋପ ପାଇନାହିଁ । ପ୍ରତ୍ୟେକ ହିନ୍ଦୁ ପୂଜା ପ୍ରାର୍ଥନା କରିବା ବେଳେ ବା ଅନ୍ୟାନ୍ୟ ଧର୍ମ କାର୍ଯ୍ୟରେ ସଂସ୍କୃତ ଭାଷାର ମନ୍ତ୍ରୋଚ୍ଚାରଣାଦି

କରିଥାଏ, କିନ୍ତୁ ସଂସ୍କୃତର ବ୍ୟବହାର ଏହି ଧର୍ମୀୟ ପରିସରଟି ଛାଡ଼ିଦେଲେ ଆମ ସମାଜରେ ଅନ୍ୟତ୍ର ବ୍ୟବହୃତ ହୁଏନାହିଁ । କିନ୍ତୁ ଓଡ଼ିଆ ଭାଷାକୁ ନିଆଯାଉ । କେତୋଟି ବିଶେଷ କ୍ଷେତ୍ରକୁ ଛାଡ଼ିଦେଲେ ଓଡ଼ିଆ ଆମ ସମାଜରେ ପ୍ରାୟ ସର୍ବତ୍ର ବ୍ୟବହୃତ ହୋଇଥାଏ । ଯେଉଁ ସାମାଜିକ କ୍ଷେତ୍ରଗୁଡ଼ିକ ଓଡ଼ିଆ ଭାଷାର ଅପହଞ୍ଚ, ସେ ହେଲା ଉଚ୍ଚ ନ୍ୟାୟାଳୟ, ଉଚ୍ଚଶାସନ, ଉଚ୍ଚଶିକ୍ଷା, ବୃହତ୍ ବ୍ୟବସାୟ, ଅନ୍ତର୍ଦ୍ଦେଶ ବା ଆନ୍ତଃରାଜ୍ୟ ଯୋଗାଯୋଗ, ଇତ୍ୟାଦି । ଏସବୁ କ୍ଷେତ୍ର ଇଂରାଜୀ ଭାଷାଦ୍ୱାରା ଅଧିକୃତ । ଅପରପକ୍ଷେ, ମୈଥିଳୀ, ମାରୱାଡ଼ୀ ପରି କେତେକ ଭାଷା ଏବେ ବି ଲୋକମୁଖରେ ବଞ୍ଚିଥିଲେ ମଧ୍ୟ ଏଗୁଡ଼ିକ ଭାଷାର ସମ୍ମାନ ହରାଇଛନ୍ତି, କାରଣ ଏ ଭାଷାଗୁଡ଼ିକର ସାମାଜିକ କ୍ଷେତ୍ରଗୁଡ଼ିକ ହିନ୍ଦୀଦ୍ୱାରା ଏପରିଭାବେ କବଳିତ ହୋଇଛି ଯେ, ଏହି ଭାଷାଭାଷୀମାନଙ୍କ ପାଇଁ ନିଜ ମାତୃଭାଷାରେ ପ୍ରାଥମିକ ଶିକ୍ଷା ପାଇବା ଦୁରୁହ ହୋଇପଡ଼ିଛି । ଅନ୍ୟାନ୍ୟ କ୍ଷେତ୍ର ଦୂରେ ଥାଉ । ଆଧୁନିକ ସମାଜରେ ଏହା ହିଁ ହେଉଛି ଭାଷାର ମୃତ୍ୟୁ, ମୃତ୍ୟୁ ତ ନୁହେଁ ଜୀବନ୍ମୃତ୍ୟୁ । ତେଣୁ ଜନସଂଖ୍ୟା ଦୃଷ୍ଟିରୁ ଓଡ଼ିଆ ଭାଷାଭାଷୀଙ୍କର ଦଶବର୍ଷରେ ହାରାହାରି କୋଡ଼ିଏ ପ୍ରତିଶତ ବୃଦ୍ଧିକୁ ଭାଷା ବିକାଶର ଏକ ନିଶ୍ଚିତ ପ୍ରମାଣ ଭାବେ ଧରି ନେବା ପୂର୍ବରୁ ଏହାର ଅନ୍ୟାନ୍ୟ କ୍ଷେତ୍ରଗୁଡ଼ିକ ସୁରକ୍ଷିତ କି ନୁହେଁ, ପରୀକ୍ଷା କରିବା ଉଚିତ ।

ସେ ଦୃଷ୍ଟିରୁ ଆଜି ଓଡ଼ିଆ ଭାଷାର 'ଓଡ଼ିଆତ୍ୱ' ବି ସୁରକ୍ଷିତ ନୁହେଁ । ଏ ଓଡ଼ିଆତ୍ୱ କ'ଣ ? ଓଡ଼ିଆତ୍ୱର ପ୍ରଥମ ଓ ପ୍ରଧାନ ପ୍ରମାଣ ହେଉଛି ଓଡ଼ିଆ ଭାଷା ପ୍ରତି ଆନୁଗତ୍ୟ ବା language loyalty । ଏହା ଓଡ଼ିଆ ଭାଷାରେ ଜ୍ଞାନ ନୁହେଁ, ଏହା ଏକ ପରିଚୟ (identity) । ଇଂରାଜୀ ଭାଷାରେ ଅଗାଧ ଜ୍ଞାନ ସତ୍ତ୍ୱେ ଆମେ ଇଂରେଜ ହୋଇପାରିବା ନାହିଁ ବା ଫ୍ରେଞ୍ଚ ଭାଷା ବଳରେ ଫ୍ରେଞ୍ଚ । ଭାରତରେ ବିଜାତୀୟତାର (ethnicity) ପରିଚୟ ହେଉଛି ମାତୃଭାଷା । ଏହାର ଅନ୍ୟ କୌଣସି ବିକଳ୍ପ ମାର୍ଗ ନାହିଁ, ଅନୁସୂଚିତ ଜାତିମାନଙ୍କୁ ଛାଡ଼ିଦେଲେ । ଏହି କୋଡ଼ିଏ ତିରିଶ ବର୍ଷ ହେଲା ଓଡ଼ିଆମାନଙ୍କର ସେହି ଜାତୀୟତାରେ ବିଭ୍ରାଟ ଦେଖାଦେଇଛି, କାରଣ ଏକ ବିରାଟ ଓଡ଼ିଆ ଭାଷାଭାଷୀ ଭାଗ ନିଜର ମାତୃଭାଷାକୁ ଓଡ଼ିଆ ବୋଲି କହିବା ପାଇଁ ନାରାଜ । ଏମାନେ ନିଜ ମାତୃଭାଷାକୁ 'ସମ୍ବଲପୁରୀ' ବୋଲି ନାମିତ କରିବାକୁ ଚାହାନ୍ତି । ମାତ୍ର କୋଡ଼ିଏ ବର୍ଷ ତଳେ ଏ ପରିଚୟର ଚିହ୍ନବର୍ଣ୍ଣ ନଥିଲା, କିନ୍ତୁ କୋଡ଼ିଏ ବର୍ଷ ଭିତରେ ଏହା ପ୍ରାୟ ପଚାଶହଜାର ବା ଉର୍ଦ୍ଧ୍ୱରେ ପହଞ୍ଚିଛି ଏବଂ ଆଶୁ ପ୍ରତିବିଧାନ କରା ନ ଗଲେ ଏହା ବିଜାତୀୟତାର ବିକଟ ରୂପ ଧାରଣ କରିବା ଅବଶ୍ୟମ୍ଭାବୀ । ଭିନ୍ନ ପରିଚୟର ଅନ୍ୟ ଓଡ଼ିଆ ଭାଷାଭାଷୀ ଗୋଷ୍ଠୀ ଯେ ନାହାନ୍ତି ନୁହେଁ, ଯଥା- କୋରାପୁଟରେ ପରଜା, ବସ୍ତରର ଭୋଥଡ଼ା ବା ଶ୍ରୀକୁଳମର ରେଲ୍ଲି ଇତ୍ୟାଦି । କିନ୍ତୁ ସମ୍ବଲପୁରୀ ଓ ଏମାନଙ୍କ ଭିତରେ ପ୍ରଧାନ ପାର୍ଥକ୍ୟ ହେଉଛି ଯେ, ଏମାନେ ଅଜ୍ଞାନତାବଶତଃ ଓଡ଼ିଆକୁ ନିଜର ମାତୃଭାଷା ନକହି ଭିନ୍ନ ନାମର ପରିଚୟ ଦେଉଛନ୍ତି । ସେମାନଙ୍କୁ ସାମାନ୍ୟ ପ୍ରରୋଚନା ମିଳିଲେ, ସାମାନ୍ୟ ଶିକ୍ଷା ମିଳିଲେ ସେମାନେ ସ୍ୱତଃ ନିଜକୁ ଓଡ଼ିଆଭାଷୀ ବୋଲି ପରିଚୟ

ଦେବେ । ଅପରପକ୍ଷେ, 'ସମ୍ବଲପୁରୀ' ହେଉଛି ଏକ ସଚେଷ୍ଟ ବିଜାତୀୟ ଆନ୍ଦୋଳନ । ଓଡ଼ିଆ ଜାତିକୁ ବିଭକ୍ତ କରିବାରେ, ଓଡ଼ିଶା ଦେଶକୁ ଖଣ୍ଡଖଣ୍ଡ କରିବାରେ ହିଁ ଏହାର ପରିଣତି ।

ସେହିପରି ଅନ୍ୟ ଏକ ଗୋଷ୍ଠୀ ହେଲେ ଓଡ଼ିଆ ମୁସଲମାନ । ଓଡ଼ିଆ ମୁସଲମାନଙ୍କର ମାତୃଭାଷା ଯାହା ହୋଇଥାଉ ନା କାହିଁକି, (ଏବଂ ଆମେ ଜାଣୁ ଯେ ଅଧିକାଂଶ କ୍ଷେତ୍ରରେ ଏହା ନିରୋଳା ଓଡ଼ିଆ), ପରିଚୟ ଦୃଷ୍ଟିରୁ ସେମାନେ ଓଡ଼ିଆଭାଷୀ ନୁହନ୍ତି । ଓଡ଼ିଶାର ନବେଭାଗ ମୁସଲମାନ ନିଜର ମାତୃଭାଷାକୁ ଉର୍ଦ୍ଦୁଭାଷା ରୂପେ ଲେଖାଇଥାନ୍ତି, ଯାହା ଫଳରେ ଓଡ଼ିଶାର ପ୍ରତି ଦଶହଜାର ବ୍ୟକ୍ତିଙ୍କ ଭିତରୁ ୧୩୧ ଜଣ ଉର୍ଦ୍ଦୁଭାଷୀ ଓ ଓଡ଼ିଶାର ଏହା ଚତୁର୍ଥ ବୃହତ୍ତମ ଭାଷା । ଓଡ଼ିଆ ମୁସଲମାନମାନେ ଉର୍ଦ୍ଦୁ ମାତୃଭାଷୀ ରୂପେ ନିଜର ପରିଚୟ ଦେଇ ନଥିଲେ ଓଡ଼ିଶାରେ ଏତେ ସଂଖ୍ୟାରେ ଉର୍ଦ୍ଦୁଭାଷୀ ଆସନ୍ତେ କେଉଁଠୁ ? ଏ କ୍ଷେତ୍ରରେ ଧର୍ମର ଆନୁଗତ୍ୟ ପାଖରେ ମାତୃଭାଷା ବି ହାର ମାନିଛି । କିନ୍ତୁ ଏହା ହେବା ସ୍ୱୟଂସିଦ୍ଧ ନୁହେଁ । ବାଂଲାଦେଶ, ଇଣ୍ଡୋନେସିଆ, ମାଲେସିଆ ପରି ବହୁ ମୁସଲମାନ ରାଷ୍ଟ୍ରରେ ମାତୃଭାଷା ଧର୍ମଠାରୁ ଊର୍ଦ୍ଧ୍ୱରେ । ଭାରତରେ ବି ପଶ୍ଚିମବଙ୍ଗ, ତାମିଲନାଡୁ ଓ କେରଳର ମୁସଲମାନଙ୍କର ଭାଷା ଆନୁଗତ୍ୟ ମାତୃଭାଷାକୁ ଧରି । ଓଡ଼ିଶାରେ ଏହାର ବ୍ୟତିକ୍ରମ ଦେଖାଦେବାର କାରଣ ନାହିଁ, ବରଂ ଓଡ଼ିଆ ମୁସଲମାନମାନଙ୍କର ଏହି ମିଥ୍ୟା ପରିଚୟ ସେମାନଙ୍କ ଆନୁଗତ୍ୟକୁ ବିଭ୍ରାନ୍ତିକର କରି ତୋଳିଛି ।

ଏହାପରେ ଓଡ଼ିଶାର ବିରାଟ ଆଦିବାସୀ ସମ୍ପ୍ରଦାୟ, ଯେଉଁମାନଙ୍କର ନିଜସ୍ୱ ପରିଚୟ ଅଛି; କିନ୍ତୁ ମାତୃଭାଷା ଦୃଷ୍ଟିରୁ ଓଡ଼ିଶାର ପ୍ରାୟ ଅର୍ଦ୍ଧାଧିକ ଆଦିବାସୀ ଗୋଷ୍ଠୀ ଓଡ଼ିଆ ଏବଂ ସର୍ବାଗ୍ରେ ଏହି ଓଡ଼ିଆଭାଷୀ ଗୋଷ୍ଠୀଗୁଡ଼ିକୁ ସୁବିଧା ସୁଯୋଗ ମିଳିବା ଉଚିତ । କିନ୍ତୁ ସେମାନେ ଓଡ଼ିଆ କହୁଥିବାରୁ ସାଧାରଣତଃ ଦୃଷ୍ଟି ଆକର୍ଷଣ କରିପାରି ନ ଥାନ୍ତି, ଏହା ସେମାନଙ୍କର ଦୁର୍ଭାଗ୍ୟ । ବାକି କିଛି ଯେଉଁମାନଙ୍କର ନିଜର ସ୍ୱତନ୍ତ୍ର ଭାଷା ଥିଲେ ବି, ଗୋଟିଏ ସ୍ୱତନ୍ତ୍ର ମାତୃଭାଷାକୁ ରକ୍ଷାକରିବା ପରି ଆବଶ୍ୟକୀୟ ଜନସାଂଖ୍ୟିକ ସବଳତା (demographic viability) ନାହିଁ, ଯାହା ଫଳରେ ଜୁଆଙ୍ଗ, ଖଡ଼ିଆ, ପାରେଙ୍ଗା, ବଣ୍ଡୋ, ଡିଡ଼େଇ ପରି ବେଶ୍ କେତୋଟି ଭାଷା ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛନ୍ତି । ଏ କ୍ଷେତ୍ରରେ ଆମକୁ ମନେ ରଖିବାକୁ ହେବ ଯେ, ଏହି ପଚାଶବର୍ଷ ତଳ ପର୍ଯ୍ୟନ୍ତ ଓଡ଼ିଶାର ଆଦିବାସୀ ଗୋଷ୍ଠୀଗୁଡ଼ିକ ଗଡ଼ଜାତର ନିରାପଦ ଆଶ୍ରୟରେ ଥିଲେ । ବିଭିନ୍ନ ରାଜଶାସନ ସେମାନଙ୍କୁ ବାହାର ସଭ୍ୟତାଠାରୁ ଆଢୁଆଳରେ ରଖିଥିଲା । ହଠାତ୍ ସେମାନଙ୍କର ଏହି ଢାଲ ଖସିପଡ଼ିଛି । କ'ଣ ସେମାନେ ବାହାରୁ ଗ୍ରହଣ କରିବେ, କ'ଣ କରିବେ ନାହିଁ, ତାହା ଭାବି ଦେଖିବାର ବି ଅବସର ନାହିଁ । ଅନେକଙ୍କ ପାଇଁ ଏହା ଏକ ମହାପ୍ଲାବନ, ଆଉ ବୁଡ଼ିଗଲା ଲୋକ କୁଟାଖିଏକୁ ଜାବୁଡ଼ି ଧରିଲା ପରି ଯେ ଯାହା ପାରିଛି ତାକୁଇ ଜାବୁଡ଼ି ଧରିଛି ବୈତରଣୀ ପାର ହେବାର ଆକୁଳ ଚେଷ୍ଟାରେ । କିଛି ଆଦିବାସୀ ଗୋଷ୍ଠୀଙ୍କ ପାଇଁ ସେହିପରି

ଗୋଟିଏ 'କୁଟାଖିଅ' ହେଲା 'ଅକ୍ଷର' ବା Script, ଅର୍ଥାତ୍ ନିଜ ଭାଷାକୁ ଲିଖିତ ବୋଲି ଦେଖାଇବା ପାଇଁ ଗୋଟିଏ ଭିନ୍ନ ଲିପି । ଏହି 'ଅକ୍ଷର ନିଶା' ଆମ ଆଦିବାସୀମାନଙ୍କୁ ଏପରି ଭାବେ ବିମୋହିତ କରିଛି ଯେ, ଗତ ପାଞ୍ଚ-ଦଶବର୍ଷ ଭିତରେ ପ୍ରାୟ ଅଧଡ଼ଜନେ ଆଦିବାସୀ ଭାଷା, ଯଥା- ସାନ୍ତାଳି, ସଉରା, ହୋ, ଖଡ଼ିଆ, ଭୂମିଜ ଆଦି ନିଜ ଭାଷା ପାଇଁ ଗୋଟିଏ ଗୋଟିଏ ଅର୍ଣ୍ଣ ନୂଆ ଲିପି ଉଦ୍ଭାବନ କରି ବସିଛନ୍ତି । ଏହି ଆନ୍ଦୋଳନର ପ୍ରଥମ ଆରମ୍ଭ ହୁଏ ସାନ୍ତାଳି ଭାଷାରୁ ଗୁରୁ ରଘୁନାଥ ମୁର୍ମୁଙ୍କ ଦ୍ୱାରା, ଯେ ହେଉଛନ୍ତି ସାନ୍ତାଳି 'ଓଲ୍‌ଚିକି' ଅକ୍ଷରର ଉଦ୍ଭାବକ । (ଆଦିବାସୀ ନେତାମାନଙ୍କ ଚାପ ଫଳରେ ବର୍ତ୍ତମାନ ଏହି ଲିପିରେ ଶିକ୍ଷା ଦେବାପାଇଁ ଓଡ଼ିଶା ସରକାର ବି ଅଠରଟି କି କୋଡ଼ିଏଟି ସ୍କୁଲରେ ବ୍ୟବସ୍ଥା ଗ୍ରହଣ କରିଛନ୍ତି ।) ରଘୁନାଥ ମୁର୍ମୁ ଯେତେବେଳେ ସାନ୍ତାଳି ଭାଷାପାଇଁ ଓଲ୍‌ଚିକି ସୃଷ୍ଟି କଲେ, ତାହାର ହୁଏତ କିଛିଟା ଯଥାର୍ଥ୍ୟ ଥିଲା, କାରଣ ସାନ୍ତାଳିମାନେ ଓଡ଼ିଶା ଛଡ଼ା ବିହାର, ପଶ୍ଚିମବଙ୍ଗ ଓ ଆସାମର ଚା' ବାଗାନଗୁଡ଼ିକରେ ବିକ୍ଷିପ୍ତ ହୋଇ ରହୁଛନ୍ତି । ଗୋଟିଏ ସାଧାରଣ ଲିପି ଦ୍ୱାରା ସମସ୍ତଙ୍କୁ ଏକାଠି କରିବାର ପ୍ରଚେଷ୍ଟା ଦେଖାଦେବା ସ୍ୱାଭାବିକ । ଭାରତରେ ଏହା କିଛି ନୂହେଁ । ଯଥେଷ୍ଟ ଉନ୍ନତ କୋଙ୍କଣି ଭାଷା ଯାହା କର୍ଣ୍ଣାଟକ, କେରଳ, ଗୋଆ ଓ ମହାରାଷ୍ଟ୍ର, ଏପରି ଚାରୋଟି ପ୍ରଦେଶରେ ବିକ୍ଷିପ୍ତ ହୋଇ ରହିଛି, ସେ କ୍ଷେତ୍ରରେ ବି ଗୋଟିଏ ସାଧାରଣ ଲିପି ପାଇଁ ବହୁ ପ୍ରୟାସ ଚାଲିଛି । ସେ ଯାହା ହେଉ, ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଯଦି କିଛି ଅମର କରି ରଖିଯାଏ, ତାହା ତାଙ୍କର ସାନ୍ତାଳି ଲିପି ଓଲଚିକି ନୁହେଁ, ଯାହା ଭାଷା ବୈଜ୍ଞାନିକ ବିଚାରରୁ ବହୁଭାବେ ଅଭାବନୀୟ; ଏପରିକି ଏହା ଭାରତୀୟ ଲିପି-ପରମ୍ପରାରେ ଆକ୍ଷରିକ (syllabic) ବି ନୁହେଁ, ବରଂ ପି.ଓ. ବୋଡ଼ିଂଙ୍କୁ ଅନୁସରଣ କରି ରୋମାନ୍ ଧାରାରେ alphabetic । ସେ ଦୃଷ୍ଟିରୁ ଖାଲି ସାନ୍ତାଳି ଭାଷା ନୁହେଁ, କିନ୍ତୁ ସମଗ୍ର ଭାରତୀୟ ଆଦିବାସୀ ଭାଷା ଶିକ୍ଷା-ଦର୍ଶନ କ୍ଷେତ୍ରରେ ଯାହା ପଣ୍ଡିତ ମୁର୍ମୁଙ୍କୁ ଦିଗ୍‌ଦର୍ଶକର ସମ୍ମାନ ଦେବ, ସେ ହେଉଛି ତାଙ୍କର ପ୍ରାଥମିକ ସାନ୍ତାଳି ଭାଷା ପୁସ୍ତକ 'ପାର୍ସିପୋହା' । ଏ ବିଷୟରେ ସବିଶେଷ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ ଲେଖକର Tribal language Pedagogy - A case for the Santali Guru, 1987, Indian Linguistics, vol. 47, No.1-4, Poona) । ଏହା ସାନ୍ତାଳି ଶିଶୁପାଇଁ ଖାଲି ଏକ ପ୍ରାଥମିକ ପାଠ୍ୟ ନୁହେଁ, ଏହା ଭାରତୀୟ ଆଦିବାସୀ ଭାଷାଗୁଡ଼ିକ ପାଇଁ ଏକ ପ୍ରଛନ୍ନ ଶିକ୍ଷା-ଦର୍ଶନ । ଅଥଚ ପରିତାପର ବିଷୟ ଯେ, ଆଦିବାସୀ ଭାଷାଗୁଡ଼ିକ ଉଦ୍ଭଟ, ଅବାସ୍ତବ ଲିପି-ଉଦ୍ଭାବନର ଗୋଷ୍ଠୀ ରାଜନୀତିରେ ମାତିଥିବା ବେଳେ, ପ୍ରକୃତ ଶିକ୍ଷା ଅବହେଳିତ ହେବାରେ ଲାଗିଛି । ଏମାନଙ୍କ ଭିତରୁ ଅଧିକାଂଶ ଓଡ଼ିଆ ଲିପିକୁ ଗ୍ରହଣ କରିପାରିଥାନ୍ତେ, ଆଉ ସେଥିରେ ସେମାନଙ୍କ ସ୍ୱାର୍ଥ ଅଧିକ ସୁରକ୍ଷିତ ହୋଇଥାନ୍ତା ।

ଆଦିବାସୀ ଭାଷାଗୁଡ଼ିକର ଏହିସବୁ ଲକ୍ଷ୍ୟହୀନ ଆନ୍ଦୋଳନ ଫଳରେ ଓଡ଼ିଆ ଭାଷାର ସ୍ୱାର୍ଥ ଯେ ବାଧାପ୍ରାପ୍ତ ହେଉନାହିଁ ନୁହେଁ, କିନ୍ତୁ ସେଥିପାଇଁ ଅଯଥା ଉତ୍କଣ୍ଠିତ ହୋଇପଡ଼ିବାର

କାରଣ ନାହିଁ । ଓଡ଼ିଆ ଭାଷାର ସ୍ୱାର୍ଥ ଆଦିବାସୀ ଭାଷାଗୁଡ଼ିକୁ ଉଚ୍ଛେଦ କରିବାରେ ନାହିଁ, କିନ୍ତୁ ସେମାନଙ୍କୁ ଓଡ଼ିଆ ଶିଖାଇବାରେ ଅବଶ୍ୟ ଅଛି । ତେଣୁ ଯଦି ଓଡ଼ିଶାରେ ଆଦିବାସୀମାନେ ଓଡ଼ିଆ ପରିବର୍ତ୍ତେ ଅନ୍ୟ ଭାଷାକୁ ଦ୍ୱିତୀୟ ଭାଷାରୂପେ ଶିଖନ୍ତି ବା ବ୍ୟବହାର କରନ୍ତି, ତାହା ଅବଶ୍ୟ ଓଡ଼ିଆ ସ୍ୱାର୍ଥର ପ୍ରତିକୂଳ ହେବ । ଓଡ଼ିଆରେ ଏପରି ଉଦାହରଣର ଅଭାବ ନାହିଁ । ବିଶେଷ କରି ପଶ୍ଚିମ ଓ ଉତ୍ତର-ପଶ୍ଚିମ ଓଡ଼ିଶାର କେତେକ ଆଦିବାସୀ ଗୋଷ୍ଠୀ, ଯଥା- କୁଡୁଖ, କିଶାନ, ମୁଣ୍ଡା, ହୋ, କୋଲ୍ହ ଆଦି ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଶିଖୁଥିବାର ଦେଖାଯାଏ, ଅର୍ଥାତ୍ ସେମାନଙ୍କ ପାଇଁ ହିନ୍ଦୀ ହେଉଛି ଦ୍ୱିତୀୟ ଭାଷା ବା ଯୋଗାଯୋଗର ଭାଷା । ରାଜ୍ୟସରକାର ଏହାର ପ୍ରତିବିଧାନ ପାଇଁ ଆଶୁ ପଦକ୍ଷେପ ନେବା ଉଚିତ ।

ବସ୍ତୁତଃ ଏହି ଦ୍ୱିତୀୟ ଭାଷା ପ୍ରସଙ୍ଗରେ କୁହାଯାଇପାରେ ଯେ, ଦ୍ୱିତୀୟ ଭାଷା ରୂପେ ଓଡ଼ିଆର ଜନସାଂଖ୍ୟିକ ସ୍ଥିତି ଅତ୍ୟନ୍ତ ନୈରାଶ୍ୟଜନକ । ୧୯୭୧ ଜନଗଣନା ଅନୁସାରେ ଭାରତରେ ମୋଟ ଓଡ଼ିଆ ଭାଷା କହିପାରୁଥିବା ୨୧,୦୮୦.୪୨୯ ଲୋକଙ୍କ ଭିତରୁ ମାତ୍ର ୧,୨୧.୨୩୧ ହେଉଛନ୍ତି ଅଣଓଡ଼ିଆ । ଓଡ଼ିଆ ଜାଣିଥିବା ଅନ୍ୟଭାଷାଭାଷୀ ଲୋକଙ୍କ ଅଭାବରୁ ଆମେ ସର୍ବଭାରତୀୟ କ୍ଷେତ୍ରରେ ଏକ ଅଜ୍ଞାତ ଅବୋଧ ଜାତି ହୋଇ ରହିଯାଇଛୁ । ଆମ ସଭ୍ୟତାର କେବଳ ଦୃଶ୍ୟମାନ ଭାଗଟି, ଯଥା- ଓଡ଼ିଶୀ ନାଚ, ସମ୍ବଲପୁରୀ ଶାଢ଼ୀ, କୋଣାର୍କ ମନ୍ଦିର ବା ତାରକସି ଅଳଙ୍କାର ବାହାରେ କିଛି କିଛି ପହଞ୍ଚିଛି, କିନ୍ତୁ ଆମର ମାନସିକ ସାଧନଗୁଡ଼ିକ ବିଶେଷକରି ଆମର ସାହିତ୍ୟ, ଦର୍ଶନ ଓ ଇତିହାସ ବାହାରେ ଅଜ୍ଞାତ ଓ ଅଚର୍ଚ୍ଚିତ । କ୍ୱଚିତ୍ ଓଡ଼ିଆ ଭାଷାର ଗୋଟିଏ ବହି ଅନ୍ୟ ଭାଷାରେ ଅନୂଦିତ ହୁଏ, ଭାରତର ଭାବଜଗତକୁ ସ୍ପର୍ଶ କରିବା ତ ଆହୁରି ଦୂରର କଥା । ଶହ ଶହ ବର୍ଷ ବିତିଯାଇଥିଲେ ମଧ ଏ ପର୍ଯ୍ୟନ୍ତ ବି ସାରଳା ଦାସ, ଜଗନ୍ନାଥ ଦାସ ବା ଦୀନକୃଷ୍ଣ, ଅଭିମନ୍ୟୁଙ୍କ ନାମ ଓଡ଼ିଶା ବାହାରେ ଶୁଣାଯାଏ ନାହିଁ । ସେ ଦୃଷ୍ଟିରୁ ସଚ୍ଚି ରାଉତରାୟ ବା ରମାକାନ୍ତ ରଥ ଭାଗ୍ୟଶାଳୀ । ଓଡ଼ିଆଭାଷାର ନାମ ଯଦି ସମ୍ବିଧାନର ଅଷ୍ଟମ ସୂଚୀରେ ଉଠି ନଥାନ୍ତା, ଯାହା ବା ଅଳ୍ପବହୁତ ସମ୍ମାନ ଆମକୁ ମିଳିଛି ବା ମିଳୁଛି, ତା' ବି ମିଳିନଥାନ୍ତା । ଓଡ଼ିଆମାନେ କିନ୍ତୁ ଅନ୍ୟ ଭାଷାର ମୂଲ୍ୟ ବୁଝିବାରେ ପାରଙ୍ଗମ । ଆମର ଅଛି ଇଂଲିଶ୍ ଇନ୍‌ଷ୍ଟିଚ୍ୟୁଟ୍, ହିନ୍ଦୀ ପ୍ରଚାର କେନ୍ଦ୍ର, ଉର୍ଦ୍ଦୁ ଆକାଡ଼େମୀ, ସଂସ୍କୃତ ବିଶ୍ୱବିଦ୍ୟାଳୟ, ଏପରିକି ଆଦିବାସୀ ଭାଷାଶିକ୍ଷା କେନ୍ଦ୍ର । କିନ୍ତୁ ନାହିଁ ଓଡ଼ିଆଭାଷା ଶିଖାଇବା ପାଇଁ ଗୋଟିଏ ଚାଳିଆଘର ବା ଓଡ଼ିଆଭାଷା ପାଇଁ ପାଠ୍ୟସାମଗ୍ରୀ କି ପ୍ରଶିକ୍ଷକ । ଏହାଠାରୁ ବଳି ବଡ଼ ଅନ୍ତରାୟ ଓଡ଼ିଆଭାଷା ବିକାଶପଥରେ ଆଉ କ'ଣ ହୋଇପାରେ ? ଏ ଜାତିର ୧,୬୮.୧୫୮ ବ୍ୟକ୍ତି ଅନ୍ୟଭାଷା କହିପାରନ୍ତି, ଅପରପକ୍ଷେ ଅନ୍ୟ ଭାଷାଭାଷୀ ମାତ୍ର ୧,୨୧,୨୩୧ ବ୍ୟକ୍ତ ଜାଣନ୍ତି ଓଡ଼ିଆ । ଗୋଟିଏ ଭାଷାର ଗୌରବ ବଢ଼େ ଯେତେବେଳେ ଅନ୍ୟ ଭାଷାଭାଷୀମାନେ ସେହି ଭାଷାକୁ ଶିକ୍ଷା କରିଥାନ୍ତି, ଯେପରି ଭାରତରେ ଇଂରାଜୀ ଭାଷା । ଭାରତରେ ଇଂରାଜୀ ମାତୃଭାଷୀଙ୍କ ସଂଖ୍ୟା ଦୁଇ ଲକ୍ଷରୁ ବେଶି

ହୋଇ ନ ଥିଲେ ମଧ୍ୟ ବିରାଟ ସଂଖ୍ୟାରେ ଅନ୍ୟ ଭାଷାଭାଷୀ ଲୋକ ଏହାକୁ କହିବୋଲି ପାରନ୍ତି ।

ଭାଷା-ବିକାଶର ଦ୍ୱିତୀୟ ଦିଗଟି ହେଲା ଭାଷାତାତ୍ତ୍ୱିକ । ଭାଷା ଯଦିଓ ସବୁ ମଣିଷ କୁହନ୍ତି, କ୍ୱଚିତ ଲୋକ କହିପାରିବେ ଭାଷା କ'ଣ ? କେହି ଯଦି ଆପଣଙ୍କୁ ପଚାରେ- ଓଡ଼ିଆ ଭାଷା କ'ଣ ? ଓଡ଼ିଆ ହୋଇଥିବା ସତ୍ତ୍ୱେ ଆପଣ ଏହାର ଏକ ଯଥାଯଥ ଉତ୍ତର ଦେଇପାରିବେ ନାହିଁ । ଜଣେ ଭାଷାବିଜ୍ଞାନୀ ହୁଏତ କିଛିଟା ବୈଷୟିକତା ମିଶାଇ କହିବେ ଯେ, ଭାବ ଆଦାନ ପ୍ରଦାନ କରିବାର ଏହା ଏକ ପ୍ରଣାଳୀ (communication) । ରେଲଲାଇନ୍ ଉପରେ ରେଲ ଚଳାଚଳକୁ ନିୟନ୍ତ୍ରଣ କରିବା ପାଇଁ ଯେଉଁ ସିଗ୍‌ନାଲ ବସାଯାଏ, ତା'ର ଉଦ୍ଦେଶ୍ୟ ବି ଭାବ ଆଦାନ-ପ୍ରଦାନ ଓ ଏହା ବି ଗୋଟିଏ ପ୍ରଣାଳୀ । କିନ୍ତୁ ଏହି ପ୍ରଣାଳୀରେ ଅଛି ମାତ୍ର ଦୁଇଟି 'ଶବ୍ଦ'-ଗୋଟିଏ Stop ବା 'ରୋକ' ଆଉ ଅନ୍ୟଟି Go ବା 'ଯାଅ' । ଏହି ଶବ୍ଦ ଦୁଇଟି ପାଇଁ ଦୁଇଟି ପ୍ରତୀକ (symbol) ବ୍ୟବହୃତ ହୋଇଥାଏ- ରୋକ ପାଇଁ ଲାଲବତୀ ଓ ଯାଅ ପାଇଁ ସବୁଜବତୀ । ଦିନବେଳ ହୋଇଥିଲେ ଏହାର ବିକଳ୍ପ ପ୍ରତୀକ ବ୍ୟବହୃତ ହୋଇଥାଏ, ଯଥା- ରୋକ ପାଇଁ ସିଗ୍‌ନାଲ୍‌କୁ ସଳଖ ରଖି ଓ ଯାଅ ପାଇଁ ସିଗ୍‌ନାଲକୁ ପକାଇ । ଏତିକି ହେଲା ଏହି ପ୍ରଣାଳୀଟିର କ୍ଷମତା । ଏଇ ଯୋଡ଼ିକ 'ବାର୍ତ୍ତା' (message) ଛଡ଼ା ଏହି ପ୍ରଣାଳୀଟିରେ ଆଉ କିଛି କହିବା (encoding) ବା ବୁଝିବା (decoding) ଅସମ୍ଭବ । ବର୍ତ୍ତମାନ ପ୍ରଶ୍ନ ଉଠୁଛି, ରେଳବାଇର ଏହି ଦୁଇ ବାର୍ତ୍ତା ପ୍ରଣାଳୀଟି ପାଇଁ ଯେତେବେଳେ ଏତେକଥା କରିବାକୁ ପଡୁଛି, ଗୋଟିଏ ଜୀବନ୍ତ ଭାଷା, ଯାହାର ବାର୍ତ୍ତାସଂଖ୍ୟା ଅସୀମ, ଅର୍ଥାତ୍ ଏଥିରେ ସବୁକିଛି କୁହାଯାଇପାରୁଛି, ସେ ପ୍ରଣାଳୀଟି କେମିତି ହୋଇଥିବ ? ମଣିଷର ଭାଷା ଏକ ବିସ୍ମୟକର ସୃଷ୍ଟି । ସେ ଦୃଷ୍ଟିରୁ ଓଡ଼ିଆଭାଷା ବି କିଛି କମ୍ ବିସ୍ମୟକର ନୁହେଁ । ପ୍ରତ୍ୟେକ ଭାଷାର ବିଶେଷତ୍ୱ ହେଉଛି ଯେ, ଅତ୍ୟନ୍ତ ସୀମିତ ଗଠନ ଉପାଦାନ (finite set of input) ଦ୍ୱାରା ସ୍ୱଳ୍ପ ପ୍ରଚେଷ୍ଟାରେ (economically) ପ୍ରାୟ ଅସୀମ ବାର୍ତ୍ତା (infinite set of output) ଉତ୍ପାଦନ କରିବା । ଓଡ଼ିଆ ଭାଷାର ଗଠନ ଉପାଦାନ ମଧ୍ୟ ସୀମିତ ଓ ଉତ୍ପାଦନ-କ୍ଷମତା ମଧ୍ୟ ଅସୀମ । ଗୋଟିଏ ଉଦାହରଣରୁ ଏହା ସ୍ପଷ୍ଟ ହେବ । ଏହି ବିଶାଳ ଓଡ଼ିଆ ଭାଷାକୁ ଲେଖିବା ପାଇଁ ୪୫ଟି ଅକ୍ଷର ଆମେ ବ୍ୟବହାର କରିଥାଉ; ଏହାକୁ କହିବା ପାଇଁ 'ବର୍ଣ୍ଣ'ର (sound units) ସଂଖ୍ୟା ଆହୁରି କମ୍ ବା ମାତ୍ର ୩୫ଟି । ଓଡ଼ିଆର ସବୁ ଶବ୍ଦ କେବଳ ଏଇ ୩୫ଟି ବର୍ଣ୍ଣରେ ତିଆରି । ଓଡ଼ିଆ ଅଭିଧାନଗୁଡ଼ିକ ଯେତେ ମୋଟା ଦିଶନ୍ତୁ ନା କାହିଁକି, ଶବ୍ଦର ସଂଖ୍ୟା ବି ସୀମିତ ଓ ସେମାନଙ୍କୁ ଯୋଡ଼ି ବାକ୍ୟ ଗଢ଼ିବାର ଧାରା ଆହୁରି ସୀମିତ । ଏହି ଅତ୍ୟନ୍ତ ସୀମିତ ଉପାଦାନକୁ ବିନିଯୋଗ କରି ଶୁଦ୍ଧ ତଥା ଅସୀମ ଭାବ ଆଦାନପ୍ରଦାନ ହେଉଛି ମଣିଷ ଭାଷାର ବିଶେଷତ୍ୱ । ସାଧାରଣ ଲୋକେ ଭାଷା କହି ଓ ବୁଝିପାରୁଥିଲେ ମଧ୍ୟ ଏହା କିପରି କାମ କରୁଛି ବା ଭାଷାର ଗଠନପ୍ରଣାଳୀ (code structure) ବିଷୟରେ ପ୍ରାୟଶଃ ଅଜ୍ଞ, କାରଣ

ଭାଷା କହିବା ଓ ବୁଝିବା ପ୍ରକ୍ରିୟା ଅଭ୍ୟାସବଶରେ ଚାଳିତ ହୋଇଥାଏ, ସେଥିପାଇଁ ସଚେତନ ଭାଷାଗଠନ ଜ୍ଞାନର ଆବଶ୍ୟକତା ପଡ଼ିନଥାଏ । ତେଣୁ ଭାଷାଗଠନକୁ ମନୁଷ୍ୟ ମସ୍ତିଷ୍କର ଅବଚେତନରୁ ଉଦ୍ଧାର କରି ଜ୍ଞାନର ପର୍ଯ୍ୟାୟକୁ ଆଣିବାପାଇଁ ଭାଷାବିଜ୍ଞାନର ସାହାଯ୍ୟ ନେବାକୁ ପଡ଼ିଥାଏ, ଖାଲି ଓଡ଼ିଆ ଭାଷା ପାଇଁ ନୁହେଁ, ଯେକୌଣସି ମଣିଷ ଭାଷା ପାଇଁ । ଗୋଟିଏ ଭାଷାର ବିକାଶ ପାଇଁ ଏହି ଜ୍ଞାନକୁ ପ୍ରଯୁକ୍ତ କରାଯାଇପାରେ, ଯେପରି ଧୀରେ ଚାଲୁଥିବା ଗୋଟିଏ ଘଡ଼ିକୁ ସଜାଡ଼ିବାକୁ ହେଲେ ତାହାର ଯାନ୍ତ୍ରିକ ପ୍ରଣାଳୀକୁ ସଜାଡ଼ିବାକୁ ପଡ଼ିଥାଏ । ଭାଷାର ଯାନ୍ତ୍ରିକ ଶୃଙ୍ଖଳା ବିଷୟରେ ଧାରଣା ନ ଥିବାରୁ ଭାଷାକୁ ଉନ୍ନତ କରିବା ପାଇଁ ଯେଉଁ ସବୁ ଭାବପ୍ରବଣ, ଦେଶାତ୍ମବୋଧକ ଭାଷଣମାନ ଶୁଣାଯାଏ, ସେସବୁ ଗୋଟିଏ ଅଚଳ ଘଡ଼ିକୁ ଠିକ୍ କରିବା ପାଇଁ ତା ଆଗରେ 'ବନ୍ଦେ ଉତ୍କଳ ଜନନୀ' ଗାଇବା ପରି । ଓଡ଼ିଆ ଭାଷାତାତ୍ତ୍ୱିକ ବିକାଶ ଦୃଷ୍ଟିରୁ ଭାଷାକୁ ଏକ ଯାନ୍ତ୍ରିକ ଶୃଙ୍ଖଳା ଭାବେ ଦେଖିବାକୁ ପଡ଼ିବ ।

ବର୍ତ୍ତମାନ ଏହି ଭାଷାର ପ୍ରଗତି ପଥରେ ପ୍ରଧାନ ଅନ୍ତରାୟ ହେଉଛନ୍ତି ଭାବପ୍ରବଣ ରାଜନୀତିଜ୍ଞ, ନିଶ୍ଚେଷ୍ଟ ସରକାରୀ ପ୍ରଶାସକ ଓ ଅନଧିକାର ଚର୍ଚ୍ଚାରେ ବ୍ୟାପୃତ ଅନଭିଜ୍ଞ ଅଧ୍ୟାପକମାନେ । ପ୍ରଥମେ ରାଜନୀତିଜ୍ଞମାନଙ୍କ ଭୂମିକାକୁ ନିଆଯାଉ । ମନେ ରଖିବାକୁ ହେବ ଯେ, ମାତୃଭାଷା ଗୋଟିଏ ଅତ୍ୟନ୍ତ ସ୍ପର୍ଶକାତର ବସ୍ତୁ ଓ ଏହାର ଖିଲାପରେ କିଛି ଘଟିଲେ ଏହା ଲୋକମାନଙ୍କ ମନରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଭାରତରେ ରକ୍ତାକ୍ତ ଭାଷା-ଆନ୍ଦୋଳନର ଅଭାବ ନାହିଁ । ତେଣୁ ଭାରତ ସରକାର ଭାଷାଗତ ତଥ୍ୟ ପ୍ରଦାନ କରିବାରେ କଠୋର ଗୋପନୀୟତା ଓ ସତର୍କତା ଅବଲମ୍ୱନ କରିଥାନ୍ତି । ଓଡ଼ିଶା ଗୋଟିଏ ବହୁଭାଷିକ ପ୍ରଦେଶ ଓ ଓଡ଼ିଆ ଏକ ପ୍ରାଦେଶିକ ଭାଷା । ଏହି ଭାଷାର ବିକାଶ ପାଇଁ ହୁଏତ ଏପରି କିଛି ପଦକ୍ଷେପ ନେବାକୁ ପଡ଼ିପାରେ, ଯାହା ଅନ୍ୟ ଭାଷାଗୁଡ଼ିକର ସ୍ୱାର୍ଥରେ ଆଞ୍ଚ ଆଣିପାରେ । ଏହି ପ୍ରବନ୍ଧରେ ବି ଓଡ଼ିଆଭାଷା ସ୍ୱାର୍ଥରେ ଆମକୁ ଏପରି କେତୋଟି କଥା କହିବାକୁ ପଡ଼ିଛି, ଯାହାଦ୍ୱାରା ଅନ୍ୟ ଭାଷାଭାଷୀମାନେ ଉତ୍‌କ୍ଷିପ୍ତ ହୋଇପାରନ୍ତି । ଏହା ଅବଶ୍ୟ ସତ୍ୟ ଯେ, ଓଡ଼ିଆଭାଷାର ବିକାଶ ଅନେକଙ୍କ ପାଇଁ ଚକ୍ଷୁଃଶୂଳ ହେବ, ଯେହେତୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏହା ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ନିୟୋଜିତ ହେବ । ବର୍ତ୍ତମାନ ଓଡ଼ିଶା ପ୍ରଦେଶରେ ଓଡ଼ିଆ ଭାଷାର ଅବସ୍ଥାକୁ ଦେଖିଲେ ଚରମ ଅବହେଳା ଓ ଅଜ୍ଞତାର ଚିତ୍ର ଆମକୁ ଦେଖିବାକୁ ମିଳେ । ସ୍ୱାଧୀନତା-ପ୍ରାପ୍ତିର ଅର୍ଦ୍ଧଶତାବ୍ଦୀ ପରେ ବି ଏହା ଏକ ଗ୍ରାମୀଣ ଭାଷା, ଏପରିକି ଆଧୁନିକ ଓ ଶିକ୍ଷିତମାନଙ୍କ ପାଇଁ ଓଡ଼ିଆ ଭାଷାରେ ଅପାରଗତା ପ୍ରଦର୍ଶନ କରିବା ଏକ ଗୌରବର ବିଷୟ । ଔପଚାରିକ (formal) ପରିବେଶରେ ସେ କଥାରେ ହେଉ ବା ଲେଖାରେ ହେଉ, ଉପଯୁକ୍ତ ଓଡ଼ିଆରେ ନିଜକୁ ପ୍ରକାଶ କରିବାର ଶକ୍ତି ଅଧିକାଂଶ ଓଡ଼ିଆଙ୍କର ନାହିଁ । ଅଧିକାଂଶ ଶିକ୍ଷିତ ଓଡ଼ିଆ ପାରିବାରିକ ପତ୍ରାଳାପ ବି ଓଡ଼ିଆରେ କରିବାପାଇଁ ଅକ୍ଷମ ବା ଅମଙ୍ଗ; ଚିନ୍ତାଗର୍ଭକ ସୃଷ୍ଟି ତ ଆହୁରି ଦୂରର କଥା । ଶିକ୍ଷିତ

ଓଡ଼ିଆମାନଙ୍କୁ ଯଦି କେହି କହି ଦିଏ ଯେ, ତାଙ୍କ ଇଂରେଜୀ ଖରାପ, ସଙ୍ଗେ ସଙ୍ଗେ ଏହା ତାଙ୍କ ଆତ୍ମସମ୍ମାନରେ ଆଞ୍ଚ ଲାଗିଥାଏ, କିନ୍ତୁ କେହି ଯଦି କହେ ତ ତାଙ୍କ ଓଡ଼ିଆ ଖରାପ, ଏହା ହୁଏତ ପ୍ରକାରାନ୍ତରେ ଏକ ପ୍ରଶଂସାଭାବେ ସେ ଗ୍ରହଣ କରିପାରନ୍ତି । ଅପରପକ୍ଷେ ଯେଉଁ ମୁଷ୍ଟିମେୟ ଲୋକ ତଥାକଥିତ ଓଜସ୍ୱିନୀ ଓଡ଼ିଆରେ ବାଗ୍ମିତା ପ୍ରଦର୍ଶନ କରିପାରନ୍ତି ବା ପ୍ରବନ୍ଧ, ଆଲୋଚନାଦି ଲେଖିପାରନ୍ତି, କ୍ୱଚିତ୍ ତାହା ପରିଚ୍ଛନ୍ନ ଚିନ୍ତା ଓ ସୁତଥ୍ୟତା ରକ୍ଷା କରିଥାଏ । ବୃଥା ବିତଣ୍ଡା, ଅତ୍ୟୁକ୍ତି, ଅଯାଚିତ ଭାବପ୍ରବଣତା ବା ଗ୍ରାମ୍ୟତା ଯୋଗୁଁ ଏହା ବୌଦ୍ଧିକ ଭାରସାମ୍ୟ ରକ୍ଷା କରିପାରି ନଥାଏ । ଏଥିପାଇଁ ଓଡ଼ିଆ ଭାଷା ଯେତେଟା ଦାୟୀ ନୁହେଁ, ତା'ଠାରୁ ବେଶୀ ଦାୟୀ ଓଡ଼ିଆଭାଷା ଶିକ୍ଷାପ୍ରଣାଳୀ । ବସ୍ତୁତଃ, ଓଡ଼ିଆ ଭାଷା ଶିକ୍ଷା ଦେବାପାଇଁ କୌଣସି ପଦ୍ଧତି ଅନୁସୃତ ହୋଇ ନଥାଏ । ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଭାଷାଶିକ୍ଷା ଦେବା ନାଁରେ 'ମୋ ସାହିତ୍ୟ' ବୋଲି ଯେଉଁ ସରକାରୀ ପାଠ୍ୟପୁସ୍ତକଗୁଡ଼ିକ ଚଳେ, ସେଗୁଡ଼ିକ ପିଲାଙ୍କୁ 'ମେରା ଭାରତ ମହାନ୍' ଶିକ୍ଷା ଦେବାପାଇଁ ପ୍ରୋପାଗଣ୍ଡା ପୁସ୍ତକ । ସେଗୁଡ଼ିକୁ ପିଲାଙ୍କୁ ପଢ଼ାଇ ଓଡ଼ିଆଭାଷାରେ ମୂଳଦୁଆ ପକାଇବା ବୃଥାଶା ମାତ୍ର । (ଏ ବିଷୟରେ ସବିଶେଷ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ, ଲେଖକର ପ୍ରାଥମିକ ପାଠ୍ୟ ବିଷୟ : ଓଡ଼ିଆଭାଷା ସାହିତ୍ୟ, ଝଙ୍କାର, ୪୩ବର୍ଷ ବିଷୁବ ସଂଖ୍ୟା, ୧୯୯୧, ପୃ-୩୩୩ରୁ ୩୬୨) । ଏହିପରି ଏକ ଅଭାବନୀୟ ପରିସ୍ଥିତିରେ ପୁରୁଷ ପୁରୁଷ ଧରି ଓଡ଼ିଆଜାତିର ଚରିତ୍ର ଓ ମାନସିକତା ଭ୍ରଷ୍ଟ ହେବାରେ ଲାଗିଛି । ସେ ଦୃଷ୍ଟିରୁ ଓଡ଼ିଶାର ରାଜନୀତିଜ୍ଞମାନଙ୍କ ପାଇଁ ଭାରତର ଭାଷା-ରାଜନୀତିରେ ଓଡ଼ିଆ ଭାଷାର ସ୍ୱାର୍ଥରକ୍ଷାକୁ ନବୁଝିବା ଆତ୍ମଘାତୀ ।

ଏହା ପରେ ରାଜ୍ୟଶାସନର ପଦାଧିକାରୀମାନଙ୍କର ଭୂମିକା । ଏମାନେ ଫାଇଲ ଉପରେ ଓଡ଼ିଆରେ ଟିପ୍ପଣୀ ଦେବା ନ ଦେବା ବଡ଼ କଥା ନୁହେଁ, ଯଦିଓ ଅନ୍ୟାନ୍ୟ ପ୍ରଦେଶରେ ଭକ୍ତିପୂତଭାବେ ସେମାନେ ଏହା କରୁଛନ୍ତି । ଯାହା ସେମାନଙ୍କଠାରୁ ଆଶା କରାଯାଏ, ବିଶେଷକରି ଯେଉଁମାନେ ସ୍ୱରାଷ୍ଟ୍ର, ଶିକ୍ଷା, ସଂସ୍କୃତି ଆଦିର ଦାୟିତ୍ୱରେ ରହୁଛନ୍ତି, ସେମାନେ ଦେଖିବା ଉଚିତ ଯେ, ଭାରତର ଅନ୍ୟାନ୍ୟ ରାଜ୍ୟରେ ଭାଷା-ବିକାଶ ପାଇଁ କ'ଣ ଓ କାହିଁକି କରାଯାଉଛି, କି ପ୍ରକାରର ବିଶେଷଜ୍ଞମାନଙ୍କୁ ତା'ର ଦାୟିତ୍ୱ ଦିଆଯାଉଛି, କେଉଁ କେଉଁ କାମରେ ସେମାନଙ୍କୁ ଲଗାଯାଉଛି, କ'ଣ ସେମାନଙ୍କଠାରୁ ଆଶା କରାଯାଉଛି, ତା'ର କି ଉପଯୋଗ ଅଛି ଭାଷାର ଉନ୍ନତିରେ, ସେଥିପାଇଁ ରାଜ୍ୟସରକାର କି ପ୍ରକାରର ସୁବିଧା ସୁଯୋଗର ବ୍ୟବସ୍ଥା କରିଛନ୍ତି ଓ ଓଡ଼ିଶାରେ ସେଥିପାଇଁ କି ଧରଣର ଅଭିଜ୍ଞ ବ୍ୟକ୍ତି ଓ ଯୋଗ୍ୟତା ଉପଲବ୍ଧ ଯେଉଁମାନଙ୍କର ଏହି ଦିଗରେ ସାହାଯ୍ୟ ଲୋଡ଼ାଯାଇପାରେ, ଇତ୍ୟାଦି । ଏ କଥା କହିବାବେଳେ ଆମେ ପୂର୍ଣ୍ଣ ଭାବେ ଅବହିତ ଯେ, ଆମର ବହୁ ଓଡ଼ିଆ ଅଫିସର୍ ଓଡ଼ିଆ ଭାଷାରେ ଖାଲି ଆଗ୍ରହ ରଖନ୍ତି ନାହିଁ, ଅନେକେ ନିଜେ ସ୍ରଷ୍ଟା ଓ ପଣ୍ଡିତ ବ୍ୟକ୍ତି । ଓଡ଼ିଆ ଭାଷାର ଭବିଷ୍ୟତ ସେମାନଙ୍କୁ ବିବ୍ରତ ନ କରିବା ଆଶ୍ଚର୍ଯ୍ୟକର ହେବ, ବିଶେଷକରି ସେମାନଙ୍କ କଳାକୃତିର ଭବିଷ୍ୟତ ଯେତେବେଳେ ଏହି ଭାଷାର ଭବିଷ୍ୟତ ଉପରେ ଏକାନ୍ତ

ଭାବେ ନିର୍ଭରଶୀଳ । ଭାଗ୍ୟକୁ ସେମାନେ ଉପମନ୍ୟୁ ଚାଟାର୍ଜୀ ବା ବିକ୍ରମ ସେଠ ନୁହନ୍ତି ।

ବାକି ରହିଲେ କିଛି ତଥାକଥିତ ଓଡ଼ିଆଭାଷା ପଣ୍ଡିତ, ଯେଉଁମାନେ କ୍ରମାଗତ ଭାବେ ଓଡ଼ିଆଭାଷା ବିଷୟରେ ଅବାନ୍ତର ଓ ସ୍ୱାର୍ଥବିରୋଧୀ ତଥ୍ୟ ପରିବେଷଣ କରି ଏ ଭାଷାର ପ୍ରଭୂତ କ୍ଷତି ସାଧନ କରୁଛନ୍ତି । ଓଡ଼ିଆ ଭାଷାର ଐତିହାସିକ ଧାରାକୁ ଦିଗଭ୍ରଷ୍ଟ କରି, ଏହାର ଇତିହାସକୁ ବିକୃତ କରି ଭାଷାଦର୍ଶନ ଓ ବିଭବର ମୂଲ୍ୟାୟନ ନ କରି ପଚାଶ ଦଶକର କେତେକ ଫିଲୋଲଜିଷ୍ଟଙ୍କ ଦ୍ୱାରା ଦିଆଯାଇଥିବା ଓଡ଼ିଆ ଭାଷା ଉପରେ ସିଦ୍ଧାନ୍ତଗୁଡ଼ିକ ଯାହା ବହୁଦିନରୁ ଭାଷାବିଜ୍ଞାନ ଦ୍ୱାରା ଖଣ୍ଡିତ ଓ ପ୍ରତ୍ୟାଖ୍ୟାତ, ସେ ସବୁକୁ ଅନ୍ଧଭାବେ ପୁନରୁଦ୍ଧାର କରି ଓଡ଼ିଆ ଭାଷାର ଐତିହାସିକ ଉପାଦାନ ରୂପେ ଏମାନେ ଖାଲି ପଢ଼ାଇବାରେ ପ୍ରବୃତ୍ତ । ପ୍ରତିବର୍ଷ ଓଡ଼ିଆ ଭାଷା ସାହିତ୍ୟର ଗଦା ଗଦା ସ୍ନାତକୋତ୍ତର ଛାତ୍ର ନିଜ ଭାଷା ବିଷୟରେ ବିକୃତ ତଥ୍ୟ ଓ ଅବୈଜ୍ଞାନିକ ସିଦ୍ଧାନ୍ତ ଘୋଷି ଶିକ୍ଷା ସମାପନ କରୁଛନ୍ତି, ଯାହାପରେ ସେମାନେ ନିଜେ ପଢ଼ାଇବେ । ଏହି ଅନଭିଜ୍ଞ ପାଠ୍ୟପୁସ୍ତକ ପ୍ରଣେତାମାନଙ୍କ ଯୋଗୁଁ ବର୍ଷପରେ ବର୍ଷ ଛାତ୍ରମାନେ ଓଡ଼ିଆ ଭାଷାର ଐତିହ୍ୟ ବିଷୟରେ ଭ୍ରାନ୍ତ, ବିକୃତ, ଅର୍ଦ୍ଧସତ୍ୟ ବା ଅସତ୍ୟ ଗଳାଧଃ କରୁଛନ୍ତି । ଓଡ଼ିଆ ଭାଷା ବିଷୟକ ଏହି ପାଠ୍ୟପୁସ୍ତକଗୁଡ଼ିକୁ ବାଜ୍ୟାପ୍ତ କରାଯିବା ଉଚିତ । ସେହିପରି ଅନ୍ୟ ଗୋଟିଏ ବିଷୟ ହେଲା, ଓଡ଼ିଆ ବ୍ୟାକରଣ ଏବଂ ଏ ସ୍ଥଳରେ ଅବସ୍ଥା ଆହୁରି ଦୁଃଖଦ, କାରଣ ଏ ପାଠ୍ୟବହି ତଳ ଶ୍ରେଣୀମାନଙ୍କରେ ପଢ଼ାଯାଏ । ଓଡ଼ିଆ ବ୍ୟାକରଣ ନାମରେ ଚଳୁଥିବା ସବୁ ବହିଗୁଡ଼ିକ ସଂସ୍କୃତ ବ୍ୟାକରଣର କପି, ତେଣୁ ଓଡ଼ିଆ ଭାଷାର ପ୍ରକୃତ ବିଶେଷତ୍ୱଗୁଡ଼ିକ ଏ ବ୍ୟାକରଣରେ ନାହିଁ ବା ଠିକ୍‌ଭାବେ ଦିଆଯାଏ ନାହିଁ । ଉଦାହରଣ ସ୍ୱରୂପ, ଓଡ଼ିଆ କ୍ରିୟାପଦ ସଂସ୍କୃତଠାରୁ ସମ୍ପୂର୍ଣ୍ଣ ଭିନ୍ନ ଭାବେ ଗଠିତ ହୋଇଛି, ତେଣୁ ଏହାର ଠିକ୍ ବର୍ଣ୍ଣନା କୌଣସି ଗୋଟିଏ ହେଲେ ସ୍କୁଲ-ବ୍ୟାକରଣରୁ ମିଳେନାହିଁ । ଫଳରେ ବର୍ଷ ପରେ ବର୍ଷ ପିଲାଏ ଓଡ଼ିଆ ଭାଷାର ବ୍ୟାକରଣ ନାଁ'ରେ ତୁଚ୍ଛା ଅନର୍ଥକ ଗୁଡ଼ାଏ ଅତଥ୍ୟ ଘୋଷୁଛନ୍ତି ଓ ସାରା ଜୀବନ ମନେ ରଖୁଛନ୍ତି । ଏହି ପ୍ରକାରର ମାତୃଭାଷା ବିଷୟକ ଶିକ୍ଷା ସେ ସ୍କୁଲସ୍ତରରେ ହେଉ କି ବିଶ୍ୱବିଦ୍ୟାଳୟ ସ୍ତରରେ ହେଉ, ଏହା ଗୋଟିଏ ଜାତିର ବୌଦ୍ଧିକ ସ୍ୱାଭିମାନ ରକ୍ଷା କରିବା ପକ୍ଷରେ ଯେ କି ପରିମାଣରେ କ୍ଷତିକାରକ, ତାହାର ତୁଳନା ଅନ୍ୟତ୍ର ନାହିଁ । ଏ କଥା ସତ୍ୟ ଯେ, ବୈଜ୍ଞାନିକ ପଦ୍ଧତିରେ ଏପର୍ଯ୍ୟନ୍ତ ବି ଓଡ଼ିଆ ଭାଷାର ଇତିହାସ ବା ବ୍ୟାକରଣ ଲେଖାଯାଇ ପାରିନାହିଁ, କିନ୍ତୁ ସେଥିପାଇଁ କି ପଦକ୍ଷେପ ନିଆଯାଇଛି ? ତେବେ ଏହି ବିଷୟଗୁଡ଼ିକ ଭାଷାବିଜ୍ଞାନ ପଦ୍ଧତିରେ ଲେଖା ନ ହେବାଯାଏ, ଅନ୍ୟଭାଷାରୁ କପି କରାହୋଇ ଲେଖାହୋଇଥିବା ଏ ପାଠ୍ୟପୁସ୍ତକଗୁଡ଼ିକ ଆମ ଭାଷା ବିଷୟରେ ପ୍ରାମାଦିକ ତଥ୍ୟ ବିତରଣ କରୁଥିବ ଓ ଭାଷାଶିକ୍ଷାକୁ କଳୁଷିତ କରୁଥିବ ।

ଓଡ଼ିଆ ଭାଷା ବିକାଶର ତୃତୀୟ ଦିଗଟି ହେଲା ସମାଜତାତ୍ତ୍ୱିକ ଅର୍ଥାତ୍ କେଉଁ କେଉଁ ସାମାଜିକ ସ୍ତରରେ ପରୋକ୍ଷ ଭାବେ ହେଉ ବା ପ୍ରତ୍ୟକ୍ଷ ଭାବେ ହେଉ, ଭାଷାର ଉନ୍ନତି ସାଧିତ ହୋଇଥାଏ । ଆଧୁନିକ ସଭ୍ୟତା ଦାବୀ କରେ ଏକ ଉଚ୍ଚ କ୍ଷମତାସମ୍ପନ୍ନ ସଞ୍ଚାର-

ମାଧ୍ୟମ ବା ଏକ ବଳିଷ୍ଠ ଭାଷା ଓ ସଭ୍ୟତାର ଦ୍ରୁତ ଅଗ୍ରଗତି ସହିତ ତାଳ ରଖିବା ପାଇଁ ଭାଷାର ଦ୍ରୁତତର ବିସ୍ତାର (elaboration) । ଭାଷାର ବିସ୍ତାର ଦୁଇଟି ମାଧ୍ୟମରେ ହୋଇଥାଏ, କଥିତ ମାଧ୍ୟମ (oral) ଓ ଲିଖିତ ମାଧ୍ୟମ (written) । କଥିତ ମାଧ୍ୟମର ଉପାୟଗୁଡ଼ିକ ହେଲେ ରେଡ଼ିଓ, ଟେଲିଭିଜନ୍, ଫିଲ୍ମ ଓ କ୍ୟାସେଟ୍ । ଲିଖିତ ମାଧ୍ୟମର ଉପାୟ ହେଲେ ସାହିତ୍ୟ ଓ ସମ୍ବାଦପତ୍ର । କହିବା ନିଷ୍ପ୍ରୟୋଜନ ଯେ, ଭାଷାର ବିସ୍ତାରକୁ କଥିତ ମାଧ୍ୟମ ଅପେକ୍ଷା ଲିଖିତ ମାଧ୍ୟମର ଅବଦାନ ବେଶି – ଖାଲି ଲିଖିତ ମାଧ୍ୟମର ଭାଷା ସ୍ଥାୟୀ ବୋଲି ନୁହେଁ, ଲିଖିତ ମାଧ୍ୟମରେ ଭାଷାର ଶିଥିଳତା ଯଥେଷ୍ଟ କମ୍ ଓ ଭାଷାର ମାନ (standardization) ଅଧିକ ସୁରକ୍ଷିତ । ଭାଷା ପାଇଁ ଲିଖିତ ସାହିତ୍ୟର ଏକ ବିରାଟ ସମାଜତାତ୍ତ୍ୱିକ ଭୂମିକା ରହିଛି । ଏଠାରେ ସାହିତ୍ୟକୁ ବ୍ୟାପକ ଅର୍ଥରେ ବୁଝିବାକୁ ହେବ । ଏହି ଅର୍ଥରେ ସାହିତ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ – ବର୍ଣ୍ଣନାତ୍ମକ (narrative) ଓ ଅଣବର୍ଣ୍ଣନାତ୍ମକ (non-narrative) । ବର୍ଣ୍ଣନାତ୍ମକ ସାହିତ୍ୟ ମୁଖ୍ୟତଃ କଳ୍ପନା-ପ୍ରସୂତ । ଏହି ସାହିତ୍ୟର ପ୍ରକାରଗୁଡ଼ିକ ହେଲେ କାବ୍ୟକବିତା (poetry) ଓ ଗଳ୍ପ ଉପନ୍ୟାସ (fiction) । ଗୋଟିଏ ଆଧୁନିକ ଭାଷାର ବିକାଶ ପାଇଁ ବର୍ଣ୍ଣନାତ୍ମକ ସାହିତ୍ୟର ଭୂମିକା ଅପେକ୍ଷାକୃତ ଭାବେ ଗୌଣ, କାରଣ ସମାଜରେ ତଥ୍ୟ ବିତରଣ (transfer of information) ପାଇଁ ଏହା କ୍ୱଚିତ ସାହାଯ୍ୟ କରିଥାଏ, ଯଦିଓ ବର୍ଣ୍ଣନାତ୍ମକ ସାହିତ୍ୟକୁ ଧରି ସାଧାରଣରେ ଗୋଟିଏ ଭାଷାକୁ ସମ୍ମାନ ମିଳିଥାଏ । ତଥାପି, ଭାଷାର ପ୍ରକୃତ ଦକ୍ଷତାର ବିଚାର ହୁଏ ଅଣ-ବର୍ଣ୍ଣନାତ୍ମକ ଗଦ୍ୟ-ସାହିତ୍ୟକୁ ଧରି, ଯେଉଁ ଗଦ୍ୟରେ କଳ୍ପନା ପରିବର୍ତ୍ତେ ବୌଦ୍ଧିକ ତଥ୍ୟ ବା ମୌଳିକ ଚିନ୍ତାର ପ୍ରସାର ଘଟେ, ବିଦ୍‌ବତ୍ତାର ମୌଳିକ ବ୍ୟାଖ୍ୟା କରାଯାଏ । ସେହି ଗଦ୍ୟ ପାଇଁ ଷ୍ଟାଣ୍ଡାର୍ଡ଼ ଭାଷାର ବ୍ୟବହାର ବାଧ୍ୟତାମୂଳକ ହୋଇପଡ଼େ ଓ ସେହି ଗଦ୍ୟସାହିତ୍ୟକୁ ହିଁ ଧରି ଭାଷାର ପ୍ରକୃତ ଦକ୍ଷତା ମପାଯାଇଥାଏ । ବିଭିନ୍ନ ବିଷୟକ ସ୍କୁଲ-କଲେଜର ପାଠ୍ୟପୁସ୍ତକଠାରୁ ଆରମ୍ଭ କରି ଉଚ୍ଚମାନର ମୌଳିକ ପ୍ରବନ୍ଧ, ରଚନା ଆଦି ଏହି ଅଣ-ବର୍ଣ୍ଣନାତ୍ମକ ଗଦ୍ୟର ଉଦାହରଣ । ଏହି ସାହିତ୍ୟ ଶିକ୍ଷାର ତିନୋଟି ସ୍ତରରେ, ଯଥା- ପ୍ରାଥମିକ, ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ, ଯଥାକ୍ରମେ ତିନୋଟି ମାନର ଗଦ୍ୟ ଭାଷା ସୃଷ୍ଟି କରିଥାଏ- ସାଧାରଣ (popular), ଉନ୍ନତ (refined) ଓ ଓଜସ୍ୱିନୀ (learned) । ସମାଜ ଯେତିକି ଯେତିକି ଅଗ୍ରଗତି କରେ, କାଳ୍ପନିକ ସାହିତ୍ୟ ଅପେକ୍ଷା ଏହା ଅଧିକରୁ ଅଧିକ ତଥ୍ୟଭିତ୍ତିକ (information) ସାହିତ୍ୟ ଉପରେ ନିର୍ଭର କରେ । ଏକ ଉନ୍ନତ ସମାଜର ଭାଷା କାବ୍ୟକବିତା ଓ ଗଳ୍ପ-ଉପନ୍ୟାସରେ ସନ୍ତୁଷ୍ଟ ନରହି ଖୋଜେ ସୁଚିନ୍ତିତ ଗଦ୍ୟ । ପୃଥିବୀର ପ୍ରାୟ ସବୁ ଭାଷାରେ କାବ୍ୟକବିତା ଓ ଗଳ୍ପ-ଉପନ୍ୟାସ ଲେଖାଯାଉଛି । କିନ୍ତୁ ମୁଷ୍ଟିମେୟ ଭାଷା ମୌଳିକ ବୈଜ୍ଞାନିକ ଚିନ୍ତାପାଇଁ ବ୍ୟବହୃତ ହୋଇଥାନ୍ତି । ସେଥିପାଇଁ ଆବଶ୍ୟକ ଏକ ଉନ୍ନତ ଗଦ୍ୟପରମ୍ପରା । ଏହି ଗଦ୍ୟର ଅଭାବରେ ଓଡ଼ିଆଭାଷା ଏ ପର୍ଯ୍ୟନ୍ତ ବି କାବ୍ୟିକ ଭାଷା ସ୍ତରରେ ରହିଯାଇଛି । ତେଣୁ ଏ ଭାଷାରେ ରବୀନ୍ଦ୍ରନାଥ, ଇଲିଅଟ୍,

ହେମିଂଓ୍ୱେ, ବେକେଟ୍ ଜନ୍ମଗ୍ରହଣ କରିବାରେ କୌଣସି ଅସୁବିଧା ନାହିଁ; କିନ୍ତୁ ବର୍ଟ୍ରାଣ୍ଡ ରସେଲ, ମାର୍କ୍ସ ବା ଫ୍ରଏଡ଼୍‌ଙ୍କ ପରି ଚିନ୍ତାନାୟକମାନଙ୍କୁ ଏହି ଭାଷା ଜନ୍ମଦେବାର ସମ୍ଭାବନା କମ୍ । ଏହା ଏହି ସମାଜର ବୌଦ୍ଧିକ ବିକାଶର ଏକ ବିରାଟ ଅନ୍ତରାୟ । ଏହି ଅବସ୍ଥାର ଉନ୍ନତି ନଘଟିଲେ ଏହି ଭାଷା 'ଭାବୁକମାନଙ୍କର' ଚରାଭୂଇଁ ହୋଇ ରହିଥିବ, 'ଚିନ୍ତକମାନଙ୍କ' ପାଇଁ ଏଥିରୁ ଉତ୍ସାହ ବା ପ୍ରେରଣା ମିଳିବ ନାହିଁ ।

ଏହାପରେ ଭାଷା-ବିକାଶରେ ସମ୍ବାଦପତ୍ରର ଭୂମିକା । ଭାଷାର ଉନ୍ନତି ପାଇଁ ସମ୍ବାଦପତ୍ର ଅନେକଗୁଡ଼ିଏ ସୁଯୋଗ ଯୋଗାଇଥାଏ । ପ୍ରଥମେ, ଲିଖିତ ମାଧ୍ୟମରେ ଏହା ଉଚ୍ଚ ଶିକ୍ଷିତମାନଙ୍କଠାରୁ ଅର୍ଦ୍ଧଶିକ୍ଷିତ ଓ ନବଶିକ୍ଷିତ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ପହଞ୍ଚିଥାଏ । ଏହାର ଭାଷା ଆଞ୍ଚଳିକତାକୁ ନୀତିଗତ ଭାବେ ପ୍ରଶ୍ରୟ ଦେଇନଥାଏ, ତେଣୁ ଏହା ଷ୍ଟାଣ୍ଡାର୍ଡ଼ ଭାଷାର ପ୍ରସାରରେ ସାହାଯ୍ୟ କରିଥାଏ । ଦ୍ୱିତୀୟରେ ଏହାର ବିଷୟବସ୍ତୁ କାବ୍ୟିକ ଭାଷାର ପୃଷ୍ଠପୋଷକତା ନ କରି ତଥ୍ୟଭିତ୍ତିକ ଗଦ୍ୟକୁ ଆଶ୍ରୟ କରିବା ପାଇଁ ବାଧ୍ୟ । ତୃତୀୟରେ ଏହାର ବିଷୟବସ୍ତୁର ପରିସର ଏତେ ବ୍ୟାପକ ଯେ, ଏହା ସାମାଜିକ ଜୀବନର ବିଭିନ୍ନ କାର୍ଯ୍ୟକଳାପ, ଚିନ୍ତା ଓ ଭାବନାକୁ ପ୍ରକାଶ କରିବା ଛଡ଼ା ଉପାୟନ୍ତର ନାହିଁ, ଯାହା ଫଳରେ ଏହା ଭାଷାର ଏକ ଜୀବନ୍ତ ପରୀକ୍ଷାଗାର । ରାତିପାହିଲା ବେଳକୁ ଏହାର ପ୍ରୟୋଜନ ଶହଶହ ନୂତନ ଶବ୍ଦ, କଳ୍ପ (concept), ଭାବ, ଅନୁଭବ । ଏଗୁଡ଼ିକ ସୃଷ୍ଟି କରିବା ଛଡ଼ା ଏଗୁଡ଼ିକୁ ବାରମ୍ବାର ଓ ଉଦ୍ଦେଶ୍ୟମୂଳକଭାବେ ପ୍ରୟୋଗ କରି ଏହା ଭାଷାକୁ ଦୃଢ଼ ପରମ୍ପରା ଯୋଗାଇଥାଏ । କିନ୍ତୁ ଓଡ଼ିଶାପ୍ରଦେଶର ସାକ୍ଷରତା ହାରର ସ୍ୱଳ୍ପତା ଯୋଗୁଁ (୧୯୯୧ ସୁଦ୍ଧା ୪୯.୦୯ ପ୍ରତିଶତ ମାତ୍ର) ତଥା ଓଡ଼ିଆ ସମ୍ବାଦ ପତ୍ରଗୁଡ଼ିକର ନିମ୍ନମାନର ସାମ୍ବାଦିକତା ହେତୁ ଓଡ଼ିଆଭାଷାକୁ ଏଥିରୁ ଯେଉଁ ପରିମାଣରେ ପ୍ରେରଣା ମିଳିବାର କଥା, ତାହା ମିଳିପାରୁ ନାହିଁ । ବିଭିନ୍ନ ବୈଷୟିକ ସମ୍ବାଦ ଓ ବିଶ୍ଳେଷଣାତ୍ମକ ତଥା ସମୀକ୍ଷାରତ ସାମ୍ବାଦିକତା ସେହି ପ୍ରେରଣା ଅବଶ୍ୟ ଯୋଗାନ୍ତା ଏବଂ ଭାଷାର ଜଡ଼ତାକୁ ଭାଙ୍ଗିପାରନ୍ତା, କିନ୍ତୁ ତାହା ହୋଇପାରୁନାହିଁ । ସେ ଦୃଷ୍ଟିରୁ ପତ୍ରିକାଗୁଡ଼ିକର ଅବଦାନ ଆହୁରି କମ୍, କାରଣ ଏମାନଙ୍କ ପ୍ରଧାନ ଉପଜୀବ୍ୟ ଭିତରେ ଥାଏ ମୁଖ୍ୟତଃ ବର୍ଣ୍ଣନାତ୍ମକ ସାହିତ୍ୟ, ସିନେମା ଓ ଖେଳ । ଭାଷାର ବିସ୍ତାର ପାଇଁ ଏ ବିଷୟଗୁଡ଼ିକର ଚର୍ଚ୍ଚା ପର୍ଯ୍ୟାପ୍ତ ନୁହେଁ ।

ଆମେ କହିସାରିଛୁ ଯେ, ଓଡ଼ିଶା ପ୍ରଦେଶର ସାକ୍ଷରତାର ହାର ପଚାଶ ପ୍ରତିଶତରୁ କମ୍, ତେଣୁ ଅଧାଅଧି ଲୋକ ଲିଖିତ ମାଧ୍ୟମର ସୁଯୋଗ ନେଇପାରୁ ନଥିବା ସ୍ୱତଃସିଦ୍ଧ । ସେମାନଙ୍କ ପାଇଁ ଭାଷା ଶିଖିବାର ଏକମାତ୍ର ଉପାୟ ହେଉଛି କଥିତ ମାଧ୍ୟମ । ଭାଷା ପ୍ରଚାରରେ କଥିତ ମାଧ୍ୟମଗୁଡ଼ିକ ହେଉଛନ୍ତି ରେଡ଼ିଓ, ଟେଲିଭିଜନ, ସିନେମା ଓ କ୍ୟାସେଟ୍ । ଏଗୁଡ଼ିକ ମାଧ୍ୟମରେ ବି ଷ୍ଟାଣ୍ଡାର୍ଡ଼ ଭାଷା ସମାଜରେ ପ୍ରସାର ଲାଭ କରିପାରେ । କିନ୍ତୁ ଓଡ଼ିଶାରେ ଏ ମାଧ୍ୟମଗୁଡ଼ିକର ପୂର୍ଣ୍ଣବିନିଯୋଗି ନିଯୋଗ ହୋଇନାହିଁ । ଏପରିକି ରେଡ଼ିଓରେ ବି ନୁହେଁ । ଟେଲିଭିଜନ୍, ସିନେମା ଓ କ୍ୟାସେଟ୍ ତ ଆହୁରି ହାଲ୍‌ର କଥା । ତା' ଛଡ଼ା, ଏଗୁଡ଼ିକ

ମାଧ୍ୟମରେ ସାଧାରଣତଃ ଯେଉଁ ଓଡ଼ିଆ ପ୍ରୋଗ୍ରାମ ପ୍ରସାରିତ ହୋଇଥାଏ, ସେଗୁଡ଼ିକର ମୁଖ୍ୟ ଲକ୍ଷ୍ୟ ହେଲା ମନୋରଞ୍ଜନ ବା ସରକାରୀ ପ୍ରୋପାଗାଣ୍ଡା । ଆଲୋଚନାତ୍ମକ ବକ୍ତୃତା ଆଦିର ପ୍ରସାର କ୍ୱଚିତ୍ ସ୍ଥାନ ପାଇଥାଏ । ପୁଣି ଓଡ଼ିଆ ସମାଜର ଉଚ୍ଚଶିକ୍ଷିତ, ବିଶେଷଜ୍ଞ ଓ ବୁଦ୍ଧିଜୀବୀମାନେ, ଯେଉଁମାନଙ୍କ ପାଖରେ ବୈଷୟିକ ତଥ୍ୟ ଓ ଜ୍ଞାନ ଅଛି, ସେମାନଙ୍କଠାରେ ଏହି ଜ୍ଞାନ ଇଂରାଜୀଭାଷାରେ ଗଚ୍ଛିତ । ତାକୁ ଓଡ଼ିଆ ଭାଷାରେ ପ୍ରକାଶ୍ କରିବା ପାଇଁ ସେମାନଙ୍କର ଆବଶ୍ୟକୀୟ ଭାଷାଜ୍ଞାନ ନାହିଁ କି ଅଭ୍ୟାସ ନାହିଁ । ଯାହା ଫଳରେ ସେମାନଙ୍କୁ କ୍ୱଚିତ୍ ଶୁଣିବାକୁ ମିଳିଥାଏ । ତା'ର ବିକଳ୍ପ ହୁଏତ କିଛି କରାଯାଇପାରନ୍ତା, କିନ୍ତୁ ଯାହା ପ୍ରକୃତ ଅନ୍ତରାୟ ହେଉଛି, ଓଡ଼ିଆ ପାଇଁ ପ୍ରଥମେ ଏ ପ୍ରସାର-ମାଧ୍ୟମଗୁଡ଼ିକ ହିଁ ଯଥେଷ୍ଟ ନୁହନ୍ତି । ଅନ୍ୟାନ୍ୟ ଭାଷାଗୁଡ଼ିକ ତୁଳନାରେ ଓଡ଼ିଆ ଆକାଶବାଣୀ ପ୍ରସାରର କେନ୍ଦ୍ର ହେଉଛି ମାତ୍ର ଦୁଇଟି, ଜୟପୁର ରିଲେ-ଷ୍ଟେସନକୁ ବାଦ୍‌ଦେଲେ । ସେଥିରୁ ମୋଟାମୋଟି ମାସକୁ ୩୬୦ ଘଣ୍ଟା ଓଡ଼ିଆ ପ୍ରସାରଣ ହୋଇଥାଏ । ସେ ତୁଳନାରେ ପୂର୍ବାଞ୍ଚଳର ଅନ୍ୟାନ୍ୟ ଭାଷାମାନଙ୍କ ଭିତରୁ ପ୍ରସାରଣ ସମୟ ବଙ୍ଗଳାରେ ୯୫୬ ଘଣ୍ଟା । ଏପରିକି ଅସମୀୟାରେ ବି ୪୯୦ ଘଣ୍ଟା । ଅନ୍ୟାନ୍ୟ ବଡ଼ ବଡ଼ ଭାଷାମାନଙ୍କ କଥା ନକହିବା ଭଲ । ଆକାଶବାଣୀ ତୁଳନାରେ ଦୂରଦର୍ଶନ ତ ଆହୁରି ହାଲ୍‌ର କଥା ଏବଂ ଓଡ଼ିଆରେ ଏହା ନାମକୁ ମାତ୍ର । ଏହାପରେ ଚଳଚ୍ଚିତ୍ର । ଭାରତରେ ଚଳଚ୍ଚିତ୍ରକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ- ଡକୁମେଣ୍ଟାରୀ ଫିଲ୍ମ ବା ତଥ୍ୟଚିତ୍ର ବା ପ୍ରମାଣିକ ଚିତ୍ର ଓ ଫିଚରଫିଲ୍ମ ବା କଥାଚିତ୍ର । ତଥ୍ୟଚିତ୍ରଗୁଡ଼ିକ ସାଧାରଣତଃ ସରକାରୀ ଏବଂ ସେଥିପାଇଁ ରାଜ୍ୟସରକାରଙ୍କ ଅବଦାନ ସାମାନ୍ୟ । ତଥାପି ଓଡ଼ିଆ ଭାଷା ଦୃଷ୍ଟିରୁ ତଥ୍ୟ ଚିତ୍ରଗୁଡ଼ିକର ଅବଦାନ ଯଥେଷ୍ଟ ବେଶି । ଏଗୁଡ଼ିକ କଥାଚିତ୍ରଠାରୁ ଖାଲି ସଂଖ୍ୟାରେ ବେଶି ନୁହଁନ୍ତି (୧୯୮୧ ସୁଦ୍ଧା ଓଡ଼ିଆ ତଥ୍ୟ ଚିତ୍ରର ସଂଖ୍ୟା ୨୩୧୩), ବିଷୟଗତ ବୈଚିତ୍ର୍ୟ ଓ ସେଗୁଡ଼ିକ ଉପରେ ଦିଆଯାଉଥିବା କମେଣ୍ଟାରୀ ବା ଭାଷ୍ୟ ଭାଷାର ବିସ୍ତାର ପାଇଁ ଯଥେଷ୍ଟ ବେଶି ଅନୁକୂଳ । ବାକି କ୍ୟାସେଟ୍ । ଏକ ଆଧୁନିକ ପ୍ରସାରମାଧ୍ୟମ ହିସାବରେ ଏହା ଖୁବ୍ ଜନପ୍ରିୟତା ଅର୍ଜନ କରିଥିଲେ ହେଁ, ଏବଂ ଏହି ମାଧ୍ୟମଟିର ସମ୍ଭାବନା ବିଷୟରେ ଆମେ ନିଃସନ୍ଦେହ ହୋଇଥିଲେ ହେଁ, ବର୍ତ୍ତମାନ ସୁଦ୍ଧା ଏହା ଓଡ଼ିଆସମାଜରେ ଜଗାବଳିଆ ଭଜନ ଓ ସିନେମାଗୀତ ପ୍ରସାର କରିବା ଛଡ଼ା ଆଉ ବିଶେଷ କିଛି କାମରେ ଲାଗୁନାହିଁ । ଗୋଟିଏ ଆଧୁନିକ ଭାଷାର ବିକାଶ ପାଇଁ ଏହି ପ୍ରସାର-ମାଧ୍ୟମଗୁଡ଼ିକର ମୂଲ୍ୟ ଅନସ୍ୱୀକାର୍ଯ୍ୟ । ପୃଥିବୀର ବହୁ ଭାଷା କ୍ଷେତ୍ରରେ ଏହି ମାଧ୍ୟମଗୁଡ଼ିକ ସାହାଯ୍ୟରେ ବୈପ୍ଳବିକ ପରିବର୍ତ୍ତନ ଅଣାଯାଇ ପାରିଛି । ଓଡ଼ିଆଭାଷା ପାଇଁ ସେହି ଦ୍ରୁତ ସାଫଲ୍ୟ ଅର୍ଜନ ନ କରିପାରିବାର କାରଣ ନାହିଁ ।

ଏହା ପରେ ଭାଷାର ପ୍ରତିଷ୍ଠାଗତ ବିକାଶ, ଯାହା ରାଜନୈତିକ ସ୍ୱୀକୃତିରୁ ଭାଷାକୁ ମିଳିଥାଏ । ଭାରତରେ ଦୁଇଶହରୁ ଅଧିକ ଭାଷା ପ୍ରଚଳିତ ହେଉଥିଲେ ମଧ୍ୟ ଭାରତୀୟ ସମ୍ବିଧାନରେ ମାତ୍ର ପନ୍ଦରଟି ଭାଷା (ବର୍ତ୍ତମାନ ଅଠର)କୁ ଅନୁସୂଚିତ ଭାଷା (scheduled

language)ର ମର୍ଯ୍ୟାଦା ମିଳିଛି । ଏହି ଭାଷାଗୁଡ଼ିକ ମଧ୍ୟରୁ ଓଡ଼ିଆ ଅନ୍ୟତମ ଓ ଏହି ତାଲିକାଭୁକ୍ତ ହେବା ପଛରେ ଓଡ଼ିଆ ଜାତିର, ଓଡ଼ିଶା ପ୍ରଦେଶର, ଓଡ଼ିଆ ସଭ୍ୟତା ଓ ସଂସ୍କୃତିର ଐକିକତାକୁ ସ୍ୱୀକୃତି ଦିଆଯାଇଛି । ଭାରତର ଅନ୍ୟାନ୍ୟ ଆଞ୍ଚଳିକ ଭାଷାଗୁଡ଼ିକୁ କେନ୍ଦ୍ରୀୟ ଶାସନରୁ ଯେଉଁ ସୁବିଧା ସୁଯୋଗ ଦିଆଯାଇଥାଏ, ଓଡ଼ିଆ ମଧ୍ୟ ତାହାର ହକ୍‌ଦାର । ଏ ପ୍ରକାର ସୁବିଧା ସୁଯୋଗ ଆଞ୍ଚଳିକ ଭାଷାଗୁଡ଼ିକର ଆଇନତଃ ପ୍ରାପ୍ୟ । ଏହି ସମ୍ବିଧାନିକ ସ୍ୱୀକୃତି-ବ୍ୟବସ୍ଥା ଉପରେ ନିର୍ଭର କରି ଓଡ଼ିଶା ସରକାରଙ୍କ ଦ୍ୱାରା ଓଡ଼ିଶା ରାଜ୍ୟର 'ସରକାରୀ ଭାଷା ଆଇନ୍' ପ୍ରଣୀତ ହୋଇଛି, ଯଥା : ଓଡ଼ିଶା ଆଇନ୍ ୧୪-୧୯୫୪, ଓଡ଼ିଶା ସରକାରୀ ଭାଷା ଆଇନ୍ ୧୯୫୪ (ରାଜ୍ୟପାଳଙ୍କ ସ୍ୱୀକୃତିପ୍ରାପ୍ତ-ଅକ୍ଟୋବର ୧୯୫୪ । ପ୍ରଥମ ପ୍ରକାଶ-ଓଡ଼ିଶା ଗେଜେଟ୍‌ର ବିଶେଷ ସଂଖ୍ୟା-୧୫, ଅକ୍ଟୋବର, ୧୯୫୪) । ଶିରୋନାମା- ଓଡ଼ିଶା ରାଜ୍ୟରେ ଓଡ଼ିଆଭାଷାକୁ ସରକାରୀ ଭାଷା ଘୋଷଣା ଆଇନ । ଓଡ଼ିଶା ରାଜ୍ୟରେ ଓଡ଼ିଆ ଭାଷାକୁ ସରକାରୀ ଭାଷା ରୂପେ ସର୍ବତ୍ର ବା କ୍ଷେତ୍ର ବିଶେଷରେ ବ୍ୟବହାର କରିବାର ସ୍ୱୀକୃତି ।

ଗଣତନ୍ତ୍ର ଭାରତର ପଞ୍ଚମ ବର୍ଷରେ ଓଡ଼ିଶା ରାଜ୍ୟର ବିଧାନସଭା ଦ୍ୱାରା ଗୃହୀତ ।

ଶୀର୍ଷକ-୧ ।

(କ) ଏହି ଆଇନ୍ ଓଡ଼ିଶା ସରକାରୀ ଭାଷା ଆଇନ୍, ୧୯୫୪ ରୂପେ ଗୃହୀତ ହେଲା ।

(ଖ) ଏହା ସମଗ୍ର ଓଡ଼ିଶା ରାଜ୍ୟ କ୍ଷେତ୍ରରେ ଲାଗୁ ହେବ ।

(ଗ) ଏହା ବର୍ତ୍ତମାନଠାରୁ ପ୍ରଚଳିତ ହେବ ।

ରାଜ୍ୟରେ ସରକାରୀ ଭାଷା ରୂପେ ଏହାର ପ୍ରଚଳନ -

୨) (କ) ସମ୍ବିଧାନର ୩୪୬ ଓ ୩୪୭ ଧାରାଗୁଡ଼ିକର ବିରୋଧ ନକରି ଓଡ଼ିଆଭାଷା ଓଡ଼ିଶାରାଜ୍ୟର ସମସ୍ତ ବା ନିର୍ଦ୍ଦିଷ୍ଟ ସରକାରୀ କ୍ଷେତ୍ରରେ ବ୍ୟବହୃତ ହେବ ।

(ଖ) ରାଜ୍ୟସରକାର ସାଧାରଣ ଅବଗତିକୁ ଆଣି ଓଡ଼ିଆଭାଷାକୁ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ସମୟଠାରୁ ସରକାରୀ କାର୍ଯ୍ୟରେ ପ୍ରଚଳିତ କରାଇପାରନ୍ତି ।

ବିଲ୍ ଇତ୍ୟାଦିରେ ଓଡ଼ିଆ ବ୍ୟବହାର -

୩) ରାଜ୍ୟସରକାର ସାଧାରଣ ଅବଗତିକୁ ଆଣି ଭାଷା-ବ୍ୟବହାରକୁ ଅତ୍ର ଲାଗୁ କରାଇପାରନ୍ତି -

(କ) ଓଡ଼ିଶା ବିଧାନ ସଭାରେ ଯେତେ ବିଲ୍ ବା ତାହାର ସଂଶୋଧନ ଅଣାଯିବ ।

(ଖ) ବିଧାନସଭାରେ ଯେତେ ଆଇନ ଗୃହୀତ ହେବ ।

(ଗ) ସମ୍ବିଧାନର ୨୧୩ ଧାରା ଅନୁଯାୟୀ ରାଜ୍ୟପାଳ ଯେଉଁସବୁ ଅଧ୍ୟାଦେଶ ଜାରି କରିବେ ।

(ଘ) ସମ୍ବିଧାନ, ଲୋକସଭା ବା ବିଧାନସଭା ଦ୍ୱାରା ଗୃହୀତ ସବୁ ଆଦେଶ, ନିୟମକାନୁନ ରାଜ୍ୟସରକାରଙ୍କ ଦ୍ୱାରା ଓଡ଼ିଆରେ ପ୍ରଚଳିତ ହେବ ।

କ ଠାରୁ ଘ ପର୍ଯ୍ୟନ୍ତ ଯେଉଁ ବିଷୟଗୁଡ଼ିକ ଉଲ୍ଲିଖିତ ହୋଇଛି, ସେଗୁଡ଼ିକ କ୍ଷେତ୍ରରେ ରାଜ୍ୟସରକାର ଓଡ଼ିଆ ଭାଷାର ବ୍ୟବହାରକୁ ଭିନ୍ନ ଭିନ୍ନ ସମୟରୁ ଲାଗୁ କରାଇପାରନ୍ତି ।

ଭାରତୀୟ ସମ୍ବିଧାନର ଆରମ୍ଭର ପନ୍ଦରବର୍ଷ ଅତିବାହିତ ହୋଇଥିବା ସତ୍ତ୍ୱେ, ଇଂରାଜୀ ଭାଷା ୧୯୬୫ ମସିହା ଜାନୁଆରୀ ୨୬ ତାରିଖଠାରୁ ଓଡ଼ିଆ ଭାଷା ସହିତ ଓଡ଼ିଶା ବିଧାନସଭାର କାର୍ଯ୍ୟକ୍ରମରେ ବ୍ୟବହୃତ ରହିବ ।

ଏହି ଓଡ଼ିଶା ସରକାରୀ ଭାଷା ଆଇନ ୧୯୫୪ ପରିପ୍ରେକ୍ଷୀରେ ସରକାର ଓଡ଼ିଶା ଗେଜେଟ୍‌ର କ୍ରମସଂଖ୍ୟା ୩୯୨, ଏପ୍ରିଲ ୧୪, ୧୯୬୬ରେ ଗୋଟିଏ ନିର୍ଦ୍ଦେଶନାମା ପ୍ରକାଶିତ କରନ୍ତି ଯେ, ୧୯୬୬ ମେ' ୧୬ ତାରିଖରୁ ବିଭିନ୍ନ ସରକାରୀ କ୍ଷେତ୍ରରେ ଓଡ଼ିଆଭାଷା ପ୍ରଚଳିତ ହେବ । (ପୂର୍ଣ୍ଣ ବିବରଣୀ ପାଇଁ ଉକ୍ତ ଗେଜେଟ୍ ସଂଖ୍ୟା ଦ୍ରଷ୍ଟବ୍ୟ) ।

ତା'ପରେ ୧୯୮୩ ମସିହା ଏପ୍ରିଲ ୩୦ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ସରକାରୀ କ୍ଷେତ୍ରରେ ରାଜ୍ୟରେ ଓଡ଼ିଆଭାଷାର ବ୍ୟବହାର ପାଇଁ ଏକ ସଭା ବସେ ଏବଂ ସଭା ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ ବସେ । ଏହି ସିଦ୍ଧାନ୍ତ ଗୃହୀତ ହୁଏ ଯେ, ସରକାରୀ ଭାଷା କମିଟିଙ୍କର ସୁପାରିଶ୍ ଅନୁଯାୟୀ ଓଡ଼ିଆଭାଷା ସବୁ ମୁଖ୍ୟ କାର୍ଯ୍ୟାଳୟ ଏବଂ ସେଗୁଡ଼ିକର ଅଧୀନସ୍ଥ ସମସ୍ତ ବିଭାଗରେ ଏକବର୍ଷ ମଧ୍ୟରେ ଏବଂ ରାଜ୍ୟର ସମସ୍ତ କାର୍ଯ୍ୟାଳୟରେ ୧୯୮୫ ଏପ୍ରିଲ ୧ ତାରିଖରୁ ବ୍ୟବହୃତ ହେବ । ଏହା ପୁଣି ଗୃହୀତ ହୁଏ ଯେ, ଏହାକୁ ନିର୍ଦ୍ଦିଷ୍ଟ ସମୟ ଭିତରେ ସଫଳ କରିବା ପାଇଁ କେତେକ ଆନୁଷଙ୍ଗିକ କାର୍ଯ୍ୟକ୍ରମ ନିଆଯିବ ଏବଂ ପ୍ରତିଟି କାର୍ଯ୍ୟକ୍ରମର ସମୟ ସୂଚନା ରହିବ ।

ଏହି କାର୍ଯ୍ୟକ୍ରମ ଗୁଡ଼ିକ ସଂକ୍ଷେପରେ ହେଲା –

୧. ଓଡ଼ିଆ ଶବ୍ଦକୋଷର ମାନକୀକରଣ
୨. ଆଇନ୍-କାନୁନ୍‌ର ଓଡ଼ିଆରେ ଅନୁବାଦ
୩. ଫର୍ମଗୁଡ଼ିକର ଓଡ଼ିଆରେ ଅନୁବାଦ ଓ ମାନକୀକରଣ
୪. ଆଦର୍ଶ ରଚନା ଓ ଟିପ୍ପଣୀର ସଂକଳନ
୫. ଓଡ଼ିଆ ଟାଇପ୍-ରାଇଟର ପାଇଁ ଏକ ସହଜ କି-ବୋର୍ଡ଼ ନିର୍ମାଣ
୬. ଓଡ଼ିଆ ଟାଇପ୍-ରାଇଟର୍ ଯୋଗାଣ
୭. ଓଡ଼ିଆ ଟାଇପିଂ ଓ ଷ୍ଟେନୋଗ୍ରାଫିରେ ତାଲିମ
୮. ଓଡ଼ିଆ ଭାଷା ପ୍ରଗତିର ତଦାରଖ ଓ ନିରୀକ୍ଷଣ ।

ଏହି ସରକାରୀ ବିଜ୍ଞପ୍ତିଗୁଡ଼ିକରୁ ମନେ ହେବ ଯେ, ଓଡ଼ିଶା ସରକାର ଓଡ଼ିଆଭାଷା ପାଇଁ ତାଙ୍କର କର୍ତ୍ତବ୍ୟକୁ ପୂରଣ କରିସାରିଛନ୍ତି । ବାସ୍ତବିକ ଏହି ଆଠ ଦଫା ସମ୍ବଳିତ କାର୍ଯ୍ୟସୂଚୀ ବା ଅନୁରୂପ ଅନ୍ୟାନ୍ୟ ମହାକରଣ ବ୍ୟବସ୍ଥାଗୁଡ଼ିକର ଭାଷାନୀତି ଦୃଷ୍ଟିରୁ କୌଣସି ବିଶେଷତ୍ୱ ନାହିଁ । ଏ ପଦକ୍ଷେପଗୁଡ଼ିକ ସମ୍ପୂର୍ଣ୍ଣରୂପେ ବ୍ୟବସ୍ଥାଗତ । କିନ୍ତୁ ଓଡ଼ିଆଭାଷାର ପ୍ରତିଷ୍ଠା ଦୃଷ୍ଟିରୁ ଯେଉଁ ଦୁଇଟି ଗୁରୁତ୍ୱ ରହିଛି, ସେ ହେଉଛି ଭାରତୀୟ ସମ୍ବିଧାନର ଅଷ୍ଟମ

ସୂଚୀରେ ଓଡ଼ିଆଭାଷାର ଉଲ୍ଲେଖ ଓ ଓଡ଼ିଆ ସରକାରୀ ଭାଷା ଆଇନ୍-୧୯୫୪ । ଏହି ଦୁଇଟି ଆଇନ ବଳରେ ଓଡ଼ିଆ ଭାଷାର ସ୍ୱାର୍ଥ ଯଥେଷ୍ଟ ସୁରକ୍ଷିତ ହୋଇଛି ଓ ଏହି ସୁଯୋଗ ନମିଳିଲେ ଓଡ଼ିଆଭାଷୀଙ୍କ ନାଗରିକ ଅଧିକାର କ୍ଷୁଣ୍ଣ ହେବାର ଅଭିଯୋଗ ଅଣାଯାଇପାରେ ।

ତଥାପି ସାମାନ୍ୟ ଲକ୍ଷ୍ୟକରି ଦେଖିଲେ ବୁଝିହେବ ଯେ, ଓଡ଼ିଆର ଏହି ଆଇନଗୁଡ଼ିକ ସତ୍ତ୍ୱେ ଏହା ଅନେକତ୍ର ପ୍ରବେଶ କରିବା ପାଇଁ ଅକ୍ଷମ । ଏହି ଅକ୍ଷମତାର ଏକାଧିକ କାରଣ ଅଛି । ଓଡ଼ିଶା ସରକାରୀ ସ୍ତରରେ ବି ଓଡ଼ିଆର ବ୍ୟବହାର କାଗଜ କଲମରେ ରହିଯାଇଛି । ଅନ୍ୟାନ୍ୟ କ୍ଷେତ୍ରରେ ବି ଏହା ଆହୁରି ସଂକୁଚିତ । ରାଉରକେଲା ଇସ୍ପାତ କାରଖାନାର ସଞ୍ଚାଳକ-ମଣ୍ଡଳୀ ସଭାରେ ଇଂରାଜୀ ଛଡ଼ା ଅନ୍ୟ କେଉଁ ଭାଷାର କ୍ଷମତା କି ଅଛି ପ୍ରବେଶ କରିବାର ? ଓଡ଼ିଆ ଭାଷାର ପ୍ରବେଶ ଦୃଷ୍ଟିରୁ ଏ ସବୁ ଗୋଟିଏ ଗୋଟିଏ ରୁଦ୍ଧ କପାଟ, ଅର୍ଥାତ୍ ସେଠି ଅନ୍ୟ ଭାଷା ଆସନ ଜମାଇ ବସିଛନ୍ତି । ସେ ସବୁ କ୍ଷେତ୍ରକୁ ପଶିବାର ଓଡ଼ିଆର କ୍ଷମତା ନାହିଁ । ଅନ୍ୟତ୍ର ଆଇନଗତ । ଯେପରି ନ୍ୟାୟାଳୟଗୁଡ଼ିକରେ ଓଡ଼ିଆ ବ୍ୟବହୃତ ହେବା ନିଷିଦ୍ଧ । ଅପାରଗତା ବା ସୁଯୋଗର ଅଭାବରୁ ମଧ୍ୟ ଓଡ଼ିଆର ବ୍ୟବହାର ଅନେକତ୍ର ପ୍ରତିହତ ହୋଇଛି, ଯଥା- କ୍ରିକେଟ ଟେଷ୍ଟ ମ୍ୟାଚର ଧାରା-ବିବରଣୀ କେବଳ ଇଂରାଜୀ ଓ ହିନ୍ଦୀରେ ମିଳିପାରେ । ରେଳଗାଡ଼ି ଡବାରେ 'ସ୍ଲିପର କୋଚ୍' ସାଙ୍ଗକୁ ହିନ୍ଦୀରେ 'ଶୟନଯାନ' ଲେଖାଯାଉଥିଲେ ମଧ୍ୟ ଓଡ଼ିଆରେ ଦିଆଯାଏ ନାହିଁ । ଗୋଦରେଜ କମ୍ପାନୀର ଆଲମାରୀ ବା ଫ୍ରିଜ୍ ଓଡ଼ିଶାରେ ବିକ୍ରି ହୁଏ ବା ଉଷା, ଖଇତାନ୍ ପଙ୍ଖା ଉପରେ ଇଂରାଜୀରେ ନାମ ଲେଖାହୁଏ, ଓଡ଼ିଆରେ ନୁହେଁ । ଓଡ଼ିଶାରେ ନିର୍ମିତ କୋଣାର୍କ ଟି.ଭି. ଉପରେ ବି ଓଡ଼ିଆରେ ନାଁ' ଦିଆଯାଏ ନାହିଁ । ନାନା ଧରଣର ଔଷଧ ବା ବହୁ ବ୍ୟବହାର୍ଯ୍ୟ ଜିନିଷ ସାଙ୍ଗରେ ବ୍ୟବହାର କରିବାର ଯେଉଁ ସୂଚନାପତ୍ର ଆସେ, ସେଥିରେ କ୍ୱଚିତ୍ ଓଡ଼ିଆ ଲେଖା ଦେଖିବାକୁ ମିଳେ । ଏଥିରୁ ସ୍ପଷ୍ଟ ଯେ, ନାନା କାରଣରୁ ସଂସ୍କାରଗତ ହେଉ, ଅପାରଗତା ଯୋଗୁଁ ହେଉ ବା ବ୍ୟବସାୟିକ ବୁଦ୍ଧି ଦୃଷ୍ଟିରୁ ହେଉ, ଓଡ଼ିଆର ପ୍ରବେଶାଧିକାର ନାନା କ୍ଷେତ୍ରରେ ସମ୍ପୂର୍ଣ୍ଣ ରହିତ ବା ସଂକୁଚିତ । ଗୋଟିଏ ଭାଷାକୁ ରାଜନୈତିକ ପ୍ରତିଷ୍ଠା ଦେବାର କାରଣ ହେଉଛି ଯେ, ଜଣେ ଭାଷାଭାଷୀ ଆଇନତଃ ସେହି ଭାଷାରେ ସମସ୍ତ ସେବା ଦାବୀ କରିପାରିବ । ସେ ଅଧିକାର ତା'କୁ ନମିଳିଲେ ଆଇନତଃ ସେ ତା'ର ପ୍ରତିବିଧାନ କରିପାରିବ । ଗୋଟିଏ ପ୍ରତିଷ୍ଠାସମ୍ପନ୍ନ ଭାଷା ମୁଖ୍ୟତଃ ଏହି ନାଗରିକ ଅଧିକାରକୁ ରକ୍ଷା କରିଥାଏ, କିନ୍ତୁ ସଚେତନତାର ଅଭାବରେ ଏହା ସରକାରୀ ଓ ବେସରକାରୀ ହଟତାରେ ପରିଣତ ହୋଇଛି ।

ମୋଟାମୋଟି ଭାବେ ଏୟା ହିଁ ହେଉଛି ଓଡ଼ିଆଭାଷା ବିକାଶର ସ୍ତର ଓ ସମସ୍ୟା, ଯେଉଁଥିରୁ ଏହାର ଉନ୍ନତିପଥରେ ଦେଖାଦେଇଥିବା ବିଭିନ୍ନ ପ୍ରକାରର ଅନ୍ତରାୟଗୁଡ଼ିକର ସୂଚନା ମିଳିପାରେ । ତେବେ ଓଡ଼ିଆ ଜାତିର ଭବିଷ୍ୟତ ଦୃଷ୍ଟିରୁ ଓଡ଼ିଆ ଭାଷାର ସାମ୍ପ୍ରତିକ ଅବସ୍ଥା ବିଷୟରେ ଗୋଟିଏ ଦୁଇଟି କଥା କୁହାଯାଇପାରେ, ଯାହା ଖାଲି ଓଡ଼ିଆ କ୍ଷେତ୍ରରେ

ନୁହେଁ, ଅନେକ ବହୁତେ ପ୍ରତ୍ୟେକ ଆଞ୍ଚଳିକ ଭାଷା, ଏପରିକି ହିନ୍ଦୀ ପାଇଁ ମଧ୍ୟ ପ୍ରଯୁଜ୍ୟ । ତାହା ହେଲା ଶିକ୍ଷାକ୍ଷେତ୍ରରେ ମାତୃଭାଷା । ଶିକ୍ଷାବିତ୍‌ମାନଙ୍କଠାରୁ ଆରମ୍ଭ କରି ସବୁ ରଙ୍ଗର ରାଜନୈତିକ, ସମାଜସେବକ ଓ ଦେଶପ୍ରେମୀମାନଙ୍କ ପର୍ଯ୍ୟନ୍ତ, ସମସ୍ତେ ମାତୃଭାଷାରେ ଶିକ୍ଷାର ଆବଶ୍ୟକତା ବିଷୟରେ ଶତମୁଖ ।

ସମସ୍ତଙ୍କର ବିଶ୍ୱାସ ଯେ, ଶିକ୍ଷା ମାତୃଭାଷାରେ ଦିଆଗଲେ ଏହା ଏକ ଢେଙ୍କାରେ ବହୁ ଚଢ଼େଇ ମାରିବ । ଏହା ଶିକ୍ଷାର ପ୍ରକୃତ ମାନ ବଢ଼ାଇବ, ଶିକ୍ଷାର ଅହେତୁକ ସୁଯୋଗ ନେଉଥିବା ଧନୀ, ଉଚ୍ଚଜାତି ଓ ସହରବାସୀମାନଙ୍କର ଏକଚାଟିଆକୁ ଭାଙ୍ଗିବ ଓ ସର୍ବୋପରି ଇଂରାଜୀଭାଷା ପରି ଏକ ବିଦେଶୀ ଭାଷା, ଯାହା ଆମର ତ୍ରିକାଳକୁ ଆବୋରି ରହିଛି, ତା'କୁ ସମୂଳେ ବହିଷ୍କାର କରାଯାଇପାରିବ । କିନ୍ତୁ ଯାହା ଦେଖିବାକୁ ମିଳୁଛି, ଇଂରାଜୀଭାଷା ଯାହା ବ୍ରିଟିଶ ଅମଳରେ ବି କେବଳ ଉଚ୍ଚଶିକ୍ଷା କ୍ଷେତ୍ରରେ ସୀମିତ ଥିଲା, ବର୍ତ୍ତମାନ ତାହା ପ୍ରାଥମିକ ସ୍ତରକୁ ମଧ୍ୟ ଓହ୍ଲାଇ ଆସିଛି । ଭାରତର ପ୍ରତ୍ୟେକ ଅଞ୍ଚଳରେ ଯେଉଁ ସଂଖ୍ୟାରେ ଇଂଲିଶ୍-ମିଡ଼ିଅମ୍ ସ୍କୁଲ ଖୋଲୁଚି, ସେଥିରୁ ଏହା ସ୍ପଷ୍ଟ । ମୁଲାୟମ ସିଂହ ଯାଦବ ବା ଲାଲୁପ୍ରସାଦ ଯାଦବଙ୍କ ପରି କଟ୍ଟର ହିନ୍ଦୀପ୍ରେମୀମାନେ ବି ନିଜର ସନ୍ତାନସନ୍ତତିଙ୍କୁ ଇଂଲିଶ-ମିଡ଼ିଅମ୍ ସ୍କୁଲକୁ ପଠାଇବା ପାଇଁ ବାଧ୍ୟ ହୋଇପଡ଼ିଛନ୍ତି । ଅନ୍ୟ ସାଧାରଣଙ୍କ କଥା ସହଜରେ ଅନୁମେୟ । କାଗଜପତ୍ରରେ ଯାହା ହେଉଥାଉ ନା କାହିଁକି, ଇଂରାଜୀଭାଷା ପ୍ରତ୍ୟେକ ସୁବିଧାବାଦୀ ଗୋଷୀପାଇଁ ନୂତନ ସୁଯୋଗର ସ୍ୱପ୍ନ ସୃଷ୍ଟି କରିଛି । ଓଡ଼ିଶାରେ ବି ତା'ର ବ୍ୟତିକ୍ରମ ନାହିଁ । ଏଇ କେତେବର୍ଷ ତଳ ପର୍ଯ୍ୟନ୍ତ ଉଚ୍ଚଶିକ୍ଷାର ପୋଥିଗତ ଇଂରାଜୀର ସାହାଯ୍ୟ ନେଇ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକ ଧନ, ମାନ, ଶକ୍ତି, ସାମର୍ଥ୍ୟକୁ କବ୍ଜା କରୁଥିଲେ । ଏହି ଭାଷା ଥିଲା ଏକ ଅତ୍ୟନ୍ତ ସୀମିତ ଭାଷା, ଯେଉଁଥିରେ ସୃଜନଶୀଳ ଚିନ୍ତା କରିବାର ଦକ୍ଷତା ନ ଥିଲେ ବି ବିଭିନ୍ନ ପ୍ରକାରର କିରାଣିଗିରି କରିବା ପାଇଁ ଏହା ପର୍ଯ୍ୟାପ୍ତ ଥିଲା ଏବଂ ଏହି ଇଂରାଜୀର ମାତୃଭାଷାର ସ୍ଥାନ ନେବାର ବା ତାହାକୁ ଉଚ୍ଛେଦ କରିବାର ଶକ୍ତି ନଥିଲା । ତେଣୁ ଏ ପର୍ଯ୍ୟନ୍ତ ଜଣେ ବି ଉଚ୍ଚଶିକ୍ଷିତ ଓଡ଼ିଆ, ଯେଉଁମାନେ ଇଂରାଜୀଶିକ୍ଷା ବଳରେ ଉଚ୍ଚାସନରୂଢ଼ ହୋଇଛନ୍ତି, ଇଂରାଜୀଭାଷାରେ କବିତ୍ୱ କରିଛନ୍ତି । ଇଂରାଜୀଭାଷାରେ ସୃଜନଶୀଳ ଅନ୍ତରଙ୍ଗ ଭାବନାକୁ ପ୍ରକାଶ କରିବା ପରି ଭାଷା ସେମାନଙ୍କର ନଥିଲା । ସେଥିପାଇଁ ସେ ଭାଷାରେ ଉଚ୍ଚଶିକ୍ଷା ସତ୍ତ୍ୱେ ସେ ଭାଷା ଜୋର୍‌ରେ ସମସ୍ତ ସୁବିଧା ସୁଯୋଗ ଅର୍ଜନ କରିଥିବା ସତ୍ତ୍ୱେ, ସେମାନଙ୍କର ଓଡ଼ିଆତ୍ୱ ବିପନ୍ନ ହେଉନଥିଲା, କାରଣ ସେମାନଙ୍କ ମାତୃଭାଷା ଅତୁଟ ରହୁଥିଲା । କିନ୍ତୁ ବର୍ତ୍ତମାନ ଇଂରାଜୀମାଧ୍ୟମ ସ୍କୁଲର ଇଂରାଜୀଭାଷା ଛାତ୍ରର ମାତୃଭାଷାକୁ ସମୂଳେ ଉଚ୍ଛେଦ କରିବ ବା ଏପରି ଭାବେ ପଙ୍ଗୁ କରିଦେବ ଯେ, ସେ ଭାଷା ଉପରୁ ତା'ର ସମସ୍ତ ଆସ୍ଥା ତୁଟିଯିବ । ଅଚିରେ ଏହିପରି ଏକ ଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ତରୁଣଗୋଷ୍ଠୀକୁ, ଯେଉଁମାନେ ଜନ୍ମରେ ଓଡ଼ିଆ ହେଲେ ବି ଚିନ୍ତାରେ ବା ଭାବନାରେ ନୁହନ୍ତି, ସେମାନଙ୍କୁ ସ୍ୱାଗତ କରିବା ପାଇଁ ଓଡ଼ିଆ ସମାଜ ପ୍ରସ୍ତୁତ ହେବା ଉଚିତ ।

□□□

## ୪୫

# ନାଟକର ଭାଷା

### ହେମନ୍ତ କୁମାର ଦାସ

ନାଟକକୁ ଜୀବନର ପ୍ରତିରୂପ କୁହାଯାଇଥାଏ । ମଞ୍ଚରେ ଜୀବନର ଯେଉଁ ଧାରା ପରିସ୍ଫୁଟ ହୁଏ, ତାହା କିନ୍ତୁ ବାସ୍ତବତାର ଏକ ଛଳନାତ୍ମକ ରୂପ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହା ସମ୍ଭବ ହୋଇଥାଏ, ପ୍ରକୃତ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ରୂପାୟନରୁ, ମଞ୍ଚରେ ଜୀବନର ଏହି ପରିବର୍ତ୍ତିତ ରୂପକୁ ଦର୍ଶକ ଭଲ ଭାବରେ ଚିହ୍ନିପାରିବା ଏକାନ୍ତ ଆବଶ୍ୟକ, ନିଜ ଅନୁଭୂତି-ସହିତ ଏହାକୁ ଖାପ୍ ଖୁଆଇ ନେବା ଦରକାର । ନାଟ୍ୟକାରଙ୍କର ଚିନ୍ତା ଏବଂ ଚେତନା ସହିତ ତାଳମିଳାଇ ଚାଲିପାରିବା ଆବଶ୍ୟକ । ଏହି ବ୍ୟାପାରରେ ଭାଷାହିଁ ନାଟ୍ୟକାରକୁ ସାହାଯ୍ୟ କରିଥାଏ । ବାସ୍ତବ ଜୀବନରେ ପ୍ରତିନିୟତ ବ୍ୟବହୃତ, ଯେଉଁସବୁ ଶବ୍ଦ ଅତି ସାଧାରଣ ମନେହୁଏ, ମଞ୍ଚରେ ଅଭିନେତାର ମୁହଁରେ ତାହାହିଁ ପୁଣି ସ୍ମରଣୀୟ ରୂପ ପରିଗ୍ରହ କରେ । ଶବ୍ଦ ଯେତେ ସରଳ କିମ୍ବା ନିତ୍ୟ ବ୍ୟବହୃତ ହୋଇ ଥାଉନା କାହିଁକି, ପରିବେଶ ହିଁ ଏହାର ଗୁରୁତ୍ୱ ବଢ଼ାଇ ଦିଏ । 'ବନହଂସୀ' ନାଟକରେ କ୍ଲିନିକ୍‌ରେ ନର୍ସ ପ୍ରବୀରଙ୍କର ପ୍ରାକ୍ତନ ପ୍ରେମିକା 'ଉଷା'ଙ୍କୁ କହିଛି, "ତା'ମାନେ ଆପଣ କହିବାକୁ ଚାହାନ୍ତି, ଆପଣ ଜାଣନ୍ତି ଆଉ କେହି ଜାଣି ନାହାନ୍ତି ?" କେତୋଟି ଶବ୍ଦ ଏକାଧିକବାର ପ୍ରୟୋଗ ନାରୀର ଈର୍ଷାକାତର ସ୍ୱଭାବକୁ ପରିସ୍ଫୁଟ କରିବା ସଙ୍ଗେ ସଙ୍ଗେ ନର୍ସ ଚରିତ୍ରର ବ୍ୟର୍ଥନାରୀତ୍ୱ ତଥା ଅସ୍ଥିରତା ସମ୍ପର୍କରେ ଦର୍ଶକମାନଙ୍କୁ ଏକ ସ୍ପଷ୍ଟ ଧାରଣା ଦେଇଥାଏ । ଏଥିରୁ ଜଣାଯିବ ଯେ, ନାଟକର ଭାଷା ସାଧାରଣ-ଆଳାପ ଆଲୋଚନାର ସମାନ୍ତରାଳ ରୂପ ହୋଇଥିଲେ ହେଁ, ଏଥିରେ ନିର୍ଦ୍ଦିଷ୍ଟ ଧରଣର ଗୁରୁତ୍ୱ ଆରୋପିତ ହୋଇଥାଏ ।

ଭାଷାକୁ ସାଧାରଣ ଭାବରେ ଅଭିବ୍ୟକ୍ତିର ମାଧ୍ୟମ ରୂପରେ ଗ୍ରହଣ କରି ନିଆଯାଇଥାଏ । ମାତ୍ର ଶରୀରର ଭୌତିକ କ୍ରିୟା ସହିତ ତାହାର ସମ୍ପର୍କ ରହିଛି । ଏହା ଜନ୍ମନିଏ ଚେତନାର ଗଭୀରତାରେ, ଏବଂ ଶାରୀରିକ ଅବୟବ ମାଧ୍ୟମରେ ଆତ୍ମପ୍ରକାଶ କରେ, ସେତେବେଳେ ତହିଁରେ ଏକ ପ୍ରକାରର ବୈଶିଷ୍ଟ୍ୟ ସୃଷ୍ଟି ହୋଇଥାଏ । ବାହାରୁ ଏହା

କେବଳ କେତେକ ଶବ୍ଦାବଳୀର ସମାହାର ମନେ ହେଉଥିଲେ ମଧ୍ୟ ଏହାର ଅନ୍ତଃସ୍ରୋତରେ ସାହିତ୍ୟିକଙ୍କର ମାନସିକତା ଏବଂ ସର୍ଜନାତ୍ମକ ବୃତ୍ତି ପରିସ୍ଫୁଟ ହୋଇଥାଏ । ବାହ୍ୟ ଏବଂ ଅଭ୍ୟନ୍ତର ଏ ଉଭୟ ରୂପ ମଧ୍ୟରେ ସମନ୍ୱୟ ସ୍ଥାପିତ ହେଲେ ହିଁ ଭାଷା ଯଥାର୍ଥରେ ସ୍ମରଣୀୟ ରୂପ ପରିଗ୍ରହ କରେ ।

ନାଟକର ଭାଷା ବାସ୍ତବତାର ଅନୁକୃତି ହୋଇଥିବାରୁ ଦୈନନ୍ଦିନ ଜୀବନରେ ବ୍ୟବହୃତ ବାକ୍-ଭଙ୍ଗୀ ସହିତ ଏହାର ନିବିଡ଼ ସମ୍ପର୍କ ରହିବା ସ୍ୱାଭାବିକ । ତେଣୁ ନାଟକୀୟ ଦୃଷ୍ଟିରୁ ଏହା ବାସ୍ତବତାର ଭ୍ରମ ସୃଷ୍ଟି କରିବା ନିମନ୍ତେ ଅଭିପ୍ରେତ ହୋଇଥାଏ । ଦର୍ଶକ ଏବଂ ଅଭିନେତା ମଧ୍ୟରେ ନାଟ୍ୟକାରର ଉପସ୍ଥିତିକୁ କୁଣ୍ଠିତ ଏବଂ ଅସ୍ପଷ୍ଟ କରି ପାରିବାରେ ନାଟ୍ୟ-ଭାଷାର ସାର୍ଥକତା ନିହିତ । ନାଟ୍ୟକାର ଯେତେବେଳେ ନିଜ ନାଟକର ବିଭିନ୍ନ ଚରିତ୍ର ନିମନ୍ତେ ସଂଳାପ ରଚନା କରୁଥାଏ, ସେତେବେଳେ ତାକୁ ଭିନ୍ନ ଭିନ୍ନ ଚରିତ୍ରର ଭୂମିକା ଗ୍ରହଣ କରିବାକୁ ହୁଏ । ଯେଉଁ ଚରିତ୍ର ଯେତେବେଳେ ତାଙ୍କ ଆଗକୁ ଆସେ, ସେତେବେଳେ ସେ ନିଜକୁ ଭୁଲିଯାଇ ସେହି ଚରିତ୍ର ମଧ୍ୟରେ ବୁଡ଼ିଯାଏ । ତାରି ଭଳି ଆଚରଣ କରିବା ନିମନ୍ତେ, ଭାଷା ପ୍ରୟୋଗ କରିବା ନିମନ୍ତେ ଆନ୍ତରିକ ଉଦ୍ୟମ କରେ । ଏହି ପ୍ରକ୍ରିୟାରେ ସେ ବାସ୍ତବଜୀବନ, ପରିବେଶ ଏବଂ ପରିବେଶ ସମ୍ଭବ ସଂଳାପ ପ୍ରଭୃତି ପ୍ରତି ଧ୍ୟାନ ଦେବା ନିମନ୍ତେ ବାଧ ହୋଇପଡ଼େ । ଏଥିପାଇଁ ତାକୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥାଏ । ମାତ୍ର ଏସବୁ ତାକୁ ନିଜର ମୂଳ ଲକ୍ଷ୍ୟରୁ, ନିଜ ଚରିତ୍ର ନିମନ୍ତେ ମନୋମତ ସଂଳାପ ଯୋଜନା କରିବାରୁ ତିଳେ ମାତ୍ର ବିଚ୍ୟୁତି କରି ପାରେନାହିଁ । ନାଟକ ଯେତେବେଳେ ମଞ୍ଚସ୍ଥ ହୁଏ, ଅଭିନେତା ଯେତେବେଳେ ଚରିତ୍ରର ଖୋଳ ମଧ୍ୟରେ ନିଜକୁ ପ୍ରକଟ କରେ, ସେତେବେଳେ ସେ ସଂଳାପର ମୂଳସ୍ରୋତ ନିକଟରେ ପହଞ୍ଚିବାକୁ ବାଧ ହୋଇଥାଏ । ପରିଣାମରେ ଚରିତ୍ର ଉପରେ ନାଟ୍ୟ-ଶବ୍ଦର ପ୍ରଭାବ, ଇନ୍ଦ୍ରିୟଗତ ଅନୁଭବ ଏବଂ ବିମ୍ବ-ପ୍ରତିବିମ୍ବ ଭାବର ପ୍ରତିଫଳନ ଘଟାଇ ସେ ତାହାକୁ ନୂତନ ରୂପରେ ଉପସ୍ଥାପିତ କରିଥାଏ । ଏ କ୍ଷେତ୍ରରେ ଦର୍ଶକର ମଧ୍ୟ ସ୍ୱତନ୍ତ୍ର ଭୂମିକା ରହିଛି । ସେ ମଞ୍ଚସ୍ଥ ଦୃଶ୍ୟକୁ ଦେଖେ ଏବଂ ସଂଳାପ ଶୁଣେ । ଏଠାରେ ତାହାର ଶ୍ରବଣେନ୍ଦ୍ରୀୟ ଦର୍ଶନେନ୍ଦିୟର ଭୂମିକା ଗ୍ରହଣ କରିଥାଏ ।

ନାଟକରେ ଶବ୍ଦାବଳୀର ଭୂମିକା ବହୁମୁଖୀ । ଏ ସମ୍ପର୍କରେ ଅଧ୍ୟାପକ ଏରିକ୍ ବେଣ୍ଟଲୀ (Eric Bentely)ଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ । ଇବ୍‌ସେନ୍ ନାଟ୍ୟ ଭାଷା ସମ୍ପର୍କରେ ସେ ଲେଖିଛନ୍ତି, "An Ibsenite sentence often performs four or five functions at once. It sheds light on the character speaking, on the character spoken to, on the character spoken about; it furthers the plot; it functions ironically in conveying to the audience a meaning different from that conveyed to the

characters." ('The Modern Theatre'-1984-P-82) ଏହି ମନ୍ତବ୍ୟକୁ ଆମେ ଯେକୌଣସି ନାଟ୍ୟକାରଙ୍କର ସଂଳାପ ସମ୍ପର୍କରେ ବ୍ୟବହାର କରିପାରିବା । ପ୍ରକୃତରେ ସଂଳାପହିଁ ହେଉଛି ଏକମାତ୍ର ମାଧ୍ୟମ, ଯାହା ସାହାଯ୍ୟରେ ଦର୍ଶକ ପ୍ରଥମେ ବକ୍ତା, ବକ୍ତା ଯାହାକୁ କହୁଛନ୍ତି କିମ୍ବା ଯାହା ସମ୍ପର୍କରେ କହୁଛନ୍ତି, ପ୍ରଭୃତି ବୁଝି ପାରନ୍ତି । ଏଥି ନିମନ୍ତେ ଶବ୍ଦଗୁମ୍ଫନ କ୍ରିୟାରେ ଯଥେଷ୍ଟ ସାବଧାନତା ଅବଲମ୍ବନ କରିବାକୁ ହୋଇଥାଏ । ଶବ୍ଦ ନିର୍ବାଚନରେ ସାମାନ୍ୟତମ ଉଦାସୀନତା ପ୍ରକାଶ ପାଇଲେ ନାଟ୍ୟକାରଙ୍କ ମୂଳ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯାଏ । ଏଥିପାଇଁ ତେଣୁ ମିତବ୍ୟୟୀ ହେବା ଆବଶ୍ୟକ । ସଂଳାପ କେବଳ ଅଭିନେତାଙ୍କୁ ବ୍ୟକ୍ତ କରିଦେଲେ, ତାହାର ଭୂମିକା ଶେଷ ହୋଇଯାଏ ନାହିଁ । ପ୍ରଥମତଃ, ନାଟ୍ୟକାରର ଅନୁପସ୍ଥିତିରେ ଅଭିନେତା ସଂଳାପ ପ୍ରୟୋଗର ଏକ ଅଲିଖିତ ନିର୍ଦ୍ଦେଶ, ସେଇ ସଂଳାପରୁ ହିଁ ପାଇଥାଏ । ତା' ପୂର୍ବରୁ ସଂଳାପ ସମ୍ପର୍କରେ କିପରି ଚିନ୍ତା କରିବାକୁ ହେବ, ତାକୁ କିଭଳି ନିଜ ପ୍ରାଣରେ ଅନୁଭବ କରିବାକୁ ହେବ, ସେ ବିଷୟରେ ଅଭିନେତା ସଂଳାପରୁ ହିଁ ଦିଗ୍‌ଦର୍ଶନ ଲାଭ କରେ ।

ନାଟ୍ୟଭାଷାର ମହତ୍ତ୍ୱ ତାହାର ଦୃଶ୍ୟତ୍ୱ ଏବଂ ଦୃଶ୍ୟ ମଧ୍ୟରେ ରହିଥିବା ଅଭିନ୍ନ ସମ୍ପର୍କରେ ନିହିତ । ବସ୍ତୁତଃ ତହିଁରେ ଯାହା ଦେଖାଯାଏ, ତାହା ଶୁଣାଯିବାର ହିଁ ରୂପାନ୍ତରିତ ପ୍ରକାଶ । ଶ୍ରବ୍ୟରେ ଦୃଶ୍ୟର ତତ୍ତ୍ୱ ମଧ୍ୟ ସମୀତ ହୋଇ ରହିଥାଏ । ନାଟକର ସଂଳାପ ନିମନ୍ତେ ଯେଉଁ ଶବ୍ଦଚୟନ କରାଯାଏ, ତହିଁରେ ଚେତନାତ୍ମକତା ସହିତ କ୍ରିୟାତ୍ମକତାର ଅନୁଭବ ରହିଥାଏ । ଏଥିରେ ଶବ୍ଦରୁ କ୍ରିୟା ଏବଂ କ୍ରିୟାରୁ ଶବ୍ଦ ସୃଷ୍ଟି ହୁଏ । ଦୃଶ୍ୟ ଏବଂ କାର୍ଯ୍ୟ, କଥ୍ୟ ତଥା କଥାବସ୍ତୁ ସମସ୍ତ କିଛି ଭାଷା ମଧ୍ୟରୁହିଁ ଉତ୍ପନ୍ନ ହୁଏ । ଏହି କାରଣରୁ ନାଟ୍ୟକାରଙ୍କୁ ଉପଯୁକ୍ତ ଭାଷା ଯୋଜନା କରିବା ନିମନ୍ତେ ପ୍ରଚୁର ସାବଧାନତା ଅବଲମ୍ବନ କରିବାକୁ ପଡ଼ିଥାଏ । ନାଟକର ଭାଷା ଗୋଟିଏ ଗୋଟିଏ ଶବ୍ଦ, ଗୋଟିଏ ଗୋଟିଏ ବାକ୍ୟାଂଶ, କିମ୍ବା କେବଳ ଗୋଟିଏ ମାତ୍ର ବାକ୍ୟର ଅର୍ଥ-ପ୍ରକାଶନ ନୁହେଁ । ଏହାକୁ ପୁଣି କେବଳ ଶବ୍ଦର ଭାଷା ମଧ୍ୟ କୁହାଯାଇ ପାରିବ ନାହିଁ, କାରଣ ଏଥିରେ ଯାହା କୁହାଯାଇଥାଏ, ତାହା ଯେତିକି ଅର୍ଥଯୁକ୍ତ, ଯାହା କୁହାଯାଇ ପାରିନାହିଁ, ତାହା ମଧ୍ୟ କମ୍ ଅର୍ଥବନ୍ତ ନୁହେଁ । ନାଟକର ଭାଷା ତେଣୁ କେବଳ ମାତ୍ର ଶବ୍ଦ ସମୂହର ଖଣ୍ଡିତ ଅର୍ଥକୁ ନେଇ ପୂର୍ଣ୍ଣତା ଲାଭ କରେନାହିଁ । ବରଂ ଏକ ସାମଗ୍ରିକତା ହିଁ ଏଥିରେ ପ୍ରାଣ ସଞ୍ଚାର କରିଥାଏ । ଯାହା କୁହାଯାଇ ପାରିନାହିଁ, ଏଭଳି ଧ୍ୱନ୍ୟାତ୍ମକ ବ୍ୟଞ୍ଜନା ମଧ୍ୟ ଏହାର ଅନ୍ତର୍ଭୁକ୍ତ ହୁଏ, ଏହା କହିବା ବାହୁଲ୍ୟ ମାତ୍ର । ଜୀବନର ଏକ ପୂର୍ଣ୍ଣରୂପ, ଜୀବନ୍ତ ପ୍ରତିବିମ୍ବ, ତାହାର ବ୍ୟଞ୍ଜନାକୁ ନେଇ ନାଟ୍ୟକାରର କାରବାର । ଏଥିରେ ପରସ୍ପର ବିରୋଧୀ ଭାଷା ତଥା ସନ୍ତାପର ବ୍ୟବହାର କରାଯାଇପାରେ । କେବଳ ମାତ୍ର ଅଭିଧା ଅର୍ଥକୁ ଦେଖି ନାଟକର ଭାଷା ବିଚାର କଲେ ଚଳିବ ନାହିଁ । ପ୍ରାୟଶଃ ପରସ୍ପର ବିରୋଧୀ ଦୁଇ ପ୍ରକାରର ସଂଳାପ, ଏକ ତୃତୀୟ ବ୍ୟଙ୍ଗାର୍ଥକୁ ସୃଷ୍ଟି କରିପାରେ । ଅଭିନୟ

ଦ୍ୱାରା ଏହି ଅର୍ଥଟି ଆତ୍ମପ୍ରକାଶ କରେ । ବସ୍ତୁତଃ ନାଟକର ଭାଷା, ଜୀବନରହିଁ ଭାଷା । ଏଥି ସହିତ ଜଡ଼ିତ ରହିଥାଏ, ମାନବ ମନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତି, ଆଚାର ବ୍ୟବହାର, କାର୍ଯ୍ୟକଳାପ ତଥା ପରିବେଶ । ତେଣୁ ଏହାର ଅନ୍ତଃସ୍ୱରରେ କେବଳ ମାତ୍ର ପୁସ୍ତକଗତ ସାହିତ୍ୟିକ ଭାଷା ବ୍ୟତୀତ ଅନ୍ୟ ଏକ ପ୍ରଭାବ ନିହିତ, ଯାହା କେବଳ ମାତ୍ର ଅଭିନେତାର ପୁରୋଦୃଷ୍ଟି ବଳରେ ଜୀବନ୍ତ ହୋଇଉଠେ । ଜଣେ ସଫଳ ଅଭିନେତା ନାଟକର ସାଧାରଣ ଭାଷାକୁ ଅଧିକ ଅର୍ଥବନ୍ତ କରି ଉପସ୍ଥାପିତ କରିପାରନ୍ତି । ସାଧାରଣ ଦୃଷ୍ଟିରୁ ଭାଷାରେ ଯେତିକି ଓଜନ ଥାଏ, ପ୍ରୟୋଗ ଚାତୁର୍ଯ୍ୟ ଦ୍ୱାରା ତାକୁ ଅଧିକ ଗୁରୁତ୍ୱପୂର୍ଣ୍ଣ କରିଦେଇ ପାରନ୍ତି ।

ନାଟକର ଭାଷା ସ୍ୱତନ୍ତ୍ର ନୁହେଁ, ଏହାର ସଫଳତା କେତୋଟି ବସ୍ତୁ ଉପରେ ନିର୍ଭରଶୀଳ । ଏ ସମସ୍ତ ତତ୍ତ୍ୱର ପୁଣି ସ୍ୱତନ୍ତ୍ର ରୂପ ରହିଛି । ରଙ୍ଗମଞ୍ଚ, ଚରିତ୍ର, ନାଟକୀୟ ପରିବେଶ ଏ ପ୍ରତ୍ୟେକର ଭାଷା ନିର୍ମାଣରେ କିଛିନା କିଛି ଭୂମିକା ରହିଥିଲେ ମଧ କେବଳ ମାତ୍ର ଏମାନଙ୍କର ସମନ୍ୱୟରେ ସଫଳ ନାଟ୍ୟଭାଷା ପ୍ରସ୍ତୁତ ହୋଇଯାଏ ନାହିଁ । ଏ ସମସ୍ତ ତତ୍ତ୍ୱ ଅନ୍ୟୋନ୍ୟ ନିର୍ଭରଶୀଳ ଏବଂ ଭାଷା ପୁଣି ଏମାନଙ୍କ ଉପରେ ଆଧାରିତ, କୌଣସି ବସ୍ତୁ ନୁହେଁ, ରଚନା ମାତ୍ର । ନାଟ୍ୟଭାଷା ହେଉଛି ସମଗ୍ର ନାଟକର ଦର୍ପଣ ତୁଲ୍ୟ । ଏଥିରେ ନାଟ୍ୟକାରଙ୍କର ସର୍ଜନାତ୍ମକ ବୃତ୍ତି, ତାଙ୍କର ଦୃଷ୍ଟି ଏବଂ ଦର୍ଶନ, ରୁଚି ଏବଂ ରଚନା କୌଶଳର ପ୍ରତିଫଳନ ଘଟିଥାଏ ।

ନାଟକର ଭାଷା ସ୍ୱୟଂସମ୍ପୂର୍ଣ୍ଣ ଏକ ଜୀବନକୁ ନିଜର ଗର୍ଭୀଭୂତ କରିପାରିବା ଭଳି ଶକ୍ତି ରଖେ । ଏହା କେବଳ ଆଧାର ବସ୍ତୁର ଅବଲମ୍ବନ ମାତ୍ର ନ ହୋଇ ସ୍ୱୟଂ ଆଧାର ମଧ ହୋଇପାରେ । ଏଭଳି କ୍ଷେତ୍ରରେ ସେ କେବଳ କଥାବସ୍ତୁ, ଚରିତ୍ର, ପରିବେଶ ଘଟଣା ଉପରେ ନିର୍ଭର ନକରି, ତହିଁରେ ନିଜକୁ ମିଶାଇଦେବା ନିମନ୍ତେ ସକ୍ରିୟ ହୋଇଉଠେ । ଏହା କଳାର ଏକ ସ୍ୱତନ୍ତ୍ର ରୂପ ହୋଇଥିବାରୁ ହିଁ ଏଥିରେ ନିଜସ୍ୱ ବୈଶିଷ୍ଟ୍ୟ କିଛି ସ୍ଥାନ ପାଇବା ଆବଶ୍ୟକ । ଶ୍ରାବ୍ୟ ଏବଂ ଦୃଶ୍ୟ, ସାହିତ୍ୟିକ ତଥା ମଞ୍ଚୀୟ - ଏ ଉଭୟ ମାଧ୍ୟମ ସହିତ ସମ୍ପୃକ୍ତ ହୋଇଥିବାରୁ ନାଟ୍ୟଭାଷା ଶାବ୍ଦିକ ରୂପରେ ବାଚିକ ଅଭିନୟ ନିମନ୍ତେ ସମସ୍ତ ପ୍ରକାର ଉପାଦାନ ସଂଗ୍ରହ କରେ । ଏହା ସହିତ ପୁଣି ସେ ନିଜକୁ ଭାବପ୍ରଧାନ, ଶବ୍ଦାର୍ଥମୟ ସାହିତ୍ୟିକ ରଚନା ରୂପରେ ମଧ ଉପସ୍ଥିତ କରିଥାଏ । ଅଲିଖିତପୂର୍ବ ଶ୍ରୁତିମାନ୍ୟତା ମଧରେ ହିଁ ନାଟ୍ୟଭାଷାର ଶ୍ରବ୍ୟତତ୍ତ୍ୱର ସାର୍ଥକତା ନିହିତ । ଦୈନନ୍ଦିନ ଜୀବନର ଭାଷାରେ ନୂତନପ୍ରାଣ ସ୍ପନ୍ଦନ ସୃଷ୍ଟିକରି, ତାହାକୁ ଉଚ୍ଛଳ, ରସଗର୍ଭକ ଏବଂ ଜୀବନ୍ତ ରୂପରେ ଦର୍ଶକମାନଙ୍କ ନିକଟରେ ଉପସ୍ଥିତ କରିବା ହେଉଛି ଏ କ୍ଷେତ୍ରରେ ନାଟ୍ୟକାରଙ୍କର ଏକମାତ୍ର ଦାୟିତ୍ୱ । ଏହାକୁ ପାଳନ କରିବାକୁ ହେଲେ ନାଟ୍ୟକାରଙ୍କୁ ବାସ୍ତବ ଜୀବନର ସ୍ୱଚ୍ଛନ୍ଦ, ସରଳ ଏବଂ ସ୍ୱତଃସ୍ଫୁର୍ତ୍ତ ଭାଷା ସମ୍ପଦକୁ ଗଭୀର ଭାବରେ ଅନୁଧାନ କରିବାକୁ ପଡ଼ିବ । ଦୈନନ୍ଦିକ ବ୍ୟବହାରରେ ସାମାନ୍ୟ ଗୋଟିଏ ଲୋକୋକ୍ତି, କିମ୍ବା ଢଗଢମାଳି, ପ୍ରୟୋଗରେ ଯେଉଁ ସ୍ଫୁର୍ତ୍ତି

ପ୍ରକାଶ କରେ, ପୋଥିଏ ସାହିତ୍ୟିକ ଭାଷା ସାହାଯ୍ୟରେ ମଧ୍ୟ ତାହା ସୃଷ୍ଟି କରାଯାଇ ପାରିବ ନାହିଁ । ନାଟ୍ୟକାର ପ୍ରୟୋଜନବୋଧରେ ଏହି ପଦ୍ଧତିଟିକୁ କାର୍ଯ୍ୟରେ ଲଗାଇବା ଉଚିତ । ଆହୁରି ଗୋଟିଏ କଥା । ନାଟ୍ୟକାର ଯେତେବେଳେ ବାସ୍ତବ ଜୀବନର ବାକ୍ ରୀତିକୁ ଗ୍ରହଣ କରିନିଅନ୍ତି, ସେତେବେଳେ ତହିଁରେ ସଚେତନ ଏବଂ ଅଚେତନ ଭାବେ ଅନେକ ଆଙ୍ଗିକ-କ୍ରିୟା ତଥା ଭାବାତ୍ମକ ତତ୍ତ୍ୱ କ୍ରିୟାଶୀଳ ହୋଇପଡ଼େ । ଏମାନଙ୍କ ସହିତ ହୁଏତ ଆହୁରି ଅନେକ କାର୍ଯ୍ୟ ସମ୍ପୃକ୍ତ ହୋଇଯାଏ, କିମ୍ବା ଏମାନେ ନିଜେ କାର୍ଯ୍ୟ ସୃଷ୍ଟି କରି ଚାଲନ୍ତି । ସେତେବେଳେ ଭାଷା ନିଜେ ଏକ କ୍ରିୟା ହୋଇପଡ଼େ ଗୋଟିଏ ସଫଳ ନାଟକରେ ଶବ୍ଦ ଏବଂ କ୍ରିୟାର ଯୋଗାଯୋଗ ଏକ ଅନିବାର୍ଯ୍ୟ ବ୍ୟାପାର । ନାଟ୍ୟକାର ଭିନ୍ନ ଭିନ୍ନ ପରିସ୍ଥିତିରେ ଚରିତ୍ରମାନଙ୍କୁ ବାକ୍‌ଭଙ୍ଗୀ ଦ୍ୱାରା ମୁହାଁମୁହିଁ କରାଇ ସଂଳାପ ଦ୍ୱାରା ସେମାନଙ୍କର ସାର୍ଥକତା ପ୍ରତିପାଦନ କରାଇ ପାରିବାରେ ହିଁ ନିଜର ଦୂରଦୃଷ୍ଟିର ପ୍ରମାଣ ଦେଇଥାନ୍ତି । ରଙ୍ଗମଞ୍ଚରେ ଭାଷାର କ୍ରିୟାଶୀଳ ରୂପ ନାଟ୍ୟ ଭାଷାର ଲକ୍ଷ୍ୟ ପୂରଣ କରିପାରେ । ଏହାକୁ ହିଁ ନାଟ୍ୟକାର ପିରାଣ୍ଡେଲେ "କଥିତ-କାର୍ଯ୍ୟ" (Spoken action) ବୋଲି କହିଛନ୍ତି ।

ନାଟ୍ୟଭାଷାର ଏକ ଆବଶ୍ୟକ ଯୋଗ୍ୟତା ହେଉଛି, ଏହାର ମଞ୍ଚନିର୍ଭରତା । ନାଟ୍ୟକାର ନାଟକ ଲେଖନ୍ତି ମଞ୍ଚପାଇଁ । ମଞ୍ଚ ହେଉଛି ନାଟକର ଗୁଣାଗୁଣ ପରୀକ୍ଷାର ଉପଯୁକ୍ତ କ୍ଷେତ୍ର । ଶବ୍ଦମୟତା ମାଧ୍ୟମରେ ନାଟକର ପୂର୍ଣ୍ଣରୂପ ବାହାରେ ପ୍ରକଟିତ ହୁଏ ନାହିଁ; ବରଂ ଦୃଶ୍ୟମାନତା ହିଁ ଏହାର ସବୁଠାରୁ ଅଧିକ ଆକର୍ଷଣୀୟ ଦିଗ ।

ପୂର୍ବରୁ ଆମେ ସଂଳାପ ସହିତ ଅଭିନେତାର ସମ୍ପର୍କ ବିଷୟରେ ଆଲୋଚନା କରିଛୁ । ଅଭିନେତା ପ୍ରଥମେ ଯେତେବେଳେ ନାଟ୍ୟ ସଂଳାପ ସହିତ ଯୋଗାଯୋଗ ସ୍ଥାପନ କରେ, ସେତେବେଳେ ସାଧାରଣ କଥାବାର୍ତ୍ତା ଏବଂ ସଂଳାପ ମଧ୍ୟରେ ଥିବା ପାର୍ଥକ୍ୟଟିକୁ ସେ ଅନ୍ୱେଷଣ କରିବାକୁ ଆରମ୍ଭ କରେ । ତା'ର ଅର୍ଥ ଏହି ସମୟରେ ହିଁ ସେ ନାଟ୍ୟ-ପ୍ରାସାଦର-ଗଢ଼ଣ ବିଷୟରେ ସଚେତନ ହୋଇଉଠେ । ଚରିତ୍ର ସମ୍ପର୍କରେ ତା'ର ଏକ ନିର୍ଦ୍ଦିଷ୍ଟ ଧାରଣା ହୋଇଗଲେ, ତା'ର ଅନ୍ୱେଷଣ ଶେଷହୁଏ । ସଂଳାପୀୟ ସ୍ତରର ଅଧୋଭାଗରେ ରହିଥିବା ଯେଉଁ ଉପାଦାନର ଅନ୍ୱେଷଣ ଅଭିନେତା କରିଥାଏ, ସେଗୁଡ଼ିକ ଦର୍ଶକମାନଙ୍କ ନିମନ୍ତେ କମ୍ ସହାୟକ ହୋଇ ନଥାଏ । ଅଭିନେତା ଏବଂ ପ୍ରଯୋଜକ ଷ୍ଟାନିସ୍ଲାଭସ୍କି (Stanislavsky) ଏହାକୁ ନାଟକର 'ନିହିତାର୍ଥ' (Sub-text) ବୋଲି କହିଛନ୍ତି । ତାଙ୍କ ମତରେ, "The Subtext is a web of innumerable varried inner patterns inside a play and a part, woven from magic ifs', given circumstances, all sorts of figments of the fmagination, inner movements, objects of attention, smaller and greater truths and a belief in them, adaptations, adjustments and other similar elements. It is the sub-text that makes us say the words we do

in a play." (C. Stanislavsky-Building a Character-Trans-E.R. Hapgood (1950) (P-113)

ଶବ୍ଦ ସାହାଯ୍ୟରେ ନାଟକର ପ୍ରକୃତ ଅର୍ଥ ପରିସ୍ଫୁଟ ହେବା ଆବଶ୍ୟକ । ଏହାକୁ ସତ୍ୟ ବୋଲି ଗ୍ରହଣ କରିନେଲେ, ଆମେ ତହିଁରେ ନାଟ୍ୟକାରଙ୍କର ଅଭୀପ୍ସାର ସ୍ପଷ୍ଟରୂପ ଦେଖିବାକୁ ପାଇବା କାରଣ କେବଳ ଉଚ୍ଚାରିତ ହେବା ନିମନ୍ତେ ଶବ୍ଦାବଳୀର ଏକ ସଂଗୃହୀତ ରୂପ ଭାବରେ ପ୍ରକଟିତ ହେବା ପୂର୍ବରୁ ନାଟ୍ୟ ସଂଳାପର ଅନ୍ୟ କିଛି ଭୂମିକା ମଧ୍ୟ ରହିଥାଏ । ଅଭିନେତା ଏଇଥିରୁ ହିଁ ନିଜ ପାଇଁ ନିର୍ଦ୍ଦେଶ ପାଏ, ଏହା ପୂର୍ବରୁ କୁହାଯାଇଛି । ସଂଳାପ ନିମନ୍ତେ ବୁଦ୍ଧିଗ୍ରାହ୍ୟ କେତେକ ସର୍ବମାନ୍ୟ ନିୟମ ରହିଛି । ଅଭିନେତା ବ୍ୟତୀତ ନାଟକ ସମ୍ପର୍କୀୟ ଟିକିନିଖି ବ୍ୟବସ୍ଥା ନିମନ୍ତେ ପ୍ରଯୋଜକ ମଧ୍ୟ ସଂଳାପ ମାଧ୍ୟମରେ ହିଁ ନାଟ୍ୟକାରଙ୍କର ନିର୍ଦ୍ଦେଶ ପାଇଥାଆନ୍ତି । ମଞ୍ଚ ବ୍ୟବସ୍ଥା, ସ୍ୱର ଗ୍ରାମର ଉଦାତ୍ତ, ଅନୁଦାତ୍ତ ସ୍ୱରିତ ପ୍ରୟୋଗ-ଗତ ଚମତ୍କାରିତା, ଆରୋହ ଅବରୋହ, ଦୃଶ୍ୟାବଳୀର ଆୟୋଜନ, ତାହାର ଅନ୍ତଃସ୍ୱର ଏବଂ ଗତିବେଗର ତୀବ୍ରତା, ମଞ୍ଚ ଏବଂ ଦର୍ଶକ ମଧ୍ୟରେ ଗଢ଼ି ଉଠୁଥିବା ଆବେଗଗତ ସମ୍ପର୍କ ଇତ୍ୟାଦି ବହୁ ବିଷୟକୁ ଗୋଟିଏ ସୂତ୍ରରେ ଗ୍ରଥନ କରି ପ୍ରଯୋଜକ ନାଟକ ପାଇଁ ଯେଉଁ ସାମୂହିକ ଆବେଦନ ସୃଷ୍ଟି କରନ୍ତି, ତା'ର ନିର୍ଦ୍ଦେଶ ତାଙ୍କୁ ମୂଳତଃ ମିଳିଥାଏ, ସଂଳାପରୁ । ଏହି ସାମଗ୍ରିକତା ସମ୍ପର୍କରେ ଷ୍ଟାନିସ୍ଲାଭସ୍କି ପୁନର୍ବାର କହିଛନ୍ତି, "The whole text of the play will be accompanied by a sub-textual stream of images, like a moving picture constantly thrown on the screen of our inner vision, to guide us as we speak and act on the stage"- ନାଟକର ଭାଷା ହେଉଛି ଏକ ଶିଳ୍ପର ଭାଷା । ପରିସ୍ଥିତି ଯାହା ହେଉନା କାହିଁକି, ଦର୍ଶକ ଏଥିରେ ସାଧାରଣ ଜୀବନ ବ୍ୟତିରକ୍ତ ଏକ ସ୍ୱତନ୍ତ୍ର ସ୍ୱର-ମାଧୁର୍ଯ୍ୟ ଅନୁଭବ କରିବାକୁ ସର୍ବଦା ଚାହାନ୍ତି । ନାଟକକୁ ପାଠକରି ହେଉ, କିମ୍ବା ଶ୍ରବଣ କରିହେଉ, ଶ୍ରୋତା ଏହି ମଧୁର ରାଗିଣୀର ସମ୍ପର୍କରେ ଆସିବାକୁ ବ୍ୟାକୁଳ । ନାଟ୍ୟକାର ଠାରୁ, ଏତିକି ହିଁ ତା'ର ପ୍ରତ୍ୟାଶା ।

ବର୍ତ୍ତମାନ ଆମେ ମଞ୍ଚପ୍ରସଙ୍ଗକୁ ଫେରି ଆସିବା । ନାଟକ ଯେ ହେତୁ ମଞ୍ଚପାଇଁ, ତେଣୁ ଯେ ନାଟକ ଲେଖିବେ, ତାଙ୍କର ମଞ୍ଚ ସମ୍ପର୍କୀୟ ଅଭିଜ୍ଞତା ଏ ଦିଗରେ ପ୍ରଧାନ ସହାୟକ ହେବ । ଚରିତ୍ରମାନଙ୍କ ପାଇଁ ପାତ୍ରୋପଯୋଗି ଭାଷାର ବ୍ୟବହାର ହେବ, ତାଙ୍କ କୃତିତ୍ୱ ଅନ୍ୟ ଏକ ଦିଗ । ପାତ୍ରୋପଯୋଗୀ ଭାଷା ହେଉଛି ଜୀବନ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଚରିତ୍ର ବ୍ୟବହାର କରୁଥିବା ଭାଷାର ନିକଟବର୍ତ୍ତୀ ରୂପ । ଏହା ବ୍ୟତୀତ ଚରିତ୍ରର କ୍ରିୟାକଳାପ, ମତିଗତି, ହାବଭାବ ଇତ୍ୟାଦିର ଦର୍ଶନୀୟ, ଶ୍ରବଣୀୟ ଏବଂ ଅନୁଭବଗମ୍ୟ ରୂପ ଫୁଟାଇବାରେ ସୁଦ୍ଧା ନାଟ୍ୟଭାଷାର ଦାୟିତ୍ୱ କିଛି କମ୍ ନୁହେଁ । ଏ ସମସ୍ତର ସମନ୍ୱୟରେ ଜୀବନର ଯେଉଁ ବର୍ଣ୍ଣାଢ୍ୟ ରୂପ ମଞ୍ଚରେ ଫୁଟିଉଠେ, ତାହା ବାସ୍ତବର ପ୍ରାୟ ନିକଟବର୍ତ୍ତୀ ହୋଇଉଠେ । ମଞ୍ଚରେ

ନାଟକର ସଫଳ ଉପସ୍ଥାପନରେ ସଂଳାପ ଯେଉଁ ଭୂମିକା ଗ୍ରହଣ କରେ ତାହା କଳାର ଅନ୍ୟାନ୍ୟ କ୍ଷେତ୍ରରେ ବ୍ୟବହୃତ ହେଉଥିବା ଭାଷାଠାରୁ ଅଧିକ ଶକ୍ତିଶାଳୀ । ଏହି କାରଣରୁ ହିଁ ସଂଳାପକୁ ନାଟକୀୟତାର ପ୍ରଧାନ ଚିହ୍ନ ବୋଲି କୁହାଯାଇଥାଏ ।

ନାଟକ ଶବ୍ଦାର୍ଥଯୁକ୍ତ ସାଂଳାପିକ ରଚନା ଏବଂ ଏହା କେବଳ ଶବ୍ଦବଳୀର ସମଷ୍ଟି ମାତ୍ର ନୁହେଁ । ଦୃଶ୍ୟମାନତା ଏବଂ କ୍ରିୟାଶୀଳତା ହେଉଛି ଏହାର ଅନ୍ୟ ଦୁଇ ପ୍ରଧାନ ବିଭାବ । ଜୀବନ କ୍ଷେତ୍ରରେ ହେଉ କିମ୍ବା ରଙ୍ଗମଞ୍ଚରେ ହେଉ – ଦୃଶ୍ୟ ସହିତ ସହାବସ୍ଥା ହେଉଛି ଭାଷାର ମୂଳ ଅଭିପ୍ରାୟ । ଭାଷାର ଉତ୍ପତ୍ତି ମୁଖ୍ୟତଃ ଦୃଶ୍ୟ ଆଧାରିତ । ଶ୍ରବ୍ୟ ମାଧ୍ୟମରେ ସାମାଜିକ ସମ୍ବନ୍ଧ ପ୍ରତିଷ୍ଠା କରିଥାଏ । ନାଟ୍ୟ-ଭାଷା ସାମାଜିକ ସମ୍ପର୍କ ରକ୍ଷା କରିବା ନିମନ୍ତେ ଅଭିପ୍ରେତ ହେବା ସଙ୍ଗେ ସଙ୍ଗେ ଦୃଶ୍ୟତ୍ୱ ଗୁଣଟିକୁ ମଧ୍ୟ ହାସଲ କରିଥାଏ । କେବଳ ମାତ୍ର ଶବ୍ଦ ନାଟକର ଆବେଦନ ଦର୍ଶକମାନଙ୍କ ନିକଟରେ ପହଞ୍ଚାଇ ଦେବା ନିମନ୍ତେ ପର୍ଯ୍ୟାପ୍ତ ନୁହେଁ । ଏହି କାରଣରୁ ହିଁ ଦୃଶ୍ୟତ୍ୱର ସହାୟତା ଗ୍ରହଣ, ତା'ପାଇଁ ଏକାନ୍ତ ଆବଶ୍ୟକ ହୋଇପଡ଼େ । ଦୃଶ୍ୟମାନତ୍ୱ ହେଉଛି ରଙ୍ଗମଞ୍ଚର ପ୍ରଧାନ ବୈଶିଷ୍ଟ୍ୟ, ଏଥିରେ ଯେଉଁ କିଛି କିଛି ଶୂନ୍ୟତା ରହିଯାଏ ତାହାକୁ ପୂର୍ଣ୍ଣ କରି, କଳା କ୍ଷେତ୍ରରେ ଏକ ସାମଗ୍ରିକତା ସୃଷ୍ଟି କରିବା ନିମନ୍ତେ ସେଇଭଳି ଶକ୍ତିଶାଳୀ ଭାଷା ଏଥିରେ ବ୍ୟବହୃତ ହେବା ଅପରିହାର୍ଯ୍ୟ । ଏହି ଭାଷା ଆବେଗ ସୃଷ୍ଟିକ୍ଷମ ହୋଇଥିବା ଆବଶ୍ୟକ । ଏହା କେବଳ ସେତେବେଳେ ସମ୍ଭବପର ହୋଇପାରିବ, ଯେତେବେଳେ ତାହା ଦୃଶ୍ୟଧର୍ମୀ ହୋଇ ମଞ୍ଚର ସମସ୍ତ ଶୂନ୍ୟତା ଦୂରକରି ଦେଇପାରିବ, ଯାହାକୁ ଦେଖାଇ ହେବ, ଭୌତିକ ରୂପରେ ଅନୁଭବ ମଧ୍ୟ କରିହେବ ।

ଗୋଟିଏ ନାଟକକୁ ପଢ଼ିବା ଏବଂ ମଞ୍ଚରେ ତାହାର ଅଭିନୟ ଦେଖିବା ଏ ଦୁଇଟି ସ୍ୱତନ୍ତ୍ର ଅନୁଭୂତି । ଏହାର ଭିନ୍ନ ପ୍ରତୀତି ନିମନ୍ତେ ଅକଥିତ ଏବଂ ଅଲିଖିତ ଅନେକ ସମ୍ଭାବନା ରହିଥାଏ, ଏଗୁଡ଼ିକ ପୁଣି କେବଳ ଭାଷାଦ୍ୱାରା ନୁହେଁ, କ୍ରିୟା, ଗତି, ହାବ ଭାବ ଆଦି ଭାଷେତର ମାଧ୍ୟମରେ ବ୍ୟକ୍ତ ହୋଇଥାଏ । ଅଭିନେତା ମଞ୍ଚରେ ସ୍ଥୂଳ ଶାରୀରିକ ମାଧ୍ୟମରେ ସହଯୋଗ ଗ୍ରହଣ କରିନ୍ତି ଏବଂ ସେଇଗୁଡ଼ିକ ପୁଣି ନାଟ୍ୟଭାଷାର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହୋଇଯାଏ ।

ମଞ୍ଚ ନାଟକ ପାଇଁ ଏଭଳି ଭାଷାର ପ୍ରୟୋଜନ, ଯାହା ଚାରିତ୍ରିକ ହାବଭାବ ବିଳାସ ସହିତ ସମ୍ପୃକ୍ତ ହୋଇଥିବ । ଅଭିବ୍ୟକ୍ତିର ଭାଷେତର ମାଧ୍ୟମ ବାଲ୍ୟକାଳରୁ ହିଁ ମନୁଷ୍ୟର ଅଚେତନ ଏବଂ ଚେତନ ସତ୍ତା ସହିତ ଏଭଳି ଭାବରେ ସମ୍ପୃକ୍ତ ଯେ, ସମସ୍ତ ସ୍ପର୍ଶ, ଗନ୍ଧ, ଦୃଶ୍ୟ, ଧ୍ୱନି ଏବଂ ସ୍ୱାଦର ଇନ୍ଦ୍ରିୟଗ୍ରାହ୍ୟ ଅନୁଭବ ସେଇଥିରେ ହିଁ ରୂପାୟିତ ହୁଏ । ଯେଉଁଥିରେ ଭାଷା, କ୍ରିୟା, ଦୃଶ୍ୟ ତଥା ଭାବାଦର୍ଶ ପ୍ରଭୃତି ଗୋଟିଏ ମାତ୍ର ଗତିଶୀଳ ପୂର୍ଣ୍ଣାଙ୍ଗ ଚିତ୍ର ପ୍ରସ୍ତୁତ କରେ, ସେହି କ୍ଷେତ୍ରରେ ନାଟକର ସଫଳତା ଅବଶ୍ୟମ୍ଭାବୀ ହୋଇଉଠେ । ନାଟ୍ୟଭାଷାକୁ ମଞ୍ଚରେ ଜୀବନ୍ତ କରିବାକୁ ହେଲେ, ଆଙ୍ଗିକ ତଥା ବାଚିକ ଅଭିନୟର ଗୁରୁତ୍ୱ

ଦେଖାଇବାକୁ ହେବ । ନେତ୍ର ବକ୍ତ୍ରର ବିକାର, ଭ୍ରୂବିକ୍ଷେପାଦି ବିଳାସ, ତଥା ବାଚକ ଭଙ୍ଗୀର-ସ୍ୱର, ଲୟ, ଆରୋହ, ଅବରୋହ ଇତ୍ୟାଦି ସମ୍ପର୍କରେ ସତର୍କ ସାବଧାନତାର ପ୍ରୟୋଜନ । ରଙ୍ଗମଞ୍ଚ ଗୋଟିଏ ଦିଗରେ ଅଭିନେତାର ଶରୀରର ଉପଯୋଗ କରେ, ଅନ୍ୟ ଦିଗରେ ବାଣୀର । ଏ ଉଭୟ ମାଧ୍ୟମର ମୂଳ ସ୍ରୋତ ହେଉଛି ନାଟ୍ୟଭାଷା । ନାଟ୍ୟକାର ଅଭିନେତାକୁ କେବଳ ଶବ୍ଦର ବାହକ ମାତ୍ର ନ କରି, ନିଜର ଭାଷା ଓ ସମ୍ବାଦ ଯୋଜନା ଦ୍ୱାରା ଭାଷେତର ମାଧ୍ୟମକୁ ମଧ୍ୟ ଅନ୍ତର୍ନିହିତ କରିଥାଏ । ଏହିଭଳି ନାଟକରେ ଭାଷେତର ମାଧ୍ୟମର ଆଧାର ନାଟ୍ୟ ଭାଷାରେ ହିଁ ପ୍ରଚ୍ଛନ୍ନ ରୂପରେ ବିଦ୍ୟମାନ ଥାଏ । ଏହି ତଥ୍ୟ ଅଭିନୟର "କାୟଚେଷ୍ଟା ଅପିହି ମାନସିଭିଃ ସୂକ୍ଷ୍ମାଭିଶ୍ଚ ବାଚିକୀ-ଭିଶ୍ଚେଷ୍ଟାଭିର୍ବ୍ୟାପ୍ୟନ୍ତ୍ୟ ଏବ ପ୍ରଭୃତିରେ ପ୍ରକଟିତ । 'ବାକ୍ୟପଦୀୟ'ରେ ସୁଦ୍ଧା ଏହା ହିଁ କଥିତ ହୋଇଛି । ଏଭଳି କୌଣସି ଅନୁଭୂତି ନାହିଁ, ଶବ୍ଦ ଯାହାର ଅନୁଗମନ କରେ ନାହିଁ, ସମସ୍ତ ଜ୍ଞାନ ଶବ୍ଦ ଗର୍ଭିତ ହୋଇ ରହିଥାଏ । "ଅନୁବିଦ୍ଧମିବ ଜ୍ଞାନଂ ସର୍ବଶବ୍ଦେନ ଭାସତେ" (ସୁରେନ୍ଦ୍ର ନାଥ ଦୀକ୍ଷିତ : ଭାରତ ଔର ଭାରତୀୟ ନାଟ୍ୟକଳା ପୃ-୪୩୦) ପ୍ରଭୃତିରେ ଏହା ହିଁ କଥିତ ହୋଇଛି । ଏଠାରେ ଅନୁଭୂତି ଏବଂ ଜ୍ଞାନ ମଧ୍ୟରେ ଏଭଳି ସବୁ ପ୍ରତ୍ୟୟ ଅନ୍ତର୍ଭୁକ୍ତ, ଯାହାକୁ ଭାଷେତର ମାଧ୍ୟମ ବୋଲି ଗ୍ରହଣ କରି ନିଆଯାଇପାରେ । ଭାଷା ମାଧ୍ୟମର ଭାଷେତର ମାଧ୍ୟମରେ ଅନ୍ତର୍ଭୁକ୍ତି ବାଚିକ ଏବଂ ଆଙ୍ଗିକ ଅଭିନୟର ଅନ୍ୟୋନ୍ୟ ନିର୍ଭରତା ପ୍ରକଟ କରିବା ସଙ୍ଗେ ସଙ୍ଗେ ବାଚିକ ଅଭିନୟରେ ହିଁ ଆଙ୍ଗିକ ଅଭିନୟର ସମ୍ଭାବନାକୁ ସ୍ପଷ୍ଟକରି ଦେଇଥାଏ । ଉଭୟର ଅନ୍ୟୋନ୍ୟ ସମ୍ବନ୍ଧ ସୂଚାଇ ହୁଏତ ଏଇଥିପାଇଁ 'ନାଟ୍ୟ ଦର୍ପଣ'କାର କହିଛନ୍ତି ଯେ, କାୟିକ ବ୍ୟାପାର, ମାନସିକ ଏବଂ ବାଚିକ ବ୍ୟାପାର ସହିତ ଯୁକ୍ତ ହୋଇଥାଏ । କାରଣ ଶବ୍ଦ ଦ୍ୱାରା ନିର୍ଦ୍ଦିଷ୍ଟ ମାନସିକ ଜ୍ଞାନ ବ୍ୟତିରେକେ କୌଣସି ରମଣୀୟ କାୟିକ ବ୍ୟାପାର ସମ୍ଭବ ହୁଏନାହିଁ । କାୟିକୋ ହି ବ୍ୟାପୃତିର୍ୟୋ ମାନସୈ ବାଚିକୈଶ୍ଚ ବ୍ୟାପାରୈଃ ସମ୍ଭିଦ୍ୟନ୍ତେ । ଶବ୍ଦୋଲ୍ଲିଖିତଂ ମନଃ ପ୍ରତ୍ୟୟଂ ବିନା ରଞ୍ଜକସ୍ୟ କାବ୍ୟ ବ୍ୟାପାର ପରିସ୍ପନ୍ଦସ୍ୟାଭାବାତ୍-" (ନାଟ୍ୟଦର୍ପଣ : ବିବେକ, ୩/ ୧୦୪।୧୫୬) ପ୍ରଭୃତି ଶ୍ଳୋକରେ ଏହି ସମ୍ପର୍କରେ ସୂଚନା ଦିଆଯାଇଛି । ଭରତ ପୁଣି ଯେତେବେଳେ "ବାଚିଯତ୍ନସ୍ତୁ କର୍ତ୍ତବ୍ୟୋ ନାଟ୍ୟସ୍ୟେଷା ତନୁ ସ୍ମୃତା ।" ଏବଂ "ତସ୍ମାଦ୍ ବାଚଃ ପରନାସ୍ତି ବାଗ୍ ହି ସର୍ବସ୍ୟ କାରଣମ (ନାଟ୍ୟଶାସ୍ତ୍ର : ୧୫/୧-୩) ପ୍ରଭୃତି ମନ୍ତବ୍ୟ ଦେଲେ, ସେଥିରୁ ଏହା ହିଁ ସ୍ପଷ୍ଟ ଭାବରେ ଜଣାଯାଉଛି ଯେ ନାଟ୍ୟଭାଷା ସମସ୍ତ ମଞ୍ଚୀୟ କାରୁକଳାକୁ ନିଜ ମଧ୍ୟରେ ଆତ୍ମସାତ୍ କରି ନେଇଥାଏ ଏବଂ ଅନ୍ୟ ସମସ୍ତ କ୍ରିୟା ଏଇଥିରୁ ହିଁ ଉଦ୍ଭୂତ ହୋଇଥାଏ ।

ଅଭିବ୍ୟକ୍ତି ନିମନ୍ତେ ଭାଷା ହିଁ ହେଉଛି ଏକ ପ୍ରଧାନ ମାଧ୍ୟମ । ନାଟକରେ ଏହି ଭାଷାର ଭୂମିକା ଅନନ୍ୟ ହୋଇଥିବାରୁ ହିଁ କୁହାଯାଇ ପାରେ, ନାଟକ ଦୃଶ୍ୟ ମାଧ୍ୟମ ହୋଇଥିଲେ ମଧ୍ୟ ଏହା ମୂଳତଃ ଏକ ଶ୍ରବ୍ୟମାଧ୍ୟମ । କାରଣ ଏହାର ସଫଳତା ଅନେକ

ପରିମାଣରେ ଶବ୍ଦ ନିର୍ଭର । ନାଟ୍ୟକାର ମୋହନ ରାକେଶ୍ ଏ ସମ୍ପର୍କରେ କହିଛନ୍ତି, ରଙ୍ଗମଞ୍ଚର ଶବ୍ଦ ନିର୍ଭରତାର ଅର୍ଥ ଶବ୍ଦର ଆଧାରଭୂତ ଭୂମିକା –" (ସାହିତ୍ୟିକ ଔର ସାଂସ୍କୃତିକ ଦୃଷ୍ଟି : ପୃ.୯୨) ଏହି ଶବ୍ଦ ନିର୍ଭରତା ଶବ୍ଦର ଆଳଙ୍କାରିକତା, ନାଟ୍ୟ ପ୍ରୟୋଜନ ସହିତ ଶବ୍ଦାବଳୀ କିମ୍ବା ଅତିରିକ୍ତ ସାହିତ୍ୟିକତା ଉପରେ କଦାପି ନିର୍ଭରଶୀଳ ନୁହେଁ । ଅବଶ୍ୟ ପାଠ୍ୟ ନାଟକ କ୍ଷେତ୍ରରେ ଏ ସବୁର ଉପସ୍ଥିତିକୁ ଅସ୍ୱୀକାର କରାଯାଇ ପାରିବନାହିଁ । ଅତିରିକ୍ତ ଶବ୍ଦାଡ଼ମ୍ବର, ଶବ୍ଦ ପ୍ରତି ଅହେତୁକ ମମତା, ଯେଉଁଠି ନାଟ୍ୟକଳାର ପ୍ରତ୍ୟାଶାକୁ ଅସ୍ୱୀକାର କରେ, ତାହାକୁ କଦାପି ନାଟକର ଯୋଗ୍ୟ ବୋଲି କୁହାଯାଇ ନ ପାରେ । ନାଟକ ଏବଂ ରଙ୍ଗମଞ୍ଚର ପ୍ରକୃତ ଭାଷା ତାକୁ ହିଁ କୁହାଯାଇ ପାରିବ, ଯାହାଦ୍ୱାରା ଦୃଶ୍ୟତ୍ୱ ପ୍ରକଟିତ ହୋଇପାରେ । ଏଥିରେ ମୁଖ୍ୟ ଭୂମିକା ହେଉଛି ନାଟ୍ୟକାରର, ଯିଏ ନାଟକରେ ଭାଷା ବ୍ୟବସ୍ଥା କରେ, ରଙ୍ଗମଞ୍ଚ ହେଉଛି ସେହି ଭାଷାର ସର୍ବଶେଷ ପରିଣତି । ହୁଏତ ଏହି କାରଣରୁ ହିଁ କୁହାଯାଇଛି ଯେ, "ରଙ୍ଗମଞ୍ଚ ଶବ୍ଦ ପଛରେ ଲୁଚି ରହିଥିବା ଅର୍ଥ ଏବଂ ଭାବର ସମସ୍ୟା ସହିତ ସବୁବେଳେ ସଂଗ୍ରାମ କରୁଥାଏ ।" (ବ୍ୟୋଗୋତ୍‌ସ୍କୀ-ଥଟ୍ ଏଣ୍ଡ ଲାଙ୍ଗୁଏଜ୍ ପୃ.୧୪୯)

ଭାଷା ମାଧ୍ୟମରେ ଜୀବନପ୍ରତି ନାଟ୍ୟକାରଙ୍କର ଦୃଷ୍ଟିକୋଣର ପରିଚୟ ମିଳିଥାଏ । ସୁଖାନ୍ତ, ଦୁଃଖାନ୍ତ, ପ୍ରହସନ, ବାସ୍ତବବାଦୀ ଆବସର୍ଡ଼ ନାଟକ ଯାହା ହେଉନା କାହିଁକି ଏ ସବୁଥିରେ ଜୀବନର ଏକ ନିର୍ଦ୍ଦିଷ୍ଟ ରୂପ ଫୁଟିଉଠେ । ଏହାକୁ ଫୁଟାଇବାରେ ଭାଷା ହିଁ ମୁଖ୍ୟଭୂମିକା ଗ୍ରହଣ କରେ । ଏହି କାରଣରୁ ହିଁ ଐତିହାସିକ, ପୌରାଣିକ, ମନସ୍ତାତ୍ତ୍ୱିକ କିମ୍ବା ସାମାଜିକ ନାଟକ ନିମନ୍ତେ ସ୍ୱତନ୍ତ୍ର ଧରଣର ଭଷା ବ୍ୟବସ୍ଥା କରିବାକୁ ହୋଇଥାଏ । ଭାଷା ଏକ ସାର୍ବଜନୀନ ମାଧ୍ୟମ ହୋଇଥିଲେ ମଧ୍ୟ, ଏହା ଏକାନ୍ତଭାବରେ ବ୍ୟକ୍ତିଗତ ମଧ୍ୟ । ଯେତେବେଳେ ନାଟ୍ୟକାର ତାହାକୁ ନିଜର ନାଟ୍ୟକୃତିରେ ପ୍ରଯୁକ୍ତ କରେ, ସେତେବେଳେ ତହିଁରୁ ନାଟ୍ୟକାରର ବ୍ୟକ୍ତିଗତ ଶକ୍ତି ଏବଂ ଚେତନା ଶକ୍ତି ଆହରଣ ତଥା ସମୀକରଣ କୁଶଳତା ପ୍ରଭୃତି ଅନେକ ବିଷୟ ଜଣାପଡ଼ିଯାଏ । ନାଟ୍ୟକାରର ଅଭିରୁଚି, ସାମାଜିକ ପରିବେଶ, ମାନସିକ ଚେତନା, ଏ ସମସ୍ତର ସମନ୍ୱୟରେ ହିଁ ତାହାର ସାଂଳାପିକ ପ୍ରତିଭା ନିର୍ମିତ ହୋଇଥାଏ । ଏହା ବ୍ୟତୀତ ନାଟ୍ୟକାରର ସର୍ଜ୍ଜନାତ୍ମକ ଦୃଷ୍ଟିକୋଣ, ସଂଯୋଜନ ଏବଂ ବିଯୋଜନ କୌଶଳ, ଶବ୍ଦ ଚୟନ ଚାତୁରୀ ନାଟ୍ୟଭାଷାକୁ ସାଧାରଣରୁ ଅସାଧାରଣ ପର୍ଯ୍ୟାୟରେ ନେଇ ପହଞ୍ଚାଇ ଦିଏ । ଦୈନନ୍ଦିନ ଜୀବନରେ ନିତ୍ୟ ବ୍ୟବହୃତ ଭାଷା ଏବଂ ସାହିତ୍ୟର ଭାଷା – ଏ ଉଭୟ ମଧ୍ୟରେ ଏକ ଦୃଶ୍ୟମାନ ପାର୍ଥକ୍ୟ ରହିଛି । ନାଟ୍ୟକାର ସାଧାରଣ ଭାଷାକୁ ରଚନାତ୍ମକ କୌଶଳ ତଥା ରଞ୍ଜନାତ୍ମକ ଅନୁଲେପନ ଦ୍ୱାରା ଭୂଷିତ କରାଇ, ତାହାର ଏକ ନୂତନ ରୂପ ପ୍ରସ୍ତୁତ କରେ । ମଞ୍ଚରେ ଯେତେବେଳେ ଅଭିନେତା ତାହାକୁ ବ୍ୟାବହାର କରେ, ସେତେବେଳେ ଲିଖିତ ଭାଷାରେ ଅସ୍ପଷ୍ଟ ହୋଇ ରହିଯାଇଥିବା

କେତେକ ଅଭିବ୍ୟକ୍ତି ପ୍ରଧାନତତ୍ତ୍ୱକୁ ସେ ସ୍ପଷ୍ଟକରିବା ନିମନ୍ତେ ଉଦ୍ୟମ କରେ । ନାଟ୍ୟକାର ଏ ସମସ୍ତ ଜାଣିବା ଆବଶ୍ୟକ । କାରଣ କେବଳ ରଞ୍ଜନାତ୍ମକ କୌଶଳଦ୍ୱାରା ହିଁ ଅସ୍ପଷ୍ଟତା ଅନେକଟା ଦୂରୀଭୂତ ହୋଇଥାଏ ।

ନାଟ୍ୟ-ଭାଷା ସହିତ ନାଟ୍ୟକାରଙ୍କର ଅନୁଭୂତିର ନିବିଡ଼ ସମ୍ପର୍କ ରହିଛି । ଅନୁଭୂତିର ତୀକ୍ଷ୍ଣତା ଅଭିବ୍ୟକ୍ତିର କଳାତ୍ମକ ଶକ୍ତି ତଥା ଆବେଗ ପ୍ରକାଶ କ୍ଷମତାର ସମନ୍ୱୟରେ ନାଟ୍ୟକାର ନିଜର ଭାଷାଗତ ଆଦର୍ଶ ପ୍ରସ୍ତୁତ କରନ୍ତି । ଏହି କାରଣରୁ ହିଁ ଅନୁଭବର ସୀମା ଭାଷାପାଇଁ ମଧ୍ୟ ସୀମା ରୂପରେ ଚିହ୍ନିତ ହୋଇଯାଏ । ପ୍ରବନ୍ଧ, ଗଳ୍ପ କିମ୍ବା ଉପନ୍ୟାସ ପାଇଁ ଲେଖକ ଯେଉଁ ଭାଷା ଯୋଜନା କରେ, ତାହା ଏକାନ୍ତ ଭାବରେ ତାହାର ନିଜସ୍ୱ । ମାତ୍ର ନାଟକର ଭାଷା ନାଟ୍ୟକାର ଦ୍ୱାରା କଳ୍ପିତ ହୋଇଥିଲେ ମଧ୍ୟ ପ୍ରକୃତରେ ଏହା ନାଟ୍ୟ-ଚରିତ୍ରର ଭାଷା । କାକ-କୁଳାୟବାସୀ କୋକିଳତୁଲ୍ୟ, ଚରିତ୍ର ହିଁ ନାଟ୍ୟଭାଷାର ପ୍ରକୃତ ଧାତ୍ରୀର କାର୍ଯ୍ୟ କରେ । ସେ ତାକୁ ଲାଳନ ପାଳନ କରେ, ପୁଣି ବାହାରକୁ ଛାଡ଼ିଦିଏ । ଏତେବେଳକୁ ଭାଷା ତା'ର ନିଜ ବାଟରେ ଚାଲିବାକୁ ଆରମ୍ଭ କରେ । ବାସ୍ତବ ଜୀବନର ଭାଷା ନାଟ୍ୟକାର ଦ୍ୱାରା ପରିବର୍ତ୍ତିତ ହୋଇ ସୁଦ୍ଧା ଜୀବନଧର୍ମୀ ଭାଷାର ସମକକ୍ଷ ହୋଇଥାଏ ।

କେହି କେହି ନାଟ୍ୟଭାଷାକୁ ଜୀବନକ୍ଷେତ୍ରର ନିତ୍ୟ ବ୍ୟବହୃତ କଥିତ ଭାଷାର ସମାନ୍ତରାଳ ରୂପ ଭାବରେ ଗ୍ରହଣ କରିଥାଆନ୍ତି । ମାତ୍ର ଲିଖିତ ଏବଂ କଥିତ ଭାଷାରେ କେତେକ ପାର୍ଥକ୍ୟ ରହିବା ସ୍ୱାଭାବିକ । କଥିତ ଭାଷା ସ୍ୱଚ୍ଛନ୍ଦ ମନୋବୈଜ୍ଞାନିକ ପରିବେଶର ସୃଷ୍ଟି, ନାଟ୍ୟଭାଷା ସୃଷ୍ଟିରେ ମସ୍ତିଷ୍କର ଅବଦାନ ବହୁତ ବେଶୀ । ଏହା ବହୁ ଚିନ୍ତା ପରିକଳ୍ପନା ଏବଂ କାର୍ଯ୍ୟକାରଣ ହେତୁକ ହେବା, ତେଣୁ ଯଥାର୍ଥ । ଏହାର ସନ୍ନଦ୍ଧତା ବ୍ୟାକରଣଗତ ନିର୍ଭୁଲତା ଏବଂ ଅର୍ଥଭୈତା ସାଧାରଣ ଭାଷାଠାରୁ ଅଧିକ । କଥିତ ଭାଷାରେ ସ୍ୱଚ୍ଛନ୍ଦତା ଏବଂ ସ୍ୱତଃସ୍ଫୂର୍ତ୍ତତା ଏତେ ଅଧିକ ଯେ, ଏହାକୁ କଳାକ୍ଷେତ୍ରରେ ପ୍ରତିଷ୍ଠିତ କରିବା କିମ୍ବା ଏଥିରୁ ଭାଷାର ଏକ ପୂର୍ଣ୍ଣରୂପ କାମନା କରିବା ଆଦୌ ସହଜ ସାଧ୍ୟ ନୁହେଁ । ଏ କ୍ଷେତ୍ରରେ ତେଣୁ ରୂପ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇପଡ଼େ । କୌଣସି ଏକ ଆଞ୍ଚଳିକ ଚରିତ୍ରର ସ୍ୱଭାବିକ ଭାଷା ନିମନ୍ତେ ପ୍ରାୟ ନାଟକରେ ସେଇ ଅଞ୍ଚଳର କଥିତ ଭାଷାର ବ୍ୟବହାର କରାଯାଇଥିବାର ଦେଖିବାକୁ ମିଳେ । ଏହାଦ୍ୱାରା ଦର୍ଶକମାନଙ୍କୁ ଚରିତ୍ରଟିକୁ ଚିହ୍ନିବାରେ ବେଶ୍ ସୁବିଧା ହୋଇଥାଏ । ସଫଳତା ଲାଭ କରିବା ନିମନ୍ତେ ଏହି ଉପାୟଟି ବେଶ୍ ସହଜ । ମାତ୍ର ପ୍ରଥମତଃ, ଏହା ଅର୍ଥବହ ହୋଇଥିବା ଆବଶ୍ୟକ ଏବଂ ଦ୍ୱିତୀୟତଃ, ଏହାର ପ୍ରୟୋକ୍ତା ଶକ୍ତିଧର ହେବା ଉଚିତ । ଅନ୍ୟଥା ଏହି ଭାଷା ଯୋଜନା ଲକ୍ଷ୍ୟହୀନ ହୋଇପଡ଼େ ।

ପ୍ରଥମରୁ ଆମେ ନାଟକର ଭାଷାକୁ ଶିଳ୍ପୋଚିତ ମର୍ଯ୍ୟାଦା ଦେଇଛୁ । ଏହାକୁ କଳାକ୍ଷେତ୍ରର ସର୍ବୋତ୍ତମ ସୃଷ୍ଟି ବୋଲି ସ୍ୱୀକାର କରିନେଇ, ବିଜ୍ଞାନ ସମ୍ମତ ପଦ୍ଧତିରେ ଏହାର ସୃଷ୍ଟି କରାଯିବା ଆବଶ୍ୟକ ବୋଲି ମଧ୍ୟ ଆମେ ମନେକରୁଛୁ । ନାଟକର ଭାଷାକୁ ସାଧାରଣ

କଥିତ ଭାଷା ବୋଲି ମନେ କରିବାକୁ କୌଣସି କାରଣ ନାହିଁ । ନାଟ୍ୟକାର ଏ କ୍ଷେତ୍ରରେ ସାଧାରଣ ଭାଷାକୁ କ୍ରିୟାଶୀଳ କରିବା ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ କରିବା ଆବଶ୍ୟକ । ଭାବପ୍ରକାଶ କ୍ଷେତ୍ରରେ ବ୍ୟାପ୍ତି ବଦଳରେ 'ସଂକ୍ଷିପ୍ତିର ମର୍ଯ୍ୟାଦା ବହୁତ ବେଶୀ । କ୍ଷୁଦ୍ର କ୍ଷୁଦ୍ର ଅର୍ଥବହ ଶବ୍ଦଚୟନ, ନାଟ୍ୟଭାଷାକୁ ସ୍ମରଣୀୟତାର ରୂପ ଦେଇଥାଏ । ଲଘୁ ବ୍ୟଞ୍ଜନାର ମନୋହର ପଥଦେଇ, କ୍ଳୃପ୍ତ-ଆଲଙ୍କାରିତାର ହାତଧରି ନାଟ୍ୟ-ଭାଷାକୁ ଆତ୍ମପ୍ରକାଶ କରିବାକୁ ପଡ଼େ । ଏହାର ଅଭିବ୍ୟକ୍ତି ମୂଳକ ସାର୍ଥକତା ମୋଟାମୋଟି ଭାବରେ ଅଭିନୟ ଉପରେହିଁ ନିର୍ଭର କରିଥାଏ । ଗୋଟିଏ ଶବ୍ଦକୁ ପରିସ୍ଥିତିର ପ୍ରୟୋଜନାନୁସାରେ ଅଭିନେତା ଭିନ୍ନ ଭିନ୍ନ ରୂପରେ ପ୍ରୟୋଗ କରି ଦର୍ଶକମାନଙ୍କ ମନରେ ଉପଯୁକ୍ତ ଭାବ ସୃଷ୍ଟି କରିପାରେ । ତେଣୁ ନାଟ୍ୟ ଭାଷାର ଯୋଗ୍ୟତା ବିଚାର କରିବାକୁ ହେଲେ, ମୁଖ୍ୟତଃ ରଙ୍ଗମଞ୍ଚ ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ଚରିତ୍ର କେଉଁପରି ଭାଷା ବ୍ୟବହାର କରୁଛି, ନାଟକ ପାଇଁ ତାହା ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ । ବରଂ ଭାଷାର ନାଟକୀୟତା ଏବଂ ଅଭିବ୍ୟକ୍ତି ସକ୍ଷମତାହିଁ ନାଟକର ସଫଳତାରେ ବିଶେଷ ଭୂମିକା ଗ୍ରହଣ କରିଥାଏ । ଏହିସବୁ ବିଷୟଗୁଡ଼ିକୁ ଦୃଷ୍ଟିରେ ରଖି ନାଟ୍ୟକାର ସଂଳାପ ସୃଷ୍ଟି କରିପାରିଲେ, ତାହା ଦର୍ଶକମାନଙ୍କୁ ସହଜରେ ପ୍ରଭାବିତ କରିପାରିଥାଏ ।



## ୪୬

# ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା

## ଗଗନେନ୍ଦ୍ର ନାଥ ଦାସ

**ପ୍ରଥମ ପର୍ଯ୍ୟାୟ (୧୮୦୧-୧୮୩୦)**

ଓଡ଼ିଆ ଭାଷାର ସୃଷ୍ଟି ପାଖାପାଖି ହଜାରେ ବର୍ଷ ତଳେ ହୋଇଥିବ ବୋଲି ତଦ୍‌ବିଦ୍ ପଣ୍ଡିତମାନେ ମତ ଦେଇଛନ୍ତି । କିନ୍ତୁ ମୁଖ୍ୟତଃ ଛନ୍ଦୋବଦ୍ଧ ତଥା ଶବ୍ଦାଳଙ୍କାର-ବହୁଳ କାବ୍ୟ ରଚନାକୁ ଓ ସେଥିରେ ରକ୍ଷିତ ହେଉଥିବା ପ୍ରାନ୍ତ ମେଳକୁ ସୁଗମ କରିବା ଉଦ୍ଦେଶ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ରଚିତ 'ଗୀତାଭିଧାନ'କୁ ବାଦ୍ ଦେଲେ, ଓଡ଼ିଆ ଭାଷା ଚର୍ଚ୍ଚାର ଓ ବିଶେଷ ଭାବରେ ବ୍ୟାକରଣ ସାଧନାର ଇତିହାସ ବିଶେଷ ପ୍ରାଚୀନ ନୁହେଁ । ଯେତେ ଦୂର ଜଣାଯାଏ, ଏ ଦିଗରେ ହୋଇଥିବା ପ୍ରାଥମିକ ଉଦ୍ୟମଗୁଡ଼ିକ ସହ କଲିକତାରେ ୧୮୦୦ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିବା ଫୋର୍ଟ ଉଇଲିଅମ୍ କଲେଜ (The College of Fort William) ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଜଡ଼ିତ ଥିଲା । ତେଣୁ ଭାଷାଚର୍ଚ୍ଚାର ଏହି ପ୍ରଥମ ପର୍ଯ୍ୟାୟକୁ ଫୋର୍ଟ ଉଇଲିଅମ୍ ପର୍ଯ୍ୟାୟ ନାମରେ ମଧ୍ୟ ନାମିତ କରାଯାଇପାରେ ।

ଏହି ଫୋର୍ଟ ଉଇଲିଅମ୍ କଲେଜ କାଉନ୍‌ସିଲର ୧୮୦୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୪ ତାରିଖର କାର୍ଯ୍ୟ ବିବରଣୀରୁ ଜଣାଯାଏ ଯେ କଲେଜର ଅନ୍ୟତମ ଶିକ୍ଷକ ରୂପେ କାର୍ଯ୍ୟ କରୁଥିବା ବିଖ୍ୟାତ ପାଦ୍ରୀ ଉଇଲିୟମ୍ କେରୀ (William Carey) ଙ୍କ ସହଯୋଗିତାରେ ପୁରୁଷରାମ ନାମକ ଜଣେ ବ୍ୟକ୍ତି (ଓଡ଼ିଆ ପଣ୍ଡିତ) ଓଡ଼ିଆ ଭାଷାର ଏକ ବ୍ୟାକରଣ ଛାପା ହେବାପାଇଁ ପ୍ରସ୍ତୁତ କରୁଥିଲେ; ଯଥା- "Preparing for the Press. A Grammar of the Orissa Language by Pooroosh Ram, Orissa Pundit, in conjunction with Mr. William Carey". (Home Miscellaneous File 559, P.353/313, National Archives of India, New Delhi; ଏବଂ Buchanan, Rev.C., Ed 1805. P. 230) (ପୁରୁଷରାମ ଏକ ସାଧାରଣ ଓଡ଼ିଆ ନାମ ନୁହେଁ । ହୁଏତ ତାଙ୍କର ନାମ ଥିଲା ପରଶୁରାମ ଯାହା କି ଭୁଲ ଉଚ୍ଚାରଣ ଓ ଭୁଲ ବନାନ ବାଟ ଦେଇ ପୁରୁଷରାମରେ ପରିଣତ ହୋଇଥିଲା ।) ଯେତେଦୂର ଜଣାଯାଏ ଓଡ଼ିଆ ଭାଷାଚର୍ଚ୍ଚା ତଥା ବ୍ୟାକରଣ ସାଧନାରେ ଏହା ହେଉଛି ପ୍ରଥମ ଗୁରୁତ୍ୱପୂର୍ଣ୍ଣ ଉଦ୍ୟମ । ଅବଶ୍ୟ

ଏହା ପୂର୍ବରୁ ଏ.ଆପଜନଙ୍କ 'ଇଂରାଜୀ ବାଙ୍ଗାଲୀ ବୋକେବିଲରୀ'ରେ ବଙ୍ଗଳାର ସମାନ୍ତରାଳ ଓଡ଼ିଆ ଶବ୍ଦ ଦିଆଯିବାର ପ୍ରଚେଷ୍ଟା କରାଯାଇଥିଲା ଓ ଏହା ୧୭୯୩ ଖ୍ରୀଷ୍ଟାବ୍ଦରେ କଲିକତା କ୍ରନିକ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା (ଦ୍ରଷ୍ଟବ୍ୟ Das, Sajanikanta, 1975, pp.38, 288 ଓ Mishra, Srinibas 1978 pp. 51-52, 495) । କିନ୍ତୁ ତାହାକୁ ଓଡ଼ିଆ ଭାଷା ଚର୍ଚ୍ଚାର ପ୍ରାଥମିକ ଉଦ୍ୟମ ବୋଲି ଗ୍ରହଣ କରିବା ଯୁକ୍ତିସଙ୍ଗତ ହେବ ନାହିଁ । ପୁରୁଷରାମ ଓ କେରୀଙ୍କ ଓଡ଼ିଆ ବ୍ୟାକରଣ ରଚନା ଉଦ୍ୟମର ଫଳାଫଳ ସମ୍ପର୍କରେ ଅଧିକ କିଛି ଜଣା ପଡୁନାହିଁ । ଡକ୍ଟର ଜନ୍ ରାଇଲାଣ୍ଡ (John Ryland)ଙ୍କ ନିକଟକୁ ୧୮୧୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୦ ତାରିଖରେ ଏକ ପତ୍ର ଲେଖି କେରୀ ସେଇ ପତ୍ରରେ ଓଡ଼ିଆ ବ୍ୟାକରଣ ରଚନାରେ ହାତ ଦେଇଥିବାର ସୂଚନା ଦେଇଥିଲେ । ସେ ଲେଖିଥିଲେ, I intend also to publish grammars of the others, and have now in press a grammar of the Telinga language, another of that of the Seeks, and have begun one of the Orissa language." (quoted in Das, Sajanikanta, P.114) । କିନ୍ତୁ ଏଇ ବ୍ୟାକରଣ ୧୮୦୪ ଖ୍ରୀଷ୍ଟାବ୍ଦରେ କେରୀଙ୍କ ସହଯୋଗରେ ପୁରୁଷରାମ ପ୍ରସ୍ତୁତ କରୁଥିବା ବ୍ୟାକରଣଠାରୁ ଭିନ୍ନ କି ନାହିଁ, ତାହା ମଧ୍ୟ ଅନ୍ୟ କୌଣସି ସୂତ୍ରରୁ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ଏହି ଦୁଇଟି ସୂଚନା ଗୋଟାଏ ବା ସ୍ବତନ୍ତ୍ର ଦୁଇଟି ଉଦ୍ୟମକୁ କେନ୍ଦ୍ରକରି ଦିଆଯାଇ ପାରିଥାଏ । ପୁଣି ଏ ଉଦ୍ୟମର ଫଳାଫଳ କ'ଣ ହୋଇଥିଲା ତା ମଧ୍ୟ ଜଣାନାହିଁ । ପୁଣି ଏଇସବୁ ଉଦ୍ୟମ ସଫଳ ହୋଇପାରିଥାଏ ଓ ପରବର୍ତ୍ତୀ କାଳରେ (ଅର୍ଥାତ୍ ୧୮୧୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସର) ଶ୍ରୀରାମପୁର ଅଗ୍ନିକାଣ୍ଡରେ ଏଇ ବ୍ୟାକରଣର ପାଣ୍ଡୁଲିପି ନଷ୍ଟ ହୋଇଯାଇ ପାରିଥାଏ । କେରୀଙ୍କ ଦ୍ୱାରା ଓ ତାଙ୍କ ସହାୟତା / ସହଯୋଗିତାରେ ପ୍ରସ୍ତୁତ ହୋଇଥିବା ବହୁ ପୁସ୍ତକର ପାଣ୍ଡୁଲିପି ମୁଦ୍ରିତ ହେବାପାଇଁ ଶ୍ରୀରାମପୁର ମିଶନ ଭବନରେ ଗଚ୍ଛିତ ଥିଲା ଓ ଏହି ଅଗ୍ନିକାଣ୍ଡରେ ବିନଷ୍ଟ ହୋଇଯାଇଥିଲା । (ଶ୍ରୀରାମପୁର ମିଶନ ଭବନ ଅଗ୍ନିକାଣ୍ଡ ସମ୍ପର୍କୀୟ ବିବରଣ ପାଇଁ ଦ୍ରଷ୍ଟବ୍ୟ Das, Sajanikanta, pp. 142-43, 115) । ଓଡ଼ିଆ ବ୍ୟାକରଣର ପାଣ୍ଡୁଲିପି ଧ୍ୱଂସ ହୋଇଥିବା ପାଣ୍ଡୁଲିପିଗୁଡ଼ିକର ଅନ୍ତର୍ଭୁକ୍ତ ଥାଇପାରେ । ଏପରି ଅନୁମାନର ଅନ୍ୟ ଏକ କାରଣ ମଧ୍ୟ ରହିଛି । ପୂର୍ବୋକ୍ତ କଲେଜ କାଉନ୍‌ସିଲର ୧୮୦୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୪ ତାରିଖ (ଅର୍ଥାତ୍ ସେଇଦିନର) କାର୍ଯ୍ୟ ବିବରଣୀରୁ ଏହା ମଧ୍ୟ ଜଣାଯାଏ ଯେ ସେତେବେଳକୁ ବାଇବେଲର ନିଉ ଟେଷ୍ଟାମେଣ୍ଟ (New Testament) ଓଡ଼ିଆରେ ଅନୂଦିତ ହୋଇସାରିଥିଲା ଓ ଛାପାଖାନାକୁ ଯିବାପାଇଁ ପ୍ରସ୍ତୁତ ଥିଲା । ପୂର୍ବୋକ୍ତ ପୁରୁଷରାମ ଏହି ଅନୁବାଦ କରିଥିଲେ ଓ କେରୀ ଗ୍ରୀକ୍ ବାଇବେଲ ସହ ଏହି ଅନୁବାଦକୁ ତୁଳନା କରି ଏହାର ସଂଶୋଧନ କରିଥିଲେ । ୧୮୦୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ବେଳକୁ ଏହା ସମ୍ପୂର୍ଣ୍ଣ ଭାବେ ମୁଦ୍ରଣଯନ୍ତ୍ର ଉପଯୋଗୀ ହୋଇ ସାରିଥିଲେ ହେଁ ଶ୍ରୀରାମପୁର ମିଶନ୍ ପ୍ରେସ୍ ସେ ପର୍ଯ୍ୟନ୍ତ ଓଡ଼ିଆ ଲିପିରେ ମୁଦ୍ରଣ କାର୍ଯ୍ୟ କରିବାପାଇଁ ପ୍ରସ୍ତୁତ ହୋଇପାରି ନ ଥିବାରୁ ୧୮୦୯

ଖ୍ରୀଷ୍ଟାବ୍ଦରେ ଏହାର ମୁଦ୍ରଣ ସମ୍ଭବ ହୋଇ ପାରିଥିଲା । ଏହି ବାଇବେଲ ଛାପିବାର ଉଦ୍ଦେଶ୍ୟ ନେଇ ଅନ୍ୟୂନ ଏକ ହଜାରେ ଟଙ୍କା ବ୍ୟୟରେ ଓଡ଼ିଆ ଲିପିର ଟାଇପ୍ (Type) ପ୍ରସ୍ତୁତ କରାଯାଇ ଶ୍ରୀରାମପୁର ମିଶନ ପ୍ରେସରେ ଓଡ଼ିଆ ପୁସ୍ତକ ଛାପିବାର ବନ୍ଦୋବସ୍ତ କରାଯାଇଥିଲା । ତେଣୁ ନିଉ ଟେଷ୍ଟାମେଣ୍ଟର ଛାପା ସରିବା ପରେ ପରେ ସେଠାରେ ବାଇବେଲର ଓଲ୍ଡ ଟେଷ୍ଟାମେଣ୍ଟ (Old Testament)ର ମୁଦ୍ରଣ କାର୍ଯ୍ୟ ଆରମ୍ଭ ହେଲା ଯାହା କି ୧୮୧୧ ରୁ ୧୮୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଧୀରେ ଧୀରେ ମୁଦ୍ରିତ ହୋଇ ଚାରିଖଣ୍ଡରେ ପ୍ରକାଶିତ ହେଲା । ମୋଟ ଉପରେ ଶ୍ରୀରାମପୁର ମିଶନ ପ୍ରେସର ଉଦ୍ୟୋକ୍ତାଗଣ ସମସ୍ତେ ମିଶନାରୀ ଥିବାରୁ ବ୍ୟାକରଣ ପୂର୍ବରୁ ପ୍ରଥମେ ବାଇବେଲ ପ୍ରକାଶ କରିବାପାଇଁ ଆଗ୍ରହାନ୍ୱିତ ଥିବା ସ୍ୱାଭାବିକ । ତେଣୁ ଅନୁମାନ କରାଯାଇପାରେ ଯେ ବାଇବେଲ ଛପା ହେବାପରେ ଛାପା ହେବାପାଇଁ ଗଚ୍ଛିତ ଥିବା ଏକ ବା ଏକାଧିକ ଉଦ୍ୟମର ଫଳ ଓଡ଼ିଆ ଭାଷାର ବ୍ୟାକରଣର ପାଣ୍ଡୁଲିପି ୧୮୧୨ ଖ୍ରୀଷ୍ଟାବ୍ଦର ଅଗ୍ନିକାଣ୍ଡରେ ନଷ୍ଟ ହୋଇ ଯାଇଥିଲା ।

ନୀଳକଣ୍ଠ ଦାସ ତାଙ୍କ "ଓଡ଼ିଆ ଭାଷା ଓ ସାହିତ୍ୟ" ପୁସ୍ତକର (୧ମ ସଂସ୍କରଣ) ଗ୍ରନ୍ଥ ପ୍ରବେଶ ପ୍ରସଙ୍ଗରେ କହନ୍ତି "ବରଂ ମାର୍ଶମାନ୍ (Marshmann) ଓ କେରି (Carey) ଙ୍କ ପରି ଇଉରୋପୀୟ ମିଶନାରୀମାନେ ନିଜ ବ୍ୟାକରଣରେ ଟିକିଏ ଯାହା ଓଡ଼ିଆତ୍ୱ ଦେଇଥିଲେ... ।" (Das Nilakantha 1958, P-8) । ସେ ଅନ୍ୟତ୍ର ମଧ୍ୟ କହନ୍ତି, "ସେ କାଳର ଗୋରା ପାଦ୍ରୀ ମାର୍ସମେନ ସାହେବ କୌଣସି ଇଂରାଜୀ ସ୍କୁଲ ପାଠ୍ୟରୁ 'ତର୍ଜମୀକୃତ' ଯେଉଁ ପ୍ରଥମ ପାଠ୍ୟ ପୁସ୍ତକ ଖଣ୍ଡି ଓଡ଼ିଆରେ ଲେଖିଥିଲେ ତା କେହି ଖୋଜି ଦେଖିପାରନ୍ତି । ସେତିକିବେଳେ କେରୀ ସାହେବ ଖଣ୍ଡିଏ ଓଡ଼ିଆ ବ୍ୟାକରଣ ଲେଖିଥିଲେ ।" (Das Nilakantha, 1973, P.30) । ନୀଳକଣ୍ଠଙ୍କ ଏସବୁ ମନ୍ତବ୍ୟ ଭ୍ରମାତ୍ମକ । କାରଣ ମାର୍ଶମାନ୍ (Joshua Marshamann) କେବେ କୌଣସି ଓଡ଼ିଆ ବ୍ୟାକରଣ ଲେଖିଥିବାର ଜଣାନାହିଁ, ତା'ର ପ୍ରମାଣ ମଧ୍ୟ ନାହିଁ । କେରୀଙ୍କ ସହଯୋଗିତାରେ ବା ପ୍ରତ୍ୟକ୍ଷ ଭାବରେ ତାଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ବ୍ୟାକରଣ ମଧ୍ୟ, ଯେତେଦୂର ଜଣାଯାଏ, ପ୍ରକାଶ ପାଇବାର ସୁଯୋଗ ଲାଭ କରି ନ ଥିଲା । ତେଣୁ ସେ ସମ୍ପର୍କରେ କୌଣସି ମନ୍ତବ୍ୟ ଦିଆଯାଇ ପାରିବ ନାହିଁ ।

ଓଡ଼ିଆ ଭାଷା ଚର୍ଚ୍ଚାର ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ଉଦ୍ୟମ ହେଉଛି ମୋହନ ପ୍ରସାଦ ଠାକୁର (Mohun Persaud Takoor)ଙ୍କ A Vocabulary Oriya English for use of Students । ଏହା ଶ୍ରୀରାମପୁର ମିଶନ ପ୍ରେସରେ ମୁଦ୍ରିତ ହୋଇ ୧୮୧୧ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ମୋହନ ପ୍ରସାଦ ଠାକୁର ୧୮୦୭ ରୁ ୧୮୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଫୋର୍ଟ ଉଇଲିଅମ୍ କଲେଜର ସହକାରୀ ଲାଇବ୍ରେରୀଆନ୍ ଥିଲେ ଓ ତାଙ୍କ ପୁସ୍ତକଟି ଏଇ କଲେଜ ଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ପ୍ରକୃତ ପକ୍ଷେ ବିଷୟାନୁକ୍ରମେ ସଂଗୃହୀତ ଓଡ଼ିଆ ଶବ୍ଦ ଓ ତା'ର ଇଂରାଜୀ ପ୍ରତିଶବ୍ଦଗୁଡ଼ିକର ଏକ ତାଲିକା, ଓ ଅଭିଧାନ ପର୍ଯ୍ୟାୟଭୁକ୍ତ ନୁହେଁ ।

ମୋହନ ପ୍ରସାଦ ବଙ୍ଗାଳୀ ଥିଲେ । ତେଣୁ ତାଙ୍କ ଦ୍ୱାରା ସଂଗୃହୀତ ଓଡ଼ିଆ ଶବ୍ଦଗୁଡ଼ିକ ଲିପିବଦ୍ଧ ହେବାବେଳେ କେତେକ ଭ୍ରମ ସ୍ୱାଭାବିକ କାରଣରୁ ରହି ଯାଇଥିଲା । ଯଥା-

ମନିପ = Man, ନାକର ଜନା = Nostril,

ଥୋଁଟ = Lip, ହାତ ଚାଟୁଆ = Palm of hand

ଡାହାନ ହାତ = Right hand, ନହୁନି = Butter

ପାସୋରଣ = Forgetfulness, ଇତ୍ୟାଦି ।

ଏଥିରେ ଓଡ଼ିଆ ଶବ୍ଦଗୁଡ଼ିକୁ ନିମ୍ନଲିଖିତ ବତିଶିଟି ଭାଗରେ ବିଭକ୍ତ କରାଯାଇଥିଲା :

God, spirits, universe, the sex and age of man, kindred and affinity, parts of the body, accidents of the body and soul, natural senses and their objects, of diseases, of remedis in general, materia medica, quadrupeds, birds, fishes, insects, useful trees and plants, metals and stone, apparel, food, house and furnitures, husbandry, trade and commerce, trades and professions, court of justic, school, kingdom, virtues and vices, adjectives of men, arts and sciences, ecclesiastical matters, verbs and edverbs. ଏହି ଅଭିଧାନରେ ପ୍ରଥମେ ଓଡ଼ିଆ ଲିପିରେ ଓଡ଼ିଆ ଶବ୍ଦ, ତାପରେ ରୋମାନ୍ ଲିପିରେ ସେଇ ଶବ୍ଦର ଉଚ୍ଚାରଣ ଓ ତାପରେ ଇଂରାଜୀରେ ତା'ର ଅର୍ଥ ଦିଆଯାଇଥିଲା ।

ଲଣ୍ଡନସ୍ଥ India Office Library and Recordsରେ ସଂରକ୍ଷିତ କାଗଜରେ ଲିଖିତ ଏକ ପାଣ୍ଡୁଲିପିରେ ଓଡ଼ିଆ ଭାଷାଚର୍ଚ୍ଚାର ତୃତୀୟ ଉଦ୍ୟମର ଫଳ ଦେଖିବା ପାଇଁ ମିଳେ । ଏହି ପାଣ୍ଡୁଲିପିଟି ଗୋଟିଏ ମୋଟା ବନ୍ଧାଇ ଖାତାର ଅନ୍ତର୍ଭୁକ୍ତ । ଖାତାରେ ଯାହା ଲେଖାଅଛି ତାକୁ ମୋଟାମୋଟି ଦୁଇଭାଗରେ ବିଭକ୍ତ କରାଯାଇ ପାରେ । ପୁଣି ପ୍ରଥମ ଭାଗର ତିନୋଟି ଉପ-ବିଭାଗ ମଧ୍ୟ ରହିଅଛି । ପ୍ରଥମ ଭାଗର ପ୍ରଥମ ଉପ-ବିଭାଗ ହେଉଛି ବଙ୍ଗଳା ଲିପିରେ ଲିଖିତ ବଙ୍ଗଳା ଭାଷାର ଏକ ବ୍ୟାକରଣ; ଦ୍ୱିତୀୟ ଉପ-ବିଭାଗ ହେଉଛି ଓଡ଼ିଆ ଲିପିରେ ଲିଖିତ ଓଡ଼ିଆ ଭାଷାର ବ୍ୟାକରଣ ଓ ତୃତୀୟ ଉପ-ବିଭାଗ ହେଉଛି ବଙ୍ଗଳା-ସଂସ୍କୃତ-ଓଡ଼ିଆ-ପ୍ରାକୃତ ଭାଷାଗୁଡ଼ିକର ଏକ ତୁଳନାମୂଳକ ଶବ୍ଦ ତାଲିକା । ଏହି ଖାତାର ପ୍ରଥମ ଭାଗର ଦ୍ୱିତୀୟ ଉପ-ବିଭାଗ ଅର୍ଥାତ୍ ଓଡ଼ିଆ ବ୍ୟାକରଣ ଶେଷରେ ନିମ୍ନଲିଖିତ ସଂସ୍କୃତ ପୁଷ୍ପିକା ରହିଅଛି -

"ଉତ୍କଳ ଭାଷା ଗ୍ରନ୍ଥଂ ଭଲୈଲ ସାହେବ ସ୍ୟାଜ୍ଞୟୈତତ୍ ରଚିତଂ ଗଦାଧରେଣାପି ନାଗାକ୍ଷି ମୈତ୍ର ଶକାବ୍ଦକେ ଚ" । ଏହି ଓଡ଼ିଆ ବ୍ୟାକରଣର ପ୍ରତ୍ୟେକ ଧାଡ଼ି ତଳେ ରୋମାନ୍ (Roman) ହରଫ ବା ଲିପିରେ ଓଡ଼ିଆ ଲିପିର ପ୍ରତିଲିପି (transcription) ଦିଆଯାଇଛି । ଏହି ରୋମାନ୍ ପ୍ରତିଲିପିରେ "ଭଲୈଲ ସାହେବ" ସ୍ଥଳରେ "ଶ୍ରୀ ଲାଇଲୋ" (Sri Lailo saheba) ବୋଲି ଲିଖିତ ହୋଇଅଛି । (ଏହି ପାଣ୍ଡୁଲିପି ସମ୍ପର୍କରେ ବିଶେଷ ବିବରଣପାଇଁ ଦ୍ରଷ୍ଟବ୍ୟ- Dash, G.N., 1976, pp 58-64) । ୧୮୨୪ ଖ୍ରୀଷ୍ଟାବ୍ଦରେ India Office

Library ପାଇଁ ଲେଡ୍ଡେନ୍ (John Leyden 1775-1811) ଙ୍କ ସଂଗ୍ରହ Bibliotheca Leydeniana କୁ କିଣାଯାଇଥିଲା (Arberry, A.J. 1967, pp 37-38) । ଯେତେଦୂର ସମ୍ଭବ ସେତେବେଳେ ଏହି ପାଣ୍ଡୁଲିପି ଅନ୍ତର୍ଗତ ହୋଇଥିବା ଖାତାଟି ସେଇ ସଂଗ୍ରହର ଅନ୍ତର୍ଭୁକ୍ତ ଥିଲା ।

ପୁଷ୍ପିକାରେ ଉଲ୍ଲିଖିତ ହୋଇଥିବା ଏହି ଓଡ଼ିଆ ବ୍ୟାକରଣର ରଚୟିତା ଗଦାଧରଙ୍କୁ ଫୋର୍ଟ ଉଇଲିୟମ୍ କଲେଜରେ ସବ୍-ଅର୍ଡ଼ିନେଟ୍ ମୁନ୍ସୀ (Sub-ordinate Munshi)ଭାବରେ ୧୮୦୫ ଖ୍ରୀଷ୍ଟାବ୍ଦରେ ଯୋଗଦେଇ ୧୮୩୦ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କରିଥିବା ଗଦାଧର ତର୍କବାଗୀଶଙ୍କ ସହ ଚିହ୍ନିତ କରାଯାଇପାରେ । ଉଲୈଲ ବା ଶ୍ରୀ ଲାଇଲୋ ସାହେବଙ୍କ ପରିଚୟ ଠିକ୍ ଭାବରେ ଜଣାପଡୁନାହିଁ । ତେବେ ତାଙ୍କୁ W.B. Bayley (1782-1862) ବା John Baillie (1772-1833) ଙ୍କ ସହ ଚିହ୍ନିତ କରାଯିବାର ସମ୍ଭାବନା ରହିଛି । ଏ ପୁଷ୍ପିକା ଅନୁଯାୟୀ ଏ ବ୍ୟାକରଣ ରଚନାର ସମୟ "ନାଗାକ୍ଷିମୈତ୍ର ଶକାବ୍ଦ" । ପ୍ରାଚୀନ ପରମ୍ପରାର ଅନୁବର୍ତ୍ତନରେ ଏଥିରେ ସଂଖ୍ୟାକୁ ସଙ୍କେତରେ ପଦ ବା ଶବ୍ଦ (word) ମାଧ୍ୟମରେ ପ୍ରକାଶ କରାଯାଇଛି । ଏଠାରେ ଯେତେଦୂର ସମ୍ଭବ "ନାଗା"ର ଅର୍ଥ ହେବ ୮' "ଅକ୍ଷି"ର ଅର୍ଥ ହେବ ୨ ଓ "ମୈତ୍ର"ର ଅର୍ଥ ହେବ ୧୨ । "ଅଙ୍କା'ନାଂ ବାମତୋ ଗତିଃ" ଏହି ସୂତ୍ରର ଅବଲମ୍ବନରେ ଏଇ ସଂଖ୍ୟାଗୁଡ଼ିକୁ ସଜାଇ ରଖିଲେ ବାହାରିବ ୧୨୨୮ (ଏଇ ପ୍ରଣାଳୀ ସମ୍ପର୍କରେ ଅଧିକ ବିବରଣୀ ପାଇଁ ଦ୍ରଷ୍ଟବ୍ୟ Sircar, D.C. 1965, pp. 228-232) । ପୁଷ୍ପିକାରେ ଶକାବ୍ଦ ବୋଲି ଲେଖାଥିଲେ ମଧ୍ୟ ଏହା ଶକାବ୍ଦ ହେବାର ସମ୍ଭାବନା ଅଳ୍ପ, କାରଣ ୧୨୨୮ ଶକାବ୍ଦ ମୋଟାମୋଟି ୧୧୬୦ ଖ୍ରୀଷ୍ଟାବ୍ଦ ହେବ ଓ ୧୧୬୦ ଖ୍ରୀଷ୍ଟାବ୍ଦରେ ଏହି ବ୍ୟାକରଣ ରଚିତ ହୋଇଥିବାର ସମ୍ଭାବନା ନାହିଁ । ଯେତେଦୂର ସମ୍ଭବ ଏହା "ଫସଲୀ ଅବ୍ଦ" ଓ ଗଦାଧର ଭୁଲକ୍ରମେ ଫସଲୀ ଅବ୍ଦକୁ ଶକାବ୍ଦ ବୋଲି ଉଲ୍ଲେଖ କରିଛନ୍ତି, କାରଣ ଫସଲୀ ଏକ ଲୋକପ୍ରିୟ ଅବ୍ଦ ଓ ବର୍ତ୍ତମାନ ପ୍ରଚଳିତ ବଙ୍ଗାବ୍ଦ (ସାଲ)ର ମୂଳ (ଫସଲୀ ଅବ୍ଦ ସମ୍ପର୍କରେ ଅଧିକ ଜାଣିବା ପାଇଁ ଦ୍ରଷ୍ଟବ୍ୟ, Sircar, D.C. 1965, Chap VII, section IV) । ୧୧୨୮ ଫସଲୀ ଅବ୍ଦ ମୋଟାମୋଟି ୧୮୨୧-୨୨ ଖ୍ରୀଷ୍ଟାବ୍ଦ ସହ ସମାନ । ଏହାହିଁ ଯେତେଦୂର ସମ୍ଭବ ବ୍ୟାକରଣ ରଚନାର ସମୟ । ଏହା John Leydenଙ୍କ ମୃତ୍ୟୁ (୧୮୧୧ ଖ୍ରୀଷ୍ଟାବ୍ଦ) ପରେ ରଚିତ ହୋଇଥିଲେ ହେଁ ତାଙ୍କ ସଂଗ୍ରହର କିପରି ଅନ୍ତର୍ଭୁକ୍ତ ହେଲା, ବର୍ତ୍ତମାନ ତା'ର ଯଥାର୍ଥ ଉତ୍ତର ଦେବା ସମ୍ଭବ ନୁହେଁ ।

ଏହି ପାଣ୍ଡୁଲିପି ପ୍ରତି ପ୍ରଥମେ ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରନ୍ତି ବ୍ଲୁମ୍‌ହାର୍ଟ (J.F. Blumhardt) ୧୯୨୪ ଖ୍ରୀଷ୍ଟାବ୍ଦରେ (Blumhardt, J.F., 1624a, P. 22 ଓ 1924b, P.15) । ପାଣ୍ଡୁଲିପିଟି ୧୮୨୪ ଖ୍ରୀଷ୍ଟାବ୍ଦରେ କିଣାଯାଇଥିବା ଲେଡ୍ଡେନ୍ ସଂଗ୍ରହର ଅନ୍ତର୍ଭୁକ୍ତ ଥିବାର ସମ୍ଭାବନାକୁ ଆଖି ଆଗରେ ରଖି ସେ ଏହି ପାଣ୍ଡୁଲିପିର ବର୍ଣ୍ଣନାତ୍ମକ

ବିବରଣୀ ଦେବାବେଳେ ଲେଡ଼େନ୍‌ଙ୍କ ନାମୋଲ୍ଲେଖ କରିଥିଲେ । ବ୍ଲୁମ୍‌ହାର୍ଟଙ୍କୁ ଅନୁସରଣ କରି ୧୯୪୭ ଖ୍ରୀଷ୍ଟାବ୍ଦରେ ପ୍ରିୟରଞ୍ଜନ ସେନ (Sen, P.R., 1947, P.29) ଓ ତାଙ୍କୁ ଅନୁସରଣ କରି ୧୯୫୩ ଖ୍ରୀଷ୍ଟାବ୍ଦରେ ବଂଶୀଧର ମହାନ୍ତି (Mohanty Bansidhar 1953 pp. 685-692; ଆହୁରି ଦ୍ରଷ୍ଟବ୍ୟ Mohanty, Bansidhar 1955, P.113) ମଧ୍ୟ କଥିତ ପାଣ୍ଡୁଲିପିରେ ଅନ୍ତର୍ଗତ ଗଦାଧରଙ୍କ ବ୍ୟାକରଣ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ମାତ୍ର ଦେଇଥିଲେ । ଏଠାରେ ସ୍ପଷ୍ଟ ଭାବରେ ସୂଚାଇ ଦେବା ଉଚିତ ଯେ ଉଭୟ ପ୍ରିୟରଞ୍ଜନ ସେନ ଓ ବଂଶୀଧର ମହାନ୍ତି ମୂଳ ପାଣ୍ଡୁଲିପିକୁ ଦେଖିବାର ବା ପରୀକ୍ଷା କରିବାର ସୁଯୋଗ ପାଇ ନ ଥିଲେ । ଫଳରେ ବ୍ଲୁମ୍‌ହାର୍ଟଙ୍କ ବର୍ଣ୍ଣନାତ୍ମକ ବିବରଣୀରେ ଲେଡ଼େନ୍‌ଙ୍କ ନାମୋଲ୍ଲେଖ ଦେଖି ଜନ୍ ଲେଡ଼େନ୍ ଏହି ବ୍ୟାକରଣର ରଚୟିତା ବୋଲି ଧରି ନେଇଥିଲେ ।

୧୯୭୦ ଖ୍ରୀଷ୍ଟାବ୍ଦରେ ତାରାପଦ ମୁଖୋପଧ୍ୟାୟ, କଥିତ ପାଣ୍ଡୁଲିପିର ଅନ୍ତର୍ଗତ ବଙ୍ଗଳା ଭାଷାର ବ୍ୟାକରଣଟି ସମ୍ପାଦନା କରି ପ୍ରକାଶ କରିଥିଲେ । ପାଣ୍ଡୁଲିପିରେ ଉଲ୍ଲେଖ ନଥିଲେ ମଧ୍ୟ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରି ସେ ସିଦ୍ଧାନ୍ତ କରିଥିଲେ ଯେ ପାଣ୍ଡୁଲିପି ଅନ୍ତର୍ଗତ ବଙ୍ଗଳା, ଓଡ଼ିଆ ବ୍ୟାକରଣ ଓ ତୁଳନାମୂଳକ ଶବ୍ଦ-ତାଲିକା ଫୋର୍ଟ ଉଇଲିଅମ୍ କଲେଜର ବିଶିଷ୍ଟ ପଣ୍ଡିତ ଓ କେରୀଙ୍କ ସହକର୍ମୀ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କ ଦ୍ୱାରା ୧୮୦୭ରୁ ୧୮୧୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନ୍ ଲେଡ଼େନ୍‌ଙ୍କ ନିର୍ଦ୍ଦେଶାନୁଯାୟୀ ପ୍ରସ୍ତୁତ ହୋଇଥିଲା (Mukhopadhyay, T.P., 1970, ଭୂମିକା, P.P. 12-24) । ତାରାପଦ ମୁଖୋପାଧ୍ୟାୟଙ୍କୁ ଅନୁସରଣ କରି ସାତକୋଡ଼ି ହୋତା "ଝଙ୍କାର" ପୃଷ୍ଠାରେ "ଓଡ଼ିଆ ବ୍ୟାକରଣର ପ୍ରଥମ ଲେଖକ କିଏ ?" ଶିରୋନାମାରେ ଏକ ପ୍ରବନ୍ଧ ଲେଖନ୍ତି ୧୯୭୧ ଖ୍ରୀଷ୍ଟାବ୍ଦରେ । ସେ ତାରାପଦ ମୁଖୋପାଧ୍ୟାୟଙ୍କ ସିଦ୍ଧାନ୍ତ ସବୁ ପ୍ରାୟ ଗ୍ରହଣ କରି ନେଇଥିଲେ । ତେବେ ତାଙ୍କ ମତରେ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ଥିଲେ ଓଡ଼ିଆ । (ମୁଖୋପାଧ୍ୟାୟଙ୍କ ମତରେ ମୃତ୍ୟୁଞ୍ଜୟ ଥିଲେ ବଙ୍ଗାଳୀ ।) ପୁଣି ସେ ମଧ୍ୟ ପ୍ରଥମ ଓଡ଼ିଆ ବ୍ୟାକରଣକାରର ସମ୍ମାନ ଆମସ୍ ସଟନ୍ (Amos Sutton)ଙ୍କୁ ଦିଆ ନ ଯାଇ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କୁ ଦିଆଯାଉ ବୋଲି ମତ ପ୍ରକାଶ କରିଥିଲେ, (Hota, S. 1971) । ତାରାପଦ ମୁଖୋପାଧ୍ୟାୟ ପାଣ୍ଡୁଲିପିଟି ଭଲ ଭାବରେ ପରୀକ୍ଷା କରିବାର ସୁଯୋଗ ପାଇଥିଲେ ମଧ୍ୟ ଓଡ଼ିଆ ବ୍ୟାକରଣଟି ଭଲ ଭାବରେ ପରୀକ୍ଷା କରି ନ ଥିଲେ ଓ ତା'ର ଶେଷରେ ଥିବା ସଂସ୍କୃତ ପୁଷ୍ପିକାଟି ଆଦୌ ଦେଖି ନ ଥିଲେ । ତେଣୁ ମୃତ୍ୟୁଞ୍ଜୟ ଓଡ଼ିଆ ବ୍ୟାକରଣର ରଚୟିତା ଥିଲେ ବୋଲି ସେ ଗ୍ରହଣ କରି ନେଇଛନ୍ତି । କିନ୍ତୁ ପୁଷ୍ପିକାଟିରୁ ଜଣାଯାଏ ଓଡ଼ିଆ ବ୍ୟାକରଣର ପ୍ରକୃତ ରଚୟିତା ହେଉଛନ୍ତି ଗଦାଧର ।

୧୯୭୪ ଖ୍ରୀଷ୍ଟାବ୍ଦରେ କ୍ୱାୟମ୍ (M.A. Qayyum) ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପିଏଚ୍.ଡ଼ି Ph.D.) ଉପାଧି ପାଇଁ ଦାଖଲ କରିଥିବା ଏକ ଗବେଷଣାତ୍ମକ ସନ୍ଦର୍ଭରେ ଏହି ପାଣ୍ଡୁଲିପି ଅନ୍ତର୍ଗତ ବଙ୍ଗଳା ଓ ଓଡ଼ିଆ ବ୍ୟାକରଣ ଦ୍ୱୟ ସମ୍ପର୍କରେ ଆଲୋଚନା କରି ନିମ୍ନୋକ୍ତ

ସିଦ୍ଧାନ୍ତରେ ପହଞ୍ଚିଛନ୍ତି -

(କ) ଇଂରାଜୀ ଭାଷାରେ ଲିଖିତ ଓ ୧୮୦୩ ଖ୍ରୀଷ୍ଟାବ୍ଦରେ କେରୀଙ୍କ ନାମରେ ପ୍ରକାଶିତ ବଙ୍ଗଳା ଭାଷାର ବ୍ୟାକରଣ ରଚନାକୁ ସୁଗମ କରିବାପାଇଁ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ବଙ୍ଗଳା ଭାଷାରେ ଏକ ବ୍ୟାକରଣ କରିଥିଲେ, ଅନୁମାନ କରାଯାଇପାରେ ।

(ଖ) ସେହିପରି ଲେଡ଼େନ (John Leyden) ସାହେବଙ୍କର ଇଂରାଜୀ ଭାଷାରେ ଓଡ଼ିଆ ଭାଷାର ଏକ ବ୍ୟାକରଣ ରଚନା ଉଦ୍ୟମକୁ ସହଜ ଓ ସୁଗମ କରିବାପାଇଁ ତାଙ୍କ ନିର୍ଦ୍ଦେଶରେ ଗଦାଧର ପ୍ରଥମେ ପୂର୍ବୋକ୍ତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କ ବଙ୍ଗଳା ବ୍ୟାକରଣ (ଯାହା ୧୮୦୩ରେ କେରୀଙ୍କ ନାମରେ ପ୍ରକାଶିତ ବଙ୍ଗଳା ବ୍ୟାକରଣ ରଚନାକୁ ସୁଗମ କରିଥିଲା)ର ଏକ ପ୍ରତିଲିପି (transcript) ପ୍ରସ୍ତୁତ କରିଥିଲେ ଓ ଏହି ପ୍ରତିଲିପି ହେଉଛି India Ofiice Library ପାଣ୍ଡୁଲିପିର ପ୍ରଥମ ଭାଗର ପ୍ରଥମ ଉପ-ବିଭାଗ ।

(ଗ) ଗଦାଧର ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କ ବଙ୍ଗଳା ବ୍ୟାକରଣର ପ୍ରତିଲିପି ପ୍ରସ୍ତୁତ କରିବା ପରେ ମୁଖ୍ୟତଃ ତାକୁ ଅବଲମ୍ବନ କରି (ସଂକ୍ଷେପରେ ଓଡ଼ିଆ ଭାଷାର ଅନୁବାଦ କରି ଓ ସେଥିରେ ବଙ୍ଗଳା ପରିବର୍ତ୍ତେ ଓଡ଼ିଆ ଭାଷାରେ ଉଦାହରଣମାନ ଦେଇ) ଏକ ଓଡ଼ିଆ ବ୍ୟାକରଣ ରଚନା କରିଥିଲେ ।

(Qayyum, M.A. 1974) cap. X ଦ୍ରଷ୍ଟବ୍ୟ ।)

ଓଡ଼ିଆ ବ୍ୟାକରଣ ଶେଷରେ ଥିବା ପୁଷ୍ପିକାର ଭୁଲ ପାଠ ଉପରେ ନିର୍ଭର କରିଥିବାରୁ ଓ ପୂର୍ବୋକ୍ତ ପାଣ୍ଡୁଲିପିଟି "ଲେଡ଼େନ ସଂଗ୍ରହ"ର ଅନ୍ତର୍ଗତ ହୋଇଥିବାରୁ ତଥା ଆଉ କେତେକ ବିଷୟ ବିଚାରକୁ ନେଇ ନ ଥିବାରୁ କ୍ୱାୟମ୍ କେତେକ ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଓ ଜନ୍ ଲେଡ଼େନ୍‌ଙ୍କୁ ଏହି ଓଡ଼ିଆ ବ୍ୟାକରଣ ସହ ସମ୍ପୃକ୍ତ କରିଛନ୍ତି । ସେ ପୁଷ୍ପିକାରେ ଥିବା "ଭର୍ଲୈଲ ସାହେବ" ସ୍ଥଳରେ "ଲେଡେନ୍ ସାହେବ" ବୋଲି ପାଠ କରିଅଛନ୍ତି ।

ପୁନଶ୍ଚ India Office Libraryରେ ସଂରକ୍ଷିତ ପାଣ୍ଡୁଲିପିର ପ୍ରଥମ ଭାଗର ପ୍ରଥମ ଉପବିଭାଗ ବଙ୍ଗଳା ବ୍ୟାକରଣକୁ ଗଦାଧର ପ୍ରସ୍ତୁତ କରିଥିବାର ସମ୍ଭାବନା ନାହିଁ (ଦ୍ରଷ୍ଟବ୍ୟ Dash, G.N. 1976, P.63) । ଶେଷରେ ଏହି ବଙ୍ଗଳା ବ୍ୟାକରଣର ଆଦର୍ଶରେ, ଓଡ଼ିଆ ବ୍ୟାକରଣଟି ଲେଖାଯାଇ ଥିବାର ସମ୍ଭାବନାକୁ ସମ୍ପୂର୍ଣ୍ଣ ଭାବରେ ବାଦ୍ ଦିଆଯାଇ ନ ପାରିଲେ ହେଁ ଏହାକୁ ଏକ ସ୍ୱତନ୍ତ୍ର ଓ ସ୍ୱୟଂସମ୍ପୂର୍ଣ୍ଣ ଓଡ଼ିଆ ବ୍ୟାକରଣର ସମ୍ମାନ ଦିଆଯିବା ଉଚିତ୍ । କାରଣ ଏଥିରେ ଓଡ଼ିଆ ଭାଷାର ବିଶେଷତ୍ୱ ଓ ବଙ୍ଗଳା ଭାଷାଠାରୁ ତା'ର ପାର୍ଥକ୍ୟ ସମ୍ପର୍କୀୟ ସଚେତନତାର ପ୍ରତିଫଳନ ଘଟିଅଛି ଯଥା ଏଥିରେ, ନାନୀଲୋ, ଖୁଡ଼ୀଲୋ, କୁଟା କେରାୟ ଓ ଗଜପତି ପ୍ରଭୃତି ଉଦାହରଣ ଦିଆଯାଇଛି ।

ଏଇ ବ୍ୟାକରଣରେ ବ୍ୟବହୃତ ଭାଷା ଭିତ୍ତିରେ ଅନୁମାନ କରାଯାଇପାରେ ଏହାର

ଲେଖକ ଗଦାଧର ମେଦିନୀପୁରର ଅଧିବାସୀ ଥିଲେ ।

[ଟୀପ୍ପଣୀ- ୧୮୧୧ ଖ୍ରୀଷ୍ଟାବ୍ଦରେ କେରୀ (Carey) ଡକ୍ଟର ରାଇଲାଣ୍ଡଙ୍କ ନିକଟକୁ ଏକ ଚିଠିରେ ସଂସ୍କୃତରୁ ସୃଷ୍ଟ ଭାଷାଗୁଡ଼ିକର ଏକ ସାର୍ବଜନୀନ କୋଷଗ୍ରନ୍ଥ (Universal dictionary of the oriental languages, derived from the Sanscrit) ସଙ୍କଳନ କରୁଥିବାର ଉଲ୍ଲେଖ କରିଥିଲେ (ଦ୍ରଷ୍ଟବ୍ୟ Das, Sajanikanta, 1975 P.114) । ଏଥିରେ ସ୍ଥାନ ପାଇଥିବା ୧୩ ଗୋଟି ଭାଷା ମଧ୍ୟରେ ଓଡ଼ିଆ ବା ଉତ୍କଳ ଭାଷା ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଏହି ପୁସ୍ତକର ପାଣ୍ଡୁଲିପିର ବହୁ ଅଂଶ ପୂର୍ବୋକ୍ତ ଶ୍ରୀରାମପୁର ଅଗ୍ନିକାଣ୍ଡରେ ଧ୍ୱଂସ ହୋଇ ଯାଇଥିଲା । ଏହାର କେତେକ ଅଂଶ ଶ୍ରୀରାମପୁର କଲେଜର ବୋର୍ଡ଼ରୁମ୍ (Board Room)ରେ Polyglot Vocabulary ନାମରେ ସଂରକ୍ଷିତ ଅଛି (ଦ୍ରଷ୍ଟବ୍ୟ, Ibid, pp. 115, 142, 285) ।

୧୮୧୬ ଖ୍ରୀଷ୍ଟାବ୍ଦରେ କେରୀ, ମାର୍ଶମାନ ଓ ୱାର୍ଡ଼ (W. Ward) ଏହି ରିପୋର୍ଟରେ ୨୦ରୁ ଅଧିକ ଭାରତୀୟ ଭାଷା ସଂସ୍କୃତରୁ ଉତ୍ପନ୍ନ ବୋଲି ପ୍ରମାଣ କରିବା ଉଦ୍ଦେଶ୍ୟରେ ୩୪ ଗୋଟି ଭାରତୀୟ ଭାଷାର ନମୁନା ସଂଗ୍ରହ କରିଥିଲେ । ପ୍ରତ୍ୟେକଟି ଭାଷାରେ 'ହେ'-(to be) ଧାତୁର ବର୍ତ୍ତମାନ ଓ ଅତୀତ କାଳର ରୂପ ଓ ଈଶ୍ୱରଙ୍କର ପ୍ରାର୍ଥନା (Lord's Prayer) ଏହି ନମୁନାର ଅନ୍ତର୍ଗତ ଥିଲା । ପ୍ରତ୍ୟେକ ନମୁନାର ସ୍ୱତନ୍ତ୍ର ଭାବରେ ପଦାନ୍ୱୟ କରାଯାଇଥିଲା । ଏହି ୩୪ ଗୋଟି ଭାରତୀୟ ଭାଷା ମଧ୍ୟରେ ଓଡ଼ିଆ (Orissa ବା Ootkal) ଭାଷା ଅନ୍ତର୍ଭୁକ୍ତ ଥିଲା । (ଦ୍ରଷ୍ଟବ୍ୟ, Grierson, I, I, pp. 12.13) ।

କିନ୍ତୁ ଏ. ଆପଜନଙ୍କ ଇଂରାଜୀ-ବାଙ୍ଗାଲୀ ବୋକେବିଲରୀ ପରି ଏସବୁକୁ ଓଡ଼ିଆ ଭାଷା ଚର୍ଚ୍ଚାର ଉଦ୍ୟମ ବୋଲି ଗ୍ରହଣ କରିବା ଯୁକ୍ତିସଙ୍ଗତ ହେବ ନାହିଁ ।]



# ୪୭

# ଭାଷା ଓ ଓଡ଼ିଆ ଭାଷାତତ୍ତ୍ୱ

ବିଜୟଲକ୍ଷ୍ମୀ ମହାନ୍ତି

ମଣିଷର ନିତିଦିନିଆ ଜୀବନରେ ଭାଷାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, କାରଣ ମଣିଷ ବିନା ଭାଷାର ଅସ୍ତିତ୍ୱ ହିଁ କଳ୍ପନା କରାଯାଏ ନାହିଁ । ଭାଷା ନିତିଦିନିଆ ଓ ମଣିଷସର୍ବସ୍ୱ ହେଲେ ମଧ ସାଧାରଣ ଲୋକେ ଭାଷା ସମ୍ବନ୍ଧରେ କ୍ୱଚିତ କିଛି ଚିନ୍ତା କରିଥାନ୍ତି । ଆମେରିକାର ବିଶିଷ୍ଟ ଭାଷାବିତ୍ ଏଡ୍‌ୱାର୍ଡ୍ ସାପିର କହନ୍ତି, "ଭାଷା ମଣିଷ ଜୀବନରେ ଏମିତି ଏକ ନିତିଦିନିଆ ଜିନଷ ଯେ, ଏହାକୁ ବିଷୟବସ୍ତୁ କରି ଆମେ କ୍ୱଚିତ୍ କିଛି ଭାବିଥାଉ ।" ତଥାପି ଭାଷା ସମ୍ବନ୍ଧରେ ଆଗ୍ରହୀ ଭାଷାବିତ୍ ମନରେ ସ୍ୱତଃ ନାନାପ୍ରକାର ପ୍ରଶ୍ନ ଉଠେ, ଯଥା– ଭାଷା କିପରି ସୃଷ୍ଟି ହେଲା, ଭାଷାର ଗଠନ କିପରି, ଲୋକେ କାହିଁକି ବିଭିନ୍ନ ଭାଷାରେ କଥା କହନ୍ତି, ଭାଷାରେ ବିଭିନ୍ନ ଅର୍ଥ କାହିଁକି ପ୍ରକାଶ ପାଏ, ଭାଷା ବିନା ଚିନ୍ତା କରିବା ସମ୍ଭବ କି, ପୃଥିବୀରେ କେତେ ଭାଷା ଅଛି, ପୃଥିବୀର ସବୁଠାରୁ ପ୍ରାଚୀନ ଭାଷା କେଉଁଟି, ପୃଥିବୀର ସବୁ ଭାଷାରେ ସାହିତ୍ୟ ଅଛିକି, ପୃଥିବୀରେ ଏକ କୃତ୍ରିମ ଭାଷା ପ୍ରଚଳନ ସମ୍ଭବ କି ପ୍ରଭୃତିଠାରୁ ଆରମ୍ଭ କରି ଭାଷା ସମ୍ବନ୍ଧୀୟ ଏହିପରି ବହୁ ପ୍ରଶ୍ନ ।

ତେବେ ଭାବ ପ୍ରକାଶ ଓ ଭାବ ସଞ୍ଚାର କ୍ଷେତ୍ରରେ ମଣିଷ କହୁଥିବା ଭାଷା ହିଁ ମଣିଷକୁ ପୃଥିବୀର ଅନ୍ୟାନ୍ୟ ଇତର ପ୍ରାଣୀମାନଙ୍କଠାରୁ ପୃଥକ କରି ସ୍ୱତନ୍ତ୍ର ସ୍ଥାନ ଦେଇଥାଏ । ସି.ଏଫ୍.ହକେଟ୍‌ଙ୍କ ମତରେ ମଣିଷ କହୁଥିବା ଭାଷାର ସର୍ବଦା ଦୁଇଟି ଗଠନ ସ୍ତର ଥାଏ ଯାହା ଇତର ପ୍ରାଣୀମାନଙ୍କର ଡାକ ବା ପ୍ରକାଶ ଧ୍ୱନିରେ ନ ଥାଏ । ଏହି ଦୁଇଟି ସ୍ତର ମଧ୍ୟରୁ ଗୋଟିଏ ହେଲା ଧ୍ୱନି ସ୍ତର ଓ ଅନ୍ୟଟି ହେଉଛି ତା'ର ଶବ୍ଦ ଗଠନ ସ୍ତର । ଇତର ପ୍ରାଣୀଙ୍କର ଭାବ ବିନିମୟର ମାଧ୍ୟମ କେବଳ କେତୋଟି ସୀମିତ ସୂଚନା ସାହାଯ୍ୟରେ ପ୍ରକାଶିତ ହୋଇଥାଏ । କିନ୍ତୁ ମଣିଷର ଭାଷାରେ କୁହାଯାଉଥିବା କଥାକୁ ଅନୁଶୀଳନ କଲେ କେତେକ କ୍ଷୁଦ୍ରତମ ଏକକରେ ପହଞ୍ଚି ହୁଏ । ଭାଷାର କେତେକ ସୀମିତ ସଙ୍କେତ ସାହାଯ୍ୟରେ ମଧ ବହୁ ଅର୍ଥ ପ୍ରକାଶ କରିହୁଏ ।

ଭାଷା ସୃଜନଶୀଳ ଏବଂ ଇଚ୍ଛାକୃତ । ଏହା ସୃଜନଶୀଳ ବୋଲି ବାରମ୍ବାର

ପୁନରାବୃତ୍ତି ହେଉଥିଲେ ମଧ୍ୟ ଏହାକୁ ଚିର ନୂତନ ରୂପରେ ଆମେ ପ୍ରୟୋଗ କରିପାରୁ । ଭାଷା ଇଚ୍ଛାକୃତ ହୋଇଥିବାରୁ ପ୍ରତ୍ୟେକ ଭାଷାର ଅଲଗା ଅଲଗା ପ୍ରୟୋଗ ରୀତି ରହିଛି । ସେଥିପାଇଁ ଆମେ ଓଡ଼ିଆରେ 'କୁକୁର' କହିଲାବେଳେ ବଙ୍ଗଳାରେ ତାକୁ 'କୁକୁର୍', ହିନ୍ଦୀରେ 'କୁତ୍ତା', ତେଲୁଗୁରେ 'କୁକମା', ତାମିଲରେ 'ନାୟ', ଇଂରାଜୀରେ 'ଡଗ', ଋଷିୟାନରେ 'ସୋବକା' ଓ ଜର୍ମାନୀରେ 'ହୁଣ୍ଡ' କହୁଥିବା ଦେଖାଯାଏ । ଭାଷାର ସଂଜ୍ଞା ନିରୂପଣ କରିବାକୁ ଯାଇ ସାପିର କହନ୍ତି, "ଭାଷା ସମ୍ପୂର୍ଣ୍ଣ ମଣିଷ ସୃଷ୍ଟ ଓ ଏହା ମଣିଷର ଭାବ ଆବେଗ ତଥା ମନୋଭାବର ପରିପ୍ରକାଶ ପାଇଁ ଏକ ସ୍ୱେଚ୍ଛାକୃତ ପ୍ରକ୍ରିୟା, ଯାହାକୁ କେତେକ ଆବଶ୍ୟକ ସଙ୍କେତ ସାହାଯ୍ୟରେ ପ୍ରକାଶ କରାଯାଇଥାଏ ।" ଏହାର ଉଦାହରଣ ଦେଇ ସେ କହନ୍ତି ଯେ ଶିଶୁଟିଏ ଜନ୍ମହେବା ପରେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ନିଜର ଜନ୍ମଗତ ପ୍ରକ୍ରିୟା, ଯେପରି ପେଟେଇବା, ଗୁରୁଣ୍ଡିବା, ବସିବା ଠିଆ ହେବା ଓ ଚାଲିବା ପ୍ରଭୃତି କାର୍ଯ୍ୟକଳାପଗୁଡ଼ିକୁ ସ୍ୱତଃପ୍ରବୃତ୍ତ ହୋଇ କ୍ରମଶଃ ଚେଷ୍ଟାକରି ଆୟତ୍ତ କରେ, ସେପରି ସେ ତା'ର ଭାଷାକୁ କିନ୍ତୁ ସ୍ୱତଃପ୍ରବୃତ୍ତ ଭାବରେ ଆୟତ୍ତ କରିପାରେ ନାହିଁ । ଯଦିଓ କଥା କହିବା ତା' ପାଇଁ ପୂର୍ବ ନିର୍ଦ୍ଧାରିତ ଓ କଥା କହିବା ପାଇଁ ସେ ଆବଶ୍ୟକ ଶାରୀରିକ ଭାଷା-ଯନ୍ତ୍ର ସହିତ ଜନ୍ମଲାଭ କରିଥାଏ । ଭାଷାକୁ ଆୟତ୍ତ କରିବା ପାଇଁ ଓ ଭାଷା ଜରିଆରେ ନିଜର ଭାବକୁ ସ୍ପଷ୍ଟ କରିବା ପାଇଁ ଶିଶୁକୁ ତା'ର ପରିବେଶ ତଥା ସାମାଜିକ ପରିବେଷ୍ଟନୀ ଉପରେ ମୁଖ୍ୟତଃ ନିର୍ଭର କରିବାକୁ ପଡ଼େ । ଏଥି ସହିତ ଅବଶ୍ୟ ତା'ର ଭାଷା ଆହରଣ କରିପାରିବାର କ୍ଷମତାକୁ ବିଚାରକୁ ନେବାକୁ ହୁଏ ଏବଂ ନିଖୁଣ ଭାଷା-ଯନ୍ତ୍ର ସହିତ ତାକୁ ଜନ୍ମଲାଭ କରିବାକୁ ପଡ଼ିଥାଏ ।

ଭାଷା ସ୍ଥିର ନୁହେଁ, ଏହା ଗତିଶୀଳ । ଭାଷା ପରିବର୍ତ୍ତନ ହିଁ ଭାଷାକୁ ଗତିଶୀଳ କରେ । ବହୁ ବିଭିନ୍ନ କାରଣରୁ ଭାଷାରେ ପରିବର୍ତ୍ତନ ହୁଏ । ଭାଷାରେ ପରିବର୍ତ୍ତନ କିପରି ହୁଏ ତାହାର ଏକ ଉଦାହରଣ ଦେଇ ଭାଷାବିତ୍ ଗୋଲୋକ ଧଳ ଲେଖିଛନ୍ତି, "କାଳକ୍ରମେ ଭାଷା କେତେ ପରିବର୍ତ୍ତିତ ହୋଇଯାଏ ଅଳ୍ପ କେତୋଟି ଶବ୍ଦ ନେଇ ତାହା ଦେଖାଇ ଦିଆଯାଇପାରେ । ସଂସ୍କୃତର 'ଅପି' ପ୍ରାକୃତ କାଳରେ 'ଅବି' ମାଧ୍ୟମରେ ଆଧୁନିକ 'ବି'ରେ ପରିଣତ ହୋଇଛି । ବୌଦ୍ଧଗାନ-ଦୋହାର 'ଣିଅ', 'ଣାଣା' ଶବ୍ଦ ବର୍ତ୍ତମାନ ଓଡ଼ିଆରେ ବ୍ୟବହୃତ ନ ହୋଇ ତା ସ୍ଥାନରେ 'ନିଜ' ଓ 'ନାନା' ଶବ୍ଦ ବ୍ୟବହୃତ ।" ଭାଷାର ଏହି ପରିବର୍ତ୍ତନ ଯାଦୃଚ୍ଛିକ ଭାବରେ ନ ହୋଇ ବିଶିଷ୍ଟ ପଦ୍ଧତି ଅନୁସରଣ କରି ହୋଇଥାଏ ବୋଲି ଭାଷାବିଦ୍‌ମାନେ ମତପୋଷଣ କରନ୍ତି ।

ମଣିଷର ଭାଷା ବହୁ ପ୍ରାଚୀନ ଏବଂ ଏହା ପ୍ରଥମରେ କଥିତ ରୂପରେ ହିଁ ରହିଥିବା ଅନୁମାନ କରାଯାଏ । ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା କରୁଥିବା ଭାଷାବିତ୍‌ମାନେ ଭାଷାର ଲିଖିତ ରୂପରେ ଆରମ୍ଭ ସମୟକୁ ପ୍ରାୟ ଖ୍ରୀ.ପୂ.୩୫୦୦ରୁ ଖ୍ରୀ.ପୂ. ୨୯୦୦ ବର୍ଷ ମଧ୍ୟରେ ସ୍ଥିର କରିଥା'ନ୍ତି । ଭାଷାର ବୟସକୁ ମଧ୍ୟ ସେମାନେ ହିସାବ କରି ଖ୍ରୀ.ପୂ. ୬୫୦୦

ବର୍ଷ ମଧ୍ୟରେ ଅବସ୍ଥାପିତ କରିଥା'ନ୍ତି । ସେମାନଙ୍କ ମତରେ ଆରମ୍ଭରେ ମଣିଷ ସମାଜ ହୁଏତ କ୍ଷୁଦ୍ର କ୍ଷୁଦ୍ର ଦଳରେ ବସବାସ କରୁଥିଲେ ଏବଂ ସେମାନଙ୍କ ଭିତରେ ଭାବର ଆଦାନପ୍ରଦାନ ନିମନ୍ତେ ସେମାନେ ହୁଏତ ସୀମିତ ସଂଖ୍ୟକ ଭାଷା-ସଙ୍କେତ ବ୍ୟବହାର କରୁଥିଲେ । କିନ୍ତୁ କାଳକ୍ରମେ ବିଭିନ୍ନ ଦଳ ପରସ୍ପରର ସମ୍ପର୍କରେ ଆସିବା ପରେ ଓ ସେମାନଙ୍କ ଭିତରେ ସମ୍ପର୍କ ଓ ସହାବସ୍ଥାନ ସ୍ଥାପିତ ହେବାପରେ ସେମାନଙ୍କର ଜୀବନ ଧାରଣର ପଦ୍ଧତି ଅଧିକ ଜଟିଳ ହେଲା । ଭାବପ୍ରକାଶ ନିମନ୍ତେ ସେମାନେ ହୁଏତ ଅଧିକ ଜଟିଳ ଭାଷା-ସଙ୍କେତର ଆବଶ୍ୟକତା ଅନୁଭବ କଲେ । ତେଣୁ ଅନୁମାନ କରାଯାଇପାରେ ଯେ ମଣିଷ ସମାଜରେ ଆରମ୍ଭବେଳେ ଭାଷା-ସଙ୍କେତଗୁଡ଼ିକ କେବଳ ଦୃଶ୍ୟ-ସଙ୍କେତ ହୋଇ ରହିଥିବ ଏବଂ କାଳକ୍ରମେ ଯେତେବେଳେ ଜଟିଳ ଭାବପ୍ରକାଶ ପାଇଁ ଏଗୁଡ଼ିକ ଯଥେଷ୍ଟ ହୋଇ ନ ଥିବ, ସେତେବେଳେ ମଣିଷର ମୁଖ-ନିଃସୃତ ଧ୍ୱନିଗୁଡ଼ିକୁ ଏହି ଉଦ୍ଦେଶ୍ୟରେ ବ୍ୟବହାର କରିବା ପାଇଁ ଉଦ୍ୟମ ହୋଇଥିବ ।

ଭାଷାର ଉତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ଭାବରେ କଳ୍ପନା କରାଯାଇଥିବା ଦେଖାଯାଏ । କେତେକ ମନେ କରନ୍ତି ଯେ, ଭାଷା ହେଉଛି ଈଶ୍ୱରଙ୍କ ଦାନ, ଈଶ୍ୱର ଇଚ୍ଛା କଲେ ଭାଷା ଜନ୍ମଲାଭ କଲୁ ଏବଂ ଭାଷା ଜନ୍ମ ହେଲା । ଇଜିପ୍ଟର ଦାର୍ଶନିକମାନଙ୍କ ପାଇଁ ଭଗବାନ ଥଥ ମଣିଷକୁ କହିବା ଓ ଲେଖିବାର ଶକ୍ତି ପ୍ରଦାନ କରିଥିଲେ ଏବଂ ବେବିଲୋନିଆନଙ୍କ ମତରେ ଭଗବାନ ନାବୁ ମଣିଷକୁ ଏହି ଶକ୍ତି ଦେଇଥିଲେ । ଚୀନ ଦେଶର ଦାର୍ଶନିକମାନେ ସ୍ୱର୍ଗରୁ ପ୍ରେରିତ ଏକ କଚ୍ଛପର ପିଠିରେ ଚିହ୍ନିତ ଥିବା କିଛି ଲେଖାରୁ ଭାଷାର ଲିଖିତ ରୂପ ସୃଷ୍ଟି ହୋଇଥିବା ବିଶ୍ୱାସ କରନ୍ତି । ହିନ୍ଦୁମାନେ ମନେକରନ୍ତି ଯେ, ଭାଷା ମଣିଷ ପାଇଁ ବ୍ରହ୍ମାଙ୍କର ଦାନ । ସକ୍ରେଟିସ୍ ଭାବୁଥିଲେ ଯେ ପ୍ରାକୃତିକ ଧ୍ୱନ୍ୟାନୁକରଣ ହିଁ ଭାଷା ସୃଷ୍ଟିର ମୂଳ । କିନ୍ତୁ ପ୍ରକୃତରେ ବିଭିନ୍ନ ଭାଷାରେ ବିଭିନ୍ନ ଭାବରେ ଧ୍ୱନ୍ୟାକରଣ କରାଯାଏ । ପ୍ଲାଟୋ'ଭାବୁଥିଲେ ପୃଥିବୀରେ ଏକ ସର୍ବସମ୍ପୂର୍ଣ୍ଣ ଭାଷା ଅଛି, ଯାହା ମଣିଷକୁ ହିଁ ଆବିଷ୍କାର କରିବାକୁ ପଡ଼ିବ । ପୁଣି ବି କେହି ମନେକରୁଥିଲେ ଯେ, ପୃଥିବୀରେ ଥିବା ବାହ୍ୟବସ୍ତୁକୁ ପ୍ରକାଶ କରିବା ପାଇଁ ମଣିଷ ଭିତରେ ଥିବା ସହଜାତ ପ୍ରବୃତ୍ତିରୁ ହିଁ ଭାଷାର ସୃଷ୍ଟି । କିନ୍ତୁ ଭାଷାର ଏପରି ଇତିହାସକୁ ଅବଲମ୍ବନ କରି ଭାଷାସୃଷ୍ଟିର ମୂଳ ଜାଣିବା ଆଦୌ ସମ୍ଭବ ନୁହେଁ ।

ଭାଷାର ଉତ୍ପତ୍ତି ଯେବେ ଆଉ ଯେପରି ଭାବେ ହେଉଥାଉନା କାହିଁକି, ଭାଷା ଯେ କେବଳ ଇତିହାସର ବିଷୟବସ୍ତୁ ନୁହଁ ଏବଂ ଏହା ମନୁଷ୍ୟର ଇନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷ ଅନୁଭୂତିର ବିଷୟ, ଏ କଥା ସମସ୍ତେ ସ୍ୱୀକାର କରିବେ । ସମାଜ ଭିତରେ ବାସ କରୁଥିବା ମଣିଷମାନଙ୍କର ସମ୍ପର୍କ ଯେପରି ଜଟିଳ, ଭାଷା ମଧ୍ୟ ସେହିପରି ଏକ ଜଟିଳ ବିଷୟ ।

ଭାଷାବିତ୍‌ମାନେ ସ୍ୱୀକାର କରନ୍ତି ଯେ, ଭାଷା ଏକ ଜଟିଳ ପଦ୍ଧତି । ଏହି ଜଟିଳ ପଦ୍ଧତିର ଦୁଇଟି ସ୍ତର ଅଛି । ଗୋଟିଏ ହେଉଛି, ଏହାର ସାର୍ବଜନୀନ ସାଧାରଣ ସ୍ତର - ଏହା ଆଦର୍ଶ ସ୍ଥାନୀୟ । ଏହା ହେଉଛି ଭାଷାର ସ୍ଥିର, ସ୍ୱୟଂସମ୍ପୂର୍ଣ୍ଣ ଓ ସର୍ବକ୍ଷମ ସ୍ତର, ଯାହାକୁ

ଓଡ଼ିଆରେ କୁହାଯାଇପାରେ 'ଭାଷା', ଇଂରାଜୀରେ କୁହାଯାଇଛି 'ଲାଙ୍ଗ୍' । ଅନ୍ୟଟି ହେଉଛି ଭାଷାର ପରିବର୍ତ୍ତନଶୀଳ ସ୍ତର, ଯାହା ଭାଷାକୁ ଗତିଶୀଳ କରି ସମ୍ପାଦନକ୍ଷମ କରିଥାଏ, ଯାହା ସାହାଯ୍ୟରେ ପ୍ରତ୍ୟେକ ଲୋକ ଅନ୍ୟ ଲୋକ ସାଙ୍ଗରେ କଥାବାର୍ତ୍ତା କରିପାରେ । ଏହାକୁ ଓଡ଼ିଆରେ କୁହାଯାଇପାରେ 'କଥା', ଇଂରାଜୀରେ କୁହାଯାଇଛି 'ପାରୋଲ' । ଭାରତୀୟ ପରମ୍ପରାରେ ଭାଷାର ଦୁଇ ନ୍ୟୂନତମ ଏକକ ହେଉଛି ଧ୍ୱନି ଓ ସ୍ଫୋଟ । ଭାଷାପଦ୍ଧତିରେ ଭାଷା ଓ କଥା ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଇବାକୁ ଯାଇ ଡକ୍ଟର ବିଜୟପ୍ରସାଦ ମହାପାତ୍ର କହନ୍ତି, 'ସ୍ଥୂଳରେ କଥା ହେଉଛି ଧ୍ୱନିସର୍ବସ୍ୱ, ଯାହା ପ୍ରାକୃତ, ଅନିତ୍ୟ, ବ୍ୟକ୍ତ ଓ ବ୍ୟଞ୍ଜିତ, କିନ୍ତୁ ଭାଷା ହେଉଛି ସ୍ଫୋଟସର୍ବସ୍ୱ ଯାହା ଅପ୍ରାକୃତ, ନିତ୍ୟ, ଅବ୍ୟକ୍ତ, ବ୍ୟଞ୍ଜକ ଓ ଅବିକାରୀ । ଭାଷାତତ୍ତ୍ୱ କ୍ଷେତ୍ରରେ ଭାରତୀୟ ବ୍ୟାକରଣକାରମାନଙ୍କର ଶବ୍ଦ-ସ୍ଫୋଟ ତଥ୍ୟ ପ୍ରକାଶନ ଏହି ବିଜ୍ଞାନକୁ ସେମାନଙ୍କର ସର୍ବଶ୍ରେଷ୍ଠ ଦାନ । ଏହି ଧାରଣା ପୃଥିବୀର ସବୁପ୍ରକାର ଅତ୍ୟାଧୁନିକ ଭାଷାତାତ୍ତ୍ୱିକ ଚିନ୍ତାଧାରାର ଏକମାତ୍ର ପୃଷ୍ଠଭୂମି ହୋଇରହିଛି । ମୋଟ ଉପରେ କହିବାକୁ ଗଲେ ଭାଷା ଓ କଥା ଉଭୟକୁ ନେଇ ହିଁ ପୃଥିବୀର ପ୍ରତ୍ୟେକ ଭାଷା ଗଠିତ ।

କଥିତ ଓ ଲିଖିତ ଭାବରେ ଭାଷାର ଦୁଇଟି ପ୍ରଧାନ ପ୍ରକାଶ୍ୟ ରୂପ ଅଛି । ଭାଷା ପ୍ରୟୋଗ କ୍ଷେତ୍ରରେ ଦୁଇଟିଯାକ ରୂପର ବିଶେଷ ଆବଶ୍ୟକତା ଓ ପ୍ରଚଳନ ରହିଛି । ଭାଷାଗୁଡ଼ିକର କଥିତ ଓ ଲିଖିତ ରୂପ ତଥା ଧ୍ୱନି ଓ ଅକ୍ଷର ମଧ୍ୟରେ କେତେକ ସ୍ଥଳରେ ସମ ଅନୁପାତରେ ସମାନତା ପରିଲକ୍ଷିତ ହେଲେ ମଧ୍ୟ ଅଧିକାଂଶ ସ୍ଥଳରେ ଏହି ସମାନତା ସମାନୁପାତରେ ରହି ନଥାଏ । ଉଦାହରଣ ସ୍ୱରୂପ, ଓଡ଼ିଆରେ କଥା କହିଲାବେଳେ ଆମେ କହୁ ଭୁଲ୍, ରମେଶ୍, ନମସ୍କାର୍, ସ୍କୁଲ୍, କିନ୍ତୁ ଲେଖିଲା ବେଳେ ଲେଖୁ ଭୁଲ, ରମେଶ ନମସ୍କାର, ସ୍କୁଲ ଇତ୍ୟାଦି । ସେହିପରି ବହୁଭାଷାର ସ୍ୱତନ୍ତ୍ର ଲିଖନ ରୂପ ତଥା ଲିପିଥିବା ବେଳେ ଏକାଧିକ ଭାଷା ପାଇଁ ଗୋଟିଏ ଲିପିର ପ୍ରଚଳନ ମଧ୍ୟ ରହିଥାଏ । ବଙ୍ଗଳା, ଅସମିୟା ଓ ମଣିପୁରୀ ଭାଷା-ଲିପି ଗୋଟିଏ; ହିନ୍ଦୀ, ମରାଠୀ ଭାଷାର ଲିପି ଗୋଟିଏ; ପୁଣି ଏକାଧିକ ଇଉରୋପୀୟ ଭାଷା ରୋମାନ୍ ଲିପି ଗ୍ରହଣ କରିଛନ୍ତି । ଓଡ଼ିଆ ଭାଷାର ଲିପିକୁ ବର୍ତ୍ତମାନ କୁଭି ପରି କେତେକ ଆଦିବାସୀ ଭାଷାର ଲିପିପାଇଁ ଗ୍ରହଣ କରାଯାଇଛି ।

ଭାଷାକୁ ପ୍ରକାଶ କରିବାର କ୍ଷମତା ଯେପରି ମଣିଷର ଅଛି, ତାହାକୁ ପ୍ରୟୋଗ କରିବାର କ୍ଷମତା ଓ ଦକ୍ଷତା ମଧ୍ୟ ତାହାର ସେହିପରି ଅଛି । ଭାଷା ପ୍ରୟୋଗ କରିପାରିବାର କ୍ଷମତା ହିଁ ମଣିଷକୁ ଠିକ୍ ଓ ଭୁଲ ଭାଷା ପ୍ରୟୋଗ ତଥା ବ୍ୟାକରଣିକ ଓ ଅବ୍ୟାକଣିକ ଭାଷା ପ୍ରୟୋଗର ପାର୍ଥକ୍ୟକୁ ସୂଚାଇ ଦେଇଥାଏ । ଭାଷା ପ୍ରୟୋଗ କ୍ଷମତା ଏବଂ ଭାଷା ସଚେତନଶୀଳତା ମଣିଷକୁ ବିଭିନ୍ନାର୍ଥକ କଥା ମଧ୍ୟରୁ ଉପଯୁକ୍ତ ଅର୍ଥଟିକୁ ବାଛିନେଇ କ୍ଷେତ୍ର ବିଶେଷରେ ଠିକ୍ କଥାଟିକୁ ଠିକ୍ ଭାବରେ କହିବାକୁ ସକ୍ଷମ କରାଇଥାଏ । ଜଣେ ସଫଳ ଭାଷା ପ୍ରୟୋଗକାରୀ ଯେପରି ବ୍ୟାକରଣିକ ବାକ୍ୟସମୂହ ଠିକ୍ ଭାବରେ ପ୍ରୟୋଗ କରିବାକୁ ଜାଣେ, ସେହିପରି ବିଭିନ୍ନ ବିଷୟରେ ଭାଷାରେ ବ୍ୟବହୃତ ହେଉଥିବା ବ୍ୟାକରଣିକ ଓ

ଅବ୍ୟାକରଣିକ ବାକ୍ୟ ପ୍ରୟୋଗକୁ ମଧ୍ୟ ଧରିପାରେ । ପ୍ରକୃତରେ ଭାଷା ପ୍ରୟୋଗକାରୀର ଭାଷାପ୍ରୟୋଗ କ୍ଷମତା ତା'ର ଭାଷାତାତ୍ତ୍ୱିକ କ୍ଷମତାକୁ ହିଁ ପ୍ରକାଶ କରିଥାଏ । ଭାଷା-ବ୍ୟବହାରକାରୀର ଭାଷା ପ୍ରୟୋଗ କ୍ଷମତା ଓ ତା'ର ଭାଷାତାତ୍ତ୍ୱିକ କ୍ଷମତା ଏକସମୟରେ ସମାନ ଭାବରେ ପ୍ରକାଶ ପାଇଥାଏ । ସେଥିପାଇଁ ସେ ଭାଷା-ଗଠନର ନିୟମ ଓ ଭାଷା-ପ୍ରୟୋଗର ନିୟମକୁ ଏକସମୟରେ ଆୟତ୍ତ କରିପାରେ । ବକ୍ତା ଓ ଶ୍ରୋତା ପରିପ୍ରେକ୍ଷୀରେ ସମାଜରେ ଭାଷା ସମ୍ପର୍କ ସ୍ଥାପିତ ହୁଏ । ତେଣୁ ବ୍ୟକ୍ତି ଓ ସମାଜ ସହିତ ଭାଷା ଓତଃପ୍ରୋତ ଭାବରେ ଜଡ଼ିତ ।

ଭାଷା ସମ୍ବନ୍ଧୀୟ ସମସ୍ତ ଆଲୋଚନା ହେଉଛି ଭାଷାତତ୍ତ୍ୱର ବିଷୟବସ୍ତୁ । ଭାଷା ବିଜ୍ଞାନ ହେଉଛି ମଣିଷର ଭାଷାକୁ ଆଧାର କରି ରହିଥିବା ଶୃଙ୍ଖଳିତ ଭାଷା ପଦ୍ଧତିର ବୈଜ୍ଞାନିକ ବିଶ୍ଳେଷଣ । ଅର୍ଥାତ୍ ଭାଷା ବିଜ୍ଞାନରେ ଭାଷା ନିର୍ମାଣ ପଦ୍ଧତିର ହିଁ ଅନୁଶୀଳନ କରାଯାଏ । ଭାଷାର କଥିତ ରୂପକୁ ଭାଷା-ବିଜ୍ଞାନରେ ବିଶ୍ଳେଷଣ କରାହୁଏ । ଭାଷା-ବିଜ୍ଞାନର ଦୁଇ ପ୍ରଧାନ ଉଦ୍ଦେଶ୍ୟ ମଧ୍ୟରୁ ପ୍ରଥମଟି ହେଉଛି ଭାଷା ପଦ୍ଧତିର ବିଶ୍ଳେଷଣ ଓ ଭାଷା ସମ୍ବନ୍ଧୀୟ ତଥ୍ୟ ଓ ତତ୍ତ୍ୱ ପରିବେଷଣ ଏବଂ ଅନ୍ୟଟି ହେଉଛି ପରିବେଶିତ ତଥ୍ୟ ଅବଲମ୍ବନରେ ଏକ ବା ଏକାଧିକ ଭାଷାର ବିଶ୍ଳେଷଣ ଓ ବର୍ଣ୍ଣନା । ଏଣୁ ଏହାକୁ ବର୍ଣ୍ଣନାତ୍ମକ ଭାଷା-ବିଜ୍ଞାନ ବୋଲି ମଧ୍ୟ କୁହାଯାଇଥାଏ ।

ଏକ ନିର୍ଦ୍ଦିଷ୍ଟ ଭାଷା ବା ଏକାଧିକ ଭାଷାର ଅତୀତକୁ ଅବଲମ୍ବନ କରି ଐତିହାସିକ ଅନୁଶୀଳନ କରାଯାଏ । ଭାଷାଗୁଡ଼ିକର ଐତିହାସିକ ଅନୁଶୀଳନରେ କୌଣସି ଏକ ନିର୍ଦ୍ଦିଷ୍ଟ ସମୟସୀମାକୁ ଧରି ଏହି ଅନୁଶୀଳନ କରାଯାଇପାରେ ବା ଭାଷା ଉପାଦାନ ସୁଲଭ ହେଲେ ଯେତେଦୂର ପର୍ଯ୍ୟନ୍ତ ଅତୀତରେ ଅଗ୍ରସର ହୋଇ ହେବ, ସେତେଦୂର ପର୍ଯ୍ୟନ୍ତ ଏ ଅନୁଶୀଳନକୁ ପ୍ରସାରିତ କରାଯାଇପାରେ । ଭାଷାମାନଙ୍କର ଏହି ପ୍ରକାର ଐତିହାସିକ ଅନୁଶୀଳନକୁ 'ଅତୀତ କାଳାନୁସାରୀ' ଭାଷା ଆଲୋଚନା ବୋଲି ପାଶ୍ଚାତ୍ୟ ଭାଷାବିତ୍ ଡି. ସସର ନାମକରଣ କରିଛନ୍ତି । ପ୍ରଚଳିତ ସମକାଳୀନ କୌଣସି ଏକ ନିର୍ଦ୍ଦିଷ୍ଟ ଭାଷା ବା ନିର୍ଦ୍ଦିଷ୍ଟ ଏକାଧିକ ଭାଷାମାନଙ୍କର ବର୍ତ୍ତମାନକାଳୀନ ଭାଷାନୁଶୀଳନ କରାଯାଇଥାଏ । ଏହା ଲିଖିତ ବା କଥିତ, ଭାଷାର ଯେକୌଣସି ରୂପକୁ ଅବଲମ୍ବନ କରି ହୋଇପାରେ । ଭାଷାଗୁଡ଼ିକର ଏହି ପ୍ରକାର ଅନୁଶୀଳନରୁ ଡି.ସସର 'ନିର୍ଦ୍ଦିଷ୍ଟ କାଳାନୁସାରୀ' ଭାଷା ଆଲୋଚନା କହିଛନ୍ତି । ସାଧାରଣତଃ ବର୍ଣ୍ଣନାତ୍ମକ ପଦ୍ଧତିରେ ନିର୍ଦ୍ଦିଷ୍ଟ କାଳାନୁସାରୀ ଭାଷାନୁଶୀଳନ ହୋଇଥାଏ । ତୁଳନାତ୍ମକ ପଦ୍ଧତିରେ ତୁଳନାମୂଳକ ଭାବରେ ଏକାଧିକ ଭାଷାକୁ ନେଇ ଉଭୟ ଅତୀତକାଳାନୁସାରୀ ଭାଷାନୁଶୀଳନ ମଧ୍ୟ କରାଯାଇଥାଏ । ଏପରି ଭାଷାନୁଶୀଳନକୁ ତୁଳନାତ୍ମକ ଭାଷାବିଜ୍ଞାନ ନାମକରଣ କରାଯାଇଛି ।

ଭାବପ୍ରକାଶ ଓ ଭାବ ବିନିମୟ ପାଇଁ ମଣିଷ କହୁଥିବା ଭାଷା ହେଉଛି ସ୍ୱେଚ୍ଛାକୃତ ଭାବରେ ଉଚ୍ଚାରଣ କରାଯାଉଥିବା କେତେକ ଧ୍ୱନି ପଦ୍ଧତି । ଉଚ୍ଚାରିତ ଧ୍ୱନିଗୁଡ଼ିକର ଶୃଙ୍ଖଳିତ

ସମ୍ବନ୍ଧହିଁ ପ୍ରତ୍ୟେକ ଭାଷାର ଧ୍ୱନି, ଶବ୍ଦ, ବାକ୍ୟ, କଥୋପକଥନ ଏବଂ ଅର୍ଥ ମାଧ୍ୟମରେ ପ୍ରକାଶ ପାଏ । ଭାଷାତତ୍ତ୍ୱର ବ୍ୟାପକ ପରିସର ମଧ୍ୟରେ ଭାଷା ସମ୍ବନ୍ଧୀୟ ସମସ୍ତ ଆଲୋଚନା ଅନ୍ତର୍ଭୁକ୍ତ ହେବା ଫଳରେ ଭାଷା ଆଲୋଚନା ଆଜି ମଣିଷର ଜ୍ଞାନରାଜ୍ୟରେ ଏକ ବିଶେଷ ସ୍ଥାନ ଅଧିକାର କରି ବସିଛି । ଭାଷା ଆଲୋଚନାର ଏହି ପୃଷ୍ଠଭୂମି ଉପରେ ଓଡ଼ିଆ ଭାଷାତତ୍ତ୍ୱ ସମ୍ବନ୍ଧରେ କିଞ୍ଚିତ ଆଲୋକପାତ କରାଯାଇପାରେ ।

ଓଡ଼ିଆ ଭାଷା ବହୁ ପ୍ରାଚୀନ ବୋଲି ପ୍ରମାଣିତ । ଓଡ଼ିଶାରେ ଆର୍ଯ୍ୟବସତି ଖ୍ରୀ.ପୂ. ୩ୟ ଶତକରେ ସ୍ଥାପିତ ହୋଇଥିବାର ସୂଚନା ଅଶୋକଙ୍କ ଧଉଳୀ ଓ ଜଉଗଡ଼ ଶିଳାଲେଖରୁ ମିଳେ । ଖ୍ରୀ.ପୂ. ୧ମ ଶତାବ୍ଦୀ ଖାରବେଳଙ୍କ ଶିଳାଲେଖରେ 'ବାଟ' 'ପନ୍ଦର' ପ୍ରଭୃତି ଶବ୍ଦର ପ୍ରୟୋଗରୁ ଓଡ଼ିଆ ଭାଷାର ଉନ୍ମେଷର ସୂଚନା ମିଳିଥାଏ । ତା'ପରେ ଖ୍ରୀଷ୍ଟ ୯ମ ଓ ୧୦ମ ଶତାବ୍ଦୀର ସଂସ୍କୃତ ଶିଳାଲେଖରେ ଓଡ଼ିଆ ଶବ୍ଦର ବ୍ୟବହାର ଦୃଷ୍ଟିଗୋଚର ହୁଏ । ଏକାଦଶ ଶତାବ୍ଦୀର 'ରାଜାଙ୍କୁ ଭକତି କରୁଣ ଅଛନ୍ତି ଭୋ କୁମାର ଶେଣ' ଲେଖରୁ ଓଡ଼ିଆ ଭାଷାର ସମ୍ପୂର୍ଣ୍ଣ ବିକଶିତ ରୂପର ସୂଚନା ମିଳିଛି । ୧୦୫୧ ଖ୍ରୀଷ୍ଟାବ୍ଦର ଉରଜାମ ଶିଳାଲେଖ ହେଉଛି ଓଡ଼ିଆ ଭାଷାରେ ମିଳୁଥିବା ପ୍ରାଚୀନତମ ଶିଳାଲେଖ ।

ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ଭାବରେ ଓଡ଼ିଆ ଭାଷା ଇଣ୍ଡୋଇଉରୋପୀୟ ଭାଷାଗୋଷ୍ଠୀର ପୂର୍ବ ଉପଶାଖାର ଏକ ସଭ୍ୟ । ମଧ୍ୟ ଭାରତୀୟ-ଆର୍ଯ୍ୟ ଭାଷା ଭାବରେ ବିକାଶ ଲାଭ କରୁଥିବା ପ୍ରୋଟୋ-ଓଡ଼ିଆ-ବଙ୍ଗଳା-ଅସମୀୟା ଭାଷାରେ ଲେଖାଯାଇଥିବା ବୌଦ୍ଧଗାନ ଓ ଦୋହାରୁ କାଳକ୍ରମେ ଓଡ଼ିଆ ଭାଷାର ସ୍ୱରୂପ ଗଠିତ ହୋଇଛି । 'ବୌଦ୍ଧଗାନ ଓ ଦୋହା'ର ସମୟକୁ ଭାଷାବିତ୍‌ମାନେ ଖ୍ରୀଷ୍ଟ ୫ମଠାରୁ ୧୦ମ ଶତାବ୍ଦୀ ମଧ୍ୟରେ ନିର୍ଣ୍ଣୟ କରିଥାନ୍ତି । ଭାଷାର ଅତୀତ-ପୁନର୍ଗଠନ ଭିତ୍ତିରେ ଓଡ଼ିଆ ଭାଷା ଏହାର ଅନ୍ୟ ପୂର୍ବାଞ୍ଚଳୀୟ ଭାଷା ବଙ୍ଗଳା ଓ ଅସମିୟାଠାରୁ ପ୍ରାଚୀନତର ବୋଲି ଭାଷାବିତ୍‌ମାନେ ପ୍ରମାଣ କରି କହିଛନ୍ତି ।

ଓଡ଼ିଆ ଭାଷା ବହୁ ପ୍ରାଚୀନ ହେବା ସତ୍ତ୍ୱେ ଏ ଭାଷାର ଗଠନମୂଳକ ଆଲୋଚନା ଆରମ୍ଭ ହୋଇଛି ଏଇ ମାତ୍ର ପ୍ରାୟ ୨୦୦ ବର୍ଷ ତଳେ । ବିଦେଶୀମାନଙ୍କ ଓଡ଼ିଆ ଭାଷା ଶିକ୍ଷା ଉଦ୍ଦେଶ୍ୟରେ ଏ ଭାଷାର ପ୍ରଥମ ବ୍ୟାକରଣ ରଚନା କରିଥିଲେ ବ୍ରିଟିଶ ପ୍ରଶାସକ ଅମ୍‌ସ ସଟନ୍ । ବିଦେଶୀ ହେଲେ ହେଁ ସଟନ୍ ହିଁ ପ୍ରଥମ କରି ଏ ଭାଷାର ଗଠନ ବର୍ଣ୍ଣନା କରିବାକୁ ପ୍ରୟାସ କରିଥିଲେ । କିନ୍ତୁ ଜଣେ ବିଦେଶୀ ଭାବରେ ଏ ଭାଷାର ବ୍ୟାକରଣ ରଚନା କରିବା ତାଙ୍କ ପକ୍ଷରେ ଥିଲା ଏକ ଦୁରୂହ ପ୍ରୟାସ । ସେଥିପାଇଁ ସଟନ୍‌ଙ୍କ ରଚିତ ଓଡ଼ିଆ ବ୍ୟାକରଣ ଥିଲା ଯେପରି ବିଶୃଙ୍ଖଳିତ, ସେହିପରି ତ୍ରୁଟିପୂର୍ଣ୍ଣ । ଊନବିଂଶ ଶତାବ୍ଦୀରେ ସଟନ୍‌ଙ୍କ ରଚିତ ଓଡ଼ିଆ ବ୍ୟାକରଣକୁ ତାଙ୍କ ପରବର୍ତ୍ତୀ ସମୟରେ ସେହିପରି ତ୍ରୁଟିପୂର୍ଣ୍ଣ ଭାବରେ ଅନୁସରଣ କରି ବ୍ୟାକରଣମାନ ରଚନା କରିଥିଲେ ଲେସି, ମାଲବଟୀ, ହାଲେମ, ଆଣ୍ଡରସନ ଓ ହୋର୍ଣ୍ଣେଲ ପ୍ରଭୃତି ବିଦେଶୀଗଣ ।

କିନ୍ତୁ ସେଇ ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାର ଉତ୍ପତ୍ତି ଓ ଗଠନକୁ ଐତିହାସିକ

ଭିତ୍ତିରେ ଅପେକ୍ଷାକୃତ ଶୃଙ୍ଖଳିତ ଭାବରେ ବର୍ଣ୍ଣନା କରିବାକୁ ଉଦ୍ୟମ କରିଥିଲେ ଜନ ବୀମ୍‌ସ୍ । ଅନ୍ୟ ଛଅଟି ଆଧୁନିକ ଭାରତୀୟ ଭାଷା, ହିନ୍ଦୀ, ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ, ମରାଠୀ ଓ ବଙ୍ଗଳା ସହିତ ତୁଳନାମୂଳକ ଭାବରେ ସେ ଓଡ଼ିଆ ଭାଷାର ଗଠନକୁ ଉପସ୍ଥାପନ କରିଥିଲେ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ । ବୀମ୍‌ସ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ ପ୍ରଚଳିତ ସମକାଳୀନ ଭାଷାଗୁଡ଼ିକର ଗଠନ ବର୍ଣ୍ଣନା ଦେଇନାହାନ୍ତି । କିନ୍ତୁ ଭାଷାଗୁଡ଼ିକର ଉତ୍ପତ୍ତି ଓ କ୍ରମବିକାଶ ସମ୍ବନ୍ଧୀୟ ବର୍ଣ୍ଣନା ଦେବାବେଳେ ତାଙ୍କ ବ୍ୟାକରଣରେ ସେ କେତେକ ଅତ୍ୟନ୍ତ ମୂଲ୍ୟବାନ ଭାଷାତାତ୍ତ୍ୱିକ ସୂଚନା ନିଜ ଅଜାଣତରେ ହିଁ ଦେଇଯାଇଛନ୍ତି । ଆମେରିକାର ବିଶିଷ୍ଟ ଭାଷାବିତ୍ ଜି.ଏଚ୍. ଫେୟାରବ୍ୟାଙ୍କ୍‌ସ ମତ ଦିଅନ୍ତି ସେ ଆଧୁନିକ ଭାରତୀୟ ଭାଷାମାନଙ୍କରେ ବ୍ୟବହୃତ ଶବ୍ଦଗୁଡ଼ିକୁ ତତ୍ସମ, ତଦ୍ଭବ ଓ ଦେଶଜ କ୍ରମରେ ବିଭାଗୀକରଣ କରି ବୀମସ୍ ଭାରତୀୟ ଭାଷାନୁଶୀଳନ କ୍ଷେତ୍ରରେ ଯଥେଷ୍ଟ ଅନର୍ଥ ତଥା କ୍ଷତିସାଧନ କରିଛନ୍ତି । କିନ୍ତୁ ଏପରି କ୍ଷତିସାଧନ କରିବା ସତ୍ତ୍ୱେ ତାଙ୍କ 'ତୁଳନାତ୍ମକ ବ୍ୟାକରଣ'ରେ ହିଁ ପ୍ରଥମ କରି ବୀମସ୍ ଭାରତୀୟ ଭାଷାମାନଙ୍କର ଧ୍ୱନିଗତ ଓ ରୂପଗତ ବିକାଶ ସମ୍ବନ୍ଧରେ ସୂଚନା ଦେଇଯାଇଛନ୍ତି । ବୀମସ୍‌ଙ୍କ ପରେ ଅନ୍ୟୁନ ପ୍ରାୟ ଶହେ ବର୍ଷ ମଧ୍ୟରେ ଓଡ଼ିଆ ଭାଷା ପର୍ଯ୍ୟାୟକ୍ରମେ ବିଭିନ୍ନ ଓଡ଼ିଆ ବ୍ୟାକରଣକାର, ଓଡ଼ିଆ ଭାଷା ଆଲୋଚକଗଣ ଓ ଆଧୁନିକ ଭାଷାବିତ୍‌ମାନଙ୍କ ହାତରେ ବିଭିନ୍ନ ଅବସ୍ଥା ଭିତର ଦେଇ ଗତିକରି ଆସିଛି । କିନ୍ତୁ ଏହି ସମୟ ମଧ୍ୟରେ ଏ ଭାଷାକୁ ବିଜ୍ଞାନସମ୍ମତ ଭାବରେ ଏକ ଶୃଙ୍ଖଳିତ ଭାଷା ପଦ୍ଧତି ରୂପେ ବର୍ଣ୍ଣନା କରିବାର ଉଦ୍ୟମ କରାଯାଇନାହିଁ ।

ଓଡ଼ିଆ ଭାଷାତତ୍ତ୍ୱ ଆଲୋଚନାରେ ଆଜି ପର୍ଯ୍ୟନ୍ତ ମୁଖ୍ୟତଃ ଐତିହାସିକ ଭାଷାତତ୍ତ୍ୱର ଆଲୋଚନା ହିଁ ପ୍ରାଧାନ୍ୟ ପାଇ ଆସିଛି । ଏ କ୍ଷେତ୍ରରେ ଜନ୍ ବୀମ୍‌ସଙ୍କ 'ତୁଳନାତ୍ମକ ବ୍ୟାକରଣ' ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କର 'ଓଡ଼ିଆ ଭାଷାତତ୍ତ୍ୱ' ପରେ ପରବର୍ତ୍ତୀ କାଳରେ ଅଧିକ ପ୍ରମାଣଯୋଗ୍ୟ ଭାବରେ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କର 'ଇଭୋଲ୍ୟୁସନ ଅଫ ଓଡ଼ିଆ ଲାଙ୍ଗୁଏଜ୍ ଆଣ୍ଡ ସ୍କ୍ରିପ୍ଟ' ଏବଂ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କର 'ହିଷ୍ଟୋରିକାଲ ରିକନ୍‌ଷ୍ଟ୍ରକ୍ସନ୍'କୁ ଏଠାରେ ଉଲ୍ଲେଖ କରାଯାଇପାରେ । କିନ୍ତୁ ବିଧିବଦ୍ଧ ଭାବରେ ଓଡ଼ିଆ ଭାଷାର ତୁଳନାତ୍ମକ ଓ ଐତିହାସିକ ବିଶ୍ଳେଷଣ ଏ ପର୍ଯ୍ୟନ୍ତ କରାଯାଇ ପାରିନାହିଁ । ଓଡ଼ିଆ ଭାଷାତତ୍ତ୍ୱରେ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଆଲୋଚନା କରାଯାଇ ନ ଥିଲେ ମଧ୍ୟ ଏ ଭାଷାର ବିଭିନ୍ନ ଅଂଶକୁ ନେଇ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରିବା ପାଇଁ ଭାଷାବିତମାନେ ବର୍ତ୍ତମାନ ଆଗ୍ରହ ପ୍ରକାଶ କରୁଥିବା ଲକ୍ଷ୍ୟ କରାଯାଏ । ଏ ଦିଗରେ କରାଯାଇଥିବା କେତୋଟି କାର୍ଯ୍ୟ ଭିତରୁ ଶ୍ରୀଯୁକ୍ତ ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କର 'ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ' ପୁସ୍ତକ, ଶ୍ରୀଯୁକ୍ତ ବିଜୟ ପ୍ରସାଦ ମହାପାତ୍ରଙ୍କ 'ଦି ଭର୍ବ ଫିସ ଇନ୍ ଓରିଆ', ଶ୍ରୀ ଗଗନେନ୍ଦ୍ର ନାଥ ଦାସଙ୍କର 'ଡେସ୍‌କ୍ରିପ୍ଟିଭ ମର୍ଫୋଲୋଜି ଅଫ୍ ଓରିଆ' ପୁସ୍ତକ, ଶ୍ରୀ ବିଭୁଧେନ୍ଦ୍ର ନାଥ ପଟ୍ଟନାୟକଙ୍କର 'ଓଡ଼ିଆ ବାକ୍ୟ ବିନ୍ୟାସ', ଡକ୍ଟର ଦେବୀପ୍ରସନ୍ନ

ପଟ୍ଟନାୟକ ଓ ଡକ୍ଟର ଗଗନେନ୍ଦ୍ର ନାଥ ଦାସଙ୍କର 'କନଭର୍‌ସେସନାଲ ଓରିଆ' ଏବଂ ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତିଙ୍କର 'ଆନ୍ ଇଣ୍ଟେନ୍‌ସିଭ କୋର୍ସ ଇନ୍ ଓରିଆ' ପୁସ୍ତକକୁ ଉଲ୍ଲେଖ କରଯାଇପାରେ । ଓଡ଼ିଆ ଭାଷାର ବିଭିନ୍ନ ଅଂଶକୁ ପୃଥକ ପୃଥକ ଭାବରେ ଅବଲମ୍ୱନ କରି ହେଉଥିବା ଆଧୁନିକ ଭାଷାତାତ୍ତ୍ୱିକ ଆଲୋଚନାଗୁଡ଼ିକ ମଧ୍ୟରୁ ଅଧିକାଂଶ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ ହୋଇରହିଛି । ଏହି ଆଲୋଚନାଗୁଡ଼ିକୁ ସର୍ବେକରି ପ୍ରକାଶ କରିବାର ବ୍ୟବସ୍ଥା କରାଗଲେ ଏକ ସାଧୁ ଉଦ୍ୟମ ହୋଇପାରନ୍ତା ଏବଂ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ବିଶେଷ ଗୁରୁତ୍ୱ ଦିଆଯାଇପାରନ୍ତା ।

ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଅନୁଶୀଳନ ନିମନ୍ତେ କେତେକ ଦିଗ ପ୍ରତି ଧ୍ୟାନ ଦେବାର ସମୟ ଆସି ପହଞ୍ଚିଛି । ଓଡ଼ିଆ ଭାଷାର ବହୁ ଉପଭାଷା ଓଡ଼ିଶା ପ୍ରଦେଶ ଭିତରେ ରହିଛି, ଯେଉଁଗୁଡ଼ିକର ଅଧ୍ୟୟନ ପାଇଁ ବର୍ତ୍ତମାନ ସୁଦ୍ଧା ଚେଷ୍ଟା ଆରମ୍ଭ ହୋଇନାହିଁ । ଓଡ଼ିଶାରେ ଆଞ୍ଚଳିକ ଭାବରେ ଉପଭାଷାଗୁଡ଼ିକ ବିଷୟରେ ଉଲ୍ଲେଖ କରିବାର କାରଣ ହେଉଛି, ଉପଭାଷାଗୁଡ଼ିକ ମଧ୍ୟ ପ୍ରତ୍ୟେକ ସ୍ୱୟଂସମ୍ପୂର୍ଣ୍ଣ ଭାଷା ଏବଂ ଯେପରି ଧାରଣା କରାଯାଏ ଯେ ଏଗୁଡ଼ିକ ପ୍ରଧାନ ଭାଷାର ଏକ ଅଂଶବିଶେଷ, ତା' ଠିକ୍ ନୁହେଁ । କାରଣ ଆଜି ଯାହାକୁ ପ୍ରଧାନ ଭାଷା ଭାବରେ ଗ୍ରହଣ କରାଯାଇଛି, ତାହା ମଧ୍ୟ ଦିନେ ହୁଏତ ଥିଲା ଏକ ଉପଭାଷା । ଉପଭାଷାଗତ ବା ଭାଷାବୈଜ୍ଞାନିକ କାରଣରୁ ନୁହେଁ, ବରଂ ରାଜନୈତିକ ବା ସାଂସ୍କୃତିକ କାରଣରୁ କାଳକ୍ରମେ ଏହା ପ୍ରଧାନ ଭାଷା ହେବାର ସୌଭାଗ୍ୟ ଲାଭ କରିପାରିଛି । ଭାଷା ବୈଜ୍ଞାନିକ ଦୃଷ୍ଟିରୁ ପ୍ରଧାନ ଭାଷା ପରି ଉପଭାଷାଗୁଡ଼ିକର ନିର୍ଦ୍ଦିଷ୍ଟ ସାଙ୍ଗଠନିକ ପଦ୍ଧତି, ଶବ୍ଦାବଳୀ ଓ ଉଚ୍ଚାରଣ ପଦ୍ଧତି ରହିଛି ଏବଂ ଏଗୁଡ଼ିକ ପ୍ରତ୍ୟେକେ ମଧ୍ୟ ଭାବ-ବିନିମୟର ସଫଳ ମାଧ୍ୟମ । କେବଳ ସରକାରୀ ପୃଷ୍ଠପୋଷକତା ଓ ସାମାଜିକ ସ୍ୱୀକୃତି ଭିତ୍ତିରେ କୌଣସି ଏକ ଅଞ୍ଚଳର ଭାଷା ବା ଉପଭାଷା ପ୍ରଧାନ ଭାଷା ଭାବରେ ଗଢ଼ିଉଠେ । ଏଣୁ କୌଣସି ଭାଷାର ପୂର୍ଣ୍ଣାଙ୍ଗ ଆଲୋଚନା ପାଇଁ ସେହି ଭାଷାର ସମସାମୟିକ ଉପଭାଷାଗୁଡ଼ିକୁ ବାଦ ଦେବା ଭାଷା ବୈଜ୍ଞାନିକ ଦୃଷ୍ଟିରୁ ଆଦୌ ସମୀଚୀନ ନୁହେଁ । ଓଡ଼ିଆ ଭାଷା କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ ହେବା ଉଚିତ ।

ଲୋକମୁଖରେ ପ୍ରଚଳିତ ବର୍ତ୍ତମାନକାଳୀନ କଥିତ ଓଡ଼ିଆ ଭାଷାର ବିଜ୍ଞାନସମ୍ମତ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ନିମନ୍ତେ ଓଡ଼ିଆ ଭାଷାତତ୍ତ୍ୱରେ ମଧ୍ୟ ଧ୍ୱନି, ରୂପ, ବାକ୍ୟ ଓ ଅର୍ଥ ଭେଦରେ ଭାଷାର ସ୍ତରୀକରଣ କରାଯାଇଥିବା କଥା ପୂର୍ବରୁ କୁହାଯାଇଛି ।

ଭାଷାର ମୌଳିକ ବସ୍ତୁ ଧ୍ୱନି । ଓଡ଼ିଆ ଭାଷାର ଧ୍ୱନି ତଥା ଧ୍ୱନି ସମ୍ବନ୍ଧୀୟ ସମସ୍ତ ଆଲୋଚନା 'ଓଡ଼ିଆ ଧ୍ୱନିତତ୍ତ୍ୱ'ର ବିଷୟବସ୍ତୁ । ଆଲୋଚନାର ସୁବିଧା ପାଇଁ ଧ୍ୱନିତତ୍ତ୍ୱକୁ 'ଧ୍ୱନି ବିଜ୍ଞାନ' ଓ 'ଧ୍ୱନି ପଦ୍ଧତି' ଭାବରେ ଦୁଇ ଭାଗରେ ଭାଗ କରାଯାଇଛି । ଧ୍ୱନିବିଜ୍ଞାନ ପୁଣି 'ଧ୍ୱନି ସୃଷ୍ଟି' ଓ 'ଶ୍ରୁତି ବିଜ୍ଞାନ' ଭାବରେ ଦୁଇ ଭାଗରେ ବିଭକ୍ତ । ବାଗଯନ୍ତ୍ରରୁ ନିର୍ଗତ ଧ୍ୱନି ସମୂହର ଶରୀରତାତ୍ତ୍ୱିକ ଆଲୋଚନା ଧ୍ୱନି ସୃଷ୍ଟିର ଅନ୍ତର୍ଗତ । ଭାଷା ପ୍ରକାଶ ପାଇଁ କଥା

କହିବା ସମୟରେ ଶରୀରର କେତେକ ଅଙ୍ଗପ୍ରତ୍ୟଙ୍ଗକୁ ପ୍ରତ୍ୟକ୍ଷ ଭାବରେ ଚାଳନା କରିବାକୁ ପଡ଼େ । ମଣିଷ ଶରୀରର ଗଠନ ଅନୁସାରେ ଭାଷା ସୃଷ୍ଟି କରୁଥିବା ଅଙ୍ଗପ୍ରତ୍ୟଙ୍ଗକୁ ସାଧାରଣତଃ ସାର୍ବଜନୀନ ବୋଲି ମନେ କରାଯାଏ । ଭାଷାବିଜ୍ଞାନରେ ଭାଷା ସୃଷ୍ଟି କରୁଥିବା ଶରୀରର ଏହି ବିଶେଷ ଅଙ୍ଗ-ପ୍ରତ୍ୟଙ୍ଗକୁ ବାଗ୍‌ଯନ୍ତ୍ର କୁହାଯାଇଛି । ଶରୀରର ବିଭିନ୍ନ ଅଙ୍ଗ ବହୁ ବିଭିନ୍ନ କାର୍ଯ୍ୟ ସମ୍ପାଦନ ପାଇଁ ଅଭିପ୍ରେତ ହେବାପରି ବାଗଯନ୍ତ୍ର ମଧ୍ୟ ଭାଷା-ଧ୍ୱନି ସୃଷ୍ଟି ସହିତ ଅନ୍ୟାନ୍ୟ ବହୁ ବିଭିନ୍ନ କାର୍ଯ୍ୟ ସମ୍ପାଦନ ନିମନ୍ତେ ସକ୍ଷମ ।

କଥା କହିବା ସମୟରେ ମୁଖ-ନିଃସୃତ ଯେ କୌଣସି ଭାଷା ହେଉଛି କେତେକ ଧ୍ୱନି ସମଷ୍ଟିର ପରିଣତି । ଧ୍ୱନି ସୃଷ୍ଟି ତଥା ଧ୍ୱନିଗୁଡ଼ିକର ଉଚ୍ଚାରଣ ପାଇଁ ବକ୍ତାକୁ ନିଜ ଇଚ୍ଛା ମୁତାବକ ବାଗ ଯନ୍ତ୍ରର ବିଭିନ୍ନ ଅଂଶକୁ ପରିଚାଳିତ କରିବାକୁ ପଡ଼ିଥାଏ । ଧ୍ୱନି ଉଚ୍ଚାରଣ ନିମନ୍ତେ ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶ ଯେଉଁ ଅବସ୍ଥା ଓ ଆକାର ଧାରଣ କରେ, ତାହାରି ବର୍ଣ୍ଣନା ହିଁ ଧ୍ୱନି ସୃଷ୍ଟିର ବିଷୟବସ୍ତୁ । ମଣିଷ ଶରୀରରେ ଫୁସ୍ ଫୁସ୍‌ରୁ ନିର୍ଗତ ବାୟୁ ବାଗଯନ୍ତ୍ର ମଧ୍ୟ ଦେଇ ଗତି କରିବା ସମୟରେ ବିଭିନ୍ନ ଧ୍ୱନି ଉତ୍ପନ୍ନ ହୋଇଥାଏ । ଫୁସ୍‌ଫୁସ୍‌ରୁ ନିର୍ଗତ ବାୟୁଦ୍ୱାରା ହସିବା, କାଶିବା, ଛିଙ୍କିବା ପ୍ରଭୃତି ବିଭିନ୍ନ ସମୟରେ ଉତ୍ପନ୍ନ ହେଉଥିବା ଧ୍ୱନିଗୁଡ଼ିକୁ କିନ୍ତୁ ଭାଷା-ଧ୍ୱନି ଭାବରେ ଗ୍ରହଣ କରାଯାଏ ନାହିଁ । ଭାଷା-ଧ୍ୱନିଗୁଡ଼ିକୁ ପ୍ରତ୍ୟେକ ଭାଷାର ଧ୍ୱନି – ଏକକ ବା ଧ୍ୱନିଗ୍ରାମ ଭାବରେ ଗ୍ରହଣ କରାଯାଏ ଏବଂ ଭାଷାରେ ଏହି ଧ୍ୱନିଗୁଡ଼ିକୁ ଏକ ନିୟମିତ ପଦ୍ଧତିରେ ପ୍ରକାଶ କରାଯାଏ । ଧ୍ୱନିବିତ୍‌ମାନଙ୍କ ମତରେ, ଭାଷା ମନୁଷ୍ୟର ମୁଖ-ନିଃସୃତ ଧ୍ୱନିମାନଙ୍କର ଏକ ନିୟମବଦ୍ଧ ପଦ୍ଧତି । ପ୍ରତ୍ୟେକ ଭାଷା ପରି ଓଡ଼ିଆ ଭାଷାରେ ମଧ୍ୟ ବାଗଯନ୍ତ୍ରରୁ ନିର୍ଗତ ଭାଷା-ଧ୍ୱନିଗୁଡ଼ିକୁ କେତେକ ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ନିୟମାବଦ୍ଧ ଭାବରେ ଅର୍ଥପୂର୍ଣ୍ଣ ଶବ୍ଦ ଓ ବାକ୍ୟ ଆକାରରେ ପ୍ରକାଶ କରାଯାଇଥାଏ ।

ବକ୍ତାଠାରେ ଧ୍ୱନି ସୃଷ୍ଟି ହେବାପରେ ଏହା ସଞ୍ଚାଳିତ ହୋଇ ଶ୍ରୋତା ନିକଟରେ ପହଞ୍ଚେ । ଧ୍ୱନି ସଞ୍ଚାଳିତ ହେବା ସମୟରେ ସୃଷ୍ଟି ହେଉଥିବା ଧ୍ୱନି ଲହରୀ ବା ତରଙ୍ଗ ସମ୍ବନ୍ଧୀୟ ବର୍ଣ୍ଣନା ହେଉଛି ଶ୍ରୁତିବିଜ୍ଞାନର ବିଷୟବସ୍ତୁ । ସାଧାରଣତଃ ଶ୍ରୁତିମାପକ ଯନ୍ତ୍ର ସ୍ପେକ୍ଟ୍ରୋଗ୍ରାଫ ସାହାଯ୍ୟରେ ପରିମିତ ସମୟ ମଧ୍ୟରେ ଧ୍ୱନି ଲହରୀର କମ୍ପାଙ୍କ ଓ ପ୍ରସାରଣକୁ ମାପ କରାଯାଇଥାଏ । ସମୟ ତାରତମ୍ୟ ଅନୁସାରେ ବକ୍ତା ଓ ଶ୍ରୋତା ବ୍ୟବଧାନରେ ଧ୍ୱନି ଲହରୀ ମଧ୍ୟରେ ସମ୍ପ୍ରସାରିତ ଧ୍ୱନିଗୁଡ଼ିକର ମାତ୍ରା ହ୍ରାସ ଓ ବୃଦ୍ଧି ପରିମାପ କରିବାର ଜଟିଳ ପ୍ରକ୍ରିୟାକୁ ଶ୍ରୁତି ବିଜ୍ଞାନରେ ବର୍ଣ୍ଣନା କରାଯାଏ । ଏହାଛଡ଼ା ଶ୍ରବଣ ଯନ୍ତ୍ର ସମ୍ବନ୍ଧୀୟ ଶାରୀରିକ ବର୍ଣ୍ଣନା ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ ।

ଧ୍ୱନି ସୃଷ୍ଟି ହେବାପରେ ଯେଉଁ ପ୍ରକ୍ରିୟା ତଥା ପଦ୍ଧତି ଅବଲମ୍ବନ କରି ଧ୍ୱନି ଭାଷା ନିର୍ମାଣର ଏକ ବିଶେଷ ଅଂଶ ଭାବରେ ପ୍ରକାଶ ପାଏ, ତାହାକୁ ଧ୍ୱନିପଦ୍ଧତି କୁହାଯାଏ । ଓଡ଼ିଆ ଧ୍ୱନିପଦ୍ଧତିରେ ୩୭ଟି ଧ୍ୱନିଗ୍ରାମ ମଧ୍ୟରୁ ୬ଟି ସ୍ୱର, ୨ଟି ଦ୍ୱିସ୍ୱର ଓ ୩୧ଟି ବ୍ୟଞ୍ଜନ ଧ୍ୱନି ଚିହ୍ନିତ କରାଯାଇଛି । ଓଡ଼ିଆ ସ୍ୱର ଓ ବ୍ୟଞ୍ଜନକୁ ପ୍ରଯତ୍ନ ସ୍ଥାନ ଓ ପ୍ରଯତ୍ନ ବିଧି ଅନୁସାରେ

ଓଡ଼ିଆ ଧ୍ୱନିପଦ୍ଧତିରେ ବର୍ଣ୍ଣନା କରାଯାଏ ଏବଂ ଧ୍ୱନିଗ୍ରାମୀୟ ସର୍ବନିମ୍ନ ବିରୋଧୀ ଯୋଡ଼ା ଅନୁସାରେ ଧ୍ୱନି-ସମଷ୍ଟିରୁ ଓଡ଼ିଆ ଶବ୍ଦ ଗଠିତ ହୁଏ ।

ଭାଷା କଥିତ ବା ଲିଖିତ ଯେକୌଣସି ରୂପରେ ପ୍ରକାଶ ପାଉନା କାହିଁକି ଏହାର ଏକ ଅନ୍ତର୍ନିହିତ ଶୃଙ୍ଖଳା ତଥା ନିର୍ଦ୍ଦିଷ୍ଟ ଗଠନ ପଦ୍ଧତି ଥାଏ । ଭାଷାର ଅନ୍ତର୍ନିହିତ ଗଠନ ପଦ୍ଧତି ବିଶ୍ଳେଷଣ ତଥା ବର୍ଣ୍ଣନାର ଅନ୍ୟ ନାମ ବ୍ୟାକରଣ । ଭାଷା ଗଠନ ସମ୍ବନ୍ଧୀୟ ବ୍ୟାକରଣର ଦୁଇ ପ୍ରଧାନ ବିଭାଗ ହେଉଛି ରୂପତତ୍ତ୍ୱ ଓ ବାକ୍ୟତତ୍ତ୍ୱ ।

ଭାଷାରେ ବ୍ୟବହୃତ ଶବ୍ଦମାନଙ୍କର ଗଠନ ପଦ୍ଧତି ବର୍ଣ୍ଣନା ହିଁ ରୂପତତ୍ତ୍ୱର ବିଷୟବସ୍ତୁ । ମୁଖ-ନିଃସୃତ ଭାଷାର ଅର୍ଥହୀନ ମହତ୍ତ୍ୱପୂର୍ଣ୍ଣ ଏକକ ହେଉଛି ଧ୍ୱନିଗ୍ରାମ, କିନ୍ତୁ ଅର୍ଥପୂର୍ଣ୍ଣ ନ୍ୟୁନତମ ଏକକ ହେଉଛି 'ରୂପ' ବା 'ରୂପଗ୍ରାମ' । ଭାଷାରେ ବ୍ୟବହୃତ ଶବ୍ଦର ଗଠନ ପଦ୍ଧତି ବିଶ୍ଳେଷଣ କଲେ ରୂପ ସମ୍ବନ୍ଧୀୟ ଧାରଣା ସ୍ପଷ୍ଟ ହୁଏ । ଉଦାହରଣ ସ୍ୱରୂପ 'ଆଜିର', 'କଟକିଆ', 'ବସିଲି' ଏ ତିନୋଟି ଶବ୍ଦରୁ ପ୍ରତ୍ୟେକ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଶବ୍ଦପରି ମନେ ହେଉଥିଲେ ମଧ୍ୟ ଏଗୁଡ଼ିକର ଗଠନରେ ଯଥାକ୍ରମେ ଅଛି, 'ଆଜି+ର', 'କଟକ+ଇଆ' ଓ 'ବସ୍+ଇଲ୍+ଇ' । ଏହି ଶବ୍ଦମାନଙ୍କର ଏହି ଗଠନରେ 'ଆଜି', 'କଟକ' ଓ 'ବସ୍' ପ୍ରତ୍ୟେକ ହେଉଛି ଗୋଟିଏ ଲେଖାଏଁ ନ୍ୟୁନତମ 'ରୂପ' ଓ ପ୍ରତ୍ୟେକ ଅର୍ଥପୂର୍ଣ୍ଣ । ଏଗୁଡ଼ିକ ନ୍ୟୁନତମ, କାରଣ ଏଗୁଡ଼ିକୁ ଆଉ ଅଧିକ ବିଶ୍ଳେଷଣ କଲେ ଏମାନେ ଅର୍ଥହୀନ ଧ୍ୱନିଗ୍ରାମରେ ପରିଣତ ହେବେ । ଏହି ଅର୍ଥପୂର୍ଣ୍ଣ ନ୍ୟୁନତମ ରୂପ ସହିତ ଯଥାକ୍ରମେ 'ର', 'ଇଆ' ଓ'ଇଲ' ଏବଂ 'ଇ' ପ୍ରତ୍ୟୟଯୁକ୍ତ ହୋଇ ନୂଆ ଶବ୍ଦ ଗଠିତ ହୋଇଛି । ଶବ୍ଦରେ ବ୍ୟବହୃତ ଏଇ ପ୍ରକାର ପ୍ରତ୍ୟୟଗୁଡ଼ିକ ହେଉଛି ପ୍ରତ୍ୟେକ 'ବଦ୍ଧରୂପ' ।

'ମୁକ୍ତରୂପ' ଓ 'ବଦ୍ଧରୂପ' ଭେଦରେ ରୂପ ଦୁଇପ୍ରକାର । ପ୍ରତ୍ୟେକ ଅର୍ଥପୂର୍ଣ୍ଣ ନ୍ୟୁନତମ ରୂପ ହେଉଛି 'ମୁକ୍ତରୂପ' ଓ ଏଗୁଡ଼ିକ ପ୍ରତ୍ୟେକ ଶବ୍ଦ । କିନ୍ତୁ ମୁକ୍ତରୂପ ସହିତ ଯେଉଁ ପ୍ରତ୍ୟୟଗୁଡ଼ିକୁ ଯୁକ୍ତ କରି ନୂଆ ଶବ୍ଦ ତିଆରି ହୁଏ, ସେଗୁଡ଼ିକୁ କୁହାଯାଏ 'ବଦ୍ଧରୂପ' । ବଦ୍ଧରୂପଗୁଡ଼ିକର ହୁଏତ ଅର୍ଥ ଥାଇପାରେ, କିନ୍ତୁ ଏଗୁଡ଼ିକ ନୂଆ ଶବ୍ଦ ଗଠନରେ ସହାୟକ ହୋଇ ମୁକ୍ତ ରୂପ ସହିତ ଅର୍ଥପୂର୍ଣ୍ଣ ହୁଅନ୍ତି । ଏକାଧିକ ମୁକ୍ତରୂପ ଯୁକ୍ତ ହୋଇ ନୂଆ ଶବ୍ଦ ଗଠିତ ହୋଇପାରେ ନାହିଁ । ଭାଷାରେ ବ୍ୟବହୃତ ବିଭିନ୍ନ ଶବ୍ଦ ଶ୍ରେଣୀର ଗଠନକୁ ରୂପତତ୍ତ୍ୱ ସାହାଯ୍ୟରେ ବର୍ଣ୍ଣନା କରାଯାଏ ।

ଭାଷାର ଧ୍ୱନିଗ୍ରାମ ଓ ରୂପଗ୍ରାମ ପରି ବାକ୍ୟ ମଧ୍ୟ ଏକ ଏକକ ଓ ଏହା ଅର୍ଥପୂର୍ଣ୍ଣ । ଓଡ଼ିଆ ବାକ୍ୟର ଦୁଇ ପ୍ରଧାନ ଭାଗ କର୍ତ୍ତାଭାଗ ଓ କ୍ରିୟାଭାଗ ମଧ୍ୟରେ କ୍ରିୟାଭାଗ ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ କେବଳ ଗୋଟିଏ କ୍ରିୟାପଦ ବା କ୍ରିୟାପଦ ଦ୍ୱାରା ନିର୍ଦ୍ଦେଶିତ ଶବ୍ଦ ବା ଶବ୍ଦର ସମଷ୍ଟି ହେଉଛି ବାକ୍ୟ । 'କରୁଛି' ପରି ଗୋଟିଏ କ୍ରିୟାପଦରେ କର୍ତ୍ତା ଓ କର୍ମ ଉଭୟ ଅନୁଚ୍ଚାରିତ ରହିଛନ୍ତି । ପୁଣି ବି ଓଡ଼ିଆରେ କ୍ରିୟାପଦ ନଥାଇ ବା କ୍ରିୟା ଅନୁଚ୍ଚାରିତ ଥାଇ ବାକ୍ୟଗଠନ ହୋଇପାରେ । 'ସେ କିଏ', 'ତୁମ ନା କ'ଣ ?' 'ମୋ ଘର କଟକ'

ପ୍ରଭୃତି ବାକ୍ୟଗୁଡ଼ିକ ଏହାର ଉଦାହରଣ । ଏହାଛଡ଼ା ପ୍ରାସଙ୍ଗିକ ଭାବରେ ହଁ, ନାଇଁ, କ'ଣ, ହଉ, ବାଃ ବାଃ ପ୍ରଭୃତି ପ୍ରତ୍ୟୁତ୍ତର ବାଚକଗୁଡ଼ିକୁ ମଧ୍ୟ ବାକ୍ୟ ପଦବାଚ୍ୟ ମନେ କରାଯାଇପାରେ ।

ଭାଷା ଓ ଭାଷାତତ୍ତ୍ୱର ପରିସର ଏପରି ବ୍ୟାପକ ଓ ବୃହତ୍ ଯେ, ଏକ କ୍ଷୁଦ୍ର ପ୍ରବନ୍ଧରେ ସେ ସମ୍ବନ୍ଧରେ ବିଶେଷ ବର୍ଣ୍ଣନା ଦେବା ଆଦୌ ସମ୍ଭବ ନୁହେଁ । ଏଣୁ ଏ ପ୍ରବନ୍ଧରେ ଉଲ୍ଲିଖିତ ତଥ୍ୟଗୁଡ଼ିକୁ ଭାଷା ସମ୍ବନ୍ଧୀୟ ଅତ୍ୟନ୍ତ ସଂକ୍ଷିପ୍ତ ସୂଚନା ଭାବରେ ହିଁ ଗ୍ରହଣ କରିବା ଉଚିତ ହେବ ।

ଗ୍ରନ୍ଥ ସୂଚନା :


୧. ଏଡୱାର୍ଡ ସାପିର, ଲାଙ୍ଗୁଏଜ୍, ୧୯୭୧ ।

୨. ଗୋଲୋକ ବିହାରୀ ଧଳ, ଭାଷାଶାସ୍ତ୍ର ପରିଚୟ, ୧୯୭୬

୩. ବିଜୟ ପ୍ରସାଦ ମହାପାତ୍ର, ଓଡ଼ିଆ ଭାଷା ତାତ୍ତ୍ୱିକ ପ୍ରବନ୍ଧ

୪. ଗୋଲୋକ ବିହାରୀ ଧଳ, ଧ୍ୱନି ବିଜ୍ଞାନ, ୧୯୭୪, ୧୯୮୩ ।




୪୮

# ପୁରୀ ବୋଲି

## ସିଦ୍ଧେଶ୍ୱର ମହାପାତ୍ର

**ମାନକ ଓଡ଼ିଆ ଭାଷା ବନାମ ଶ୍ରୀମନ୍ଦିର ଭାଷା :**

ଦ୍ରୁତ ସାମାଜିକ ପରିବର୍ତ୍ତନ ଓ ସମାନକରଣ (ଷ୍ଟାଣ୍ଡାର୍ଡ଼ାଇଜେସନ) ପ୍ରକ୍ରିୟା ହେତୁ ଓଡ଼ିଆ ଭାଷାର ବହୁ ଶବ୍ଦ ଦ୍ରୁତ ବେଗରେ ବିସ୍ମୃତ ଓ ବ୍ୟବହୃତ ହେଉଥିବାରୁ ଜୀବନ୍ତ ଓ ସତେଜ ରହିଛି । ଉଦାହରଣ- 'ହେରା' । ଏହାର ଅର୍ଥ ଦେଖା, ଦର୍ଶନ । "ହେରି ଶ୍ରୀହରି ମୁଖଇନ୍ଦୁ / ଉଛୁଳି ଉଠେ ଗୋପୀ ପ୍ରେମସିନ୍ଧୁ" ('ରହସ୍ୟମଞ୍ଜରୀ' ୧୯/୧୧) "ଚକୋର ବିଧୂଛବି ହେରି ଉସତ" (ରାଧାନାଥ ରାୟ 'ତୁଳସୀ ସ୍ତବକ') । ଏକଦା ପ୍ରଚଳିତ ଏହି 'ହେରା'ର ବ୍ୟବହାର ମାନକ ଓଡ଼ିଆ ଭାଷାରେ ପ୍ରାୟ ବିରଳ । ମାତ୍ର ଶ୍ରୀଗୁଣ୍ଡିଚା ଅବସରରେ ଅଭିମାନିନୀ ଲକ୍ଷ୍ମୀ ଥରେ ଗୁଣ୍ଡିଚାଘର ଯାଇ ଜଗନ୍ନାଥଙ୍କୁ 'ହେରି' ଦେଇ ଆସୁଥିବାରୁ ଶବ୍ଦଟି ଶ୍ରୀମନ୍ଦିରରେ ବଞ୍ଚି ରହିଛି । ଗୁଣ୍ଡିଚା ଘରୁ ଲକ୍ଷ୍ମୀଙ୍କ ଲେଉଟାଣି ଗୋହିରି ରାସ୍ତାକୁ 'ହେରା ଗୋହିରି' କୁହାଯାଏ (ବର୍ତ୍ତମାନର ହେରା ଗୋହିରି ସାହି) । ଶ୍ରୀମନ୍ଦିରରେ ବ୍ୟବହୃତ ସମସ୍ତ ଶବ୍ଦ ଶ୍ରୀମନ୍ଦିରର ବୋଲି ଦାବୀ କରାଯାଇ ନ ପାରେ । ଆଜି ଯାହା ଆପାତତଃ ଶ୍ରୀମନ୍ଦିରର ବୋଲି ମନେହେଉଛି ତହିଁରୁ ଅଧିକାଂଶ ଦିନେ ବିଭିନ୍ନ ଅଞ୍ଚଳ ଓ ପରିବେଶରେ ବ୍ୟବହୃତ ହେଉଥିଲା । ବିଭିନ୍ନ କାବ୍ୟକବିତା ଏବଂ ଐତିହାସିକ ଉପାଦାନାଦିରୁ ଏହାର ପ୍ରମାଣ ମିଳେ । 'ମଡ଼ଫୁଲି-ଦେବ / ରାଜ ଖାଦ୍ୟ । ଗ୍ରୋମ୍' ବିବରଣୀରୁ ଜଣେ ମଡ଼ଫୁଲି ପରିଛା ଶ୍ରୀମନ୍ଦିରରେ ଥିଲେ ବୋଲି ଜଣାଯାଏ । ସାରଳା ମହାଭାରତରୁ ମଡ଼ଫୁଲି ପ୍ରୟୋଗର ଦୁଇଟି ଉଦାହରଣ ନିଆଯାଉ । "ସହସ୍ରେ ସୂପକାର ରାନ୍ଧନ୍ତି ମଡ଼ଫୁଲି" (ଆଦି) । "ମଡ଼ଫୁଲି ନିଯୋଗ ବିଶ୍ୱାସ ଲୋକ ହାଥେ ଦେବୁ" (ଶାନ୍ତି) ।

ପରିବର୍ତ୍ତନ ପୃଥିବୀର ପ୍ରାକୃତିକ ନିୟମ । ସମୟର ସ୍ରୋତ ଯେ ଶ୍ରୀମନ୍ଦିର ମେଘନାଦ ପାଚେରୀରେ ଧକ୍କାଦେଇ ନାହିଁ ତା ନୁହେଁ । ତଥାପି ଶବ୍ଦ ସମୂହ ପାଇଁ ଶ୍ରୀମନ୍ଦିର ଏକ ନିର୍ଭରଯୋଗ୍ୟ ପୋତାଶ୍ରୟ ପ୍ରମାଣିତ ହୋଇଛି । ଶ୍ରୀମନ୍ଦିରର ବିଭିନ୍ନ ସ୍ଥାନ, ରୀତିନୀତି,

ଠାକୁରଙ୍କ ବେଶପୋଷାକ, ଅଳଙ୍କାର, ଖାଦ୍ୟପେୟାଦି ସହ ଶବ୍ଦଗୁଡ଼ିକ ଗ୍ରଥିତ ହୋଇଥିବାରୁ ସମୟର ଅତଡ଼ାରେ ବହିଯାଇ ନାହିଁ ।

ତେବେ ପ୍ରଶ୍ନ ଉଠିପାରେ ଶ୍ରୀମନ୍ଦିର ମଧ୍ୟରୁ କଣ ଶବ୍ଦର ବ୍ୟବହାର ଚାଲିଯାଉ ନାହିଁ ? ଶବ୍ଦସବୁ ଏଠି କ'ଣ ପୂର୍ଣ୍ଣ ସୁରକ୍ଷିତ ? ଉତ୍ତର ନକରାତ୍ମକ ହେବ । ସମୟକ୍ରମେ ଶ୍ରୀମନ୍ଦିର ଚତୁପାର୍ଶ୍ୱ ପୃଥିବୀର ଦୃଶ୍ୟାବଳୀ ବଦଳି ଯାଉଥିବା ବେଳେ ଶ୍ରୀମନ୍ଦିର ଯେ ସ୍ଥିର, ଅପରିବର୍ତ୍ତିତ ରହିଛି ତାହା ଆଦୌ ନୁହେଁ । କିନ୍ତୁ ବାହାର ଦୁନିଆ ତୁଳନାରେ ଶ୍ରୀମନ୍ଦିରରେ ପରିବର୍ତ୍ତନ ହାର ଯଥେଷ୍ଟ ମନ୍ଥର ହେତୁ ମାନକ ଓଡ଼ିଆ ତୁଳନାରେ ଶ୍ରୀମନ୍ଦିରରେ ଭାଷା ଅବକ୍ଷୟର ପ୍ରକ୍ରିୟା ଯଥେଷ୍ଟ କ୍ଷୀଣ ।

**ପରିବର୍ତ୍ତନର ଏକ ରେଖାଚିତ୍ର ଓ ଶବ୍ଦ ଅବକ୍ଷୟ :**

ପରିବର୍ତ୍ତନ ପ୍ରସଙ୍ଗର ପରିସର ବ୍ୟାପକ । ଜଗନ୍ନାଥ ଉପାସନା ଏକ ସୁପ୍ରାଚୀନ ଉପାସନା ଓ ଶ୍ରୀମନ୍ଦିର ଏକ ପ୍ରାଚୀନ ପ୍ରତିଷ୍ଠାନ । ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ଦୃଶ୍ୟାବଳୀ ବଦଳିଛି । ଜଗନ୍ନାଥ ଉପାସନାରେ ବିଭିନ୍ନ ସମୟରେ ବିଭିନ୍ନ ରଙ୍ଗ ଲାଗିଛି । ପୂର୍ବରୁ ଶ୍ରୀକ୍ଷେତ୍ର ବାଲୁକାମୟ ଓ ପ୍ରାୟ ଚତୁର୍ଦ୍ଦିଗରୁ ଜଳାବୃତ ଥିଲା, କ୍ଷେତ୍ରରେ ପାଦ ଦେବାକୁ ହେଲେ ନଈପାରି ହେବାକୁ ପଡୁଥିଲା । ଶ୍ରୀମନ୍ଦିରରେ ଭଙ୍ଗାଗଢ଼ା ଲାଗି ରହିଥିଲା । ଏଠାରେ ପରିବର୍ତ୍ତନର ଏକ ରେଖାଚିତ୍ର ପ୍ରଦାନ କରାଯାଉଛି । ଶ୍ରୀମନ୍ଦିର ସେବା ସଙ୍ଗଠନର ଏକ ସ୍ପଷ୍ଟ ଚିତ୍ର ମିଳେନାହିଁ । ଲବ୍ଧ ଉପାଦାନ ଓ ପର୍ଯ୍ୟବେକ୍ଷଣରୁ ଯାହା ଅନୁଭୂତ ହୁଏ ଏହି ପିରାମିଡ୍ ଆକୃତିର ସଙ୍ଗଠନର ଶୀର୍ଷବିନ୍ଦୁରେ ଗଜପତି ଆଦ୍ୟ ସେବକ ଭାବରେ ରହିବେ । ଏହି ବିନ୍ଦୁରେ ମନ୍ଦିର ସମ୍ପର୍କୀୟ ସମସ୍ତ କ୍ଷମତା କେନ୍ଦ୍ରୀଭୂତ ହେବ ଓ ଏହିଠାରୁ ସବୁ ନିୟନ୍ତ୍ରିତ ହେବ । ଦ୍ୱିତୀୟ ସ୍ତରରେ ଶଙ୍କରାଚାର୍ଯ୍ୟ, ଦଣ୍ଡୀ ସନ୍ନ୍ୟାସୀ, ରାଜଗୁରୁ / ପରିଛା, ଦେଉଳ ପୁରୋହିତ ରହିବେ । ଶଙ୍କରାଚାର୍ଯ୍ୟ ଏକ ଅନନ୍ୟ ସମ୍ମାନଜନକ ସ୍ଥାନର ଅଧିକାରୀ ଥିବେ । ସେ ଓ କେତେକ ଦଣ୍ଡୀ ସନ୍ନ୍ୟାସୀଙ୍କ ବ୍ୟତୀତ ଅନ୍ୟକେହି ଶ୍ରୀମନ୍ଦିରରେ ଆସନ ପାରି ବସିବା ନିଷିଦ୍ଧ । ଶଙ୍କରାନନ୍ଦ ମଠର କ୍ରମାନ୍ୱୟରୁ ଜଣାଯାଏ ଯେ ଏକଦା ଶ୍ରୀମନ୍ଦିର ସମେତ ପୁରୀର ଲୋକନାଥ ମନ୍ଦିର, ଲିଙ୍ଗରାଜ ମନ୍ଦିର ଓ କପିଳାସର ଚନ୍ଦ୍ରଶେଖରଙ୍କ ମନ୍ଦିର ଏହି ପୀଠାଧୀଶଙ୍କ ଦାୟିତ୍ୱରେ ଥିଲା । ରାଜଗୁରୁ ପରିଛା ଭାବରେ ଶ୍ରୀମନ୍ଦିରର ପ୍ରଶାସନିକ ଦାୟିତ୍ୱରେ ରହୁଥିଲେ । ଦେଉଳ ପୁରୋହିତ ମୁକ୍ତିମଣ୍ଡପ ଅଧିକାରୀ ଥିଲେ । ପୁରୋଭାଗରେ ରହି ଯାଗଯଜ୍ଞ, ପ୍ରତିଷ୍ଠା ବିଧି, ଅଭିଷେକାଦି କର୍ମମାନ କରୁଥିଲେ ଓ କରାଉଥିଲେ । ଏହାର ପରବର୍ତ୍ତୀ ସ୍ତରରେ ବକ୍ସି, ସେବାୟତ ସମ୍ପ୍ରଦାୟର ନାୟକ ଭାବରେ ପାଟଯୋଷୀ ମହାପାତ୍ର, ରାଜପ୍ରତିନିଧି ଭାବରେ ମୁଦ୍ରହସ୍ତ, ଭିତରଛ, ତଳିଛ, ଦେଉଳ ଓ ତଡ଼ାଉ କରଣଙ୍କୁ ଅବସ୍ଥାପିତ କରାଯାଇପାରେ । ଏମାନେ ମହାନାୟକ ସେବକ । ମୂଳସ୍ତରରେ ସେବାୟତ ସମ୍ପ୍ରଦାୟ ଓ

ସେମାନଙ୍କର ନାୟକମାନେ ରହିବେ । ଏହି କେତୋଟି ଶତକ ମଧ୍ୟରେ ଶୀର୍ଷବିନ୍ଦୁରେ ଥିବା କ୍ଷମତାକେନ୍ଦ୍ର ଦୁର୍ବଳ ଓ ନିଷ୍ପ୍ରଭ ହୋଇପଡ଼ିବାରୁ ସମଗ୍ର ସେବା ସଙ୍ଗଠନର ସୌଧ ଧିରେ ଧିରେ ଭୁଶୁଡ଼ିଛି । ଏହି ପତନର ପ୍ରକ୍ରିୟା ସଙ୍ଗଠନର ଠିଆ ଓ ଆଡ଼ବାଗ ଉଭୟକୁ କ୍ଷତିଗ୍ରସ୍ତ କରିଛି । ରାଜତନ୍ତ୍ର ମଳିନ ହେବାରୁ ଏଥିସହିତ ଜଡ଼ିତ ଓ ବିକଶିତ ରାଜଗୁରୁ, ପାଟଯୋଷୀ, ମୁଦ୍ରହସ୍ତ, ଷୋଳ କରଣାଦି ବ୍ୟବସ୍ଥା ମ୍ଳାନଛାୟାରେ ପରିଣତ ହୋଇଛି । ବେହରଣ ନାମକୁ ମାତ୍ର ଅଛି । ଏଠି ରାଜା, ପରିଛା, କରଣାଦିଙ୍କ ପାଦ ପଡ଼େନାହିଁ । ଏହାର ଷୋହଳ ଖମ୍ବ ମୂଳରେ ଷୋହଳ କରଣ ବସୁନାହାନ୍ତି । ବିଭିନ୍ନ ବ୍ୟବସ୍ଥାର ପତନ ସହ ତତ୍‌ସଂଲଗ୍ନ ଶବ୍ଦ ସମୂହ ଉଭେଇ ଯାଇଛନ୍ତି । ସମ୍ପ୍ରତି କେବଳ ଜଣେ ପରିଛା ଓ ଜଣେ ମାହାରିଙ୍କୁ ଦେଖିବାକୁ ମିଳୁଛି । ବଡ଼ ପରିଛାଙ୍କ ନିକଟରେ ହାରିଗୁହାରି ଜଣାଇବା ପାଇଁ ଗୁହାରିଆ ପ୍ରଧାନ ନାହାନ୍ତି । ବର୍ତ୍ତମାନ ଖଟୁଥିବା ଏକାକିନୀ ମାହାରିଙ୍କୁ ସ୍ୱପ୍ନ / ମୋହଭଙ୍ଗର ଏକ ପ୍ରତୀକ ରୂପେ ନିଆଯାଇପାରେ । ଆଉ ସକାଳ ଧୂପବେଳେ ମାହାରି ନାଚ ହେଉନି । ପରିଛା ସୁନା ବେତ ଧରି ପଟୁଆର କରୁନାହାନ୍ତି । ରବାଦିଆ, ଉପାଙ୍ଗିଆ ଆଦି ନାହାନ୍ତି କି ମାହାରିଙ୍କୁ ଆକଟ କରିବାକୁ ଦୋସନ୍ଧି ପରିଛା ନାହାନ୍ତି । କେବଳ ମାହାରି କାହିଁକି ମାଙ୍ଗଳିକ କାର୍ଯ୍ୟରେ ମଙ୍ଗଳଗାନର ପରମ୍ପରା ଓଡ଼ିଆଙ୍କ ଚଳଣିରୁ ଚାଲିଯାଇଛି । ଯେଉଁ ସେବକମାନେ ମନ୍ଦିର ରାଜନୀତି ସହ ଅଧିକତର ବା ବିଶେଷ ଭାବରେ ଜଡ଼ିତ, ସେମାନଙ୍କୁ ଛାଡ଼ି ଅନ୍ୟମାନେ ଧିରେ ଧିରେ ଅପସରି ଯାଇଛନ୍ତି / ଯିବାକୁ ବାଧ ହୋଇଛନ୍ତି । ଷୋହଳ କରଣଙ୍କ ମଧ୍ୟରୁ ଦେଉଳ, ତଡ଼ାଉ, ଚାଉଳ ବଛା ଓ ବେହେରାଙ୍କୁ ଛାଡ଼ି ଅନ୍ୟମାନେ ଶ୍ରୀମନ୍ଦିର ସେବା ବ୍ୟବସ୍ଥାରୁ ଅନ୍ତର୍ହିତ ହୋଇଗଲେଣି । ସାମାଜିକ ପରିବର୍ତ୍ତନ ହେତୁ ଅନେକ ଶ୍ରୀମନ୍ଦିରରୁ ମୁହଁ ଫେରାଇ ଅନ୍ୟ ଜୀବିକାର ଆଶ୍ରୟ ନେଲେଣି ।

ଶ୍ରୀମନ୍ଦିରରେ ବାରଘର କୋଠି ନାହିଁ, ତା' ଦାୟିତ୍ୱରେ ଚୂହାଣ ଓ ଧାନ ମାପିବା ପାଇଁ ଧାନ ମାପ ମୁଦୁଲି ନାହାନ୍ତି । ଦୁଧ ଘର ନାହିଁ । ବାର ଗୋଠ ଗାଇପଲ ପାଇଁ ବାର ଗୋଠିଆଳ ନାହାନ୍ତି । ତିଳକ ମାଟିଆ ସାହି, ମାଟିଆପଡ଼ା ଅଛି । କ୍ଷେତ୍ରରେ ଶବ ପଡ଼ିଥିଲେ ନେଇ ଶବସଂସ୍କାର କରିବା ପାଇଁ ତୀର୍ଥ ମାଟିଆ ବିରଳ । ସାହି ନାୟକ କେବଳ ଏକ ସଞ୍ଜ୍ଞା ଭାବରେ ତିଷ୍ଠିରହିଛି । କୋଠଭୋଗ ମଠ ଓ ତାହାର ଅଧିକାରୀ କୋଠଭୋଗ ଗୋସାଇଁ ଅଛନ୍ତି । ମାତ୍ର କୋଠଭୋଗ ସହ ତାଙ୍କର କିଛି ସମ୍ପର୍କ ନାହିଁ । ସାମାଜିକ ପରିବର୍ତ୍ତନ ହେତୁ ଶ୍ରୀମନ୍ଦିରରେ କିଛି କିଛି ପରିବର୍ତ୍ତନ ଘଟିଛି । ଯାନ୍ତ୍ରିକ ଘଣ୍ଟା ଆସିଗଲା ପରେ ବେହରଣରେ ଚାରିଜଣ ଖୁରିଜଗାଙ୍କୁ ବାଲିଘଣ୍ଟା ଓ ଜଳଘଣ୍ଟା ଧରି ଦଣ୍ଡଲିଟା କାଟି ସମୟ ନିର୍ଦ୍ଧାରଣ କରିବା ଆବଶ୍ୟକ ହେଉନି । ଖୁରି ଯୋଗାଉଥିବା ଓ ଗିନି ଖରାପ ହେଲେ ପରିଛାଙ୍କୁ ଜଣାଉଥିବା ଖୁରିଜଗା ପଡିଆରୀ ଆଉ ନାହାନ୍ତି । (ଅବଶ୍ୟ ଅଦ୍ୟାବଧି ଆଲଟ ଲାଗି ସମୟରେ ବାଲିଘଣ୍ଟା

ବ୍ୟବହୃତ ହେଉଛି) ପରିବର୍ତ୍ତିତ ସମୟରେ ସଭାରେଖ, ସରକାରୀ, ମାନସିଂହ, ଦେଶପ୍ରଧାନ ଅଦି ମହାପାତ୍ରମାନଙ୍କ ଦାୟିତ୍ୱ ଲୋପପାଇଯାଇଛି । କେବଳ ଉପଚାର ଚାମର ସେବାରେ ସେମାନଙ୍କ କାର୍ଯ୍ୟ ସୀମିତ ଅଛି । ପରଦାପ୍ରଥା ଉଠିଯିବା ପରେ 'ଘୋଡ଼ ଦର୍ଶନ' ବା ପରଦା ବାଡ଼ ମଧ୍ୟରେ ଥାଇ ଦର୍ଶନ ଓ ଟୋପର (ପରଦା) ଘୋଡ଼ାଇ ହୋଇ ଦର୍ଶନ ଆଉ ହେଉନାହିଁ । ରାଜା ବା ପଦସ୍ଥ ବ୍ୟକ୍ତି ବିଜେକଲେ ଶୋଧ (ଲୋକ ଖାଲି ହେବା) ବା ଅଧାଶୋଧ ହେଉନାହିଁ । ଗହଣ ବିଜେ (ରାଣୀ ପରିଚାରୀଙ୍କ ସହ ରାଜା ଶ୍ରୀମନ୍ଦିର ବିଜେ କରିବା) ଆଉ ହେଉନାହିଁ । କଳ୍ପବଟ ମୂଳରେ ରାଜାଙ୍କ ପାଲିଙ୍କି ସବାରୀ ଆଦି ରହୁନାହିଁ । ଏକ ସମୟରେ ମସାଲ ନେଇ ମନ୍ଦିରକୁ ଯବାକୁ ମର୍ଯ୍ୟାଦାର ସଙ୍କେତ ବୋଲି ମନେ କରାଯାଉଥିଲା ଓ ଏଥିନିମନ୍ତେ ରାଜାଙ୍କ ଅନୁମତି ଆବଶ୍ୟକ ହେଉଥିଲା ।

ଶ୍ରୀକ୍ଷେତ୍ରରେ ପ୍ରବେଶ ପାଇଁ ଯାତ୍ରୀକର ଟର୍ମିନାଲ ଟ୍ୟାକ୍ସରେ ରୂପାନ୍ତରିତ ହେବା ଫଳରେ ଓ ଗମାନଗମନ ପଥର ବିକାଶ ଫଳରେ ପୁରୀକୁ ପ୍ରବେଶଦ୍ୱାର ଭାବରେ ଘାଟଗୁଡ଼ିକର ଗୁରୁତ୍ୱ ଲୋପ ପାଇଛି । ଘାଟ ପଡ଼ିଆରୀ, ଘାଟ ଦୃଷ୍ଟି ଆଦି ଅନ୍ତର୍ହିତ । ଘାଟ ଗୁମାସ୍ତା ବସ୍‌ଷ୍ଟାଣ୍ଡ, ରେଳଷ୍ଟେସନ ଆଦି ଆଧୁନିକ ଘାଟରୁ ଯାତ୍ରୀ ସଂଗ୍ରହ କରୁଛନ୍ତି । ଅଠରନଳା ଘାଟ ପାଖରେ କୌଣସି ଏକ ସ୍ଥାନରେ ବଡ଼ ଦୁଆର ନାମରେ ଏକ ବଡ଼ ଫାଟକ ଥିଲା । ସେଠାରେ ବଡ଼ଦୁଆର ପଟିଆରୀ ଜଗୁଥିଲେ । ସମ୍ପ୍ରତି କଳାହାଟ ଦୁଆରକୁ ବଡ଼ଦୁଆର କୁହାଯାଉଛି । ଯାତ୍ରୀଙ୍କ ଆର୍ଥିକ ଓ ଅନ୍ୟାନ୍ୟ ବିଚାର ଭିତ୍ତିରେ ଯେଉଁ ବର୍ଗୀକରଣ ହୋଇଥିଲା ତାହା ସମତୁଲ ହୋଇଯାଇଛି । ବହୁ ସେବା ସମୟକ୍ରମେ ଆବିର୍ଭୁତ ହୋଇ ଅନ୍ତର୍ହିତ ହୋଇଛି । ଶ୍ରୀମନ୍ଦିରକୁ ଘେରି ଚାରି ଆଶ୍ରମ କେବଳ ନାମତଃ ରହିଛି । ଶରଧାବାଲି ଓ ଅଠରନଳା ନିକଟ ଭବିଷ୍ୟତରେ କିମ୍ବଦନ୍ତୀରେ ପରିଣତ ହେବାକୁ ଯାଉଛନ୍ତି । ଶରଧାବାଲି ପୋତା ହୋଇ ସମତୁଲ ହେବାପରେ ଆଉ ବାଲି ଦେଖିବାକୁ ମିଳୁନି । ଅଠରନଳା ପାଖରେ ଏକ ନୂଆ ପୋଲ ନିର୍ମିତ ହେଲାଣି । ଏହା ପାଖରେ 'ହରିଣୀ ଘାଟ' (ଜନଶ୍ରୁତି ଅନୁଯାୟୀ ବର୍ତ୍ତମାନର କୁମ୍ଭାର ପଡ଼ା ଫାଣ୍ଡି ଆଗରେ) ଥିଲା । ଜଗନ୍ନାଥବଲ୍ଲଭ ପାଖ ଏକ ଅଞ୍ଚଳକୁ 'ବଳଭଦ୍ର ବଲ୍ଲଭ' (ମ୍ୟୁନିସିପାଲିଟି ମାର୍କେଟ୍ ଓ ପୋଖରିଆ ଅଞ୍ଚଳ) କୁହାଯାଉଅଛି । ଚୁଡ଼ଙ୍ଗ ସାହିରେ 'ମଧୁପର ପାଟଣା' ନାମରେ ଏକ ଜନବସତି ଥିଲା । ଚୈତନ୍ୟ ଚକଡ଼ା ଓ ଶବର ବଂଶାବଳୀ ପୋଥିରୁ 'ହରିବଂଶପୁର' ବୋଲି ଏକ ଜନବସତିର ସୂଚନା ମିଳେ । ଦେଉଳମୁଣ୍ଡ 'ଦୋଳମଣ୍ଡପ' ଓ ନହବତ୍‌ଖାନା 'ନବାତଖାନା'ରେ ପରିବର୍ତ୍ତିତ ହୋଇଥାଇପାରେ ।

**ଶ୍ରୀମନ୍ଦିର ଭାଷା ଆଦର୍ଶ ଦେଉଳିଆ ଭାଷା :**

ଦେଉଳିଆ ଭାଷା ଭାବରେ ଶ୍ରୀମନ୍ଦିର ଭାଷାର ଏକ ସ୍ୱତନ୍ତ୍ର ମହକ ରହିଛି । ଏଠି

'ଧୂପ'ର ଅର୍ଥ ଭୋଗ, 'ଅବକାଶ'ର ଅର୍ଥ ଦନ୍ତମଞ୍ଜନ ଓ ସ୍ନାନାଦି ନିତ୍ୟକର୍ମ । ପୁରୀରେ ଲୋକେ ପଚାରନ୍ତି 'ସମିଆ' (ସମୟ>) କ'ଣ ? ଏହାର ଅର୍ଥ ମନ୍ଦିରରେ ବର୍ତ୍ତମାନ ସମୟରେ କି ନୀତି ଚାଲିଛି । ଧୂପ ଉଠିବା ପୂଜା ଆରମ୍ଭ ଅବସ୍ଥା, ଭୋଗ ଡାକିଯିବା ଭୋଗ ବୋହିବା ପାଇଁ କହିବାକୁ ଯିବା, ଭୋଗ ବସିବା ଭୋଗ ଚାଲିଥିବା, ଧୂପ ବଢ଼ିବା ଧୂପ ସରିବା ଅର୍ଥରେ ବୁଝାଯାଏ । ପୂର୍ବଦିନରୁ ଖଟୁଥିବା ସେବକଙ୍କୁ 'ବାସିପାଳିଆ' କୁହାଯାଏ । ବାସିପାଳିଆ 'ସଜପାଳିଆ'ଙ୍କୁ ଦାୟିତ୍ୱ ଜିନିଷପତ୍ରାଦି ମଣେଇ ଦିଅନ୍ତି । ଏହିଭଳି କେତେକ ପାରିଭାଷିକ ଶବ୍ଦ ଶ୍ରୀମନ୍ଦିରରେ ବ୍ୟବହୃତ । 'ବେଢ଼' ହେଉଛି (rotation ଭିତ୍ତିରେ ପ୍ରସ୍ତୁତ) ସେବକଙ୍କ ପାଳି ଓ ତତ୍‌ସମ୍ପର୍କୀୟ ଦାଖଲ ଖାରଜ ଆଦି ଜ୍ଞାତବ୍ୟ ବିଷୟର ତାଲିକା । ବେଶ 'ଭେଶ', ଦେଉଳ 'ଦଉଳ', ଭୋଗମଣ୍ଡପ 'ଉଅଣ୍ଡ', ମଣ୍ଡପ 'ମୁଣ୍ଡି' ଭାବରେ କଥିତ । କୌତୂହଳପ୍ରଦ ପ୍ରୟୋଗ ହେଉଛି 'ବୁଢ଼ା ହେବା' । ପହିଲି ଭୋଗ ମାସେ ପର୍ଯ୍ୟନ୍ତ ହୁଏ । ମାସର ଶେଷଆଡ଼କୁ କୁହାଯାଏ- ପହିଲି ଭୋଗ ବୁଢ଼ା ହେଲାଣି । ଧୋଇବା ଓ ପଖାଳିବା ଏକ କଥା ହେଲେ ମଧ୍ୟ ଏଠାରେ ଉଭୟକୁ ମିଶାଇ 'ଧୋପଖାଳ' କୁହାଯାଏ । କେବଳ ଶ୍ରୀମନ୍ଦିର କାହିଁକି ଦେଉଳିଆ ଭାଷାର ଏ ସ୍ୱତନ୍ତ୍ର ମହକ ଅନ୍ୟ ମନ୍ଦିରମାନଙ୍କରେ ମଧ୍ୟ ଊଣା ଅଧିକେ ରହିଛି ।

ଶ୍ରୀମନ୍ଦିର ଭାଷା ଅନେକ ମନ୍ଦିର ପାଇଁ ଆଦର୍ଶ ସ୍ଥାନୀୟ ହୋଇପଡ଼ିଛି । ଶ୍ରୀମନ୍ଦିର ଅନୁରୂପ ଶବ୍ଦ ବହୁ ମନ୍ଦିରରେ ପ୍ରଚଳିତ । ଅନ୍ୟ ଜଗନ୍ନାଥ ମନ୍ଦିରଗୁଡ଼ିକରେ ପ୍ରଚଳିତ ପୂଜା ରୀତିନୀତି ପ୍ରାୟତଃ ମୂଳ ମନ୍ଦିର ଅନୁରୂପ । ଯେଉଁଠାରେ ରଥଯାତ୍ରାଟିଏ ହେବ, ସେଠାରେ ରଥଦାଣ୍ଡ, ରଥ ନିର୍ମାଣ ପାଇଁ ମହାଖଳା, ମାଉସୀମା, ଗୁଣ୍ଡିଚା ଘର ଆଦି ରହିବେ । ଏପରିକି ଲିଙ୍ଗରାଜ ମନ୍ଦିରରେ ହେରା ଦଶମୀ ପାଳିତ ହୁଏ । ରଥରୁ ଠାକୁର ବାହୁଡ଼ିଲା ବେଳେ ପାର୍ବତୀ ଚାହାଁଣି ମଣ୍ଡପରୁ ଚାହାନ୍ତି । ସେଠାରେ ମଧ୍ୟ ବଚନିକା ହୁଏ । ତେଣୁ ଶ୍ରୀମନ୍ଦିର ଶବ୍ଦାବଳୀ ମନ୍ଦିର ବେଢ଼ା ବା କ୍ଷେତ୍ରର ଚଉହଦି ମଧ୍ୟରେ କେବଳ ଆବଦ୍ଧ ନୁହେଁ, ଏହା ଏକ ବ୍ୟାପକ ଭୂମିରେ ବିକୀର୍ଣ୍ଣ ।

**ଶବ୍ଦ ପ୍ରହେଳିକା :**

ଏଠାରେ କେତେକ ଶବ୍ଦ ସାମ୍ପ୍ରତିକ ପରିପ୍ରେକ୍ଷୀରେ ପ୍ରହେଳିକାପୂର୍ଣ୍ଣ ମନେହୁଏ । ପଣ୍ଡିତମାନଙ୍କର ଏହି ଶବ୍ଦଗୁଡ଼ିକର ମୂଳ ନିରୂପଣ ନେଇ ପ୍ରୟାସ ସତ୍ତ୍ୱେ ସେଗୁଡ଼ିକ ତଥାପି ଅନାବିଷ୍କୃତ ଅଞ୍ଚଳ ପରି ମନେହୁଅନ୍ତି ଓ ଗବେଷକମାନଙ୍କୁ ପ୍ରଲୁବ୍ଧ କରନ୍ତି । ଅଣସର, ଅଗ୍ନିଶର୍ମା, ଗୁଣ୍ଡିଚା, ଜହ୍ନିମୁଣ୍ଡିଆ, ଦଇତା, ଦୋସନ୍ଧି ପରିଛା, ପଶୁପାଳକ, ମାହାରି ଆଦି ଶବ୍ଦ ଏହି ପର୍ଯ୍ୟାୟଭୁକ୍ତ । ମୁଦ୍ରହସ୍ତଙ୍କୁ କାହିଁକି ଅଗ୍ନିଶର୍ମା କୁହାଯାଇଛି ତାହା ବର୍ତ୍ତମାନ ସ୍ପଷ୍ଟ ନୁହେଁ । ଗୁଣ୍ଡିଚା ଶବ୍ଦର ମୂଳ ନିରୂପଣ ନେଇ ବହୁ ଭିନ୍ନ ମତ ପ୍ରକାଶିତ ହେଉଛି ଓ ବହୁ

ତର୍କ ବିତର୍କ ଚାଲିଛି । ଗବେଷକ ସନ୍ତୁଷ୍ଟ ହୋଇଗଲେ ନିଜ ତଥା ଅନ୍ୟ ସହ ଏକ ବୁଝାମଣାରେ ପହଞ୍ଚିଗଲେ ରାସ୍ତାମାନ ବନ୍ଦ ହୋଇଯାଏ । (ଇତିହାସ ସମ୍ପର୍କରେ ଏକ ଅପ୍ରିୟ ମନ୍ତବ୍ୟ, 'a bundle of lies mutually agreed upon' ଏଠାରେ ସ୍ମରଣ କରାଯାଇପାରେ) । ଗୁଣ୍ଡିଚାର ଶବ୍ଦ ନେଇ ଗବେଷଣା ଆମକୁ ସତ୍ୟର ନିକଟବର୍ତ୍ତୀ କରିଛି ବା ସତ୍ୟରୁ ଦୂରେଇ ନେଇଛି, ତାହା କହିବା କଠିନ ମାତ୍ର ଶବ୍ଦଟିକୁ ବିଭିନ୍ନ ଦିଗରୁ ପର୍ଯ୍ୟବେକ୍ଷଣ କରିବାପାଇଁ ବେଶ୍ ଏକ କ୍ଷେତ୍ର ପ୍ରସ୍ତୁତ କରିଛି ।



## ୪୯

# ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା

### ନଗେନ୍ଦ୍ର ନାଥ ମହାପାତ୍ର

ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ଉତ୍ତର-ପୂର୍ବାଞ୍ଚଳ ଓ ମେଦିନପୁର ଜିଲ୍ଲା (ପଶ୍ଚିମବଙ୍ଗ)ର ଦକ୍ଷିଣ ପଶ୍ଚିମାଂଶ ପରସ୍ପର ସଂଲଗ୍ନ ଅଞ୍ଚଳ, ବାଲେଶ୍ୱର, ବାରିପଦା ଓ ମେଦିନୀପୁର ସହର ମଧ୍ୟସ୍ଥିତ ଅଞ୍ଚଳକୁ ଓଡ଼ିଶାର ଉତ୍ତର-ପୂର୍ବାଞ୍ଚଳ ରୂପେ ଗ୍ରହଣ କରାଯାଉଛି । ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରଚଳିତ ଲୋକକଥିତ ଭାଷା ହିଁ ଉତ୍ତର-ପୂର୍ବାଞ୍ଚଳ ଓଡ଼ିଆ ଭାଷା ରୂପେ ପରିଗଣିତ । ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଭୋଗରାଇ, ବାଲିଆପାଳ, ଜଳେଶ୍ୱର, (ବାଲେଶ୍ୱର ସଦର) ମୁରୁଡ଼ା, ଶୁଳିଆପଦା, କୁଳିଅଁଳା (ବାରିପଦା ସହର) ନୟାଗ୍ରାମ (ଝାଡ଼ଗ୍ରାମ ସବ୍‌ଡ଼ିଭିଜନ) ଦାନ୍ତନ, ମୋହନପୁର, ରାମନଗର, କାନ୍ଥୀ (ମେଦିନୀପୁର ସଦର) ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ରୂପରେ ଅଧିକ ଘନିଷ୍ଠ ଐକ୍ୟ ରକ୍ଷିତ ହୋଇଥିବା ସ୍ଥଳେ ଆଧୁନିକ କାଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର ଓ ପ୍ରଭାବ ଫଳରେ ବାଲେଶ୍ୱର, ବାରିପଦା, ମେଦିନୀପୁର ସହରାଞ୍ଚଳରେ ମାନକ ଭାଷା (ଓଡ଼ିଆ ଓ ବଙ୍ଗଳା)ର ପ୍ରଚଳନ ଅଧିକ । ଏତଦ୍‌ବ୍ୟତୀତ ଏହି ଉପଭାଷା ଓଡ଼ିଶା, ପଶ୍ଚିମ ବଙ୍ଗ, ସଂଲଗ୍ନ ବିହାର ପ୍ରଦେଶର ସିଂଭୂମ ସୀମାନ୍ତ ଗୋପୀବଲ୍ଲଭପୁର, ବାହାଡ଼ା ଗୋଡ଼ା (ଧଳଭୂମି), ଷଢ଼େଇକଳା, ଖରସୁଆଁ ଅଞ୍ଚଳରେ (କେତେକାଂଶରେ ପୂର୍ବୀ ହିନ୍ଦୀ ପ୍ରଭାବିତ) ପ୍ରଚଳିତ । ଏକଭାଷା କ୍ଷେତ୍ରରୂପେ ଉତ୍ତରପୂର୍ବାଞ୍ଚଳର ବୈଶିଷ୍ଟ୍ୟ ହେଉଛି ଯେ ଏହା ତିନିଗୋଟି ଭାଷା-ପରିବାରର ମିଳନ କ୍ଷେତ୍ର । ଆର୍ଯ୍ୟ-ଗୋଷ୍ଠୀର ତିନିଗୋଟି ପ୍ରଧାନ ଭାଷା ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ବ୍ୟତୀତ ଉର୍ଦ୍ଦୁ, ହିନ୍ଦୁସ୍ଥାନୀ ଓ ପାର୍ଶୀ ପ୍ରଭୃତି ଭାଷା ପ୍ରଚଳିତ । ଆର୍ଯ୍ୟେତର ଭାଷା ଭାବେ ମୁଣ୍ଡା ଗୋଷ୍ଠୀର ସାନ୍ତାଳୀ, ହୋ, ଭୂମିଜ, ମୁଣ୍ଡାରି ପ୍ରଭୃତି ଭାଷା ଓ ଦ୍ରାବିଡ ଗୋଷ୍ଠୀର ଓରାଓଁ, ଖଡ଼ିଆ, ଗଣ୍ଡି ପ୍ରଭୃତି ଭାଷା ପ୍ରଚଳିତ । ଏତଦ୍‌ବ୍ୟତୀତ କର୍ମାଳୀ, ବାଥୁଡ଼ି, ଭୂୟାଁ ପ୍ରଭୃତି ଭାଷା ମଧ୍ୟ ଏ ଅଞ୍ଚଳରେ ପ୍ରଚଳିତ । ଉପରୋକ୍ତ ଅଞ୍ଚଳରେ ବେସରକାରୀ/ସରକାରୀ ସ୍ତରରେ ଅଫିସିଆଲ ଭାଷା ରୂପେ 'ଇଂରାଜୀ' ବ୍ୟବହୃତ ହେଉଅଛି ।

ସାଧାରଣତଃ କୌଣସି କ୍ଷେତ୍ରବିଶେଷରେ ଏକାଧିକ ଭାଷା ପ୍ରଚଳିତ ଥିଲେ ଭାଷାମାନଙ୍କ ମଧ୍ୟରେ ପାରସ୍ପରିକ ସଂଯୋଗ ଘଟିବାର ଅବକାଶ ଆସିବା ସଙ୍ଗେ ସଙ୍ଗେ ବିଶେଷ ଲୌକିକ ପ୍ରବୃତ୍ତି ବିକାଶ କରିଥାଏ । ପୁଣି ଏହି ଭାଷାମାନଙ୍କ ମଧ୍ୟରୁ ଯଦି କୌଣସି ଭାଷା କୌଣସି ସ୍ତରରେ ବିଶେଷ ମର୍ଯ୍ୟାଦା ବା ଗୁରୁତ୍ୱ ଲାଭ କରେ ତାହେଲେ ଅନ୍ୟାନ୍ୟ ଭାଷା ସକଳ ତାହାର ଆଦର୍ଶାଭିମୁଖୀ ହୋଇପଡ଼ନ୍ତି । ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ଉପାନ୍ତଅଞ୍ଚଳୀୟ ଉପଭାଷାର ଭାଷାତାତ୍ତ୍ୱିକ ବିଶ୍ଳେଷଣ କଲେ, ଏହାର ସ୍ୱାତନ୍ତ୍ୟ ଓ ଔପଭାଷିକ ସୃଷ୍ଟି ମୂଳରେ କେତେକ ନିର୍ଧାର୍ଯ୍ୟ ଭାଷାତାତ୍ତ୍ୱିକ ଓ ଐତିହାସିକ କାରଣ ବିଦ୍ୟମାନ ଥିବା ବିଷୟ ଉପଲବ୍ଧି ହେବ ।

ପନ୍ଦରଶହ ବୟାଅଶୀ ଖ୍ରୀ.ରେ ତୋଡ଼ରମଲ୍ଲଙ୍କ ଶାସନ କାର୍ଯ୍ୟରେ ଓଡ଼ିଆ ପରିବର୍ତ୍ତେ ପାର୍ଶୀ ଭାଷା ପ୍ରଚଳିତ ହେଲା । ଷୋହଳ ଶହ ଏଗାର ଖ୍ରୀଷ୍ଟାବ୍ଦରେ ମରହଟ୍ଟା ଭାସ୍କର ପଣ୍ଡିତ ବଙ୍ଗର ନବାବଙ୍କ ଠାରୁ ଓଡ଼ିଶା ଶାସନ ଭାର ଗ୍ରହଣ କଲେ । ଷୋହଳଶହ ଚାଳିଶ ଶାଳରେ ଇଂରେଜମାନେ ବାଲେଶ୍ୱରରେ ବାଣିଜ୍ୟ କୋଠୀ ସ୍ଥାପନ କଲେ । ପର୍ତ୍ତୁଗୀଜ୍ ଓ ଓଲନ୍ଦାଜମାନେ, ବାଲେଶ୍ୱର, ହିଜିଲୀ ପ୍ରଭୃତି ସ୍ଥାନରେ ବାଣିଜ୍ୟ ବ୍ୟବସାୟରେ ଲିପ୍ତ ଥିଲେ । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ଓ ଶାସନ କାର୍ଯ୍ୟ ପରିଚାଳନା ନିମନ୍ତେ ଶିକ୍ଷିତ ବଙ୍ଗାଳୀମାନଙ୍କୁ ନିଯୁକ୍ତ କରିଥିଲେ । ପୂର୍ବତନ ମୟୂରଭଞ୍ଜ ରାଜ୍ୟର ଶାସନ ପରିଚାଳନାରେ ମଧ୍ୟ ବହୁ ସଂଖ୍ୟକ ବଙ୍ଗାଳୀ ନିଯୁକ୍ତି ହୋଇଥିଲେ । ଆଲୋଚ୍ୟ ଅଞ୍ଚଳର କଥିତ ଭାଷା ଉପରେ ଏ ସବୁର ପ୍ରଭାବ ପରିଲକ୍ଷିତ ହୁଏ ।

ମେଦିନୀପୁର ଜିଲ୍ଲା ବହୁ କାଳ ଧରି ବିଭିନ୍ନ ଶାସନାଧୀନ ହୋଇ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ବଙ୍ଗଳାରେ ରହିଥିଲେ ହେଁ, ଏଠାରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ଅକ୍ଷୁଣ୍ଣ ରହିଥିଲା ।

ଏ ସମ୍ପର୍କରେ ଓଡ଼ିଆ ସାହିତ୍ୟ ଇତିହାସର ବିଶିଷ୍ଟ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ ରାଜେନ୍ଦ୍ର ଲାଲ ମିତ୍ରଙ୍କ ଉକ୍ତିକୁ ତର୍ଜମା କରି ଲେଖିଛନ୍ତି, ଏବର ମେଦିନୀପୁର ଓ ନାରାୟଣପୁର ପ୍ରଭୃତି ଅଞ୍ଚଳ (ଯାହା ପରବର୍ତ୍ତୀ କାଳରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଅଛି) ସେ ସମୟରେ 'ଜଳେଶ୍ୱର ସରକାର'ର ଅନ୍ତର୍ଭୁକ୍ତ ଥିଲା । ମାତ୍ର ଇଷ୍ଟ-ଇଣ୍ଡିଆ କମ୍ପାନୀ, ବଙ୍ଗଳା, ବିହାର ଓ ଓଡ଼ିଶାର ଦେୱାନୀ ଅଧିକାର କଲାବେଳକୁ ଓଡ଼ିଶାର ଉତ୍ତର ସୀମା କ୍ରମେ ସଂକୁଚିତ ହୋଇ ଆସି ରୂପନାରାୟଣ ନଦୀର ଦକ୍ଷିଣ ତୀରରେ ପହଞ୍ଚିଲା ପରେ ମେଦିନୀପୁର ଜିଲ୍ଲା ବର୍ଦ୍ଧମାନର କମିଶନରଙ୍କ ଦ୍ୱାରା ଶାସନାଧିନ ହେବାପରେ ଓଡ଼ିଶାର ଉତ୍ତର ସୀମା ସୁବର୍ଣ୍ଣରେଖା ନଦୀର ତୀରବର୍ତ୍ତୀଭୂମି ପର୍ଯ୍ୟନ୍ତ ଆହୁରି ସଂକୁଚିତ ହୋଇ ଆସିଥିଲା । ଶାସନତାନ୍ତ୍ରିକ ଭାଗ ବିଭାଗ ଫଳରେ ଓଡ଼ିଶାର ଉତ୍ତର ଓ ଦକ୍ଷିଣ ସୀମାରେ ସଂକୁଚିତ ଓ ପରିବର୍ତ୍ତନ ଯାହା ହୋଇଥାଉନା କାହିଁକି, ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏହି

ଭୂମିରେ ଓଡ଼ିଆ ଏକାନ୍ତ ପ୍ରଚଳିତ ଭାଷା ଥିଲା । ବିଶେଷତଃ ଓଡ଼ିଶାର ଉତ୍ତର ସୀମାରେ ମେଦିନୀପୁର ଜିଲ୍ଲା ପୂରାପୂରି ଓଡ଼ିଆ ଭାଷୀ ରହିଥିଲା ।

"A little before the time, when the East India company assumed the Dewany of Bengal, Bihar and Orissa, the northern boundary of the last named province, was the south of the Rupnarayan river, and that was propably its extreme limit to the north, for it is upto that line that the Uriya dialect was always current unit pressed back to the bank of the Subarnarekha when midnapur was transferred to the Commissionership of Burdwan-" (Antiquities of Orissa.)

ମେଦିନୀପୁର ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯିବା ପରେ ସୁଦ୍ଧା ଓଡ଼ିଆ ଭାଷା ଏହି ଅଞ୍ଚଳରେ ପ୍ରଚଳିତ ଥିବା ଉଲ୍ଲେଖ କରି ସାର ଜନବିମ୍‌ସ୍ ଲେଖିଛନ୍ତି ଓଡ଼ିଶାର ଉତ୍ତରରେ ସୁବର୍ଣ୍ଣରେଖା ନଦୀ କୂଳେ କୂଳେ ଓ ହିଜିଳି ଉପକୂଳରେ ଏପରିକି ମେଦିନୀପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳରେ ଏକ ପ୍ରକାର ଓଡ଼ିଆ ଅପଭ୍ରଂଶ ଓ ବଙ୍ଗଳା ଅପଭ୍ରଂଶର ମିଶାମିଶି କଥିତ ଭାଷା ରୂପେ ପ୍ରଚଳିତ ।

In the north of Orissa, about the Subarnarekha river and along the Hijli coast, and even to within short distance of midnapur a corrupt-from of Oriya is spoken, mixed with an equally corrupt from of Bengali." (Comparative Grammar of Indo-Aryan languages- P.100.)

ଫକୀର ମୋହନ ଆତ୍ମଜୀବନ ଚରିତରେ ଲେଖିଛନ୍ତି, "ମେଦିନପୁର ଜିଲ୍ଲା ପରିମାଣ ପ୍ରାୟ ୫ ହଜାର ୨ଶତ ମାଇଲ । ସେଥିମଧ୍ୟରୁ ଜିଲ୍ଲାର ଦକ୍ଷିଣାଞ୍ଚଳ ପ୍ରାୟ ୨୨ଶତ ମାଇଲ ନିରୋଳା ଓଡ଼ିଆଭାଷୀମାନଙ୍କ ସ୍ଥାନ । ସେମାନଙ୍କ ଘର ବାହାରର କଥା ଭାଷା, ଘରୋଇ ଚିଠି, ହିସାବ ପତ୍ର, ମହାଜନ ସିରସ୍ତା, ଦଲିଲ ଦସ୍ତାବିଜ କେବଳ ଓଡ଼ିଆ ଭାଷାରେ ଲେଖାପଢ଼ା ହେଉଥିଲା । ପୂର୍ବେ ମେଦିନିପୁର ଜିଲ୍ଲାର କଚେରୀ ଭାଷା ମଧ୍ୟ ଆଂଶିକ ଓଡ଼ିଆ ଥିଲା । ବାଲେଶ୍ୱର ଜିଲ୍ଲା ସଦର କଚେରୀରୁ ଅମଲାମାନେ ନିଯୁକ୍ତ ହୋଇ ସେ ସ୍ଥାନକୁ ଯାଉଥିଲେ ।"

ଉପରୋକ୍ତ ସମସ୍ତ ଅଞ୍ଚଳ ଅତୀତରେ ଐତିହାସିକ କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା ଦୃଷ୍ଟିରୁ ଏଠାରେ ଓଡ଼ିଆ ଭାଷା ପୂର୍ଣ୍ଣ ପ୍ରତିଷ୍ଠା ଲାଭ କରିଥିଲା । ଭାଗବତ ଟୁଙ୍ଗୀମାନ ଗଠିତ ହୋଇ ଓଡ଼ିଆ ଭାଷା ଓ ସାହିତ୍ୟ ଶିକ୍ଷାର ପ୍ରସାର ଏବଂ ସଂସ୍କୃତିର ବିକାଶ ଘଟିଥିଲା । ସ୍ୱାଧୀନ ଭାରତର ପ୍ରତି ପ୍ରଦେଶରେ ସେଠାକାର ପ୍ରଧାନ ଭାଷା ପ୍ରଚଳିତ ହୁଏ । ସେ ପ୍ରଦେଶର ସରକାର ସେଠାକାର ପ୍ରଧାନ ଭାଷାର ଉନ୍ନତିକଳ୍ପେ ସବୁପ୍ରକାର ଚେଷ୍ଟା

କରିଥାନ୍ତି । ବଙ୍ଗଳା ଭାଷାର ପ୍ରଚଳନ ହେତୁ ମେଦିନୀପୁର ବାସୀ ଓଡ଼ିଆ ଶିକ୍ଷା ଦିଗରୁ ପୂର୍ଣ୍ଣତଃ ବଞ୍ଚିତ ହୋଇଛନ୍ତି । ତଥାପି ତାଙ୍କର 'ବୁନିୟାଦ୍' ମାତୃଭାଷା ଓଡ଼ିଆକୁ ଭୁଲିପାରି ନାହାନ୍ତି କିମ୍ବା ସେ ସାହିତ୍ୟକୁ ଛାଡ଼ିପାରି ନାହାନ୍ତି । ଏଠାକାର ଭାଷା ମିଶ୍ରିତ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାର ବିଭିନ୍ନ ବୈଶିଷ୍ଟ୍ୟର ପ୍ରାଧାନ୍ୟ ଲକ୍ଷଣୀୟ । ଏକ ସୀମାନ୍ତବର୍ତ୍ତୀ ଅଞ୍ଚଳ ଭାବେ ଏହି ଉପଭାଷାର ଅସମାପିକା କ୍ରିୟାରୂପ ତଥା ଶାବ୍ଦିକ ପ୍ରୟୋଗ କ୍ଷେତ୍ରରେ କିଛିଟା ବଙ୍ଗୀୟ ପ୍ରଭାବ ଅନୁଭୂତ ହୋଇଥାଏ । କିନ୍ତୁ ତା'ର ବାକ୍‌ରୀତି ଓ ଶବ୍ଦଭଣ୍ଡାର ବହୁ ପରିମାଣରେ ଓଡ଼ିଆ ଭାଷାର ମୌଳିକ ସମ୍ପଦରେ ସମୃଦ୍ଧ । ଅର୍ଦ୍ଧମାଗଧୀ ପରିବାରଭୁକ୍ତ ଆଧୁନିକ ସମସ୍ତ ଭାଷା ମଧ୍ୟରେ ଓଡ଼ିଆ ସର୍ବାଧିକ ରକ୍ଷଣଶୀଳ । ଡଃ ସୁନୀତି କୁମାର ଚାଟାର୍ଜୀ ଏହା ସ୍ୱୀକାର କରିଛନ୍ତି । ପୁନଶ୍ଚ ଡ. ଦେବୀ ପ୍ରସନ୍ନ ପଟ୍ଟନାୟକ ପ୍ରମାଣିତ କରିଛନ୍ତି ଯେ ବଙ୍ଗଳା ଏବଂ ଅସମୀୟା ତୁଳନାରେ ମୂଳ ଅର୍ଦ୍ଧମାଗଧୀ ଭାଷାରୁ ଓଡ଼ିଆ ପ୍ରଥମେ ବିଚ୍ଛିନ୍ନ ହୋଇଥିଲା । ଓଡ଼ିଶାର ଉତ୍ତରାଞ୍ଚଳୀୟ ଉପଭାଷାରେ ବଙ୍ଗୀୟ ସଂସର୍ଗ ତାକୁ ଏଭଳି ସ୍ୱାତନ୍ତ୍ର୍ୟ ପ୍ରଦାନ କରିନାହିଁ । ବରଂ ମୂଳ ଅର୍ଦ୍ଧମାଗଧୀ ଭାଷାରୁ ଓଡ଼ିଆ, ବଙ୍ଗଳା ଓ ଅସମୀୟା ଆଦି ଆଧୁନିକ ଭାରତୀୟ ଭାଷାର ଉନ୍ମେଷ କାଳରେ ଅର୍ଥାତ୍ ଏଗୁଡ଼ିକ ସୃଷ୍ଟିର ଠିକ୍ ଅବ୍ୟବହିତ ପୂର୍ବରୁ ଯେଉଁ ଔପଭାଷିକ ସ୍ୱାତନ୍ତ୍ର୍ୟମାନ ସୃଷ୍ଟି ହୋଇଥିଲା, ତାହାହିଁ ଆଲୋଚ୍ୟ ଉପଭାଷାରେ ସମଧିକ ପରିମାଣରେ ବିଧୃତ । ଏହାହିଁ ତା'ର ସ୍ୱାତନ୍ତ୍ର୍ୟର ପ୍ରକୃଷ୍ଟି ସମ୍ପାଦନ କରେ ।

ପଶ୍ଚିମ-ବଙ୍ଗ ସରକାର ମେଦିନୀପୁର ଅଞ୍ଚଳରେ ବଙ୍ଗଳା ଭାଷା ଶିକ୍ଷା ଦେବାରେ ଯଥେଷ୍ଟ ଉଦ୍ୟମ କରିଛନ୍ତି । ପୂର୍ବରୁ ଏ ଅଞ୍ଚଳରେ ଓଡ଼ିଆ ଭାଷାର ପୂର୍ଣ୍ଣ ପ୍ରଚଳନ ଥିଲା । ଅବଧାନମାନେ ଚାହାଳୀମାନ ବସାଇ ଚାଟମାନଙ୍କୁ ପଢ଼ାଉଥିଲେ । ଇଂରେଜ ସରକାରଙ୍କ ସମୟରେ ଓଡ଼ିଆ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇ ଓଡ଼ିଆ ଶିକ୍ଷା ଦିଆ ଯାଉଥିଲା । ଇଂରେଜ ସରକାରଙ୍କ ଶିକ୍ଷା ରିପୋର୍ଟ ଅନୁସାରେ ଊନବିଂଶ ଶତକରେ ମେଦିନୀପୁରରେ ଅନେକଗୁଡ଼ିଏ ଓଡ଼ିଆ ବିଦ୍ୟାଳୟ ଗଢ଼ି ଉଠିଥିଲା । ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପର୍ଯ୍ୟନ୍ତ ଓଡ଼ିଆ ବିଦ୍ୟାଳୟମାନ ଏ ଜିଲ୍ଲାରେ ରହିଥିଲା । ସ୍ୱର୍ଗତଃ ରମେଶ ଚନ୍ଦ୍ର ଦତ୍ତ, ଜଣେ କୃତୀ ଶିକ୍ଷକ ଉକ୍ତି ଏଠାରେ ଉଦ୍ଧାର କରାଗଲା । "ଏ ଅଞ୍ଚଳର ବାଲେଶ୍ୱର ଓ ମେଦିନୀପୁର ସୀମାରେ ବାଲେଶ୍ୱର ଜିଲ୍ଲାର ଆଡ଼ିନଗା ଓ ମେଦିନୀପୁରର ଧୋଇପଡ଼ା ନାମକ ଦୁଇଟି ଗ୍ରାମ ଅବସ୍ଥିତ । ପ୍ରାୟ ୩୦ବର୍ଷ ତଳେ ଉକ୍ତ ଆଡ଼ିନଗା ଗ୍ରାମରେ ଗୋଟିଏ ଓଡ଼ିଆ ଉ.ପ୍ରା. ବିଦ୍ୟାଳୟ ଥିଲା । ସେଠରେ ସେ ଅଞ୍ଚଳର ମେଦିନୀପୁର ତଥା ବାଲେଶ୍ୱର ଜିଲ୍ଲାର ସମସ୍ତ ଗ୍ରାମର ପିଲା କେବଳ ଓଡ଼ିଆ ହିଁ ପଢ଼ୁଥିଲେ । କାରଣ ନିକଟବର୍ତ୍ତୀ ୪/୫ ମାଇଲ୍ ମଧ୍ୟରେ କୌଣସି ବଙ୍ଗଳା ସ୍କୁଲ ନ ଥିଲା । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାପରେ ସୀମାନ୍ତର ଏହି ଆଡ଼ିନଗା ଗ୍ରାମଟିରୁ ଓଡ଼ିଆ ଉ.ପ୍ରା. ସ୍କୁଲ ଏକାବେଳକେ ଉଠିଗଲା । କିନ୍ତୁ ଧୋଇପଡ଼ା

ଗ୍ରାମରେ ବଙ୍ଗଳା ମାଇନର ତଥା ଇଂରାଜୀ ସ୍କୁଲ ଖୋଲା ହେଲା । ନିକଟବର୍ତ୍ତୀ କେତେକ ଓଡ଼ିଆ ଗ୍ରାମର ପିଲାମାନେ ସେହି ବଙ୍ଗଳା ସ୍କୁଲରେ ପଢ଼ିବାକୁ ବାଧ ହେଲେ ।" ଏଥିରୁ ସ୍ପଷ୍ଟ ବୁଝାପଡୁଛି ଯେ ୧୯୩୬ ମସିହା ଅପ୍ରେଲ ପହିଲା ପରେ ମେଦିନୀପୁରରୁ ଓଡ଼ିଆ ଭାଷା ଶିକ୍ଷାର ସମସ୍ତ ସୁଯୋଗ ଓ ସୁବିଧା ପୂର୍ଣ୍ଣ ରୂପେ ଲୋପ ପାଇଥିଲା ।

ପଶ୍ଚିମ ବଙ୍ଗଳାରେ କେବଳ ହାଓଡ଼ା ଜିଲ୍ଲା ବ୍ୟତୀତ ଅନ୍ୟ ଜିଲ୍ଲାମାନଙ୍କ ତୁଳନାରେ ମେଦିନୀପୁରରେ ପ୍ରାଥମିକ ଶିକ୍ଷାବ୍ୟାପକ ଭାବେ ପ୍ରସାରିତ ହୋଇଥିଲା । ଏହା ବିଂଶ ଶତକର ପ୍ରଥମ ଭାଗର ଏକ ପରିସଂଖ୍ୟାନ ରିପୋର୍ଟରୁ ଜଣାଯାଏ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶଗଠିତ ହେବାପରେ ମେଦିନୀପୁରର ସମସ୍ତ ଓଡ଼ିଆ ସରକାରୀ ବିଦ୍ୟାଳୟ ଲୋପ ହେଲା । ବହୁ ପୂର୍ବରୁ ମେଦିନୀପୁରର ବିସ୍ତୃତ ଅଞ୍ଚଳର ଗ୍ରାମମାନଙ୍କରେ ଥିବା ଚାଟଶାଳୀମାନ ବି ନଷ୍ଟ ହୋଇଥିଲା । ଅବଧାନମାନେ ବାରମ୍ବାର ଓ ବହୁଦିଗରୁ ନିର୍ଯ୍ୟାତିତ ହୋଇ ବିତାଡ଼ିତ ହୋଇଥିଲେ । ଫକୀରମୋହନ ତାଙ୍କ ଆତ୍ମଜୀବନରେ ଏ ସମ୍ପର୍କରେ ଲେଖିଛନ୍ତି, "ମେଦିନୀପୁରର ଦକ୍ଷିଣାଞ୍ଚଳରୁ ଚାହାଳୀ ଏକାବେଳକେ ଉଠିଯିବା ଗୋଟିଏ ରହସ୍ୟମୟ, ଦାରୁଣ, ଶୋଚନୀୟ ବିଷୟ ଅଟେ । ୧୮୬୫-୧୮୭୦ ଖ୍ରୀ.ଅ.ରେ ମେଦିନୀପୁର ଜିଲ୍ଲା ଦକ୍ଷିଣାଞ୍ଚଳରେ ସ୍କୁଲ ସ୍ଥାପନ କରିବା ନିମନ୍ତେ ଜଣେ ବଙ୍ଗାଳୀ ସବ୍‌ଇନ୍ସିପେକ୍ଟର ପଦରେ ନିଯୁକ୍ତ ହୋଇ ଆସିଥିଲେ । ସେ ବଙ୍ଗଳା ସ୍କୁଲ ବସାଇବାକୁ ଚେଷ୍ଟାକଲେ; ମାତ୍ର ଲୋକେ ପିଲାମାନଙ୍କୁ ବଙ୍ଗଳା ପଢ଼ାଇବାକୁ ଅସ୍ୱୀକୃତ ହେଲେ; ଅନେକ ଚେଷ୍ଟାକରି ମଧ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ସେ କେବଳ ଦକ୍ଷିଣାଞ୍ଚଳରେ ସ୍କୁଲ ବସାଇବାକୁ ସ୍ୱତନ୍ତ୍ର ରୂପେ ନିଯୁକ୍ତ ହୋଇ ଆସିଅଛନ୍ତି; ସ୍କୁଲ ବସାଇ ନ ପାରିଲେ ତାହାଙ୍କର ଚାକିରି ରହିବା ଅସମ୍ଭବ । ଉପରିସ୍ଥ କର୍ମଚାରୀଙ୍କୁ ଆପଣାର ଅକୃତକାର୍ଯ୍ୟତା ଜଣାଇ ଏଡ଼େ ସୁନ୍ଦର ଚାକିରି ଖଣ୍ଡ କ'ଣ ହରାଇବେ ?

କାର୍ଯ୍ୟ ଅଟକିଲେ ବୁଦ୍ଧି ଦିଶେ । ବାବୁଙ୍କ ମୁଣ୍ଡରୁ ଚଞ୍ଚଳ ଗୋଟିଏ ବୁଦ୍ଧି ବାହାରିପଡ଼ିଲା । ଗୋଟାଏ ଗୋଟାଏ ଥାନାରେ ବସି ସେହି ଥାନା ଇଲାକାରେ ଚାହାଳିଆ ଅବଧାନ ଯେତେ ଥିଲେ, ଗୋଟାଏ ଦିନ ଧାର୍ଯ୍ୟକରି, ଥାନା ଦାରୋଗା ଦ୍ୱାରା ସେହି ଅବଧାନଙ୍କୁ ଏକା ସଙ୍ଗରେ ଡକାଇ ଆଣିଲେ । ଇଂରେଜୀ ଲେଖା ମୋହର ମରା ଖଣ୍ଡିଏ କୃତ୍ରିମ ପରବାନା ଅବଧାନମାନଙ୍କୁ ଦେଖାଇ, ସେମାନଙ୍କୁ କହିଲେ, ଏହି ଦେଖ, ମେଦିନୀପୁର ଜିଲ୍ଲାର କଲେକ୍ଟର ସାହେବଙ୍କ ହୁକୁମ୍ । ଏହି ଥାନା ଇଲାକାରେ ଯେତେ ଚାହାଳୀ ଅଛି ସମସ୍ତ ଉଠାଇ ଦିଆଯିବ ଏବଂ ଏହି ଥାନା ଇଲାକାରେ ଯେତେ ଅବଧାନ ଅଛନ୍ତି ଏହି ପରବାନା ତାରିଖ ଶୁଣିବା ତାରିଖଠାରୁ ସାତଦିନ ମଧରେ ଆପଣା ଆପଣା ଦେଶକୁ ଚାଲିଯିବେ । ନିରୂପିତ ଦିବସର ପରଦିନ ଯେଉଁ ଅବଧାନଙ୍କୁ ମେଦିନୀପୁର

ଇଲାକାରେ ଦେଖାଯିବ, ସେ ଓ୍ୱାରେଣ୍ଟରେ ଧରାଯାଇ ସଦର କଚେରୀକୁ ଯିବ ଏବଂ ତାହାକୁ ଜରିମାନା ଓ ଜେଲ ଦୁଇପ୍ରକାର ଦଣ୍ଡ ଦିଆଯିବ । "ସବ୍‌ଇନ୍‌ସପେକ୍ଟରବାବୁ ଥାନା ଥାନା ବୁଲି ଅବଧାନମାନଙ୍କୁ ହୁକୁମ ଶୁଣାଇବାକୁ ଲାଗିଲେ । କ୍ଷୁଦ୍ର ପ୍ରାଣୀ ବିଚାରା ଅବଧାନଙ୍କର ପିତ୍ତ କେତେ ? ଜିଲ୍ଲା କଲେକ୍ଟର ସାହେବଙ୍କ ହକୁମ୍, ପୁଣି ଥାନାରୁ ବାହାରିଛି । ଯେ ଯେତେ ଚଞ୍ଚଳ ପାରିଲା ଚିରକାଳ ସକାଶେ ଚାହାଳୀ ଛାଡ଼ି ଦେଶ ମୁହାଁ ପଳାଇ ଆସିଲା ।"

ମେଦିନୀପୁର ଜିଲ୍ଲା ବଙ୍ଗଳା ମିଶିବାରେ ବୀରେନ୍ଦ୍ରନାଥ ଶାସମଲଙ୍କ ପ୍ରଚେଷ୍ଟା ଅନସ୍ୱୀକାର୍ଯ୍ୟ । ସେ ୧୮୮୧ ମସିହାରେ କଣ୍ଟାଇରେ ଜନ୍ମଗ୍ରହଣ କରିଥିଲେ । ଭାରତରେ ନିଜର ଶିକ୍ଷା ଶେଷ କରି ଓକିଲାତି ପଢ଼ିବା ନିମନ୍ତେ ବିଲାତ ଯାଇଥିଲେ । ସେଠାରୁ ଫେରି ସେ ପ୍ରଥମେ କଲିକତା ହାଇକୋର୍ଟ ଏବଂ ପରେ ମେଦିନୀପୁରରେ ନିଜର ବ୍ୟବସାୟ ଆରମ୍ଭ କରିଥିଲେ । ୧୯୨୧ ମସିହା ବେଳକୁ ବୀରେନ୍ଦ୍ର ନାଥ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କରି ନିଜର ସାଙ୍ଗଠନିକ କ୍ଷମତା ଦୃଢ଼ୀଭୂତ କରିଥିଲେ । ୧୯୨୨ ମସିହା ବେଳକୁ ବୀରେନ୍ଦ୍ରନାଥ ସର୍ବଭାରତୀୟ ନେତୃମଣ୍ଡଳୀ ମଧ୍ୟରେ ନିଜର ଏକ ଅନ୍ତରଙ୍ଗ ଓ ଦୃଢ଼ ଆସନ ପ୍ରତିଷ୍ଠା କରି ପାରିଥିଲେ ।

୧୯୧୯ ମସିହାରେ ଭାଷା ସୂତ୍ରରେ ମେଦିନୀପୁର ଓଡ଼ିଶା ସହିତ ମିଶିବାର କଥା ନେଇ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ଗୋଦାବରୀଶ ଯେତେବେଳେ ବୀରେନ୍ଦ୍ରନାଥଙ୍କ ସହିତ କଥାବର୍ତ୍ତା କରିବାକୁ ଯାଆନ୍ତି, ସେତେବେଳେ ମେଦିନୀପୁର ଅଞ୍ଚଳ ଓଡ଼ିଶା ସହିତ ମିଶିବାର ଆଶା ପରିତ୍ୟାଗ କରିବା ନିମନ୍ତେ ବୀରେନ୍ଦ୍ର ନାଥ ସ୍ପଷ୍ଟ ଭାବେ ସୂଚାଇ ଦେଇଥିଲେ । ପୁଣି ପଣ୍ଡିତ ଗୋଦାବରୀଶ ଓ ଯଦୁମଣି ମଙ୍ଗରାଜ ବୀରେନ୍ଦ୍ରନାଥଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ମେଦିନୀପୁରରେ ସଭା କରୁଥିବା ସମୟରେ ବଙ୍ଗାଳୀ ଗୁଣ୍ଡାମାନଙ୍କ ଦ୍ୱାରା ଢେକାମାଡ଼ ଖାଇଥିଲେ । ରାଧାଶ୍ୟାମ ଦାସଙ୍କୁ ଆଘାତ କରିଥିବା ପଥରରେ ଗୁଡ଼ା ହୋଇଥିବା କାଗଜରେ ଲେଖାଥିଲା- "Goback, donot court danger, we shall kill you and Mishra." ବୀରେନ୍ଦ୍ର ନାଥ ସାଧାରଣ ସଭାମାନଙ୍କରେ ଓଡ଼ିଆମାନଙ୍କ ବିରୁଦ୍ଧରେ କହୁଥିବାର ସେତେବେଳକାର ସମ୍ବାଦପତ୍ର ମାନଙ୍କରୁ ଜଣାପଡ଼େ ।

ବୀରେନ୍ଦ୍ର ନାଥ ନାନା ଉପାୟରେ ମେଦିନୀପୁର ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ନିଜର ପ୍ରତିପତ୍ତି ବଢ଼ାଇଥିଲେ ଓ ସେହି ସୂତ୍ରରେ, ଓଡ଼ିଶାରେ ମିଶିବା ନ ମିଶିବା ବିଷୟରେ ନିଜ ମତ ପ୍ରତି ସେମାନଙ୍କୁ ଆକୃଷ୍ଟ କରାଇଥିଲେ । ଶୁଣାଯାଏ, ମେଦିନୀପୁରର ଦାନ୍ତନ ଥାନାରେ ଯେତେବେଳେ ବୀରେନ୍ଦ୍ର ନାଥ 'ଟକି' (ସିନେମା) ଆଣି ଚଳାଇଥିଲେ ତାକୁ ଦେଖିବାକୁ ଲୋକେ ଏତେ ଆଗ୍ରହାନ୍ୱିତ ହୋଇ ଯାଇଥିଲେ ଯେ, ଘରର ବାସନକୁସନ ବିକ୍ରି କରି ତାହା ଦେଖିବା ନିମନ୍ତେ ଆସୁଥିଲେ ।

ଓଡ଼ିଶାର ତତ୍କାଳୀନ ନେତାମାନଙ୍କର ସବୁ ଚେଷ୍ଟା ବିଫଳ ହୋଇଥିଲା ଏବଂ ମେଦିନୀପୁର ଜିଲ୍ଲା ବଙ୍ଗଳା ସହିତ ମିଶିଗଲା । ମେଦିନୀପୁରର ଓଡ଼ିଆମାନେ ବଙ୍ଗାଳୀ ପାଲଟିଗଲେ, ବଙ୍ଗଳା ପଢ଼ିଲେ, ଲେଖିଲେ ଯଦିଚ ତାଙ୍କ ଭାଷା ଓ ସଂସ୍କୃତିରେ ଅତୀତର ଶହ ଶହ ବର୍ଷର ଓଡ଼ିଆ ଭାଷା ଓ ସଂସ୍କୃତିର ଚିହ୍ନ ଅଦ୍ୟାପି ନାନା ପ୍ରକାରେ ରହିଯାଇଛି । ଅବଶ୍ୟ, ୧୯୩୬ ମସିହା ପରେ ମେଦିନୀପୁରବାସୀ କେତେକ ବିଶିଷ୍ଟ ଓଡ଼ିଆ ସମୟ ସମୟରେ ଅଶ୍ୱସ୍ତି ଓ ଓଡ଼ିଆ ଜାତୀୟତା ପ୍ରକାଶ କରିଛନ୍ତି । ସେମାନେ ସେ ଦିଗରେ କିଛି କାର୍ଯ୍ୟାନୁଷ୍ଠାନ ମଧ୍ୟ ଗ୍ରହଣ କରିଥିଲେ । 'ଆଧୁନିକ ବାଂଲା ଦେଶବାସୀ ଉତ୍କଳୀୟ ଜାତି ମହା ସମ୍ମିଲନ୍' ନାମରେ ଗୋଟିଏ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇ ଓଡ଼ିଆମାନେ "...ବାଂଲା ଦେଶେ ରାଜନୈତିକ କ୍ଷେତ୍ରେ ଯେରୂପ ବିଧିମତେ ଆଦୃତ ହୋଇବ ତାହାର ବ୍ୟବସ୍ଥା..." କରିବାର ଉଦ୍ୟମ ହୋଇଥିଲା । ମେଦିନୀପୁରରେ ଓଡ଼ିଆ ଶିକ୍ଷାଦେବା ନିମନ୍ତେ ମଧ୍ୟ ଚେଷ୍ଟା କରାଯାଇଥିଲା । ସ୍ୱର୍ଗୀୟ ରାଧାନାଥ ପତିଙ୍କ ଅକ୍ଲାନ୍ତ ଚେଷ୍ଟା ଫଳରେ ଦକ୍ଷିଣ ମେଦିନୀପୁରରେ ଓଡ଼ିଆ ଅଧିବାସୀମାନଙ୍କ ନିମନ୍ତେ କେତେକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଓଡ଼ିଆ ଭାଷା ଶିକ୍ଷାର ବ୍ୟବସ୍ଥା ହୋଇଥିଲା ।

ସାର୍ ଆଶୁତୋଷ ମୁଖାର୍ଜୀ ଏଥିପାଇଁ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ନିଯୁକ୍ତି ଦେଇଥିଲେ । କାଳକ୍ରମେ ମେଦିନୀପୁର ଅଞ୍ଚଳରେ ଓଡ଼ିଆ ପଠନ ପାଠନ ରୀତି ଲୁପ୍ତ ହୋଇଅଛି । ବର୍ତ୍ତମାନ ଅତ୍ୟନ୍ତ କୌତୁହଳର ସହିତ ଲକ୍ଷ୍ୟ କରାଯାଇପାରେ ଯେ, ମେଦିନୀପୁର ଅଞ୍ଚଳରେ ବଙ୍ଗଳାଭାଷା ଶିକ୍ଷାର ସମସ୍ତ ପ୍ରକାର ଚେଷ୍ଟାସତ୍ତ୍ୱେ ଏହି ଅଞ୍ଚଳରେ ଏବେ ବି ଓଡ଼ିଆ ଭାଷାରେ କଥାବାର୍ତ୍ତା ହେଉଅଛି ଏବଂ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ଏକ ମୁଖ୍ୟ ଅଂଶ ଗ୍ରହଣ କରିଅଛି । ମେଦିନୀପୁର ଅଧିବାସୀଗଣ ଓଡ଼ିଆ ଶିକ୍ଷା ଓ ପଠନର ସମସ୍ତ ପ୍ରକାର ସୁବିଧାରୁ ବଞ୍ଚିତ ହୋଇ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ସେମାନଙ୍କର ଶ୍ରଦ୍ଧା କମିଯାଇ ନାହିଁ । ବଙ୍ଗଳାରେ ମୁଦ୍ରିତ ଓଡ଼ିଆ କାବ୍ୟ, ପୁରାଣ ସାହିତ୍ୟ ଏ ଅଞ୍ଚଳରେ ପ୍ରାୟ ପ୍ରତ୍ୟେକ ଘରେ ଦେଖିବାକୁ ମିଳେ । ପ୍ରାୟ ପ୍ରତିଗ୍ରାମରେ ଓଡ଼ିଆ ଓ ବଙ୍ଗଳାରେ ଲିଖିତ ଓଡ଼ିଆ ଭାଷାର ଭାଗବତ, ରାମାୟଣ, ମହାଭାରତ ଏବଂ ଅନ୍ୟାନ୍ୟ କାବ୍ୟର ତାଳପତ୍ର ପୋଥିମାନ ଗଚ୍ଛିତ ଅଛି । କେତେକ ସ୍ଥାନରେ ଓଡ଼ିଆ ଭାଷାରେ ଦଲିଲ, କୋଷ୍ଠୀ ଆଦି ରହିଥିବାର ଜଣାଯାଏ । ବଙ୍ଗାକ୍ଷରେ ମୁଦ୍ରିତ କେତୋଟି ପୁସ୍ତକର ଫଟୋଚିତ୍ର ଶ୍ରୀ ସୁରେନ୍ଦ୍ର ମହାନ୍ତି ତାଙ୍କ ଲିଖିତ ଓଡ଼ିଆ ସାହିତ୍ୟର ମଧ୍ୟପର୍ବ' ଓ ଡଃ ମାୟାଧର ମାନସିଂହ ତାଙ୍କର "The Saga of the Lord of Jagannatha" ପୁସ୍ତକରେ ସନ୍ନିବେଶିତ କରିଅଛନ୍ତି ।

ଆମର ଆଲୋଚ୍ୟ ଉତ୍ତର-ପୂର୍ବ ଉପାନ୍ତ ଅଞ୍ଚଳ ମେଦିନୀପୁର ଓ ମୟୂରଭଞ୍ଜ ଜିଲ୍ଲା ସଂଲଗ୍ନ ଧଳଭୂମିର ବାହାଡ଼ା ଗୋଡ଼ା ପ୍ରଭୃତି ସ୍ଥାନର ଭାଷା-ସମ୍ପର୍କରେ ବର୍ତ୍ତମାନ

ଆଲୋକପାତ କରାଯାଉଛି ।

ଧଳଭୂମି ଅଞ୍ଚଳ ଆବୁଲ୍‌ଫାଜଲଙ୍କ ଆଇନ୍-ଇ ଆକବରୀରେ ଲିଖିତ ଜଳେଶ୍ୱର ସରକାରର ଅନ୍ତର୍ଭୁକ୍ତ ଥିଲା । ୧୭୫୧ ଖ୍ରୀ.ରେ ବଙ୍ଗଳାର ନବାବ ଆଲିବର୍ଦ୍ଧି ଖାଁ ନାଗପୁରର ମରହଟ୍ଟା ଶାସକଙ୍କୁ ଏକ ଚୁକ୍ତିରେ ଓଡ଼ିଶାର ଧଳଭୂମି ଓ ମେଦିନୀପୁର ଅଞ୍ଚଳ ବ୍ୟତୀତ କେତେକାଂଶ ନିଜ ଅଧିକାରରୁ ଛାଡ଼ି ଦେଇଥିଲେ । ୧୭୯୫ ଖ୍ରୀ.ରେ କ୍ଲାଇବ୍ ଦିଲ୍ଲୀ ଦରବାର ପକ୍ଷରୁ ବଙ୍ଗବିହାର ଓଡ଼ିଶାର ଦେୱାନୀ ପ୍ରାପ୍ତିବେଳେ ଓଡ଼ିଶାର ରୂପନାରାୟଣ ନଦୀ ଓ ସୁବର୍ଣ୍ଣରେଖା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଧଳଭୂମି ଓ ମେଦିନୀପୁର ଅଞ୍ଚଳକୁ କେବଳ ଅନ୍ତର୍ଭୁକ୍ତ କରାଯାଇଥିଲା । ୧୮୦୩ ଖ୍ରୀ.ରେ ଇଂରେଜ ଓଡ଼ିଶା ଅଧିକାର କରିବା ପୂର୍ବରୁ ୧୭୯୩ ଖ୍ରୀ.ର ପ୍ରଥମ ପ୍ରବିଧାନ (First Regulation) ରେ ଓଡ଼ିଶା ବିଷୟ ଉଲ୍ଲେଖ କରାଯାଇ ଥିବାରୁ ଧଳଭୂମି ଓ ମେଦିନୀପୁର ଅଞ୍ଚଳ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ଏପରିକି ଏ ଅଞ୍ଚଳ ଇଂରେଜ ଶାସକମାନଙ୍କ ଦ୍ୱାରା ୧୮୦୩ ଖ୍ରୀ.ପୂର୍ବରୁ ସ୍ଥାପିତ 'ଜଙ୍ଗଲ-ମାହାଲ'ର ଅନ୍ତର୍ଭୁକ୍ତ ହୋଇଥିଲା । ୧୮୩୨ ଖ୍ରୀ. ପର୍ଯ୍ୟନ୍ତ ମେଦିନୀପୁର ସହିତ ଧଳଭୂମି ସଂଯୁକ୍ତ ଥିଲା । ଖ୍ରୀ. ୧୮୩୩ରେ ଏହା ମାନଭୂମ ସହିତ ଓ ଖ୍ରୀ.୧୮୪୬ ମସିହାରେ ଧଳଭୂମି ମହକୁମା ସିଂହଭୂମି ଜିଲ୍ଲା ସହିତ ସଂଯୁକ୍ତ ହେଲା ଓ ବର୍ତ୍ତମାନ ପର୍ଯ୍ୟନ୍ତ ଏହା ସିଂହଭୂମ ଜିଲ୍ଲାର ଏକ ମହକୁମା ରୂପେ ପରିଗଣିତ । ଧଳଭୂମିର ରାଜା ଚିତ୍ରେଶ୍ୱର ଧଳ (ତାଙ୍କ ପୂର୍ବବର୍ତ୍ତୀ ରାଜାଗଣ ମଧ୍ୟ) ୧୯୨୯ ମସିହାରେ ବ୍ରିଟିଶ ସରକାରଙ୍କୁ ଦେଇଥିବା କବୁଲିୟତ ନାମାରେ ଧଳଭୂମି ଓଡ଼ିଶାର ଏକ ଅଂଶ ରୂପେ ଉଲ୍ଲେଖ ରହିଅଛି ।

ଧଳଭୂମି ଅଞ୍ଚଳରେ ପ୍ରଚଳିତ ଭାଷା ମୁଖ୍ୟତଃ ଓଡ଼ିଆ । ଊନବିଂଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ଏଠାର ବିଦ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷା ଶିକ୍ଷା ଦିଆ ଯାଉଥିଲା । ବହଡ଼ା ଗୋଡ଼ା ବଙ୍ଗଳା ମଧ୍ୟ ଇଂରାଜୀ ବିଦ୍ୟାଳୟର ଲଗ୍‌ବୁକ୍‌ରେ ୧୮୬୨ ମସିହା ପୂର୍ବରୁ ଏଠି ବଙ୍ଗଳା ଭାଷା ସମ୍ପୂର୍ଣ୍ଣ ଭାବରେ ଅଜଣା ଥିବା ବିଷୟ ଲେଖାଥିବାର ଜଣାଯାଇଅଛି । ଏଠାକାର ଲୋକେ ଚାଟଶାଳୀ (ପାଠଶାଳା)ରେ ଓଡ଼ିଆ ପଢୁଥିଲେ ଓ ଲେଖୁଥିଲେ । ଓଡ଼ିଆ ଭାଷାରେ କଥା ହେଉଥିଲେ । ୧୮୬୫ ଖ୍ରୀ.ରେ ଏଠାରେ ପ୍ରଥମେ ବଙ୍ଗଳା ପାଠଶାଳା ସ୍ଥାପିତ ହୋଇଥିଲା ।

ଧଳଭୂମିର ରାଜାମାନେ ୧୮୬୩ ମସିହା ପର୍ଯ୍ୟନ୍ତ ତାଳପତ୍ରରେ ଓଡ଼ିଆ ଭାଷାରେ ଲିଖିତ ସନନ୍ଦ ଓ ପଟ୍ଟା ପ୍ରଦାନ କରୁଥିଲେ । ପୁନିଅାଁ ଦିନ ପ୍ରଥମ ରାଜସ୍ୱ ଆଦାୟ ଓଡ଼ିଆ ଅକ୍ଷରରେ 'ରୋକଡ଼' ବହିରେ ଲେଖାଯାଉଥିଲା । ରାଜା ଶତ୍ରୁଘ୍ନ ଧଳ ୧୮୮୭ ମସିହାରେ ଏକ ଜମିଜମା ସଂକ୍ରାନ୍ତ ମୋକଦ୍ଦମାରେ ଇଜାହାର ଦେଇ ସ୍ପଷ୍ଟ ମତ ବ୍ୟକ୍ତ କରିଥିଲେ । "ଧଳଭୂମି ବଙ୍ଗଳାର ନିମ୍ନ ଅଞ୍ଚଳ ନୁହେଁ, ଏହା ଓଡ଼ିଶାର ଏକ ଅଂଶ ବିଶେଷ ।"

ଧଳଭୂମିରେ ଓଡ଼ିଆ ଦିନ ପଞ୍ଜି ଓ 'ମିତାକ୍ଷରା' ହିନ୍ଦୁ ଆଇନ ପ୍ରଚଳିତ ଥିଲା । ଏଠାରେ ଜଣେ ମୈଥିଳୀ ବ୍ରାହ୍ମଣ ବାବୁ ତ୍ରିଭୁବନ ଓଝା ୧ ୯ ୨ ୧ ସାଲରେ ଅନ୍ୟ ଏକ ମୋକଦ୍ଦମାରେ ସାକ୍ଷୀ ପ୍ରଦାନ କରି କହିଥିଲେ, "ମୁଁ ବଙ୍ଗଳା ଓ ସଂସ୍କୃତ ଲେଖି ବା ପଢ଼ି ଜାଣେନାହିଁ । ମୁଁ ଓଡ଼ିଆ ଜାଣେ । ମୁଁ ଓଡ଼ିଆ ଲେଖି ଓ ପଢ଼ିପାରେ । ମୁଁ ଶମ୍ଭୁକର ବାଜପେୟୀଙ୍କ 'କର୍ମକାଣ୍ଡ' ପଢ଼ିଛି । ମୁଁ ଓଡ଼ିଆ ପାଠଶାଳରେ ପଢ଼ିଛି ।"

ଶ୍ୟାମସୁନ୍ଦର ପୁରଠାରେ ଶ୍ୟାମାନନ୍ଦ ଗୋସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ଗୌଡ଼ୀୟ ମଠ ଓ ମନ୍ଦିରରେ ଥିବା ତାଳପତ୍ର ପୋଥି ସମୂହ ଓଡ଼ିଆ ଅକ୍ଷର ଓ ବଙ୍ଗ ଭାଷାରେ ଲେଖାଯାଇଅଛି । ବଙ୍ଗଳା ନଦୀଆ ନଦୀଦ୍ୱୀପରୁ ଆଗତ ଗୌଡ଼ୀୟ ସାଧୁସନ୍ଥଙ୍କ ନିର୍ଦ୍ଦେଶ ମତେ ପ୍ରାଚୀନ ବୈଷ୍ଣବ ଧର୍ମୀୟ ସାହିତ୍ୟ ସବୁ ଓଡ଼ିଆ ଲିପିକାର ଗଣ ଓଡ଼ିଆ ହରଫରେ ନକଲ କରିଥିଲେ ।

ଉତ୍ତର ପୂର୍ବାଞ୍ଚଳୀୟ ଓଡ଼ିଆ ଉପଭାଷା ଅଧ୍ୟୟନ କାଳରେ ମୟୂରଭଞ୍ଜ-ଝାଡ଼ଗ୍ରାମ ଅଞ୍ଚଳରେ ପ୍ରଚଳିତ କୁଡୁମାଳୀ ଭାଷାର ସ୍ଥିତି ଉପଲବ୍ଧ ହୁଏ । ଗ୍ରୀୟରସନ ଏହାକୁ ଏକ ଉପଭାଷା ରୂପେ ଚିହ୍ନଟ କରିଥିଲେ ।



# ଆଞ୍ଚଳିକ ଉପଭାଷା ଓ ଓଡ଼ିଆ ସାହିତ୍ୟ

## ପଞ୍ଚାନନ ମହାନ୍ତି

'ଉପଭାଷା' ଶବ୍ଦଟିକି ଅନେକେ ଅପକର୍ଷ ସୂଚକ ମନେ କରିଥା'ନ୍ତି । 'ଭାଷା' ପୂର୍ବରୁ 'ଉପ୍' ଉପସର୍ଗର ସଂଯୋଗ ହିଁ ଏହାର କାରଣ । ସେମାନଙ୍କର ଧାରଣା 'ଉପଭାଷା', 'ଭାଷା'ର ଏକ ଅପଭ୍ରଷ୍ଟ ରୂପ । ମାତ୍ର ଏଭଳି ଧାରଣା ପୂରାପୂରି ଭ୍ରମାତ୍ମକ । କୌଣସି ଶବ୍ଦ ପୂର୍ବରୁ 'ଉପ୍' ଲାଗିଲେ ତାହା ଅପକର୍ଷ ସୂଚକ ଅର୍ଥ ପ୍ରକାଶ କରେନି । 'କୂଳ' ସହିତ 'ଉପକୂଳ'କୁ ଓ 'ଯୁକ୍ତ' ସହିତ 'ଉପଯୁକ୍ତ'କୁ ତୁଳନା କରି ଦେଖିଲେ କଥାଟା ସ୍ପଷ୍ଟ ହୋଇଯିବ। 'ଉପଭାଷା' ସହିତ ଏଇ ଅଦ୍ଭୁତ ଧାରଣା ଯୋଡ଼ା ହୋଇଥିବାରୁ ଓ ଏହା ଓଡ଼ିଆ ଅଭିଧାନ ଗୁଡ଼ିକରେ ସ୍ଥାନ ପାଇ ନ ଥିବାରୁ ପ୍ରଥମରୁ ଏହାର ସଂଜ୍ଞା ଓ ସ୍ୱରୂପ ସ୍ଥିର କରିନେବା ଦରକାର । ଏହା ପ୍ରକୃତରେ ଇଂରେଜୀ 'dialect' ର ଏକ ପ୍ରତିଶବ୍ଦ ରୂପେ ଗତ କେତେ ଦଶକ ଧରି ଓଡ଼ିଆରେ ବ୍ୟବହୃତ ହେଇ ଆସୁଚି । ତେଣୁ ଏହାର ଇତିହାସ ବେଶି ପୁରୁଣା ନୁହେଁ । ଆଞ୍ଚଳିକ ଉପଭାଷା ସମ୍ପର୍କରେ ଆଲୋଚନା କରି ବିଶେଷ ଭାବରେ ଓଡ଼ିଆ ସାହିତ୍ୟ ପରିପ୍ରେକ୍ଷୀରେ ଓଡ଼ିଶାର ଆଞ୍ଚଳିକ ଉପଭାଷାଗୁଡ଼ିକର ଭୂମିକା କ'ଣ ତା' ବିଚାର କରିବା ଏ ପ୍ରବନ୍ଧର ଲକ୍ଷ୍ୟ ।

ପ୍ରଥମ ପ୍ରଶ୍ନ ହେଲା- 'ଉପଭାଷା' କ'ଣ ? ଗୋଟିଏ ଭାଷା ବିଭିନ୍ନ ଅଞ୍ଚଳ ଓ ବିଭିନ୍ନ ଗୋଷ୍ଠୀକି ଧରି ଯୋଉ ଭିନ୍ନ ଭିନ୍ନ ରୂପ ପରିଗ୍ରହ କରେ, ତା'କୁ ଇ କହନ୍ତି ଉପଭାଷା । ଟିକିଏ ନିରେଖି ଦେଖିଲେ ପ୍ରତ୍ୟେକ ବ୍ୟକ୍ତିର ଭାଷାରେ କେତେକ ବିଚିତ୍ରତା ଓ ସ୍ୱତନ୍ତ୍ରତା ମିଳିବ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ପ୍ରତ୍ୟେକ ବ୍ୟକ୍ତିର ଭାଷା ଉପଭାଷା ପଦବାଚ୍ୟ । ଉପଭାଷାର ସ୍ଥାନ ଭାଷାର ଠିକ୍ ତଳେ ଓ କ୍ରମାନ୍ୱୟରେ ବ୍ୟକ୍ତି, ଗାଁ ଓ ଜିଲ୍ଲା ପ୍ରଭୃତିରେ କଥିତ ଭାଷାଠାରୁ ଉପରେ । ଅନ୍ୟ ଭାବରେ କହିଲେ, ଭାଷା ସମଗ୍ର ଦେଶ ବା ରାଜ୍ୟରେ ଚଳୁଥିବା ବେଳେ ଉପଭାଷା ଗୋଟିଏ ଅଞ୍ଚଳରେ ବା ସମାଜର ଗୋଟିଏ ଗୋଷ୍ଠୀ ବା ଶ୍ରେଣୀ ମଧ୍ୟରେ ପ୍ରଚଳିତ ହେଇଥାଏ । ଏଇ ଦୃଷ୍ଟିରୁ ଉପଭାଷା ଦି'ପ୍ରକାରର - ଆଞ୍ଚଳିକ ଉପଭାଷା

ଓ ସାମାଜିକ ଉପଭାଷା । ଏଠି ଆମେ ଆଞ୍ଚଳିକ ଉପଭାଷା ସମ୍ପର୍କରେ ବିଚାର କରିବା ଓ ସୌକର୍ଯ୍ୟ ପାଇଁ ଏ ପ୍ରବନ୍ଧରେ 'ଉପଭାଷା' ଶବ୍ଦଟି ଆଞ୍ଚଳିକ ଉପଭାଷା ଅର୍ଥରେ ହିଁ ବ୍ୟବହାର କରାଯିବ । 'ଆଞ୍ଚଳିକ ଉପଭାଷା' ନାଁଟିରୁ ସ୍ପଷ୍ଟ ଯେ ଏଥିରେ ଆଞ୍ଚଳିକତାର ଛାପ ରହିବ; ମାତ୍ର ଭାଷା ବା ମାନକ ଭାଷାରେ ଏହା ନଥାଏ । କେତେକେ ଭୁଲ କ୍ରମେ ଉପଭାଷାକୁ ଭାଷାର ଅପଭ୍ରଷ୍ଟ ରୂପ ବୋଲି ଧରି ନେଉଥିଲେ ହେଁ, ତା' ଠିକ୍ ନୁହେଁ । ଏଇ ପ୍ରସଙ୍ଗରେ ବି'ଟି କଥା ସ୍ପଷ୍ଟ କରିଦେବା ଉଚିତ । (୧) ମାନକ ଭାଷା ବା ଭାଷା ମଧ୍ୟ ଗୋଟିଏ ଉପଭାଷାର ଭିତ୍ତି ଉପରେ ପ୍ରତିଷ୍ଠିତ । (୨) ଭାଷାବୈଜ୍ଞାନିକ ଦୃଷ୍ଟିକୋଣରୁ କୌଣସି ଉପଭାଷା ଅନ୍ୟ ଗୋଟିଏ ଉପଭାଷାଠାରୁ ଉତ୍କୃଷ୍ଟତର ନୁହେଁ ଖାଲି ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କାରଣରୁ ଗୋଟିଏ ଉପଭାଷା ମାନକ ଭାଷାରେ ପରିଣତ ହୁଏ ଓ ଅନ୍ୟସବୁ ସେମିତି ଉପଭାଷା ହେଇ ରହିଯାଏ । ଏଇ ଦିଗରୁ ବିଚାର କଲେ 'ମାନକ ଭାଷା' ଏକ ଆରୋପିତ ଧାରଣା । ଏଣୁ ଆପଣାର ପରିଚୟ ପାଇଁ ଉପଭାଷାକୁ ମାନକ ଭାଷାର ସାହାଯ୍ୟ ନେବାକୁ ପଡ଼େ । ମାତ୍ର ଏଥିପାଇଁ ମାନକ ଭାଷା ପକ୍ଷରେ ଉପଭାଷାର ସାହାଯ୍ୟ ଆବଶ୍ୟକ ନୁହେଁ । ଯେମିତି ମହଗୀ, ମୈଥିଲୀ, ଭୋଜପୁରୀ, ଅଓ୍ୱଧୀ ଓ ଛତିଶଗଡ଼ୀ ପ୍ରଭୃତିକୁ ହିନ୍ଦୀର ଉପଭାଷା କୁହାଯାଏ; କେହି ହିନ୍ଦୀକୁ ମହଗୀ, ମୈଥଲୀ, ଭୋଜପୁରୀ, ଅଓ୍ୱଧୀ ଓ ଛତିଶଗଡ଼ୀର ଭାଷା ବୋଲି କହନ୍ତିନି ।

ତେବେ, ଭାଷା ଓ ଉପଭାଷା ମଧ୍ୟରେ ପାର୍ଥକ୍ୟର ସୀମାରେଖା ଟାଣିବାକୁ ଯାଇ କେତେକ ଭାଷାବିଜ୍ଞାନୀ (ଯଥା, Haugen 1966, Hockett 1970) କହନ୍ତି ଯେ ଭାଷା କେତୋଟି ପରସ୍ପର ବୋଧଗମ୍ୟ ଉପଭାଷାର ମିଶ୍ରଣରେ ଗଠିତ । ଅର୍ଥାତ୍, ପାରସ୍ପରିକ ବୋଧଗମ୍ୟକୁ ଧରି ସେମାନେ ଏକ ପକ୍ଷରେ ଗୋଟିଏ ଉପଭାଷା ସହ ଅନ୍ୟ ଏକ ଉପଭାଷାର ଓ ଅନ୍ୟପକ୍ଷରେ ଉପଭାଷାଗୁଡ଼ିକ ସହ ମାନକ ଭାଷାର ସମ୍ପର୍କ ନିରୂପଣ କରିବାକୁ ଆଗ୍ରହୀ । ଏ ଦିଗରୁ ଦେଖିଲେ ଉପଭାଷାଗୁଡ଼ିକ ଭାଷାର ଗୋଟିଏ ପାରସ୍ପରିକ ସମ୍ପର୍କାନ୍ୱିତ ଅଙ୍ଗ ।

ଏଇ ବୋଧଗମ୍ୟତାକୁ ଧରି ଉପଭାଷା ନିର୍ଣ୍ଣୟ କରିବସିଲେ ଅସୁବିଧାରେ ପଡ଼ିବାର ସମ୍ଭାବନା ଯଥେଷ୍ଟ । କାରଣ ଓଡ଼ିଆ ଓ ବଙ୍ଗଳା ବା ତାମିଲ ଓ ମାଲୟଲମ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ପାଇଥିଲେ ହେଁ ଏଗୁଡ଼ିକ ମଧ୍ୟରେ ପାରସ୍ପରିକ ବୋଧଗମ୍ୟତା ଢେର ବେଶୀ । ଅର୍ଥାତ୍, ଏକ ପକ୍ଷରେ ଜଣେ ଓଡ଼ିଆଭାଷୀ ଓ ଜଣେ ବଙ୍ଗଳାଭାଷୀ ପୁଣି ଅନ୍ୟ ପକ୍ଷରେ ଜଣେ ତାମିଲଭାଷୀ ଓ ଜଣେ ମାଲାୟାଲମଭାଷୀ ପରସ୍ପରକୁ ସହଜରେ ବୁଝିପାରନ୍ତି । ତେଣୁ ବୋଧଗମ୍ୟତା ବିଚାରରେ ଏଗୁଡ଼ିକ ଉପଭାଷା ରୂପେ ପରିଗଣିତ ହେବା ଉଚିତ । ପୁଣି ଅନେକ ଭାଷାର ଏପରି ଉପଭାଷାସବୁ ଅଛି, ଯାହା ପରସ୍ପର ବୋଧଗମ୍ୟ ନୁହେଁ । ଚୀନୀୟ ଓ ଜର୍ମାନ୍ ଭାଷାର ଉପଭାଷାଗୁଡ଼ିକରେ ଏ ପ୍ରକାର ଦୃଷ୍ଟାନ୍ତ

ରହିଚି । ଏପରିକି ହିନ୍ଦୀରେ ମଧ୍ୟ ଏହାର ଦୃଷ୍ଟାନ୍ତ ମିଳେ । ଭୋଜପୁରୀ ଓ ହରିୟାଣ୍ଵୀ ଉଭୟ ହିନ୍ଦୀର ଉପଭାଷା ରୂପେ ପରିଗଣିତ ହେଉଥିଲେ ହେଁ ଏଗୁଡ଼ିକ ପରସ୍ପର ବୋଧଗମ୍ୟ ନୁହେଁ । ଫଳରେ ବୋଧଗମ୍ୟତାକୁ ମାପକାଠି କରି କଡ଼ାକଡ଼ି ଭାବେ ଧରିବସିଲେ ଓଡ଼ିଆ ଓ ବଙ୍ଗଳାରେ ଓ ତାମିଲ ଓ ମଲାୟାଲମରେ ସ୍ଵତନ୍ତ୍ର ଭାଷାର ସମସ୍ତ ଲକ୍ଷଣ ନ ଥିବାବେଳେ ହିନ୍ଦୀ, ଜର୍ମାନ ଓ ଚୀନୀୟ ଭାଷାରେ ଏପ୍ରକାର ଅନେକ ଲକ୍ଷଣ ରହିଛି ।

ବୋଧଗମ୍ୟତାକୁ ଧରି ଉପଭାଷା ନିରୂପଣରେ ଆହୁରି କେତେକ ଅସୁବିଧା ମଧ୍ୟ ରହିଚି । ଦୁଇଟି ଉପଭାଷା ଯେ ସମାନ ଭାବରେ ବୋଧଗମ୍ୟ ହେବ ତା'ର କୌଣସି ନିଶ୍ଚିତତା ନାହିଁ । ବୋଧଗମ୍ୟତା ପାଇଁ ଅନ୍ୟ ଉପଭାଷା ସହ ପରିଚୟ ଓ ଶିକ୍ଷାଦୀକ୍ଷା ଇତ୍ୟାଦି ସମେତ ଯାହା ସବୁଠୁ ବେଶୀ ଗୁରୁତ୍ଵପୂର୍ଣ୍ଣ, ତା'ହେଲା ଅନ୍ୟ ଉପଭାଷାକୁ ବୁଝିବାର ଇଚ୍ଛା ଓ ଆଗ୍ରହ । ଉଦାହରଣ ସ୍ଵରୂପ ଭାଷା କ୍ଷେତ୍ରରେ ଦେଖିଲେ ଓଡ଼ିଆଭାଷୀମାନେ ସାଧାରଣଭାବେ ବଙ୍ଗଳା ବୁଝୁଥିବାବେଳେ ବଙ୍ଗାଳୀମାନେ ଓଡ଼ିଆ ପ୍ରାୟ ବୁଝନ୍ତି ନାହିଁ । ସତ କହିଲେ ବଙ୍ଗାଳୀମାନେ ଓଡ଼ିଆ ନ ବୁଝିବାର ଅଭିନୟ କରନ୍ତି । କାରଣ ନିଜ ଭାଷା ପ୍ରତି ସେମାନଙ୍କର ମମତା ଏତେ ବେଶୀ ଯେ ଅନ୍ୟଭାଷା ବୁଝିବା ନ ବୁଝିବା ତାଙ୍କ ପାଇଁ ଆଦୌ ଗୁରୁତ୍ଵପୂର୍ଣ୍ଣ ନୁହେଁ । ଆଫ୍ରିକାରେ କରାଯାଇଥିବା ଏକ ସର୍ବେକ୍ଷଣରୁ ଜଣାପଡ଼ିଚି ଯେ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକ ଅନ୍ୟ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଭାଷା ବୁଝନ୍ତି ବୋଲି ମତବ୍ୟକ୍ତ କରିଥିବାବେଳେ, ଦ୍ଵିତୀୟ ଗୋଷ୍ଠୀର ଲୋକେ ପ୍ରଥମ ଗୋଷ୍ଠୀର ଭାଷା ବୁଝନ୍ତିନି ବୋଲି ସ୍ପଷ୍ଟ ମନାକରିଛନ୍ତି । ମଜାର କଥା ହେଲା, ପ୍ରଥମ ଗୋଷ୍ଠୀଟି ଦ୍ଵିତୀୟ ଗୋଷ୍ଠୀଠାରୁ ବେଶି ଶକ୍ତିଶାଳୀ ଓ ପ୍ରଭାବଶାଳୀ । ପ୍ରକୃତରେ ପ୍ରଥମ ଗୋଷ୍ଠୀର ଲୋକେ ଦ୍ଵିତୀୟ ଗୋଷ୍ଠୀଟି ବସବାସ କରୁଥିବା ଅଞ୍ଚଳକୁ ନିଜ ସହିତ ସାମିଲ କରିବାକୁ ଚକ୍ରାନ୍ତ କରୁଥିଲେ ଓ ସେଇ ଚକ୍ରାନ୍ତକୁ ପଣ୍ଡ କରିବା ଉଦ୍ଦେଶ୍ୟରେ ଦ୍ଵିତୀୟ ଗୋଷ୍ଠୀ ପ୍ରଥମ ଗୋଷ୍ଠୀର ଭାଷା ଆଦୌ ବୁଝନ୍ତି ନାହିଁ ବୋଲି କହିବାକୁ ବାଧ୍ୟ କଲେ ।

ଏଇସବୁ ଦିଗରୁ ଦେଖିଲେ ସମସ୍ତ ଭାଷା ବୈଜ୍ଞାନିକ ଲକ୍ଷଣ ସତ୍ତ୍ଵେ ଭାଷା ଓ ଉପଭାଷା ସମ୍ପୂର୍ଣ୍ଣ ରୂପେ ଭାଷା ବୈଜ୍ଞାନିକ ଧାରଣା ନୁହେଁ । କୋଉଟି ଭାଷା, କୋଉଟି ଉପଭାଷା, ଏହା ସ୍ଥିର କରିବା ପଛରେ ଭାଷା ବୈଜ୍ଞାନିକ କାରଣ ସହିତ ରାଜନୈତିକ, ଐତିହାସିକ, ସାଂସ୍କୃତିକ ଓ ଭୌଗୋଳିକ କାରଣ ସବୁ ମଧ୍ୟ ରହିଥାଏ । ଓଡ଼ିଶା ପରିପ୍ରେକ୍ଷୀରେ ଦେଖିଲେ ଅଶୋକ ଓ ଖାରବେଳଙ୍କ ଅମଳରୁ ଏବର ପୁରୀ, ଖୋର୍ଦ୍ଧା, କଟକ ଓ ଯାଜପୁର ଜିଲ୍ଲା ସମସ୍ତ ରାଜନୈତିକ, ଐତିହାସିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରାଣକେନ୍ଦ୍ର ହୋଇ ରହିଆସିଚି । ଗତ ପ୍ରାୟ ଦୁଇହଜାର ବର୍ଷଧରି ଓଡ଼ିଶାର ରାଜଧାନୀ କଟକ, ପୁରୀ, ଖୋର୍ଦ୍ଧା ଓ ଯାଜପୁର ଜିଲ୍ଲା ମଧ୍ୟରେ ହିଁ ସୀମାବଦ୍ଧ ହୋଇ ରହିଚି । ତେଣୁ ଏଠାରେ ସମସ୍ତ ଗୁରୁତ୍ଵପୂର୍ଣ୍ଣ ରାଜନୈତିକ, ଐତିହାସିକ ଘଟଣାବଳୀ ଘଟିଥିବା ସ୍ଵାଭାବିକ । ତା'ଛଡ଼ା

ଖଣ୍ଡଗିରିରୁ ଉଦୟଗିରିଠୁ ଆରମ୍ଭ କରି ବିରଜା, ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିର ବିଭିନ୍ନ ସମୟରେ ଓଡ଼ିଶାର ଧାର୍ମିକ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର ହୋଇ ରହିଆସିଚି । ଫଳରେ ଖାଲି ଓଡ଼ିଶା ନୁହେଁ, ଭାରତର ବିଭିନ୍ନ କ୍ଷେତ୍ରରୁ ଲୋକେ ଏଠିକି ଆସିବା ଯୋଗୁ ଏ ଅଞ୍ଚଳର ଗୁରୁତ୍ୱ ସ୍ୱାଭାବିକ ଭାବେ ବଢ଼ିଚି ଓ ଏଠାରେ କଥିତ ଉପଭାଷା ଧୀରେ ଧୀରେ ଭାଷାସ୍ତରକୁ ଉନ୍ନୀତ ହୋଇଯାଇଛି ।

ଆଉ ଗୋଟିଏ କଥା ଏଠି ଉଲ୍ଲେଖଯୋଗ୍ୟ । ଜଣେ ଲୋକ ଯଦି କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଗାଁକୁ ଗାଁ ଅତିକ୍ରମ କରି ଯାଏ, ତେବେ ସେ ଲକ୍ଷ୍ୟ କରିବ ଯେ ସମଗ୍ର ଭାରତରେ ଯୋଗାଯୋଗର ଏକ ଅବାରିତ ଧାରା ପ୍ରବାହିତ । ଅର୍ଥାତ୍, କୌଣସି ଗୋଟିଏ ଗାଁର ଲୋକେ ପଡ଼ିଶା ଗାଁର ଭାଷାକୁ ନ ବୁଝିବାର ଦୃଷ୍ଟାନ୍ତ ମିଳିବ ନାହିଁ । ଏଥିରୁ ସାରା ଭାରତରେ ଗୋଟିଏ ଭାଷା ପ୍ରଚଳିତ ବୋଲି କେହି ଦାବୀ କରିପାରିବେନି । ଗୋଟିଏ ଅଞ୍ଚଳରୁ ଆଉ ଗୋଟିଏ ଦୂରବର୍ତ୍ତୀ ଅଞ୍ଚଳରେ ହଠାତ୍ ଯାଇ ପହଞ୍ଚିଗଲେ ଉଭୟ ଅଞ୍ଚଳର ଭାଷାରେ କେତେ ଫରକ ରହିଚି ତା'ସହଜରେ ବାରିହେବ । ଭାରତୀୟ ଭାଷାଗୁଡ଼ିକ ମଧ୍ୟରେ ଚମକପ୍ରଦ ସାମ୍ୟ ସତ୍ତ୍ୱେ ଏଗୁଡ଼ିକ ମଧ୍ୟରେ ଥିବା ବୈଷମ୍ୟକୁ ଧରି ସମଗ୍ର ଭାରତକୁ କେତେକ ଛୋଟ ଛୋଟ ଭାଷା ଅଞ୍ଚଳରେ ବିଭକ୍ତ କରଯାଇପାରେ ।

ଆମେ ଜାଣୁ ଯେ ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ପ୍ରଦେଶ ଗଠନ ଭାଷା ଭିତ୍ତିରେ କରାଯାଇଚି । ଆମେ ଆହୁରି ମଧ୍ୟ ଜାଣୁ ଯେ ଓଡ଼ିଶା ସହିତ ମିଶିବା ପାଇଁ ସେ ସମୟରେ ଓଡ଼ିଶାର ପଶ୍ଚିମାଞ୍ଚଳ, ଦକ୍ଷିଣାଞ୍ଚଳ ଓ ଉତ୍ତରାଞ୍ଚଳର ଲୋକେ ଘୋର ଆନ୍ଦୋଳନ କରିଥିଲେ । ଅର୍ଥାତ୍ ସେତେବେଳେ ଏ ଅଞ୍ଚଳଗୁଡ଼ିକର ଲୋକେ ନିଜକୁ ଓଡ଼ିଆଭାଷୀ ବୋଲି ମନେ କରୁଥିଲେ । କିନ୍ତୁ ଆଜି ଓଡ଼ିଶାର ପଶ୍ଚିମାଞ୍ଚଳରୁ ଗୋଟେ ସ୍ୱର ଉଠୁଚି ଯେ ସେଠାରେ କଥିତ ଭାଷା ଓଡ଼ିଆର ଉପଭାଷା ନୁହେଁ; ଏହା ଏକ ସ୍ୱତନ୍ତ୍ର ଭାଷା ଓ ଏହାର ନାଁ କୋଶଳୀ । ଦୁଃଖ ଓ ଆଶ୍ଚର୍ଯ୍ୟର କଥା ହେଲା, ପଶ୍ଚିମାଞ୍ଚଳର କେତେଜଣ ବୁଦ୍ଧିଜୀବୀ ଏଇ ମତର ପୋଷଣ ଓ ପ୍ରଚାର କରିବା ସଙ୍ଗେ ସଙ୍ଗେ ଭାଷା ବୈଜ୍ଞାନିକ ଦୃଷ୍ଟିକୋଣରୁ ପଶ୍ଚିମାଞ୍ଚଳୀୟ ଓଡ଼ିଆ ଯେ ଏକ ସ୍ୱତନ୍ତ୍ର ଭାଷା ଓ ଏହା ଯେ ଛତିଶଗଡ଼ି ପ୍ରଭୃତି ସହିତ 'କୋଶଳୀ' ଭାଷା ପରିବାରଭୁକ୍ତ, ତାହା ପ୍ରମାଣ କରିବାକୁ ଚେଷ୍ଟା କରିଚନ୍ତି । କିନ୍ତୁ ସେମାନଙ୍କ ଆଲୋଚନା ବହୁ ପରିମାଣରେ ଆବେଗପ୍ରବଣ ଓ ଭାଷା ବୈଜ୍ଞାନିକ ବିଚାରରେ ସେମାନଙ୍କ ଆଲୋଚନାର ମୂଲ୍ୟ ବହୁତ କମ୍ । ଏଠି ସ୍ମରଣ କରେଇଦବା ଉଚିତ ଯେ ବିଶୃଙ୍ଖଳ ଭାବରେ କେତେକ ଶବ୍ଦ ଓ ଧ୍ୱନିଗତ ସାମ୍ୟ ବା ବୈଷମ୍ୟକୁ ଧରି ଦୁଇ ବା ତତୋଽଧିକ ଭାଷା ସମ୍ପର୍କାନ୍ୱିତ ବା ସମ୍ପର୍କହୀନ କହିବା ଅସମୀଚୀନ । କାରଣ ଏମିତି ହେଲେ ଇଂରାଜୀ ଓ ଓଡ଼ିଆ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠା କରିବାରେ କିଛି ଅସୁବିଧା ହେବନାହିଁ । ଇଂରାଜୀ ଓ ଓଡ଼ିଆ ଉଭୟ ଭାଷାରେ/ ପ, ବ, ମ, ତ, ଦ, ନ, ଚ, ଜ, କ, ଗ, ସ, ହ / ଇତ୍ୟାଦି ଧ୍ୱନି ସହିତ ଟେବୁଲ୍,

ଚେୟାର, ଗ୍ଲାସ୍, କପ୍, ପ୍ଲେଟ୍, ସିନେମା, ରେଡ଼ିଓ, ଟେଲିଫୋନ, ଟେଲିଭିଜନ୍, ଡାକ୍ତର, ନର୍ସ, ହସ୍ପିଟାଲ ପ୍ରଭୃତି ଶବ୍ଦ ବ୍ୟବହୃତ ହୁଏ । ଦୁଇଟି ଭାଷା ବା ଉପଭାଷା ମଧ୍ୟରେ ସମ୍ପର୍କ ନିର୍ଣ୍ଣୟ କରିବାକୁ ହେଲେ ଉଭୟରେ ବ୍ୟବହୃତ ମୌଳିକ ଶବ୍ଦାବଳୀ (ଯଥା- ଅଙ୍ଗ ପ୍ରତ୍ୟଙ୍ଗର ନାଁ, ପାରିବାରିକ ସମ୍ପର୍କ ସୂଚକ ଶବ୍ଦ, ପୋଷା ଜୀବଜନ୍ତୁ, ସର୍ବନାମ, ଏକରୁ ନ' ପର୍ଯ୍ୟନ୍ତ ସଂଖ୍ୟାର ନାଁ) ଓ ଉଭୟ ଭାଷାର ବ୍ୟାକରଣିକ ଗଠନକୁ ତୁଳନାରେ ଦେଖିବାକୁ ପଡ଼ିବ । ଏ ଦୃଷ୍ଟିରୁ ଓଡ଼ିଶାର ପଶ୍ଚିମାଞ୍ଚଳରେ କଥିତ ଭାଷାକୁ ଏକ ପକ୍ଷରେ ଓଡ଼ିଆ ସାହିତ୍ୟ ଓ ଅନ୍ୟପକ୍ଷରେ ଛତିଶଗଡ଼ି ସହିତ ତୁଳନା କରି ଏହା ଛତିଶଗଡ଼ିଠୁ କେମିତି ଭିନ୍ନ ଓ ଓଡ଼ିଆ ସହିତ କେମିତି ସମାନ, ତାହା ମୁଁ ଅନ୍ୟତ୍ର ବିଶଦ ଭାବେ ଆଲୋଚନା କରିଚି (ଦ୍ରଷ୍ଟବ୍ୟ, ମହାନ୍ତି ୧୯୯୨) । ଏଠି କହିରଖିବା ଉଚିତ ଯେ ପଶ୍ଚିମାଞ୍ଚଳୀୟ ଉପଭାଷା ପରି ଓଡ଼ିଶାର ଦକ୍ଷିଣାଞ୍ଚଳୀୟ ଓ ଉତ୍ତରାଞ୍ଚଳୀୟ କଥିତ ଭାଷା ମଧ୍ୟ ଓଡ଼ିଶାର ଉପଭାଷା । ଅନ୍ୟଭାବରେ କହିଲେ ସମଗ୍ର ଓଡ଼ିଶାରେ ଗୋଟିଏ ପ୍ରଧାନ ଭାଷା ବ୍ୟବହୃତ ଯାହାର ନାଁ ଓଡ଼ିଆ ଓ ବିଭିନ୍ନ ଅଞ୍ଚଳରେ କଥିତ ଭାଷାଗୁଡ଼ିକ ଏହାର ଉପଭାଷା ।

ବର୍ତ୍ତମାନ ଓଡ଼ିଆ ସାହିତ୍ୟ ପ୍ରତି ଅବଦାନ ପରିପ୍ରେକ୍ଷୀରେ ଓଡ଼ିଆର ଏଇ ଉପଭାଷାଗୁଡ଼ିକ ସମ୍ପର୍କରେ ବିଚାର କରିବା । କହିବା ଅନାବଶ୍ୟକ ଯେ ତଥାକଥିତ ମାନକ ଭାଷାଭାଷୀ ଅଞ୍ଚଳ ପୁରୀ, ଖୋର୍ଦ୍ଧା ଓ କଟକ ଜିଲ୍ଲା ତୁଳନାରେ ଉପଭାଷୀ ଅଞ୍ଚଳଗୁଡ଼ିକରେ ନିରକ୍ଷରଙ୍କ ସଂଖ୍ୟା ଯଥେଷ୍ଟ ବେଶି । ନିରକ୍ଷରତା ଯେ ଏକ ସାମାଜିକ ବ୍ୟାଧି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସଂସାରରେ ସବୁକିଛିର ଭଲ ଓ ମନ୍ଦ ଦି'ଟି ଦିଗ ରହିଚି । ନିରକ୍ଷରତାର ବି ଆଲୋକିତ ଓ ଅନ୍ଧକାର ଦିଓଟି ଦିଗ ଅଛି । ଆମେ ସମସ୍ତେ ମିଳିତ ଭାବେ ଏକ ସ୍ୱରରେ ନିରକ୍ଷରତାର ଅନ୍ଧାରିଆ ଦିଗଟି ଉପରେ ଗୁରୁତ୍ୱ ଦେଇ ଆସିଚୁ । ଫଳରେ ଏହାର ଆଲୋକିତ ଦିଗଟି ଆମର ଦୃଷ୍ଟିଗୋଚର ହୋଇନାହିଁ । ଏଠି କହିବା କଥା ହେଲା ଯେ ପର୍ଯ୍ୟନ୍ତ ଓଡ଼ିଶାର ଉପଭାଷା ଭାଷୀ ଅଞ୍ଚଳ ଗୁଡ଼ିକରୁ ନିରକ୍ଷରତା ଦୂର ହୋଇନାହିଁ ସେ ପର୍ଯ୍ୟନ୍ତ ନିରକ୍ଷରତାର ଉପଯୋଗିତାର ସଦୁପଯୋଗ କରାନଯିବ କାହିଁକି ? ବର୍ତ୍ତମାନ ନିରକ୍ଷର ସମାଜର ଯୋଉ ଗୁଣ ସବୁ ରହିଚି ସେ ସମ୍ପର୍କରେ ସଂକ୍ଷେପରେ ଉଲ୍ଲେଖ କରିବା ଦରକାର ।

ପ୍ରଥମରେ, ନିରକ୍ଷର ସମାଜର ଲୋକେ ପରସ୍ପର ସହ ସିଧାସଳଖ ସାମ୍ନାସାମ୍ନି କଥାବାର୍ତ୍ତା କରନ୍ତି ଓ ଏହାରି ମାଧ୍ୟମରେ ସେମାନଙ୍କ ସଂସ୍କୃତି ଗୋଟିଏ ପୁରୁଷରୁ ଆଉ ଗୋଟିଏ ପୁରୁଷକୁ ଗଡ଼ିଚାଲେ । ତେଣୁ ସେଠି ସମସ୍ତେ ଯେମିତି ଗୋଟିଏ ପରିବର୍ଦ୍ଧିତ ପରିବାର ! ସମସ୍ତେ ପରସ୍ପରର ଦାଦା, ଖୁଡ଼ି, ବଡ଼ବାପା, ବଡ଼ମା, ଭାଇ, ଭାଉଜ, ଅପା, ନନା, ନାନୀ, ପୁତୁରା, ଝିଆରୀ, ନାତି, ନାତୁଣୀ । ତା'ଛଡ଼ା ସାମ୍ନାସାମ୍ନି କଥା ହେବା ଫଳରେ ଅନ୍ୟମାନଙ୍କଠୁ କଥା ଲୁଚେଇବା ପାଇଁ ସେମାନେ ପ୍ରତୀକାତ୍ମକ ଭାଷାର ବହୁଳ ବ୍ୟବହାର

କରିଥାଆନ୍ତି ।

ଦ୍ୱିତୀୟରେ ନିରକ୍ଷର ସମାଜରେ ଅଭିଧାନ ବ୍ୟବହାର କରିବାର ପ୍ରଶ୍ନ ଉଠୁନି । ସିଧାସଳଖ କଥାବାର୍ତ୍ତା ମାଧ୍ୟମରେ ହିଁ ଶବ୍ଦଗୁଡ଼ିକର ଅର୍ଥ ସେଠି ନିରୂପିତ ହୁଏ । ଉଦାହରଣ ସ୍ୱରୂପ, ଏକ ପକ୍ଷରେ ଗିନା, ତାଟିଆ, ବେଲା, କଂସା ଓ ଅନ୍ୟପକ୍ଷରେ ଭାଡ଼ି, ରଞ୍ଜା, ମଞ୍ଚା, ଛାମୁଣ୍ଡିଆ ଶବ୍ଦଗୁଡ଼ିକ ନେଇ ବିଚାର କରିବା । କୁଳମଣି ଦାଶଙ୍କ (୧୯୭୧) ସରଳ ଉତ୍କଳ ଅଭିଧାନ ଅନୁସାରେ ଗିନାର ଅର୍ଥ ହେଲା 'ଧାତୁ ନିର୍ମିତ କ୍ଷୁଦ୍ର ପାତ୍ର ବିଶେଷ, ଗିନା' ବେଲାର 'କାଂସ୍ୟ ପାତ୍ର ବିଶେଷ' ଓ କଂସାର 'କାଂସ୍ୟ, ରଙ୍ଗ ଓ ତମ୍ବା ମିଶ୍ରିତ ଧାତୁ ବିଶେଷ' । ଏଠି ପ୍ରଥମେ ଲକ୍ଷ୍ୟ କରିବା କଥାହେଲା କଂସା ଯେ ଏକ ପାତ୍ରର ନାଁ, ତା ଏଇ ଅଭିଧାନଟିରେ କୁହାଯାଇନାହିଁ । ତା'ପରେ ଗିନା ଓ ତାଟିଆର ପ୍ରୟୋଗକୁ ଧରି କହୁଥିବା ଲୋକ ଜଣକ ବ୍ରାହ୍ମଣ କି ଅବ୍ରାହ୍ମଣ ତାହା ଆମେ ସହଜରେ ନିରୂପଣ କରିପାରିବା । କାରଣ ଯୋଉ ପ୍ରକାରର ପାତ୍ର ପାଇଁ ବ୍ରାହ୍ମଣମାନେ ସାଧାରଣଭାବେ ଗିନା ବ୍ୟବହାର କରନ୍ତି, ସେଥିପାଇଁ ଅବ୍ରାହ୍ମଣମାନେ ତାଟିଆ ବ୍ୟବହାର କରିଥା'ନ୍ତି । ଏହାର ଅର୍ଥ ନୁହେଁ ଯେ, ଅବ୍ରାହ୍ମଣମାନେ ଗିନା ବ୍ୟବହାର କରନ୍ତି ନାହିଁ । କଥା ହେଲା, ଏମାନଙ୍କ ଭାଷାର ଗିନା ଓ ତାଟିଆର ପାର୍ଥକ୍ୟ ଆକାରକୁ ନେଇ କରାଯାଏ- ଗିନାର ଆକାର ଛୋଟ ଓ ତାଟିଆର ବଡ଼ ବେଲା ଓ କଂସା ଶବ୍ଦ ଦୁଇଟି ଆହୁରି ବଡ଼ ଦି'ପ୍ରକାର ପାତ୍ରପାଇଁ ବ୍ୟବହୃତ ହୋଇଥାଏ । ସେଇପରି ଭାଡ଼ି, ରଞ୍ଜା, ମଞ୍ଚା ଓ ଛାମୁଣ୍ଡିଆ ଭିତରେ ପାର୍ଥକ୍ୟ ବିଭିନ୍ନ ପରିବେଶ / ପରିସ୍ଥିତିକୁ ନେଇ କରାଯାଏ । ଘରେ ଧାନ ଚାଉଳ ରଖିବାକୁ ଭାଡି, ବାରିରେ ଗଛଲତା ମଡ଼େଇବାକୁ ରଞ୍ଜା, ଅନ୍ୟଠି ମଞ୍ଚା ଓ ବାହାଘର / ବ୍ରତଘରରେ ଛାମୁଣ୍ଡିଆ ତିଆରି କରାଯାଏ । ଉଲ୍ଲେଖନୀୟ ଯେ ଏ ଶବ୍ଦଗୁଡ଼ିକରେ ଏଭଳି ଅର୍ଥ କୌଣସି ଓଡ଼ିଆ ଅଭିଧାନରେ ଦିଆଯାଇନାହିଁ ।

ତୃତୀୟରେ ଉପଭାଷାଗୁଡ଼ିକ କେବଳ କଥିତ ରୂପରେ ବ୍ୟବହାର କରାଯାଉଥିବାରୁ ଏଗୁଡ଼ିକ ମାନକ ଭାଷାଠାରୁ ଶୀଘ୍ର ପରିବର୍ତ୍ତନଶୀଳ, ଫଳରେ ବେଶୀ ଜୀବନ୍ତ । ଏଣୁ ପରିବେଶ, ପରିସ୍ଥିତି ସହିତ ଖାପ ଖୁଏଇବାପାଇଁ ଏଥିରେ ଅନେକ ନୂଆ ନୂଆ ବ୍ୟବହାର ଦେଖିବାକୁ ମିଳେ । ଦୃଷ୍ଟାନ୍ତ ସ୍ୱରୂପ ମାନକ ଓଡ଼ିଆରେ କେବଳ ପ୍ରଥମ ଓ ଦ୍ୱିତୀୟ ପୁରୁଷରେ ସମ୍ମାନ ସୂଚକ ସର୍ବନାମ ରହିଚି । ଦ୍ୱିତୀୟ ପୁରୁଷରେ ତୁ ଅସମ୍ମାନ ବା ନିକଟତମ ସୂଚକ, ତମେ ଅଳ୍ପ ସମ୍ମାନ ସୂଚକ ଓ ଆପଣ ସମ୍ମାନସୂଚକ ବୋଲି ଆମେ ଜାଣୁ । ପ୍ରଥମ ପୁରୁଷରେ ବି ଆମେ ବେଳେବେଳେ ଏକ ବଚନରେ ସମ୍ମାନସୂଚକ ଆମେ ର ବ୍ୟବହାର କରିଥାଉ । ଏହାର ଭୁରି ଭୁରି ଉଦାହରଣ ଆମ ସାହିତ୍ୟରେ ରହିଚି । ସାରଳା ମହାଭାରତରେ ଗୋଟିଏ ଉଦାହରଣ ନିଆଯାଉ । ଏଥିରେ ସାମାଜିକ ଦୃଷ୍ଟିକୋଣରୁ ତଳଶ୍ରେଣୀର ଲୋକ ନିଜପାଇଁ ମୁଁ ଓ ଉଚ୍ଚଶ୍ରେଣୀର ଲୋକ ନିଜପାଇଁ ଆମ୍ଭେ ବ୍ୟବହାର କରୁଥିବାର ବହୁ ଉଦାହରଣ ମିଳେ । ଅଶ୍ୱମେଧ ପର୍ବସ୍ଥିତ 'କଦମ୍ବାସୁର ବଧ' ଉପଖ୍ୟାନରୁ ନିମ୍ନ ଉଦ୍ଧୃତିଟି ଏହାର ଏକ ସୁନ୍ଦର

ଦୃଷ୍ଟାନ୍ତ ।

ମରୁତିସେନ ବୋଇଲା ମୁନି ଶୁଣିବା ନାରଦେ
ଅଶ୍ୱମେଧ ଯାଗ କରିବାକୁ ଅନକୂଳ କଲି ହାଦେ ।୨୧୩
ବଶିଷ୍ଟକୁ ମୁଁ ଅଇଲି ବରଣୀ ଯେ କରି
ବିଶ୍ୱାମିତ୍ର ଝଗଡ଼େ ହୋଇଲା ବହୁତ ଯେ ଭାରି ।୨୧୪
ବୃହସ୍ପତିଙ୍କ ଅଇଲି ବରଣ ନିମନ୍ତେ
ଅନେକ ଝିଂଘାସି ମୁନି ବୋଇଲେ କ ମୋତେ ।୨୧୫
ନାରଦ ବୋଇଲେ ମନେ ନ ବିଚାର ତୁ ମରୁତେ
ଆମ୍ଭେ ଯାଗିଂକ ଯାଗନିକ କରି ଜଣେକ ଦେବା ତୋତେ ।୨୧୬
(ପୃଷ୍ଠା-୪୭)

ମରୁତସେନ ରାଜାଙ୍କ ଅପେକ୍ଷା ନାରଦ ମୁନିଙ୍କ ସାମାଜିକ ପ୍ରତିଷ୍ଠା ଯଥେଷ୍ଟ ବେଶି ଏଇଥିପାଇଁ ପରସ୍ପର ସହ କଥାବାର୍ତ୍ତା କରିବା ସମୟରେ ମରୁତ ସେନ 'ମୁଁ' ଓ ନାରଦ 'ଆମ୍ଭେ' ବ୍ୟବହାର କରିଚନ୍ତି । ଆମେ ସମସ୍ତେ ଲେଖାଲେଖି କଲାବେଳେ ବି 'ମୁଁ' ସ୍ଥାନରେ 'ଆମ୍ଭେ' ବ୍ୟବହାର କରିଥାଉ । ଏଠି ଉଲ୍ଲେଖଯୋଗ୍ୟ ଯେ ମାନକ ଓଡ଼ିଆରେ ତୃତୀୟ ପୁରୁଷରେ ଏପରି କୌଣସି ସମ୍ମାନସୂଚକ ସର୍ବନାମର ପ୍ରୟୋଗ ନାହିଁ । ମାତ୍ର ବିଭିନ୍ନ ଆଞ୍ଚଳିକ ଉପଭାଷାରେ ଏହାର ପ୍ରୟୋଗ ଦେଖାଯାଏ । ଯେମିତି ଦକ୍ଷିଣାଞ୍ଚଳୀୟ ଓଡ଼ିଆରେ 'ତାଙ୍କେ' ତୃତୀୟ ପୁରୁଷର ସମ୍ମାନସୂଚକ ସର୍ବନାମ ଓ 'ସେ' ସାଧାରଣ ସର୍ବନାମ । ଉଦାହରଣ ସ୍ୱରୂପ ଏଇ ଉପଭାଷାରେ 'ସେ ଗଲା' କୁହାଯାଇପାରିବ, କିନ୍ତୁ 'ସେ ଗଲେ' କୁହାଯାଇପାରିବନି । ସେଇପରି 'ତାଙ୍କେ ଗଲେ' କୁହାଯାଇପାରିବ ଅଥଚ 'ତାଙ୍କେ ଗଲା' କୁହାଯାଇପାରିବ ନାହିଁ । ଏହାଛଡ଼ା ଓଡ଼ିଶାର ଗ୍ରାମାଞ୍ଚଳର ତୃତୀୟ ପୁରୁଷ ସମ୍ମାନସୂଚକ ସର୍ବନାମ ଭାବରେ 'ସେମାନେ'ର ପ୍ରୟୋଗ ଶୁଣି ମୁଁ ଆମୋଦିତ ହୋଇଚି । ଜଣେ ସମ୍ମାନସ୍ପଦ ଲୋକ ଆସିଲେ ଏଠାରେ ଲୋକେ 'ସେ ଆସିଲେଣି' ପରିବର୍ତ୍ତେ 'ସେମାନେ ଆସିଲେଣି' ସାଧାରଣଭାବେ ବ୍ୟବହାର କରିଥାନ୍ତି ।

ଚତୁର୍ଥରେ କେବଳ କଥିତ ଭାଷା ମାଧ୍ୟମରେ ଉପଭାଷାଭାଷୀ ସମାଜର ସଂସ୍କୃତି ପୁରୁଷ ପୁରୁଷ ଧରି ଗଡ଼ିଚାଲିଥିବାରୁ ଏହା ଲୋକଗୀତ ଓ ଲୋକକାହାଣୀରେ ଭରପୂର ହୋଇ ରହିଥାଏ । ମାନକ ଓଡ଼ିଆ ଅଞ୍ଚଳ ସହିତ ତୁଳନାତ୍ମକ ଭାବେ ଓଡ଼ିଶାର ପଶ୍ଚିମାଞ୍ଚଳ, ଦକ୍ଷିଣାଞ୍ଚଳ ଓ ଉତ୍ତରାଞ୍ଚଳ ଲୋକ ସାହିତ୍ୟ ଉପରେ ଆଖି ବୁଲେଇ ନେଲେ ଏ କଥାର ସତ୍ୟତା ସହଜରେ ଉପଲବ୍ଧି କରିହେବ ।

ବର୍ତ୍ତମାନ ପ୍ରଶ୍ନ ହେଲା ମାନକ ଓଡ଼ିଆରେ ଏସବୁର ପ୍ରତିଫଳନ ଘଟୁଚି କି, ନାଇଁ ? ଯୋଉ ଓଡ଼ିଆମାନେ ନିୟମିତ ଭାବେ ପତ୍ରପତ୍ରିକା ପଢ଼ନ୍ତି, ସେମାନେ ଲକ୍ଷ୍ୟ କରିଥିବେ

ଯେ ଏ ଦିଗରେ କୌଣସି ଉଲ୍ଲେଖନୀୟ ପ୍ରଚେଷ୍ଟା ଏପର୍ଯ୍ୟନ୍ତ ଆରମ୍ଭ ବି ହୋଇନି । ମାନକ ଓଡ଼ିଆ ଭାଷୀ ଲେଖକମାନେ ଏ ଦିଗରେ ପ୍ରାୟ କୌଣସି ଯତ୍ନ ନେଇନାହାନ୍ତି କି ମାନକ ଓଡ଼ିଆରେ ଲେଖୁଥିବା ବିଭିନ୍ନ ଓଡ଼ିଆ ଉପଭାଷୀ ଲେଖକମାନେ ଏ ଦିଗରେ ଆଖିଦୃଶିଆ ଆଗ୍ରହ ଦେଖେଇନାହାନ୍ତି । ଏଠି ସ୍ମରଣୀୟ ଯେ ଏହା ନା ଓଡ଼ିଆ ସାହିତ୍ୟ ନା ଓଡ଼ିଆ ଭାଷା ଓ ଉପଭାଷା - କାହାର ପାଇଁ ଶୁଭଲକ୍ଷଣ ନୁହେଁ ।

ଆଉ ଗୋଟେ ଗୁରୁତ୍ୱପୂର୍ଣ୍ଣ କଥା ହେଲା ପ୍ରାଚୀନ ସମାଜରେ ଓ ଏବର ନିରକ୍ଷର ସମାଜରେ ପୁରୁଷ ପରେ ପୁରୁଷ ସମ୍ପର୍କର ଏକ ଅଖଣ୍ଡ ସୂତ୍ରରେ ଦୃଢ଼ ତଥା ନିବିଡ଼ଭାବେ ବାନ୍ଧି ହୋଇ ରହିଥିବାର ପ୍ରଧାନ କାରଣ ହେଲା ସେମାନଙ୍କର ପାରମ୍ପରିକ ଶିକ୍ଷା । କହିବା ନିଷ୍ପ୍ରୟୋଜନ ଯେ ଆଧୁନିକ ଶିକ୍ଷାର କାମ ଠିକ୍ ଓଲଟା । ନିରକ୍ଷରଙ୍କୁ ସାକ୍ଷର କରିବା ମାଧ୍ୟମରେ ଏହା ଯୁଗଯୁଗ ଧରି ଗଢ଼ି ଆସିଥିବା ସମ୍ପର୍କ ଓ ସଂସ୍କୃତିର ନିରବଚ୍ଛିନ୍ନ ଧାରାକୁ ବିଚ୍ଛିନ୍ନ କରିଦେଇଚି ବୋଲି ବିଶିଷ୍ଟ ସମାଜଜ୍ଞାନୀ ମାର୍ଗାରେଟ ମିଡ୍ (Mead 1943) ବହୁବର୍ଷ ତଳେ ଯୋଉ ମତବ୍ୟକ୍ତ କରିଥିଲେ, ତାହା ଆଜି ଅକ୍ଷରେ ଅକ୍ଷରେ ସତ ମନେହେଉଚି । ଆଧୁନିକ ଶିକ୍ଷା ଯେ ଆମ୍ଭମାନଙ୍କୁ ପରମ୍ପରାରୁ ଦିନକୁ ଦିନ ବେଶି ଛିନ୍ନମୂଳ କରିଚାଲିଚି, ଏଥିରେ ସନ୍ଦେହ ନାହିଁ । ସାହିତ୍ୟରେ ଏହାର ପ୍ରତିଫଳନ ସ୍ପଷ୍ଟ । ସାରଳା ଦାସ, ପଞ୍ଚସଖା, ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଭୀମଭୋଇ ପ୍ରଭୃତି ସମସ୍ତେ ଥିଲେ ଲୋକକବି । ଏମାନଙ୍କର ରଚନାବଳିକି ଓଡ଼ିଶାର ଶିକ୍ଷିତ ଅଶିକ୍ଷିତ ସମସ୍ତେ ଶୁଣୁଥିଲେ, ପଢୁଥିଲେ, ଆଦର କରୁଥିଲେ । କିନ୍ତୁ ଆଧୁନିକ ଶିକ୍ଷା ପ୍ରଚଳନ ପରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ନବ ଜାଗରଣ ଦିଗରେ ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗଙ୍ଗାଧର ପ୍ରଭୃତି ଯୋଉ ସାହିତ୍ୟ ରଚନା କଲେ, ତା'ର ଲୋକପ୍ରିୟତା ତୁଳନାତ୍ମକଭାବେ କମିଗଲା । ଏ ସାହିତ୍ୟ ମୋଟା ମୋଟି ଭାବେ ତଥାକଥିତ ଶିକ୍ଷିତ ଲୋକଙ୍କ ପାଖରେ ଆଦର ଲାଭ କଲା । ଏ ଲୋକପ୍ରିୟତା ସତ୍ୟବାଦୀ ଯୁଗ, ସବୁଜ ଯୁଗ, ମାର୍କ୍ସବାଦୀ ଚେତନାର ଯୁଗ ଓ ଆଧୁନିକ ଯୁଗ ଦେଇ ଆଜିର ଉତ୍ତର ଆଧୁନିକ ଯୁଗରେ ପୂରାପୂରି ନିଃଶେଷ ହୋଇଯାଇଚି ବୋଲି କୁହାଯାଇପାରେ । ତେଣୁ ଆଜିର ଲେଖକମାନେ ଗଣ ଲେଖକ ନୁହନ୍ତି । ଆମର ଏମିତି ଅନେକ ସାହିତ୍ୟ ଅଧ୍ୟାପକ ଅଛନ୍ତି, ଯେଉଁମାନେ ସାହିତ୍ୟ ପତ୍ରିକା ଖଣ୍ଡେ କିଣନ୍ତିନି କି ପଢ଼ନ୍ତିନି । ଯୋଉ କେତେକ ପତ୍ରିକା କିଣନ୍ତି, ସେମାନଙ୍କ ଭିତରୁ ଅନେକେ ପଢ଼ନ୍ତିନି - ପତ୍ରିକା କେବଳ ଡ୍ରଇଂରୁମ୍‌ରେ ଶୋଭାପାଇବା ଉଦ୍ଦେଶ୍ୟରେ କିଣାଯାଏ । ଏହା ଯଦି ଭିନ୍ନ ଭିନ୍ନ ସାହିତ୍ୟ ପଢ଼ାଉଥିବା ଶିକ୍ଷିତ ବ୍ୟକ୍ତିଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଆଦରର ସୂଚକ ହୁଏ, ତେବେ ଜନସାଧାରଣଙ୍କ ଅବସ୍ଥା ସହଜରେ ଅନୁମେୟ । ଏପ୍ରସଙ୍ଗରେ ମନେପକାଇବା ଉଚିତ ଯେ ରମାକାନ୍ତ ରଥଙ୍କ ସନ୍ଦିଗ୍ଧ ମୃଗୟା, ଅନେକ କୋଠରୀ ଓ ସପ୍ତମ ଋତୁଠାରୁ ଶ୍ରୀରାଧା ଯଥେଷ୍ଟ ଲୋକପ୍ରିୟ ହେଇଚି । ପୁଣି ମନୋରଞ୍ଜନ

ଦାସଙ୍କ ବନହଂସୀ ଓ ଅରଣ୍ୟଫସଲ ଠାରୁ ନାଟକ ଭାବରେ କାଠଘୋଡ଼ା ଦର୍ଶକଙ୍କ ପାଖରେ ବେଶି ଆଦୃତ ହୋଇଗଲା । ଯେତେଦୂର ସମ୍ଭବ ଶ୍ରୀରାଧା ଓ କାଠଘୋଡ଼ାରେ ଆମର ପାରମ୍ପରିକ ବିଷୟବସ୍ତୁ, ଭାଷା ଓ ପ୍ରକାଶ ଶୈଳୀର ପ୍ରୟୋଗ ଏହାର ମୁଖ୍ୟ କାରଣ । ଏଠି ସ୍ପଷ୍ଟ କରିଦେବା ଉଚିତ ଯେ ଭାଷା ଓ ସଂସ୍କୃତିର ସମ୍ପର୍କ କ୍ଷୀର ନୀର ପରି । ଭାଷା ଓ ସଂସ୍କୃତି ମଧ୍ୟରୁ ପ୍ରତ୍ୟେକଟିରେ ଅନ୍ୟଟିର ସ୍ପଷ୍ଟ ପ୍ରତିଫଳନ ଲକ୍ଷଣୀୟ ବୋଲି ବିଦ୍ୱାନମାନଙ୍କ ମତ । କ୍ରୋବରଙ୍କ (Kroeber 1967 : 225) ନିମ୍ନ ଉକ୍ତିଟି ଏଠାରେ ଉଦ୍ଧାରଯୋଗ୍ୟ – "So far as process of their transmission is concerned, and the type of mechanism of their development, it is clear that language and culture are one." ଏଇ ବିଦ୍ୱାନମାନଙ୍କ ମତରେ ହଜାର ହଜାର ବର୍ଷ ତଳେ ମଣିଷ ସଂସ୍କୃତିର ବିକାଶ ଘଟିଲାବେଳେ ଠିକ୍ ଏକା ସାଙ୍ଗରେ ଭାଷା ବି ବିକଶିତ ହୋଇଥିଲା । ଅନ୍ୟ ଭାବରେ କହିଲେ ଭାଷା ଓ ସଂସ୍କୃତି ପରସ୍ପରର ଗୋଟିଏ ଗୋଟିଏ ପୋଷାକ ପ୍ରତିଛବି । ପୁଣି ଏଇ ଭାଷା ଓ ସଂସ୍କୃତି ସାହିତ୍ୟ ପାଇଁ ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଏକଥା ବୁଝେଇ କହିବା ଦରକାର ନାହିଁ । ଏହା ସହିତ ଯଦି ଆମେ ଏକମତ, ତେବେ ଭାଷା, ସଂସ୍କୃତି ଓ ସାହିତ୍ୟକୁ ଗୋଟିଏ ତ୍ରିଭୁଜର ତିନିକୋଣ ବୋଲି କୁହାଯାଇପାରେ । ଅର୍ଥାତ୍ ଯେକୌଣସି ଗୋଟିକର ବିନା ଅନ୍ୟଗୁଡ଼ିକର ପରିକଳ୍ପନା ଅସମ୍ଭବ । ଏ ପରିପ୍ରେକ୍ଷୀରେ ସାହିତ୍ୟିକମାନେ ବିଶେଷକରି ଯୁବ ସାହିତ୍ୟକୁ ପାରମ୍ପରିକ ରୀତିରେ ପୁରୁଣା ବାଟରେ ଯିବାକୁ ଛାଡ଼ିଦେବେ କି ତାକୁ ଲୋକମାନଙ୍କ ପାଖକୁ ଫେରାଇ ନେବା ଦିଗରେ ନେତୃତ୍ୱ ନେବେ ଏ ନିଷ୍ପତ୍ତି ନେବାର ଦାୟିତ୍ୱ ସେମାନଙ୍କର ।

ବର୍ତ୍ତମାନ ଯୁଗ ହେଲା ଲୋକମାନଙ୍କ ପାଖକୁ ଫେରିବାର ଯୁଗ । ବର୍ତ୍ତମାନ ଅଧିକାଂଶ ଅନୁନ୍ନତ, ଉନ୍ନତିଶୀଳ, ଏପରିକି ଉନ୍ନତ ଦେଶର ସାହିତ୍ୟ ଉପରେ ଆଖିବୁଲେଇ ନେଲେ ଆମେ ଦେଖିବା ଯେ ଲୋକମାନଙ୍କ ପାଖକୁ ଫେରିବାର ପଦଧ୍ୱନି କୋଉଠି କ୍ଷୀଣ ତ କୋଉଠି ତୀବ୍ର । ଲୋକମାନଙ୍କ ପାଖକୁ ଫେରିବାକୁ ହେଲେ ଲେଖକମାନଙ୍କୁ ପ୍ରଥମେ ସେମାନଙ୍କ ମାନସିକ ଗଣ୍ଠିସବୁକୁ ଫିଟେଇବାକୁ ପଡ଼ିବ, ବୌଦ୍ଧିକ ସ୍ୱାଧୀନତା ଲାଭ କରିବାକୁ ପଡ଼ିବ । ପାଶ୍ଚାତ୍ୟ ସାହିତ୍ୟ-ସୂର୍ଯ୍ୟ ପ୍ରତି ସେମାନଙ୍କର ଯେଉଁ ସୂର୍ଯ୍ୟମୁଖୀ ସୁଲଭ ଉନ୍ମୁଖତା ରହିଚି, ତା'ଶୀଘ୍ର ପରିହାର କରିବାକୁ ପଡ଼ିବ । ରବୀନ୍ଦ୍ରନାଥଙ୍କ କେତେକ ପ୍ରାଥମିକ ସ୍ତରରେ ରଚନାରେ ଏ ବୌଦ୍ଧିକ ପରାଧୀନତାକୁ ଲକ୍ଷ୍ୟ କରି ବିବେକାନନ୍ଦ ତୀବ୍ର ତାଚ୍ଛଲ୍ୟ କରିଥିଲେ ବୋଲି ଆମେ ଜାଣୁ । ତା'ପରେ ଆଙ୍ଗିକ ଓ ଆତ୍ମିକ ଉଭୟ ଦୃଷ୍ଟିରୁ ରବୀନ୍ଦ୍ରନାଥଙ୍କ ରଚନାସ୍ରୋତର କେମିତି ଦିଗ ପରିବର୍ତ୍ତନ ଘଟିଲା, ତା' ଏଠି ଆଲୋଚନା କରିବାର ଆବଶ୍ୟକତା ନାହିଁ । ଓଡ଼ିଆ କବିତାରେ 'କୁକୁର ବିରାଡ଼ି ପରି ବର୍ଷା'ର ପ୍ରୟୋଗ ରହିଚି । 'କୁକୁର ବିରାଡ଼ି ପରି ବର୍ଷା' ଓ 'ହାତୀଶୁଣ୍ଢ ପରି ବର୍ଷା' ଏ ଦୁଇଟି ପ୍ରୟୋଗ ମଧ୍ୟରୁ ଦ୍ୱିତୀୟଟିର ଗ୍ରହଣୀୟତା ପ୍ରଥମଟିଠାରୁ ଯଥେଷ୍ଟ ବେଶି ବୋଲି ମୁଁ ପରୀକ୍ଷା କରି ଦେଖିଚି । ଏହାର କାରଣ ହେଲା ପ୍ରଥମଟି ଏକ ଇଂରାଜୀ ପ୍ରୟୋଗର ଆକ୍ଷରିକ ଅନୁବାଦ ହୋଇଥିବା

ବେଳେ ଦ୍ୱିତୀୟଟି ଆମ ସଂସ୍କୃତିରୁ ଆନୀତ । ସାହିତ୍ୟରେ 'ଆଧୁନିକତା' ତତ୍ତ୍ୱଟି ଅବକ୍ଷୟର ଭଉଁରୀ ଭିତରେ ଏବେ ଘୂରିବୁଲୁଚି । ତା'ର ସଳିଳ ସମାଧି ଘଟିବା ପୂର୍ବରୁ ଆମ ଲେଖକମାନେ, ବିଶେଷକରି ଯୁବଲେଖକମାନେ ଆପଣା ମାର୍ଗଟି ବାଛିନେବା ବାଞ୍ଛନୀୟ । ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ବଙ୍ଗଳା କବି ଓ ଲେଖକ ରଙ୍ଗଲାଲ ବନ୍ଦୋପାଧ୍ୟାୟ ପ୍ରାୟ ଦେଢ଼ଶହ ବର୍ଷତଳେ ଯୋଉ ମନ୍ତବ୍ୟ ଦେଇଥିଲେ, ତାକୁ ଆଜି ଉତ୍ତର-ଆଧୁନିକ ବଙ୍ଗୀୟ ସାହିତ୍ୟିକମାନେ ଖୁବ୍ ଗୁରୁତ୍ୱର ସହ ଆଲୋଚନା କରୁଚନ୍ତି । ତାଙ୍କ ମନ୍ତବ୍ୟଟି ହେଲା- "ସଂସ୍କୃତ ଓ ବଙ୍ଗଳାର ସମ୍ପର୍କ ମା-ଝିଅର । ମା'ର ଐଶ୍ୱର୍ଯ୍ୟ ଉପରେ ଝିଅର ଅଧିକାର ଜନ୍ମଗତ ।" ଏହା ସହିତ ଆମେ ଉପଭାଷାଗୁଡ଼ିକୁ ଯୋଡ଼ି କହିପାରିବା ଯେ ଝିଅର ଖାଲି ମା'ର ଐଶ୍ୱର୍ଯ୍ୟ ଉପରେ ନୁହେଁ, ଭଉଣୀମାନଙ୍କ ଉପରେ ମଧ୍ୟ ଏକ ସସ୍ନେହ ଅଧିକାର ଥାଏ; ଓ ଏ ଅଧିକାର ବଳରେ ସେ ସେମାନଙ୍କ ଐଶ୍ୱର୍ଯ୍ୟକୁ ନିଜର ମନେକରେ । ଓଡ଼ିଆ ସାହିତ୍ୟ-ବନିତାମାନେ ନିଜନିଜର ଅଳଂକରଣ ପାଇଁ କୋଉ ଉପଭାଷା-ଭଉଣୀଠୁ କି କି ଆୟ ଅଳଂକାର ନେବେ, ସେକଥା ବନିତାମାନଙ୍କ ପିତାମାନେ ସ୍ଥିର କରିବାର ବେଳ ଆଜି ପହଁଚିଛି ।

**ସହାୟକ ପୁସ୍ତକ ଓ ପ୍ରବନ୍ଧ ତାଲିକା :**

ଦାଶ, କୁଳମଣି । ୧୯୭୧ । ସରଳ ଉତ୍କଳ ଅଭିଧାନ । କଟକ : ନିଉ ଷ୍ଟୁଡ଼େଣ୍ଟସ ଷ୍ଟୋର ।

ମହାନ୍ତି, ଆର୍ତ୍ତବଲ୍ଲଭ (ସଂ.) । ୧୯୭୦ । ସାରଳା ମହାଭାରତ (ଅଶ୍ୱମେଧ, ମୂଷଳୀ ଓ ସ୍ୱର୍ଗାରୋହଣ ପର୍ବ) । ଭୁବନେଶ୍ୱର : ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ।

ମହାନ୍ତି, ପଞ୍ଚାନନ । ୧୯୯୨ । ପଶ୍ଚିମ ଓଡ଼ିଶାର କଥିତ ଭାଷା : ଓଡ଼ିଆ ନା କୋଶଳୀ ? ଏଷଣା ୨୫ ।

Haugen, E. 1966 Semicommunication : the language gap in Scandinavia, in Explorations in Sociolinguistics ed. by S.Lieberson. The Haugue : Mounton.

Hockelt, C.F. 1970. A course in modern linguistics. New Delhi : Oxford & IBH. (reprint)

Krocher, A.L. 1967. Anthropology. New Delhi : Oxford & IBH. (reprint)

Mead, M. 1943. Our educational emhases in primitive perspective. American Journal of Sociology 48.

☐☐☐

## ୫୧

# ବାଲେଶ୍ୱର ଓ ମେଦିନାପୁର ଅଞ୍ଚଳରେ ପ୍ରଚଳିତ ଓଡ଼ିଆ ଭାଷା ସଂସ୍କୃତିର ଏକ ତୁଳନାତ୍ମକ ଅଧ୍ୟୟନ

ଅରବିନ୍ଦ ଗିରି

...ମେଦିନାପୁରବାସୀ ଓ ବାଲେଶ୍ୱରବାସୀ ପରସ୍ପର ପଡ଼ୋଶୀ ଏବଂ ଏମାନଙ୍କ ଭାଷା ମୂଳତଃ ଗୋଟିଏ ହୋଇଥିବାରୁ, ଏହି ଉଭୟ ଜିଲ୍ଲାର ଅଧିବାସୀମାନେ ଓଡ଼ିଆ ମିଶା ବଙ୍ଗଳା ବା ବଙ୍ଗଳାମିଶା ଓଡ଼ିଆ ଦ୍ୱିଭାଷାରେ କଥାବାର୍ତ୍ତା କରନ୍ତି । ଆଞ୍ଚଳିକତା ଦୃଷ୍ଟିରୁ ବି ଉଭୟଙ୍କ କଥାବାର୍ତ୍ତାରେ ଓଡ଼ିଆ ଶବ୍ଦର ବହୁଳ ବ୍ୟବହାର ଦେଖିବାକୁ ମିଳେ । ଏହି ସବୁ ପାହି ଅଞ୍ଚଳର ବସତି ସ୍ଥାପନ କରିଥିବା ମେଦିନୀପୁରବାସୀମାନଙ୍କ ଆଞ୍ଚଳିକ କଥାବାର୍ତ୍ତାକୁ ଲକ୍ଷ୍ୟ କରି ଏମାନଙ୍କୁ କେହି କେହି କେରା ବଙ୍ଗାଳୀ ବୋଲି କହିଥାନ୍ତି । ଦୁଇଟି ଉଦାହରଣ ଦେଲେ ଏହା ସ୍ପଷ୍ଟ ହୋଇଯିବ–

୧.(କ) କଟି ତୋର ବାବା ଘରେ ଆଛେନା କେଟକେ ଯାଇଚେ ?

(ମେଦିନାପୁର ଜିଲ୍ଲାର ଏଗରଥାନା ଅନ୍ତର୍ଗତ 'ଖାଗଦା' ଗ୍ରାମରୁ ଓ ବାଲେଶ୍ୱର ଜିଲ୍ଲା ବସ୍ତା ବ୍ଲକର 'ଦୁବଲାଗଡ଼ି' ଗ୍ରାମରୁ ସଂଗୃହୀତ)

(ଖ) ଛୁଆ ତୋ ବାପ ଘରେ ଅଛିନା କେଟକୁ ଯାଇଛି ?

(ମେଦିନାପୁର ଜିଲ୍ଲା କାନ୍ଥି ମହକୁମା ଅନ୍ତର୍ଗତ 'ବାଦଲପୁର' ଗ୍ରାମରୁ ଓ ବାଲେଶ୍ୱର ସଦରବ୍ଲକ ଅନ୍ତର୍ଗତ 'ପରଖୀ' ଗ୍ରାମରୁ ସଂଗୃହୀତ) ଓଡ଼ିଆ ଭାଷାରେ ହେଉଛି-ପୁଅ ତୋ ବାପା ଘରେ ଅଛନ୍ତି ନା କେଉଁଠିକି ଯାଇଛନ୍ତି ?

୨.(କ) ମୋର ନାଗି ଗଟେ ଟିକଟ କାଟବୁ, ମୁଁ ସିନେମା ଯିମି ।

(ଭୋଗରାଇର 'ତାଳସାରି' ଗ୍ରାମରୁ ସଂଗୃହୀତ)

ଖ) ମୋ ଲାଗି ଗୁଟେ ଟିକଟ କାଟବୁ, ମୁଁ ସିନେମା ଯିବି । (ମେଦିନୀପୁର ଜିଲ୍ଲାର 'ପଟାଶପୁର' ଅଞ୍ଚଳରୁ ସଂଗୃହୀତ)

ଗ) ମୋ ଲାଗି ଗୁଟେ ଟିକେଟ କାଟିଥିବୁ ମୁଁ ସିନେମା ଯିମି ।

(ମେଦିନୀପୁର ଜିଲ୍ଲା କାନ୍ଥି ମହକୁମା ଅନ୍ତର୍ଗତ 'ହଇପୁର' ଗ୍ରାମରୁ ସଂଗୃହୀତ)

ଘ) ମୋ ଲାଗି ଗୁଟେ ଟିକେଟ କାଟବଗୋ, ମୁଇଁ ସିନେମା ଯାବା । (ବାଲେଶ୍ୱର ସଦରବ୍ଲକ ଅନ୍ତର୍ଗତ 'ଗୁଡ଼ପାହି' ଗ୍ରାମରୁ ସଂଗୃହୀତ)

ଓଡ଼ିଆ ଭାଷାରେ ହେଉଛି-

ମୋ ପାଇଁ ଗୋଟେ ଟିକଟ କାଟିବୁ, ମୁଁ ସିନେମା ଯିବି ।

ମେଦିନୀପୁର ଜିଲ୍ଲାର ଦକ୍ଷିଣାଞ୍ଚଳ ତଥା ବାଲେଶ୍ୱର ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ପାହି ଅଞ୍ଚଳରେ ବ୍ୟବହୃତ ଓଡ଼ିଆ ଭାଷାର ଶବ୍ଦ ସମ୍ଭାର କିପରି ଓଡ଼ିଆ ଶବ୍ଦର ନିକଟବର୍ତ୍ତୀ ନିମ୍ନରେ ତାହାର ଏକ ତାଲିକା ପ୍ରଦାନ କରାଗଲା । ଏହି ଶବ୍ଦଗୁଡ଼ିକର ଆଭିଧାନିକ ମୂଲ୍ୟବୋଧ ରହିବା ସହିତ ଧ୍ୱନି, ରୂପ ଓ ବାକ୍ୟ ଗଠନ ପ୍ରକ୍ରିୟାର ମଧ ବିଶେଷତ୍ୱ ରହିଛି ।

| ଓଡ଼ିଆ ଶବ୍ଦ | ମେଦିନା ପୁର ଦକ୍ଷିଣାଞ୍ଚଳରେ ପ୍ରଚଳିତ ଓଡ଼ିଆ ଶବ୍ଦ | ବାଲେଶ୍ୱର ସମୁଦ୍ର ଉପକୂଳବର୍ତ୍ତୀ ପାହି ଅଞ୍ଚଳରେ ପ୍ରଚଳିତ ଓଡ଼ିଆ ଶବ୍ଦ |
|---|---|---|
| ଗେଣ୍ଡୁ ଫୁଲ | ଗେଣ୍ଡା ଫୁଲ | ଗେଣ୍ଡା ଫୁଲ |
| ଦୁଦୁରା ଫୁଲ | ଧୁତରା ଫୁଲ | ଧୁତରା ଫୁଲ |
| ପଖାଳ | ପାଖାଲ୍ / ପଖଳ | ପାଖାଲ୍ / ପଖଳ |
| ତୋରାଣି | ତାନୁ / ତିନି | ତାନୁ / ତିନି |
| ଖଜୁରୀ କୋଳି | ଖେଜୁର୍ କୋଳି/ଖେଜୁରକୁଳ | ଖେଜୁରକୋଳି/ଖେଜୁରକୁଳ |
| ବରକୋଳି | ବୋୟରକୁଳ /ବୋୟରକୁଳି | ବୋୟରକୁଳ / ବୋୟରକୁଳି |
| କୋଦାଳ | କଦାଲ୍ / କୁଦାଳ | କଦାଲ/କୁଦାଳ |
| ପନିକି | ପନିକ୍ / ପନିକି | ପନିକ୍ / ପନିକି |
| କଟୁରୀ | କାତାନ୍ / କତାନ୍ | କାତାନ୍ / କତାନ |
| ଚାଲୁଣି | ଚାହ୍ଲୁଣ୍ / ଚାଲୁଣି | ଚାହ୍ଲୁଣ୍ / ଚାଲୁଣି |
| କୁରାଢ଼ି | କୁଢ଼ିର୍ | କୁଢ଼ିର୍ |
| ଝଟା(ପହଁରା) | ଝାଟା/ଝଟା | ଝାଟା /ଝଟା |
| ଖୁଣ୍ଟ | ଖୁଣ୍ଟା / ଖୁଣ୍ଟ | ଖୁଣ୍ଟା / ଖୁଣ୍ଟ |
| ଗ୍ଲାସ୍ | ଗିଲାସ | ଗିଲାସ୍ |
| ଥାଳି | ଥାଳା / ଥାଳି | ଥାଳା / ଥାଳି |
| ନଙ୍ଗଳ | ନାଙ୍ଗଳ / ନଙ୍ଗଳ | ନାଙ୍ଗଳ / ନଙ୍ଗଳ |
| କଦଳୀ | କଳା | କଳା |
| ଭଣ୍ଡା | ଭଣ୍ଡା | ଭଣ୍ଡା |
| ମଞ୍ଜା (କଳଦୀ ଗଛର ମଞ୍ଜା) | ମଞ୍ଜା | ମଞ୍ଜା |

| | | |
|---|---|---|
| ପପେଆ | ପିଁପା | ପିଁପା |
| ଖମ୍ବଆଳୁ | ଖେମାଲୁ /ଖମାଲୁ | ଖେମାଲୁ / ଖମାଲୁ |
| ଟମାଟୋ | ଟମାଟମ୍ | ଟମାଟମ୍ |
| ଭେଣ୍ଡି | ଭେଣ୍ଡୁ | ଭେଣ୍ଡୁ |
| କଞ୍ଚା ଲଙ୍କା | କାଁଚା ଲଙ୍କା / କଞ୍ଚା ଲଙ୍କା | କାଁଚା ଲଙ୍କା / କଞ୍ଚା ଲଙ୍କା |
| କଲରା | କଲ୍‌ରା / କାଲ୍‌ଲା | କଲ୍‌ଲା / କାଲ୍‌ଲା |
| ଡାବ(ପଇଡ଼) | ଡାବ | ଡାବ |
| ନଡ଼ିଆ | ନାଡିଆ / ନଡ଼ିଆ | ନାଡିଆ / ନଡ଼ିଆ |
| ଆମ୍ବ | ଆମ୍ / ଆମ୍ବ | ଆମ୍ / ଆମ୍ବ |
| ଡାଳିମ୍ବ | ଡାଳିମ୍ବ / ଡାଳିମ୍ବ | ଡାଲିମ୍ / ଡାଳିମ୍ବ |
| ତେନ୍ତୁଳି | ତେନ୍ତୁଲ୍ / ତେନ୍ତୁଳି | ତେନ୍ତୁଳ / ତେନ୍ତୁଳି |
| ଆମ୍ବୁଲ | ଆମ୍‌ସି | ଆମ୍‌ସି |
| ବନ୍‌ସିଖଡ଼ା | ବନ୍‌ସିଖାଡ଼ା/ବନ୍‌ସିଖଡା | ବନ୍‌ସିଖାଡ଼ା / ବନ୍‌ସିଖଡା |
| ତୁଡ଼ି ମାଛ | ତୁଡ୍ ମାଛ / ତୁଡି ମାଛ | ତୁଡ଼ ମାଛ / ତୁଡ଼ି ମାଛ |
| କଉ ମାଛ | କଇ ମାଛ | କଇ ମାଛ |
| ମାଗୁର ମାଛ | ମାଗୁର ମାଛ | ମାଗୁର ମାଛ |
| ଦଣ୍ଡିକିରି ମାଛ | ଦାଣ୍ଡିଆ ମାଛ | ଦାଣ୍ଡିଆ ମାଛ |
| କଳମି ଶାଗ | କଲ୍‌ମି ଶାଗ୍ | କଲ୍‌ମି ଶାଗ୍ |
| ଟଭା | ଟଣ୍ଡା / ଟାଭା | ଟଭା / ଟାଭା |
| ଦୋମହଲା | ଦୋମ୍‌ଲା | ଦୋମ୍‌ଲା |
| ଢିଙ୍କିଶାଳ | ଢେଙ୍କ୍‌ଶାଳ / ଢିଙ୍କିଶାଳ | ଢେଙ୍କଶାଳ / ଢିଙ୍କିଶାଳ |
| ଚଟେଇ | ଚଟା / ଚାଟା | ଚଟା / ଚାଟା |
| ହଂସ | ହାଁସ୍ / ହଂସ | ହାଁସ୍ / ହଂସ |
| ବଗ | ବଗଲା | ବଗଲା |
| କଜଳପାତି(ପକ୍ଷୀ) | କାଜଳପାତି / କଜଳପାତି | କାଜଳପାତି/କଜଳପାତି |
| କଇଁଚ | କଚିମ୍ | କେଚମ୍ / କଚିମ |
| ପାରା | ପାରିଆ | ପାରିଆ |
| ଫୁଟି (କାକୁଡ଼ି) | ଫୁଟ୍‌କି | ଫୁଟ୍‌କି |
| ଟ୍ରକ୍ | ଟ୍ରାକ୍ | ଟ୍ରାକ୍ |
| ଭଜା | ଭାଜା/ଭଜା | ଭାଜା / ଭଜା |
| କଳସୀ | କଲ୍‌ସୀ | କଲ୍‌ସୀ |

| | | |
|---|---|---|
| ସ୍କୁଲ | ଇସ୍କୁଲ୍ | ଇସ୍କୁଲ୍ |
| ଝିଣ୍ଟିକା | ଝିଟ୍କା | ଝିଟ୍କା |
| ବ୍ରାହ୍ମଣ | ବ୍ରାହ୍ମଣ / ବ୍ରାହ୍ମୁଣ | ବାହ୍ମଣ / ବାହ୍ମୁଣ |
| କୁଚିଆ | କେଁଚୁଆ | କେଁଚୁଆ |
| ଘୁଗୁନି | ଘୁଗୁନି | ଘୁଗୁନି |
| ମଟର | ମଟ୍ର | ମଟର |
| ତରବୁଜ | ତରବୁଜ୍ | ତରବୁଜ୍ |
| କମଳା | କମଳା | କମଳା |
| ସେଓ | ସେଉ | ସେଉ |
| ଫାଲ୍‌ଗୁନ୍ | ଫାଗୁଣ / ଫଗୁଣ | ଫାଗୁଣ / ଫଗୁଣ |
| ବାଦାମ | ବାଦାମ୍ / ବଦାମ | ବାଦାମ୍ / ବଦାମ୍ |
| ଧୋତି | ଧୁତି | ଧୁତି |

ଏହିଭଳି ବହୁ ଶବ୍ଦ ସଂଗ୍ରହ କରାଯାଇପାରେ ।

ମେଦିନାପୁରର ଦକ୍ଷିଣାଞ୍ଚଳ ତଥା ବାଲେଶ୍ୱର ଜିଲ୍ଲାର ପାହି ଅଞ୍ଚଳରେ ପ୍ରଚଳିତ ଏକ ପ୍ରକାର ଲୋକ ସଂସ୍କୃତିର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏହି ଲୋକ ସଂସ୍କୃତି ସାଧାରଣତଃ ଗ୍ରାମ୍ୟ ପର୍ବପର୍ବାଣୀକୁ ଭିତ୍ତିକରି ଗଢ଼ି ଉଠିଥାଏ । କାର୍ତ୍ତିକ ମାସରେ ଗର୍ଭଣା ସଂକ୍ରାନ୍ତି ପଡ଼େ । ହିନ୍ଦୁମାନଙ୍କର ଏହା ଏକ କୃଷିଭିତ୍ତିକ ପର୍ବ । ଏହାକୁ ପଲ୍ଲୀ ଅଞ୍ଚଳର ନଳମରା ବା ଖଡ଼ାମରା ସଂକ୍ରାନ୍ତି ବୋଲି କୁହାଯାଏ । କ୍ଷେତରେ ଧାନଗଛ ଗର୍ଭଧାରଣ କରିଥାଏ । କେତେକ ଲଘୁ ଧାନରୁ ନୂଆ ଧାନକେଣ୍ଡା ବାହାରି ମାଈ ପବନରେ କେଶର ଉଡାଉଥାଏ । କିଆରୀର ଅଳ୍ପ ଅଳ୍ପ ପାଣିରେ ଧାନଫୁଲ ସବୁ ସୋରି ସୋରି ଭାସୁଥାଏ । ସମଗ୍ର କ୍ଷେତ ସେତେବେଳେ ଧାନଫୁଲ ବାସନାରେ ମହକୁଥାଏ । ପଲ୍ଲୀବାସୀ ପୂର୍ବଦିନ ନଳଗଛ ସବୁ କାଟି ଆଣି ପୋଖରୀରେ ପକାଇଥାନ୍ତି । ସଂଧ୍ୟାବେଳେ କେଉଁ (ଆଞ୍ଚଳିକ ଭାଷାରେ ଅଦା ଜାତୀୟ ଗଛର ଉପର ନାଲି ଫଳ), ଝୋଟ, ପାଟ, ଅରୁଆ ଚାଉଳ, ଅଣସୋରିଷା, କୁକୁଡ଼ି ନାଡି (କାକୁଡ଼ି ଗଛର ଛୋଟ ଛୋଟ କଟା ଡଙ୍କ)ର ଏକ ମିଶ୍ରଣ ପ୍ରସ୍ତୁତ କରାଯାଇ ବୁଆଁଳ କୋଳି (ଆଞ୍ଚଳିକ ଭାଷାରେ ଲାଳୁଆ କୋଳି) ପତ୍ରରେ ପୁଡ଼ିଆ କରାଯାଇ ଝୋଟ କେରାରେ ନଳଗଛ ପତ୍ରରେ ବନ୍ଧାଯାଇ ବାଡରେ କିମ୍ବା ଚାଳରେ ତେରି ରଖାଯାଏ । ପଲ୍ଲୀବାସୀ ମୁହଁ ଅନ୍ଧାରରୁ ଉଠି ନୂଆ ଗାମୁଛା ପିନ୍ଧି, ମୁଣ୍ଡରେ ଠେକା ବାନ୍ଧି କାନ୍ଧରେ ନଳଗଛକୁ ପକାଇ 'ହରିବୋଲ' 'ହରିବୋଲ' ଧ୍ୱନି ଦେଇ ନିଜ ନିଜର କ୍ଷେତକୁ ମୁହାଁଇଥାନ୍ତି । ମଝିରେ ମଝିରେ ମନମତାଣିଆ ଗୋଟିଏ ପର୍ବ ଭିତ୍ତିକ ଗୀତ ମଧ୍ୟ ବୋଲୁଥାନ୍ତି । ଏଭଳି କେତୋଟି ଗୀତର ଦୃଷ୍ଟାନ୍ତ ହେଉଛି–

ଏଇର ଆଛେ ଝୋଟପାଟ

ସବୁ ପକାଇ ମଥା କାଟ । ୧ ।
ଏଇର ଆଛେ ଅଣସୋରିଷା କାକୁଡ଼ି ନାଡି
ଧାନ ଫଳବେ ଆଡ଼ି ଆଡ଼ି । ୨ ।
ଏଇର ଆଛେ ଓଲ
ଧାନ ଫଳବେ ଗୋଲ ଗୋଲ । ୩ ।

ନିଜ ନିଜ ବିଲରେ ଖଡ଼ା ମାରି ଘରକୁ ଫେରି ପୋଖରୀ, ଗୋବର ଖାତ, ତୁଳସୀ ଚଉଁରା ଏବଂ ଘର ଚାଳ (ପିଢ଼ା)ରେ ନଳ ମାରନ୍ତି । ତା'ପରେ ଗାଈ ବଳଦଙ୍କୁ ଗାଧୋଇ କଞ୍ଚା ହଳଦୀ, ବେଲପତ୍ର ଓ କାକର ମିଶା ଏକ ଦୋଗୁଅ ତାଙ୍କୁ ବାଉଁଶ ନଳିରେ ଖୁଆଯାଏ । ସେଦିନ ପ୍ରତ୍ୟେକଙ୍କ ଘରେ ପାଞ୍ଚ, ସାତ, ନଅ ଓ ବାର ପ୍ରକାର ତରକାରୀ (ଯେ ଯାହାର ସକ୍ଷମ ଅନୁଯାୟୀ) ଓ ପିଠାପଣା ହୁଏ । ଏହି ଦିନକୁ କେହି ହାତଛଡ଼ା କରନ୍ତି ନାହିଁ । ଉଭୟ ଅଞ୍ଚଳର ଲୋକମାନଙ୍କ ବିଶ୍ୱାସ ଯେ ଗର୍ଭଣା ସଂକ୍ରାନ୍ତିରେ ଭଲ ଭାବରେ ଖାଇଲେ ବର୍ଷ ସାରା ଭଲ ଖାଦ୍ୟ ମିଳିବ ।

ଏହି ଅଞ୍ଚଳମାନଙ୍କରେ ପ୍ରଚଳିତ ଏକ ପ୍ରକାର ଲୋକଗୀତର ଦୃଷ୍ଟାନ୍ତ ହେଉଛି-

ତେନ୍ତୁଲ ଗାଛେ ବାଁସା
ବଉ ଭାଙ୍ଗିଲା କାଁସା
ସେ ବଉ କାଇ
ଜଲ୍ ଆଣତେ ଯାଇଚେ
ସେ ଜଳ କାଇ
ସାପ ଛୁଇଁ ଦିଚେ
ସେ ବାପ କାଇ
ବଣେ ଭିତରେ ପଶିଚେ
ସେ ବଣ କାଇ
ଧବା କାଟି ଲିଚେ
ସେ ଧବା କାପାଡ଼ କାଚତେ ଯାଇଚେ
ସେ କାପଡ଼ କାଇ
ରାଜା ପିନ୍ଧିକି ପାକ୍ଷୀ ମାରତେ ଯାଇଚେ
ସେ ପାକ୍ଷୀ କାଇ
ଗଗନେ ଉଡ଼ିଚେ ।

ଓଡ଼ିଆ ଭାଷାରେ 'କଲୁରି ବେଣ୍ଟ', 'ପିମ୍ପୁଡ଼ି ଓ ଛୁଆ' ଆଦି ଗଳ୍ପଧର୍ମୀ ଲୋକଗୀତଗୁଡ଼ିକ ଏହି ଶ୍ରେଣୀୟ । ମାତ୍ର ଉପରୋକ୍ତ ଲୋକଗୀତଟି ବଙ୍ଗଳା ଓଡ଼ିଆର ମିଶ୍ରିତ ଦୋଭାଷୀ ଗୀତ ।...

ଠଠଠ

୫୨

# ସମ୍ବଲପୁର ଅଞ୍ଚଳର ଓଡ଼ିଆ ଭାଷା

## ବଳଭଦ୍ର ବହିଦାର

ମନୁଷ୍ୟ ଆପଣାର ହୃଦ୍‌ଗତ ଭାବ ଯେଉଁ ଶବ୍ଦମାନଙ୍କ ଦ୍ୱାରା ପ୍ରକାଶ କରିବାକୁ ସମର୍ଥ ହୁଏ ତାହାକୁ ଭାଷା ବୋଲାଯାଏ । ଆଧୁନିକ ରାଜନୀତିକ ଓଡ଼ିଶା ପ୍ରଦେଶର ଉତ୍ତରରେ ଗାଙ୍ଗପୁର ଓ ଖରସୁଆଁ ରାଜ୍ୟ, ଦକ୍ଷିଣରେ ପାରଳାଖେମୁଣ୍ଡି ଜମିଦାରୀ ଓ କୋରାପୁଟ ଜିଲ୍ଲା, ପୂର୍ବରେ ବାଲେଶ୍ୱର, କଟକ ଓ ଗଞ୍ଜାମ ଜିଲ୍ଲା, ଆଉ ପଶ୍ଚିମରେ ସମ୍ବଲପୁର ଜିଲ୍ଲା ଅବସ୍ଥିତ । ଏହି ପ୍ରଦେଶର ସମସ୍ତ ପୁରାତନ ଅଧିବାସୀ ଓ ନୂତନ ଅଧିବାସୀଙ୍କ ମଧ୍ୟରୁ ଅନେକେ ଆପଣା ଆପଣା ମନୋଗତ ଭାବ ପ୍ରକାଶ ପାଇଁ ଯେଉଁ ଭାଷା ବ୍ୟବହାର କରନ୍ତି, ତାହା ଓଡ଼ିଆ । ଏହା ବାହାରେ ସିଂହଭୂମି, ମେଦିନୀପୁର, ଟିକିଲି, ଫୁଲଝର ପ୍ରଭୃତି କେତେକ ଅଞ୍ଚଳର ଲୋକ ଓଡ଼ିଆ ଭାଷା କହୁଥିଲେ ହେଁ ସେସବୁ ଅଞ୍ଚଳ ରାଜନୀତିକ ଓଡ଼ିଶା ସହିତ ମିଶିପାରି ନାହିଁ । ଏହି ପ୍ରଦେଶରେ ଛଅ ଗୋଟି ଜିଲ୍ଲା ଅଛି । ଯଥା – ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର । ଏଗୁଡ଼ିକ ମଧ୍ୟରୁ ସମ୍ବଲପୁର ଜିଲ୍ଲାର ଅଧିକାଂଶ ସନ ୧୯୦୫ ଇସବିରେ ଓଡ଼ିଶା ଡିଭିଜନ ସହିତ ମିଶି ବିହାର-ଓଡ଼ିଶା ପ୍ରଦେଶର ଅଧୀନ ହୋଇଥିଲା । ଏ ଜିଲ୍ଲାର ଅବଶିଷ୍ଟାଂଶ ସହିତ ଗଞ୍ଜାମ ଓ କୋରାପୁଟ ଜିଲ୍ଲାକୁ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ସଙ୍ଗରେ ମିଶାଇ ସନ ୧୯୩୬ ଇସବିରେ ଏହି ପ୍ରଦେଶ ପ୍ରସ୍ତୁତ ହେଲା । ଏଥିରୁ ଜଣାହେବ ଯେ, ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ଅତି ପୁରାତନ କାଳରୁ କୌଣସି ନା କୌଣସି ଗୋଟିଏ ପ୍ରଦେଶରେ ରହିଆସୁଅଛି । ଏହା ହେଲେହେଁ ଏହି ତିନି ଜିଲ୍ଲାର ଓଡ଼ିଆ ଭାଷାରେ ସୁଦ୍ଧା ପାର୍ଥକ୍ୟ ଦେଖାଯାଏ । ତାହାହେଲେ ଯେଉଁ ଅଞ୍ଚଳଗୁଡ଼ିକ ଏହି ତିନିଜିଲ୍ଲାରୁ ବିଚ୍ଛିନ୍ନ ହୋଇ ଅନ୍ୟାନ୍ୟ ପ୍ରଦେଶରେ ଶତାଧିକ ବର୍ଷ ରହିଥିଲା ଏବଂ ବର୍ତ୍ତମାନ ମଧ୍ୟ ଓଡ଼ିଶା ପ୍ରଦେଶର ସୀମାନ୍ତରେ ଅବସ୍ଥିତ, ସେଠାରେ ଅଧିବାସୀଙ୍କ ଓଡ଼ିଆ ଭାଷା ବାଲେଶ୍ୱର, କଟକ ଓ ପୁରୀ ଅଞ୍ଚଳର ଭାଷାରୁ କେତେକ ପରିମାଣରେ ବିଭିନ୍ନ ହେବା ସ୍ୱାଭାବିକ । ଏହି ବିଭିନ୍ନତାର ପ୍ରଧାନ କାରଣ ଦୁଇଗୋଟି । ତନ୍ମଧ୍ୟରୁ ଗୋଟିଏ କାରଣ ଏହି ଯେ, ଏମାନଙ୍କୁ ସଦାବେଳେ ଭିନ୍ନ ଭାଷାଭାଷୀ କର୍ମଚାରୀଙ୍କ ସଂସ୍ରବରେ ରହିବାକୁ ହେଲା

ଏବଂ ଦ୍ୱିତୀୟ କାରଣ ଏହି ଯେ, ଭିନ୍ନ ଭାଷାଭାଷୀ ସାଧାରଣ ଲୋକଙ୍କ ସହିତ ପ୍ରୟୋଜନାନୁସାରେ କଥାବାର୍ତ୍ତା ହେବାକୁ ପଡ଼ିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଦିନରୁ ପ୍ରଥମ କାରଣଟି କ୍ରମେ କ୍ରମେ ଅପସାରିତ ହେଉଅଛି । ଦ୍ୱିତୀୟ କାରଣ ବିଦୂରିତ ହେବାର ସମ୍ଭାବନା ନାହିଁ । ତେଣୁ ଏସବୁ ଅଞ୍ଚଳର କଥିତ ଓଡ଼ିଆ ଭାଷାରେ ସୀମାନ୍ତ ଅନ୍ୟାନ୍ୟ ପ୍ରଦେଶର ଭାଷାର ଅନେକ ଶବ୍ଦ ପ୍ରବେଶ କରିବ, ଏଥିରେ ସନ୍ଦେହ ନାହିଁ । ଏପରି ପ୍ରବେଶ ମଧ୍ୟ ଅନିବାର୍ଯ୍ୟ ।

ସମ୍ବଲପୁର ଓ କଟକ ଅଞ୍ଚଳର ଭାଷାରେ କି ପ୍ରକାର ପ୍ରଭେଦ ଅଛି, ବର୍ତ୍ତମାନ ଦେଖାଯାଉ । ଯେଉଁ ଶବ୍ଦଗୁଡ଼ିକ ସଂସ୍କୃତ ଶବ୍ଦ ସହିତ ସମ୍ପୃକ୍ତ ଏବଂ ସାଧୁ ଶବ୍ଦ ବୋଲି ସାଧାରଣତଃ କଥିତ ହୁଏ, ସେସବୁ ଉଭୟ ଅଞ୍ଚଳରେ ପ୍ରାୟ ସମାନ । ଯଦ୍ୟପି କୌଣସି କୌଣସିଠାରେ ପ୍ରଭେଦ ଦେଖାଯାଏ, ତାହା ଯତ୍‌ସାମାନ୍ୟ ଓ ଉପେକ୍ଷଣୀୟ । ଏପରି କେତୋଟି ଶବ୍ଦ ନିମ୍ନରେ ପ୍ରଦତ୍ତ ହେଲା ।

| | କଟକ ଅଞ୍ଚଳରେ | ସମ୍ବଲପୁର ଅଞ୍ଚଳରେ |
|---|---|---|
| ସଂସ୍କୃତ ସହିତ ସମ୍ପୃକ୍ତ ବା ସାଧୁ ଶବ୍ଦ | ପ୍ରଚଳିତ | ପ୍ରଚଳିତ |
| ଅନ୍+ଯ | ଅନ୍ୟ | ଉନିଆଁ |
| ଅମ୍ଳ | ଆମ୍ବିଳା | ଆମ୍ବିଳିଆ |
| ଆବୃତ | ଉଭୁଡ଼ା ପଡ଼ିବା | ଉବୁଡ଼ା ପଡ଼ିବା |
| ଉଙ୍କଶ | ଓଡ଼ଶ | ଓଡ଼ିଶ |
| ଔଷଧ | ଓଷଧ | ଉଷଧ, ଉଷ |
| କଚ୍ଛପ | କଇଁଛ | କେଞ୍ଚ |
| କଳିକା | କଢ଼ | କଢ଼ି |
| କର୍ତ୍ତରୀ | କଟାରୀ | କଟରୀ |
| କୁଦାଳ | କୋଡ଼ି | କୁଡ଼ି |
| କୁଷ୍ଠ | କୋଢ଼ିଆ | କୁଢ଼ିଆ |
| କାଣ | କଣା | କହଣା |
| ଜଳୌକା | ଜୋକ | ଜଙ୍କ |
| ଗୁନ୍‌ଜ୍+ଆ | ଗୁଞ୍ଜା | ଗୁଞ୍ଜା |
| ଆଗମନ | ଆଞ୍ଚୁଆଇବା | ଆଞ୍ଚିବା |
| ଗାତ୍ରଧୌତ | ଗାଧୋଇବା | ଗାଧିବା |
| ଡିହ୍ମ୍ବର | ଡିମିରି | ଡୁମୁରି |
| ଡୁଲ୍-ଅ, କ | ଡୋଲିଆ | ଡୁଲିଆ |

ଏସବୁ ଶବ୍ଦରୁ କେଉଁଟା ଶୁଦ୍ଧ ଓ କେଉଁଟା ଅଶୁଦ୍ଧ ? କଟକ ତରଫର ଲୋକ କହିପାରନ୍ତି

ଯେ, ସେମାନଙ୍କ ଅଞ୍ଚଳରେ ପ୍ରଚଳିତ ଶବ୍ଦଗୁଡ଼ିକ ବିଶୁଦ୍ଧ । ତଦ୍ରୂପ ସମ୍ବଲପୁର ଅଞ୍ଚଳର ଲୋକ କହିପାରନ୍ତି ଯେ, ତାହା ବିଶୁଦ୍ଧ । ମୋ ମତରେ ଉଭୟ ଅଞ୍ଚଳରେ ସଙ୍କଳିତ ଶବ୍ଦ ବିଶୁଦ୍ଧ ବୋଲି ଧରାହୋଇପାରେ । କାରଣ ଉଭୟ ଅଞ୍ଚଳର ଶବ୍ଦ ସଂସ୍କୃତରୁ ଜାତ ଏବଂ ଏ ସବୁର ପ୍ରଚଳନ ଏତେ ବେଶୀ ହେଲାଣି ଯେ, ଏଗୁଡ଼ିକ ମଧ୍ୟରୁ କୌଣସି ଶବ୍ଦକୁ ଯଦି ଆମ୍ଭେମାନେ ଅଶୁଦ୍ଧ ବୋଲୁଁ, ତାହାର ବ୍ୟବହାର ବନ୍ଦ କରିଦେଇପାରିବା କି ? ଏହା କଦାପି ସମ୍ଭବପର ନୁହେଁ । ତେବେ ଏଥିପାଇଁ ଆପଣା ଆପଣା ମଧ୍ୟରେ ଯୁକ୍ତିତର୍କ ବା ବିବାଦ ଆରମ୍ଭ କରିବା ନିଷ୍ପ୍ରୟୋଜନ । କଟକ ତରଫରେ ପ୍ରଚଳିତ ଶବ୍ଦଗୁଡ଼ିକ ଲିଖିତ ଭାଷାରେ ସୁଦ୍ଧା ବ୍ୟବହୃତ ହେଉଅଛି । ସମ୍ବଲପୁର ଅଞ୍ଚଳର ଶବ୍ଦଗୁଡ଼ିକ ବ୍ୟବହୃତ ହେଲେ ତାହା କଟକ ତରଫର ଲୋକଙ୍କର ବୋଧଗମ୍ୟ ହୋଇପାରିବ ବୋଲି ମୁଁ ମନେକରେ । କାରଣ ଉଭୟ ଅଞ୍ଚଳର ଶବ୍ଦ ମଧ୍ୟରେ ବେଶୀ ତାରତମ୍ୟ ନାହିଁ ଏବଂ ସେସବୁ ଉଭୟ ଅଞ୍ଚଳରେ ସମାନାର୍ଥବୋଧକ ।

ଦେଶଜ ଶବ୍ଦ ମଧ୍ୟରେ କେତେକ ଶବ୍ଦ ଅଛି, ଯାହା ଉଭୟ ଅଞ୍ଚଳରେ ପ୍ରାୟ ସମାନ ଏବଂ ଯାହାର ଅର୍ଥ ମଧ୍ୟ ଉଭୟ ଅଞ୍ଚଳରେ ସମାନ । ନିମ୍ନାଙ୍କିତ କେତୋଟି ଶବ୍ଦ ଏଥିର ପ୍ରମାଣ ।

| କଟକ ଅଞ୍ଚଳରେ | ସମ୍ବଲପୁର ଅଞ୍ଚଳରେ |
|---|---|
| ପ୍ରଚଳିତ | ପ୍ରଚଳିତ |
| ପିଡ଼ିଆ | ପିଡ୍ରୁଆ |
| ଗୋଟାଇବା | ଗୁଟାଇବା |
| ଓଲୁ | ଉଲୁ |
| କାଦୁଅ | କାଦ |
| ଫୋଡ଼ | ଫୁଡ଼ |
| ଉକୁଚିବା | ଉଚୁକିବା |
| ଉକୁଟାଇବା | ଉଟୁକାଇବା |
| ଓପାଡ଼ିବା | ଉପାଡ଼ିବା |
| ଗାଉଁଲି | ଗଉଁଲି |
| ଘୋଡ଼ା | ଘୁଡ଼ା |
| ଅଗୁଆ | ଅଲୁଆ |

ମାତ୍ର ଉଭୟ ଅଞ୍ଚଳରେ ପ୍ରଚଳିତ ଆହୁରି କେତେକ ଶବ୍ଦ ଅଛି, ଯହିଁରେ ପ୍ରଭୂତ ପାର୍ଥକ୍ୟ ଦେଖାଯାଏ, ଅର୍ଥାତ୍ ଅପରିଷ୍କୃତ ଶବ୍ଦର ପ୍ରତିଶବ୍ଦ କଟକ ଅଞ୍ଚଳରେ ମଇଳା; କିନ୍ତୁ ସମ୍ବଲପୁର ଅଞ୍ଚଳରେ ଯୁବୁରା । ପାଠକମାନଙ୍କ ଅବଗତି ନିମନ୍ତେ ଏପ୍ରକାର କେତେକ ଶବ୍ଦର ତାଲିକା ତଳେ ଦେଉଅଛି ।

| କଟକ ଅଞ୍ଚଳର ଶବ୍ଦ | ସମ୍ବଲପୁର ଅଞ୍ଚଳର ଶବ୍ଦ |
|---|---|
| ଓଡ଼ | କାସ |
| ସୁଗନ୍ଧ | କହର |
| ଠକିବା | ନାରିବା |
| କପଟିଆ | କୁଥୁର୍ପିଆ |
| ଖୋଲିବା | କୁଡ଼ିବା |
| ହେଟାବାଘ | ହୁଣ୍ଡାର |
| ଚିଡ଼ିବା | ଖିଜିବା |
| ପାଉଁଶ | ଖାର୍ |
| ଗୋବର | ଖରସି |
| ଟିଙ୍କ | ଗୁହିରା |
| କଙ୍କି | ପାଟପକିଆଁ |
| ଘୁଡ଼ୀ | ପାତାଙ୍ଗି |
| ଘଷି | ଛେନା |
| ପୁରୁଣା | ଜୁନ୍ନା |
| ଅଧିକ | ଜହ୍ନା |
| ବିରୁଡ଼ି | ଟେଙ୍କର୍ |
| ଟେକା | ଢେଲ |
| ଚଞ୍ଚଳ | ତନ୍ଦ୍ରା |
| ବେଙ୍ଗଲା | ମାଢ଼େନ୍ |
| ବିଲୁଆ | କୁହ୍ଲିଆ |
| ଏଣ୍ଡୁଅ | କେଙ୍ଗେଟା |
| ଜିଆ | କେଞ୍ଚୁଆ |

ଏହି ଶବ୍ଦମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଆଦୌ ନାହିଁ । ତେଣୁ କଟକ ଅଞ୍ଚଳର ବ୍ୟକ୍ତି ସମ୍ବଲପୁରୀ ଶବ୍ଦର କିମ୍ବା ସମ୍ବଲପୁର ଅଞ୍ଚଳର ଲୋକ କଟକୀ ଶବ୍ଦର ଅର୍ଥ ବୁଝିପାରିବା ସହଜ ନୁହେଁ । ପୁସ୍ତକମାନଙ୍କରେ ଏଗୁଡ଼ିକ ମଧ୍ୟରୁ ଅନେକ କଟକୀ ଶବ୍ଦ ବ୍ୟବହୃତ ହେଉଥିବା ହେତୁ ସମ୍ବଲପୁର ଅଞ୍ଚଳର ଲୋକଙ୍କୁ ସେ ସବୁର ଅର୍ଥ ଏବେ ଅବୋଧ ହେଉନାହିଁ ।

ବିଶ୍ୱନିୟନ୍ତାଙ୍କ ସୃଷ୍ଟି ରହସ୍ୟ ଜାଣିବା କାହରି ଅସାଧ ନୁହେଁ । ଏ ସଂସାରରେ ସାମ୍ୟ ମଧ୍ୟରେ ବୈଷମ୍ୟ ସର୍ବତ୍ର ପରିଲକ୍ଷିତ ହୁଏ । ମାନବଜଗତରେ ଦେଖିବାକୁ ଗଲେ ପ୍ରତ୍ୟେକ ପୁରୁଷ ଓ ସ୍ତ୍ରୀର ସମାନସଂଖ୍ୟକ ହାତ, ଗୋଡ଼, ମୁଣ୍ଡ, ଆଖି, କାନ ଓ ନାକ ଅଛି । ମାତ୍ର କୌଣସି ପୁରୁଷର ମୁହଁ ଅନ୍ୟ କୌଣସି ପୁରୁଷ ଓ କୌଣସି ସ୍ତ୍ରୀର ମୁହଁ ଅନ୍ୟ କୌଣସି

ସ୍ତ୍ରୀର ମୁହଁ ସଙ୍ଗରେ ସମାନ ନୁହେଁ । ପଶୁମାନଙ୍କ ମଧ୍ୟରେ ସୁଦ୍ଧା ଏହି ନିୟମ ଦେଖାଯାଏ । ଯୋଡ଼ିଏ ବଳଦ ମଧ୍ୟରେ ତୁଳନା କରି ଦେଖିଲେ ଉଭୟର ଗୋଡ଼, କାନ, ମୁଣ୍ଡ ଓ ଲାଙ୍ଗୁଳ ସଂଖ୍ୟା ସମାନ ଥିଲେ ହେଁ ତାହାର ଶରୀରର ବର୍ଣ୍ଣ ଧଳା ହୋଇଥିଲେ ତାହାର ବର୍ଣ୍ଣ କଳା ହୋଇଥିବ କିମ୍ବା ସେମାନଙ୍କ ମୁଖ ବା ଶୃଙ୍ଗର ଆକୃତିରେ ବୈଷମ୍ୟ ରହିଥିବ । ଜଡ଼ ଜଗତରେ ମଧ୍ୟ ସମତା ମଧ୍ୟରେ ସେହି ବୈଷମ୍ୟ । କୌଣସି ଯୋଡ଼ିଏ ଆମ୍ବ, ଲେମ୍ବୁ ବା ଅନ୍ୟ ବୃକ୍ଷର ଆକାର ସମାନ ନୁହେଁ । ତନ୍ମଧ୍ୟରୁ ଗୋଟିଏ ଉଚ୍ଚ ହୋଇଥିଲେ ଅନ୍ୟଟି ଉଚ୍ଚତାରେ ନ୍ୟୁନ ହୋଇଥିବ କିମ୍ବା କୌଣସି ବୃକ୍ଷ ସୁନ୍ଦର ଭାବରେ ପଲ୍ଲବିତ ହୋଇଥିଲେ ଅନ୍ୟଟି ସେପରି ହୋଇ ନଥିବ । ପର୍ବତ, ନଦୀ ପ୍ରଭୃତି ସବୁଠାରେ ସମତା ମଧ୍ୟରେ ଏପରି ବୈଷମ୍ୟ ଦେଖାଯାଏ । ଆମ୍ଭମାନଙ୍କର ଓଡ଼ିଆ ଭାଷା ଏ ନିୟମରୁ ବର୍ଜିତ ନୁହେଁ । ଏଥିରେ ମଧ୍ୟ ସମତା ମଧ୍ୟରେ ବୈଷମ୍ୟ ଅଛି ଏବଂ ଚିରଦିନ ରହିବ । କଟକ ଜିଲ୍ଲାରେ ଯେଉଁ ଫଳକୁ କଖାରୁ କହନ୍ତି, ବାଲେଶ୍ୱରରେ ତାହାର ନାମ ବୋଇତାଳୁ ଏବଂ ସମ୍ବଲପୁରରେ ତାହାର ନାମ ମାଖନ । କଟକରେ ଯାହାକୁ ପିଜୁଳି କହନ୍ତି, ବାଲେଶ୍ୱର ଓ ଭଦ୍ରଖରେ ତାହାର ନାମ ପେଡ଼ା ଏବଂ ସମ୍ବଲପୁରରେ ତାହାର ନାମ ମେଗୁଆ । କଟକରେ ଓ ପୁରୀରେ ଯାହା ଲୁଗା, ସମ୍ବଲପୁରରେ ତାହା ଧୋତି ଏବଂ ବ୍ରହ୍ମପୁରରେ ତାହା ପିନ୍ଧା । ବ୍ରହ୍ମପୁରରେ ଯାହାକୁ ଯୋଡ଼ା କହନ୍ତି, ସମ୍ବଲପୁରରେ ତାହାର ନାମ ଯଥା । ପୁରୀ ଜିଲ୍ଲାରେ ଯାହାର ନାମ ଅଟା ଅର୍ଥାତ୍ ଅଗ୍ନିସଞ୍ଚୟାର୍ଥ ପାଳନିର୍ମିତ ବରିଆ, ସମ୍ବଲପୁରରେ ତାହାର ନାମ ବେଣ୍ଡିଆ । କଟକ ଓ ପୁରୀ ଜିଲ୍ଲାରେ ସ୍ତ୍ରୀକୁ ମାଇପ କହନ୍ତି; କିନ୍ତୁ ସମ୍ବଲପୁରରେ ତାକୁ କହନ୍ତି ମାଇକିନା ଏବଂ ବାଲେଶ୍ୱରରେ ତାକୁ କହନ୍ତି ତିର୍ଲା ।

ଅତି ପ୍ରାଚୀନ କାଳରେ ଆମ୍ଭମାନଙ୍କର ଓଡ଼ିଆ ଭାଷା କି ଅବସ୍ଥାରେ ଥିଲା ଏବଂ କିପରି ତାହାର କ୍ରମପରିବର୍ତ୍ତନ ହୋଇ ବର୍ତ୍ତମାନ ଅବସ୍ଥାକୁ ଆସିଅଛି, ଏହା ଭାଷାତତ୍ତ୍ୱବିତ୍ ମାନଙ୍କୁ ଗୋଚର । ସେମାନେ ପୁରାତନ କବି ଓ ଲେଖକମାନଙ୍କର କବିତା ଅନୁଶୀଳନ କରି କିପରି ଭାବରେ ପରିବର୍ତ୍ତିତ ହୋଇଅଛି ସ୍ଥିରକରନ୍ତି । ଯେଉଁ ବ୍ୟକ୍ତି ଏସବୁ କବିତା ଓ ପ୍ରବନ୍ଧ ପଢ଼ିବାର ବା ଆଲୋଚନା କରିବାର ସୁବିଧା ପାଇ ନାହାନ୍ତି, ସେ ଏଥିର ସିଦ୍ଧାନ୍ତ କରିପାରିବା ଅସମ୍ଭବ । ଅତି ପୁରାତନ ସମୟକୁ ଛାଡ଼ିଦେଲେ ଅବଶିଷ୍ଟ ସମୟକୁ ତିନି ଭାଗରେ ବିଭକ୍ତ କରାହୋଇପାରେ, ଯଥା ଭଞ୍ଜୀୟ ଯୁଗ, ରାଧାନାଥୀ ଯୁଗ ଓ ଆଧୁନିକ ଯୁଗ । ଭଞ୍ଜୀୟ ଯୁଗର କାବ୍ୟକବିତାରେ ସାଧୁ ଶବ୍ଦ ବହୁପରିମାଣରେ ଏବଂ ଦେଶଜ ଶବ୍ଦ ଅଳ୍ପପରିମାଣରେ ଦେଖାଯାଏ । ସେ ସମୟରେ ଗଦ୍ୟର ପ୍ରଚଳନ ଥିଲା କି ନାହିଁ, ମୋତେ ଜଣାନାହିଁ । କାରଣ ମୁଁ ସେ ସମୟର ଗଦ୍ୟ କାବ୍ୟ ଦେଖିନାହିଁ । ରାଧାନାଥୀ ଯୁଗରେ କାବ୍ୟକବିତା ଓ ପ୍ରବନ୍ଧ ମଧ୍ୟରେ ଦେଶଜ ଶବ୍ଦ ଟିକିଏ ବେଶୀ ପରିମାଣରେ ବ୍ୟବହୃତ ହେଲା ଏବଂ ଏବେ ଏପରି ଶବ୍ଦ ଏତେ ବେଶୀ ବ୍ୟବହୃତ ହେଲାଣି ଯେ, କାଳକ୍ରମେ ଲିଖିତ ଓ କଥିତ ଭାଷା ମଧ୍ୟରେ ପ୍ରଭେଦ ରହିବାର ସମ୍ଭାବନା ଅତି ଅଳ୍ପ । ଏହା ହେବାଦ୍ୱାରା ଓଡ଼ିଆ

ଭାଷା ଉନ୍ନତି କି ଅବନତି ଦିଗକୁ ଗତି କରୁଅଛି, ଏ ସମ୍ବନ୍ଧରେ ନାନା ବ୍ୟକ୍ତିଙ୍କର ନାନା ମତ । କେତେକ ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କ ମତରେ ଏହା ଉନ୍ନତିର ସୋପାନ । ସେମାନଙ୍କର ଯୁକ୍ତି ଏହି ଯେ, ଦେଶଜ ଶବ୍ଦର ବହୁଳ ବ୍ୟବହାର ହେଲେ ସ୍ୱଳ୍ପ ଶିକ୍ଷିତ ଲୋକେ ପଦ୍ୟ ବା ଗଦ୍ୟର ଭାବ ସହଜରେ ବୁଝିପାରିବେ । ଅନ୍ୟ କେତେକ ବ୍ୟକ୍ତି କହନ୍ତି ଯେ, ଲେଖାଗୁଡ଼ିକ ସାଧାରଣ ଶିକ୍ଷିତ ଲୋକ ବୁଝିପାରିଲେ ତହିଁରେ ସାର୍ଥକତା ଲାଭ ହେଲା ସତ୍ୟ, ମାତ୍ର ମସ୍ତିଷ୍କ ଚାଳନା କରିବା ପାଇଁ ପାଠକମାନଙ୍କୁ ପ୍ରୟୋଜନ ପଡ଼ିଲା ନାହିଁ ଏବଂ ଲୋକମାନେ ବ୍ୟାକରଣ ନିୟମାନୁସାରେ ନୂତନ ଶବ୍ଦଗଠନ ଏବଂ ତହିଁର ପ୍ରୟୋଗ ନ କଲେ ଏକ ସମୟରେ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ସୀମାବଦ୍ଧ ହୋଇଯିବ । ଏହିପରି ବିଭିନ୍ନ ବ୍ୟକ୍ତିଙ୍କର ବିଭିନ୍ନ ମତ । ଏହି ଉଭୟ ମତରୁ କେଉଁଟା ପ୍ରକୃଷ୍ଟ, ତାହା ବିଜ୍ଞ ବ୍ୟକ୍ତିମାନଙ୍କର ବିଚାର୍ଯ୍ୟ । ମୁଁ କେବଳ ଏତିକି କହୁଅଛି ଯେ, ଯଦି କଟକ ଅଞ୍ଚଳର ଦେଶଜ ଶବ୍ଦ ଲିଖିତ ଭାଷାରେ ବ୍ୟବହାର କରାଯାଇପାରେ, ତେବେ ସମ୍ବଲପୁର ଅଞ୍ଚଳର ଏପରି ଶବ୍ଦ ମଧ ବ୍ୟବହାର କଲେ କ୍ଷତି କଅଣ ? କେହି କହିପାରନ୍ତି, ସମ୍ବଲପୁର ଅଞ୍ଚଳର ଶବ୍ଦ କଟକ ଅଞ୍ଚଳର ଲୋକେ ବୁଝିପାରିବା ସମ୍ଭବ ନୁହେଁ । ଅତଏବ ଏହାର ବ୍ୟବହାର ଅନୁଚିତ । ଏହା ଅଯୌକ୍ତିକ ବୋଲି ମୁଁ ମନେ କରେ । ସମ୍ବଲପୁର ସହର ଓ କଟକ ସହର ମଧ୍ୟରେ ପ୍ରାୟ ୧୫୦ମାଇଲ୍ ବ୍ୟବଧାନ । ସାଧାରଣତଃ ପ୍ରତି ୨୦/୩୦ ମାଇଲରେ କଥିତ ଭାଷାରେ ପ୍ରଭେଦ ଦେଖାଯାଏ । ଏ ଅବସ୍ଥାରେ ସମ୍ବଲପୁର ଅଞ୍ଚଳର ସ୍ୱଳ୍ପ ଶିକ୍ଷିତ ଲୋକଙ୍କୁ ବାଦ୍‌ଦେଲେ ସୁଦ୍ଧା ଉଚ୍ଚଶିକ୍ଷିତ ଲୋକେ କଟକ ତରଫର ଭାଷା ସମ୍ପୂର୍ଣ୍ଣ ଭାବରେ ଜାଣିବା ପାଇଁ ଶହ ଶହ ବର୍ଷ ବିତିଯିବ ସିନା, ଆୟତ୍ତ କରିବା ସହଜ ହେବନାହିଁ, ଆଉ ସ୍ୱଳ୍ପ ଶିକ୍ଷିତ ଲୋକଙ୍କ ପକ୍ଷରେ ଏହା ତ ଅତି ଦୁରୂହ କଥା । ଅତଏବ ଓଡ଼ିଆ ଭାଷାର ଶ୍ରୀବୃଦ୍ଧିସାଧନ ପାଇଁ ପ୍ରାକୃତିକ ଓଡ଼ିଶାର ପ୍ରତି ଅଞ୍ଚଳର ଶବ୍ଦ ଲିଖିତ ଭାଷାରେ ବ୍ୟବହାର କରିବା ଶ୍ରେୟସ୍କର । କଟକ ଅଞ୍ଚଳରେ ପ୍ରଥମେ ଛାପାଖାନା ସ୍ଥାପିତ ହେଲା । ସେ ତରଫର ଶିକ୍ଷିତ ବ୍ୟକ୍ତି ପ୍ରଥମେ ପାଠ୍ୟପୁସ୍ତକ ଲେଖି ଛାପା କରାଇଲେ ଏବଂ ସେମାନେ ଯେଉଁସବୁ ଦେଶଜ ଶବ୍ଦ ପୁସ୍ତକମାନଙ୍କରେ ବ୍ୟବହାର କଲେ, ସମ୍ବଲପୁର ଅଞ୍ଚଳର ଲୋକେ ତହିଁର ଅର୍ଥ କ୍ରମେ କ୍ରମେ ଜାଣିପାରିଲେ । ଯେ କେତୋଟି ସାହିତ୍ୟିକ ପତ୍ରର ଗ୍ରାହକ ଓଡ଼ିଶାର ସବୁ ଅଞ୍ଚଳରେ ଅଛନ୍ତି, ସେ ସବୁ କଟକ ସହରରୁ ବାହାରେ । ଯଦି ସମ୍ବଲପୁର ଅଞ୍ଚଳର ଲୋକ ପାଠ୍ୟପୁସ୍ତକ ଲେଖନ୍ତେ, ତେବେ ତହିଁରେ ଏ ଅଞ୍ଚଳର ଦେଶଜ ଶବ୍ଦ ବ୍ୟବହାର କରାଯାଇପାରନ୍ତା ଏବଂ ସେସବୁ ଶବ୍ଦର ଅର୍ଥ ଜାଣିବା ପାଇଁ କଟକ ଅଞ୍ଚଳର ଲୋକଙ୍କୁ ସୁବିଧା ମିଳନ୍ତା । ମୁଁ ଯେତେଦୂର ଜାଣେ, ସମ୍ବଲପୁର ଜିଲାର କେବଳ ଶ୍ରୀଯୁକ୍ତ ଶିବପ୍ରସାଦ ଦାଶଙ୍କ ଇତିହାସ ପାଠ୍ୟପୁସ୍ତକ ସ୍ୱରୂପ ଚଳୁଅଛି । ଯଦି ପାଠ୍ୟପୁସ୍ତକ ଲେଖିବା ପାଇଁ ଏ ଅଞ୍ଚଳର ଲେଖକମାନଙ୍କର ଇଚ୍ଛାନାହିଁ, ତେବେ ମାସିକ ପତ୍ରିକାଖଣ୍ଡେ ବାହାର କରିବା ଉଚିତ ନୁହେଁ କି ? ଏପରି ପତ୍ରିକା ଖଣ୍ଡେ ବାହାରିଲେ ଏ ଅଞ୍ଚଳର ଲେଖକମାନଙ୍କର ଲେଖିବା ଶକ୍ତି ବଢ଼ନ୍ତା, ନୂତନ ଲେଖକମାନେ

ସୁବିଧା ଓ ଉତ୍ସାହ ପାଆନ୍ତେ, ଆଉ ପତ୍ରିକାପାଠ ପ୍ରତି ଲୋକଙ୍କର ମନ ଆକୃଷ୍ଟ ହୁଅନ୍ତା । ଭବିଷ୍ୟତରେ ଏ ଅଞ୍ଚଳର ଲେଖକ ଯଦି ପାଠ୍ୟପୁସ୍ତକ ଲେଖନ୍ତେ, ତେବେ ତହିଁରେ ପ୍ରୟୋଜନମତେ ଏ ଅଞ୍ଚଳର ଦେଶଜ ଶବ୍ଦ ବ୍ୟବହାର କଲେ କଟକ ଅଞ୍ଚଳବାସୀ ସେ ସବୁର ଅର୍ଥ କ୍ରମେ କ୍ରମେ ଜାଣିପାରନ୍ତେ । ଏହି ଦ୍ୱିବିଧ ଉପାୟ ମଧ୍ୟରୁ ଯଦି କୌଣସି ଉପାୟ ଏ ଅଞ୍ଚଳର ସଙ୍ଗତିସମ୍ପନ୍ନ ଓ ଶିକ୍ଷିତ ବ୍ୟକ୍ତି ଅବଲମ୍ବନ ନ କରିବେ, ତେବେ ଏ ତରଫର ଓଡ଼ିଆ ଶବ୍ଦ ଲିଖିତ ଭାଷାରେ ପ୍ରବେଶ କରିପାରିବ ନାହିଁ ଏବଂ ଭାଷାର ଅବୟବ ବୃଦ୍ଧି ହେବନାହିଁ । ପଣ୍ଡିତ ଶ୍ରୀ କୁଳମଣି ଦାଶ କାବ୍ୟତୀର୍ଥଙ୍କ ଦ୍ୱାରା ସଂଶୋଧିତ ଓ ସମ୍ମାର୍ଜିତ 'ଉତ୍କଳ ଅଭିଧାନ'ରେ ଓ ରାୟ ବାହାଦୂର ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ସାହିତ୍ୟଭୂଷଣଙ୍କ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ରେ ସମ୍ବଲପୁର ଅଞ୍ଚଳର ଅନେକ ଶବ୍ଦ ଦିଆଯାଇଥିଲେ ହେଁ ତନ୍ମଧ୍ୟରୁ କେତେକ ଶବ୍ଦର ପ୍ରୟୋଗ ଏ ଅଞ୍ଚଳବାସୀ ଛଡ଼ା ଅନ୍ୟାନ୍ୟ ଓଡ଼ିଆଭାଷୀ ଜାଣନ୍ତି କି ନାହିଁ ସନ୍ଦେହ । ଏଥିପାଇଁ ଏ ଅଞ୍ଚଳର ପୁସ୍ତକ ଓ ପତ୍ରିକା ଦରକାର ।

କାହାରି କାହାରି ମତ ଏହି ଯେ, ସମ୍ବଲପୁରୀ ଭାଷାକୁ କଟକ ଅଞ୍ଚଳବାସୀ ଘୃଣା କରନ୍ତି । ମୁଁ ମନେକରେ, ଏହା ସେମାନଙ୍କର ଭ୍ରାନ୍ତ ଧାରଣା । ପଣ୍ଡିତ ମହାଶୟ ଓ ରାୟବାହାଦୁର ପ୍ରହରାଜ ମହାଶୟ କଟକ ତରଫର ଅଧିବାସୀ ଏବଂ ଉଭୟେ ଓଡ଼ିଶା ପ୍ରଦେଶର ଲବ୍ଧପ୍ରତିଷ୍ଠ ଲେଖକ ଓ ଖ୍ୟାତନାମା ବ୍ୟକ୍ତି । ଯଦି ଏମାନେ ସମ୍ବଲପୁରୀ ଭାଷାକୁ ଘୃଣା କରନ୍ତେ, ତେବେ ଉପଯୁକ୍ତ ଅଭିଧାନମାନଙ୍କରେ ଏ ଅଞ୍ଚଳର ଶବ୍ଦ ଦିଅନ୍ତେ କାହିଁକି ? ମୋର ଅନୁମାନ ଏହି ଯେ, କଟକ ତରଫର ଲୋକ ସମ୍ବଲପୁର ଅଞ୍ଚଳର କେତେକ ଦେଶଜ ଶବ୍ଦ ଏବଂ ତହିଁର ପ୍ରୟୋଗ ଜାଣନ୍ତି ନାହିଁ । ତେଣୁ ସେମାନଙ୍କ ରଚିତ ପୁସ୍ତକ ଓ ସମ୍ପାଦିତ ପତ୍ରିକାରେ ଏ ଅଞ୍ଚଳର ଶବ୍ଦର ବ୍ୟବହାର ବିଷୟରେ ଏହି ଅନଭିଜ୍ଞତା ଅନ୍ତରାୟ ହେଉଅଛି । ଏପରି ଘଟିବା ସ୍ୱାଭାବିକ । ଶବ୍ଦ ଓ ତହିଁର ଯଥୋଚିତ ପ୍ରୟୋଗ ନ ଜାଣିଲେ ଲେଖକ ତାହା ବ୍ୟବହାର କରିପାରିବେ ନାହିଁ ଏବଂ ଯଦି ବ୍ୟବହାର କରନ୍ତି, ତେବେ ତାହା ନିର୍ଭୁଲ ହେବନାହିଁ । ସାଧୁ ଶବ୍ଦ ପରି କେତେକ ପ୍ରାଦେଶିକ ଶବ୍ଦର ମଧ୍ୟ ଏକାଧିକ ପ୍ରତିଶବ୍ଦ ଅଛି । ସାଧୁ ଶବ୍ଦଗୁଡ଼ିକ ଓ ତହିଁର ପ୍ରତିଶବ୍ଦ ଅଭିଧାନରେ ପ୍ରାୟ ମିଳେ; ମାତ୍ର ସମସ୍ତ ପ୍ରାଦେଶିକ ଓଡ଼ିଆ ଶବ୍ଦ ଅଭିଧାନମାନଙ୍କରେ ନାହିଁ । କାରଣ ଏ ପ୍ରକାର ଶବ୍ଦ ସମ୍ପୂର୍ଣ୍ଣଭାବରେ ସଙ୍କଳିତ ହୋଇପାରି ନାହିଁ । ତେଣୁ ଏମାନଙ୍କ ବ୍ୟବହାର ସବୁ ସ୍ଥଳରେ ନିର୍ଭୁଲ ହେବା ସମ୍ଭବପର ନୁହେଁ । ତଳଲିଖିତ କେତେକ ସମ୍ବଲପୁରୀ ଶବ୍ଦ ଏବଂ ତହିଁର ଏକାଧିକ ପ୍ରତିଶବ୍ଦ ପାଠକଲେ ସହଜରେ ଜଣାଯିବ ଯେ, ଏପରି ଶବ୍ଦ ଏ ଅଞ୍ଚଳବାସୀ ବ୍ୟତୀତ ଅନ୍ୟ କେହି ବ୍ୟବହାର କଲେ ଭୁଲ ହୋଇପାରେ କି ନାହିଁ ।

| ଶବ୍ଦ | ପ୍ରତିଶବ୍ଦ |
|---|---|
| ଗୁହି | ପତଙ୍ଗ ବିଶେଷ, ଦୋଷ |
| ଗିଲା | ଅତିଶୟ ସିକ୍ତ, ଓଦା |

| | |
|---|---|
| ଘୁଡୁକା | ବାଦ୍ୟଯନ୍ତ୍ର ବିଶେଷ, କ୍ରୋଧଯୁକ୍ତ କଥା |
| ଠୁକା | ମାଢ଼, ଗଞ୍ଜପା ରଖିବା କାଠ ବାକ୍ସ |
| ମଖନା | (ମନୁଷ୍ୟ ପକ୍ଷରେ) ନିଶାବିହୀନ, (ହାତୀ ପକ୍ଷରେ) ବାହାର ଦନ୍ତ ବିହୀନ |
| ଲେତି / ଲେନ୍ତି | ଗଛେ ପାଚିଲା ଆମ୍ବ, ଭଉଁରାର ଡୋର |

ଏ ଅଞ୍ଚଳରେ କେତେକ ଶବ୍ଦ ଅଛି, ଯାହା ଦେଶଜ ଶବ୍ଦ ବୋଲି ଅନେକେ ପୁସ୍ତକାଦିରେ ବ୍ୟବହାର କରିବାକୁ କୁଣ୍ଠିତ ହୁଅନ୍ତି । ପ୍ରକୃତରେ ସେଗୁଡ଼ିକ ଦେଶଜ ଶବ୍ଦ ନୁହେଁ । ସେସବୁ ସଂସ୍କୃତ ଶବ୍ଦରୁ ଜାତ । ନିମ୍ନଲିଖିତ କେତୋଟି ଶବ୍ଦ ଏଥିରେ ଦୃଷ୍ଟାନ୍ତ ।

| ସମ୍ବଲପୁର ଅଞ୍ଚଳର | ସଂସ୍କୃତ | ଅର୍ଥ |
|---|---|---|
| ଭୁତି | ଭୃତି | ମଜୁରୀ |
| ଏଷୁ | ଐଷମ | ଏ ବର୍ଷ |
| ଝଟ | ଝଟିତି | ଶୀଘ୍ର |
| ପର୍ହୁ | ପରୁତ୍ | ଗତବର୍ଷ |
| ପରିହାରି | ପରାରି | ଗତବର୍ଷର ପୂର୍ବବର୍ଷ |
| ରଙ୍ଗିବା | ରିଙ୍ଗଣ | ଗୁରୁଣ୍ଡିବା |
| ଉଲ୍ଲୁନା | ଉଲ୍ଲୁନ | ଛାତରେ ବର୍ଦ୍ଧିତ ଶେଷ ଅଂଶ |
| ଗୁଦି | ଗୋର୍ଦ୍ଦ | ମସ୍ତିଷ୍କ |
| କିନ୍ଦ୍ରିବା | କେନ୍ଦ୍ର | ନିର୍ଦ୍ଦିଷ୍ଟ ସ୍ଥାନ ଚାରିଆଡ଼େ ବୁଲିବା |
| ରିଷ / ରିଷା | ରୋଷ | କ୍ରୋଧ |
| ଲେଶୁନ୍ | ଲଶୁନ | ରସୁଣ |
| କୁଡ଼ | କୁଡ୍ୟ | ଝାଟିକାନ୍ଥ |



## ୫୩

# ଓଡ଼ିଆ ଭାଷାର କ୍ରମବିକାଶ

### ମଧୁସୂଦନ ଦାଶ

ପ୍ରବନ୍ଧର ନାମକରଣରୁ ଆପଣମାନେ ମନେ କରିଥିବେ ଯେ ଓଡ଼ିଆ ଭାଷା କେବେ ସୃଷ୍ଟି ହେଲା ଏବଂ ତାହା କ୍ରମେ କ୍ରମେ କିପରି ବିକାଶପ୍ରାପ୍ତ ହୋଇଅଛି, ଏହା ମୁଁ ଏହି ପ୍ରବନ୍ଧରେ ଉତ୍ତମରୂପେ ଆଲୋଚନା କରିବି । ପ୍ରକୃତରେ ମୋ ଭଳି ଲୋକଠାରୁ ଯେବେ ଆପଣମାନେ ଏପରି ଆଶା କରିଥାନ୍ତି ତେବେ ନିଶ୍ଚୟ ନିରାଶ ହେବେ । ବଙ୍ଗଳାର ଏସିଆଟିକ୍ ସୋସାଇଟୀ ଜର୍ଣ୍ଣାଲର ଏକ ସଂଖ୍ୟା ପଢ଼ୁ ପଢ଼ୁ ତହିଁରେ ଶ୍ରୀଯୁକ୍ତ ବାବୁ ମନମୋହନ ଚକ୍ରବର୍ତ୍ତୀ ଏମ୍.ଏ.ଙ୍କ ଦ୍ୱାରା ପ୍ରକାଶିତ ଦୁଇଖଣ୍ଡ ତମ୍ବାପଟା ସନନ୍ଦର ପ୍ରତିଲିପି ମୋହର ଚକ୍ଷୁଗୋଚର ହେଲା । ତାହାର ଭାଷା ସଂସ୍କୃତ ହେଲେ ହେଁ ଶେଷଭାଗରେ ଅଳ୍ପ ଓଡ଼ିଆ ଅଛି । ସେ ଦୁଇ ଖଣ୍ଡି ମଧ୍ୟରୁ ଖଣ୍ଡିକରେ ୧୩୦୫ ଶକାବ୍ଦ ଶ୍ରୀ ନୃସିଂହଦେବଙ୍କ ୮ଅଙ୍କ ଚୈତ୍ର ଶୁକ୍ଳ ତ୍ରୟୋଦଶୀ ରବିବାର ଏହି ତାରିଖ ଦିଆଯାଇଛି ଏବଂ ଅନ୍ୟ ଖଣ୍ଡିକରେ ୧୩୧୬ ଶକାବ୍ଦ ଶ୍ରୀ ନୃସିଂହଦେବଙ୍କ (କେତେ ଅଙ୍କ ପଢ଼ି ହେଉନି) ବିଛା ଶୁକ୍ଳପକ୍ଷ ଏକାଦଶୀ ମଙ୍ଗଳବାର ଏହି ତାରିଖ ଦିଆଯାଇଅଛି । ଅଧ୍ୟାପକ ଜାକୋବିଙ୍କ ଗଣନାନୁସାରେ ପ୍ରଥମ ଖଣ୍ଡିକର ଇଂରେଜି ତାରିଖ ୬ମାର୍ଚ୍ଚ ୧୩୮୪ ଖ୍ରୀଷ୍ଟାବ୍ଦ ଏବଂ ଦ୍ୱିତୀୟ ଖଣ୍ଡିକର ୨୩ ନଭେମ୍ବର ୧୩୯୫ ଖ୍ରୀଷ୍ଟାବ୍ଦ ହେଉଅଛି । ଏହି ତାରିଖମାନ ଉପରୋକ୍ତ ବାବୁ ମହାଶୟ ମିଳାଇ ସ୍ଥିର କରିଅଛନ୍ତି । ମୁଁ ମଧ୍ୟ ଗଣନା କରି ଦେଖିଲି ଯେ ଏହା ଠିକ୍ ଅଛି । ବାବୁ ମହାଶୟ ପ୍ରଥମ ଖଣ୍ଡିକ ପୁରୀ ତ୍ରିମାଳୀ ଠାରୁ ଏବଂ ଦ୍ୱିତୀୟ ଖଣ୍ଡିକ ପୁରୀ ଶଙ୍କରାନନ୍ଦ ମଠରୁ ପାଇଥିବାର ଲେଖିଅଛନ୍ତି । ଉପରୋକ୍ତ ପ୍ରତିଲିପିର ଓଡ଼ିଆ ଭାଷାଂଶ ପାଠ କରି ମୋହର ଏହି ପ୍ରବନ୍ଧଟି ଲେଖିବାକୁ ଇଚ୍ଛାହେଲା, ମାତ୍ର ପ୍ରବନ୍ଧଟିକୁ ପୂର୍ଣ୍ଣାଙ୍ଗ ହେବା ନିମନ୍ତେ ଯେଉଁ ସମସ୍ତ ଉପକରଣ ଏବଂ ଗବେଷଣା ଆବଶ୍ୟକ ତାହା ମୋହର ନାହିଁ, ଥିଲେ ସୁଦ୍ଧା ଯେ କେତେ ପରିମାଣରେ କୃତକାର୍ଯ୍ୟ ହୁଅନ୍ତି ତାହା କହିପାରୁ ନାହିଁ । ଯାହା ହେଉ ଉପକ୍ରମଣିକାରେ ଅଧିକ କାଳ ବିଳମ୍ବ ନ କରି ପ୍ରକୃତ କାର୍ଯ୍ୟରେ ଅଗ୍ରସର ହେଉଅଛି, ଆଶାକରେ ଆପଣମାନେ ସ୍ୱଗୁଣରେ କ୍ଷମା ଦେବେ ।...

ଏଥିରୁ ଦେଖାଯିବ ଯେ ଆଜିଠାରୁ ୫୦୦ ବର୍ଷପୂର୍ବରେ ପ୍ରଚଳିତ ଓଡ଼ିଆ ଭାଷା ଆଧୁନିକ ଓଡ଼ିଆ ଭାଷାଠାରୁ ଅତି ଅଧିକ ପରିମାଣରେ ବିଭିନ୍ନ ନୁହେଁ । ସେ କାଳରେ ପ୍ରଚଳିତ ଦଣ୍ଡା, ଘାଠ, ବନ୍ଧ, ତଡ଼, ଖମ୍ବା, ତୋଟା, ସ୍ରାହି, ତିମୁଣ୍ଡି, ଦେଉଳ, ପଡ଼ିଆ, ମାଢ଼ ପ୍ରଭୃତି ଶବ୍ଦ ଅଦ୍ୟାବଧି ଅବିକୃତ ଅବସ୍ଥାରେ ଅଛି । ଅବଶ୍ୟ କେତେଗୁଡ଼ିଏ ଶବ୍ଦ ଆଜିକାଲି ବୁଝି ହେଉନାହିଁ, ମାତ୍ର ସେମାନଙ୍କ ସଂଖ୍ୟା ଅତ୍ୟଧିକ ନୁହେଁ; ଯଥା- ବିଣ୍ଟକଇ, ଭାବେଦସମୟ, ବାଙ୍କିଆଏ, ଗଂସବନ୍ଧା, କିତ, ଅବଦାନ, ଅନାଇବୃକ୍ଷ, ମୁଦଳ କିଛ ଇତ୍ୟାଦି । ଷଷ୍ଠୀ ବିଭକ୍ତିର ଛାଡ଼ି ଅନ୍ୟାନ୍ୟ ବିଭକ୍ତିର ଚିହ୍ନଗୁଡ଼ିକ ଊଣା ଅଧିକରେ ବଦଳି ଯାଇଅଛି; ଯଥା, ନରହରି ଦାସ ପ୍ରହରାଜ କଇକେ = ନରହରି ଦାସ ପ୍ରହରାଜଙ୍କୁ, ମୁଦଳେନ = ମୁଦଳେନ = ମୁଦଳଦ୍ୱାରା, ଅର୍ଦ୍ଧ ଆଦି କରି = ଅର୍ଦ୍ଧଠାରୁ, ବାଙ୍କିଆଏ ବାଙ୍କିଆରେ ଇତ୍ୟାଦି । ଉଲ୍ଲିଖିତ ପଟା ଦୁଇ ଖଣ୍ଡିରେ କ୍ରିୟା ସଂଖ୍ୟା ଅତି ଅଳ୍ପ ଏବଂ ସେଗୁଡ଼ିକ ଆଧୁନିକ ଅବୟବ ପ୍ରାପ୍ତ ହୋଇନାହିଁ । କେତେଗୁଡ଼ିଏ ଶବ୍ଦ କାଳକ୍ରମେ ରୂପାନ୍ତରିତ ହୋଇଅଛି; ଯଥା, ବିଷୟ = ବିସି, ରାଡ଼ସଓ = ରାଡ଼ସ, ଆଉ=ଥାଇ, ବାରଗୋ = ବେରବୋଳ, ସୀନଃ = ସୁନା, ଦ୍ୱିଜଳ = ଜାଉଳ ପୋଖରି । ରାଜକର୍ମଚାରୀମାନଙ୍କର ପଦବୀଗୁଡ଼ିକ ଅଧୁନା ପ୍ରାୟ ଲୁପ୍ତ ହୋଇଅଛି; ଯଥା, ବୁଢ଼ାଲେଙ୍କା, ଭଣ୍ଡାରିଆର ପୁରଶ୍ରୀକରଣ, ପୁର ପରୀକ୍ଷା, ଦ୍ୱାରପରୀକ୍ଷା, ମୁଦଲ, ସାନ୍ଧିବିଗ୍ରହିକ ଇତ୍ୟାଦି । ଅନେକ ସଂସ୍କୃତ ଶବ୍ଦ ଅବିକୃତ ଅବସ୍ଥାରେ ରହିଅଛି । ବିଶେଷରେ ଦ୍ରଷ୍ଟବ୍ୟ ବିଷୟ ଏହି ଯେ ସେ କାଳରେ ଦଲୀଲ ଲେଖିବାର ପ୍ରଣାଳୀ ଏବଂ ଭାଷା ଆଜି ପର୍ଯ୍ୟନ୍ତ ପ୍ରାୟ ଅପରିବର୍ତ୍ତିତ ଭାବରେ ରହିଅଛି ।...

ନିମ୍ନରେ କପିଳେଶ୍ୱର ଦେବଙ୍କ ରାଜତ୍ୱକାଳରେ ଖୋଦିତ ୫ଗୋଟି ପ୍ରସ୍ତରୋତ୍କୀର୍ଣ୍ଣ ଲିପିମାଳା ଉଦ୍ଧୃତ କରାଗଲା । ଏହା ପୁରୀ ବଡ଼ଦେଉଳର ଜୟବିଜୟ ଦ୍ୱାରରେ ଉତ୍କୀର୍ଣ୍ଣ ହୋଇ ଅଦ୍ୟାବଧି ବିରାଜିତ ଅଛି । ସ୍ୱର୍ଗୀୟ ରାଜା ରାଜେନ୍ଦ୍ରଲାଲ ମିତ୍ର ମହୋଦୟ ତାହାଙ୍କର Antiquities of Orissa ନାମକ ପୁସ୍ତକରେ ଏଗୁଡ଼ିକର ଉଦ୍ଧାର କରିଅଛନ୍ତି । ମାତ୍ର ନିମ୍ନପ୍ରଦତ୍ତ ଲିପିଗୁଡ଼ିକ ତହିଁରୁ କିଞ୍ଚିତ୍ ବିଭିନ୍ନ ଏବଂ ଅତ୍ୟନ୍ତ ସାବଧାନତା ସହିତ ଉଦ୍ଧୃତ କରାଯାଇଅଛି । ଆଧୁନିକ ଓଡ଼ିଆ ଅକ୍ଷରଠାରୁ ଏଗୁଡ଼ିକର ଅକ୍ଷର କୌଣସି ଅଂଶରେ ବିଭିନ୍ନ ନୁହେ । କେବଳ ଚ, ଜ, ର, ଳ, ଏହି କେତୋଟି ଅକ୍ଷରରେ କିଞ୍ଚିତ୍ ବିଭିନ୍ନତା ପରିଦୃଷ୍ଟ ହୁଏ । ପ୍ରତ୍ୟେକ ଉଦ୍ଧୃତ ଲିପିମାଳାର ନିମ୍ନଭାଗରେ ଇଂରାଜୀ ସନ ଏବଂ ତାରିଖ ଦିଆଯାଇଅଛି । ଅଧ୍ୟାପକ ଜାକୋବିଙ୍କ ଗଣନାନୁସାରେ ଏଗୁଡ଼ିକର ଏବଂ ତତ୍ପରବର୍ତ୍ତୀ ଲିପିମାଳାମାନଙ୍କର କାଳ ଗଣନା କରାଯାଇଅଛି । ପ୍ରତ୍ୟେକ ଲିପିମାଳାରେ ତତ୍କାଳୀନ ଓଡ଼ିଶା ରାଜାଙ୍କର ଅଙ୍କ, ସୌରମାସ, ତିଥି ଓ ବାର ଦିଆଯାଇଅଛି ।...

ମାଗଧୀ ପ୍ରାକୃତର କ୍ରିୟାଗୁଡ଼ିକ ସହିତ ଓଡ଼ିଆ କ୍ରିୟାଗୁଡ଼ିକର କେତେ ପରିମାଣରେ ସାମଞ୍ଜସ୍ୟ ଅଛି ତାହା ନିମ୍ନଲିଖିତ ୫ଗୋଟି ଏବଂ ଅନ୍ୟାନ୍ୟ ଲିପିମାଳାରୁ ସ୍ପଷ୍ଟ ଉପଲବ୍ଧ

ହେବ । ମାଗଧୀ ପ୍ରାକୃତରେ ଅଛି, ହୋଇ, କରଇ, ବୋଲଇ, ବୁଜ୍‌ଝ, ପତନ, କିଣଇ ଜାଣ ପ୍ରଭୃତି କ୍ରିୟାଗୁଡ଼ିକ ଓଡ଼ିଆରେ କିପରି ଅବିକୃତ ଅବସ୍ଥାରେ ଅଛି ମନୋଯୋଗପୂର୍ବକ ଦେଖିବାକୁ ହେବ ।

"ବୀରଶ୍ରୀପ୍ରତାପ କପିଳେଶ୍ୱର ଦେବ ମହାରାଜାଙ୍କର ବିଜୟ ରାଜ୍ୟେ ସମସ୍ତ ୪ଅଙ୍କ ଶ୍ରାହୀ ଧନୁ ଅମାବୈ ସୌରିବାରେ ଶ୍ରୀ ପୁରୁଷୋତ୍ତମ କଟକେ ପରମେଶ୍ୱରଙ୍କ ଦର୍ଶନ ସମୟେ ମହାପାତ୍ର କକାଇ ସାନ୍ତରା ମହାପାତ୍ର ଇଳସର ସେନ ନରେନ୍ଦ୍ର ମହାପାତ୍ର ଗୋପୀନାଥ ମଙ୍ଗରାଜ କାଶୀ ବିଦ୍ୟାଧର ମହାପାତ୍ର ବେଲେଶ୍ୱର ପ୍ରହରାଜ ମହାପାତ୍ର ଲଖନ ପୁରୋହିତ ପଟନାୟକ ଦାମୋଦର ମହାସେନାପତି ଥାଇ ପରମେଶ୍ୱରଙ୍କ ଶ୍ରୀଚରଣ ଅଗ୍ରତେ ଭୋଗ ପରୀକ୍ଷା ପାତ୍ର ଅଗ୍ନିସର୍ମା ମୁଦ୍ରହସ୍ତର ଗୋଚରେ ବୋଇଲା ମୂଦଳେ ଶ୍ରୀ ପୁରୁଷୋତ୍ତମ ଦେବଙ୍କ ଦେଉଳଦ୍ୱାରେ ଲେଖନ କରିବା ଆମ୍ଭର ଓଡ଼ିସା ରାଜ୍ୟର ଲୋଣ କଉଡ଼ି ମୁଳକର ନ୍ୟାଯ୍ୟ ଛାଡ଼ିଲି ଛାଡ଼ିଲି ଏହା ରାଜା ହୋଇ ଯେ ଲଘଇ ସେ ଜଗନ୍ନାଥ ଦେବଙ୍କୁ ଦ୍ରୋହ କରଇ ।"

(୯ତାରିଖ ଡିସେମ୍ବର ୧୪୩୬ ଖ୍ରୀଷ୍ଟାବ୍ଦ)

"ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ପ୍ରତାପ କପିଳେଶ୍ୱର ଦେ ମହାରାଜାଙ୍କର ବିଜେରାଜ୍ୟେ ସସ୍ତ ୧୯ଙ୍କ ଶ୍ରାହୀ ସେସ ଅମାବୈ ରବିବାରେ ମଳିକା ପରିସା ଦିଗ ବିଜେ କରି ବାହୁଡ଼ା ବଟକାଇ ଶ୍ରୀ ପୁରୁଷୋତ୍ତମ କଟକେ ବୀର ମୋନଇ ବିଜେ ସମଏ ଶ୍ରୀଚରଣ ଅଗ୍ରତେ କୋଠଘର ସାନ୍ତରା ପରିକ୍ଷ ମହାପାତ୍ର ରଘୁଦେଓ ନରିନ୍ଦ୍ର ଜନାଇଁ ଛାଡ଼ କରାଇଲାକୁ ଅଲଗ ହୋଇଲା ଶ୍ରୀ ପୁରୁଷୋତ୍ତମର ପୁଣ୍ଡରିକ୍ଷ ଗୋପସାଢ଼ୀ ଦେଲି ଏଥକୁ ଯେ ଅବା ଲଘଇ ସେ ଜଗନ୍ନାଥ ଦେବଙ୍କୁ ଦ୍ରୋହ କରଇ ଏ ମୁଦଲେ କେଳାଇ ଖୁଣ୍ଟିଆ ଲିହାଇଲା ।"

(୧୨ ତାରିଖ ଅପ୍ରେଲ ୧୪୫୦ ଖ୍ରୀଷ୍ଟାବ୍ଦ)

"ବୀର ଶ୍ରୀ ଗଜପ୍ତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଲବରଗେଶ୍ୱର ପ୍ରତାପ କପିଳେଶ୍ୱର ଦେବ ମହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୩୧ ଅଙ୍କ ଶ୍ରାହୀ କକଡ଼ା ସୁ ୧୨ଗୁବାରେ ଶ୍ରୀପୁରୁଷୋତ୍ତମ କଟକେ ଦଖୀନ ଘରେ ମାଜଣାମଣ୍ଡପେ ବିଜେ ସ୍ଥଏ ଅବଧାରିତ ଆଗ୍ୟା ବୋଇଲା ମୂଦଳେ ଶ୍ରୀଜଗନାଥ ମୋହ ବାହିଜ ଅଭ୍ୟନ୍ତର ସମସ୍ତ ତ ତୁ ଜାନୁ ମୋହର ଯେତେ ରତନ ପଦାର୍ଥଅ ଅଛି ସେ ତୋହର ଏହା ଉ ଆବର ଆନ ଧନ ଜିସ ଅଛି ମୁଁଇ ବ୍ରାହ୍ମଣ ହାଥରେ ତାହା ଯେତେ ଦେଇ ପାରଇ ତାହା ଦେବି ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରୁ ମୋହର ସେ ବେ ପଂବେ ।"

(୧୨ ତାରିଖ ଯୁଲାଇ ୧୪୫୯ ଖ୍ରୀଷ୍ଟାବ୍ଦ)

"ବୀର ଶ୍ରୀ ଗଜପ୍ତି ଗଉଡ଼େସର ପ୍ରତାପ କପିଳେସର ଦେବ ମହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୩୫ ଶ୍ରାହୀ ମେସ କୃ ୪ ବୁଧବାରେ ଭୋ ଜଗନାଥ ତୋହ ସେବକ ଏମତ ଜନାଉ ଅଛି । ରାଜଇକେ ଜାକେ ଏ ସାଆନ୍ତମାନଙ୍କ । ମୁଁଇ ପାଉଛ ରାଉତଙ୍କ କରି

...ବାଳକାଲୁ ପୋସି ଆନିଲି ଏମାନେ ମୋତେ ସବୁହେଂ ଛାଡ଼ିଲେ ଏମାନଙ୍କୁ ମୁଇଁ ଯେ ଯାହା ଅନୁରୂପେ ବିହିବି ନିଯୋଗିବି ବି ଭୋ ଜଗନ୍ନାଥ ଏ କଥା ମୋହର ଦୋଷ ଅଦୋଷ ବିଚାର ।"

(୨୫ ତାରିଖ ଅପ୍ରେଲ, ୧୪୬୪ ଖ୍ରୀଷ୍ଟାବ୍ଦ)

"ଶ୍ରୀ ବୀର ପ୍ରତାପ କପିଳେସର ନବକୋଟୀକର୍ଣାଟ କଳବରଗେଶ୍ୱର ଗଜପ୍ତି ଗୌଡ଼େଶ୍ୱର ଦେବ ମାହାରାଜାଙ୍କ ବିଟେ ରାଇକେ ସମସ୍ତ ୪୧ ଶ୍ରାହୀ ଧନୁ ସୁକଳ ସପ୍ତମି ରବୀବାରେ ଶ୍ରୀପୁରୁଷୋତ୍ମ ଜଗନ୍ନାଥଦେବଙ୍କ ପଦ୍ମପାଦକୁ ଭକ୍ତୀ ନିମିତ୍ୟେ କପିଳେଶ୍ୱର ରଜାଏ କରିଦିଲେ ରତ୍ନ ତୋଡରମାନ ଶ୍ରୀଭୁଜର ରତ୍ନ ଶଂଖ ଚକ୍ର ଦୁଇ ପ୍ରମେଶ୍ୱରଙ୍କ ମନହିଂକି ସୁନା ଯୋଗାଡ଼ ଏମାନ ଆନି ପ୍ରବେସ କଲେ ହାସିକ ମାହାପାତ୍ର ଜମସର ମାହାପାତ୍ର ବିଶ୍ୱେଶ୍ୱର ମାହାପାତ୍ର କରମୁ ମାହାପାତ୍ରଙ୍କ ଅଧିକାରେ ମ୍ୟଜଣାମଣ୍ଡପେ ଚଉଦଦଶତ ପ୍ରକରଣ ଭୋଗରାଗର ସମସ୍ତନ୍ତୀ ଥାଇ ଦେଲ । ପ୍ରମାଣେ ଲାଗି କରାଇଲେ ରତ୍ନ ମକୁଟ ୮ କାଣପୁଲ ଜୋଡ଼ାନ୍ତୁଗଲ ୪ ନୋଡ ନିସକା କରିଯୋଡ଼ା ୮୪ ହୀରାମାଣିକ ବିଚିତ୍ର ମାଳ ମାନ ନାନା ନାଏକ ମୁଦି ୧୨ ମୁକୁତା ଯାଉଳି ୮ ମୁକୁତା ବଡ଼ କଣ୍ଠିମାଳ ୪ ମାଣିକସୁତାମା ୮ ମରକତ ଢାଉଳି ୮ ମରକତ ମୁକୁତା ମା ୫ ନାନାରତ୍ନ କ୍ରପଦ୍ରକ ୪ ମରକ୍ର । ତିସରସରେ ମାଣିକସୁଆ ପଦସରି ୪ ମୁକୁତା ତୀସର ୩ ଉତୁରୀ ୨ ଏକାରତ୍ନହାରେ ୧ ମୁକୁତା ତୋଡର ୨ ପାଦପଲବ ୨ ନାନା ନାଏକ ବାହୁଟୀ ଜୋଡା ୧୨ ହିରାମାଣିକିବଳା ଜୋ ୨ ଢାଳିତୋଡ଼ର ୨ ।

ନାନା ପରତାଡ଼ ଯୋଡ଼ା ୧ ପାହୁଡ଼ ୪ ମୁକୁତା କଙ୍କନ ପଟ ୭ ଅନ୍ତପୁର କବଇ କଟୀମେଖଳା କନକଝଲାଇ ମାଳ ୫ ସୁନା ଯୋଗିବ୍ର ୧ ନାନା ପଦାର୍ଥ ଶଙ୍ଖ ଚକ୍ର ରତ୍ନ ମାଢ଼ ୧୯୨ ସୁନା*** ଗୋଟିଏ ଶ୍ରୀକପିଳେଶ୍ୱର ରଜାଏ ଏହା ଜଗନ୍ନାଥ ମହାପ୍ରୁଭୁଙ୍କୁ ଦିଲି ଏହା ନେମା ବୋଲି ଯେ ମନରେ ଧରଇ ସେ ଶ୍ରୀ ଜଗନ୍ନାଥଙ୍କୁ ଦ୍ରୋହ କରଇ ।"

(୧୪ ତାରିଖ ଡିସେମ୍ବର, ୧୪୬୬ ଖ୍ରୀଷ୍ଟାବ୍ଦ)

ଉଦ୍ଧୃତ ଲିପିମାଳାରେ ଭାଷାର ରୀତିରେ (idiom) କେତେକ ବିଶେଷତ୍ୱ ଅଛି, ଯଥା, 'ବାହୁଡ଼ା କଟକାଇ'=କଟକକୁ ବାହୁଡ଼ିବା (ଫେରି ଆସିବା) ବେଳେ, "ବୀରମୋନୋଇ-ବିଜେ ସମୟେ"=ରାଜାଙ୍କର ଭୋଜନ କରିବାକୁ ଯିବାବେଳେ, 'ଲୋଣ କଉଡୀ ମୁଳକର ନ୍ୟାଯ୍ୟ'=ନ୍ୟାୟତଃ ରାଜପ୍ରାପ୍ୟ ଲୁଣକର, 'ଲିହାଇଲା'=ଲେଖିଲା, 'ଲେଖନ କରିବା'-ଲେଖ 'ଛାଡ଼ କରାଇଲାକୁ'=ରାଜାଙ୍କୁ ହୁକୁମ ଦେବା ନିମନ୍ତେ ପ୍ରାର୍ଥନା କରିବାରୁ, ଇତ୍ୟାଦି । ଏଥିରୁ ସେ ସମୟର ଭାଷାର ବଳ ଅନୁମିତ ହୋଇପାରେ । ମାନ୍ୟାର୍ଥ ପ୍ରକାଶକ 'ଆମ୍ଭେ' ଶବ୍ଦ ଏବଂ ତାହାର ଉପଯୁକ୍ତ କ୍ରିୟା ସୃଷ୍ଟି ହୋଇନଥିଲା । 'ଓ' ପରିବର୍ତ୍ତରେ 'ଉ'ର ବ୍ୟବହାର ଥିଲା । 'ଆବର' ଶବ୍ଦ 'ଅନ୍ୟାନ୍ୟ' ଏହି ଅର୍ଥରେ ବ୍ୟବହୃତ ହେଉଥିଲା । 'ଯାହା' ସ୍ଥାନରେ 'ଯିସ', 'ମୁଁ' ସ୍ଥାନରେ 'ମୁଇଁ' ବ୍ୟବହୃତ ହେଉଥିଲା । 'ଏହା' ପରିବର୍ତ୍ତରେ 'ଏ' ଓ

'ସମସ୍ତଙ୍କୁ' ପରିବର୍ତ୍ତରେ 'ସମସ୍ତନ୍ତି'ର ବ୍ୟବହାର ପ୍ରତି ଦୃଷ୍ଟି ଆକୃଷ୍ଟ ହେବା ଆବଶ୍ୟକ । 'ଯୋଡ଼ା-ତୁଙ୍ଗଳ' 'ଯୋଗିବ୍ର' 'କାନ୍ତିପୟରକର' 'ତୋଡ୍ରର' ପ୍ରଭୃତି କି ପ୍ରକାର ଅଳଙ୍କାର ଅଧୁନା ବୁଝି ହେଉନାହିଁ । କେତେଗୁଡ଼ିଏ ଅଳଙ୍କାରର ନାମ ଆଜି ପର୍ଯ୍ୟନ୍ତ ଅପରିବର୍ତ୍ତିତ ଅବସ୍ଥାରେ ଅଛି । ଯାଉଳିନୋଳି, କାନଫୁଲ, ପାହୁଡ଼, ବାହୁଟି ପ୍ରଭୃତି ଅଳଙ୍କାର ଆଜିକାଲି ପରି ସେକାଳରେ ମଧ୍ୟ ବ୍ୟବହୃତ ହେଉଥିଲା । ସ୍ଥୂଳତଃ ଅତିଅଳ୍ପ ପରିବର୍ତ୍ତନ ଭିନ୍ନ ସେକାଳର ଓଡ଼ିଆ ଭାଷା ଆଧୁନିକ ଓଡ଼ିଆ ଭାଷା ପରି ।

ଏ ସମୟରେ ସାହିତ୍ୟିକ ଓଡ଼ିଆ ଭାଷା କିପରି ଥିଲା ଦେଖାଯାଉ । ଶୂଦ୍ରମୁନି ସାରଳାଦାସ ଯେ ଏହି ସମୟର କବି, ବର୍ତ୍ତମାନ ଏହା ସମସ୍ତେ ସ୍ୱୀକାର କରନ୍ତି । ତାହାଙ୍କ ରଚିତ ମହାଭାରତର ଆଦିପର୍ବରେ ନୀଳାଚଳ ବର୍ଣ୍ଣନାରେ ଲେଖାଅଛି-

"ପ୍ରଣପତ୍ୟେ ଖଟଇ କପିଳେଶ୍ୱର ମହାରାଜା
ତେତିଶ କୋଟି ଦେବତା ଚରଣେ ଯା ପୂଜା"

ପ୍ରକୃତରେ ତାହାଙ୍କର ଓଜସ୍ୱିନୀ ଭାଷା, ନିସର୍ଗ ସୁନ୍ଦର ପଦବିନ୍ୟାସ, ବର୍ତ୍ତମାନ ଅପ୍ରଚଳିତ କିନ୍ତୁ ତତ୍କାଳରେ ପ୍ରଚଳିତ ଉପର୍ଯ୍ୟୁକ୍ତ ଶବ୍ଦମାନଙ୍କର ବ୍ୟବହାର ଏହି ସମୟକୁ ହିଁ ସୂଚନା କରୁଅଛି ।...

ଶୂଦ୍ରମୁନିଙ୍କ ମହାଭାରତରେ ବର୍ତ୍ତମାନ ଅପ୍ରଚଳିତ ନିମ୍ନଲିଖିତ ଓଡ଼ିଆ ଶବ୍ଦମାନ ମିଳେ,- ବସ୍ତାନ୍ତ (ବସ୍ତସମୂହ), ସବୁନ୍ତି (ସମସ୍ତଙ୍କୁ), ମାହାନ୍ତ (ସେମାନଙ୍କୁ), ପୁତ୍ରକଇ (ପୁତ୍ରକୁ), ପୁତ୍ରନ୍ତ (ପୁତ୍ରମାନଙ୍କୁ), ତୁକୁ (ତତେ), ମୁକୁ (ମତେ), ବୋଲନ୍ତ ଜନ (ବୋଲିବା ଜନ), ପଢ଼ିଲା ଜ୍ଞାନ (ପଢ଼ିଥିବା ଲୋକର ଜ୍ଞାନ), ଜିଣିଲାକୁ (ଜିଣିବାକୁ), ଥିଲାକୁ (ଥିବାରୁ) ତୋତହିଁକି (ତୋଠାରୁ), ଯେସନକ (ଯେପରି) ଯୋଗେଣ (ହେତୁରୁ), ହୁଅସି (ହୁଅ), କହସି (କହ), ବଦତି (କହଇ), ଅରଜିଲାଅଛଇ (ଅର୍ଜିଅଛି), ସମ୍ପ୍ରତେ (ପ୍ରତ୍ୟୟକୁ) ନବତନ (ନୂତନ) ଓ ଉଛୁଡ଼ି (ଛଡ଼ାଇ) ଇତ୍ୟାଦି । ସଂସ୍କୃତ ଶବ୍ଦମାନଙ୍କର ମଧ୍ୟ ଅଭାବ ନାହିଁ । ଯଥା- ଭିକ୍ଷାଶୀବ୍ରାହ୍ମଣ, ଚରଣବିଘାରେ, ଦାସକୃତ ଅପରାଧ, ଶତ୍ରୁମର୍ଦ୍ଦନବାନା, ଧବଳରୁଚିବପୁଃ, ମମହୃଦେ, ବସ୍ତତରପ୍ରଦାନ, ଦ୍ରୋଣଦେୟ, ପ୍ରୟାଣ, ଆହ୍ନିକ, ବୁଭୁକ୍ଷିତ, ଯୋଗୀଜନଚିନ୍ତାମଣି ଇତ୍ୟାଦି ।

ଶୂଦ୍ରମୁନିଙ୍କ ବର୍ଣ୍ଣନା ସ୍ୱାଭାବିକ ଏବଂ ଆଡ଼ମ୍ବର ଶୂନ୍ୟ । ଉଦ୍ଧୃତ ହୋଇଥିବା ଲିପିଚୟରେ ଏହି ସ୍ୱାଭାବିକତା ଏବଂ ଆଡ଼ମ୍ବର ଶୂନ୍ୟତା ସ୍ପଷ୍ଟତଃ ଲକ୍ଷିତ ହୁଏ । ଅନେକ ସ୍ଥଳରେ କବିଙ୍କର ଉପମାଗୁଡ଼ିକ ଅତି ସାମାନ୍ୟ ପଦାର୍ଥରୁ ଗୃହୀତ ହୋଇଅଛି । ସରଳତା ସାରଳାଦାସଙ୍କ କବିତାର ପ୍ରଧାନ ଲକ୍ଷଣ । ନିମ୍ନରେ କତିପୟ ପଙ୍କ୍ତିମାତ୍ର ଦ୍ରୌପଦୀଙ୍କ ବର୍ଣ୍ଣନାରୁ ଉଦ୍ଧୃତ ହେଲା-

ଏହା ନାସାରୁ ବାହାର ଯେବଣ ପବନ,

ନିମ୍ବ ସାହାଡ଼ାରେ ଲାଗିଲେ ହେବ ଚନ୍ଦନ ।
ତାମ୍ବୁଳ ବିହୁନେ ଅଧର ରଙ୍ଗ ଅତ୍ୟନ୍ତ,
ବାଳ ଆଦିତ୍ୟ ଜ୍ୟୋତିକି ଜିଣଇ ସତତ ।
ବିମ୍ବଫଳ ପଟାନ୍ତର ନୁହେଁ ବୃନ୍ଦକାଳେ,
ତେଣୁ ସେ ଲଜ୍ଜାରେ ଝଡ଼ିପଡ଼ଇ ଭୂତଳେ ।

ସାରଳାଦାସଙ୍କ କବିତାରେ ଅସମାନାକ୍ଷର ଓ ବର୍ଣ୍ଣବ୍ୟତିକ୍ରମ ଦେଖି କେହି କେହି ଅନୁମାନ କରନ୍ତି ଯେ ସେ ଓଡ଼ିଆ ଭାଷାରେ ଆଦିକବି, ମାତ୍ର ଏହା ଯୁକ୍ତିସଙ୍ଗତ ନୁହେଁ, କାରଣ ବଳରାମଦାସ ତ ଆଦିକବି ନୁହନ୍ତି, ତଥାପି ତାହାଙ୍କ ରାମାୟଣରେ ଏହି ଅସାମାନାକ୍ଷର ଓ ବର୍ଣ୍ଣ ବ୍ୟତିକ୍ରମ ମଧ ଦେଖାଯାଏ । ଶୂଦ୍ରମୁନିଙ୍କ ପୂର୍ବବର୍ତ୍ତୀ କବି କିଏ ତାହା ଅଦ୍ୟାବଧି ସ୍ଥିରୀକୃତ ହୋଇ ନ ଥିବା ସ୍ଥଳେ ତାହାଙ୍କୁ ଆଦିକବିଙ୍କ ଲଭ୍ୟ ବରଣମାଳା ପ୍ରଦତ୍ତ ହୋଇପାରେ, ମାତ୍ର ସବୁ ଓଡ଼ିଆ କବିଙ୍କର ଜୀବନବୃତ୍ତାନ୍ତ ଅଦ୍ୟାବଧି ମିଳିନାହିଁ, ସୁତରାଂ ଏ ବିଷୟର ନିଃସନ୍ଦେହ ମୀମାଂସା କାଳସାପେକ୍ଷ । ବିଶେଷତଃ ଆଦିକବିଙ୍କ ପକ୍ଷରେ ସର୍ବପ୍ରଥମରୁ ଏଡ଼େ ବୃହତ୍ ଗ୍ରନ୍ଥ ଲେଖିବା ସମ୍ଭବପର ନୁହେଁ ବୋଲି କେହି କେହି ଅନୁମାନ କରନ୍ତି ।...

ପଞ୍ଚଦଶ ଶତାବ୍ଦିର ଶେଷଭାଗ ଓ ଷଷ୍ଠଦଶ ଶତାବ୍ଦୀର ଆରମ୍ଭ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ପ୍ରଧାନ ଯୁଗ । ଦିଗ୍‌ବିଜୟୀ, ସାହିତ୍ୟାନୁରାଗୀ ଭକ୍ତରାଜା ପ୍ରତାପରୁଦ୍ର ଏହି ସମୟରେ ଉତ୍କଳର ରାଜସିଂହାସନକୁ ଅଳଂକୃତ କରିଥିଲେ । ଭକ୍ତ କବି ଜଗନ୍ନାଥଦାଶଙ୍କର ଦୀକ୍ଷାଗୁରୁ ମତ୍ତ ବଳରାମ ଦାସ ଏହି ସମୟର ବୈଷ୍ଣବ କବିମାନଙ୍କର ଅଗ୍ରଣୀ । ଏ ମହାତ୍ମାଙ୍କ ଲିଖିତ ଗ୍ରନ୍ଥସଂଖ୍ୟା ଅତି ଅଳ୍ପ ନୁହେଁ ଏବଂ ପଦର ଲାଳିତ୍ୟ, ରଚନାର ସୌଷ୍ଠବ ଓ ସରଳତାରେ ଏ ମହାତ୍ମା ଜନ ସାଧାରଣରେ ସୁପରିଚିତ ।...

ବଳରାମଦାସଙ୍କ ସମୟରେ ସାହିତ୍ୟିକ ଓଡ଼ିଆ ଭାଷାର ଅବସ୍ଥା କିପରି ଥିଲା ତାହା ଦେଖାଇବା ଅଭିପ୍ରାୟରେ ତତ୍‌କୃତ 'ଭଗବଦ୍‌ଗୀତା'ରୁ କତିପୟ ପଂକ୍ତି ଉଦ୍ଧୃତ କରାଗଲା ।

ଅର୍ଜ୍ଜୁନ ବୋଲଇ ଦେବ ପୁଛିବି କଥାଏ
ସନ୍ନ୍ୟାସୀ ତ୍ୟାଗୀରେ ପୁଣ ଉତ୍ତମ କେ ହୁଏ ?
ଦୁଇ କଥା ଭିନ୍ନ ଭିନ୍ନ ଶୁଣି ତ ମୋ ମନ
ବୋଲନ୍ତି ମାଧବ ଶୁଣ ପଣ୍ଡୁର ନନ୍ଦନ ।
କାମ୍ୟ କର୍ମ ଛାଡ଼ିଲାକୁ ସନ୍ନ୍ୟାସୀ ବୋଲନ୍ତି
ତ୍ୟାଗିମାନେ ସବୁ କର୍ମ ଫଳହିଁ ଛାଡ଼ନ୍ତି ।
ଥୋକାଏ ପଣ୍ଡିତମାନେ ବୋଲନ୍ତି ବିଚାରି
ସବୁ କର୍ମ ଛାଡ଼ିବ ଉଦାସୀ ହେତୁ କରି ।

ଥୋକାଏ ପଣ୍ଡିତମାନେ ବୋଲୁଛନ୍ତି ଆନ
କରିବଇଁ ଯଜ୍ଞ ଦାନ ତପ କର୍ମମାନ ।
ଏଥିର ଫଳକୁ ବାଞ୍ଛା ନ କରିବ ଚିତ୍ତେ
ଏଥିରେ ଯେ ତତ୍ତ୍ୱକଥା କହିବା ହୋ ତୋତେ ।
ଯାଗ ଯେ ଅଟଇ ହାଦେ ତିନି ପରକାର
ସତ୍ତ୍ୱ ରଜଃ ତମଃ ତିନିଗୁଣ ଯେ ବିଚାର ।
ଯଜ୍ଞ ତପ ଦାନ ଏହା ଅବଶ୍ୟ କରିବ
ଏମାନେ ସେ ପବିତ୍ର କରନ୍ତି ବିଚାରିବ ।
ସଙ୍କଳପ ବାଞ୍ଛା ଯେ ଛାଡ଼ିଣ କର୍ମ କରି
ଏ ମୋହର ଜନମତ ବୋଲନ୍ତି ଶ୍ରୀହରି ।
ଯେ ଯାହାର ନିତ୍ୟକର୍ମ ମୂଢ଼ ସେ ଛାଡ଼ଇ
ଏଥେ କିମ୍ପା ବନ୍ଧ ହେବି ବୋଲି ବିଚାରଇ ।
ନ କଲେ କି ହୋଇଲା କରମ ସିନା ଏହୁ
ତାମସତ୍ୟାଗୀ ଲେଖାରେ ଗଣିତାଟି ସେହୁ ।
କାୟ କ୍ଳେଶ ଦୁଃଖ ଏ ବୋଲିଣ କର୍ମ ଲେଖି
ତାହାକୁ ରାଜସତ୍ୟାଗୀ ବୋଲିଣ ସେ ବାଛି ।
ବେଭାର କର୍ମ କରିବ ନ ବାଞ୍ଛିବ ଫଳ
ସାତ୍ତ୍ୱିକତ୍ୟାଗୀ ତାହାକୁ ବୋଲନ୍ତି ସକଳ ।

ଇତ୍ୟାଦି । ୧୮ଶ ଅଧ୍ୟାୟ ।

ମତ ବଳରାମ ଦାସଙ୍କ ସମୟ ଓଡ଼ିଆ ସାହିତ୍ୟର 'ଅନୁବାଦ-ଯୁଗ' । ଶ୍ରୀମଭାଗବତ ପ୍ରଣେତା ଜଗନ୍ନାଥ ଦାଶ ବଳରାମ ଦାସଙ୍କ ସମକାଳୀନ କିମ୍ୱା କିଞ୍ଚିତ୍ ପରବର୍ତ୍ତୀ ଅଟନ୍ତି । ଉଭୟେ ଓଡ଼ିଆ ଭାଷାର ଯେପରି ଶ୍ରୀବୃଦ୍ଧି ସାଧନ କରିଅଛନ୍ତି ତାହା ପ୍ରାଚୀନ ସାହିତ୍ୟାନୁରାଗୀ ମାତ୍ରକେ ଜାଣନ୍ତି । ଏହି ସମୟକୁ ଓଡ଼ିଆ ଭାଷାର ଯୌବନକାଳର ପ୍ରାରମ୍ଭ ବୋଲି କୁହା ଯାଇପାରେ । ଏ ସମୟରେ ସୁଦ୍ଧା ବଳରାମ ଦାସ ଭଗବଦ୍‌ଗୀତାର ଅନୁବାଦରେ ଯେଉଁ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି ତାହା ଅନନ୍ୟ ସାଧାରଣ । ଏଡ଼େ ଗୂଢ଼ ଭାବକୁ ଏତେ ସରଳଭାଷାରେ ପ୍ରକାଶ କରିବା ଅଳ୍ପ ଗୌରବର ବିଷୟ ନୁହେଁ । ଏ ମହାତ୍ମାଙ୍କର ଅନୁବାଦରେ ସୁଦ୍ଧା ମୌଳିକତାର ଅଭାବ ନାହିଁ । ଛାଡ଼ିଲାକୁ, କରିବଇଂ, ଥୋକାଏ, ମନମତ, ଲେଖାରେ, ଗଣିତା, ବୁଝାବନ୍ତି, ପୂର୍ବେଣ ଏକର କହୁଁ, ତୁ ଭକତ ହୋଇଲୁ ମୋତେ, ତୋ ତହୁଁ ପ୍ରଭୃତି ସ୍ଥଳବିଶେଷରେ ଦ୍ରଷ୍ଟବ୍ୟ । ସାରଳାଦାସଙ୍କ ଭାଷା ସହିତ ବଳରାମ ଦାସଙ୍କ ଭାଷାର ତୁଳନା କଲେ ତାହାର କ୍ରମବିକାଶ ଅତି ସ୍ପଷ୍ଟଭାବରେ ପରିଦୃଷ୍ଟ

ହୁଏ । ବଳରାମ ଦାସଙ୍କର ଭାଷା ଓ ଲିଖନରୀତି ବିଶେଷରେ ମାର୍ଜିତ ଓ ଶ୍ରୀସମ୍ପନ୍ନ ଏବଂ ତହିଁରେ ଅଧୁନା ଅପ୍ରଚଳିତ ଶବ୍ଦ ଅତି ଅଳ୍ପ ନ ଥିଲେହେଁ ସେଗୁଡ଼ିକ ହରାଇବା ଦ୍ୱାରା ଓଡ଼ିଆ ଭାଷା ହୀନବଳ ହୋଇ ଅଛି କି ନାହିଁ, ଏହା ଗବେଷଣାର ବିଷୟ । ମାତ୍ର ଆଧୁନିକ ଓଡ଼ିଆଭାଷା ସେ କାଳର କେତେଗୁଡ଼ିଏ ରୀତି ସମ୍ପୂର୍ଣ୍ଣରୂପେ ହରାଇ ଯେ ହୀନବଳ ହୋଇଅଛି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ପରଠାରୁ ଲୁଗା ମାଗି ଆଣିବା ଅପେକ୍ଷା ନିଜର ପେଡ଼ି ଲୁଗା ଖୋଜି ବାହାର କରିବା ଭଲ । ପେଡ଼ି ପୋରିଆ ଲୁଗା ଘରକରଣା ପୁଅ ବୋଲି ଚିହ୍ନାଇ ଦିଏ ।

ନିମ୍ନରେ ୧୬ଶ ଶତାବ୍ଦୀର ମଧ୍ୟ-ଭାଗରେ ଉତ୍କୀର୍ଣ୍ଣ ଲିପିମାଳା ପ୍ରଦତ୍ତ ହେଲା, ଦୁଃଖର ବିଷୟ ଯେ ଏଥିରୁ ଅଧିକାଂଶ ପଢ଼ି ହେଉ ନାହିଁ –

"ଶ୍ରୀ ବୀର ଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଳବରଗେଶ୍ୱର ଶ୍ରୀ ମ(ହା)ରାଜାଧିରାଜ ମାନଗୋବିନ୍ଦ ଶ୍ରୀ ଗୋବିନ୍ଦ ଦେବ ରାଜା ଶ୍ରୀ ଶ୍ରୀ ମଦ୍‌ବିରବର ପ୍ରତାପ ଶ୍ରୀ ଶ୍ରୀ ପ୍ରତାପ ଦେବ ମହାରାଜାଙ୍କର ବିଜେରାଜ୍ୟେ ସମସ୍ତ ୪ଅଙ୍କ ଶ୍ରାହି ବିଛା ସୁକଳ ଦୃତୀଆ ମଙ୍ଗଳବାରେ ଜଗମୋହନ ମଣ୍ଡପେ ଶ୍ରୀଜଗନ୍ନାଥଙ୍କ ଛାମୁରେ ଜନାଇଲେ ଭୋ ଜଗନ୍ନାଥ ତୋହ ପଦ୍ମପାଦ ଦେଖୀ ଆସିବା ଯାବାରେ ବିନା ସବୁଠି ନର୍କ ବଭୁଂ ଉଦୟଗୀରି ସରି ପରିଜନ୍ତେ ସ୍ୱଦେଶୀ ପରଦେଶୀ ଜାତ୍ରୀ ମାଣଙ୍କର ଦାଶ ପ୍ରତି...ଗଡ଼ଜାତର ରାଜାମାଣେ ...ପାଳନା କରିବେ ଯେ ଏ କଥା ଅନ୍ୟଥା କରଇ ସେ ଶ୍ରୀଜଗନ୍ନାଥଙ୍କୁ ଦ୍ରୋହ କରଇ । ସ୍ୱହସ୍ତେ ବ୍ରାହ୍ମଣ ବଧ କଲା ପାପ ନତ୍ୱା ଦ୍ରାବିନୋ ଭୂମିପାଳ...

ଦତେ ରାମଚନ୍ଦ୍ର....

ପ୍ରାଣାକାଳେ....

ସାଳନା"....

(ତା ୭ରିଖ ନଭେମ୍ବର ୧୫୪୨ ଖ୍ରୀ.ଅ.)

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଆ ଭାଷାର ଅବସ୍ଥା ପ୍ରଦର୍ଶନ କରିବା ଅଭିପ୍ରାୟରେ ନିମ୍ନରେ ପୁରୁଷୋତ୍ତମବାସୀ ସଂସ୍କୃତଜ୍ଞ ପଣ୍ଡିତ କବି ହଳଧର ଦାସଙ୍କ 'ଅଧ୍ୟାତ୍ମ ରାମାୟଣ'ରୁ କିୟଦଂଶ ଉଦ୍ଧୃତ କରାଗଲା । ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ ମହାଶୟ ଅନୁମାନ କରନ୍ତି ଯେ ଏହି ମହାତ୍ମା ୧୬୦୪ ମସିହା ବା ତନ୍ନିକଟବର୍ତ୍ତୀ କୌଣସି ସମୟରେ ଜନ୍ମଗ୍ରହଣ କରିଥିବେ । ଏହି ଅନୁମାନ ତାହାଙ୍କ ପ୍ରଦତ୍ତ ଯୁକ୍ତିରୁ ସମୀଚୀନ ବୋଲି ବୋଧ ହେଉଅଛି । ଆପଣମାନେ ବଳରାମଦାସଙ୍କ ଅନୁବାଦ ଦେଖିଅଛନ୍ତି, ବର୍ତ୍ତମାନ ହଳଧର ଦାସଙ୍କ ଅନୁବାଦ ଦେଖନ୍ତୁ –

"ନିର୍ମଳ ଦର୍ପଣ ଯେସନ
ଏମନ୍ତ ପ୍ରକାର ବଦନ ।

ପ୍ରବାଳଶ୍ରେଣୀ କି ଅଧର
ଦଶନ ମୁକୁତା ପ୍ରକାର ।
କରୁଣାରସରେ ସମ୍ପୂର୍ଣ୍ଣ
ବିକାଶ ପଙ୍କଜଲୋଚନ ।
ନାସିକା ଅତି ମନୋହର
ସବୁ ନେତ୍ରର କି ସେ ଘର ।
ଚିବୁକ ପରମ ରୁଚିର
ଗଣ୍ଡ କି ମର୍କତ ମୁକୁର ।
ହନୁ ବିପୁଳ ମନୋହର
ଭ୍ରୂଲତା ଧନୁର ଆକାର ।
ପାଟଳୀ ପୁଷ୍ପ କିବା ବର୍ଣ୍ଣ
ଚାହିଁଲା ମାତ୍ରେ ବାନ୍ଧେ ମନ ।

ଅନୁବାଦ କାର୍ଯ୍ୟରେ ବଳରାମଦାସ ଯେପରି କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି, ହଳଧର ଦାସ ସେପରି କରିପାରି ନାହାନ୍ତି । ଉପରି ଉଦ୍ଧୃତାଂଶ ବିଭକ୍ତିବିହୀନ ସଂସ୍କୃତ ପରି ବୋଧ ହେଉଅଛି । ସୁତରାଂ ଏଥିରୁ ପ୍ରକୃତ ଭାଷାର ଅବସ୍ଥା ବୁଝି ହେବ ନାହିଁ । ଅତଏବ ନିମ୍ନରେ କବିଙ୍କର ସ୍ୱକଳ୍ପନାପ୍ରସୂତ ରଚନାରୁ କତିପୟ ପଂକ୍ତି ପ୍ରଦତ୍ତ ହେଲା -

"ଗଜପତି ମୁକୁନ୍ଦ ଦେବ
ବିବେକୀ ବ୍ରାହ୍ମଣ୍ୟ ବୈଷ୍ଣବ ।
ପ୍ରଜାପାଳନେ ଧର୍ମସମ
ଦଣ୍ଡ୍ୟ ଲୋକଠାରେ ସେ ଯମ ।
ସଂଗ୍ରାମେ ମହେନ୍ଦ୍ର ସମାନ
ରୂପରେ ଯେସନ ମଦନ ।
ଯାଚକଠାରେ କଳ୍ପଦ୍ରୁମ
ତେଜରେ ଚଣ୍ଡକର ସମ ।
ଯାହାଙ୍କ ଯଶଃ ପୁଣ୍ୟ କୀର୍ତ୍ତି
ସମ୍ପୂର୍ଣ୍ଣ କରିଛି ଏ କ୍ଷିତି ।
ତାଙ୍କର ଯେତେ ଗୁଣମାନ
ତାହା କହିବ କେଉଁ ଜନ ।
ସବୁ ଉତ୍ତମ ଗୁଣଯୁତ
ସମସ୍ତ ଦୁର୍ଗୁଣ ରହିତ ।

ଏମନ୍ତ ପରକାରେ ଯେହି
ତାଙ୍କର ଅଟନ୍ତି ଯେ ଭାଇ ।
ଶ୍ରୀ ଅନନ୍ତ ପଟ୍ଟନାୟକ
ସେ ବଡ଼ ବ୍ରାହ୍ମଣ୍ୟ ଧାର୍ମିକ ।
ବିବେକୀ ଦାତା ଦାନ୍ତ ଶାନ୍ତ
ବଇଷ୍ଣବ ଆଚାରବନ୍ତ ।
କନିଷ୍ଠ ପୁତ୍ର ମୁଁ ତାଙ୍କର
ମୋହର ନାମ ହଳଧର ।"

ଉଦ୍ଧୃତାଂଶର ଭାଷା ଉପରେ ସଂସ୍କୃତ ଭାଷା ଯେ କେତେ ପରିମାଣରେ ଆଧିପତ୍ୟ ବିସ୍ତାର କରିଅଛି ତାହା ଦ୍ରଷ୍ଟବ୍ୟ । କବି ନିଜେ 'ହଳଧର କାରିକା'ର ପ୍ରଣେତା ସୁତରାଂ ସଂସ୍କୃତଜ୍ଞ ପଣ୍ଡିତ ଥିବାରୁ ତାହାଙ୍କର ଭାଷାରେ ଅବଶ୍ୟ ଅବିକୃତ ସଂସ୍କୃତ ଶବ୍ଦର ବାହୁଲ୍ୟ ଦୃଷ୍ଟିଗୋଚର ହେବା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ତେବେ ୧୫୪୨ ଖ୍ରୀଷ୍ଟାବ୍ଦରେ ଖୋଦିତ ତତ୍କାଳର କଥିତ ଭାଷାର ଆଦର୍ଶ ସ୍ୱରୂପ ଗୋବିନ୍ଦ ବିଦ୍ୟାଧରଙ୍କ ଲିପିମାଳା ସହିତ ଏହାର ତୁଳନା କଲେ ଦୃଷ୍ଟିଗୋଚର ହେବ ଯେ ଏହି ଯୁଗରେ ସଂସ୍କୃତାନୁକରଣରେ କଥିତ ଭାଷା ସଂଶୋଧିତ ହୋଇ ଲିଖିତ ଓଡ଼ିଆ ସଂସ୍କୃତର ନିକଟବର୍ତ୍ତୀ ହୋଇ ଆସିଥିଲା । ଏ ସମୟକୁ ଗୌରବାର୍ଥ ପ୍ରକାଶକ ତାହାଙ୍କର, ଯାହାଙ୍କର, ଆମ୍ଭେ ପ୍ରଭୃତି ସର୍ବନାମ ଶବ୍ଦ ଏବଂ ତଦୁପଯୁକ୍ତ କ୍ରିୟାଗୁଡ଼ିକର ବ୍ୟବହାର ସର୍ବତ୍ର ପ୍ରଚଳିତ ହୋଇଥିଲା । ବହୁବଚନରେ 'ମାନ' ଓ 'ମାନେ' ବିଭକ୍ତିଚିହ୍ନ ବ୍ୟବହୃତ ହୋଇଥିଲା, ମାତ୍ର ଗୋବିନ୍ଦ ବିଦ୍ୟାଧରଙ୍କ ସମୟରେ ମାନ ଓ ମାନେ ପରିବର୍ତ୍ତରେ କୌଣସି କୌଣସି ସ୍ଥଳରେ, ମାଣ ଓ ମାଣେର ବ୍ୟବହାର ଦେଖାଯାଏ । ସେହିପରି ଗୋବିନ୍ଦ ବିଦ୍ୟାଧରଙ୍କ ଖୋଦିତ ଲିପିରେ 'ଜନାଇଲେ' ଓ 'ଦାଣ' ଦୃଷ୍ଟିଗୋଚର ହୁଏ, ମାତ୍ର ହଳଧର ଦାସଙ୍କ ଲେଖାରେ ଏପରି ବ୍ୟବହାର ଦେଖାଯାଏ ନାହିଁ । କିନ୍ତୁ ହଳଧର ଦାସଙ୍କ ନିଜ ହାତଲେଖା ପୋଥି ତ ନାହିଁ । ସୁତରାଂ ସ୍ଥିରଭାବରେ କହି ହେବନାହିଁ ଯେ ହଳଧରଙ୍କ ସମୟରେ ଏପରି ବ୍ୟବହାର ନ ଥିଲା ।

୧୭ ତାରିଖ ମଇ ୧୬୯୭ ଖ୍ରୀଷ୍ଟାବ୍ଦରେ ଘଟିଥିବା ଘଟନାର ବିବରଣ ମାଦଳାପାଞ୍ଜିରୁ ନିମ୍ନରେ ଉଦ୍ଧୃତ ହେଲା –

"(ଦିବ୍ୟସିଂହ ଦେବଙ୍କ ଅ୩ଙ୍କ) ରିସଭ ୧୯ଦିନେ ଏ ଦିନ ଦେବ ବିଭା ଏଇଦିନ ପାତୀସା ଅଉରଙ୍ଗ ସାହାଙ୍କ ନବାବ ଏକରାମ ଖାଁ ଏହାଙ୍କଠାରୁ ଅଇଲା ଏହା ଭାଇ ସରମଣ୍ଡ ଖାଁ ଯମାଉଲା ଏ ସଙ୍ଗତେ ଇମାମକୋଳ ଅସୁଆର ଗୋ ୫୦ଟା ଘେନି । ରାଯା ଦିବ୍ୟସିଂହ ଦେବ ଦାରୁଲାଗି ହୋଇଥିଲେ । ଦେଉଳ ସିଂହଦ୍ୱାର ଗୁମୁଟ ଭାଙ୍ଗିଲେ ଭୋଗମଣ୍ଡପରୁ ଚକ୍ର ନେଲେ କାଠର ଜଗନ୍ନାଥ ପ୍ରତିମାକୁ ମୁଗଲ ନେଲେ ଦେଉଳ ସିଂହାସନ ଉପରକୁ ନବାବ

ଭାଇ ଗଲା ଦେଉଳ ସିଂହଦ୍ୱାର ଦକ୍ଷିଣଦ୍ୱାର ମୁଦାଗଲା ।"

ବଡ଼ଦେଉଳର ନୀଳଚକ୍ର ଦେହରେ ଖୋଦିତ ଲିପିମାଳା ନିମ୍ନରେ ଦିଆଗଲା -

"ଶ୍ରୀଦିବ୍ୟସିଂହଦେବ ମହାରାଜାଙ୍କ ୩୩ଅଙ୍କ ମକର ଦି ୨୮ ନ ଶ୍ରୀ ନୀଳଚକ୍ର ତିଆର ହୋଇ ବିଜେ ହୋଇଲେ ।"

(୨୬ ତାରିଖ ଜାନୁଆରୀ ୧୭୧୯ ଖ୍ରୀଷ୍ଟାବ୍ଦ)

କବି ବିଶ୍ୱନାଥ ଖୁଣ୍ଟିଆ ଏହି ସମୟର ଲୋକ । ତାହାଙ୍କ ରଚିତ ବିଚିତ୍ରରାମାୟଣର ଆଦିକାଣ୍ଡରେ "ଶ୍ରୀ ଦିବ୍ୟସିଂହ ଗଜପତି ଶ୍ରୀ ଜଗନ୍ନାଥ ଶ୍ରୀ ଚରଣେଭଜେ" ଏହିପରି ଲେଖାଥିବାରୁ ବୋଧହୁଏ ସେ ଦିବ୍ୟସିଂହଦେବଙ୍କ ସମୟରେ ତାହାଙ୍କର ବିଚିତ୍ର ରାମାୟଣ ରଚନା କରିଥିଲେ । ତାହାଙ୍କ ବିଚିତ୍ର ରାମାୟଣର କିଷ୍କିନ୍ଧାକାଣ୍ଡରୁ ନିମ୍ନରେ କତିପୟ ପଂକ୍ତି ଉଦ୍ଧାର କରାଗଲା -

"ପ୍ରବେଶ ରାମ ଲକ୍ଷ୍ମଣ ପମ୍ପାସରତୀର
ଦେଖନ୍ତି ନିର୍ମଳ ଜଳ ଅତି ମନୋହର ।
କମଳ କୁମୁଦ କୋକନଦ ନୀଳୋତ୍ପଳ
ମଧୁପାନେ ମତ୍ତହୋଇ ଚୁମ୍ବନ୍ତି ଭ୍ରମର ।
ଚଉପାଶେ ବେଢ଼ିଛନ୍ତି ପୁଷ୍ପତରୁଚୟ
ବିରହିଜନଙ୍କୁ ସେ କରାଉଛନ୍ତି ଭୟ ।
ଦେଖ ଦେଖ ଲକ୍ଷ୍ମଣ ଏ ସରୋବର ଶୋଭା ।
ଏହା ଦେଖି କେବଣ ଦେବ ନୋହିବ ଲୋଭା ।
ବିବିଧ ହଂସମାନଙ୍କେ ଦିଶଇ ସୁନ୍ଦର
ଡାହୁକ ତିତିର କାକ ବକେ ଶୋଭାକର ।
ବିକାଶନ୍ତି ନବ ନବ ଚୂତାଙ୍କୁରମାନେ
ପ୍ରକଟି ବାସନ୍ତି ବାସ ସର୍ବ ସନ୍ନିଧାନେ ।
କାମ ତୂଣୀ ଶର ପ୍ରାୟ ଦିଶନ୍ତି ଅଶୋକ
ସୀତାଙ୍କ ବିଚ୍ଛେଦ କରାଉଛି ବହୁ ଶୋକ ।
ପାଟଳୀ ପାଟଳ କାମାନଳ ପ୍ରାୟ ଦିଶେ
କେତକୀ କଳକା ମନସିଜ କୁନ୍ତ କି ସେ ।
ମଲ୍ଲିକା ସୌରଭରେ ମଧୁକରନିକର
ଧ୍ୱନି କରି ଖୋଜୁଛନ୍ତି ସର୍ବ ଦିଗନ୍ତର ।
ମନ୍ଦଗନ୍ଧ ସୁଶୀତଳ ପ୍ରସରେ ମରୁତ
କୋକିଳ ଧ୍ୱନି କରନ୍ତି ହୋଇ ମହାମତ୍ତ ।"

କବିବର ଉପେନ୍ଦ୍ରଭଞ୍ଜଙ୍କ 'ରସଲେଖା'ର ୨୨ଶ ଛାନ୍ଦରେ ଏହିପରି ଲେଖାଅଛି -

"ଦିବ୍ୟସିଂହ ଗଜପତି । ଅଙ୍କ ସପତବିଂଶତି ।
ଶେଷଦିନେ ଶେଷ ଏହୁ ଗୀତ ।"

ଅତଏବ ଉପେନ୍ଦ୍ରଭଞ୍ଜ ମଧ୍ୟ ଏହି ସମୟର କବି । ତାହାଙ୍କର ବୈଦେହୀଶବିଳାସ ୨୬ଶ ଛାନ୍ଦରୁ ପମ୍ପାସରୋବର ବର୍ଣ୍ଣନା ନିମ୍ନରେ ଉଦ୍ଧୃତ ହେଲା-

"ବାଟେ ପମ୍ପା ସାରସର । ବିରାଜିତ ସାରସର ।
ବିରାଜିତ ସାରସର । ତୃଷାରି ସର ସେ ।
ବିଧିରେ ହୀନଭ୍ରମର । ବିଳସୁଛନ୍ତି ଭ୍ରମର ।
ବିଳାସ ଯହିଁ ଭ୍ରମର । ବାଞ୍ଛେ ଅମର ସେ ।
ବାରିରେ ଆଦରସରେ । ବିମଳ ଆଦରଶରେ ।
ବିବେକ ହଂସ ମାନସ । ବଳି ମାନସ ଯେ ।
ବିଧ୍ୱଂସ ତାପସ୍ମରଶ । ବଡ଼ ଅତଳସ୍ମରଶ ।
ବିନିଦ୍ର ନୀଳସାରସ । ବହଇ ରସ ସେ ।
ବାଞ୍ଛ ତୃଷାର୍ତ୍ତି କମଳ । ବିଧନ ତୀରେ କମଳ ।
ବିରଚେ ଭୃଙ୍ଗଙ୍କୁ ମୁଦ । ବହୁ କୁମୁଦ ଏ ।
ବୁଡ଼ି ଉଠେ ଚକ୍ରଚକ୍ର । ବିହେ ଗତି ଯଥା ଚକ୍ର ।
ବିନୋଦରେ ଚକ୍ରବାକୀ । ବିଚକ୍ରା ସେ କି ଏ ।"

ଉପରେ ଉଦ୍ଧୃତ ହୋଇଥିବା ଗଦ୍ୟ ଓ ପଦ୍ୟର ଅଂଶଗୁଡ଼ିକ ପ୍ରାୟ ସମସାମୟିକ । ମାଦଳାପାଞ୍ଜିରୁ ଉଦ୍ଧୃତ ଗଦ୍ୟାଂଶ ଓ ନୀଳଚକ୍ରଦେହରେ ଖୋଦିତ ଲିପିମାଳା ସାହିତ୍ୟିକ ଭାଷା ନୁହେଁ, କଥିତ ଭାଷା; ଉଦ୍ଧୃତ ପଦ୍ୟାଂଶଗୁଡ଼ିକ ସାହିତ୍ୟିକ ଭାଷା । ତହିଁରୁ ଦେଖାଯିବ ଯେ ସାହିତ୍ୟିକ ଭାଷା କଥିତ ଭାଷାକୁ ବହୁଦୂରରେ ପକାଇ ଅଗ୍ରସର ହୋଇଅଛି । ମାତ୍ର ଗୋବିନ୍ଦ ବିଦ୍ୟାଧରଙ୍କ ସମୟର କଥିତ ଭାଷା ଓ ସାହିତ୍ୟିକ ଭାଷା ମଧ୍ୟରେ ଏତେ ପାର୍ଥକ୍ୟ ଦୃଷ୍ଟିଗୋଚର ହେବ ନାହିଁ । କବିବର ଉପେନ୍ଦ୍ରଭଞ୍ଜ ଯେଉଁ ପନ୍ଥା ପ୍ରଦର୍ଶନ କରିଥିଲେ ତାହାଦ୍ୱାରା ଓଡ଼ିଆର ବିଶେଷତ୍ୱ ଅନେକ ପରିମାଣରେ ଲୁପ୍ତ ହୋଇଥିବାର ସମ୍ଭାବନା । ତାହାଙ୍କ ସମୟରେ ସଂସ୍କୃତରୁ ଆନୀତ ଶବ୍ଦମାନଙ୍କ ଦ୍ୱାରା ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ପରିପୂର୍ଣ୍ଣ। ପୂର୍ବ ରୀତି ବହୁପରିମାଣରେ ବିନଷ୍ଟ ହୋଇଥିଲା । ନୈସର୍ଗିକତା ସ୍ଥଳରେ କୃତ୍ରିମତା ରାଜତ୍ୱ କରିବାକୁ ବସିଥିଲା । ମୋର କହିବାର ଅଭିପ୍ରାୟ ଏହା ନୁହେଁ ଯେ ଉପେନ୍ଦ୍ରଭଞ୍ଜ ସଂସ୍କୃତାଦର୍ଶରେ କଥିତ ଭାଷାର ସଂଶୋଧନ ସର୍ବପ୍ରଥମେ ଆରମ୍ଭ କରିଥିଲେ, ଏହା ତାହାଙ୍କର ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । କେତେଗୁଡ଼ିଏ ନିୟମର ଅଧୀନ ହୋଇ ଭାବବ୍ୟକ୍ତ କରିବାକୁ ଚେଷ୍ଟା କରି ଭଞ୍ଜେ ଅପ୍ରଚୁର ଶବ୍ଦମାନ ବ୍ୟବହାର କରିବାକୁ ବାଧ

ହୋଇଥିଲେ । ସମ୍ଭବତଃ ତାହା ସେ ଯୁଗରେ ଅତ୍ୟନ୍ତ ଆଦରଣୀୟ ହେବାରୁ ଅନେକେ ତାହାଙ୍କ ପ୍ରଦର୍ଶିତ ପଥ ଅନୁସରଣ କରିଥିଲେ ଏବଂ ତଦ୍ୱାରା ଓଡ଼ିଆ ଭାଷାର ଏକପକ୍ଷରେ ଯେପରି ଶ୍ରୀବୃଦ୍ଧି ହୋଇଥିଲା, ଅନ୍ୟପକ୍ଷରେ ମଧ୍ୟ ସେହିପରି ବଳହାନି ଘଟିଥିଲା । କବି ବିଶ୍ୱନାଥ ଓ ଭଞ୍ଜକବି ଉଭୟଙ୍କ ଏକସ୍ଥାନର ବର୍ଣ୍ଣନା ପାଖେ ପାଖେ ଉଦ୍ଧୃତ ହୋଇଅଛି, ତହିଁରୁ ଏହି ଉକ୍ତିର ସାରବତ୍ତା ଉପଲବ୍ଧ ହେବ । ମାତ୍ର ବହୁସ୍ଥଳରେ ଭଞ୍ଜ ବୀରବରଙ୍କ କବିତାରେ ପ୍ରକୃତ କବିତ୍ୱ ପରିଦୃଷ୍ଟ ହୁଏ, କିନ୍ତୁ ଉପ୍ରଥାବଲମ୍ବିମାନଙ୍କ କବିତାରେ ବରଂ ତହିଁର ଅଭାବ ଦୃଷ୍ଟିଗୋଚର ହୋଇଥାଏ । ଯାହାହେଉ ତାହା ପ୍ରସ୍ତାବିତ ବିଷୟ ସମ୍ପୃକ୍ତ ହୋଇନଥିବାରୁ ଏଠାରେ ଏତିକିମାତ୍ର କହି ବିରତ ହେଲି ।

ଦିବ୍ୟସିଂହଦେବଙ୍କ ସମୟ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ଅଦ୍ଭୁତ ପରିବର୍ତ୍ତନର ଯୁଗ ଏବଂ ଏହି ସମୟରେ ସାହିତ୍ୟ ସେବାରେ ଅନେକ ବ୍ୟକ୍ତି ନିଯୁକ୍ତ ଥାଇ ଓଡ଼ିଆ ଭାଷାରେ ଏକ ଯୁଗାନ୍ତର ଘଟାଇଥିଲେ । ପୁରାକାଳୀନ ବଳରାମ ଦାସ ପ୍ରଭୃତିଙ୍କ ପନ୍ଥାନୁସାରୀ କବି ମଧ୍ୟ ଏ ସମୟରେ ବିରଳ ନ ଥିଲେ । କବି କୃଷ୍ଣଦାସଙ୍କ ରସବିନୋଦରୁ କତିପୟ ପଂକ୍ତି ନମୂନାସ୍ୱରୂପ ନିମ୍ନରେ ଉଦ୍ଧାର କରାଗଲା -

"ସପତସିନ୍ଧୁ ଯେତେ ଜଳ
ତହିଁ ମୁଁ ଲୋଡୁଅଛି ଥଳ ।
ଆକାଶପୁର ଯେତେ ବ୍ୟାପି
ହସ୍ତରେ ଲୋଡୁଅଛି ମାପି ।
କରେ କି ଧରି ହୋଏ ଇନ୍ଦୁ,
ଖୁରିରେ ବାହି ଥାଏ ସିନ୍ଧୁ ।
ପବନ ଅଣଆଶଟାକୁ
ଫାନ୍ଦ ପାତିଛି ଧରିବାକୁ ।
ସତାର ନିଶୁଣି ଲଗାଇ
ସ୍ୱର୍ଗକୁ ଲୋଡୁଅଛି ଯାଇ ।
ପିମ୍ପୁଡ଼ି ହୋଇ ଏଡ଼େ ବଳୀ
ମେରୁକୁ ଲୋଡୁଅଛି ପେଲି ।"

୧୭୦୭ ଖ୍ରୀଷ୍ଟାବ୍ଦ ଅଥବା ଏକ ବା ଦୁଇ ବର୍ଷରେ ଲିଖିତ ଘୁମୁସର ରାଜବଂଶାବଳୀ ନିମ୍ନରେ ପ୍ରଦତ୍ତ ହେଲା । ଏଥିରୁ ତତ୍କାଳୀନ ଓଡ଼ିଆ ଗଦ୍ୟର ପରିଚୟ ମିଳିବ ।

ଘୁମୁସର ରାଜବଂଶାବଳୀ ।

"ଏହାଙ୍କୁ (ବନମାଳି ଭଞ୍ଜଙ୍କୁ) ମାରି ଏହାଙ୍କ ଭାଇ ଗୋପୀନାଥ ଭଞ୍ଜ ରାଯୁତ କଲେ ୧୫୫୮ ଶକାବ୍ଦ ଶରିକି ବ୨୨ର୍ଷ । ୧୫୪୧ ଶକାବ୍ଦରେ ଗୋପିନାଥପୁର ଶାସନ କଲେ ।

ଏହାଙ୍କ ପୁଅ ବଡ଼ ଧନଞ୍ଜୟ ଭଞ୍ଜେ ୧ ଗୋବିନ୍ଦ ଭଞ୍ଜ ପାଟରଜା ୨ ବଳଭଦ୍ର ଛୋଟରା ୩ ନିଧି ଭଞ୍ଜ ସାନ୍ତସିଂହାରେ ୪ । ଏ ଚାରି ପୁଅ ତାଙ୍କର ହୋଇଥିଲେ । ତାଙ୍କ ଭିତରୁ ବଡ଼ ପୁଅ ଧନଞ୍ଜୟ ଭଞ୍ଜ ରାଜତ୍ୱ କଲେ । ଏ ରାଜତ୍ୱ କଲେ ଓ ରାଜତ୍ୱ କରିବାରେ ଷାଠିଏ ହଜାର ଟଙ୍କା ଲଗାଇ ଜଗତୀ ଗୋଟିଏ ତୀୟାର କରିଥିଲେ । ଖଟଦୋଳୀ ବାଙ୍କିୟା ରତନ ଜଡ଼ିତ କରି ତୀୟାର କରିଥିଲେ । ଏହାଙ୍କର ବିଶେଷ ମହାଦେଇ ନାଚଣି କରିଥିଲେ । ଏ ବଡ଼ ଭୋଗ । ଏ ମାଇପି ...ହୁଅନ୍ତି । ଏ ରାତ୍ର ଦୁଇଘଡ଼ି ଥାଏ ସରୁଚକୁଳି ଦୁଧ ଯୋଗଣା କରନ୍ତି । ଏ ରାଜା ଧନଞ୍ଜପୁର ଶାସନ ୧୫୩୮ ଶକାବ୍ଦରେ କଲେ । ଏହିପରି ଯଶମାନଙ୍କୁ କରି ରାଜତ୍ୱ କରିବାରେ ଏ ରାଜତ୍ୱ କଲେ ୧୬୨୩ ଶକାବ୍ଦ ଶାରିକି ଏଥକୁ ୧୬୧୬ ଶକାବ୍ଦ ଶରିକି ପେଶକଶି କାହାକୁ ଦେବାର ନଥିଲା । ୧୬୧୩ ଶକାବ୍ଦ ଶରିକି ମୁଗଲାଇ ନବାବ ଆସିବାରେ ଏକ ବର୍ଷକୁ ଟ ୫୦୦୦ଙ୍କା ପାଞ୍ଚହଯାର ଟଙ୍କା ଲେଖାଏଁ ପେଶକେଶି ମୂଳ କଲେ । ସେଦିନଠାରୁ ପେଶକେଶି ଦେବାର ହେଲା । ଏହାଙ୍କ ପୁଅ ରାଉତଘର ନାତି ବଡ଼ ଗଙ୍ଗାଧର ପାଟକୁମରେ । କୁତୁମୁଲାର ନାତୀ ହରିଶରଣ ଭଞ୍ଜେ । ଏହାଙ୍କ ପଦ ହନ୍ତକାରୀ ବଡ଼ଜେନା ଧରାକୋଟଘର ନାତି ବିଷ୍ଣୁନାଥ ମଙ୍ଗରାଜେ । ବଡ଼ମ୍ମା ହାଡ଼ଦେଇ ପାଟମହାଦେଇଙ୍କ ପୁଅ । ନିଳକଣ୍ଠ ଭଞ୍ଜେ ।୧। ବିକ୍ରମ ଭଞ୍ଜେ ।୨। ପ୍ରତାପ ଭଞ୍ଜେ ।୩। ଖଣ୍ଡପଡ଼ାର ନାତି । ଗଦାଧର ଭଞ୍ଜେ ।୧। ଶାନ୍ତ ସିଂହାରେ ।୨। ଖଲିକୋଟଘର ନାତି । ଗିରିଧର ଭଞ୍ଜେ ।୧। ସଦାଶିବ ଭଞ୍ଜେ ।୨। ବାଉରି ଭଞ୍ଜେ ।୩। ଭମରବରେ ।୧। ରାଉତଘର ନାତି । ଅର୍ଜୁନ ଭଞ୍ଜେ ।୨। ଏ ରୂପେ ତେର ପୁଅ ନାଗୁଣୀପୁଅ ପାଞ୍ଚଗୋଟୀ । ଏରୂପ ଅଠର ପୁଅ । ଏହାଙ୍କ ରାଜତ୍ୱରେ ଏ ଗୁମୁଶରକୁ ଅଶ୍ୱତ୍ଥମା ଗୋପନୀୟ ବେଶରେ ଆସିଥିଲେ । ତାଙ୍କ ତେଜରୁ ରାଜା ମହାପୁରୁଷ ବୋଲି ଜାଣି ତାଙ୍କଠାରେ ଭକ୍ତି କଲେ । ତାଙ୍କୁ ପଚାରିଲେ ଆମ୍ଭ ଉତାରୁ ଗୁମୁଶରରେ କିଏ ରାଜତ୍ୱ କରିବ । ପଚାରିବାରୁ ତହିଁକି ସେ କହିଲେ- ତୁମ୍ଭ ପୁଅମାନଙ୍କୁ ରାଜତ୍ୱ ନାହିଁ । ତହିଁ ଉତ୍ତାରୁ ଗୋବିନ୍ଦ ଭଞ୍ଜ ଆଟ ରଜାଙ୍କ ପୁଅ । ରଘୁନାଥ ଦକ୍ଷିଣର ଯେ । ଘନ ଭଞ୍ଜେ । ଚନ୍ଦ୍ରଶେଖର ଶ୍ରୀଚନ୍ଦନେ । ଜଦୁ ଭମରବରେ । ଶ୍ୟାମସୁନ୍ଦର ବିଧାରେ । ମକୁନ୍ଦ ଭଞ୍ଜେ ରାଆପିତାମେ । ଏ ରୂପେ ତାଙ୍କର ଛ'ପୁଅଙ୍କୁ ଦେଖିଲେ । ଏହାଙ୍କୁ ଦେଖି ବୋଇଲେ କାହାଠାରେ ରାଜଚିହ୍ନ ନାହିଁ । ଧନିୟା ଉତ୍ତାରୁ ଗୋବିନ୍ଦ ଭଞ୍ଜ ଆଟରାଜାଙ୍କ ପୁଅ ଘନିୟା ହେବ । ଏପରି ସେ କହିବାରୁ ତାହା ମନରେ ରଖିଥିଲେ । ଧନଞ୍ଜୟ ଭଞ୍ଜ ରାଜଭୋଗ ଇଚ୍ଛାରେ ରହି ଭାଇ ଗୋବିନ୍ଦ ଭଞ୍ଜ ଆଟରାଜାଙ୍କୁ ମୁଲୁକ ବେଭାର ସମର୍ପଣ କରିଥାନ୍ତି । ଏ ସମୟରେ ଶୁଆଗି ମହାଦେଇ ହାତୁଦେଇଙ୍କ ଠାରେ ରାଜାଙ୍କର ବଡ଼ ସ୍ନେହ ଥାଏ । ସେ ମହାଦେଇ ପୁଅ ନୀଳକଣ୍ଠ ଭଞ୍ଜଙ୍କୁ ସାଡ଼ୀ ଦେବ ବୋଲି କହୁଥାନ୍ତି । ଗଙ୍ଗାଧର ପାଟକୁମାରଙ୍କଠାରେ ଗୋବିନ୍ଦ ଭଞ୍ଜ ଆଟରାଜାଙ୍କର ଛ'ପୁଅ ପ୍ରୀତି କରିଥାନ୍ତି । ହାତୁ ଦେଇ ତାହା ଶୁଣି ରଜାଙ୍କଠାରେ ବିମନ କରି ଖିଚ କହିଲେ । ଗୋବିନ୍ଦ ଭଞ୍ଜ ଆଟରଜାଙ୍କ ଛ'ପୁଅ

ସମେତରେ ରାଜ୍ୟରୁ ଅନ୍ତର କରାଇଦେଲେ । ସେ ଗୋବିନ୍ଦ ଭଞ୍ଜ ଥାଟରାଜା ପାଞ୍ଚ ପୁଅଙ୍କୁ ଘେନି ଓଡ଼ିଶା ବାହାରି ଗଲେ । ଘନ ଭଞ୍ଜେ ଧରାକୋଟ ଜମିଦାରୀ ସ୍ଥଳରେ ରହିଲେ । ଏ ଉତାରୁ ରାଜା ବହୁ କାଳ ଜୀଇଁବାରୁ ହାତୁଦେଇ ବିଚାରିଲେ । ଏ ତ ବହୁତ କାଳ ରାଜତ୍ୱ କଲେ ପୁଅ ମୋର ରଜା ହୋଇ ନ ପାରିଲା । ଏମନ୍ତ ଦୁର୍ବିଚାର କରି ଚମ୍ପା ନାନୀ ହାତେ ଦୁଧ ସରୁଚକୁଳୀ ଖାଇବାରେ ସେଥିରେ ବିଷ ଦିଆଇଲେ ପୁଅ ନୀଳକଣ୍ଠ ଭଞ୍ଜଙ୍କୁ । ବାପଙ୍କୁ ଏ ସମୟରେ ଅପାୟ ବିଚାର କର ବୋଲି କହିଦେଲେ । ନୀଳକଣ୍ଠ ଭଞ୍ଜ ତାହା ଜାଣି ବାପାଙ୍କୁ ମାଇଲେ । ବଡ଼ଭାଇ ପାଟକୁମାରଙ୍କୁ ରାଜସାଢ଼ୀ ବାନ୍ଧିବି ଆସ ବୋଲିବାରୁ ସେ ଭୟରେ କବାଟ କିଳି ରହି ଘରୁ ନ ବାହାରିଲେ । ତାଙ୍କ ଗର କବାଟ ଚିରି ତାଙ୍କୁ ହାଣି ପକାଇଲେ ଇତ୍ୟାଦି ।”

ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ସାହିତ୍ୟିକ ଓଡ଼ିଆ ଭାଷାର ଅବସ୍ଥା ପ୍ରଦର୍ଶନ କରିବା ନିମନ୍ତେ ନିମ୍ନରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର “ପ୍ରେମ ତରଙ୍ଗିଣୀ”ରୁ କତିପୟ ପଂକ୍ତି ଉଦ୍ଧୃତ ହେଲା ।

“...ଅଗୋଚର ରସାମୃତ କୃପା କରି
ପିଆଇଲେ ଭକ୍ତଗଣେ
ଅଠଚାଳିଶ ବରଷେ ଅନ୍ତର୍ଦ୍ଧାନ
ଚୋଟା ଗୋପୀନାଥ ସ୍ଥାନେ ।
କୋଟୀ ପୁସ୍ତକେ କହିଲେ ନ ସରିବ
ଗୁଣ ଅଗାଧ ଅପାର ।
ସେ ଶ୍ରୀକୃଷ୍ଣ ଚଇତନ୍ୟ ପାଦପଦ୍ମ -
ଶ୍ରିତ ପ୍ରିୟ ଗଦାଧର ।
ସେ ପଣ୍ଡିତ ଗୋସ୍ୱାମିର ଶିଷ୍ୟ ଅନନ୍ତା -
ଚାର୍ଯ୍ୟ ଯା ନାମ ବ୍ୟାସ
ଶ୍ରୀ ରଘୁ ଗୋପାଳ ଗୋସ୍ୱାମୀ ସେ ଦାସ
ଲକ୍ଷ୍ମୀପ୍ରିୟ ତାଙ୍କ ଶିଷ୍ୟ ।
ତାଙ୍କ କୃପାପାତ୍ର ଶ୍ରୀ ଗଙ୍ଗାମାତା ଯେ
କ୍ଷେତ୍ରବରେ ପ୍ରତିଷ୍ଠିତ ।
ତାଙ୍କ ପଦାଶ୍ରୟ ବନମାଳୀ ଦାସ
ଗୋସ୍ୱାମୀ ଲୋକେ ବିଦିତ ।
ତାଙ୍କ ଅନୁଗତ ଶ୍ରୀକିଶୋର ଦାସ
ନାମରେ ମୋହର ସ୍ୱାମୀ ।

ଶାନ୍ତକୁଳେ ଜନ୍ମ ମୁଁ ଅତି ଅଧମ
କୃପା କଲେ ଅନ୍ତର୍ଯ୍ୟାମୀ ।
ସାଧୁଚରଣ ଦାସ ବୋଲି ଆପଣା
ଶ୍ରୀମୁଖେ ଆଜ୍ଞା ହୋଇଛି ।
ମାତୃ ପିତୃ ବଇଷ୍ଣବ ରାଜଦତ୍ତ
ବହୁ ନାମ ମୋର ।" ୩୬ଶ ଛାନ୍ଦ ।
"ଅଳକା ବେଢ଼ି ଗୁଞ୍ଜରାପାଟି
ଏ କର୍ଣ୍ଣୁ ସେ କର୍ଣ୍ଣାବଧି ଘୋଟି
ଆଁ କରି କେଶରାହୁ ମୁଖ ଚନ୍ଦ୍ରକୁ ଗିଳିବା ଆରମ୍ଭେ
ଅଛି ଘୋଟି ଗୋ । ପ୍ରତେ ହୁଏ ।
ରକ୍ତ ଲାଗିଲାନି ଝଳି ଦନ୍ତେ କି ଏ ଗୋ ।
କର୍ଣ୍ଣେ ମକରକୁଣ୍ଡଳ ଆନ୍ଦୋଳାଏ ।
ହରି ମିତ୍ର ତ ଚକ୍ର ପେଷିଲେ ଦୟେ ।
କାମରୂପୀ ଦୁଇ ଦିଗୁଁ ଦୁଇ ପ୍ରାୟେ ।
ବାଜି ନାହିଁ ବର୍ଣ୍ଣ ଭ୍ରମୁଁ ଭ୍ରମୁଁ ଭୟେ ।୮।
ଲଲାଟରୁ ଗଣ୍ଡେ କର୍ଣ୍ଣ ଜିଣି ।
ଗୈରିକ ଚିତ୍ର ଲତିକାଶ୍ରେଣୀ ।
ନାସା ମଧ୍ୟଭାଗେ ଗୋରଚନା କଲି କହି ନୁହେଁ
ଶୋଭା ପରିମାଣି ଗୋ । କେଡ଼େ ତୋରା ।
ମଣି ନୀଳମଣିପଟା ପୋଥି ପରା ଗୋ ।
ତାକୁ ଉତ୍ତମ ଶ୍ଳୋକ ବୋଲନ୍ତି ଧୀରା ।
ଘନ ବିରଳ ବର୍ଣ୍ଣ ତ ପରମ୍ପରା
ପଦପଦକେ ପଣ୍ଡିତ ଚିତ୍ତକାରା ।
କଳିକାକୃତି ସୁବର୍ଣ୍ଣ ଚକି ଧରା ।୯।" ତୃତୀୟଛାନ୍ଦ ।

ଉପରି ଉଦ୍ଧୃତ କତିପୟ ପଂକ୍ତିରୁ ଦେଖାଯିବ ଯେ କବି ଯେଉଁଠାରେ ବର୍ଣ୍ଣନା କରିବାକୁ ବସିଅଛନ୍ତି ସେଠାରେ ତାହାଙ୍କର ଭାଷା ଉପରେ ଉପେନ୍ଦ୍ର ଭଞ୍ଜଙ୍କ ଭାଷାର ଛାୟାପାତ ହୋଇଅଛି । ସେ ଯେଉଁଠାରେ ସାଧାରଣ କଥା ବ୍ୟକ୍ତ କରିବାକୁ ଇଚ୍ଛା କରିଅଛନ୍ତି ସେଠାର ଭାଷା ଆଧୁନିକ କଥିତ ଭାଷା ସଦୃଶ । ପଣ୍ଡିତ ଲୋକ ଅତ୍ୟନ୍ତ ଚେଷ୍ଟା କଲେ ସୁଦ୍ଧା କଞ୍ଚା ଓଡ଼ିଆ ଲେଖିପାରେ ନାହିଁ । ସେହି କାରଣରୁ ସାଧାରଣ କଥାର ବର୍ଣ୍ଣନାରେ ସୁଦ୍ଧା ସାଧୁଶବ୍ଦର ଅଭାବ ନାହିଁ । ଭଞ୍ଜ କବିଙ୍କର ପଦଲାଳିତ୍ୟ ଏବଂ ଅଳଙ୍କରଣପଟୁତା ଏହାଙ୍କ କବିତାରେ

ଦୃଷ୍ଟିଗୋଚର ହୁଏ ନାହିଁ ।

"ଶ୍ରୀକୃଷ୍ଣଲୀଳାମୃତ"-ପ୍ରଣେତା ଲକ୍ଷ୍ମଣ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ପ୍ରାୟ ସମସାମୟିକ । ସେ ବୀରକେଶରୀ ଦେବଙ୍କ ୫୪ ଅଙ୍କରେ ଶ୍ରୀକୃଷ୍ଣ ଲୀଳାମୃତ ଶେଷ କରିଥିବାର ତହିଁରେ ଲେଖାଅଛି । ସେ କବିତାରେ ଭଞ୍ଜ କବିଙ୍କର ପନ୍ଥାନୁଗାମୀ ଥିଲେ । ତାହାଙ୍କ କବିତାରୁ ନିମ୍ନରେ କତିପୟ ପଂକ୍ତି ଉଦ୍ଧୃତ ହେଲା -

"ଆଳୀମାନେ ବାଳୀ ସଙ୍ଗେ ଫୁଲ ତୋଳି
ଭାଳ ଭାଳ ପ୍ରିୟା-ଭାଷକୁ
ବଢ଼ାଇ ପ୍ରେମସଙ୍କୁଳ କେ ଗମନ
କରନ୍ତେ ବକୁଳ ପାଶକୁ,
କେ କହେ, ଲଗାଇ ସେ ପରିହାସକୁ,
କେଶରେ ମଣ୍ଡନ କରିବାର ପାଇଁ
ଲୋଡ଼ୁ କି କେସର-ବାସକୁ ।୧।
ବାସ ଥାଇ ଯହିଁ ଅନୁରାଗ ନାହିଁ
ତାଠାରେ ଥୋଇ ଆଦରକୁ
ଅନଙ୍ଗରଙ୍ଗିଣୀ ହୋଇ ତୁ ରଙ୍ଗଣୀ
ନ ଆଣୁ କିକେ ନଜରକୁ',
ସେ କହେ 'ଯାହା ମନ ଯହିଁ ରସିଲା';
ଏତେ କହି ବାଳୀ
ବକ୍ରେ ନାସା ତୋଳି
ଭାଳି ମାଳି ଗୁନ୍ଥି ବସିଲା ।୨।" ଦଶମ ଛାନ୍ଦ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଶିଷ୍ୟ ଅଭିମନ୍ୟୁ ସାମନ୍ତସିଂହାର ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ତାହାଙ୍କ କବିତାଗୁଡ଼ିକ ଲେଖିଥିଲେ । ସେ ବହୁ ପରିମାଣରେ ଉପେନ୍ଦ୍ର ଭଞ୍ଜଙ୍କ ପନ୍ଥାନୁଗାମୀ । ମାତ୍ର ତାହାଙ୍କର ବିଶେଷତ୍ୱ ଏତିକି ଯେ ସେ ଭାଷାର ପୂର୍ବତନ ରୀତିଗୁଡ଼ିକ ପୁନରୁଦ୍ଧାର କରିବା ବିଷୟରେ ଯତ୍ନବାନ୍ ହୋଇଥିଲେ । ଆଧୁନିକ ସାହିତ୍ୟ ସେବକମାନଙ୍କୁ ଏହାଙ୍କ ଭାଷା ଅତି ମଧୁର ଲାଗିବାର କାରଣ ଏହି । ତାହାଙ୍କ ରଚିତ "ପ୍ରେମକଳା"ରେ ସେ ଏହିପରି ଆତ୍ମପରିଚୟ ଦେଇଅଛନ୍ତି;-

"ଜମ୍ବୁଦ୍ୱୀପେ ଭରତଖଣ୍ଡ ଏ ସାର ମହୀ
ମହୋଦଧି ଯାଜନଗ୍ର ମଧ ରମ୍ୟ ତହିଁ ଯେ ।
ସୁବିହାର ସ୍ଥାନ ଏଣୁ ଥିବାର ସେ ଦେଶ
ଗୋଳକୁଣ୍ଡ ନାମେ ଗ୍ରାମ ତହିଁରେ ପ୍ରକାଶ ଯେ ।

ବ୍ରାହ୍ମୀନଦୀ ସେ ଗ୍ରାମର ସୀମା ଭେଦି ବହି
ବିରାଟ ଗୋଧନ ରହିବାର ସ୍ଥାନ ସେହି ଯେ ।
ଏ ରାଜ୍ୟରେ ରାଜା ମିତ୍ରବଂଶୀ କ୍ଷତ୍ରିବର
ଇନ୍ଦ୍ରଜିତ ସାମନ୍ତସିଂହାର ନାମ ବର ହେ ।
ତାଙ୍କ ଜ୍ୟେଷ୍ଠ ସୁତ ଅଭିମନ୍ୟୁ ନାମ ମୋର
ଆଡ଼ମ୍ବର ରୀତିରେ ତ ସାମନ୍ତସିଂହାର ଯେ ।" ୧ମ ଛାନ୍ଦ ।

ନିମ୍ନରେ ତାହାଙ୍କ 'ବିଦଗ୍ଧଚିନ୍ତାମଣି'ରେ କୃଷ୍ଣଙ୍କ ରୂପ ବର୍ଣ୍ଣନାରୁ କତିପୟ ପଂକ୍ତି ଉଦ୍ଧୃତ ହେଲା । ଅବଶ୍ୟ ବିଦଗ୍ଧଚିନ୍ତାମଣିର ଏହା ଅତି ମନୋହର ଅଂଶ ନୁହେଁ । କିନ୍ତୁ ଏଥିରେ ଏତିକି ବିଶେଷତ୍ୱ ଅଛି ଯେ ଏହା ଉପେନ୍ଦ୍ର ଭଞ୍ଜଙ୍କ ଭାଷାର ସମ୍ପୂର୍ଣ୍ଣ ଅନୁରୂପ ।

"ମଞ୍ଜୁଳ ନୀଳ ଅଳକ ଲୋଳ ଲୀଳା
ଝଳି ଭାଳଦେଶେ ଦିଶେ
ଅମଳ କଳା କମଳକୁ ଭ୍ରସଳ ଛୁଆ
ବେଢ଼ିଛନ୍ତି ବି ସେ ସେ । ଭାଲ ।
କଣ୍ଟିବାର କେ କରିବ ମୂଳ ।
ଅର୍ଦ୍ଧ ଫରି କି କରିବା ତୁଳ ।
ଅର୍ଦ୍ଧଚନ୍ଦ୍ରହିଁ ବି ଲକ୍ଷ ଉଲ୍ଲ ।
ନାସା ପ୍ରଶଂସା ଭାଷାରେ ଧନ୍ୟ
ହେବ ତିଳ ସୁମନ ତୂଣୀର
ଅତି ଜ୍ୟୋତି ମୋତି ବସଣୀ କଷଣି
ଥୁଆ କି କାମଦେବର ସେ । ତୋରା ।
କବି ନିଉଛାଳ କରେ ପରା ।
ବିଧୂ କୋଳେ କି ରୋହିଣୀ ତାରା ।
କି ସେ ଦେବଗୁରୁ ଧରା କାରା ।
କସ୍ତୂରୀ ତିଳକ ଗୋରଚନା ଚିତା
ଊର୍ଦ୍ଧ୍ୱରେ ତା-ଚେତା ହରେ ।
କଟାରୀ ଜରୀ ଉଷ୍ଣୀଷ ଥୋଇବାର
ନେତ୍ରଶରେ ସ୍ଥାନ କରେ ସେ । ଶୋଭା ।
ରତିପତି ମତି ଅତିଲୋଭା ।
ରମା ଦେଖି ବଳେ ହେବେ ବିଭା ।
ତାହିଁ କେ ରଖିବ ଦନ୍ତ-ପ୍ରଭା ।" ୪୭ଶ ଛାନ୍ଦ – ବିଦଗ୍ଧ ଚିନ୍ତାମଣି ।

ସାମନ୍ତ ସିଂହାରଙ୍କ ପରେ ଆଧୁନିକ ଓଡ଼ିଆ ଭାଷା କାଳ । ସୁତରାଂ ତହିଁର ଆଲୋଚନା ଏ ପ୍ରବନ୍ଧର ଅନ୍ତର୍ଗତ ନୁହେଁ ।

ଉପସଂହାରରେ ପ୍ରାର୍ଥନା ଏତିକି ଯେ ଆପଣମାନେ ମୋହର ତ୍ରୁଟି ମାର୍ଜନା କରିବେ । ଏହି ପ୍ରବନ୍ଧରେ ନାମର ସମ୍ୟକ୍ ଉପଯୋଗୀ ବିଷୟ ସନ୍ନିବିଷ୍ଟ ହୋଇନାହିଁ, ମୋହପରି କ୍ଷୁଦ୍ରବୁଦ୍ଧି ଲୋକଠାରୁ ମଧ୍ୟ ସେପରି ଆଶା କରାଯାଇ ନ ପାରେ । ଏପରି ଗୋଟିଏ ପ୍ରବନ୍ଧ ପ୍ରକାଶିତ ହେଲେ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ମନ ଏ ଦିଗକୁ ଆକୃଷ୍ଟ ହେବ, ଏହାହିଁ ଏକମାତ୍ର ଆଶା ।



## ୫୪

# ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ଉପଭାଷାର ପରିଚୟ

### ସତ୍ୟ ପ୍ରସାଦ ଦାସ

ଦକ୍ଷିଣ ଓଡ଼ିଶାର ଲୋକମୁଖର ଭାଷା ସ୍ୱୟଂସମ୍ପୂର୍ଣ୍ଣ ଉପଭାଷା ନୁହେଁ, ବରଂ ଏହାକୁ ସାମଗ୍ରିକଭାବେ ଆଂଚଳିକ ଭାଷା କହିବା ଅଧିକ ଯୁକ୍ତିସଙ୍ଗତ ମନେହୁଏ । ଭାଷା ଉପଭାଷା ନୁହେଁ, ଉପଭାଷା ମଧ୍ୟ ଆଞ୍ଚଳିକ ଭାଷା ରୂପେ ପରିଗଣିତ ହେବନାହିଁ । ଉପଭାଷା ଓ ଆଞ୍ଚଳିକ ଭାଷା - ଏ ଦୁଇଟି ବିଷୟରେ ପ୍ରଥମେ ସ୍ପଷ୍ଟ ଧାରଣା ରଖିବା ଉଚିତ, ତା'ପରେ ଦକ୍ଷିଣ ଓଡ଼ିଶାର କଥିତ ଓଡ଼ିଆ ଭାଷା-ଉପଭାଷା କିମ୍ବା ଆଞ୍ଚଳିକ ଭାଷା ସେ ବିଷୟରେ ଆଲୋଚନା କରିବା ଉଚିତ ।

କୌଣସି ଏକ ଭାଷାଗୋଷ୍ଠୀର କ୍ରମବିକାଶପୂର୍ଣ୍ଣ ଜନସଂଖ୍ୟାରୁ ଉପଭାଷାର ଉନ୍ମେଷ ଓ ପ୍ରକାଶ ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ଭାଷା, ଭାଷାର ଅଞ୍ଚଳ ଏବଂ ତା'ର ବାକ୍‌ରୀତିର ସ୍ୱାତନ୍ତ୍ୟ ଯୋଗୁଁ ଅନେକ ସମୟରେ ଉପଭାଷାର ଉଦ୍ଭବ ଦିଗରେ ଯଥେଷ୍ଟ ପ୍ରଭାବ ପକାଇଥାଏ । ଜନସାଧାରଣଙ୍କ ମଧ୍ୟରେ ଭାବ ଆଦାନପ୍ରଦାନରେ ଅଭାବ ଓ ବିଚ୍ଛିନ୍ନତାର କାରଣ ଯୋଗୁଁ ଏହି ଉପଭାଷା ସୃଷ୍ଟି ହୋଇଥାଏ । ଉପଭାଷାର ଭାଷାତାତ୍ତ୍ୱିକ ବିକାଶ ହିଁ ମୂଳଭାଷାର ବ୍ୟୁତ୍ପତ୍ତି ଓ ବିକାଶ ଘଟାଇଥାଏ । ଭାଷାବିତ୍ G.A. Grierson ଓଡ଼ିଆ ଭାଷାର ଉପଭାଷା ସମ୍ପର୍କରେ ମତ ପ୍ରଦାନ କରି କହିଛନ୍ତି- "Oriya is remarkably free from dialectic variation" ଅର୍ଥାତ୍ ଓଡ଼ିଆ ଭାଷାରେ ଉପଭାଷାଗତ ଭିନ୍ନତା ନାହିଁ । କିନ୍ତୁ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଗ୍ରିଏରସନ୍ ଓଡ଼ିଆ ଭାଷାକୁ ଯଥାଯଥ ଭାବେ ବିଶ୍ଳେଷଣ କରି ନାହାନ୍ତି । କାରଣ ଓଡ଼ିଶାରେ ଅନେକ ଉପଭାଷାର ଉଦ୍ଭବ ଓ ବିକାଶ ହୋଇ ଅଦ୍ୟାପି ରହିଛି । ଓଡ଼ିଶାର ଉତ୍ତର ଓ ପଶ୍ଚିମାଞ୍ଚଳକୁ ବାଦ୍‌ଦେଲେ କେବଳ ଦକ୍ଷିଣାଞ୍ଚଳରେ ଯେତେସବୁ ଉପଭାଷା ରହିଛି, ସେଗୁଡ଼ିକ ହେଲା- ଦେଶିଆ, ଭତ୍ରୀ, ଝରିଆ, କୁଇ, କନ୍ଧ, ପରଜା, ଗାଦବା, ବଣ୍ଡା, ସୌରା, ରେଲୀ ପ୍ରାଣ ଇତ୍ୟାଦି ।

ଗୋଟିଏ ଭାଷା ଅଞ୍ଚଳ ଭେଦରେ ଲୋକଙ୍କ ମୁଖରେ ଭିନ୍ନ ଭିନ୍ନ ରୂପେ ଉଚ୍ଚାରଣ ହୋଇଥାଏ । ଏହି ଉଚ୍ଚାରଣଗତ ଭିନ୍ନତା ହିଁ ଭାଷାର ଆଞ୍ଚଳିକତା । କଥିତ ଓଡ଼ିଆ ଭାଷାରୁ

ଏହି ଆଞ୍ଚଳିକ ବିଶେଷତ୍ୱକୁ ଆଖି ଆଗରେ ରଖି ଚାରିଭାଗରେ ବିଭକ୍ତ କରାଯାଇଥାଏ, ଯଥା- କେନ୍ଦ୍ରୀୟ ଭାଷା (ଯେଉଁଠାରେ ଲିଖିତ ଓ କଥିତ ଭାଷା ପ୍ରାୟତଃ ସମାନ, ଯଥା- କଟକ, ପୁରୀ) ଉତ୍ତରାଞ୍ଚଳୀୟ ଭାଷା (ବାଲେଶ୍ୱର, ମୟୂରଭଞ୍ଜ, କେଉଁଝର) ପଶ୍ଚିମାଞ୍ଚଳୀୟ ଭାଷା (ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି, ବୌଦ) ଏବଂ ଦକ୍ଷିଣାଞ୍ଚଳୀୟ ଭାଷା (ଗଞ୍ଜାମ, କୋରାପୁଟ, ଫୁଲବାଣୀର କିଛି ଅଂଶ) ।

ଉପଭାଷା ନିମିତ୍ତ ଭାଷାକ୍ଷେତ୍ରରେ ଯେଉଁ ଆବଶ୍ୟକତା ରହିଛି, ଆଞ୍ଚଳିକ ଭାଷାଲୋଚନା ପାଇଁ ଠିକ୍ ସେହିଭଳି ଭାଷାକ୍ଷେତ୍ର ନିର୍ଦ୍ଧାରଣ କରିବା ଦରକାର । ବିଭିନ୍ନ ଭାଷାସ୍ରୋତର ପ୍ରବାହ ଓ ମିଶ୍ରଣ ଫଳରେ କଥିତ ଭାଷାର ଆଞ୍ଚଳିକ ରଙ୍ଗ ସ୍ଥାନାନ୍ତରଭେଦରେ ପରିବର୍ତ୍ତିତ ହୋଇଥାଏ । ଆଞ୍ଚଳିକ ଭାଷା ଓ ଉପଭାଷା – ଏ ଦୁଇଟିର ପାର୍ଥକ୍ୟ ବିଶେଷ ନୁହେଁ ଆଂଶିକ । ତଥାପି ଦୁଇଟିକୁ ଏକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରି ଦକ୍ଷିଣାଞ୍ଚଳ କଥିତ ଭାଷାକୁ "ଦକ୍ଷିଣାଞ୍ଚଳ ଉପଭାଷା" କହିବା ଅସଙ୍ଗତ ମନେହୁଏ ।

ଦକ୍ଷିଣାଞ୍ଚଳୀୟ ଭାଷାରେ କେତେକ ଉପଭାଷା ରହିଛି, ଯାହା ସ୍ୱତନ୍ତ୍ର ଜାତି ଓ ଗୋଷ୍ଠୀର ଉଚ୍ଚାରଣଗତ ନୂତନ ରୂପ ପ୍ରକ୍ରିୟା ପ୍ରକାଶ କରେ । ପୁଣି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏକାଧିକ ଭାଷାଗୋଷ୍ଠୀର ସାଂସ୍କୃତିକ ସମନ୍ୱୟ ହେଲେ, ସେଠାକାର ପ୍ରଚଳିତ କଥିତ ଭାଷାରେ ଏହାର ପ୍ରଭାବ ପଡ଼ିଥାଏ । ସୂକ୍ଷ୍ମ ଦୃଷ୍ଟିରୁ ବିଚାର କଲେ ଦକ୍ଷିଣ ଓଡ଼ିଶାର କଥିତ ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଉପଭାଷା ନ କହି ଆଞ୍ଚଳିକ ଭାଷା ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିବା ଅଧିକ ପ୍ରମାଣଭିତ୍ତିକ ମନେହେବ ।

ଆଦିବାସୀବହୁଳ ଦକ୍ଷିଣ ଓଡ଼ିଶାରେ ଓଡ଼ିଆ ବ୍ୟତୀତ ଅନେକ ଉପଭାଷାର ସ୍ୱଚ୍ଛନ୍ଦ ପ୍ରଚଳନ ଦେଖାଦେଇଥାଏ । ଅନେକ ଆଦିବାସୀ ଭାଷାର ବିକାଶ ଏଠାରେ ସମ୍ଭବ ହୋଇପାରିଅଛି । ଏକ ଭାଷା କ୍ଷେତ୍ର-ରୂପେ ଦକ୍ଷିଣାଞ୍ଚଳର ବୈଶିଷ୍ଟ୍ୟ ହେଉଛି ଯେ ଏହା ତିନୋଟି ଭାଷା – ପରିବାରର ସଙ୍ଗମସ୍ଥଳୀ । ମୁଣ୍ଡା ପରିବାରର ବିକୀର୍ଣ୍ଣ ଭାଷା ସମୁଦ୍ର ମଧ୍ୟରେ ଉତ୍ତର ଓ ପଶ୍ଚିମରୁ ଓଡ଼ିଆ, ଦକ୍ଷିଣରୁ ତେଲୁଗୁ ଓ ଦକ୍ଷିଣ ପଶ୍ଚିମରୁ ହାଲବି ଓ ଛତିଶଗଡ଼ି ଏହି କ୍ଷେତ୍ରରେ ପରସ୍ପର ସହିତ ମିଳିତ ହୋଇଛନ୍ତି । ସୁତରାଂ ଏହି ଅଞ୍ଚଳର ପ୍ରଧାନ ଭାଷା ଓଡ଼ିଆ ସହିତ ନିମ୍ନଲିଖିତ ଭାଷାଗୁଡ଼ିକ ମଧ ପ୍ରଚଳିତ ।

୧) ଆର୍ଯ୍ୟଗୋଷ୍ଠୀ- ଦେଶିଆ, ଭତ୍ରୀ, ଝରିଆ, ଲରିଆ, ହାଲବି

୨) ଦ୍ରାବିଡ଼ଗୋଷ୍ଠୀ- ତେଲଗୁ, କୁଇ, କନ୍ଧ, ପେଙ୍ଗୁ, ପାର୍ଜୀ, ଗଣ୍ଡୀ, କୟା

୩) ମୁଣ୍ଡାଗୋଷ୍ଠୀ- ସଓରା, ଗଦବା, ପାରେଙ୍ଗା, ବଣ୍ଡା ଇତ୍ୟାଦି ।

ଏହା ବ୍ୟତୀତ ଏହି ଅଞ୍ଚଳରେ ସାନ୍ତାଳୀ, ଭୂମିଜ, ମାହେଲି, ମିର୍ଦ୍ଧା, ମୁଣ୍ଡାରୀ ଇତ୍ୟାଦି ମୁଣ୍ଡାଭାଷା ପ୍ରଚଳିତ । ପୁଣି ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ, ବିଜୟନଗର ଓ ପୂର୍ବ ଗୋଦାବରୀ ଜିଲ୍ଲାରେ ଯେତେ ଓଡ଼ିଆ କହନ୍ତି ତା'ର ଶତକଡ଼ା ୨୦ଭାଗ ଲୋକ ପାଇଡ଼ି ପାମିତି, ଚାଟିଡ଼ି

ଇତ୍ୟାଦି ଉପଭାଷା ବ୍ୟବହାର କରନ୍ତି ।

ଗୋଟିଏ ଆଦିବାସୀ ଗୋଷ୍ଠୀର ନିକଟବର୍ତ୍ତୀ ଅଞ୍ଚଳରେ ଥିବା ଓଡ଼ିଆମାନେ ସେହି ଭାଷା ସହ ଘନିଷ୍ଠ ସମ୍ପୃକ୍ତ ଥାଆନ୍ତି । କେବଳ କୋରାପୁଟ ଜିଲ୍ଲାରେ ଅନେକ ଆଦିବାସୀ ଭାଷା ପ୍ରଚଳିତ, କିନ୍ତୁ ଦେଶିଆ ଭାଷା ଭଳି ଅନ୍ୟକୌଣସି ଭାଷା ଏତେ ପରିମାଣରେ ପ୍ରତିଷ୍ଠା ଲାଭ କରିପାରି ନାହାନ୍ତି । ଏଠାରେ କୋରାପୁଟ ଜିଲ୍ଲାର 'ଦେଶିଆ' ଏବଂ ଗଞ୍ଜାମ ଜିଲ୍ଲାର 'ରେଲୀ'-ଏହି ଦୁଇଟି ଉପଭାଷାର ସାମାନ୍ୟ ପରିଚୟ ପ୍ରଦାନ କରାଗଲା ।

## ଦେଶିଆ ଭାଷା :

କୋରାପୁଟ ଜିଲ୍ଲାର ଗୁଣୁପୁର ଓ ରାୟଗଡ଼ା ସବ୍‌ଡ଼ିଭିଜନକୁ ବାଦ୍‌ଦେଲେ, ଅନ୍ୟ ଚାରୋଟି ସବ୍‌ଡ଼ିଭିଜନ-ଜୟପୁର, କୋରାପୁଟ, ନବରଙ୍ଗପୁର ଓ ମାଲ୍‌କାନାଗିରିରେ ସାଧାରଣ ଲୋକେ ଦେଶିଆ ଭାଷା ବହୁଳଭାବେ ବ୍ୟବହାର କରିଥାଆନ୍ତି । ଏହି ଜିଲ୍ଲାର ପ୍ରତ୍ୟେକ ତଫ୍‌ସିଲଭୁକ୍ତ ଜାତିଗୁଡ଼ିକର ନିଜସ୍ୱ ଭାଷା ରହିଛି ତଥାପି ଏମାନେ ଅନ୍ୟମାନଙ୍କ ସହ କଥାବାର୍ତ୍ତା ହେଲାବେଳେ ଦେଶିଆ ଭାଷାରେ କଥାବାର୍ତ୍ତା ହେବାକୁ ଚେଷ୍ଟା କରିଥାଆନ୍ତି । ଉପରୋକ୍ତ ଚାରୋଟି ସବ୍‌ଡ଼ିଭିଜନର ସାଧାରଣ ଓଡ଼ିଆ ଲୋକଙ୍କଠାରୁ ଆରମ୍ଭ କରି ଶିକ୍ଷିତ ସମ୍ପ୍ରଦାୟ - ଓକିଲ, ବ୍ୟବସାୟୀ, ଡାକ୍ତର, ସରକାରୀ ଓ ବେସରକାରୀ କର୍ମଚାରୀବୃନ୍ଦଙ୍କ ପର୍ଯ୍ୟନ୍ତ ସମସ୍ତେ ଏଠାର ଆଦିବାସୀଙ୍କ ସହ ଦେଶିଆ ଭାଷାରେ ହିଁ କଥାବାର୍ତ୍ତା କରି ପରସ୍ପର ମଧ୍ୟରେ ଭାବ ବିନିମୟ କରିଥାନ୍ତି । ଦେଶିଆ ଭାଷାର ଶବ୍ଦସୂଚୀଟିଏ ନିମ୍ନରେ ପ୍ରସ୍ତୁତ କରାଯାଇଛି ।

## ଦେଶିଆ ଶବ୍ଦସୂଚୀ :

| ଦେଶିଆ | ଓଡ଼ିଆ |
|---|---|
| ଅଙ୍ଗା | ଜାମା |
| ଅନକା | ଚଟୁ |
| ଅଡ଼ା | ଧାନ ମାପିବା ପାତ୍ର ବିଶେଷ |
| ଅଇ | ହଳ |
| ଅଲସ | ଅଳସ |
| ଅଳସି | ଏକ ପ୍ରକାର ତୈଳ-ଜାତୀୟ ରବି ଫସଲ |
| ଅଁକାର | ଅହଂକାର, ଈର୍ଷା |
| ଆଁକି | ଆଖି |
| ଆଟୁ | ଭାଡ଼ି |
| ଆମ୍ | ଆମ୍ବ |
| ଇବାଟେ | ଏହି ବାଟରେ |

| | |
|---|---|
| ଇଁସା | ହିଂସା |
| ଉଦୁଲିଆ | ସ୍ୱେଚ୍ଛାରେ ବିବାହ ନିମନ୍ତେ ପଳାୟନ କରିବା |
| ଉଲି | ପିଆଜ (ତେ) |
| କଡ଼କି | କୋଡ଼ି, କୋଦାଳ |
| କସଲା | ଡାଳ |
| କଲିଆ | ଶିଆଳ |
| କାଉଡ଼ି | ଭାର, ବାହୁଙ୍ଗୀ (ତେ) |
| କାକର୍ | ଥଣ୍ଡା |
| କାଜେ | ନିମନ୍ତେ |
| କାଟା | ନିକିତି |
| କାସୁ | ପଇସା (ତେ) |
| କାଲ । | କଳା |
| କୁଇଁଲା | ପଚିଯିବା |
| କିରମାର | ଗୋଳମାଳ, କଳିଗୋଳ |
| କୁରଚି | ଚୌକି |
| କୁପା | ଗଦା (ତେ) |
| କୁମୁଡ଼ା | ବୋଇତାଳୁ ବା କଖାରୁ |
| କୁଟୁମ୍ | କୁଟୁମ୍ବ |
| କେରଙ୍ଗ | ଗଛବିଶେଷ |
| ଗଟ୍ନା | ଘୋଟଣା |
| ଗଡ଼ିଆ | ସହର ଲୋକ |
| ଗରେ | ଘରେ |
| ଗଁ (ଗଉଁ) | ଗହମ |
| (କଦଳୀ)ଗାଡ଼ା | କଦଳୀ କାନ୍ଦି |
| ଗାସ୍ | ଘାସ |
| ଗୁଡି | ହଳିଆ, ମୁଲିଆ |
| ଗୋରସ | ଖିର ବା ଦୁଧ |
| ଘାଘରି | ମାଟିହାଣ୍ଡି |
| ଟକନି | ଦନା ବା ଚାରିକୋଣିଆ ପତ୍ରଠୋଳା |
| ଚାତି | ଛତି |

| | |
|---|---|
| ଚାଟିରି | ଛତା |
| ଚାନ୍ସ | ସୁଯୋଗ |
| ଚାପଡ଼ା | ବଡ଼ ଧରଣର ପିମ୍ପୁଡ଼ି ବା କାଇ |
| ଚାଇ | ଛାଇ |
| ଚାଟି | ପିମ୍ପୁଡ଼ି |
| ଚିମରା | ନୀରବ |
| ଚିନି | ଚିହ୍ନି |
| ଚିଙ୍ଗିଡ଼ି | ଚିଙ୍ଗୁଡ଼ି |
| ଚେରଚନା | ଚିନାବାଦାମ |
| ଜମାନ୍ | ପୋଲିସ |
| ଜନ୍ | ଜହ୍ନ |
| ଜାନି | କନ୍ଧପୁରୋହିତ |
| ଝିଲା | ଝିଲା (ପିଲାର ସହ ଶବ୍ଦ) |
| ଜୟ୍ | ନିଆଁ |
| ଜୟକାଡ଼ି | ଦିଆସିଲି |
| ଟାପା | ଡାକ |
| ଟାପାଘର୍ | ଡାକଘର |
| ଟାଙ୍ଗି | କୁରାଢ଼ି |
| ଟିଅଁ | ଛୋଟ |
| ଟିର୍କି | ମଳଦ୍ୱାର |
| ଟୁଲ | ଜଡ଼ାତେଲ |
| ଟେମ୍‌ପ୍ରିଆ | ଗର୍ବୀ |
| ଠେଙ୍ଗୁଆ | ଅବିବାହିତ ଯୁବକ |
| ଡକରା | ବୁଢ଼ା |
| ଡକରି | ବୁଢ଼ୀ |
| ଡଙ୍ଗର | ପାହାଡ଼ |
| ଡାଲ | ପତ୍ର |
| ଡୁମା | ଭୂତ ପ୍ରେତ |
| ଡେଙ୍ଗା | ଲମ୍ବା |
| ଡେଟି | ଖୁଣ୍ଟି |

| | |
|---|---|
| ଡୁଙ୍ଗିଆ | ଧୂଆଁପତ୍ର |
| ତଲାଚାଟିରି | ତଳାରି, ତାଳପତ୍ର ଛତା |
| ତାପି | ରାଜମିସ୍ତ୍ରୀଙ୍କ କରଣି |
| ତାସ | ଚାଷ |
| (ଲାଉ) ତୁମ୍ମା | ତୁମ୍ବା (ଲାଉ) |
| ତୁରୁତୁରି | ଥରି ଥରି |
| ତେନ୍ତଲ୍ | ତେନ୍ତୁଳି |
| ଦାରୁ | ଜାଳେଣି କାଠ |
| ଦାଙ୍ଗଡ଼ା | ଅବିବାହିତ ଯୁବକ |
| ଦାଣ୍ଡାବାଡ଼ି | ଆଖୁଦଣ୍ଡା |
| ଦାତୁନ | ଦାନ୍ତକାଠି |
| ଦିସାରି | ପୂଜାରୀ, ପୁରୋହିତ |
| ଦୁକି ସୁକି | ଦୁଃଖୀ ସୁଖୀ |
| ଦେବ୍ତା | ଦେବତା |
| ଧଡ଼କା | ଚିରାକନା |
| ଧାକା | ମଦ |
| ଧାଙ୍ଗିଡ଼ି | ଯୁବତୀ |
| ନଲି | ବନ୍ଧୁକ |
| ନିନି | ଝିଅ |
| ନିକୁଆଇ | ଭଲରେ |
| ନିରୁଟ | ଅଭାବ |
| ପଇତି | ଡାଲି |
| ପକନା | ପଥର |
| ପଦା | ସାମାନ୍ୟ ଚିପଜମି |
| ପଚେ | ପଛେ |
| ପରବ | ପର୍ବ |
| ପଲା | ତଳି, ଚାରା |
| ପସନା | ଝାଳ |
| ପାଇ | ନାନୀ |
| ପାଇଟିଆଇଲ୍ବି | ଘାଲୁଆଣୀ |

| | |
|---|---|
| ପାଙ୍ଗିବା | ଗୁଣି କରିବା |
| ପାଙ୍ଗନିଆନି | ତାନ୍ତ୍ରିକ ସ୍ତ୍ରୀ |
| ପାତ୍ରି | ଚରିତ୍ରହୀନା |
| ପାଗୁଆ | ମାହାଳିଆ |
| ପାର୍କା | ଦୋପଇସି ମୁଦ୍ରା |
| ପୁରାନି | ଲୁଚାଇ ବା ଅଧିକା ମାଗିବା |
| ପିରି | ନଡ଼ା |
| ପୋ | ପୁଅ |
| ପେଡ୍ରା | ମାଙ୍କଡ଼ |
| ବଇରା | କାଳା ବ୍ୟକ୍ତି |
| ବକଡ଼ା | ଛେଳି |
| ବଡ଼ଲି | ବଡ଼ ସ୍ତ୍ରୀ, ଆଗ ସ୍ତ୍ରୀ |
| ବଡୁ | ବଡ଼ଦାଦା |
| ବନି | ରକ୍ତ |
| ବଇଲ | ଚାଷଜମି |
| ବାଙ୍ଗା | ବାଇଗଣ |
| ଝିଅ (ସ୍ତ୍ରୀ) | ବାଇଲେ |
| ବାଲିଫୁଲ | ଝିଅମାନଙ୍କୁ ସ୍ନେହରେ ସମ୍ବୋଧନ କରିବା |
| ବାନ୍ତୁ | ବଲ୍, ପେଣ୍ଡୁ |
| ବାଡ଼୍ନି | ଛାଞ୍ଚୁଣୀ |
| ବାକ୍ନା | କଥା |
| ବୁଆ | ବାଆ |
| ବୁଆରି | ସାନଭାଇର ସ୍ତ୍ରୀ |
| ବୁଇଲ୍ | ବଳଦ |
| ବେଁଟ | ଶିକାର |
| ବେଟ୍ | ଭେଟ, ମିଶିବା |
| ବେଡ଼ା | ଜମି |
| ବେ'ଢ଼ା | ମୁଦ୍ରା ବିଶେଷ |
| ବେଲ୍ | ବେଳ, ସୂର୍ଯ୍ୟ |
| ଭାଟ | ଘଇଁ |

| | |
|---|---|
| ଭେଜ୍‌ରି | ଟମାଟ |
| ମନ୍ତରସେନି | ଧାଇ |
| ମାଇଆଙ୍ଗଟି | ବୁଢ଼ା ଆଙ୍ଗୁଠି |
| ମାଇଝି | ସ୍ତ୍ରୀ, ନାରୀ |
| ମାନ୍ଦା | ଜଳ ଜଳ |
| ମାନ | ମାଣ |
| ମିସା | ମଧ୍ୟ |
| ମିରି | ମରିଚ |
| ମୁନୁସ | ସ୍ୱାମୀ |
| ମୁଟୁଲା | ମୋଟ, ବୁକୁଚା |
| ମରାମରା | ଶୁଖିଯାଇଥିବା |
| ରାମି | ବଣି |
| ସରଗି | ଶାଳଗଛ |
| ସତରା | ଶ୍ୱଶୁର |
| ସତ୍‌ରି | ଶାଶୁ |
| ସରାସରି | ଶେଷରେ |
| ସା | ସାହା |
| ସାକାଲ୍ | ସକାଳ |
| ସାରା | ତରକାରୀ, ପନିପରିବା |
| ସାଟାପାଟା | ଏମିତି ସେମିତି |
| ସାର ପତର | ତାସମୁଠା |
| ସାରତିକାରିଆନି | ଦୂତୀ (ପ୍ରେମିକ ପ୍ରେମିକାଙ୍କୁ ଯୋଗାଯୋଗ କରାଇବା ସ୍ତ୍ରୀ) |
| ସିମ୍ | ଶିମ୍ବ |
| ସିରା | ଦେବୀପୂଜକ, ଗୁଣୀ (ତାନ୍ତ୍ରିକ) |
| ଚେରସ୍‌ଟା | ଚେଷ୍ଟା |
| ସୁଜି | ଛୁଞ୍ଚ |
| ସୁକ୍‌ସି | ଶୁଖୁଆ |
| ହୁଟି | ଏହି |
| ହୁଗୁଟି | ସେହି |

| | |
|---|---|
| ଲନ୍ଦି | ନଦୀ |
| ଲବିଆ | ଝୁଡୁଙ୍ଗ |
| ଲାଇ | ଲିଆ |
| ଲାକିଡ଼ି | ପାଉଁଶ |
| ଲେଂଗି | ଲାଞ୍ଜ |

ପରିମାଣ ବାଚକ ଶବ୍ଦ -

| | |
|---|---|
| ଦେଶିଆ | ଓଡ଼ିଆ |
| ଅଲପ୍ | ଅଳ୍ପ |
| ଅଦେକ୍ | ଅଧେ, ଅର୍ଦ୍ଧେକ |
| କଣ୍ଡେକ୍ | କିଛି ପରିମାଣରେ |
| କେଡ଼େକ୍ | କେତେ |
| X | X |
| ତାଇଁରେ | ତହିଁରେ |
| ମାନ୍ | ମାନେ |
| କୋନ୍‌ବାଟେ | କେଉଁବାଟେ |
| କୋନେ | କିଏ |
| ଇଥାନେ | ଏହି ସ୍ଥାନରେ |
| କାଇଟା | କ'ଣ |
| କେନ୍ତା | କିପରି |
| X | X |

ସର୍ବନାମ

| | |
|---|---|
| ଆମ୍‌କେ | ଆମକୁ |
| ତୁଇ | ତୁ, ତୁମେ |
| ତାକେ | ତାକୁ |
| ମୁଇ | ମୁଁ |
| ମୋକେ | ମୋତେ |
| ହାଇମନ | ସେମାନେ |
| X | X |

ଦେଶିଆ କ୍ରିୟା ପଦ

| | |
|---|---|
| ଅଗେରା | ଚୁପ ରହିବା |

| | |
|---|---|
| ଅଦ୍ରିବା | ପଡ଼ିଯିବା |
| ଅଲପୋଡ଼ା | ହଳ ପୋଡ଼ା, ମଘାପୋଡ଼ି |
| ଆଇଲାସ୍ | ଆସିଲା |
| ଉତୁରିଲା | ଓହ୍ଲିଲା |
| ଏଲା | ହେଲା |
| ଓଇଲା | ହୋଇଲା |
| କଇଲା | କହିଲା |
| କିଦ୍ରିବା | ଘୂରିବା, ବୁଲିବା |
| କୁଇଁବା | ପଚିବା |
| କେଟିବା (ଖେଟିବା) | ପହଞ୍ଚିବା |
| ଖାଇଲୁସ | ଖାଇବା |
| ଖାଡ଼ା | ଠିଆହେବା |
| ଖେଦିବା | ଘରଡ଼ିବା |
| ଗାଲା | ଗଲା |
| ଘେନିବା | କିଣିବା |
| ଘୁଚା | ଘୁଞ୍ଚିଯାଅ |
| ଘୂଚାଇଦିଆ | ଘୁଞ୍ଚାଇଦିଅ |
| ଚଗିବା | ଚଢ଼ିବା |
| ତାବରା | କାମୁଡ଼ିବା |
| ଜାଇସି | ଯାଇଛି |
| ଜୁ | ଯିବା |
| ଡାକନା | ଡାକିଦିଅ |
| ଢାମ୍ପିବା, ଢାପ୍‌ନା | ବନ୍ଦ କରିବା |
| ବାଗିଦେଲା | ଧରିଦେଲା |
| ଦବୁଡ଼ିବା | ବୋହି ଆଣିବା (ବାରମ୍ବାର) |
| ଦୁଆରିବା | ଧାଇଁବା |
| ଦେଇତି | ଦିଅନ୍ତି |
| ନାପିବା | ମାପିବା |
| ନା'ଡ଼ରା | ଡରନାହିଁ |
| ପାଟାଇବା | ପଠାଇବା |

| | |
|---|---|
| ପାକାଇଲା | ପକାଇଲା |
| ପୂଜିବା | ବଳିଦେବା |
| ବାନ୍‌ଟା | ବନ୍‌ଟା, ଭାଗ |
| ବୁନ୍‌ବୁ | ବୁଣିବୁ |
| ବେଟିବା | ସଂଗ୍ରହ କରିବା |
| ବୋଇ | ବୋହି |
| ଭାର୍‌ଚି | ବାହାରିଛି |
| ରେ'ଲି | ରହିଲି |
| ର'ନା | ରହ |
| ସଙ୍ଗଇବି | ପଠେଇବି |
| ସାଙ୍ଗିଚି | ଡାକୁଛି |
| ସୁଆସ | ଶ୍ୱାସ |
| ହେଜିବା | ଚିନ୍ତା କରିବା |
| ହେଇସି | ହୋଇଛି |
| ଲାଗସି | ଲାଗୁଛି |

କୋରାପୁଟରେ ଓଡ଼ିଆଙ୍କ ମୁଖରେ ଦେଶିଆ ଭାଷାର ସ୍ୱଚ୍ଛନ୍ଦ ଓ ସ୍ପଷ୍ଟ ଉଚ୍ଚାରଣର କାରଣ ଏକାଧିକ ହୋଇପାରେ । ନିତିଦିନିଆ ଜୀବନଚର୍ଯ୍ୟାରେ ଆଦିବାସୀ ଲୋକଙ୍କ ସହ ଏମାନଙ୍କ ସମ୍ପର୍କ ଅତି ଘନିଷ୍ଠ । ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହଠାରୁ ଆରମ୍ଭ କରି ଶ୍ରମଦାନ ସମେତ ପ୍ରତ୍ୟେକ କ୍ଷେତ୍ରରେ ଏଠାକାର ଅଧିବାସୀମାନେ ଜନସାଧାରଣଙ୍କ ସହ ଅବାଧରେ ମିଳାମିଶା କରିବାକୁ ବାଧ ହୋଇଥାଆନ୍ତି । ଠିକ୍ ସେହିପରି ଜନସାଧାରଣ ମଧ ସେମାନଙ୍କ ଉପରେ ନିର୍ଭର କରିଥାଆନ୍ତି । ସରକାରଙ୍କ ଅନେକ ନୂତନ ଯୋଜନାର ପରୀକ୍ଷା ନିରୀକ୍ଷାର ସ୍ଥାନ ହେଲା – ଏହି ଅଧିବାସୀ-ଅଧୁଷିତ ମୁକ୍ତ ପ୍ରକୃତି ପ୍ରାଙ୍ଗଣ । ତେଣୁ ସରକାରୀ କର୍ମଚାରୀମାନେ ମଧ ଏମାନଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରିବାକୁ ଏକ ପ୍ରକାର ବାଧ ହୋଇଥାନ୍ତି । କିନ୍ତୁ ଆଜି ସେହି ସରଳ ଜୀବନଧାରା, ଆଧୁନିକ ସଭ୍ୟତାର ବାହୁଚ୍ଛାୟାରେ ଆଶ୍ରିତ ହୋଇ ମୌଳିକ ସତ୍ତା ହରାଇବାକୁ ବସିଲାଣି ।

କେତେକ ଦେଶିଆ ଶବ୍ଦ ସଂସ୍କୃତଶବ୍ଦରୁ ଉତ୍ପାଦିତ । ଏହି ଶବ୍ଦଗୁଡ଼ିକର ଅର୍ଥ ଅପରିବର୍ତ୍ତିତ । କିନ୍ତୁ ଉଚ୍ଚାରଣ ସହଜ ଲାଗି ରୂପଗତ ପରିବର୍ତ୍ତନ କେବଳ ହୋଇଛି ।

| ସଂସ୍କୃତ | ଦେଶିଆ | ଓଡ଼ିଆ |
|---|---|---|
| କାର୍ଯ୍ୟେ | କାଜେ | କାରଣରୁ |
| କର୍କର | କାକର୍ | ଥଣ୍ଡା, ଶୀତଳ |

| | | |
|---|---|---|
| ଚର୍ବଣ | ଚାବ | କାମୁଡ଼ିବା |
| ପାଷାଣ | ପାକ୍‌ନା | ପଥର |
| ପର୍ବ | ପରବ୍ | ପର୍ବ |
| ବଧୀର | ଭଇରା | କାଲା |
| ମନୁଷ୍ୟ | ମୁନୁଷ | ମଣିଷ |
| ଦାରୁ | ଦାରୁ | କାଠ |
| ଅହଂକାର | ଅଁକାର | ଈର୍ଷା |

ବତରା, ଝରିଆ ପ୍ରଭୃତି ଉପଭାଷା ସହ ଦେଶିଆ ଭାଷାର ସମ୍ପର୍କ କେତେକ ସ୍ଥଳରେ ସାମ୍ୟ ପରିଲକ୍ଷିତ ହୋଇଥାଏ । ଏହି ଭାଷାର ଲିଖିତ ସାହିତ୍ୟ କିଛି ନ ଥିଲେ ହେଁ, ଦେଶିଆ ବୋଲିର ମର୍ମସ୍ପର୍ଶୀ ଲୋକଗୀତ ଏଠାରେ ବହୁଦିନ ହେଲା ପ୍ରଚଳିତ ହୋଇଆସୁଅଛି । ଏହାର ବାକ୍ୟ ରଚନା ପଦ୍ଧତି ଶୃଙ୍ଖଳାବଦ୍ଧ । ଦେଶିଆ ଉପଭାଷାର ସର୍ବନାମ, ପ୍ରତ୍ୟୟ, ଲିଙ୍ଗ, ବାକ୍ୟବିନ୍ୟାସ ପ୍ରଭୃତି ବିଶେଷଣାତ୍ମକ ଅଧ୍ୟୟନ ଡକ୍ଟର ଖଗେଶ୍ୱର ମହାପାତ୍ର ସ୍ୱକୀୟ ଦକ୍ଷିଣାଞ୍ଚଳୀୟ ଓଡ଼ିଆ ଗ୍ରନ୍ଥରେ ବିଶଦଭାବେ ବର୍ଣ୍ଣନା କରିଅଛନ୍ତି । କୋରାପୁଟ ଜିଲ୍ଲାର ଅଧିକାଂଶ ଓଡ଼ିଆଙ୍କ ମୁଖରେ ଏ ଉପଭାଷା ବ୍ୟବହୃତ ହେବା କାରଣରୁ ଏଠାରେ ଏହାର ସ୍ୱଳ୍ପ ସୂଚନା ଦିଆଗଲା ।

ଓଡ଼ିଆ ଲିଖିତ ସାହିତ୍ୟରେ ଦେଶିଆ ଭାଷା ପ୍ରଚଳନ ଦେଖିବାକୁ ମିଳିଥାଏ । ଏପରିକି ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଗୋପୀନାଥ ମହାନ୍ତିଙ୍କ ରଚିତ 'ପରଜା' ଓ 'ଅମୃତର ସନ୍ତାନ' ଉପନ୍ୟାସଗୁଡ଼ିକରେ ଅନେକ ଦୃଷ୍ଟାନ୍ତ ରହିଛି । ଜୟପୁର ବିକାଶ ପ୍ରତିଷ୍ଠାନ ତରଫରୁ କ୍ଷୁଦ୍ର କେନ୍ଦ୍ରିଗୀତ ପ୍ରକାଶିତ ହୋଇଛି । ନବରଙ୍ଗପୁରରୁ ପ୍ରକାଶିତ 'ଜନସଖା' ସାପ୍ତାହିକ ପତ୍ରିକାରେ ଦେଶିଆ ଶବ୍ଦର ବ୍ୟବହାର ଦେଖାଯାଏ । ଗୋଟିଏ ମୁଦ୍ରିତ ଗଳ୍ପରେ ଦେଶିଆ ଭାଷା-ବ୍ୟବହାରର ଦୃଷ୍ଟାନ୍ତଟିଏ ନିମ୍ନରେ ପ୍ରଦାନ କରାଗଲା ।

"ବଣ୍ଡକା- ଏବେ ତ ଭୂତି ପାଇଁ ମିଳିତେ, କାଇଟା ଖାଇ ବଞ୍ଚିବୁରେ ସମ୍ବାରୀ ପିଲାମନ୍‌କେ କେମିତି ପୋଷିବୁ ?

ସମ୍ବାରୀ- ସା'କାର୍ ଘର୍‌କେ ଯା, ସା'କାର୍‌କେ କଇଦେକ୍, ସୁଆଁ ନଇଁଲେ ମାଣ୍ଡିଆ ପୁଟେ ନାଟେ ଦେଇଲା । ପଛେ, ଧାନକାଟା ବେଲ୍‌କେ ଛିଡ଼େଇଦେବୁ ନାଇଁ କି ? ସା'କାର ଶୁଣ୍‌ଲେ, ଶୁଣ୍‌ସି ।

ବଣ୍ଡକା- ନାଇରେ ସମ୍ବାରୀ, ସାକାରର କଥା ତୁଇ ଜାଣଲାର୍ ନାଇଁ, ଡକ୍ରା ନିକୋ କରି ପେଟକେ ଖାଏ ନାହିଁ, କାକେ ମିସା ଦିଏ ନାଇଁ ।

ସମ୍ବାରୀ- ନାଇଁ ଦେସି ବୋଲି ତୁଇ କେନ୍ତା ଜାଣଲୁ ? ଆଗତା ଯାଇ ମାଗି ଦେଖ୍ କାଇ ବୋଲସି ଶୁଣ୍, ଚୁଛେଇ ଚୁଛେଇ ତାକେ ଦ କିଏ ନାଇଁ ପାରିତେ, ଧାନ ପାଚଲେ

ତାର ବେଢ଼ା ଥାନୁ ଧାନ ନାଇଁ କାଟିଦେବୁ କି ?

ବଣ୍ଡକା- ସା'କାର ମାୟପୁ, ମକେ ଦୁଇ ପୁଟି ମାଣିଆ ଦେଇରା, ତର ଧରମ ହେଇସି । ଆମେ ମୁନୁସ୍, ମାଇଜି ମିଶିକରି ଧାନକାଟି ଲାଗବୁ । ଭୁତି ଥାନୁ ଛିଡ଼େଇଦେବୁ ।"

**ରେଲୀ ଭାଷା :**

ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ସବ୍‌ଡ଼ିଭିଜନ ଓ କୋରାପୁଟ ଜିଲ୍ଲାର ଗୁଣୁପୁର ସବ୍‌ଡ଼ିଭିଜନ ଅଞ୍ଚଳରେ ଏକ ସ୍ୱତନ୍ତ୍ର ତଫସିଲଭୁକ୍ତ ଜାତି ବସବାସ କରିଥାନ୍ତି । ଏମାନେ ହେଲେ- ଚାଞ୍ଚିଡ଼ି/ଚାଚିଡ଼ି/ଚାକିରି/ରେଲୀ । ଏମାନଙ୍କ ଦ୍ୱାରା ବ୍ୟବହୃତ କଥିତ ଭାଷା ହିଁ ରେଲୀ ଭାଷା । ସାଧାରଣତଃ ଆଦିବାସୀଙ୍କ (ସୌରା, କନ୍ଧ, ପାଣ) ଠାରୁ ବନଜାତ ଫଳମୂଳ କ୍ରୟ କରି, ଏମାନେ ଗ୍ରାମ ଓ ସହରରେ ତାହା ବିକ୍ରୟ କରି ଜୀବିକା ନିର୍ବାହ କରିଥାନ୍ତି । ଏପରିକି ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ, ପଲାସା, ଇଛାପୁରମ୍, ସୋମପେଣ୍ଟା, ବିଜୟନଗରମ୍ ଓ ପାର୍ବତୀପୁରମ୍ ପ୍ରଭୃତି ଅଞ୍ଚଳଗୁଡ଼ିକରେ ଏମାନେ ସ୍ଥାୟୀ ବାସିନ୍ଦା ରୂପେ ରହିଆସୁଛନ୍ତି । ଏମାନଙ୍କ କଥିତ ଭାଷାରେ ଦ୍ରାବିଡ଼ ଭାଷାର ପ୍ରଭାବ ମାତ୍ରାଧିକ ନୁହେଁ । କେତେକ ଶବ୍ଦଗତ, ଉଚ୍ଚାରଣଗତ ସ୍ୱାତନ୍ତ୍ର୍ୟ ଏମାନଙ୍କ ଭାଷାରେ ପରିଲକ୍ଷିତ ହୋଇଥାଏ । ବ୍ୟବସାୟ ସୂତ୍ରରେ ସୌରା, କନ୍ଧ, ପାଣ ଆଦି ଭାଷା ସହ ଏମାନେ ଯେଉଁଭଳି ଭାବେ ପରିଚିତ, ତଦ୍ରୂପ ପଡ଼ୋଶୀ ଆନ୍ଧ୍ରର ତେଲୁଗୁ ଭାଷା ସହିତ ଏମାନଙ୍କ ସମ୍ପର୍କ ଅତି ଘନିଷ୍ଠ । ତେଣୁକରି ଏମାନେ ତିନୋଟି ଭାଷା ଯଥା- (୧) ସୌରା ଓ କନ୍ଧ, (୨) ଓଡ଼ିଆ ଓ (୩) ତେଲୁଗୁ ସ୍ୱାଭାବିକ ଭବରେ ବ୍ୟବହାର କରିଥାନ୍ତି । ନିମ୍ନରେ ଏହି ଉପଭାଷାର ଶବ୍ଦସୂଚୀ ସହ ଏହାର ଭାଷାତାତ୍ତ୍ୱିକ ବିଶେଷତ୍ୱ ଉପରେ କିଞ୍ଚିତ୍ ଆଭାସ ମାତ୍ର ପ୍ରଦାନ କରାଗଲା ।

**ରେଲୀ ଭାଷାର ଶବ୍ଦସୂଚୀ :**

| ରେଲୀ | ଓଡ଼ିଆ |
|---|---|
| ଆତା | ପିଉସୀ |
| ଆନ୍ନା | ବଡ଼ଭାଇ |
| ଆପ୍ପା | ନାନୀ, ବଡ଼ଭଉଣୀ |
| ଆଇଲାର ଆଚି | ଆସିବାର ଅଛି |
| ଆମିଲା | ଆମ୍ବିଳ, ତାରୁ ଅର୍ଥରେ ଏହା ମଧ୍ୟ ବ୍ୟବହୃତ |
| ଏଇକା | ମୂଷା (ତେ) |
| କମଲା | କମଳା |
| କନ୍ଦା | କନ୍ଦମୂଳ |
| କରମା | ନାର୍ଙ୍ଗି, କରୁଣା (ଫଳବିଶେଷ) |

| | |
|---|---|
| କଙ୍ଗା | ବଗ |
| କଣ୍ଡାଗୁରି | କୁଟୁରା |
| କାଇକରି | ଖାଇକରି |
| କାଥା | କଥା |
| କାମାନା | ଭଲକରି |
| କାଆଁଡ଼ା | କଣ |
| କାନାଟେ | କଣାରେ, ଗାତରେ |
| କାଡ଼ା | ଘୁଷୁରୀ ଛୁଆ |
| କାଞ୍ଚୁଗିନା | କଂସା ବା ପିତ୍ତଳର ଗିନା |
| କିଁକା | ଡାକ, ରଡ଼ି ଛାଡ଼ିବା |
| କିଟିକୁ | ଝରକା (ତେ) |
| କୁମାରି ସାହି | କୁମ୍ଭାର ସାହି |
| କେଦିଲି | କଦଳୀ |
| କେଲା | କଲା |
| କୋପଟେ | କୋପରେ, ରାଗରେ |
| ଖମାଲୁ କନ୍ଦା | ଖମ୍ବଆଳୁ, ଦେଶୀଆଳୁ |
| ଖଇ ବାଇଙ୍ଗି | ବଙ୍କା ହୋଇଥିବା ଭାରବାହୀ କାଠ |
| ଖାଡ଼ା | ଖଡ଼ା |
| ଖାନ୍ତି | କାନ୍ଥ |
| ଖେଜ | ଖଜା |
| ଖେଦିବା | ଘଉଡ଼ିବା |
| ଖଜିରି | ଖଜୁରୀ |
| ଗମିରି | ଗମ୍ଭିରୀ |
| ଗାର୍‌ଦି | ଗଧ (ତେ) |
| ଗାଲେ | ଗଲେ |
| ଗିଂଜେ | ପିଟାରେ |
| ଗିନା | ରସପାତ୍ର |
| ଗୁଡ଼ି | କଣା, ଅନ୍ଧ |
| ଗୁସୁରି | ଘୁଷୁରି |
| ଗୁଟେ | ଗୋଟିଏ |

| | |
|---|---|
| ଗେଗିଆହାଣ୍ଡି | ପିତ୍ତଳହାଣ୍ଡି |
| ଗେଜି | ଗଛ |
| ଘାଡ଼ା | କିଲୁଣି, ଗେଜା |
| ଘେର | ଘର |
| ଚଗିବା | ଚଢ଼ିବା |
| ଚାଟୁ | ଚଟୁ-ବେଲା |
| ଚେଡ଼ି | ନିକର (Half pant) |
| ଚିକା | ଲୋଭ (ତେ) |
| ଚେପୁଲୁ | ଯୋତା |
| ଛଟା | ଛୋଟା |
| ଛାପା | ଛପା (ବାଉଁଶରେ ନିର୍ମିତ) |
| ଛେଣ | ଛଣ |
| ଛେଂଚି | ଝୁଲା, ମୁଣା |
| ଛେଡ଼ି | ନିକର |
| ଜଇ | ନିଆଁ |
| ଝାଂଟା | ଶିମ୍ବ, ଝଟା |
| ଝାଡ଼ | ବଣ |
| ଡିମ୍, ଡିମି | ଡିମ୍ବ, ଅଣ୍ଡା |
| ଡେରିଆନିଲା | ଭୟ କରିବା |
| ଢାଂପୁଣି | ଢାଂକୁଣି, ଘୋଡ଼ଣି |
| ତରନ୍ | ତୋରାଣି |
| ତସଲା | ରସରେ ନିର୍ମିତ ପାତ୍ର |
| ତାଟିଆ | ଛୋଟ ରସ ଗିନା |
| ତାତା | ଗୋସେଇଁ ବାପା |
| ତାଲୁପୁ | କବାଟ (ତେ) |
| ତାପ | ଚାଷ |
| ତି | ତୁ |
| ତେଲ | ତଳେ |
| ତୁଆଲ | ଟୁବାଲ, ଟାଓ୍ୱାଲ |
| ଥନ୍ତଲି | ତେନ୍ତୁଳି |

| | |
|---|---|
| ଦଲି | ଦୋଳି |
| ଦାରାବନ୍ଦାଲୁ | ଦ୍ୱାରବନ୍ଧ (ତେଲୁଗୁର 'ଲୁ' ପ୍ରତ୍ୟୟର ପ୍ରଭାବ) |
| ଦୁତି | ଧୋତି |
| ଧୁନି | ଧନୁ |
| ପନ୍‌କାତି | ପନିକି |
| ପଲାମକୁ | ଚିଲକୁ, ଝମିକି |
| ପଡ଼ିଯିବା | ପୋଡ଼ିଯିବା |
| ପାତି | ବାଦୁଡ଼ି |
| ପାସାନି | ଛଟିକି (ଭାତଗାଳିବା ପାଇଁ ବାଉଁଶ ପାତିରେ ଏହା ତୟାର ହୋଇଥାଏ ।) |
| ପାର୍ଡୁ | ନିଶୁଣି |
| ପୁତୁରା ପୁଅ | ପୁତୁରା |
| ପୁରାସକା | ପୁରାଜାମା |
| ପେନକା | ବାଳ |
| ପେୟା | ବାଛୁରୀ |
| ପାଇଟି | ପାଇଟି, କାମ |
| ଫାଦାକୁ | ପଦାକୁ, ବାହାରକୁ |
| ଫାନ୍ଦା | ଫନ୍ଦା, କୌଶଳ |
| ଫାକେ | ପାଖରେ |
| ଫିନି | ପିଣି, ପୁଣି |
| ଫିଣ୍ଡା | ପିଣ୍ଡା |
| ବଉଁଶୁ | ବାଉଁଶ |
| ବବା | ଦଦେଇ |
| ବନ୍ତା | କନ୍ଥା, ଗନ୍ଥା |
| ବଲିଆ କୋଲି | ଭାଲିଆ କୋଳି |
| ବାଲଙ୍ଗି | ଭାରବାହୁଙ୍ଗାର ସିଧା କାଠି |
| ବାବା | ମାମୁଁ ପୁଅ ବଡ଼ଭାଇ |
| ବାବାମାରଦି | ବଡ଼ଶଳା |
| ବାଡ଼ିଆର | ବାଡ଼ିଘର |
| ବାତୁ | ହଂସ |

| | |
|---|---|
| ବାଗ୍ | ବାଘ |
| ବାନ୍ଧୁଲି | ବାନ୍ଧିଲି |
| ବିଡ଼ି | ପାଣି ରଖିବା ମାଟିହାଣ୍ଡି |
| ବୁଆ | ବାପା |
| ବେନ୍ନୁ | ଚାଳ ଘରର ଉପର ଅଂଶ, ମଥା |
| ଭନ୍‌ଜା | ଭଣଜା |
| ଭନ୍‌ଜି | ଭାଣିଜୀ |
| ଭାକାନା | କଥା, ଗପ |
| ଭାଆଇ | ଭାଇ |
| ଆବିଆନ୍‌ଲା | ଭାବିଲା |
| ଭେଇଁନି | ଭଉଣୀ |
| ମଇଁଦର | ମହେନ୍ଦ୍ର (ପର୍ବତ) |
| ମଉସୁ | ମାସଂ |
| ମଇର | ମୟୂର |
| ମାମୁ | ଶ୍ୱଶୁର |
| ମାଠ | ଚାଦର |
| ମାଟୁ | ମଳା (ମାଟିହାଣ୍ଡି ରଖିବା ପାଇଁ ନଡ଼ା କିମ୍ବା ବାଉଁଶରେ କରିବା ମୁତୂଳା) |
| ମି | ମୁଁ |
| ମୁକା | ଖଣ୍ଡ (ତେ) |
| ମୁଇ | ମୁଁ |
| ମେନ୍’ତା | ପିଉସୀ |
| ମେନାମାମୁଁ | ମାମୁଁ |
| ମେରସିଂଗା ପତ୍ର | ଭୃଗସଙ୍ଗ ପତ୍ର |
| ରଗଡ଼ି | ଟାଣକରି |
| ସକା | ଜାମା |
| ସାଆପ | ସାପ |
| ସାଗଡ଼ାଲ | ପନିପରିବା |
| ସାଲା | ମାମୁଁ ପୁଅ ସାନଭାଇ, ସାନଶଳା |
| ସାଲି | ଶାଳି |

| | |
|---|---|
| ସାନମା | ଖୁଡ଼ୀ |
| ସାରଲା | ପେଜ ରଖିବା ହାଣ୍ଡି |
| ସୀମାକନ୍ଦା | କାଠଆଳୁ |
| ସୀମାତୁବା | ସୀମା କଅଁ |
| ସିକାମୁ | ଗାଞ୍ଜିଆ, ସୂତା ଜାଲର ଛୋଟ ମୁଣା |
| ହାଁକି | ଆଖି |
| ଲିଙ୍ଗି | ଲୁଙ୍ଗି |
| ଲିମା | ଲେମ୍ବୁ |
| ଲେଂକି | ଲାଞ୍ଜ |

**ରେଲୀ ଭାଷାର ଉଚ୍ଚାରଣଗତ ସ୍ୱାତନ୍ତ୍ର୍ୟ :**

(କ) ସାଧାରଣଭାବେ ଏମାନେ ଶବ୍ଦ ଓ ବାକ୍ୟକୁ ଲମ୍ବାଇ କରି କହିଥାଆନ୍ତି ।

ସାପ-ସାଆପ୍, ଭାତ-ଭାଆତ୍

(ଖ) ଅ'କାରନ୍ତ ଓଡ଼ିଆ ଶବ୍ଦଗୁଡ଼ିକ ଏ'କାରନ୍ତରେ ଉଚ୍ଚାରଣ କରିଥାଆନ୍ତି ।

ଘର-ଘେର ଖଦ୍ଧା-ଖେଦ୍ଧା

ଗଛ-ଗେଛ ଖଟ-ଖେଟ

(ଗ) ଅଳ୍ପ ପ୍ରାଣଧ୍ୱନି ମହାପ୍ରାଣଧ୍ୱନିରେ ପରିବର୍ତ୍ତିତ ହୋଇଥାଏ ।

ପାଇଟି-ଫାଇଟି ପିଣି-ଫିଣି

(ଘ) ସଂସ୍କୃତ ଶବ୍ଦର ସହଜ ଉଚ୍ଚାରଣ କରିଥାନ୍ତି ।

ମହେନ୍ଦ୍ର > ମଇଁଦର = ମହେନ୍ଦ୍ର

ବ୍ୟାଘ୍ର > ବାଗ୍ = ବାଘ

(ଙ) କେତେକ ତେଲୁଗୁ ଶବ୍ଦର ପ୍ରୟୋଗ ଦେଖାଯାଏ ।

ତାଲୁପୁ-କବାଟ ମୁକା-ଖଣ୍ଡ

ଏଲକା-ମୂଷା ଗାରଦି-ଗଧ



# ପଶ୍ଚିମାଞ୍ଚଳୀୟ ବଲାଙ୍ଗୀର ଆଞ୍ଚଳିକ ଉପଭାଷାର ବର୍ଣ୍ଣନାତ୍ମକ ବିଶ୍ଳେଷଣ

ସନ୍ତୋଷିନୀ ପଣ୍ଡା

ପଶ୍ଚିମାଞ୍ଚଳୀୟ ବଲାଙ୍ଗୀର ଆଞ୍ଚଳିକ ଉପଭାଷା ଯଦିଓ ଜନଚକ୍ଷୁର ଅନ୍ତରାଳରେ ଲୁକ୍କାୟିତ ତଥାପି ଏହା ଏକ ସ୍ୱତନ୍ତ୍ର ସ୍ୱୀକୃତି ଦାବୀକରେ, ଆଞ୍ଚଳିକ ଭାଷା ଦୃଷ୍ଟିରୁ । ଉପଯୁକ୍ତ ଅଧ୍ୟୟନର ଅଭାବରୁ ଏପର୍ଯ୍ୟନ୍ତ ଏହି ଲୋକଭାଷା ଅପାଂକ୍ତେୟ ହୋଇଉଠିଛି । ଏହାର ପରିଧି ମଧ୍ୟରେ ପଶ୍ଚିମ ଓଡ଼ିଶାର ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲା ସମେତ ଫୁଲବାଣୀ ଜିଲ୍ଲାର ବଉଦ ମଧ୍ୟ ଆସୁଛି । ଓଡ଼ିଶା ଓ ମଧ୍ୟପ୍ରଦେଶ ସୀମାନ୍ତରେ ସୁନ୍ଦରଗଡ଼ ଜିଲ୍ଲାର ତଳାସରାଠାରୁ କଳାହାଣ୍ଡିର ଖଡ଼ିଆଳ ପର୍ଯ୍ୟନ୍ତ ଓ ପୂର୍ବ-ଉତ୍ତରରେ ବଣାଇଗଡ଼ଠାରୁ ପୂର୍ବକୁ ବଉଦର କୁମାରୀ ତଥା ଦକ୍ଷିଣରେ ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ଏହାର କ୍ଷେତ୍ର ବିସ୍ତୃତ । କ୍ଷେତ୍ର ବାହାରେ ମଧ୍ୟପ୍ରଦେଶର ସୀମାନ୍ତ ଜିଲ୍ଲାମାନଙ୍କରେ ଏହି ଲୋକଭାଷା ମୁଖ୍ୟତଃ ପ୍ରଚଳିତ । ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ ଏହାର

| | |
|---|---|
| ଦ୍ରାଘିମା (ପୂର୍ବ) | ୮୨°-୪୧' ଏବଂ |
| | ୮୪°-୧୬' |
| ଅକ୍ଷାଂଶ (ଉତ୍ତର) | ୨୦°-୯' |
| | ୨୧°-୧୧' |

ଏବଂ କ୍ଷେତ୍ରଫଳ- ୮, ୯୧୩ ବର୍ଗ : କି.ମି. । (୨) ବିଭିନ୍ନ ଆଦିବାସୀ ଭାଷା (ମିରଚା, କୁଇ, ଶିକାର, ଟୁକେଲ, ଦେବ୍‌ତା) ହିନ୍ଦୀ (କେଲା, ମେହେନତ୍ ସବ୍‌ଜି, ମାୟା, ମୁଗ୍‌ଫଲି, ହମେସା) ଓ ତେଲୁଗୁ (ଗୁଡ଼ି ଗରା)ର ପ୍ରଭାବ ବିଶେଷତଃ ଧ୍ୱନିତତ୍ତ୍ୱର ସ୍ୱାତନ୍ତ୍ରତା (peculiarity) ରୂପ ଓ ବାକ୍ୟରଚନା (syntactical construction) ଦୃଷ୍ଟିରୁ ବଲାଙ୍ଗୀର ଉପଭାଷାର ଯେଉଁ ସ୍ୱାତନ୍ତ୍ରତା ରହିଛି, ତାହାକୁ ଅସ୍ୱୀକାର କରିହେବନି । ଏହାର କଥ୍ୟ ଭାଷାରେ ବ୍ୟଞ୍ଜନାନ୍ତ ଶବ୍ଦର ବହୁଳ ପ୍ରୟୋଗ ଓ ଉଚ୍ଚାରଣରେ ଯେଉଁ ଏକ ବିଳମ୍ବିତ ଝଙ୍କାର ଅନୁଭୂତ ହେଉଥାଏ - ତାହା ଯେତିକି ସୁଲଳିତ, ସେତିକି ରୁଚି ମଧୁର ମନେହୁଏ। ଯୁଗ

ବ୍ୟଞ୍ଜନ 'ଙ'ର ସ୍ୱତନ୍ତ୍ର ସ୍ଥିତି ଏ ଉପଭାଷାରେ ନାହିଁ । ଶବ୍ଦର ଆଦ୍ୟସ୍ଥିତିରେ ଅର୍ଦ୍ଧ-ସଂବୃତ୍ତ 'ଓ' ସ୍ୱରଧ୍ୱନି ଏଥିରେ ସଂବୃତ୍ତ 'ଉ' ସ୍ୱରରେ ପରିଣତ ହୁଏ । ଦ୍ରଷ୍ଟବ୍ୟ – ଗୋଡ଼ > ଗୁଡ଼, ଗୋଳମାଳ > ଗୁଲ୍‌ମାଲ, ଦୋକାନ > ଦୁଖାନ୍, ଦୋଳି > ଦୁଲି, ଧ୍ୱନିକ୍ଷେତ୍ର ଅନ୍ତଃସ୍ଥ ବର୍ଣ୍ଣ 'ଳ' ସ୍ଥାନରେ 'ଲ'ର ବ୍ୟବହାର, ଦ୍ର : ବାଳ > ବାଲ, ମାଳ > ମାଲ୍, ବେଳ > ବେଲ, ମୂର୍ଦ୍ଧନ୍ୟ 'ଣ' ସ୍ଥାନରେ ଦନ୍ତ୍ୟ 'ନ' ଦ୍ର: ମୁଣ୍ଡା > ମୁନା, ଅଣିଣ > ଅଶିନ୍, ରସଣ > ଲେସୁନ୍ 'ଡ' ସ୍ଥାନରେ 'ର' ଦ୍ର: ଦଉଡ଼ି > ଦଉରି, ନଡ଼ିଆ > ନରିଆ, ବଡ଼ି > ବରି ପ୍ରଭୃତିର ପରିବର୍ତ୍ତନ ଏଥିରେ ସୁସ୍ପଷ୍ଟ । ଅଳ୍ପଭିନ୍ନ ଦୁଇଟିଧ୍ୱନି ଭିନ୍ନ ଅର୍ଥପ୍ରକାଶ କରି ଏଥିରେ ପୃଥକ୍ ଧ୍ୱନିଗ୍ରାମ (separate phoneme) ହୁଏ । ଆଦ୍ୟ ବିରୋଧ –

/ପ/ /ଫ/ /ପଲ୍/ଫଲ୍/, /ପନା/ଫନା/ ।

/ଟ/ /ଠ/ /ଟନା/ /ଠନା/ ।

/ଚ/ /ଛ/ /ଚନା/ /ଛନା/ ।

/କ/ /ଖ/ /କୁଲି/ /ଖୁଲି/, /କଲା/ /ଖଲା/ ।

/ଡ/ /ଢ଼/ /ଡବା/ /ଢବା/ ।

/ର/ /ଲ/ /ରସି/ /ଲସି/, /ରତା/ /ଲତା/ ।

/ପ/ /ବ/ /ପତର୍/ /ବତର୍/ ।

/କ/ /ଲ/ /କବାର୍/ /ଲବାର୍/, /ସୁଲ୍‌କି/ /ଦୁଲ୍‌କି/ ।

ମଧ୍ୟ ଓ ଅନ୍ତ୍ୟ ବିରୋଧ –

/ପ/ /କପି/

/ଫ/ /କଫି/

/ପ/ /ତପ୍‌ଲା/

/ବ/ /ତବ୍‌ଲା/

/ଦ/ /ଉଦ୍‌ରି/

/ଧ/ /ଉଧ୍‌ରି/

ବର୍ଣ୍ଣନାତ୍ମକ ଧ୍ୱନି-ବିନ୍ୟାସ ଦୃଷ୍ଟିରୁ ଭିନ୍ନତା (variation) କ୍ଷେତ୍ରରେ ଅଳ୍ପପ୍ରାଣ ଧ୍ୱନି (unaspirated) ଏଥିରେ ମହାପ୍ରାଣ (aspirated) ହୁଏ ।

/ବିରି/–/ବିରହି/

/ପାରା/–/ପାରହା/

/ବାରା–/ବାରହା/

ମଧ୍ୟସ୍ୱରର ବିଶ୍ଳେଷଣରୁ ଜଣାଯାଏ, ଏହାର ଉଚ୍ଚାରଣରେ ଜିହ୍ୱାର ସ୍ଥିତି ସାଧାରଣ ବିନ୍ଦୁଠାରୁ ନିମ୍ନରେ, ତଳେ ତିନୋଟି ଭିନ୍ନ ପରିବେଶରେ ମଧ୍ୟସ୍ୱର ଆସୁଛି, କିନ୍ତୁ କୌଣସି ପରିବେଶରେ

ସ୍ଥିତି-ବିଚ୍ୟୁତି ହେଉନାହିଁ ।

| | |
|---|---|
| ଜିହ୍ୱା | ଜିହ୍ୱା |
| 'ଅ | 'ଅ |
| (ମଧସ୍ୱର) | (ମଧସ୍ୱର) |

ଧ୍ୱନି ପରିବେଶ :

ଅଏଁସା-ଉଏଁସା, ଅତର-ବତର, ଅଙ୍ଗସି-ବଲସି ୩

ମାନକ ଓଡ଼ିଆଭାଷା ତୁଳନାରେ ଆଞ୍ଚଳିକ ଉପଭାଷାର ଗତିଶୀଳତା ଏଥିରେ ସୁସ୍ପଷ୍ଟ ଅନୁମେୟ । କ୍ଷେତ୍ରୀୟ କାର୍ଯ୍ୟ ଦ୍ୱାରା ଅନୁସନ୍ଧାନ କଲେ ଜଣାଯାଏ ଯେ, ହ୍ରସ୍ୱ ଓ ଦୀର୍ଘସ୍ୱର ମଧ୍ୟରେ ପାର୍ଥକ୍ୟ ଖୁବ୍ ସୂକ୍ଷ୍ମ । ଅଧିକନ୍ତୁ ଦୀର୍ଘସ୍ୱର ଧ୍ୱନି (vowel) ର ପ୍ରୟୋଗ ନାହିଁ କହିଲେ ଚଳେ । ସ୍ଥଳ ବିଶେଷରେ କେବଳ ଅର୍ଥ ଭିନ୍ନତା ସୂଚେଇବା ପାଇଁ ବିଶେଷ ପରିସ୍ଥିତିରେ ଏହାର ପ୍ରୟୋଗ ଦେଖିବାକୁ ମିଳେ । ଏହାର ଅନ୍ୟ ବୈଚିତ୍ର୍ୟ ଏହି ଯେ, ଏହି ଆଞ୍ଚଳିକ ଉପଭାଷା 'ଏ' ବହୁଳା ଏବଂ ଏହା ଅନେକ ରୂପରେ ବିଦ୍ୟମାନ । ବେଳେ ବେଳେ ତା'ର ବିକୃତିତତ୍ତ୍ୱ ସମ୍ପୂର୍ଣ୍ଣ ନଷ୍ଟ ହୋଇ ଅତି ଲଘୁ ଭାବେ ଉଚ୍ଚାରିତ ହେବାର ଦୃଷ୍ଟିଗୋଚର ହୁଏ-

ହେନ୍‌ତା, ହେଃନତା, ଇ'/ଏ'ଛନ, ବଏସରା ।

ଧ୍ୱନି ଅର୍ଥ ଭେଦକତତ୍ତ୍ୱ ଏଠି 'ଏ' ଦ୍ୱାରା ସୁସ୍ପଷ୍ଟ ପ୍ରମାଣିତ । ଅନ୍ୟତଃ ବର୍ତ୍ତୁଳ (rounded) ସ୍ୱର ଧ୍ୱନିଗୁଡ଼ିକ ପରିନିଷ୍ଠିତ ଭାଷା ଭଳି ପୂର୍ଣ୍ଣ ବର୍ତ୍ତୁଳ ନ ହୋଇ ଏଥିରେ ତିର୍ଯ୍ୟକ୍ ରହେ । କ୍ଷିପ୍ରତା ଯୋଗୁଁ ଏଭଳି ହୁଏ । ସେଗୁଡ଼ିକ ହେଲେ -

ଉ, ଊ, ଓ, ଓ: ।

ବ୍ୟଞ୍ଜନ ଧ୍ୱନି (consonant) ମଧ୍ୟରେ ସର୍ବନାମବାଚୀ ଦୁଇ ବା ତିନୋଟି ଶବ୍ଦକୁ ଛାଡ଼ିଦେଲେ ମୂର୍ଦ୍ଧନ୍ୟ ଅନୁନାସିକର ବ୍ୟବହାର ନାହିଁ କହିଲେ ଚଳେ । ତାଲବ୍ୟ ଅନୁନାସିକର ବ୍ୟବହାର ଆଦୌ ମିଳେ ନାହିଁ -

କାଣା, ଜାଣା ।

ସଂଘର୍ଷୀଧ୍ୱନି ସମୂହରୁ କେବଳ ଦନ୍ତ୍ୟର ପ୍ରୟୋଗ ହୁଏ ଓ ଏହା ଅନ୍ୟ ସଂଘର୍ଷୀମାନଙ୍କର ସ୍ଥାନ ଗ୍ରହଣ କରେ । ଅର୍ଦ୍ଧସ୍ୱର (ଯ) ବଦଳରେ 'ଏ' ସ୍ୱର ଆସି 'ଯ'ର ସ୍ୱତନ୍ତ୍ର ସତ୍ତା ଲୋପ ପାଇଯାଏ । ଅନ୍ୟତଃ ସାମାନ୍ୟ ଉତ୍‌କ୍ଷିପ୍ତ ବ୍ୟତୀତ ଦୀର୍ଘ ଉତ୍‌କ୍ଷିପ୍ତକୁ ଏଥିରେ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଯାଇପାରେ । କାରଣ ଏହାର ବ୍ୟାପକ ପ୍ରୟୋଗ ଦେଖିବାକୁ ମିଳେ -

ଅଁ ର୍ ରା, ଏଁର୍‌ରା, ଗର୍‌ରା, ପଁର୍‌ରା ।

ବର୍ଣ୍ଣନାତ୍ମକ ଧ୍ୱନି-ବିନ୍ୟାସ ଦୃଷ୍ଟିରୁ ବିଶ୍ଳେଷଣ କଲେ ସାଧାରଣ ଓଡ଼ିଆରେ ଯେଉଁଠି ଅକ୍ଷର ବା syllable ସର୍ବଦା ମୁକ୍ତ, ଏହି ଆଞ୍ଚଳିକ ଉପଭାଷାର ସେଇଠି syllable ବା ଅକ୍ଷର ସର୍ବଦା ଆବଦ୍ଧ (closed) ବା ବ୍ୟଞ୍ଜନାନ୍ତ ।

ଦୁଇଧ୍ୱନି ବିଶିଷ୍ଟ :

/ଆଠ/-ଆ/ଠ୍ vc

/ଓଲ/-ଓ/ଲ vc

/ଆଏଜ/-ଆ/ଏଜ୍ vc

/ଆଏନ/-ଆ/ଏନ୍ vc

ତିନି ଧ୍ୱନି ବିଶିଷ୍ଟ :

/ଦମ/-ଦ-ଅ-ମ୍ cvc

/ଘର/-ଘ-ଅ-ର୍ cvc

/ଗଉର/-ଗ-ଅ-ଉର୍ cvc

/ଇନ୍ଦର/-ଇନ୍-ଦ-ଅର୍ ccc

ଚାରିଧ୍ୱନି ବିଶିଷ୍ଟ :

/କର୍ଦନ/-କର୍-ଦ-ଅ-ନ୍ ccvc

/ମନ୍ତର/-ମନ୍-ତ-ଅ-ର୍ ccvc

/ହର୍କତ/-ହର୍-କ-ଅ-ତ୍ ccvc

ଦ୍ୱିକ୍ଷରିକ :

/ଏ-କୁସ/ ୨୧ v-cvc

/କୁ-ଡ଼େ/ ୨୦ cv-cvc

/ସା-ଠେ/ ୬୦ cv-cv

ତ୍ରିକ୍ଷରିକ :

ଅ-ବ-ତାର୍ v-cv-cvc

ଅ-ପ-ମାନ୍ v-cv-cvc

ସ୍ୱନ ପ୍ରକ୍ରିୟା ଦୃଷ୍ଟିରୁ ଧ୍ୱନି ପରିବର୍ତ୍ତନର ଧାରା ଅନୁଯାୟୀ ଅଳ୍ପପ୍ରାଣ ସ୍ୱନ ମହାପ୍ରାଣ ସ୍ୱନରେ ଏବଂ ମହାପ୍ରାଣଧ୍ୱନି, ଅଳ୍ପପ୍ରାଣରେ ପରିବର୍ତ୍ତିତ ହେବା ସହ ସଂଯୁକ୍ତ ବ୍ୟଞ୍ଜନ ପରିବର୍ତ୍ତେ ଏକକ ବ୍ୟଞ୍ଜନ ସଂରକ୍ଷିତ ହୁଏ ଏବଂ ବ୍ୟଞ୍ଜନ-ବ୍ୟବଚ୍ଛେଦ କରି ସନ୍ନିକୃଷ୍ଟ ସ୍ୱର ମଧ୍ୟ ସ୍ଥଳ-ବିଶେଷରେ ସଂରକ୍ଷଣ କରାଯାଏ ।

ଅଳ୍ପପ୍ରାଣତା ଲୋପ :

ଗ-ଘ /ଆଗ/ - /ଆଘ/

ଦ-ଧ /ଦୂର/ - /ଧୂର/

କ-ଖ /ଭୋକ/ - /ଭୁଖ/

ମହାପ୍ରାଣତା ଲୋପ :

ଧ-ଦ /ଔଷଧ/ - /ଉସ୍/

/ଥ/-ତ /ସପଥ/ - /ସପତ/

/ଘ/-/କ/ /ଅଘସ/-/ଅକସ/।

ସଂଯୁକ୍ତ ବ୍ୟଞ୍ଜନ ହ୍ରାସକରଣ :

ଶ୍ୱ-ଶ/ସମଲେଶ୍ୱରୀ/-/ସମଲେଶରୀ/

ଔ-ଉ/ଔଷଧ/-/ଉଷଦ୍/

ତ୍ମ-ମ /ଆତ୍ମ/-/ଆମ୍/

ବ୍ୟଞ୍ଜନ ବିଯୋଗ :

/ଲୟ/-/ଲଏ/

/ରବିବାର/-/ରଏବାର୍/

/ବାବନା/-/ବାଉନ୍/

ରୂପବିଚାର ଓ ବିବେଚନା :

ବର୍ଣ୍ଣନାତ୍ମକ ରୂପ-ବିନ୍ୟାସ ପ୍ରକ୍ରିୟାରେ ଧାତୁ ବା ପ୍ରାତିପାଦିକ (base)ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ମୁକ୍ତରୂପିମ (free morpheme) ଓ ବଦ୍ଧ ରୂପିମ (bound morpheme) ର ସଂଯୁକ୍ତ ରୂପ ହିଁ ରୂପ ରଚନା ପ୍ରକ୍ରିୟାର ନ୍ୟୁନତମ ଅଂଶ ଧାତୁ ପ୍ରାତିପାଦିକ । ପ୍ରତ୍ୟେକ ପ୍ରାତିପଦିକ ଏକ ନିର୍ଦ୍ଦିଷ୍ଟ ରୂପବର୍ଗର ଅନ୍ତର୍ଭୁକ୍ତ ହୋଇ ଏକ ନିର୍ଦ୍ଦିଷ୍ଟ ଅର୍ଥ ପରିବର୍ତ୍ତନ କରୁଥିଲେ ହେଁ ରଚନାତ୍ମକ ପଦ୍ଧତିରେ ବ୍ୟୁତ୍ପାଦନ ବା ସଂଯୋଗୀକରଣ ଦ୍ୱାରା ଅନ୍ୟ ଅର୍ଥ ପ୍ରକାଶ କରିପାରେ । ପ୍ରତ୍ୟେକ ବ୍ୟୁତ୍ପାଦନର ଅର୍ଥ ସୁନିର୍ଦ୍ଦିଷ୍ଟ ଭାବେ ନିର୍ଦ୍ଧାରଣ କରିବା ସମ୍ଭବ ନ ହେଲେ ହେଁ ସାମାନ୍ୟତଃ ନିମ୍ନଲିଖିତ ଅର୍ଥ ସୂଚିତ ହୋଇଥାଏ ।

/ଅ/ ବିଶେଷ୍ୟ

/ଆନ/ କ୍ରିୟା ବ୍ୟୁତ୍ପାଦକ

/-ତ/ ବିଶେଷଣାତ୍ମକ

/ଇ/କର୍ମସୂଚକ ବିଶେଷଣ ବ୍ୟୁତ୍ପାଦକ

/ଲ/ ସ୍ୱାର୍ଥକ ଓ ନିଶ୍ଚୟ ବାଚକ ବିଶେଷଣ ବ୍ୟୁତ୍ପାଦକ

/ଏ/ ଅତିବୋଧକ

/ଇଆ/ କର୍ମସୂଚକ ଓ ବିଶେଷଣାତ୍ମକ

/ଏନ୍/ ବ୍ୟଞ୍ଜନଯୁକ୍ତ କର୍ମସୂଚକ ବ୍ୟୁତ୍ପାଦନଗୁଡ଼ିକ ମୁଖ୍ୟତଃ ସ୍ୱାର୍ଥକ ।

ମାନ୍ୟାର୍ଥକ ସର୍ବନାମ ପଦ ତାକେ / ଓ ସର୍ବନାମିକ ବ୍ୟୁତ୍ପାଦିତ ଶବ୍ଦ ଇଠାନେ, ଇଠାନୁ, କେନ୍‌ତା, କେନ, କାହିଁଥିର୍ ଲାଗି, ଇଟା, ଏନ୍‌ତା ଏବଂ କ୍ରିୟା ଗଠନ ପ୍ରଣାଳୀରେ 'ସମାପ୍ତି ବର୍ତ୍ତମାନ' ଅର୍ଥରେ ଗାଧିଲାନ୍, ଗଲେନ୍, ପ୍ରଭୃତି ଧାରା ବ୍ୟୁତ୍ପାଦନରେ ବହୁଳ

ବ୍ୟବହାର ଏହି ଆଞ୍ଚଳିକ ଉପଭାଷାର ବର୍ଣ୍ଣନାତ୍ମକ ରୂପ-ବିନ୍ୟାସ ପ୍ରକ୍ରିୟାଗତ ପ୍ରଧାନ-ବୈଶିଷ୍ଟ୍ୟ । ଏତଦ୍‌ବ୍ୟତୀତ କେତେକ ବିଶିଷ୍ଟ ପ୍ରକର୍ଯ୍ୟାତ୍ମକ ଶବ୍ଦ କାଏଁ, କାଣା, ମୁଇଁ, ବୁଆ, ଗୋ ପ୍ରଭୃତି ଶବ୍ଦର ବହୁଳ ବ୍ୟବହାର ଏହାର ଏକ ବିଶିଷ୍ଟ ଉଲ୍ଲେଖନୀୟ ଅବଦାନ । ଧାତୁ ସହ ବ୍ୟୁତ୍ପାଦନର ଥିତି, ଥିତ, ଥିତା ପ୍ରଭୃତି ବିବିଧ-ରୂପାବଳୀ ସହ /ନାଇଁ/ପୂର୍ବ ବ୍ୟୁତ୍ପାଦନ ଯୋଗେ ନିଷେଧାତ୍ମକ କ୍ରିୟାର ଗଠନ, କ୍ରିୟାରୂପ ରଚନାର ଅନ୍ୟତଃ ପ୍ରଧାନ ବୈଶିଷ୍ଟ୍ୟ । ରୂପ ପ୍ରକ୍ରିୟା ଦୃଷ୍ଟିରୁ ନିପାତ (particle) ଗୁଡ଼ିକ ମୁକ୍ତରୂପିମ ହେଲେ ହେଁ ଏହାର ବିତରଣ ବାକ୍ୟ ରଚନା କୋଟୀରେ ଆବଦ୍ଧ । ଏ ଜାତୀୟ ପଦଗୁଡ଼ିକର ବର୍ଗୀକୃତ ସୂଚୀ -

ସଂଯୋଜକ :

| | |
|---|---|
| ସଙ୍ଗମସ୍ଥାପକ : | /ଆର୍/, /ଆରୁ/ |
| | /ଫେର୍/, /ହେଲେ/ |
| କାର୍ଯ୍ୟକାରଣ ସୂଚକ : | /ସିନା/ |
| ନିମିତ୍ତାର୍ଥକ : | /ଲାଗି/, ମାନ୍ୟାର୍ଥକ /ଗୋ/ |
| ଆନୁକ୍ରମିକତା ସୂଚକ : | /କାଁ କରି/ |
| ବିସ୍ମୟାଦି ବୋଧକ | /ଯା !/ |
| | /ବାଃ !/ ପ୍ରଶଂସା ବୋଧଚ |
| ତୁଲ୍ୟାର୍ଥବୋଧକ | /ଯେନ୍‌ତା/ |
| | /ସେନ୍‌ତା/ |
| | /ଏନ୍‌ତା/ |
| | /ବାଗିର୍/ |
| ବିଭକ୍ତ୍ୟର୍ଥବୋଧକ | /ବିନୁ/ |
| | /ଲାଗି/ |
| ସମ୍ବୋଧନାଧିକ | /ହବେ/ |
| | /ହଏଗୋ/, /ହଏବେ/ |
| ପ୍ରଶ୍ନବାଚକ | /କାଏଁ/ |
| | /କାଣା/ |
| | /କେନ୍‌କେ/, /କେନ୍‌ଆଡ଼େ/, /କାଁ କରି/ |
| ନିର୍ଦ୍ଧାରିତ | /ଟା/ |
| | /ଟେ/ ନିଶ୍ଚୟାର୍ଥ ବୋଧକ /ହଏତ/ |

କ୍ରିୟା ବିଶେଷଣାତ୍ମକ :

| | |
|---|---|
| ସମୟ | /ଆଏଜ୍/, [illegible] |

| | |
|---|---|
| ପରିମାଣ | /ଗୁରଦୁ/, /ଉନା/, /କେତନିକେତେ/ |
| ସ୍ଥାନ | /ଦୂର୍କେ/, /ଭଟା/, /ଭିତର୍/, /ଉପର୍/ |
| | /ତଲ୍/, /ପଛେଁ/, /ଆଘେଁ/ |

ବାକ୍ୟ-ବିନ୍ୟାସ ପ୍ରକ୍ରିୟା –

ବର୍ଣ୍ଣନାତ୍ମକ ବାକ୍ୟ-ବିନ୍ୟାସ ପ୍ରକ୍ରିୟା କ୍ଷେତ୍ରରେ ସରଳ ବାକ୍ୟର ସର୍ବାଧିକ ଆଦୃତ ରଚନା ପ୍ରକାର ଉଦ୍ଦେଶ୍ୟ (Subject) ବିଧେୟ (Predicate) ଜାତୀୟ । ଯୌଗିକ ବାକ୍ୟରେ ସଂଯୋଜକ ରହିପାରେ, ନ ରହିପାରେ । ଜଟିଳବାକ୍ୟରେ ମୁଖ୍ୟ ଉପବାକ୍ୟ (clause) ସହ ଆଶ୍ରିତ ଉପବାକ୍ୟ ସଂଯୋଜକବିହୀନ (ଆର୍, ପୁନି) ସମନ୍ୱୟତା ବଳରେ ସଂଯୁକ୍ତ ହୁଏ । ଆଶ୍ରିତ ଉପବାକ୍ୟ ସର୍ତ୍ତମୂଳକ ହେଲେ ତାହା ସହିତ ଏକାଧିକ ଉପବାକ୍ୟ ରହେନାହିଁ । ଆଶ୍ରିତ ଉପବାକ୍ୟ ମଧ୍ୟରେ ଆଶ୍ରିତ ବୋଧକ ଶବ୍ଦ ଥିଲେ, ତାହା ଅନ୍ୱାଦେଶକ ଭାବେ ମୁଖ୍ୟ ଉପବାକ୍ୟରେ ରହେ । ଦ୍ର : /ଯେନ୍କେ/–/ସେନ୍କେ/

/ଯେନ୍ତା/–/ସେନ୍ତା/

/ଯେନ୍ଠାନେ/–/ସେନ୍ଠାନେ/

କ୍ଷେତ୍ରୀୟ ପାଠ୍ୟ ବା Field Study ଦ୍ୱାରା ଅନୁସନ୍ଧାନ କଲେ ଏହିପରି ପଶ୍ଚିମାଞ୍ଚଳୀୟ ବଲାଙ୍ଗୀର ଆଞ୍ଚଳିକ ଉପଭାଷାର କଥ୍ୟ-ରୂପର ବର୍ଣ୍ଣନାତ୍ମକ ଧ୍ୱନି, ରୂପ ଓ ବାକ୍ୟ-ବନ୍ୟାସରେ ଭିନ୍ନତା ପରିଲକ୍ଷିତ ହୁଏ । ଏହି ଆଞ୍ଚଳିକ ଭାଷାଗୁଡ଼ିକର ବ୍ୟାକରଣିକ ରୀତି ଏବଂ ପରିଭାଷାର ନୂତନତା ତଥା ଭିନ୍ନତା ଭାଷାତତ୍ତ୍ୱର ଗବେଷଣା ଦୃଷ୍ଟିରୁ ଏକାନ୍ତ ଅପରିହାର୍ଯ୍ୟ । ଆଧୁନିକ ଯୁଗରେ ସବୁ ସମ୍ପଦର ସୁରକ୍ଷା ପାଇଁ ଯେପରି ସମସ୍ତ ପ୍ରକାର ବୈଜ୍ଞାନିକ ଉପାୟ ଉଦ୍ଭାବନ ହେଲାଣି, ସେହିପରି ଲୋକଭାଷା ସମ୍ପଦର ସୁରକ୍ଷା ପାଇଁ ପ୍ରତିଷ୍ଠିତ ଶୈକ୍ଷଣିକ ଓ ସାଂସ୍କୃତିକ ସଂସ୍ଥାଗୁଡ଼ିକ ଅଚିରେ ବିଧିବଦ୍ଧ କାର୍ଯ୍ୟକ୍ରମ ପ୍ରସ୍ତୁତ କରି କାର୍ଯ୍ୟକାରୀ କରିବା ଉଚିତ ।

**ସହାୟକ ଗ୍ରନ୍ଥସୂଚୀ :**

ତ୍ରିପାଠୀ, ଡକ୍ଟର କୁଞ୍ଜବିହାରୀ- ୧୯୭୭-ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ ।

ଧଳ, ଗୋଲକ ବିହାରୀ – ୧୯୭୪, ଧ୍ୱନିବିଜ୍ଞାନ ।

ମହାପାତ୍ର, ଡକ୍ଟର ଖଗେଶ୍ୱର – ୧୯୭୬, ଦକ୍ଷିଣାଞ୍ଚଳୀୟ ଓଡ଼ିଆ ।

ନନ୍ଦଶର୍ମା, ପଣ୍ଡିତ ଗୋପୀନାଥ – ୧୯୬୮, ଓଡ଼ିଆ ଭାଷାତତ୍ତ୍ୱ ।

AHMED, M- Census of India-1961, Orissa -

District Census Hand Book Bolangir-Orissa Government Press, Cuttack, 1965. page - 3 (P)

Ann, Arbor-Phonemics-1947-The University of Michigan Press.

Bloch, B & Trager G.L.-1972-Outlines of Linguistics Analysis-Oriental Book Re-Prient-New Delhi.

Grierson, G.A. Linguistic Survey of India-Vol.V-Part-II-1903, Re-Priented, 1968, Page-369 (P)

Tripathy, Dr, K.B-1962-The Evolution of Oriya Language & Script.

Journals :

Dhall, G.B.IL-Taraporewala Memorial-Vol. 1955-56-The Language & Dialects spoken in Orissa.

Hota Sidheswar-The Stamp of Dialectical variation on Oriya-All India Oriental Conference, 1933.

Tripathy, Dr. K.B.-IL-Vol. 18-1957- "Western Oriya Dialect."

ଅଭିଯାତ୍ରୀ : ୧୯୮୨ ଫେବୃୟାରୀ-ତୃତୀୟ ସଂଖ୍ୟା-ସମ୍ମିଳନୀ ବିଶେଷାଙ୍କ

ଆସନ୍ତା କାଲି - ୧୯୭୬ ଜାନୁୟାରୀ-ପ୍ରଥମ ସଂଖ୍ୟା

ଏଷଣା - ୧୯୮୧ - ତୃତୀୟଖଣ୍ଡ-ଓଡ଼ିଶା ଗବେଷଣା ପରିଷଦ

ଝଙ୍କାର - ୧୯୮୨ ଅଗଷ୍ଟ-ପଞ୍ଚମ ସଂଖ୍ୟା

କୋଣାର୍କ - ୧୯୬୮-୩/୩-୪ ଓଡ଼ିଆ ସାହିତ୍ୟ ଏକାଡେ଼ମୀ

ସପ୍ତର୍ଷି - ୧୯୭୪ ଅଗଷ୍ଟ, ତୃତୀୟ ବର୍ଷ, ଅଷ୍ଟମ ସଂଖ୍ୟା



# ଉତ୍ତର ଓଡ଼ିଶାର କଥିତ ଓଡ଼ିଆ ଭାଷା

## ହରିଶ୍ଚନ୍ଦ୍ର ବେହେରା

ଓଡ଼ିଆ ଭାଷାକୁ ପର୍ଯ୍ୟାଲୋଚନା କଲେ ଏହାର ତିନିଗୋଟି ସ୍ତର ଦେଖିବାକୁ ମିଳେ । ସେଗୁଡ଼ିକ ହେଉଛି ଆଦି, ମଧ୍ୟ ଓ ଆଧୁନିକ ଓଡ଼ିଆ ଭାଷା । ଏହି ତିନିସ୍ତରର ଭାଷାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ କଥିତ ଓଡ଼ିଆ ଭାଷା ଓ ଦ୍ୱିତୀୟତଃ ମାନକ ଓଡ଼ିଆ ଭାଷା । କଥିତ ଓଡ଼ିଆ ଭାଷା ବିଶେଷତଃ ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନେ ବ୍ୟବହାର କରିଥାନ୍ତି । ଲୋକ କଥିତ ଅପଭ୍ରଂଶ ଭାଷାର ମୂଳ ଉତ୍ସ ସଂସ୍କୃତ ଦ୍ରାବିଡ଼, ଅଷ୍ଟ୍ରିକ୍ କିମ୍ବା ବୈଦେଶିକ ଭାଷା ଗୋଷ୍ଠୀ ଭିତରେ ନିହିତ ।

ଷଷ୍ଠ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ଲୋକ କଥିତ ଓଡ଼ିଆ ଭାଷାର ପ୍ରାଚୀନ ନିଦର୍ଶନ ଦେଖିବାକୁ ମିଳିଥାଏ ଶୈଳୋଦ୍ଭବ, ଭୌମକର ଓ ଗଙ୍ଗବଂଶୀୟ ରାଜାମାନଙ୍କ ଦ୍ୱାରା ଖୋଦିତ ଅଭିଲେଖଗୁଡ଼ିକରୁ । ଏହା ବ୍ୟତୀତ ବଙ୍ଗଳା ଭାଷାର ବିଶିଷ୍ଟ ଗବେଷକ ହରପ୍ରସାଦ ଶାସ୍ତ୍ରୀ ନେପାଳ ଲାଇବ୍ରେରୀରୁ ଆବିଷ୍କାର କରିଥିବା ବୌଦ୍ଧଗାନ ଓ ଦୋହାରେ ଅନେକ ପ୍ରାଚୀନ ଲୋକ କଥିତ ଭାଷାର ନିଦର୍ଶନ ମିଳିଥାଏ । ବିଶେଷତଃ ଉତ୍ତର-ପୂର୍ବ ଓଡ଼ିଶାର ଲୋକ କଥିତ ଭାଷା ସହ ଏସବୁ ଭାଷାର ଅନେକ ମେଳ ପରିଲକ୍ଷିତ ହୋଇଥାଏ । ଚର୍ଯ୍ୟାଗୀତିକାରୁ କେତୋଟି ଶବ୍ଦ ଉଦାହରଣ ସ୍ୱରୂପ ନିଆଯାଇ ପାରେ, ଯଥା- ଅନୁଦିନ, ଆଲୋ, ଅନ୍ଧାର, ଉଚ୍ଛୁଳିଲା, ଉପାଡ଼ି, ଏକେଲି, କାହାରେ କିସ, କୁଡ଼ିଆ, କୋଡ଼ି, କେହୋ, ଘାଉଲା, ଘୁମଇ, ଘେଣେଇ, କେରୁଆଳ, ଘିନି, ଖାଇବ, ଗଢ଼ିଲି, ଟାଙ୍ଗେଡ଼ା, ଛିଣ୍ଡାଳୀ, ତୋହରି, ଜାଣି ଯାଇ ଯାହେର, ତାହେର, ତୋହରି, ଦେଇ, ଦେଖଇ, ନାଚନ୍ତି, ନଣନ୍ଦ, ନାଡ଼ିଆ, ପାକେଲା, ପାଖୁଡ଼ା, ବଇଠା, ପାବନ, ବହଳ, ବାଡ଼ିଳ ବାପୁଡ଼ି, ବିଟାଳ, ମାତେଲା, ମାରିମି, ସଗୁଣ, ହାଣ୍ଡି, ହାଉଁ, ପ୍ରଭୃତି ଶବ୍ଦ ଏହାର ନମୁନା । ଏଣୁ ମନେହୁଏ ଚର୍ଯ୍ୟାଗୀତିକାର ରଚୟିତା ବହୁ ସିଦ୍ଧ ସାଧକ ଉତ୍ତର ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିଲେ ।

ସାରଳା ଦାସଙ୍କ ମହାଭାରତ ଏବଂ ଅନେକ ପୁରାଣରେ ବ୍ୟବହୃତ ଅନେକ ଦେଶଜ

ଶବ୍ଦ ସହ ସାଦୃଶ୍ୟ ଲକ୍ଷ୍ୟ କରିହୁଏ ।

ଉତ୍ତର ଓଡ଼ିଶାର କଥିତ ଭାଷା କହିଲେ ବାଲେଶ୍ୱର, ମୟୂରଭଞ୍ଜ ଏବଂ କେନ୍ଦୁଝର ଜିଲ୍ଲାର ଲୋକ ସାଧାରଣଙ୍କ ଭାଷାକୁ ବୁଝାଏ । ଏ ତିନି ଅଞ୍ଚଳର ଭାଷାର ମୂଳ ଉତ୍ସ ଏକ ହୋଇଥିଲେ ମଧ୍ୟ ଭୌଗୋଳିକ ପ୍ରଭାବ ଭେଦରେ ଏସବୁ ଭାଷାର ରୂପଗତ ତଥା ଧ୍ୱନିଗତ ବୈଚିତ୍ର୍ୟ ଭିନ୍ନ ଭିନ୍ନ । ବଙ୍ଗଳାର ମେଦିନୀପୁର, ବିହାରର ଷଢ଼େଇକଳା, ଖରସୁଆଁ, ବହରାଗଡ଼ା ପ୍ରଭୃତି ଅଞ୍ଚଳ ଦିନେ ଓଡ଼ିଶାରେ ଥିଲା ଏବଂ ଏସବୁ ଅଞ୍ଚଳରେ ଲୋକ କଥିତ ଭାଷା ଅନେକାଂଶରେ କଥିତ ଓଡ଼ିଆ ଭାଷା ଏଥିରେ ସନ୍ଦେହ ନାହିଁ । ତେବେ ଗୋଟିଏ ପଟେ ବଙ୍ଗଳା ଭାଷାଭାଷୀ ଅଞ୍ଚଳ ଏବଂ ଅନ୍ୟପଟେ ହିନ୍ଦୀ ଭାଷାଭାଷୀ ଅଞ୍ଚଳ ସହିତ ଉପରୋକ୍ତ ଜିଲ୍ଲାଗୁଡ଼ିକର ପଡ଼ୋଶୀ ସମ୍ପର୍କ ରହୁଥିବା ଯୋଗୁଁ ସୀମା ପାର୍ଶ୍ୱବର୍ତ୍ତୀ ଉପାନ୍ତ ଅଞ୍ଚଳ ଗୁଡ଼ିକରେ ଓଡ଼ିଆ ଭାଷା ଉପରେ ହିନ୍ଦୀ ଓ ବଙ୍ଗଳା ଭାଷାର ଯଥେଷ୍ଟ ପ୍ରଭାବ ପରିଲକ୍ଷିତ ହୋଇଥାଏ । ମୋଟାମୋଟି ବିଚାର କରିବାକୁ ଗଲେ ଉତ୍ତର ଓଡ଼ିଶାର କଥିତ ଭାଷା ଏକ ମିଶ୍ରିତ ଭାଷା ଏଥିରେ ସନ୍ଦେହ ନାହିଁ । ଏସବୁ ଅଞ୍ଚଳରେ କଥିତ ଭାଷାରେ ତତ୍‌ସମ ଶବ୍ଦ ଅପେକ୍ଷା ତଦ୍ଭବ ଶବ୍ଦର ପ୍ରଚଳନ ସବୁଠୁ ବେଶି । ଏଠାରେ ତଦ୍ଭବ ଶବ୍ଦର କେତୋଟି ଉଦାହରଣ ସହ ତା'ର ମୂଳ ଉତ୍ସ ନିର୍ଣ୍ଣୟ କରାଯାଇପାରେ ।

କଉଡ଼ି < କଉଡ଼ିଆ < କବାଡ଼ିଆ < କପର୍ଦ୍ଦିକା
ବାଟ < ବଟ୍ଟ < ବର୍ତ୍ମ
ଲୁଣ < ଲଉଣ < ଲବଣ
ମଢ଼େଇ < ବଢ଼େଇ < ବର୍ଦ୍ଧକୀ
କଟୁରୀ < କଟ୍ଟରିଆ < କର୍ତ୍ତରିକା
ଗଡ଼ିଆ < ଗଡ୍ଡ+ଇଆ < ଗର୍ତ୍ତ+ଇଆ
ଅନ୍ତୁଡ଼ି < ଅନ୍ତଉଡ଼ି < ଅନ୍ତକୁଟି
ଦେଉଳ < ଅନ୍ତଉଡ଼ି < ଅନ୍ତକୁଟି
ଦେଉଳ < ଦେବକୁଳ
ବାହୁଁଣ < ବାମ୍ହଣ < ବ୍ରାହ୍ମଣ
ନାତି < ନତ୍ତିୟ < ନପ୍ତୃକ
ପୁଖୁରା < ପୁଖୁରୀ < ପୁକ୍‌ଖରିଣିଁ < ପୁଷ୍କରିଣୀ

ଉତ୍ତର ଓଡ଼ିଶାର କଥିତ ଭାଷାରେ ଯେଉଁ କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ତା'ର କେତେକ ଉଦାହରଣ ନିମ୍ନରେ ପ୍ରଦାନ କରାଗଲା –

**୧– ଧ୍ୱନିଗତ ବୈଶିଷ୍ଟ୍ୟ :**

(କ) ସଂରଚନାତ୍ମକ ଚାପ ଓ ଭୌଗୋଳିକ କାରଣ ଯୋଗୁଁ ଉତ୍ତର ଓଡ଼ିଶାର

କେତେକ ଅଞ୍ଚଳ ବିଶେଷତଃ ଉତ୍ତର ବାଲେଶ୍ୱର ତଥା ଉତ୍ତର ମୟୂରଭଞ୍ଜର କଥିତ ଭାଷାରେ ବିବୃତ ଧ୍ୱନି, ସମ୍ବୃତ ଭାବରେ ଉଚ୍ଚାରିତ ହୋଇଥାଏ । ଓଡ଼ିଆରେ ଛଅଗୋଟି ସ୍ୱର-ସ୍ୱନିମ ଅଛି । ସେଗୁଡ଼ିକ ଉପରୋକ୍ତି କାରଣ ଯୋଗୁଁ ନାନା ଭାବରେ ପରିବର୍ତ୍ତିତ ହୋଇଥାଏ । ଅର୍ଦ୍ଧ ସଂବୃତ୍ତ 'ଓ' ସ୍ୱନିମ ସଂବୃତ୍ତ 'ଉ' ସ୍ୱନିମରେ ପରିଣତ ହୁଏ । ଯଥା ଓଟ > ଉଟ, ଓଜନ > ଉଜନ, ଓକିଲ > ଉକିଲ, ଓଟାରିବା > ଉଟାରିବା, ଓଲଟ > ଉଲଟ, ଓଳି > ଉଳି, ପୋଖରୀ > ପୁଖୁରୀ, ଗୋଡ଼ > ଗୁଡ଼, ଧୋବା > ଧୁବା, ଶୋଇବା > ଶୁଇବା, ଚୋର > ଚୁର, ବୋଇତାଳୁ > ବୁଇତାଳୀ, ଭୋଳାନାଥ > ଭୁଳାନାଥ । ଏଠାରେ ଦୁଇଟି ବାକ୍ୟରେ ନମୁନା ଦିଆଯାଇପାରେ । ଯଥା –

ମୁଁ ପୁଖୁରୀ କି ଗୁଡ଼ ଧୁଇତେ ଯିମି ।

ଚୁରଟି ଗୁପାଳ ଭୁଇ ଦୁକାନରୁ କୁଡ଼ିଏ ହଜାର ଟଙ୍କା ଚୁରି କରି ପଲୋଉଥିବା ବେଳେ ନୁକମାନେ ତାକୁ ଗୁଡ଼େଇ ଗୁଡ଼େଇ ମାରିଲେ ।

ଏହି ଅର୍ଦ୍ଧସମ୍ବୃତ୍ତ ସ୍ୱନିମଗୁଡ଼ିକ ସମ୍ବୃତ୍ତ ସ୍ୱନିମରେ ପରିଣତ ହେବା ସମ୍ପର୍କରେ ଭାଷାବିତ୍ତ ଡଃ ବାସୁଦେବ ସାହୁ କହନ୍ତି- "ଉତ୍ତର ବାଲେଶ୍ୱରରେ ପ୍ରବଳ ଶୀତ ପ୍ରକୋପ ଯୋଗୁଁ ଓଠ ଫାଟିବାର ଭୟ ଥିବାରୁ ଲୋକମାନେ ବିଶେଷ ପାଟି ମେଲା ନ କରି ଅଳ୍ପ ମେଲା କରି କହୁଥିବାରୁ ଏଗୁଡ଼ିକ ସମ୍ବୃତ୍ତ ହୋଇଯାଉଛି ।" ତେବେ ଏ ଯୁକ୍ତି ସଂମ୍ପୂର୍ଣ୍ଣ ସତ୍ୟ ନହେଲେ ବି କେତେକାଂଶରେ ସତ୍ୟ ବୋଲି ମନେହୁଏ ।

(ଖ) ଅନେକ କ୍ଷେତ୍ରରେ ଦେଖାଯାଏ ଏ ସବୁ ଅଞ୍ଚଳରେ ବିବୃତ୍ତ ସ୍ୱର ସ୍ୱନିମ 'ଆ' ଅର୍ଦ୍ଧ ବିବୃତ୍ତ ସ୍ୱନିମ 'ଅ'ରେ ପରିଣତ ହୁଏ । ଯଥା–

ଯାଅ > ଯଅ > ଯ', ଖାଅ > ଖ, ବାପା > ବାପ > ବା', ଚାଲାକ୍ > ଚଲାକ୍, ଆଧାର > ଅଧାର, ସାଜ > ସଜ, ଏଇକ୍ଷଣି > ଉଛୁଣି, ଆଳସ୍ୟ > ଅଳସ, ଆଷାଢ଼ > ଅଷାଢ଼, ମାର୍ଗଶୀର > ମଗୁଶିର, ଫାଲ୍‌ଗୁନ > ଫଗୁଣ, ଚାଲାଣ > ଚଲାଣ । ବାକ୍ୟରେ ପ୍ରୟୋଗ –

ଏଠାରେ ବସିଚ କେନେ ଶୀଘ୍ର ଯ' ।

ଉଛଉଣିକା ମତେ ସମୟ ନାହିଁ, ମୁଁ ଯାଇ ପାରିବିନି ।

(ଗ) ଶବ୍ଦ ମଧ୍ୟରେ ମିଶିକରି ଥିବା ଅର୍ଦ୍ଧ ବିବୃତ୍ତ ସ୍ୱର ସ୍ୱନିମ 'ଅ' ସମ୍ବୃତ୍ତ ସ୍ୱର ସ୍ୱନିମ 'ଉ'ରେ ପରିଣତ ହୁଏ ଯଥା –

ମୁରକି > ମୁରୁକି, ଗୋବର > ଗୁବର, ଗୋଖର > ଗୁଖୁର, ପୋଖରୀ > ପୁଖୁରୀ । ବାକ୍ୟରେ ପ୍ରୟୋଗ –

ପୁଖୁରୀ ଆଡ଼ିରେ ଗୁଟେ ଗାତ ଅଛି । ସେଇ ଗାତରେ ଗୁଖୁର ସାପଟେ ରହିଚି ।

(ଘ) ଅର୍ଦ୍ଧ ସମ୍ବୃତ୍ତ ସ୍ୱରସ୍ୱନିମ 'ଓ' ଅର୍ଦ୍ଧ ବିବୃତ୍ତ 'ଅ' ସ୍ୱନିମରେ ପରିଣତ ହୁଏ ।

ଯଥା– ଭୂଗୋଳ > ଭୂଗଳ, ବନ୍ଦୋବସ୍ତ > ବନ୍ଦବସ୍ତ, ଅଧୋଡ଼ା > ଅଧଡ଼ା, ଅଧୋଗତି > ଅଧଗତି, ପୁରୋହିତ > ପୁରହିତ, କିଶୋର > କିଶର ।

(ଙ) ଶବ୍ଦ ଆଦ୍ୟରେ ବ୍ୟଞ୍ଜନ ସହ ମିଶି ରହିଥିବା ଅର୍ଦ୍ଧ ସମ୍ବୃତ୍ତ ସ୍ୱର ଧ୍ୱନି ଅନେକ ସ୍ଥଳରେ ଅର୍ଦ୍ଧ ବିବୃତ୍ତ ସ୍ୱର ଧ୍ୱନିରେ ପରିଣତ ହୁଏ । ଯଥା –

ତୋର > ତର, ମୋର > ମର, ଓଉ > ଅଉ, ଛୋପରା > ଛପରା, କୋଣ > କଣ, କୋବି > କବି, ଜୋଇଁ > ଜଇଁ, ସୋମନାଥ > ସମନାଥ, ସୋମବାର > ସମବାର ।

(ଚ) କେତେକ ସ୍ଥଳରେ ବ୍ୟଞ୍ଜନ ସନ୍ନିକଟ ସ୍ୱର ଧ୍ୱନି ସଂପୂର୍ଣ୍ଣ ଲୋପ ପାଇଯାଏ । ଯଥା– କୁଆଡ଼େ > କେଆଡ଼େ, କେଉଁଠିକି > କେଠି, ହରଦମ > ହର୍ଦ୍ଦମ୍, ତରଭୁଜ >ତର୍ଭୁଜ, ଅପରାଧ > ଅପ୍ରାଧ, ଦରଶନ > ଦର୍ଶନ, ମଣିଷ > ମଣ୍ଷ । ବାକ୍ୟରେ ପ୍ରୟୋଗ –

ମୋ ମଣ୍ଷଟା ସକାଳୁ କାଆଡ଼େ ଯାଇଚି ଯେ ଦେଖା ଦର୍ଶନ ନାହିଁ । ମୁଁ ମନାକଲି, ସେ ହର୍ଦ୍ଦମ ଯିବା ନାଗି ଜିଦ୍ ଧରଲା ।

(ଛ) ଅନେକ ସ୍ଥଳରେ ଶବ୍ଦରେ ଆଦି ସ୍ୱରରେ ଆଗମନ ହୁଏ । ଯଥା– ସ୍କୁଲ୍ > ଇସ୍କୁଲ, ଷ୍ଟେସନ > ଇସ୍‌ଟେସନ, ସ୍ପ୍ରିଙ୍ଗ > ଇସ୍‌ପ୍ରିଙ୍ଗ୍, ସ୍ତ୍ରୀ > ଇସ୍ତ୍ରୀ, ଷ୍ଟାମ୍ପ > ଇସ୍‌ଷ୍ଟାମ୍ପ ।

(ଜ) ଅନେକ ସ୍ଥଳରେ ସମ୍ବୃତ୍ତ ସ୍ୱତ ଧ୍ୱନି ଅର୍ଦ୍ଧସଂବୃତ୍ତ ଭାବେ ଉଚ୍ଚାରିତ ହୁଏ । ଯଥା– ଢିଙ୍କି > ଢେଙ୍କି, ଚିନି > ଚେନି, ଦିଅର > ଦେଉର, କର୍ଦ୍ଦାନି > କେର୍ଦ୍ଦାନୀ, ତିନ୍ତୁଳି > ତେନ୍ତୁଳି ।

(ଝ) ଅର୍ଦ୍ଧ ସମ୍ବୃତ୍ତ ସ୍ୱର ସ୍ୱନିମ 'ଏ' ଅନେକ ସ୍ଥଳରେ ସମ୍ବୃତ୍ତ ସ୍ୱର ସ୍ୱନିମ 'ଇ'ରେ ପରିଣତ ହୁଏ । ଯଥା– ଏମିତିକି > ଇମିତିକା, ଏହିକ୍ଷଣି > ଇଛୁଣି ।

(ଞ) ବିବୃତ୍ତ ସ୍ୱର ସ୍ୱନିମ 'ଆ' ଅନେକ ସମୟରେ ସଂବୃତ୍ତ ସ୍ୱନିମ 'ଉ'ରେ ପରିଣତ ହୁଏ । ଯଥା– ଭାଦ୍ରବ > ଭୋଦୁଅ > ଭୁଦ, ଆର୍ଦ୍ର > ଓଦା > ଉଦା, ଆବାସ > ଉଆସ, ଆଶ୍ୱାସ > ଉଶ୍ୱାସ > ଉଶାସ ।

(ଟ) କେତେକ ଶବ୍ଦରେ ଦୂରବର୍ତ୍ତୀ ସ୍ୱର ବିପର୍ଯ୍ୟୟ ଦେଖାଯାଏ । ଯଥା– କଦଳୀ > କଦିଳ, ଯାମଳା > ଯାଆଁଳ, ଅନୁମାନ > ଉନୁମାନ, ଖନିତ୍ର > ଖଣତି ।

(ଠ) ଅନେକ ଶବ୍ଦରେ ପ୍ରାନ୍ତ ସ୍ୱର ଲୋପ ପାଇଯାଏ । ଯଥା– ମାଆ > ମା, ଯାଅ > ଯା, ଆସ > ଆ, ଗାଅ > ଗା, ନିଅ > ନେ, ଆଲୁଅ > ଆଉ, ଖାଲୁ > ଖାଲୁଅ, ଏଣ୍ଡୁଅ > ଏଣ୍ଡ ।

(ଡ) ଅନେକ ଶବ୍ଦରେ ମଧ୍ୟ ସ୍ୱର ଲୋପ ପାଏ । ଯଥା– କେଉଁଠି > କେଠି, ଯେଉଁଠି > ଯେଠି, କେମିତିକା > କିଁତିକା, ଯେମିତି > ଯିତି । ବାକ୍ୟରେ ପ୍ରୟୋଗ– ଯିଁତି ହେଲେ ମରେ ଏ କାମ କରିତେ ହେବ ।

(୨) ଲୋକ କଥିତ ବ୍ୟଞ୍ଜନ ଧ୍ୱନିରେ ବୈଚିତ୍ର୍ୟ :

(କ) 'ଲ' ବ୍ୟଞ୍ଜନ ସ୍ୱନିମ 'ନ'ରେ ପରିଣତ ହୁଏ । ଯଥା- ଲୁଣ > ନୁଣ, ଲୋକ > ନୁକ, ଲାଲ > ନାଲ୍, ଲାଉ > ନାଉ, ଲଙ୍କା > ନଙ୍କା, ଲଟା > ନଟା, ଲକ୍ଷ୍ୟ > ନକ୍ଷ, ଲବଙ୍ଗ > ନବଙ୍ଗ, ଲୋକସାନ୍ > ନୁକ୍‌ସନ୍, ଲକ୍ଷ୍ମୀ > ନକ୍ଷ୍ମୀ, ଲଗାଣ > ନଗାଣ, ଲଙ୍ଗଣ > ନାଙ୍ଗୁଳ > ନାଙ୍ଗୁଡ଼, ଲଗ୍ନ > ନଗ୍ନ, ଲାଜ > ନାଜ, ଲଣ୍ଡା > ନଣ୍ଡା, ଲମ୍ବା > ନମ୍ବା, । ବାକ୍ୟରେ ପ୍ରୟୋଗ- ଗଲା ସମବାରରୁ ନଗାଣ ବର୍ଷା ହେଉଛି ଯେ ନଙ୍ଗଳ କରିନପାରି ଚାଷୀମାନେ ଘରେ ନାଙ୍ଗୁଡ଼ ଜାକି ବସିଛନ୍ତି ।

(ଖ) 'ବ' ସ୍ୱନିମ ଅଧିକାଂଶ ସ୍ଥଳରେ 'ମ' ସ୍ୱନିମରେ ପରିଣତ ହୁଏ । ଯଥା- ଯିବି > ଯିମି, ଖାଇବି > ଖାଇମି, ଶୋଇବି > ଶୁଇମି, ମରିବି > ମାରିମି ।

(ଗ) ମଧ ବଞ୍ଜନ 'ହ'ର ଲୋପ ଦ୍ୱାରା ପ୍ରଯତ୍ନ ଲାଘବ । ଯଥା- ବ୍ରାହ୍ମଣ > ବାମୁଣ, କହ୍ନେଇ > କାନୁ, ଜହ୍ନି > ଜନି, ଗହ୍ମା > ଗମା, ଜହ୍ନା > ଜୋଣା ।

(ଘ) ଶବ୍ଦରେ 'ର' ସ୍ୱନିମର ଲୋପ । ଯଥା- ଭ୍ରମର > ଭ୍ରଁର, ଶ୍ରାବଣ > ଶାବଣ, ଗ୍ରାମ > ଗାଁ, ବ୍ରାହ୍ମଣ > ବାମୁଣ, ପ୍ରତିହାରୀ > ପଡ଼ିଆରୀ, ପ୍ରହର > ପହର, ମାର୍ଗଶୀର > ମଗଶୀର, ଗ୍ରାହକ > ଗହକୀ ।

(ଙ) ଅନେକ ସ୍ଥଳରେ ମହାପ୍ରାଣୀ ଭବନ ଅଳ୍ପପ୍ରାଣୀ ଭବନରେ ପରିଣତ ହୁଏ । ଯଥା- ଅବସ୍ଥା > ଅବସ୍ତା, ବ୍ୟବସ୍ଥା > ବେବସ୍ତା, ଅସ୍ଥି > ଅସ୍ତି, ଆସ୍ଥା > ଆସ୍ତା, ଜିଘାଂସ > ଜିଗାଂସ ।

(ଚ) ଅଳ୍ପପ୍ରାଣୀ ଭବନ କେତେକ ସ୍ଥଳରେ ମହାପ୍ରାଣୀଭବନରେ ପରିଣତ ହୁଏ । ଯଥା- ଆସ୍ତାନ > ଆସ୍ଥାନ, ଆସ୍ତରଣ > ଆସ୍ଥରଣ ।

(ଛ) ଅନେକ ଶବ୍ଦରେ ଦ୍ୱିତ ବ୍ୟଞ୍ଜନ ଏକାକୀ ବ୍ୟଞ୍ଜନରେ ପରିଣତ । ଯଥା- ଉଲ୍ଲାସ > ଉଲାସ, ଉଲ୍ଲସିତ > ଉଲୁସିତ > ଉସତ, ଉଲ୍ଲେଖ > ଉଲେଖ ।

(ଜ) କେତେକ ଶବ୍ଦରେ 'ବ' ସ୍ୱନିମର ଲୋପ । ଯଥା- ସ୍ୱପନ > ସପନ, ସ୍ୱଭାବ > ସଭାବ, ଜ୍ୱର > ଜର, ଦ୍ୱିପ୍ରହର > ଦିପ୍ରହର, ଜ୍ୱାଳା > ଜାଳା, ଦ୍ୱିଗୁଣ > ଦିଗୁଣ ।

(ଝ) 'ଜ' ସ୍ୱନିମର ଲୋପ । ଯଥା- ଧ୍ୟାନମଗ୍ନ > ଧାନମଗ୍ନ, ଜ୍ୟାମିତି > ଜାମିତି, ଜ୍ୟେଷ୍ଠ ଶ୍ୱଶୁର > ଜେଠ୍ଶାଶୁର, ଜ୍ୟୋତିଷ > ଜତିଷ, ଦ୍ୟୁତି > ଦୁତି ।

(ଞ) 'ବ' ସ୍ୱନିମ 'ଉ'ରେ ପରିଣତ । ଯଥା- ଧ୍ୱଜା > ଧୁଜା, ଧ୍ୱନି > ଧୁନି, ଦ୍ୱରିତ > ଦୁରିତ, ସ୍ୱଚ୍ଛନ୍ଦ > ସୁଛନ୍ଦ, ସ୍ୱଚ୍ଛଳ > ସୁଛଳ, ସ୍ୱସ୍ତିକା > ସୁସ୍ତିଆ, ବ୍ୟବସାୟ > ବେଉସା, ଶବର > ସଉରା ।

(ଟ) ବ୍ୟଞ୍ଜନ ସ୍ୱନିମ 'ବ୍ୟ' ସ୍ଥାନରେ 'ବେ'ର ବ୍ୟବହାର । ଯଥା- ବ୍ୟବହାର > ବେବହାର, ବ୍ୟବସାୟ > ବେଉସା, ବ୍ୟବସ୍ଥା > ବେବସ୍ଥା, ବ୍ୟଗ୍ର > ବେଗ୍ର, ବ୍ୟଞ୍ଜନ > ବେଞ୍ଜନ, ବ୍ୟଭିଚାର > ବେଭିଚାର, ବ୍ୟତିକ୍ରମ > ବେତିକ୍ରମ, ବ୍ୟସନ > ବେସନ ।

(ଠ) ବ୍ୟଞ୍ଜନ ସ୍ୱନିମ 'ସ୍ଥ' ସ୍ଥାନରେ 'ଥ'ର ବ୍ୟବହାର । ଯଥା- ସ୍ଥଳ > ଥଳ, ସ୍ଥାନ > ଥାନ, ସ୍ଥବିର > ଥବିର, ସ୍ଥଗିତ > ଥଗିତ, ସ୍ଥାପନା > ଥାପନା, ସ୍ଥାଳ > ଥାଳ, ସ୍ଥିର > ଥିର ।

(ଡ) ବ୍ୟଞ୍ଜନ ସ୍ୱନିମ 'ମ୍ଭ' ସ୍ଥାନରେ 'ମ'ର ବ୍ୟବହାର । ଯଥା- ଆମ୍ଭେମାନେ > ଆମେମାନେ, ତୁମ୍ଭେମାନେ > ତୁମ୍‌ମାନେ, ଆମ୍ଭମାନଙ୍କୁ > ଆମମାନଙ୍କୁ, ଆମ୍ଭକୁ > ଆମ୍‌କୁ, ତୁମ୍ଭକୁ > ତୁମ୍‌କୁ ।

(ଢ) ଅନେକ ଶବ୍ଦରେ ଥିବା ମହାପ୍ରାଣୀ ଭବନ 'ହ'ରେ ପରିଣତ ହୁଏ । ଯଥା- ଗଭୀର > ଗହିର, ବଧୂ > ବୋହୁ, ସାଧୁ > ସାହୁ, ଅଧାର > ଆହାର, ସଖୀ > ସହି, ଆମ୍ଭଘର > ଆମ୍‌ହର, ତୁମ୍ଭଘର > ତୁମ୍‌ହର, ସ୍ୱଭାବନ > ସହାଅନ, ଅବିଧବା > ଅହିଆ, ପ୍ରଭାତ > ପାହାନ୍ତା, ବିଭାଘର > ବାହାଘର, ଗଧୁମ > ଗହମ ।

(ଣ) ନାସିକ ବ୍ୟଞ୍ଜନ ଅନୁନାସିକରେ ପରିଣତ । ଯଥା- ଜାମାତା > ଜ୍ୱାଇଁ, ଗ୍ରାମ > ଗାଁ, ଖମଣା > ଗଁଣା, ଗୁମର > ଗୁଅଁର, ଯାମଳା > ଯାଆଁଳା, ସ୍ୱାମୀ > ସାଇଁ, ସାମନ୍ତରାୟ > ସାଆଁନ୍ତରା ।

(ତ) ଅନେକ ସ୍ଥାନରେ 'ହ' ସ୍ଥାନରେ 'ଇ'ର ବ୍ୟବହାର । ଯଥା- ଦହି > ଦଇ, ସହୀ > ସଇ, ଗୁହୀ > ଗୁଇ (ଖଣା), ନାହାକି > ନାଇକି, ସାହି > ସାଇ, ଗ୍ରହୀତା > ଘଇତା, ସାହେବ > ସାଇବ ।

**(୩) ଶବ୍ଦର ରୂପ ପରିବର୍ତ୍ତନ :**

(କ) ସର୍ବନାମ ପ୍ରୟୋଗର ବିଶେଷତ୍ୱ । ଯଥା- ସେଇଟା > ସେଟା, କେଉଁଠି > କେଠି, କେଉଁଠିକି > କେଇଟିକି, କୁଆଡ଼େ > କା'ଆଡ଼େ, କେମିତି > କି'ଡ଼ି, କେମିତିକି > କିଁ'ତିନା, କିଏ > କେ, କୁଆଡ଼େ > ଯା'ଡ଼େ, ସେମିତି > ସିଁତି ।

(ଖ) ସର୍ବନାମରେ ବିଭକ୍ତି ପ୍ରତ୍ୟୟର ପରିବର୍ତ୍ତିତ ରୂପ । ଯଥା- ମୋତେ > ମତେ, ତୋତେ > ତତେ, ତୋହର > ତୋର, ମୋହର > ମୋର > ମର, ତାହାର > ତାର, ତୋ'ପରି > ତିପିନି । ବାକ୍ୟଗଠନ - ତୋ'ପିନି ନୁକ ନେଇ ଚଳିବା ମୁସ୍କିଲ ।

(ଗ) ପରିମାଣ ଦୃଷ୍ଟିରୁ ସର୍ବନାମର ଭିନ୍ନ ରୂପ ପ୍ରୟୋଗ । ଯଥା- ସେତେ > ସେତେଗା, ଏତେ > ଏତେଗା, ପାଏ ଚାଉଳ > ପାଏ କାନ୍ତୁର ଚାଉଳ, ଦି ଦିନ ପାଇଁ > ଦି'ଦିନ କାନ୍ତୁରୁ ।

(ଘ) ପ୍ରଶ୍ନବାଚକ କ'ଣ ସ୍ଥାନରେ କିସର ପ୍ରୟୋଗ । ବାକ୍ୟ - ସେ କିସ କରୁଚି ? ତୁ କିସ ଖାଇଚୁ ? ମୁଁ ସେଠିକି କିସ ନାଗି ଯିମି ?

(ଙ) ପ୍ରଶ୍ନ ସ୍ଥଳରେ 'ହଁ' ବା 'ନାଁ'ର ସ୍ୱତନ୍ତ୍ର ପ୍ରୟୋଗ । ତୁ ଯିବୁ ହଁ । ତୁ ଖାଇବୁ ହଁ । ତୁ ଯିବୁନା ? ତୁ ଖାଇବୁନା ? ତୁ ଯାଉଚୁନା ଦେଖିବୁ ।

(ଚ) ନିମିତ୍ତାର୍ଥ ଚତୁର୍ଥୀ ବିଭକ୍ତି 'ପାଇଁ' ସ୍ଥାନରେ 'କ୍ତୁରୁ' ବା 'ନାଗି'ର

ପ୍ରୟୋଗ ।

ତଅରି ଲୁଗୁରୁ ମର ସର୍ବନାଶ ହେଲା ।

ତଅରି ନାଗି ମର ଏତେ ଖର୍ଚ୍ଚ ହେଲା ।

(ଛ) ଦ୍ୱିତୀୟା ବିଭକ୍ତି 'କୁ' ସ୍ଥାନରେ 'କେ'ର ପ୍ରୟୋଗ । ମୁଁ ହାଟ୍‌କେ ଯାଉଚି ।

(ଜ) ଅସମାପିକା କ୍ରିୟା ପଦରେ 'ବାକୁ' ସ୍ଥାନରେ 'ତେ'ର ପ୍ରୟୋଗ । ମୁଁ ଖାଇବାକୁ ଯାଉଚି > ମୁଁ ଖାଇତେ ଯାଉଚି । ମତେ ଢିଲା ଅଙ୍ଗା ପିନ୍ଧିବାକୁ ଭଲଲାଗେ > ମତେ ଢିଲା ଅଙ୍ଗା ପିନ୍ଧିତେ ଭଲଲାଗେ । ସେହିପରି- ରାନ୍ଧିବାକୁ > ରାନ୍ଧିତେ, ପଢ଼ିବାକୁ > ପଢ଼ିତେ, ଗାଧୋଇବାକୁ > ଗାଧୋଇତେ, ଧୋଇବାକୁ > ଧୋଇତେ, ଲେଖିବାକୁ > ଲେଖିତେ

(ଝ) ସପ୍ତମୀ ବିଭକ୍ତି'ରେ' ସ୍ଥାନରେ 'ର' ବା 'ଲ'ର ପ୍ରୟୋଗ । ଲୋକଟି ବିଲରେ କାମରେ କରୁଚି > ଲୋକଟି ବିଲର କାମ କରୁଚି । ଆମ ବାଡ଼ିରେ ନଡ଼ିଆ ଗଛରେ ଅଛି > ଆମ ବାଡ଼ିର ନଡ଼ିଆ ଗଛ ଅଛି ।

(ଞ) ଅନିଶ୍ଚିତ ଅର୍ଥରେ 'ହୁଏତ' ସ୍ଥାନରେ 'ମାଢ଼େ'ର ପ୍ରୟୋଗ । ଯଥା- ମୁଁ ହୁଏତ ଯାଇପାରେ > ମୁଁ ମାଢ଼େ ଯାଇପାରେ । ଆଜି ହୁଏତ ବର୍ଷା ହେବ > ଆଜି ମାଢ଼େ ବର୍ଷା ହେବ ।

(ଟ) ପଞ୍ଚମୀ ବିଭକ୍ତି 'ରୁ' ସ୍ଥାନରେ 'ନୁ'ର ପ୍ରୟୋଗ । ଗାତରୁ > ଗାତନୁ, କିତରୁ > କତନୁ, ଯାତ୍ରାରୁ > ଯାତ୍ରାନୁ । ପାହାନ୍ତାରୁ > ପାହାନ୍ତାନୁ । ଦିନରୁ > ଦିନୁ । ବାକ୍ୟ-ବାପା କେତେଦିନୁ ଗଲେଣି ଦେଖାନାହିଁ ।

(ଠ) ନସ୍ୟର୍ଥକ 'ନାହିଁ' ସ୍ଥାନରେ 'ନ'ର ପ୍ରୟୋଗ ।

ସେ ଖାଉ ନାହିଁ > ସେ ଖାଉନି ।

ସେ ଯାଉ ନାହିଁ > ସେ ଯାଉନି ।

ସେ ଦେଉ ନାହିଁ > ସେ ସେଉନି ।

(ଡ) ଅନେକ ଯାବନିକ ଶବ୍ଦରେ ଓଡ଼ିଆ ପ୍ରତ୍ୟୟର ଯୋଗ ।

ଆନ୍ଦାଜ+ଇଆ > ଆନ୍ଦାଜିଆ, ଆର୍ଜି+ଖିଆ > ଅର୍ଜିଖିଆ, ଆସ୍‌ମାନ୍+ଇ > ଆସ୍‌ମାନି, ଅସଲ+ଇ > ଅସଲି, ନକଲ+ଇ > ନକଲି, ଅଟକ+ଇବା > ଅଟକିବା ।

(ଢ) କଥିତ ଓଡ଼ିଆ ଶବ୍ଦରେ ପାର୍ସି ପ୍ରତ୍ୟୟ ଓ ଉପସର୍ଗ ଯୋଗ । ଯଥା- 'ଆନି' ବା 'ଆଣି' ପ୍ରତ୍ୟୟ - ବାବୁଆନି, ସାହେବାଣୀ, ଗିରିଆଣୀ ।

'ଗିରି' ପ୍ରତ୍ୟୟ ଯୋଗରେ - ବାବୁଗିରି, ଦାଦାଗିରି, କିରାଣୀଗିରି, ଗୁଣ୍ଡାଗିରି, ବେଶ୍ୟାଗିରି ।

'ଦାର' ପ୍ରତ୍ୟୟ ଯୋଗ- ଦୋକାନଦାର, ବାଜାଦାର, ମୌଜଦାର ।

'ବାଜ୍' ପ୍ରତ୍ୟୟ ଯୋଗ- ଧଡ଼ିବାଜ୍, ଚାଲୁବାଜ୍, ଗୁଣ୍ଡାବାଜ୍ ।

'ସଇ' ପ୍ରତ୍ୟୟ ଯୋଗ- ମଫେସଇ, ଟେକ୍‌ସଇ ।

'ଫି' ଉପସର୍ଗ ଯୋଗ- ଫି-ହତା, ଫି-ବାର, ଫି-ବରଷ, ଫି-ତାରିଖ ।

'ବେ' ଉପସର୍ଗ ଯୋଗ - ବେ-ବନ୍ଦୋବସ୍ତ, ବେ-ପରବାୟ, ବେ-ହାଲ୍, ବେସରମ, ବେତାଳିଆ, ବେ-ଢଙ୍ଗ ।

'ଅଣ' ଉପସର୍ଗ ଯୋଗ-ଅଣବାବୁଆ, ଅଣଘରିଆ ।

**(୪) ଉତ୍ତର ଓଡ଼ିଶା ଲୋକ କଥିତ ଭାଷାର ବିଭିନ୍ନ ଶବ୍ଦ ଭଣ୍ଡାର :**

ଉତ୍ତର ଓଡ଼ିଶାରେ ପ୍ରଚଳିତ ଶବ୍ଦଭଣ୍ଡାରକୁ ବିଚାର କଲେ ଏଥିରେ ଏକାଧାରରେ ଦେଶଜ, ବୈଦେଶିକ, ଭାଷାଗୋଷ୍ଠୀର ଶବ୍ଦମାନ ଦେଖିବାକୁ ମିଳେ ।

**(କ) ଦେଶଜ ଶବ୍ଦ :** ଅଙ୍ଗା (ଜାମା), ଅଖା (ବୁରା), ଅଖଳ (ଖୋଲା), ଅଘା (ଲକ୍ଷ୍ୟ), ଅଟଙ୍ଗା (ନଡ଼ାଗୁଚ୍ଛ), ଅଇଣ୍ଡି (ମା' ଛେଉଣ୍ଡ), ଅଘିରା/ଅଇଘରା (ମାଘ ପୂର୍ଣ୍ଣମୀ), ଅଇଣ୍ଡିଆ (ଅଜୀର୍ଣ୍ଣ ଝାଡ଼ା), ଅକଳିଆ (ଅସୁବିଧା), ଅଞ୍ଜେଇବା (ମୁହଁ ଧୋଇବା), ଅଖାଡୁଆ (ବିଚାର ଶୂନ୍ୟ), ଅକାଟ (ଯାହାକୁ କଥା ବାଧେ ନାହିଁ), ଆପପାକା (ଛାନିଆଁ ହେବା), ଅଲରା (ଏଣେ ତେଣେ), ଅଣ (ଝୋଳ), ଅକାଣ୍ଡିଆ (ମଳିଛିଆ), ଅକାତ (ଗଭୀର), ଅବାଗିଆ (ଶୃଙ୍ଖଳାହୀନ), ଅବାହୁଳା (ଅବିବାହିତ ଲୋକ), ଅକଳାଣ (ନିଅଣ୍ଟ), ଆଉଣ୍ଡିବା (ଘାଣ୍ଟିବା), ଅଳପେଇଷା (ଅଳ୍ପ ଆୟୁଷ), ଅଶୁଦିଆ (ଅଶୌଚ), ଅସଲା (ଅସରପା), ଆସା (ଅଗାଡ଼ି ହୋଇଯିବା), ଅଖବା (ଅବାଗିଆ), ଅଖି ମୁଠି (ଅକ୍ଷୟ ତୃତୀୟାରେ ବୁଣା ବିହନ), ଅଗଟ୍ୟା (ବାଧ୍ୟ ହୋଇ), ଅଜରା (ବେହିଆ), ଅଝାଲ (ଡଙ୍ଗାରେ ବନ୍ଧା ପାଲ), ଅଟା (ନିଆଁ ବଡ଼), ଅଠାକାଠି (ଚଢ଼େଇ ଧରିବା ନଳ), ଅଡ଼େଇବା (ପଶୁକୁ ପଛରୁ ଚଳେଇବା), ଅଢ଼ଙ୍ଗ (ଅସଜଡ଼ା), ଅଣଖା (ଖାଡ଼ି ଜାତୀୟ ଗଛ), ଅଡ଼େଇବା (ପଶୁକୁ ପଛରୁ ଚଳେଇବା), ଅଢ଼ଙ୍ଗ (ଅସଜଡ଼ା), ଅଣଖା (ଖାଡ଼ି ଜାତୀୟ ଗଛ), ଅଣ୍ଟା ଦଉଡ଼ି (ଅଣ୍ଟା ସୂତା), ଅଣ୍ଟାଗୁଞ୍ଜି (ଲାଞ୍ଜ), ଅଣ୍ଡିଆ (ଷଣ୍ଢ), ଅଣ୍ଡିରା ଚଣ୍ଡୀ (ଉଗ୍ର ପ୍ରକୃତିର ସ୍ତ୍ରୀ), ଅତର୍କ୍କା (ଆକସ୍ମିକ ଅର୍ଥରେ), ଅଥାତା (ଆଶ୍ରୟହୀନ), ଅଧାଡୁଆ (ଅବାଗିଆ); ଅଧିଆ (ଧାରଣା ଦେବା), ଅନାଡ଼ି (ଅଯୋଗ୍ୟ), ଅନାବନା (ଅଦରକାରୀ), ଅନିଶା (ଚାହିଁ ରହିବା), ଅପଘାତ (ଆକସ୍ମିକ ମରଣ), ଅପଗଣ୍ଡ (ମୂର୍ଖ), ଅମଳ (ସମୟ ଅର୍ଥରେ), ଅର୍ଜିଖିଆ (କମାଣି କରି ଚଳିବା), ଅଲଖଣା (ଅଶୁଭ), ଅଲାତ (ନିର୍ଲ୍ଲଜ), ଅସକିରା (ଅପରିଷ୍କାର ଅର୍ଥ), ଅହନ୍ତା (ଶତ୍ରୁତା), ଅହିଆ (ଚୁଲି), ଆକ୍ତାମାକ୍ତ (ଅଣନିଃଶ୍ୱାସୀ), ଆଟୁ (ମାଟିଘର ଛାତ), ଆଗତକହି (ଉପରେ ପଡ଼ି କହୁଥିବା ଲୋକ), ଆଗାପିଛା (ଠିକ୍ ଠିକଣା), ଆଗୁଳି (ଆକଟ), ଆପୁ (ଅଫିମ), ଆବଡ଼ାଖାବଡ଼ା (ବନ୍ଧୁର), ଆବୁରିବା (ଆୟତ୍ତ କରିବା), ଆଳିମାଳିକା (ବିଭିନ୍ନ ଜିନିଷ ମିଶି ରହିବା ଜାଗା), ଓକାଳିବା (ବାନ୍ତି କରିବା), ଉଚ୍ଚବାଚ (ଏଣୁତେଣୁ କରି କହିବା), ଉଜାଡ଼ (ସବୁ ଚାଲିଯିବା), ଉଠିଆ (ମାଗଣା), ଉତିଆଣି (ଦୁଧ ଖିଆ ଛୁଆ), ଉଦାରିଆ (ବୋକି),

ଉପିବା (ଚିକ୍କଣ କରିବା), ଉବୁକା (ଉପରମୁହାଁ ଉଠିବା), ଉସୁଆଁ (ଅଧାସିଝା), ଉସ୍‌କେଇବା (ପ୍ରରୋଚିତ କରିବା), ଏକଶିଙ୍ଗା (ନିଜେ ସବୁକାମ କରିବାର ଅହଂକାର), ଏଣ୍ଡୁଲିଆ (କ୍ଲାନ୍ତ), ଓଥର (ଅବିବାହିତ ପୁରୁଷ), ଓଲାଉଠା (ହଇଜା), ଓଳିଆ (ଧାନ ରଖିବା ପାଇଁ କୁଟା ନିର୍ମିତ ଥଳି), କଇଁଆ (କଞ୍ଚା ତେନ୍ତୁଳି), କଦର୍ଥନ (ଦୁଃଖ ଯନ୍ତ୍ରଣା), କଚୁ (ସାରୁ), କଡ଼ମା (ମାଛ ବିଶେଷ, ଧାନ ବିଡ଼ା ବାନ୍ଧିବା ଗୁଛ), ଚାଳ ସୁନ୍ଦର ଦିଶିବା ଲାଗି ଅଗରେ ଦିଆଯାଇଥିବା କୁଟାଗୁଚ୍ଛ, ଦୁର୍ବଳିଆ ଗରିବା ଜାତୀୟ ଜିନିଷ), କଡ଼ାଣ (ପ୍ରଥମ ହଳ କରିବା), କଣ୍ଟିଆ (ମାଛ ବିଶେଷ), କତରା (ଛିଣ୍ଡା ମସିଣା, ଛିଣ୍ଡା ଗୁଧୁଡ଼ି), କନକନ (ଉଦ୍‌ବିଗ୍ନ ହୋଇ ଚାହିଁବା), କନ୍ଥୁଡ଼ା (ଛିଣ୍ଡା ଚିରା କନା), କନ୍ଥା (ପତଳା ରେଜେଇ), କବଟା (ଛୋଟ ଲୁଗା), କରଚୁଲି (ଛୋଟ ଡଙ୍କି), କରତାଳ (ଝାଞ୍ଜ), କରାଣ୍ଡି (ମାଛ ବିଶେଷ), କରିଆ (ଛୋଟ ଗାମୁଛା), କାଉଁରିଆ (ନଳିତା ଗଛର କାଠି), କାଇଲି (ଅନୁନୟ ହେବା), କାଛା (ଲେଙ୍ଗୁଟି), କାଞ୍ଜି (ଷଡାରାଣିରେ ତିଆରି ବ୍ୟଞ୍ଜନ), କାଟୁ (ଫଳପ୍ରଦ), କାଟୁଣୀ (ଭୁତ ଛଡ଼ାଇବା ଲାଗି ବ୍ୟବସ୍ଥା), କାଠା (ଜମିର କିଛି ଅଂଶ), କାଡ଼ିଆ (ଉଧାର), କାତୁଆ (ପାରିବା ପଣ), କାଣ୍ଟିଆ (ତେଲର ମଇଳା ଅଂଶ), କାନ୍ଥୁଡ଼ା (ଭଙ୍ଗା କାନ୍ଥ, ଛିଟା ବାଡ଼ କାନ୍ଥ), କାନ୍ଥକୁରା (ଠଣା), କାନ୍ତାର (ଦୁର୍ଗମ ଅଞ୍ଚଳ, ଲୋକ ଗହଳି), କାନଫୋଡ଼ା (କର୍ଣ୍ଣବେଧ ସଂସ୍କାର), କାନ୍ଧିଆ (ଖଟା ଲେମ୍ବୁ ବିଶେଷ), କପଡ଼ା (ଲୁଗା), କାବା (ଆଶ୍ଚର୍ଯ୍ୟ), କାବାର (ଶେଷ), କାବୁ (ଅକ୍ତିଆର), କାରସାଦି (କୌଶଳ), କିରିଆ/କିଡ଼ିଆ (ପୋକରା ଚାଉଳ), କୋଢ଼ି (କର୍ମଠ, କୁଷ୍ଠ ରୋଗୀ), କୁଡୁଆ (ଛୋଟ ମାଟି ହାଣ୍ଡି), କୁଣିଆ (ବନ୍ଧୁ, ଛୋଟ କାଛ ବିଶେଷ), କୁତ (ହାରାହାରୀ ମୂଲ୍ୟ ନିରୂପଣ), କୁଦା (ଲମ୍ଫ), କୁମୁଟି (ଜଣକ ବିରୁଦ୍ଧରେ କୁମନ୍ତ୍ରଣା, ଜାତି ବିଶେଷ), କୁମ୍ପା (ପଇସା ରଖିବା ଛୋଟ ସରା), କୁରୁଣ୍ଡ (ବର୍ଦ୍ଧିତ ଅଣ୍ଡକୋଷ), କୁର୍ଚ୍ଚି (ଫତେଇ), କୁଳୁକୁଞ୍ଚା (ପାଟିରେ ପାଣି ରଖି ଏପଟ ସେପଟ କରିବା), କୁତୁଟି (ଅଣ୍ଡା ଖାଇଯିବା ପରେ ମାଇ କୁକୁଡ଼ାର ଅବସ୍ଥା), କୁହାଟ (ବଡ଼ ପାଟି କରି ଡାକିବା), କେନ୍ଦୁଆ (ହେଟା ବାଘ, ଅଳସୁଆ ହୋଇ ବସିରହିବା), କୋତରା (ମଇଳା), କୋଥଳୀ (ମୁଣି), କୋଳପ (ତାଲା), କପୁନି (ଲେଙ୍ଗୁଡ଼ି), ଖଇଁଚି (ମାଛ ଧରିବା ଯନ୍ତ୍ର), ଖକାଁଳି (ପେଟକୁ ଭିତରକୁ ଟାଣିବା), ଖଙ୍ଗା (ମାଛ ବିଶେଷ), ଖଚଡ଼ (ଦୁଷ୍ଟ), ଖଚୁଆ (କାନୁକୁହା), ଖଦା (ପେଡ଼ା ଆଖୁ ଛେଦା), ଖପା (ରାଗିବା), ଖମଣା (ଖାଲ), ଖମାର (ଅମାର), ଖରକିବା (ଝାଡୁ କରିବା), ଖସୁ (କାଛୁ କୁଣ୍ଡିଆ ଘିମିରି), ଖାଉଡ଼ (ପଲ), ଖାଙ୍କିବା (ମୁଣ୍ଡ କୁଣ୍ଡେଇବା, ପେଟ ଖଙ୍କାଳିବା), ଖାଣ୍ଡିଖିଆ (ମାଗିଖିଆ), ଖାରୁଆ (ଖାର ଯୁକ୍ତ ପାଣି), ଖାଳେଇ (ମାଛ ରଖିବା ପାତ୍ର), ଖାସି (ଧରାଣ ହୋଇ ନ ଥିବା ଅଣ୍ଡିରାଛେଳି), ଖିଙ୍କାରିବା (ବିରକ୍ତି ପ୍ରକାଶ କିବା), ଖିଟ୍ ଖିଟ୍ (ଅସନ୍ତୋଷ), ଖୁଆଡ଼େ (ଗୋରୁକୁ ଅଟକ ରଖିବା ସ୍ଥାନ), ଖେଞ୍ଚ (ପର ନାଁରେ ଚୁଗୁଲି କରିବା),. ଖୁଞ୍ଚା (ଚାଳରେ କୁଟା ଗୋଞ୍ଜିବା), ଖୁଣ୍ଟା (ଗଞ୍ଜଣା), ଖୁଣ୍ଟିବା, ଖୁରି (ମାଟି ଗିଲାସ), ଖେଚଡ଼ (ବଦମାସ),

ଖେଣ୍ଡା (ମୁନିଆଁ କଣ୍ଟା), ଖେଣ୍ଟିବା (କମେଇବା), ଖେପିବା (ଗୋଡ଼େଇ ଯିବା), ଖୋଇଆ (ଠକ), ଗୁଇଁମାରୁ (ମନ ଭିତରେ ଗଣ୍ଠି ରଖିଥିବା ଚୁପ ସଇତାନ୍), ଗଇଁଠା (ପିଠା ବିଶେଷ), ଗଇଁତା (ମାଟି ଖୋଳିବା ଯନ୍ତ୍ର), ଗଡ଼ଁ (ମନରେ ଗଣ୍ଠି ରଖିବା), ଗରଗର (ରାଗରେ ଧୀରେ ଧୀରେ ପାଟି କରିବା), ଗର୍‌ଦା (ଖଦଡ଼), ଗହକି (ଗରାଖ), ଗଳଗ୍ରହ (ବୋଝ), ଗାଲୁଆ (ମିଥ୍ୟାବାଦୀ), ଗେରସ୍ତ (ସ୍ୱାମୀ), ଗୋଠଖଣ୍ଡିଆ (ଦଳରୁ ଅଲଗା), ଘଳିଆ (ହିଡ଼ର ବଡ଼ କଣା), ଘର ଯୋଗ୍ୟ (ପ୍ରାପ୍ତ ବୟସ୍କା ସ୍ତ୍ରୀ), ଘସରା (ଅଚଳ), ଘସାମଜା (ବାରମ୍ବାର ସେକଥାକୁ ଘାଣ୍ଟିବା), ଘାଉଆ (କ୍ଷତାକ୍ତ), ଘାଉଡ଼ (ସାପ କାମୁଡ଼ି ଦେବା ଅବସ୍ଥା), ଘାଟିଆ (ମାଝି), ଘିଞ୍ଚିବା (ଟାଣିବା), ଘୁଙ୍ଗୁଡ଼ି (ଶୋଇବା ବେଳେ ନାକର ଶବ୍ଦ), ଘରଣା (ଘେରେଇବା କାଠି), ଘୋଳ (ମୁହାଁ ଦହି), ଚଉକଷ (ମଜ୍‌ଭୁତ୍), ଚଉକିଆ (ପହରାବାଲା), ଚଉତରା (ଚାନ୍ଦିନୀ), ଚଉଦୋଳ (ପାଲିଙ୍କି), ଚଉବଟା (ଚାରି କଣିଆ ଜଳଧାରା), ଚୌହଦୀ (ଚାରିସୀମା), ଚକଲା (ଖଣ୍ଡେ ଅଞ୍ଚଳରେ ବାସକରୁଥିବା ଲୋକଙ୍କ ସାହି, ପାହି ଜାଗା), ଚଟୁଆ (ଗୋଡ଼ର ଉପର ଅଂଶ, ଡାଙ୍ଗ), ଚପେଟାଘାତ (ଚାପୁଡ଼ା ମାରିବା), ଚମଦଳା (କୁଣ୍ଡିଆ), ଚାହଁକିଚିକା (କୃତ୍ରିମ ସୌନ୍ଦର୍ଯ୍ୟ), ଚାହିଦା (ପ୍ରୟୋଜନ), ଚରିଚିରା (ଚିଡ଼େଇବା ପ୍ରକୃତିର), ଚିରିଣି/ଚିରୁଣି (ପାନିହାଁ), ଚିରୁଡ଼ା (ଫଟା ଫଟା ଦାଗ), ଚିଲମ (ଗଞ୍ଜେଇ ଟଣା ଛୋଟ କଲି), ଚିଲା ମାରିବା (ଡିଆଁ ଡେଇଁ କରିବା), ଚୁଙ୍ଗି (ଡିବି, ଲମ୍ପ), ଚୁଙ୍ଗା (ନଳୀ ବିଶେଷ), ଚୁଙ୍ଗୁଚୁଙ୍ଗିଆ (ତୁରୁତୁରିଆ ଭାବ), ଚୁଣ୍ଡା (କୃପଣ, କଣା ସ୍ଥାନକୁ ବୁଜିବା), ଚୁପୁଲି (କାଠ ଛାଲି, ଗୋଡ଼ ମୁଦି), ଚୁର୍‌କି (ନଣ୍ଡା ହେବା ପରେ ଛାଡ଼ିଥିବା ଚୁଟି), ଚେକା (ଘାସ ଯୁକ୍ତ ମାଟି ଛେଦା), ଚେଙ୍କା (ନିଆଁ ଦାଗ), ଚେଟି (ଦାସୀ, ପୋଇଲି), ଚେଣ୍ଟରା (ବାମ, ବାରମ୍ବାର ବିରକ୍ତ କରୁଥିବା ବ୍ୟକ୍ତି), ଚେନାଏ (ଟିକିଏ), ଚେପ୍‌ଟା (ଦବି ଯାଇଥିବା), ଚେମଡ଼ା (ସହଜରେ ଛିଡୁନଥିବା), ଚୋକଡ଼ (ଗହମ ଗୁଷି), ଚଠା (ନିଚ ପ୍ରକୃତିର ଲୋକ), ଚୋଦକ (ତିରସ୍କାରକାରୀ), ଚୋଦନା (ତିରସ୍କାର), ଛଅଁତା (ଅଛୁଆଁ), ଛଅଁଚା/ଛୁଞ୍ଚେଇବା (ପାଞ୍ଚେଇବା, ମଳ ତ୍ୟାଗକରି ସଫା କରିବା), ଛାନିଆଁ (ଉଦ୍‌ବିଗ୍ନ ହେବା), ଛାମୁଡ଼ିଆ (ନଡ଼ିଆ ଓ ତାଳପତ୍ରର ଛାୟାମଣ୍ଡପ), ଛିଆ (ଛପର, ଘୃଣାବାଚକ ଶବ୍ଦ), ଛିକାର (ଧିକ୍କାର), ଛିଣ୍ଡାଳୀ (ବେଶ୍ୟା), ଛିନିକାନିଆ (ଘୃଣାରେ ଶିହରି ଉଠିବା), ଛୁଆଁ ଛୁତି (ଅସ୍ପୃଶ୍ୟ), ଛେଉଣ୍ଡ (ମାତୃହୀନ), ଛେଗୁଆ (ଭୟାଳୁ), ଛୋପରା (ପରିହାସକାରୀ), ଜଳକା (ଦୃଷ୍ଟିଶକ୍ତିହୀନ), ଯାଁଙ୍କ (ଜିଦ୍), ଜାଡ଼ (ଶୀତ), ଜାବ୍‌ଡ଼ା (ଚାପୁଡ଼ା), ଜୁଆଁଇବା (ଲୁଣ ମସଲା ଦେଇ ପାଗ କରିବା), ଝକମାରି (ବିବେଚନା ଅଭାବରୁ ହଇରାଣ ହେବା), ଝଙ୍କା (ଝାମ୍ପୁଡ଼ା, ବେତ ପାଛିଆ), ଝନ୍‌ଝଟ (ଗୋଳମାଳିଆ), ଝଟକା (ରହିରହି ଟାଣିବା), ଝଟା (ଜାଳଣି ପାଇଁ ସରୁସରୁ କଣ୍ଟା ଡାଳ), ଝଟପଟା (ଭୀଷଣ କଳି), ଝପଟ (ଶୀଘ୍ର), ଝଲା (ଚୁଆ), ଝାବରା (ଅଗାଡ଼ି), ଝାମା (ଅତି ପୋଡ଼ି ଯାଇଥିବା), ଝାମ୍ପିବା (ପଞ୍ଝା ଦ୍ୱାରା ଆକ୍ରମଣ କରିବା), ଝିଙ୍କା (ଚୁଲି ଝିଙ୍କା), ଝିଙ୍ଗାସ (ଗାଳି), ଝିନ୍‌ଝଟ୍

(ଅଡୁଆ ମଡୁଆ), ଝୁଣିବା (ମାଂସ ଗୁଳା ଟାଣିବା), ଝୁମ୍‌କି (ଛୋଟ ଘୁଙ୍ଗୁର), ଝୁପା (ଗୋଛା), ଝୁମ୍ପୁଡ଼ି (ନୁଆଁଣିଆ ଚାଳ ଘର, ଶାଗ ବିଶେଷ), ଝୋଲା (ଭୋକ ଲାଗିବା, ମୂର୍ଚ୍ଛା), ନୂଆଖିଆ (ନବାନ୍ନ), ନେଞ୍ଜରା (ଆଖିରୁ ଝରୁଥିବା ନେଞ୍ଜରା), ନେଡ଼ି (କର ତଳ ଉପର ଅଂଶ), ଲେଣ୍ଟି (ଇତର), ଲେଣ୍ଡା (ଅଡୁଆ), ଲେନ୍ତା (ପେନ୍ଥା), ନେଙ୍କଡ଼ା (ଭୂତ ଭୟ, ଛଣ୍ଡାଲୁଗା), ନେଫଡ଼ା (ଦାନ୍ତ ଦେଖେଇବା), ନେଉଡ଼ା (ଲମ୍ପଟ), ନୁଲୁକ (ନାସା ଅଳଂକାର), ପଇଁଚି (ହାତ ଖଡୁ, ଅଣ୍ଟା ସୂତା), ପଇଆ (କାଉଁରିଆ କାଠି), ପଖିଆ (ତାଳପତ୍ର ଘୋଡ଼ଣୀ), ପଘାର (ଉଚ୍ଚା ହିଡ଼), ପଚରା (କାଦୁଅ ଜଡ଼ସଡ଼), ପଝାରି (ନୌକାରୋହୀ), ପଞ୍ଚବାଣ (ଭୀଷଣ ରାଗିଯିବା), ପଟୁକା (କଦଳୀ ବାହୁଙ୍ଗାର ତନ୍ତୁ), ପଲାଣ (ବଳଦ ପିଠିରେ ପଡ଼ିଥିବା ଗଦି), ପାଇକଛା (ପଛ ପଟେ ମରା ହୋଇଥିବା କୁଞ୍ଚକାନି), ପାଇକାରି (ମୋଟା ବେପାରି), ପାଇଟି (ଘରକାମ), ପାଞ୍ଚିବା (କାମନା କରିବା), ପାଟୁଆ (ଭଳ୍ଲା), ପାଇଆ (ମାଟି ତିଆରି ଖୁଣ୍ଟ), ପାହି (ଦୂର ବିଲ), ପାରୁପଣେ (ନିଜ ସାମର୍ଥ୍ୟ ଅନୁଯାୟୀ), ପାଳତି (ପିଲା ପାଳୁଥିବା ଧାଉ), ପାସଙ୍ଗ (ପାଲିର କମ ବେଶି), ପିଛୁଳା (ଆଖିପତା ମାରିବା), ପିମ୍ପା (ଡିବି), ପୁଆଣି (ପୁଷ୍ପବତୀ ହେବା), ପୁଆତି (ପିଲା ଜନ୍ମ କରୁଥିବା ସ୍ତ୍ରୀ), ପୁସ୍‌କୁରା (ଭୂତ ଜାତୀୟ), ପେଖନା (ବାହନା), ପୋଇଁବା (ସେକିହେବା), କୋଖତିଆଳି (ପ୍ରସୂତ ସାହାଯ୍ୟକାରୀ, ସୁରୁଣି), ପୋଖରିପାଣି (ଝାଡ଼ା ଯିବା), ଫଇମା (ବାରବୁଲା), ଫକଫକ (ଡିଆଁଡ଼େଇଁ), ଫନ୍ଦା (ପେଷା), ଫାକଶି (ଚେତଶୂନ୍ୟ), ଫାନ୍ଦିବା (ମନରୁ ଯୋଡ଼ି କହିବା), ଫାବିବା (ହକ୍ ପାଇଁ ଉପଯୁକ୍ତ ହେବା), ଫିର୍‌ଫିରା (କାନର ଗହଣା), ଫୁଲୁଗୁଣା (ନାକଗହଣା), ଫୁଲା ଫାଙ୍କିଆ (ଦାୟିତ୍ୱହୀନ), ଫେନ୍ଦ (ଧାର), ବଗଡ଼ା (ମୋଟା), ବଗୁଲିଆ (ଚଗଲା), ବଘାରିବା (ଛୁଙ୍କ ଦେବା), ବଣ୍ଟୁଆରା (ବଣ୍ଟାଯାଇଥିବା), ବହକା (ଅଧିକା), ବାଇଟୁଙ୍ଗୁରି (ଅସ୍ଥିର ମନା), ବାଗ ବାଇଶ (ଠିକ୍ ଠିକଣା ନଥିବା), ବାଇଁଆ (ବାଁ ହାତରେ ଯେ କାମ କରେ), ବାଉଳି (କର୍ଣ୍ଣ ଅଳଂକାର), ବାଏଁ ବାଏଁ (ଶୂନ୍ୟେ ଶୂନ୍ୟେ), ବାଞ୍ଝ (ବନ୍ଧ୍ୟା), ବାଟଣ (ବେସର), ବାତାନି (ଖବର), ବାରୁଆଳି (ବାର ଘର ବୁଲୁଥିବା ସ୍ତ୍ରୀ), ବଳିସରା (ବାଲି ତଳର ପାଣି), ବାହାଡ଼ା (ଦାନ୍ତ ଉପରେ ଦାନ୍ତ ଚଢ଼ିଯିବା), ବାହାନା (ଛଳନା), ବାହାପିଆ (ଫୁଟାଣିଆ), ବାହୁଙ୍ଗି (ଭାର ବୋହିବା ଯଷ୍ଟି), ବିହିଡ଼ିବା (ଧାନ ଗଛ ଥିବା ଜମିରେ ହଳ କରିବା), ବାହୁଟି (ବଳା ଜାତୀୟ ଗହଣା), ବିରାଦର (ଜ୍ଞାତି ବନ୍ଧୁ), ବେଉଷଣା (ଅମଳ), ବେଙ୍ଗଳା (ମେରି ଖୁଣ୍ଟ ଚାରିପଟେ ବଳଦ ବାନ୍ଧି ଧାନ ଅମଳ କରିବା), ବେଙ୍ଗା (ଅଡୁଆ), ବେଧ (ଜାରଜ ସନ୍ତାନ), ବୋକଚା (ଗଣ୍ଠିରା), ବୋଲହାଁକ (ଆଦେଶ ପାଳିବା), ଭକୁଆ (ଓଲୁ), ଭଗାରି (ଶତ୍ରୁ), ଭଗାରି ହସା (ଶତ୍ରୁ ଦ୍ୱାରା ଉପହସିତ ହେବା), ଉଗୁଡ଼ି (ଥଙ୍ଗା), ଉଡୁଆ (ବେହିଆ), ଉରାଣ୍ଡି (ଢେଙ୍କି ଗାଡ଼), ଭଲ ଲୋକି (ମଧ୍ୟସ୍ଥି), ଭାଇଆଳି (ଜ୍ଞାତି କୁଟୁମ୍ବ), ଭାଇଡ଼ା (ଜ୍ଞାତି ଭାଇ), ଭାଲିଆ (ଘା' ଶୁଖିବା ପାଇଁ ବ୍ୟବହୃତ ଫଳ), ଭୁଜା (ମୁଢ଼ି), ଭୁଟୁଭୁଟୁ (ଅନୁଚ୍ଚ କଥାବାର୍ତ୍ତା),

ଭୂତାଣ୍ଡି (ଓଲା), ଭୁଡୁକା (ଫୋଟକା), ଭୂଇଁ ତେଲ (କିରୋସିନି), ମଉଳାସୁର (ସ୍ୱୀର ମାମୁଁ), ମଙ୍ଗୁଳା (ମଙ୍ଗଳାଙ୍କ ଠାରେ ବରକନ୍ୟାଙ୍କ ଶୁଭକାମନା), ମଙ୍ଗିବା (ରାଜି ହେବା), ମଟାଳ (କାଦୁଅ ମାଟି), ମସରୀ (ପରଶ୍ରୀକାତରିଆ), ମରେଇ (ଧାନ ଅମାର), ମର୍ଦ୍ଦାନି (ମରଦ ପଣିଆ), ମଳା (ତାରା ଚାରିପଟେ ମନ୍ଦା), ମଳିମୁଣ୍ଡିଆ (ଗରିବ), ମସ୍କରା (ରହସ୍ୟକାରୀ ଲୋକ), ମାଇପ ସୁଆଗି (ସ୍ତ୍ରୀ ବୋଲକରା), ମାଟୁ (ଚାଳ ଘରର ଆଟୁ), ମାଟେଇବା (ବିଳମ୍ବ କରିବା), ମାଠୁଆ (ଠକ), ମାମୁଲି (ସାଧାରଣ), ମାସୁଆରି (ସ୍ତ୍ରୀର ରତୁସ୍ରାବ), ମୁଆଁସ (ଆସକ୍ତି), ମୁଟୁଳା (ଛୋଟ ତକିଆ), ମୁହଁ ଭୁରୁଡ଼ି (ମିଛ ଦାମ୍ଭିକତା ପ୍ରକାଶ), ମୁହାଁଶା (ବିଷୟାସକ୍ତ), ମେଣ୍ଟିବା (ମୀମାଂସା ହୋଇଯିବା), ମେଳେଛା (କୁତ୍ସିତ, ଅପରିଷ୍କାର ପିଲା), ରଇତ (ପ୍ରଜା), ରକଟିବା (ବାରମ୍ବାର ଚୋବେଇବା), ରୁଇଶୀତଳା (ଶବଦାହ ପରେ ଚିତାଗ୍ନିକୁ ଶୀତଳ କରିବା), ରକଟା (ଅଙ୍ଗାର ଅବଶିଷ୍ଟାଂଶ), ରକା (ଜଖମ), ରଗଡ଼ା (ଟାଣ), ରଗଡ଼ିବା (ମାଜିବା), ରଗରଗ (ରାଗରେ ଗର୍‌ଗର୍‌ ହେବା), ରଟମଟ (ଆଖି ବଡ଼ କରି ଚାହିଁବା), ରଟିବା (ପ୍ରଚାରିତ ହେବା), ରଣରିଅ (ଡିକ୍ରମ ଭାବ), ରମ୍ପା (କୁଣ୍ଡିଆ), ରାଇତା (ବେସରବଟା ତରକାରୀ), ରାଜିନାମା (ସମ୍ମତି ପତ୍ର), ରୁଅ (ଘର ଛାଉଣୀ ପାଇଁ ବ୍ୟବହୃତ ବାଉଁଶ), ରୁଆ (ଧାନଗଛ ଲଗାଇବା), ରେଣ୍ଟି (ଏକଜିଦ୍‌), ଲଘାପଘା (ଦାୟିତ୍ୱ ଶୂନ୍ୟ), ଲଟ (ଜଞ୍ଜାଳ), ଲଟିକଣି (ମାଛ ଧରିବା କୌଶଳ), ଲଟପଟ (ଗୋଡ଼ପାଖରେ ଭିଡ଼ି ହୋଇ ଏପଟ ହେବା), ଲଣ୍ଡଭଣ୍ଡ (ଅସ୍ତବ୍ୟସ୍ତ), ଲସଲସିଆ (ସନ୍ତସନ୍ତିଆ), ଲଶଛିବା (ଜୋର୍‌ରେ ବର୍ଷା ହେବା, ଲକ୍ଷ୍ୟକରି ଶରମାରିବା), ଲୁଣ୍ଡି (ତନ୍ତିର ମଣ୍ଡଦିଆ ସୂତା), ଲେଙ୍କଡ଼ା (ପୁରୁଣା କନା), ଲେଙ୍ଗଡ଼ା (ଛୋଟା), ଲେସ୍‌ମା (ସନ୍ତସନ୍ତିଆ), ଶଟାବଟା (କୌଣସି ମତେ କାମ ବଢ଼ାଇଦେବା), ଶିଆର (ଲଙ୍ଗଳ ଗାର), ଶିରିଣି (ସତ୍ୟପୀର ପୂଜାରେ ଲାଗୁଥିବା ଭୋଗ), ଶିରିପା (ପଗଡ଼ି), ଶୁଆ କଣ୍ଠିଆ (ଶାଗୁଆ ବର୍ଣ୍ଣ), ଶୁକୁଟା (ଦୁର୍ବଳିଆ, ଶୁକୁଶୁକୁ, ମୁମୂର୍ଷୁ), ଷଠି ଓଷା (ଭାଦ୍ରବ ମାସରେ ପାଳିତ ହେଉଥିବା ଷଠୀ ଦେବୀଙ୍କ ଓଷା ଯେଉଁଦିନ କିଛି ଲୋକଙ୍କ ଘରେ ଅରନ୍ଧା ପର୍ବ ପାଳନ ହୁଏ), ସକସକ (ହାଇଁ ପାଇଁ), ସଙ୍ଗିବା (ଗାଈର ଷଣ୍ଢ ସହ ମୈଥୁନ), ସଞ୍ଜା (ଖଞ୍ଜଣା ଚୁକ୍ତିବଧ ହେବା), ଷଣ୍ଡୁଆସି (ଚାଳଘରେ ଲାଗୁଥିବା ବଙ୍କା ବାଉଁଶର ଛକି), ସନ୍ତ ସନ୍ତିଆ (ଓଦା ଓଦା), ସବାଖିଆ (ସବୁ ଯିଏ ଖାଇଦିଏ), ସାଉଁଳା (କଅଁଳ), ସାକୁଲାଇବା (ପଟେଇବା), ସିହାଁଣୀ (ଚାଲାକ), ସିଆଡ଼ି (ଲତା ବିଶେଷ, ଗୁପ୍ତଚର), ସୁଆଗିଆ (ଅତିଶୟ ସ୍ନେହକାମୀ), ସୁରୁଖୁରୁ (ନିର୍ବିଘ୍ନ), ହକାରିବା (ଡାକିବା), ହଟହଟା (ହଇରାଣ), ହସ୍‌କୁରା (ଯେ ସବୁବେଳେ ହସେ), ହର ଘଡ଼ି (ସବୁ ସମୟରେ), ହାଇଁଆ (ବଡ଼ ପାଟିଆ), ହାଉଳା (ବାଉଳି ହେବା), ହାଁକ (ଡାକ), ହାବୁକା (ଭୟ ପଶିଯିବା), ହାବୁଡ଼ା (ଉପରେ ପଡ଼ିବା), ହିଂସା (ଭାଗ, ବାଦ), ହିଞ୍ଜିଡ଼ା (ନପୁଂସକ) ।

**(ଖ) ଯାବନିକ ଶବ୍ଦ :** ଦୀର୍ଘଦିନ ଧରି ମୋଗଲ ଶାସନ ଓଡ଼ିଶାରେ ପ୍ରତିଷ୍ଠିତ

ଥିବା ଯୋଗୁଁ ଉତ୍ତର ଓଡ଼ିଶାର ଲୋକ କଥିତ ଭାଷାରେ ବହୁ ଯାବନିକ ଶବ୍ଦ ଦେଖାଯାଏ । ବିଶେଷତଃ କୋର୍ଟ କଚେରୀର ଭାଷା ପାର୍ସୀ ଭାଷା ହୋଇଥିବା ଯୋଗୁଁ ଏ ଭାଷାର ପ୍ରଭାବ ଓଡ଼ିଶା ଉପରେ ଯଥେଷ୍ଟ ଥିଲା । ଯାବନିକ ଭାଷା ଭିତରେ ଆରବୀ, ପାର୍ସୀ, ତୁର୍କୀ, ପ୍ରଭୃତି ଭାଷା ମିଶି ରହିଛି । ଉତ୍ତର ଓଡ଼ିଶାରେ ପ୍ରଚଳିତ ଯାବନିକ ଭାଷାର କିଛି ଶବ୍ଦ ଏଠାରେ ପ୍ରଦାନ କରାଗଲା । ଯଥା- ଅର୍‌ଜି, ଅର୍‌ମନ, ଅଜାନ୍, ଅଇନା, ଅସଲ, ଅମଲ, ଅକ୍ତିଆର, ଅଦାଲତ, ଅମାନତ, ଅଉଲ, ଅକଲ, ଅକଲଗୁଡ୍ଡୁମ୍, ଅଜବ, ଇଜ୍‌ଲାସ, ଆନ୍ଦାଜ, ଆଇନ୍, ଆମଦାନୀ, ଆସାମୀ, ଆସ୍‌ମାନ୍, ଆସବାବ, ଇନାମ୍, ଇଜ୍‌ମାଇଲି, ଇମାନ୍‌ଦାର, ଇଲମ୍, ଉଜିର୍, ଓ୍ୱାରସ୍‌ଦାର, ଉମର, ଉମେଦାରି, ଓରମାନ୍, କତଲ କୈଫତ୍, କାନୁନ୍, କାଇଲି, କସୁର, କାଏମ୍, କୈଫୟତ୍, ଖବରଦାର, ଖାରଜ, ଖାନ୍‌ତଲାସି, ଖଲାସ, ଖିଲାପ, ଖୁରାକ୍, ଖୁସାମତି, ଗଫଲତ୍, ଗାଏବ, ଜବାବ, ଜରୁର୍, ଜାମିନି, ଜୁଲମ୍, ଜାଗିରି, ଜାମିନିଦାର, ଜାହାଜ, ଜିଦ୍‌ଖୋର, ଜମାନତ୍, ଜିଲ୍ଲା, ଜୁହାର, ଜେରା, ଦରୁଆନ, ନଜିର, ନାଲିସ୍, ନୌକର, ନିଶାପ୍, ନଜରବନ୍ଦ, ପଇଦା, ପରୁଆନା, ପକଡ଼, ପରଗଣା, ପେସ୍କାର, ଫଇସଲା, ଫଉଜ, ଫୌଜଦାରୀ, ଫାକାଶି, ଫଜରା, ଫଜିତ୍, ଫତୁରିଖୋର, ଫତୁରା, ଫନ୍ଦିବାଜ, ଫରିଆଦ୍, ଫରମାସି, ଫାଜିଲ୍, ଫସଲ, ଫିସାଦ, ଫୁର୍ତିବାଦ୍, ଫେରାର୍, ଫରମାସ, ବଦ୍‌ମାସ୍, ବରକିନ୍ଦାଜ, ବାହାଲ, ବିରାମ, ବେଓ୍ୱାରିସ୍, ବେଲମାନ, ବେଖାତିର, ବେପସନ୍ଦ, ବେଜିତ୍, ମତୁଆଲା, ମୁକହିର୍, ମୁକାମ, ମୁନ୍‌ସିଫ୍, ମିସଲ, ମୁକଦ୍ଦମା, ମୁକ୍ତିଆର, ମୁନ୍‌ସୀ, ମୋହରିର, ଲାଖରାଜ, ମାର୍‌ଫତଦାର, ମାମଲାବାଜ, ମାଲ୍‌ଗୋଦାମ୍, ମିଜାଜ୍, ମଞ୍ଜୁର, ମୁସ୍କିଲ, ମେହେରବାନି, ଜବାନ୍, ରୋଜଗାର, ଲଗାମ, ଲୋକସାନ୍, ସାଲିସ୍, ସମନ, ହାକିମ, ହରବିତ୍, ହରେକ୍, ହାଜିର, ହୁକୁମ୍, ହାବିଲ୍‌ଦାର, ହଜୁର, ହୁଲିଆକାରି, ହୁସିଆର, ହଙ୍ଗାମା, ହେମଦସ୍ତା ପ୍ରଭୃତି ।

(ଗ) **ବୈଦେଶିକ ଭାଷାର ପ୍ରଭାବ :** ଇଂରେଜମାନେ ଔପନିବେଶ ଛଳରେ ଓଡ଼ିଶାକୁ ଦୀର୍ଘ ଦେଢ଼ଶହ ବର୍ଷ ଧରି ଶାସନ କରିଛନ୍ତି । ଏମାନଙ୍କ ପୂର୍ବରୁ ପର୍ତ୍ତୁଗୀଜ୍, ଓଲନ୍ଦାଜ (ଡଚ୍), ଦିନାମାର ଏବଂ ଇଂରେଜ ବଣିକମାନେ ବାଣିଜ୍ୟ ଛଳରେ ଓଡ଼ିଶାକୁ ଆସିଛନ୍ତି । ଫଳରେ ସେମାନଙ୍କ ଭାଷାର ପ୍ରଭାବ ଓଡ଼ିଶା ଉପରେ ଯଥେଷ୍ଟ ପଡ଼ିଥିଲା । ଉତ୍ତର ଓଡ଼ିଶାର କଥିତ ଭାଷାରେ ଏହି ବୈଦେଶିକ ଜାତିମାନଙ୍କର ଅନେକ ଭାଷା ମିଶି ରହିଛି । ନିମ୍ନରେ ଏ ଭାଷା ଉପରେ ପଡ଼ିଥିବା ବୈଦେଶିକ ଭାଷାର କେତେକ ଶବ୍ଦର ନମୁନା ଦିଆଗଲା ।

**୧) ପର୍ତ୍ତୁଗୀଜ୍ ଭାଷାର ପ୍ରଭାବ** - ଅନେକ ପର୍ତ୍ତୁଗୀଜ୍ ଶବ୍ଦ ଉତ୍ତର ଓଡ଼ିଶାର କଥିତ ଭାଷାରେ ଅବିକଳ ରହିଥିବା ବେଳେ ଆଉ କେତେକ ଅପଭ୍ରଂଶ ରୂପରେ ଦେଖିବାକୁ ମିଳେ । ସେଗୁଡ଼ିକ ହେଉଛି - ଆଲମାରୀ, ଆଲକାତରା, ଆଚାର, ଅନାରସ, ଆତ, ଆଲ୍‌ପିନ୍, ଇସ୍ତ୍ରୀ, କତରା, ଇସ୍‌ପାତ, କାଜୁ, କିରାଣୀ, କାମିଜ୍, କୋବି, ଗୁଧୁଡ଼ି, ଜାଣ୍ଡ୍‌ଲା

ଡଙ୍ଗା, ତମାଖୁ, ତସ୍‌ଲା, ତେଲାଣି, ପପେୟା, ପାଉଁ, ପାତି, ପିସ୍ତଲ, ପେଡ଼ା, ବଟକରା, ବଟା, ବତାଲି, ବୋମ୍ବାଟିଆ, ବରଗା, ବାଲ୍‌ତି, ବାସନ, ବୋତଲ ବୋତାମ, ମଲାଇ, ମାସ୍କୁଲ, ମିସ୍ତ୍ରୀ, ମୋଜା, ରସିଦ୍, ଲସ୍କର, ସପେତା, ସାବୁନ୍, ଶାୟା, ପ୍ରଭୃତି ।

୨) ଇଂରାଜୀ ଭାଷାର ପ୍ରଭାବ- ଉତ୍ତର ଓଡ଼ିଶାର କଥିତ ଭାଷାରେ ଅନେକ ଇଂରାଜୀ ଶବ୍ଦ ମିଶି ରହିଚି । କେତେଗୁଡ଼ିଏ ଶବ୍ଦ ଅବିକଳ ଭାବରେ ଉଚ୍ଚାରିତ ହେଉଥିଲା ବେଳେ ଅନ୍ୟ କେତେକ ଅପଭ୍ରଂଶ ହୋଇ ଉଚ୍ଚାରିତ ହେଉଛି । ଏଠାରେ ଏହି ବିଶାଳ ଶବ୍ଦ ଭଣ୍ଡାରର ଚିଠା ପ୍ରଦାନ କରିବା ସମ୍ଭବ ନୁହେଁ । କେବଳ ଅପଭ୍ରଂଶ ହୋଇଥିବା କେତୋଟି ଶବ୍ଦ ଉଲ୍ଲେଖ କରାଗଲା ।

Contractor > କାନ୍ତରାଟି

Godown > ଗୋଦାମ

Collectorate > କିଲଟରି

Kinchouse > କାଞ୍ଜିଆହୁଦା

Penal code > ପିଙ୍ଗଳ କୋଡ଼୍

Revenue > ରେବିଣି

Hospital > ହାଁସପାତାଲ

Guard > ଗାରଦ

Court > କୁଟ

Arm chair > ଆରାମ ଚେୟାର

Plaster > ପଲସ୍ତରା

Paltoon > ପଲଟଣ

Gurdian > ଗାର୍ଜିନ

Lamp > ନମ୍ପ

Brush > ବ୍ରୁସ୍

Polish > ପାଲିସ୍

Opium > ଅଫିମ

Match stick > ମ୍ୟାଚିସ୍

Christian > କିରସ୍ତାନ

Signal > ସିଗ୍ନଲ

Overseer > ଉଭ୍ରେସର

Fund > ପାଣ୍ଠି

French > ଫିରିଙ୍ଗି

Orderly > ଅର୍ଦ୍ଦଳୀ

Doorman > ଦରଓବାନ

Bungalow > ବଙ୍ଗଳା

Rebate > ରିହାତି

Contract > କୁତ

ଏହା ବ୍ୟତୀତ ଅନେକ ଇଂରାଜୀ ଶବ୍ଦରେ ପ୍ରତ୍ୟୟ ଓ ଉପସର୍ଗ ଯୋଗ ହୋଇ କେତେକ ଶବ୍ଦ ସୃଷ୍ଟି ହୋଇଚି, ଯେମିତି - ପୋଲିସ୍ + ବାଲା > ପୋଲିସ୍‌ବାଲା, ଫୁଟ୍‌ପାଥ୍ + ଇଆ > ଫୁଟ୍‌ପାଥିଆ, ଡାକ୍ତର + ଆଣି > ଡାକ୍ତରାଣୀ, ମାଷ୍ଟର + ଆଣି > ମାଷ୍ଟ୍ରାଣୀ, ନମ୍ବର + ଇଆ > ନମ୍ବରିଆ, ବେ + ଟାଇମ୍ > ବେଟାଇମ୍, ବେ + ନାମ୍ + ଇ > ବେନାମୀ, ବେ + ୱାରେଣ୍ଟି > ବେୱାରେଣ୍ଟି, ସୋସାଇଟ୍ + ଇ > ଷୋସାଇଟି, କଣ୍ଟ୍ରାକ୍ଟର + ଇ > କଣ୍ଟ୍ରାକ୍ଟରି ।

ବଙ୍ଗଳା ଦେଶରୁ ଆସି ଉତ୍ତର ଓଡ଼ିଶାର ବିଭିନ୍ନ ପାହି ଅଞ୍ଚଳରେ ତଥା ଗାଁ ଗହଳିରେ ବସବାସ କରୁଥିବା ଲୋକମାନଙ୍କୁ 'ଉତୁରାଳି' ବୋଲି କୁହାଯାଏ । ସେମାନେ ଓଡ଼ିଆ ଓ ବଙ୍ଗଳା ମିଶା ଦୋଭାଷି ଭାଷା ବ୍ୟବହାର କରନ୍ତି । ସେ ଭାଷା ଶୁଣିବାବେଳେ ଖୁବ୍ କୌତୁହଳ ସୃଷ୍ଟିହୁଏ । ଏଠାରେ ଦୁଇ ତିନୋଟି ବାକ୍ୟ ପ୍ରଦାନ କରାଯାଇପାରେ -

ଯଥା- "ଆରେ ଖୁକୁ, ଦାଣ୍ଡିଛୁ କେନୋ, ମଠ ମଠ କରି ଚାଲିଆ ।"

ଏହାର ଓଡ଼ିଆ ରୂପାନ୍ତର - 'ଆରେ ପିଲା, ଠିଆ ହୋଇଛୁ କାହିଁକି, ଶୀଘ୍ର ଶୀଘ୍ର ଚାଲିଆ ।'

"ଆରେ ବୋହୁ, ମର ଛାଡ଼ାଣିଲେ ଥାଟା କାଇ ରଖିଲେ ରେ ।" ଓ ରୂପ - 'ଆରେ ବୋହୂ, ମୋର ଚାବିକାଠି ନେଥା କେଉଁଠି ରଖିଲ ?

"ଆରେ ଖୁକା, ତୁଇ ସକାଲ୍ ସକାଲ୍ କାଇ ଯାବୁରେ ।"

ଓ ରୂପ - 'ଆରେ ପିଲା, ତୁ ସକାଳେ ସକାଳେ କେଉଁଠିକି ଯିବୁ ?'

ଏହା ବ୍ୟତୀତ ଉତ୍ତର ଓଡ଼ିଶାର ଅଷ୍ଟ୍ରିକ୍ ଭାଷାଭାଷୀ ସମ୍ପ୍ରଦାୟର ଭାଷା ବିଚାର ଆଉ ଏକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ ।



# ପରିଶିଷ୍ଟ

## ଓଡ଼ିଆ ଭାଷା ସମ୍ବନ୍ଧୀୟ ଓଡ଼ିଆ ପୁସ୍ତକମାନଙ୍କର ନିର୍ବାଚିତ ତାଲିକା


୧. ଇନ୍ଦୁଲତା ଦାସ : 'ଭାଷା ଓ ବ୍ୟାକରଣ'; ବସନ୍ତ ପବ୍ଲିକେସନ, କଟକ, ୨୦୦୨

୨. ଓଡ଼ିଶା ସାହିତ୍ୟ ଏକାଡ଼େମୀ : 'ଓଡ଼ିଆ ଲିପି ଓ ଭାଷା'; ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୮୨

୩. କୁଞ୍ଜ ବିହାରୀ ତ୍ରିପାଠୀ : 'ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ'; ରାଜ୍ୟ ପାଠ୍ୟପୁସ୍ତକ ଓ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର, ୧୯୭୭

୪. ଖଗେଶ୍ୱର ମହାପାତ୍ର : 'ଦକ୍ଷିଣାଞ୍ଚଳୀୟ ଓଡ଼ିଆ'; ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୬

'ଓଡ଼ିଆ ଲିପି ଓ ଭାଷା': ଗ୍ରନ୍ଥ ମନ୍ଦିର, କଟକ, ୧୯୭୭

୫. ଗଗନେନ୍ଦ୍ର ନାଥ ଦାଶ : 'ଓଡ଼ିଆ ଭାଷା ଚର୍ଚ୍ଚାର ପରଂପରା'; ଓଡ଼ିଆ ଗବେଷଣା ପରିଷଦ, କଟକ, ୧୯୮୩

୬. ଗିରିଜା ଶଙ୍କର ରାୟ : 'ସରଳ ଭାଷାତତ୍ତ୍ୱ' : ବାଣୀଭଣ୍ଡାର, କଟକ, ପରିମାର୍ଜିତ ୩ୟ ସଂସ୍କରଣ, ୧୯୮୩

୭. ଗୋପବଂଧୁ ରଥ : 'ପଶ୍ଚିମ ଓଡ଼ିଶାର କଥିତ ଓଡ଼ିଆ ଭାଷା'; ଓଡ଼ିଶା ସହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୮୮

୮. ଗୋପୀନାଥ ନନ୍ଦଶର୍ମା : 'ଓଡ଼ିଆ ଭାଷାତତ୍ତ୍ୱ' ;ନିଉ ଷ୍ଟୁଡେଣ୍ଟଷ୍ଟୋର, କଟକ, ୧୯୨୭

୯. ଗୋଲୋକ ବିହାରୀ ଧଳ : 'ଓଡ଼ିଆ କେବେ'; ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ, ୧୯୬୩

'ମଣିଷର ଭାଷା'; ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୩ୟ ସଂସ୍କରଣ, ୧୯୭୦

'ଇଂରେଜି ଉଚ୍ଚାରଣ ଶିକ୍ଷା'; ଫ୍ରେଣ୍ଡସ୍ ପବ୍ଲିସରସ୍, କଟକ, ୨ୟ ମୁଦ୍ରଣ, ୧୯୭୨

'ଧ୍ୱନି ବିଜ୍ଞାନ'; ରାଜ୍ୟ ପାଠ୍ୟ ପୁସ୍ତକ ଓ ପ୍ରଣୟନ ସଂସ୍ଥା,
ଭୁବନେଶ୍ୱର, ୧୯୭୪
'ଭାଷାଶାସ୍ତ୍ର ପରିଚୟ'; ରା.ପା.ପ୍ର.ସଂ,
ଭୁବନେଶ୍ୱର, ୧୯୭୬

୧୦. ଦେବୀପ୍ରସନ୍ନ ପଟ୍ଟନାୟକ : 'ପ୍ରାୟୋଗିକ ଭାଷା ବିଜ୍ଞାନର ଦିଗ ବିଦିଗ'; ରା.ପା.ପ୍ର.ସଂ, ଭୁବନେଶ୍ୱର, ୧୯୮୦
(ଅନୁବାଦ : ଶରତ ଚନ୍ଦ୍ର ପ୍ରଧାନ)
'ଓଡ଼ିଆ ଭାଷା ଓ ଭାଷା ବିଜ୍ଞାନ'; ଗ୍ରନ୍ଥମନ୍ଦିର,
କଟକ, ୧୯୮୫

୧୧. ଦେବେନ୍ଦ୍ର ଚନ୍ଦ୍ର ମହାନ୍ତି : 'ଓଡ଼ିଆ ଶବଦ ସମ୍ଭାର'; ଫ୍ରେଣ୍ଡସ୍ ପବ୍ଲିସରସ୍, କଟକ, ୧୯୭୯

୧୨. ଧନେଶ୍ୱର ମହାପାତ୍ର : 'ଓଡ଼ିଆ ଧ୍ୱନିତତ୍ତ୍ୱ ଓ ଶବ୍ଦ ସମ୍ଭାର'; ଗ୍ରନ୍ଥ ମନ୍ଦିର, କଟକ, ୧୯୭୬

୧୩. ନଗେନ୍ଦ୍ର ନାଥ ମହାପାତ୍ର : 'ଉତ୍ତର-ପୂର୍ବ ଉପାନ୍ତ ଓଡ଼ିଶାର ଭାଷା ସାହିତ୍ୟ ଓ ସଂସ୍କୃତି'; ଓଡ଼ିଶା ସାହିତ୍ୟ ଏକାଡ଼େମୀ,
ଭୁବନେଶ୍ୱର, ୧୯୯୭

୧୪. ନିର୍ମଳ କାନ୍ତ ମହାନ୍ତି ; 'ଓଡ଼ିଆ ଅକ୍ଷର': ସୃଷ୍ଟି, ଭୁବନେଶ୍ୱର, ୧୯୯୫

୧୫. ନୀଳମଣି ମିଶ୍ର : 'ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ'; ଗ୍ରନ୍ଥ ମନ୍ଦିର, କଟକ, ୧୯୭୬

୧୬. ନୀଳକଣ୍ଠ ଦାସ : 'ଓଡ଼ିଆ ଭାଷା ଓ ସାହିତ୍ୟ'; ନିଉ ଷ୍ଟୁଡେଣ୍ଟ ଷ୍ଟୋର,
କଟକ, ୧୯୫୮

୧୭. ପଞ୍ଚାନନ ମହାନ୍ତି : 'ବୃତ୍ତି ଏ ମୋ ପୋଷେ କୁଟୁମ୍ବ'; ପି.ମହାନ୍ତି,
ଭୁବନେଶ୍ୱର, ୨୦୦୭

୧୮. ଫକୀର ମୋହନ ବିଶ୍ୱବିଦ୍ୟାଳୟ : 'ଉତ୍ତର ଓଡ଼ିଶା ଉପାନ୍ତ ଅଞ୍ଚଳର ସଂସ୍କୃତି; ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର, ୨୦୦୩

୧୯. ବକୁଳଚନ୍ଦ୍ର ଚୌଧୁରୀ : 'ଆଧୁନିକ ଭାଷାବିଜ୍ଞାନ ପ୍ରବେଶ'; ଏ.ପ୍ରଧାନ, ଭୁବନେଶ୍ୱର, ୧୯୭୯

୨୦. ବଂଶୀଧର ମହାନ୍ତି : 'ଓଡ଼ିଆ ଭାଷାତତ୍ତ୍ୱର ଭୂମିକା'; ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୯
'ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ'; ଫ୍ରେଣ୍ଡସ୍ ପବ୍ଲିସରସ୍, କଟକ, ୧୯୭୨

୨୧. ବାସୁଦେବ ସାହୁ : 'ଭାଷାବିଜ୍ଞାନର ରୂପରେଖ'; ସତ୍ୟଶାନ୍ତି ସାହୁ, ପୁରୀ, ୧୯୭୫

୨୨. ବିଜୟ ପ୍ରସାଦ ମହାପାତ୍ର : 'ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବଂଧ', ଗ୍ରନ୍ଥ ମନ୍ଦିର, କଟକ, ୧୯୮୩
'ଓଡ଼ିଆ ଭାଷା ବିଭବ': ବିଦ୍ୟାପୁରୀ, କଟକ, ୧୯୮୫
'ମାତୃଭାଷା ଓଡ଼ିଆ'; ଫ୍ରେଣ୍ଡସ୍ ପବ୍ଲିସରର୍ସ, କଟକ, ୧୯୯୭
'ପଣ୍ଡିତ ନୀଳକଣ୍ଠଙ୍କ ଓଡ଼ିଆ ଭାଷାତତ୍ତ୍ୱ'; ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ, ୧୯୯୯
'ପ୍ରଚଳିତ ଓଡ଼ିଆ ଭାଷାର ଏକ ବ୍ୟାକରଣ'; ବିଦ୍ୟାପୁରୀ, କଟକ, ୨୦୦୭
'ପ୍ରାଥମିକ ଓଡ଼ିଆ ବ୍ୟାକରଣ'; ବିଦ୍ୟାପୁରୀ, କଟକ, ୨୦୦୭

୨୩. ବିଜୟଲକ୍ଷ୍ମୀ ମହାନ୍ତି : An Intensive Course in Oriya (Bilingual); ଭାରତୀୟ ଭାଷା ସଂସ୍ଥାନ, ମହୀଶୂର , ୧୯୮୯,
'ଭାଷା ଆଲୋଚନା'; ଜେ.ଏମ୍.ମହାନ୍ତି, ଭୁବନେଶ୍ୱର, ୧୯୯୩
'ଓଡ଼ିଆ ବ୍ୟାକରଣ ବିଚାର': ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର, ୧୯୯୮

୨୪. ବିନାୟକ ମିଶ୍ର : 'ଓଡ଼ିଆ ଭାଷାର ଇତିହାସ'; କଟକ ଷ୍ଟୁଡେଣ୍ଟଷ୍ଟୋର୍, କଟକ, ୧୯୨୭, 'ଓଡ଼ିଆ ଭାଷାର ପୁରାତତ୍ତ୍ୱ'; ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ, ୧୯୬୫

୨୫. ବେଣୀମାଧବ ପାଢ଼ୀ : 'ଓଡ଼ିଆ ଭାଷାର ରୂପତତ୍ତ୍ୱ'; ପୁସ୍ତକ ଭଣ୍ଡାର,
ବ୍ରହ୍ମପୁର, ୧୯୭୨

୨୬. ଶତ୍ରୁଘ୍ନ ନାଥ : 'ଆମ ଭାଷା ବିଭବ'; କଟକ ଟ୍ରେଡିଂ କଂପାନି, କଟକ, ୧୯୫୯

୨୭. ସଚ୍ଚିଦାନନ୍ଦ ମିଶ୍ର : 'ଭାଷାତତ୍ତ୍ୱ ସମୀକ୍ଷା'; କଟକ, ୧୯୭୦

୨୮. ସତ୍ୟନାରାୟଣ ରାଜଗୁରୁ : 'ଓଡ଼ିଆ ଲିପିର କ୍ରମବିକାଶ',
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ୧୯୬୦

୨୯. ସତ୍ୟ ପ୍ରସାଦ ଦାସ : 'ଦକ୍ଷିଣ ଓଡ଼ିଶାର କଥିତ ଓଡ଼ିଆ ଭାଷା' ;
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୮୮

୩୦ ସିଦ୍ଧେଶ୍ୱର ମହାପାତ୍ର : 'ପୁରୀ ବୋଲି', ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର, ୧୯୯୬

୩୧. ଚୌଧୁରୀ ହେମକାନ୍ତ ମିଶ୍ର : 'ଭାଷା ପରୀକ୍ଷଣ', ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୬

